# ପ୍ରାକ୍-ଭାଷ

"ମୁଁ ଜୀବନରେ କୌଣସି କଥାକୁ ପାପ ବା ପୁଣ୍ୟ ବୋଲି ମନେ କରେ ନାହିଁ। ...ମୋର ଅଧିକାଂଶ ଶ୍ରେଷ୍ଠ ଗଳ୍ପ ବହନ କରିଛି ମୋ ବ୍ୟକ୍ତିଗତ ଜୀବନର ଆନଂଦ-ବେଦନାର ଚିତ୍ର।" ୧୯୭୧ ରେ ପ୍ରକାଶିତ ଏକ ସାକ୍ଷାତ୍କାରରେ କହିଛଂତି ଅଖିଳ ମୋହନ ପଟ୍ଟନାୟକ।

ଅନ୍ୟ ଏକ ସାକ୍ଷାତ୍କାରରେ ବୁଝାଇଛଂତି : "ଅନୁଭୂତି ସବୁବେଳେ ପ୍ରତ୍ୟକ୍ଷ ହବ ଯା'ର କିଛି ମାନେ ନାହିଁ। ଲେଖକ ପରୋକ୍ଷ ଅନୁଭୂତିକୁ ପ୍ରତ୍ୟକ୍ଷ କରିନେଇପାରେ।"

"ଲେଖିବା ଅର୍ଥ ଦାୟିତ୍ୱ ଗ୍ରହଣ କରିବା," ଅନ୍ୟତ୍ର କହିଛଂତି ଅଖିଳ ମୋହନ, "ତେଣୁ ମୁଁ ଲେଖେ, କାରଣ ମୁଁ ପ୍ରତିଟି ଲେଖାରେ ଫ୍ୟାକ୍ଟ୍ ଟୁ ଆର୍ଟ୍ କରିଚାଲିଛି ଓ ତାହାର ଅର୍ଥ : ମୁଁ ଏକ ମୂଲ୍ୟବୋଧ ତିଆରି କରିଚାଲିଛି।"

ଏହି ସମସ୍ତ ଉକ୍ତି ପରସ୍ପର ପରିପୂରକ, ଯଥାର୍ଥ। ଉତ୍ସ ବ୍ୟକ୍ତିଗତ ଆନଂଦ-ବେଦନା ହେଉ, ପରୋକ୍ଷ ଅନୁଭୂତିର ପ୍ରତ୍ୟକ୍ଷୀକରଣ ହେଉ ବା ମୂଲ୍ୟବୋଧର ଦାୟ ହେଉ, ଫ୍ୟାକ୍ଟ୍ ଟୁ ଆର୍ଟ୍ ହେଲେ ଗଳ୍ପରେ ଶ୍ରେଷ୍ଠତା ଆସେ, ଅନୁଭବ ସାର୍ବଜନୀନ ହୋଇଯାଏ।

ବହୁ ଥର ସେ କହିଛଂତି ଯେ ସେ ଗୁରୁତ୍ୱ ଦିଅଂତି ଆତ୍ମିକ ଅଭିବ୍ୟକ୍ତି, ଥିମ୍ ଓ କାହାଣୀର ଅଂତର୍ନିହିତ ମାନବିକ ସଂବେଦନ ଉପରେ।

କଥ୍ୟ ଉପରେ ଗୁରୁତ୍ୱ ଦିଅଂତି, କିଂତୁ ଅଖିଳୀୟ ଗଳ୍ପ ସ୍ଥୂଳ ବିବରଣୀମୂଳକ ଆଦୌ ନୁହେଁ। ତାଂକର ଜୀବନରେ ଯେମିତି, ସାହିତ୍ୟରେ ସେମିତି : ଛଳନାର ସ୍ଥାନ ନାହିଁ। ଅଖିଳ ଗଳ୍ପଧାରାରେ ସେଇଥିପାଇଁ ମାନବିକ ସଂବେଦନ ତତ୍ତ୍ୱାରୋପିତ ନୁହେଁ, ଉପଲବ୍ଧିର ଆଂତରିକ ବଖାଣ। ତା' ସହିତ ଉପସ୍ଥାପନାରେ କୌଳିନ୍ୟ, ଶକ୍ତିଶାଳୀ ପ୍ରତୀକ ପ୍ରୟୋଗ ଓ ଜୀବନ ପ୍ରତି ତିର୍ଯକ ଦୃଷ୍ଟି ତାଂକର ଅନେକ ଗଳ୍ପକୁ ଚିରସ୍ମରଣୀୟ କରିଛି।

କ୍ଷୁଦ୍ରଗଳ୍ପ ଏକ ବର୍ଚ୍ଛା ଯାହାର କ୍ଷେପଣରେ ପାଠକକୁ ବିଦ୍ଧ କରିବାକୁ ଲେଖକକୁ ମାତ୍ର ଗୋଟିଏ ସୁଯୋଗ ମିଳେ ଏବଂ ତହିଁରେ ଲେଖକର କ୍ଷେପଣ ଶୈଳୀ ଅପେକ୍ଷା ବର୍ଚ୍ଛାର ବିଦ୍ଧ କରିବାର କ୍ଷମତା ଅଧିକ ଗୁରୁତ୍ୱପୂର୍ଣ୍ଣ ବୋଲି ଥରେ ସେ କହିଥିଲେ। ଅଖିଳ

ମୋହନଙ୍କର କ୍ଷେପଣ ଶୈଳୀ ବି ଚମତ୍କାର ଏବଂ ପ୍ରତି ଥର ତାଂକର ବର୍ଚ୍ଛା ସିଧା ପାଠକର ମର୍ମସ୍ଥଳକୁ ଭେଦି ରସାପ୍ଲୁତ କରେ ।

'ଅଖିଳାୟନ'ରେ ଅଖିଳ ମୋହନଙ୍କର ସମସ୍ତ ଗଳ୍ପ ସନ୍ନିହିତ ହୋଇଛି । ପ୍ରିୟ ପାଠକ ! ଯଦି ଅନ୍ୟ କୌଣସି ଗଳ୍ପ ପତ୍ରପତ୍ରିକାରେ ରହିଯାଇଥାଏ, ଦୟା କରି ବିବରଣୀ ସହ ଅଖିଳ ମୋହନ ଫାଉଂଡେସନକୁ ଜଣାଇଲେ ଆମେ କୃତଜ୍ଞ ହେବୁ ।

ରାଜେଂଦ୍ର କିଶୋର ପଂଡା
ଅଧ୍ୟକ୍ଷ
ଅଖିଳ ମୋହନ ଫାଉଂଡେସନ

# ସୂଚୀପତ୍ର

## ନଦୀର ନାମ ଗଣତନ୍ତ୍ର



## ପ୍ରଥମ ଓ ଶେଷ

# ମୁଁ କାହିଁକି ଲେଖେ

ମୁଁ କାହିଁକି ଲେଖେ ଏହା ଏକ ଜଟିଳ ପ୍ରଶ୍ନ ହେଲେ ମଧ୍ୟ ଏକଥା ସ୍ୱୀକାର କରିବାକୁ ହେବ ଯେ, ଏହା ଏକ ବ୍ୟକ୍ତିଗତ ପ୍ରଶ୍ନ । ଏକାନ୍ତ ବ୍ୟକ୍ତିଗତ । ଏକାଧିକବାର ପୃଥିବୀର ବହୁ ଲେଖକ, ପ୍ରତ୍ୟକ୍ଷ ଭାବରେ ହେଉ ବା ପରୋକ୍ଷ ଭାବରେ ହେଉ ଏ ପ୍ରଶ୍ନର ଉତ୍ତର ଦିନେ ନା ଦିନେ ଦେଇଛନ୍ତି । କିନ୍ତୁ କେଜାଣି କାହିଁକି ମୋର ବହୁ ସମୟରେ ମନେ ହେଉଛି ସେହି ସମସ୍ତ ଉତ୍ତର ଏକ ପୂର୍ବ-ନିର୍ଦ୍ଧାରିତ ଉତ୍ତର ଅଥବା ଆରୋପିତ ଉତ୍ତର । ଏକ ବୁଦ୍ଧିଜୀବି ସୁଲଭ ନିବନ୍ଧ । କାରଣ ଏ ସଂପର୍କରେ ଜନସାଧାରଣ ଲେଖକଙ୍କ ଠାରୁ ଯାହା ଆଶା କରିଥାନ୍ତି ତାହା ହିଁ ସେମାନଙ୍କୁ ପ୍ରାୟତଃ କହିବାକୁ ପଡ଼ିଥାଏ । ଏହା ଯେପରି ଏକ ପ୍ରସ୍ତୁତ ପ୍ରତିକ୍ରିୟା ।

ଏହା ଭିନ୍ନ ଜଣେ ଲେଖକକୁ ତାର ଜ୍ଞାନସାରରେ ହେଉ ବା ଅଜ୍ଞାତସାରରେ ହେଉ ତତ୍‌କାଳୀନ ସାମାଜିକ ଓ ରାଜନୀତିକ ଅବସ୍ଥା ପ୍ରଭାବିତ କରି ଚାଲିଥାଏ । ପ୍ରତ୍ୟେକ ଲେଖକ ଆଉ ଯାହା ହେଉ ନ ହେଉ ସେ, ଯେ ଜଣେ ସ୍ପର୍ଶକାତର ମନୁଷ୍ୟ ଏଥିରେ ସଂଦେହର ଅବକାଶ ନାହିଁ । ତେଣୁ ବହୁ ସାମାଜିକ ଦୈନନ୍ଦିନ ଓ ରାଜନୈତିକ କାର୍ଯ୍ୟକଳାପ ଲେଖକର ଅବଚେତନକୁ ଅବଶ୍ୟ ପ୍ରଭାବିତ କରି ଚାଲିଥାଏ । ଯାହା ଅବଚେତନରେ ଗଚ୍ଛିତ ହୋଇ ରହିଯାଏ ଦିନେ ନା ଦିନେ ତା'ର ସଚେତନ ପ୍ରକାଶ ଯେ ଅବଶ୍ୟମ୍ଭାବୀ ଏଥିରେ ସଂଦେହ ନାହିଁ ।

ଏହାର ମଧ୍ୟ ବ୍ୟତିକ୍ରମ ଅଛି । ଯେତେବେଳେ ରାଷ୍ଟ୍ର ଲେଖକର ଲେଖନୀର ସ୍ୱାଧୀନତାକୁ ନିୟନ୍ତ୍ରଣ କରିବାକୁ ଉଦ୍ୟମ କରେ, ଯେତେବେଳେ ଏକ ଗୋଷ୍ଠୀର ଲେଖକ ସମସ୍ତ ସ୍ପର୍ଶକାତରତା ସତ୍ତ୍ୱେ ରାଷ୍ଟ୍ର ପାଖରେ ଆତ୍ମସମର୍ପଣ କରି ରାଷ୍ଟ୍ରର ସ୍ତବଗାନ କରେ ଓ ଅନ୍ୟ ଗୋଷ୍ଠୀର ଲେଖକ ଅଛନ୍ତି ଯେଉଁମାନେ ନିଜର ଜନ୍ମଭୂମି ହେଲେ ମଧ୍ୟ ତାକୁ ପରିତ୍ୟାଗ କରି ଅନ୍ୟ ଏକ ଦେଶରେ ନିଜର ସ୍ୱାଧୀନ ଚିନ୍ତାଧାରା ପ୍ରକାଶ କରନ୍ତି ।

ପ୍ରବାସରେ ରହି ବହୁ ଲେଖକ, ଦାର୍ଶନିକ ଓ ବୈଜ୍ଞାନିକମାନେ ସେମାନଙ୍କର ସ୍ୱାଧୀନ ଚିନ୍ତାଧାରା ପ୍ରତି ଅନୁଗତ ରହି ଜୀବନ ବ୍ୟାପୀ ସାଧନାରତ ରହିବାର ପ୍ରଚୁର ଦୃଷ୍ଟାନ୍ତ ରହିଛି । ସେମାନଙ୍କର ନାମୋଲ୍ଲେଖ କରି ଏ ପ୍ରବନ୍ଧକୁ ଅଯଥା ଭାରାକ୍ରାନ୍ତ କରୁନାହିଁ । ଆଜିର ରାଷ୍ଟ୍ରମାନେ ଓ ଗତକାଲିର ସଭ୍ୟତାର ରାଷ୍ଟ୍ରମାନେ କେହି ରାଷ୍ଟ୍ରୀୟ ସଂପତ୍ତି, ବୃହତ୍ ଅଟ୍ଟାଳିକା ବା ଅଦମନୀୟ ପ୍ରତିରକ୍ଷା ବ୍ୟବସ୍ଥାକୁ ନେଇ ଗର୍ବ କରନ୍ତି

ନାହିଁ । ସମସ୍ତେ ଗର୍ବ କରନ୍ତି ସେମାନଙ୍କର ଦେଶରେ ଜନ୍ମଗ୍ରହଣ କରିଥିବା ମନିଷୀମାନଙ୍କୁ ନେଇ, ଯେଉଁମାନେ ବିଶ୍ୱକୁ ଉନ୍ନତ ସାହିତ୍ୟ, କଳା ସଂଗୀତ ବା ଦର୍ଶନର ଆଭିମୁଖ୍ୟ ଦେଇଯାଇଛନ୍ତି । ହିଟ୍‌ଲର ପରି ଡିକ୍‌ଟେଟରକୁ ନେଇ ଜର୍ମାନ ଜାତି ଗର୍ବ କରେ ନାହିଁ ବା କୁହେ ନାହିଁ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ସେମାନେ କିପରି ଆଖି ପିଛୁଳାକେ ଗୋଟାଏ ପରେ ଗୋଟାଏ ଦେଶ ଜୟ କରିଗଲେ ! ଜର୍ମାନ ଜାତିର ଇତିହାସ ସେ ସଂପର୍କରେ ସମ୍ପୂର୍ଣ୍ଣ ନୀରବ—ଯେପରି ସେମାନେ ଇତିହାସର ସେହି ପର୍ଯ୍ୟାୟ ପାଇଁ ଲଜ୍ଜିତ ।

ତେଣୁ ଏକ ସଂପୂର୍ଣ୍ଣ ସ୍ୱାଧୀନ ଦେଶ ନ ହେଲେ ତାହା ସେ ଦେଶରେ ଲେଖକ ବା ଚିନ୍ତାନାୟକ ମାନଙ୍କୁ ନିୟନ୍ତ୍ରଣ କରିବାର ଚେଷ୍ଟା କରିଥାଏ । ଏହା ମଧ୍ୟ ବହୁବାର ଦେଖାଯାଏ ଯେ, ପ୍ରତିଷ୍ଠିତ ରାଷ୍ଟ୍ର ବ୍ୟବସ୍ଥା ପରିବର୍ତ୍ତିତ ହୋଇଗଲେ ନିର୍ବାସିତ ଲେଖକଙ୍କୁ ମରଣୋତ୍ତର ରାଷ୍ଟ୍ରୀୟ ସମ୍ମାନ ମିଳିଥାଏ ଓ ସେହି ଲେଖକଙ୍କର ଲିଖିତ ପୁସ୍ତକ ସବୁକୁ ଅମୂଲ୍ୟ ରତ୍ନ ପରି ଗ୍ରନ୍ଥାଗାରରେ ଗଚ୍ଛିତ କରି ରଖାଯାଏ । କାରଣ, ମନୁଷ୍ୟ ସଭ୍ୟତା ତତ୍‌କାଳୀନ ମୂଲ୍ୟବୋଧର ଊର୍ଦ୍ଧ୍ୱରେ ରହି ଏକ ଚିରନ୍ତନ ମୂଲ୍ୟବୋଧର ସନ୍ଧାନ କରୁଥାଏ । ଏକ ନିର୍ଦ୍ଦିଷ୍ଟ ମନୁଷ୍ୟ ବା ରାଷ୍ଟ୍ର ପଦ୍ଧତିର ସେବାରେ ନିଜକୁ ନିଯୁକ୍ତି ନକରି ଲେଖକ, ସ୍ରଷ୍ଟା ନିଜକୁ ସମଗ୍ର ମାନବ ଜାତିର ସେବାରେ ଉତ୍ସର୍ଗୀକୃତ କରିଥାଏ । ତେଣୁ ପ୍ରଚଳିତ ସାମ୍ପ୍ରତିକ ମୂଲ୍ୟବୋଧ ସହିତ ଲେଖକର ଯେ ସଂଘର୍ଷ ହେବ ଏଥିରେ କି ବୈଚିତ୍ର୍ୟ ଅଛି ?

କିନ୍ତୁ ଏଯାବତ୍ କେବଳ ଅନ୍ୟ ଲେଖକ ମାନଙ୍କ କଥା କହିଲି ସେମାନେ କିପରି ଓ ବୋଧହୁଏ କାହିଁକି ଲେଖନ୍ତି କିନ୍ତୁ ମୁଁ କାହିଁକି ଲେଖେ ତାହା ଏ ପର୍ଯ୍ୟନ୍ତ କହିନାହିଁ । ମୋ କଥା କହିବା ଆଗରୁ (ଯାହା ଆଗରୁ କହିଛି ଏକାନ୍ତ ବ୍ୟକ୍ତିଗତ) ମୁଁ ଗୋଟାଏ ପୃଷ୍ଠଭୂମି ତିଆରି କଲି ମାତ୍ର, ଆଶାକରେ ଏ ପୃଷ୍ଠଭୂମି ବା ମୁଖବନ୍ଧ ଅଯଥା ଦୀର୍ଘ ବା କ୍ଲାନ୍ତିକର ହେଲା ନାହିଁ ।

ମୁଁ କାହିଁକି ଲେଖେ କହିବା ଆଗରୁ ମନେ କରିବାକୁ ପଡ଼ିବ ମୁଁ କାହିଁକି ଲେଖା ଆରମ୍ଭ କଲି । କାରଣ ମୋର ଲେଖିବାର ବିଭିନ୍ନ ପର୍ଯ୍ୟାୟରେ ମୁଁ ବିଭିନ୍ନ କାରଣ ହେତୁ ଲେଖିଛି । ଏପରି ଏକ ବ୍ୟକ୍ତିଗତ ପ୍ରଶ୍ନର ଉତ୍ତର ମୁଁ ଏକ ପଣ୍ଡିତ ବା ବୁଦ୍ଧିଜୀବି ସୁଲଭ ବକ୍ତୃତା ଦେଇ ନିଜକୁ ନିରାପଦ କରିବାକୁ ଚାହେଁ ନାହିଁ । ମୁଁ ଯେତେ ଦୂର ସମ୍ଭବ ଏ ସଂପର୍କରେ ସତ୍ୟନିଷ୍ଠ ହେବାକୁ ଉଦ୍ୟମ କରିବି ।

ଅବଶ୍ୟ ମୁଁ ନିଜକୁ ଖୁବ୍ ବଡ ଲେଖକ ବୋଲି ମନେ କରେ ନାହିଁ । ତା'ର ପ୍ରମାଣ ମୁଁ ନିଜ ଜୀବନରେ ଅନେକ ଲିଭେଇଛି । ଅର୍ଥାତ୍ ଦେଶ ବିଦେଶର ବଡ ବଡ

ଲେଖକଙ୍କର ଲେଖା ଯେତେବେଳେ ମୁଁ ପଢ଼ିଛି ସେତେବେଳେ ମୋର ଲେଖିବାର ସମସ୍ତ ଉତ୍ସାହ ବାଧାପ୍ରାପ୍ତ ହୋଇଛି । ମୁଁ ଭାବିଛି, ଏମାନେ ଯଦି ଏମିତି ଲେଖିପାରୁଛନ୍ତି ତାହାହେଲେ ମୋର ଲେଖା ଲେଖି କରିବା କାଳି ଓ କାଗଜର ଅପବ୍ୟୟ ମାତ୍ର, ମୁଁ କେବଳ ଏହା ଭାବିଛି ନୁହେଁ ତାହାହିଁ ସତ୍ୟ । ମୁଁ ଜଣେ ବିଦଗ୍ଧ ପାଠକ ଓ ମୋର ଜୀବନକାଳ ମଧ୍ୟରେ ଏକାଧାରରେ ମୁଁ ବହୁ ପ୍ରାଚୀନ ଓ ବହୁ ଆଧୁନିକ ଯୁଗର ପୁସ୍ତକ ଅଧ୍ୟୟନ କରିଛି । କୌଣସି ପୁସ୍ତକ ପଢ଼ିସାରି ତାକୁ ଏକାଧିକ ବାର ଚୁମ୍ବନ କରି ତକିଆ ତଳେ ରଖି ଶୋଇଛି । କାଳେ ଯଦି ସେହି ବହିର ବିଷୟବସ୍ତୁ ବିଷୟରେ ମୁଁ ସ୍ୱପ୍ନ ଦେଖିପାରେ ।

ମୋର ମନେ ହୁଏ ମୁଁ ମୋର ବହୁ ସଗୋତ୍ରମାନଙ୍କ ଅପେକ୍ଷା ଅଧିକ ଭାଗ୍ୟବାନ୍ । କାରଣ ମୋ'ର ପିତାମହ ଓ ପିତାମହୀ ଉଭୟ ଥିଲେ କୁଶଳ ଗଳ୍ପକଥକ । ଆଜି ବି ମନେ ପଡ଼େ କେଉଁ କେଶବତୀ କନ୍ୟାର ଦୀର୍ଘ କେଶ ଫରୁଆରେ ଭାସି ଯାଉ ଯାଉ ତାଙ୍କୁ ଆବିଷ୍କାର କଲା ଜଣେ ରାଜକୁମାର । ଆଜି ବି ମନେ ପଡ଼େ କେଉଁ ଅଭିଶପ୍ତ କିନ୍ନରୀର ଟୋପା ଟୋପା ଲୁହ ନଦୀରେ ଭାସିଯାଇଥିଲା ଗୋଟିଏ ଗୋଟିଏ ନୀଳପଦ୍ମ ହୋଇ ଓ ସେହି ନୀଳପଦ୍ମର ଉତ୍ପତ୍ତିସ୍ଥଳ ଆବିଷ୍କାର କରିବାକୁ ଘୋଡ଼ା ଛୁଟେଇଲା ରାଜାପୁଅ । ଠିକ୍ ସେତିକିବେଳେ ଘୋର ବନସ୍ତ ଭିତରେ ନିଜର ମଥାମଣିକୁ ତଳେ ରଖିଦେଇ ପାଣି ପିଇବାକୁ ଓହ୍ଲାଇ ଥିଲା ମଣିଚୂଡ଼ ସାପ । ବିସ୍ଫାରିତ ନେତ୍ର ଓ ଉତ୍କଣ୍ଠିତ ଚିତ୍ତ ହୋଇ ଏଇପରି ଅସୁମାରି ଗପ ମୁଁ ଶୁଣିଥିବି ମୋ ଶୈଶବରେ ।

ଟିକିଏ ପରେ ମତେ ଶୁଣିବାକୁ ହେବ ମୋର ମାତାମହୀଙ୍କ ଠାରୁ ଆରବ୍ୟ ଉପନ୍ୟାସର କାହାଣୀ ଓ ନେପୋଲିୟନ୍‌ଙ୍କ ଦିଗ୍‌ବିଜୟ ପୁସ୍ତକ ଅଧ୍ୟୟନ କରିଛି । ତା'ଠାରୁ ସ୍ୱତନ୍ତ୍ର କରି ବୁଝାଇ ପାରେ ସେଦିନ ମୁଁ ସେ ରହସ୍ୟ ଉଦ୍‌ଘାଟନ କରି ପାରିଥିଲି । କହିବା ବାହୁଲ୍ୟ ମୋର ମାତାମହୀ ଥିଲେ ବଙ୍ଗ ସାହିତ୍ୟର ଜଣେ ନିୟମିତ ପାଠିକା ।

ମୋର ସପ୍ତମ, ଅଷ୍ଟମ ଶ୍ରେଣୀ ବେଳକୁ ମୁଁ ବାପାଙ୍କ ସହିତ ବେଶ୍ କଥୋପକଥନ ଓ ଭାବ ବିନିମୟ ଆରମ୍ଭ କରିଦେଲିଣି । ତେଣୁ ତାଙ୍କର ରେଜେଇ ଭିତରେ ଶୋଇ ମୁଁ କନନ୍‌ଡଏଲ୍‌ଙ୍କ ସମସ୍ତ ଶେରଲକ୍ ହୋମସ୍ କାହାଣୀ ଶୁଣି ସାରିଥିଲି । ଦଶମ ଶ୍ରେଣୀ ବେଳକୁ ମୁଁ ଗଳ୍ପ ଛଳରେ ସେକ୍ସପିୟରଙ୍କର ଚାରୋଟିଯାକ ଟ୍ରାଜେଡିର କାହାଣୀ ଶୁଣି ସାରିଥିଲି । ସେହି ବୟସରେ ମୋର କଳ୍ପନା ଜାଲ ବୁଣିବାକୁ ଆରମ୍ଭ କରିଥିଲା । ମୁଁ କଳ୍ପନା କରୁଥିଲି କିପରି ଲେଡ଼ି ମ୍ୟାକ୍‌ବେଥ୍‌ର ହତ୍ୟାଜନିତ ରକ୍ତାକ୍ତ ହସ୍ତ ଯୁଗଳ

ସପ୍ତସିନ୍ଧୁକୁ ମଧ୍ୟ ଲାଲ୍ କରିଦେବ । ସେତିକି ବେଳେ ନିରପରାଧ ଡେସଡେମୋନା ପ୍ରତି ମୋର କୋମଳ ମନ କରୁଣାସିକ୍ତ ହୋଇଉଠିଥିଲା' - ଆଃ ! ସେ କାହିଁକି ବା ନାଚୁ ନାଚୁ ତାର ରୁମାଲଖଣ୍ଡ ହଜେଇ ଦେଇ ବସିଲା !

ସେତେବେଳକୁ ମୁଁ ଇଂରାଜୀରେ ଯେପରି ପଢ଼ିସାରି ଥିଲି ଆଲିସ୍ ଇନ୍‌ୱଣ୍ଡରଲ୍ୟାଣ୍ଡ ଓ ଗଲିଭର ଟ୍ରଭଲସ୍ (ଅବଶ୍ୟ ସଂକ୍ଷିପ୍ତ ସଂସ୍କରଣ) ସେହିପରି ଓଡ଼ିଆରେ ପଢ଼ିସାରି ଥିଲି ଅଶ୍ରୁଧାରା, ତୁ ମୋ ମା, ମାଟିର ମଣିଷ, ହା ଅନ୍ନ ଏପରିକି ଲକ୍ଷ୍ମୀଧର ନାୟକଙ୍କର ସାଥୀରେ ବାହାରୁଥିବା ସବୁ ଉପନ୍ୟାସ । ଓଡ଼ିଆରେ ସେତେବେଳେ ଉପନ୍ୟାସ ଥିଲା କେତେ ଖଣ୍ଡ ବା । ମାୟାଧର ମାନସିଂହଙ୍କ ଧୂପ ଓ ସଚ୍ଚି ରାଉତରାଙ୍କ ବାଜିରାଉତ ମଧ୍ୟ ପଢ଼ି ସାରିଥିଲି । ମୁଁ ନିୟମିତ ପାଠକ ଥିଲି ଜହ୍ନମାମୁଁର ଓ ପରେ ଆରତୀ ପତ୍ରିକାର ।

ଏହିପରି ଏକ ସ୍ୱର୍ଣ୍ଣକାତର ମନ ନେଇ ମୁଁ କଲେଜକୁ ଆସିଲି ।

ଉପନ୍ୟାସ ଗଳ୍ପ ଅଧ୍ୟୟନ କରି କରି ପାଠ୍ୟ ପୁସ୍ତକକୁ ମୁଁ ଏପରି ଗୌଣ ମନେ କଲି ଯେ ସମସ୍ତ ସମ୍ଭାବନା ସତ୍ତ୍ୱେ ମୁଁ ହେଲି ଜଣେ ଦ୍ୱିତୀୟ ଶ୍ରେଣୀର ଛାତ୍ର ।

ଏତେବଡ଼ ମୁଖବନ୍ଧ ସତ୍ତ୍ୱେ ମଧ୍ୟ ମୁଁ ମୋର ବ୍ୟକ୍ତିଗତ ବିଷୟବସ୍ତୁକୁ ଆସିପାରି ନାହିଁ । ତା'ର କାରଣ ମାତ୍ର ଏତିକି ଯେ ଜଣେ ଲେଖକ ପାଇଁ ତା ଶୈଶବ ଅବସ୍ଥାରେ ହେଉ ବା ଯେ କୌଣସି ଅବସ୍ଥାରେ ପ୍ରସ୍ତୁତିର ପ୍ରୟୋଜନ ରହିଛି । ଯାହା କୁହାଯାଏ ସାଲବେଗ, ସାରଳା, ଭୀମଭୋଇ ଇତ୍ୟାଦିଙ୍କର କୌଣସି ଅଧ୍ୟୟନ ନ ଥିଲା, ଏଥିରେ ମୁଁ ବିଶ୍ୱାସ ସ୍ଥାପନ କରିପାରେ ନାହିଁ । ହେଇପାରେ ସେମାନଙ୍କର ପାରମ୍ପରିକ ଅଧ୍ୟୟନ ନଥିଲା । କିନ୍ତୁ କୌଣସି ଅଧ୍ୟୟନ ନ ଥାଇ ଶବ୍ଦ ଯୋଜନାର ଶୃଙ୍ଖଳା, ଲାଳିତ୍ୟ ଓ ଛନ୍ଦ ଚେତନା ଶୂନ୍ୟରୁ ଆସିବା ସମ୍ଭବ ନୁହେଁ ।

ପିଲାବେଳେ ସ୍ଥାନୀୟ ବ୍ଲକ ବା ସ୍କୁଲର ପାଣ୍ଡୁଲିପି ପତ୍ରିକା ପାଇଁ କ'ଣ ଲେଖାଲେଖି କରିଥିବି ତା ମୋର ପ୍ରକୃତରେ ସ୍ମରଣ ନାହିଁ । କିନ୍ତୁ ମୋର ଯେଉଁ ପ୍ରଥମ ଲେଖା 'ଶଙ୍ଖ' ପତ୍ରିକାରେ ପ୍ରକାଶ ପାଇଥିଲା ତା' ଲେଖିଥିଲି ଜିଦ୍‌ରେ । ମୋର ଜ୍ୟେଷ୍ଠଭ୍ରାତାଙ୍କର ଗୋଟିଏ ଗଳ୍ପ (ତାହା ହିଁ ତାଙ୍କର ପ୍ରଥମ ଓ ଶେଷ ଗଳ୍ପ) 'ଶଙ୍ଖ'ରେ ପ୍ରକାଶ ପାଇବା ପରେ ମୁଁ ଜିଦ୍ କରି କହିଥିଲି ଯେ ମୁଁ ଲେଖିବି ଓ ତାହା ମଧ୍ୟ ପ୍ରକାଶ ଯୋଗ୍ୟ ବିବେଚିତ ହେବ । ସତକୁ ସତ ମୋର ଅନଭ୍ୟସ୍ତ ହାତର ସେଇ ପ୍ରଥମ ଗଳ୍ପ ହିଁ ପ୍ରକାଶ ପାଇଥିଲା । ଟିକିଏ ଆତ୍ମପ୍ରତ୍ୟୟ ଆସିଥିଲା । ହଁ, ମୁଁ ଲେଖି ପାରିଲେ ବୋଧହୁଏ ପ୍ରକାଶ ପାଇବ । ତା'ପରେ କିନ୍ତୁ ଅନେକ ଦିନ ଗଳ୍ପ ଲେଖିବାକୁ ପୂରାପୂରି ଭୁଲିଯାଇଥିଲି ।

ଜେଲରେ ପ୍ରଚୁର ଅବସର ଓ ସେହି ଅବସରକୁ ବ୍ୟବହାର କରିବାକୁ ମୁଁ ଗଳ୍ପ ଲେଖିବାକୁ ଆରମ୍ଭ କରିଥିଲି ଓ ଜେଲ୍‌ରେ ଥିବା ଅବସ୍ଥାରେ ମୋର କିଛି ଗଳ୍ପ 'ସହକାର' ପତ୍ରିକାରେ ପ୍ରକାଶ ପାଇଥିଲା । ସେ ଗଳ୍ପ ଲେଖିବାରେ ଥିଲା ଅନେକଟା ଖିଆଲି ଭାବ ଓ ଆଦ୍ୟ ଯୌବନର ରୋମାଣ୍ଟିସିଜିମ୍ । ସେହି ଜରିଆରେ ମଧ ନିଜକୁ ଅନ୍ୟ ଆଗରେ ପ୍ରକାଶ କରିବାର ଯେଉଁ ଅଦମ୍ୟ ଇଚ୍ଛା ଥାଏ ତାହା ବହୁ ମାତ୍ରାରେ ସାର୍ଥକ ହୋଇଥିଲା ।

କିନ୍ତୁ ସେତେବେଳେ ମଧ ମୁଁ ବୁଝି ନ ଥିଲି ମୁଁ କାହିଁକି ଗଳ୍ପ ଲେଖେ । ମନେ ହେଉଥିଲା, ଯେପରି ସାଧାରଣ ଭାବରେ ମୁଁ ଗଳ୍ପଟିଏ ଲେଖିପାରୁଛି ତେଣୁ ତାକୁ ଆଉ ବିଶେଷ ଅନୁଶୀଳନ କରିବାର ପ୍ରୟୋଜନ ପଡି ନଥିଲା ।

କିନ୍ତୁ ଆଜି ଏ ପରିଣତ ବୟସରେ ମୁଁ ବୁଝୁଛି ଯେ ଖାଲି ଗଳ୍ପ କାହିଁକି, ଯେ କୌଣସି ସୃଜନଶୀଳ ସାହିତ୍ୟର ବିଭାଗରେ ଲେଖିବା ସମ୍ଭବ ନୁହେଁ, ଯଦି ଗଭୀର ଯନ୍ତ୍ରଣାବୋଧରେ ଛଟ୍‌ପଟ୍ ହେଇ ନିଜକୁ ପ୍ରକାଶ କରିଦେବା ପାଇଁ ରାସ୍ତା ଖୋଜେ ଓ ସେ' ଜଣକୁ ଏକୁଟିଆ କହି ନ ଦେଇ ଲେଖାର ମାଧମ ଗ୍ରହଣ କରେ ନିଜର ସେହି ଯନ୍ତ୍ରଣାଲବ୍ଧ ଆନନ୍ଦକୁ ସାର୍ବଜନୀନ କରିବା ପାଇଁ । ସେ ଯେତେବେଳେ ତା'ର ସୃଷ୍ଟି ଆରମ୍ଭ କରେ ସେତେବେଳେ ସେ ଯାଇ ବସିଯାଏ ଅନନ୍ତ ଶୟନରେ ଶାୟିତ ବିଷ୍ଣୁଙ୍କର ନାଭିକମଳରୁ ଉତ୍‌ଥିତ ଶତଦଳ ଉପରେ । ସେ ସ୍ୱୟଂ ବ୍ରହ୍ମା ! ଏକାଧାରରେ ଯନ୍ତ୍ରଣାରେ ଜର୍ଜରିତ ଓ ନିଜର ସୃଷ୍ଟିର ଆନନ୍ଦରେ ବିମୋହିତ ।

କ୍ରୌଞ୍ଚୀର ବେଦନା ନିଜ ଦେହରେ କ୍ଷରିତ ନ ହେଲେ ପୃଥିବୀରେ ଆଦିଶ୍ଲୋକର ସ୍ଫୁରଣ ସମ୍ଭବ ହୋଇନଥାନ୍ତା । ଯକ୍ଷର ବିରହରେ ପୀଡ଼ିତ ନ ହୋଇଥିଲେ 'ମେଘଦୂତ ସୃଷ୍ଟି ପରାହତ ହୋଇଥାନ୍ତା । କିଶୋର ପ୍ରେମର ମାଧୁର୍ଯ୍ୟ ଅଶେଷ ଯନ୍ତ୍ରଣାରେ ପରିଣତ ହୋଇ ନ ଥିଲେ ଓଡ଼ିଆ ସାହିତ୍ୟ ହରେଇ ଥାଆନ୍ତା ଧୂପ ଓ ଠିକ୍ ସେହିପରି ଦାସତ୍ୱ ପ୍ରଥାରେ ସ୍ରଷ୍ଟା ପୀଡ଼ିତ ହୋଇ ନଥିଲେ ବିଶ୍ୱ ସାହିତ୍ୟ ହରାଇଥାଆନ୍ତା ଅଙ୍କଲ୍ ଟମସ୍ କ୍ୟାବିନ୍ ।

କିନ୍ତୁ ମୁଁ କହୁନାହିଁ ଯେ ପୃଥିବୀରେ କତିପୟ ଲେଖକଙ୍କୁ ଛାଡ଼ିଦେଲେ ଅନ୍ୟ କୌଣସି ଲୋକର ଏଇ ଯନ୍ତ୍ରଣା ବୋଧ ନାହିଁ । ଅନେକଙ୍କର ଅଛି । କିନ୍ତୁ ସେମାନେ ସେହି ବେଦନାଟିକୁ ପ୍ରକାଶ କରି ସାର୍ବଜନୀନ କରି ପାରନ୍ତି ନାହିଁ ବୋଲି ସେମାନେ ଲେଖକ ନୁହଁନ୍ତି । ସେମାନେ କାନ୍ଦି କାନ୍ଦି ଅସ୍ଥିର ହୋଇପଡନ୍ତି - କୋହ ସମ୍ଭାଳି ପାରନ୍ତି ନାହିଁ - କେହି କେହି ଏକାଥରକେ ଚୁପ୍ ଚାପ୍ ହୋଇଯାଆନ୍ତି । ପୁଣି କେହି କେହି ଠାକୁର ଦେଉଳ କରି ଏଇ ବେଦନାକୁ ନିଷ୍କ୍ରାନ୍ତ କରିବାକୁ ଉଦ୍ୟମ କରନ୍ତି କିନ୍ତୁ ଲେଖକ

ସେହି ବେଦନାକୁ ପୁରାପୁରି ହଜମ କରି ଏକ ନିର୍ଦ୍ଦିଷ୍ଟ ଶୃଙ୍ଖଳାର ସହିତ ପ୍ରକାଶ କରିପାରେ । ତେଣୁ ସେହି ଲୋକଟିକୁ ଅନ୍ୟମାନଙ୍କଠାରୁ ଅଲଗାକରି ଚିହ୍ନିବାକୁ ତାକୁ ଡକାଯାଏ ଲେଖକ ।

ଲେଖକ ବେଦନାକୁ ଯେପରି ଅନୁଭବ କରିଛି ଠିକ୍ ସେହିପରି ପ୍ରକାଶ କରେ ନାହିଁ - କଲେ ତାହା କଳାର ସ୍ତରକୁ ଉତ୍ତୀର୍ଣ୍ଣ ହୁଅନ୍ତା ନାହିଁ । ଲେଖକ ତାକୁ ଏପରି ପ୍ରକାଶ କରେ ଯାହା ଏକ ଟ୍ରାଜେଡି ହେଲେ ମଧ୍ୟ ଆମେ ତାକୁ ପଢ଼ି ଆନନ୍ଦ ପାଇଥାଉ । ଲେଖକ ସାଧାରଣ ଦୈନନ୍ଦିନ ସୁଖ ଦୁଃଖର ସ୍ଥୂଳ ଅନୁଭୂତିକୁ ଏକ କଳାସୁଲଭ ସ୍ପର୍ଶ ଦେଇ ପାଠକର ସୂକ୍ଷ୍ମ ଅନୁଭୂତିକୁ ଆନ୍ଦୋଳିତ କରେ, ତେଣୁ ଏକ ଟ୍ରାଜେଡି ମଧ୍ୟ ହୋଇଉଠେ ଉପଭୋଗ୍ୟ ।

ମେଘାଚ୍ଛନ୍ନ ସନ୍ଧ୍ୟା ଆକାଶରେ କିଏ ନ ଦେଖିଛି ବଳକା ଦମ୍ପତିଙ୍କର ନୀଡ଼ ଉଦ୍ଦେଶ୍ୟରେ କ୍ଷୀପ୍ର ପକ୍ଷ ସଂଚାଳନ ! କିନ୍ତୁ ଯେତେବେଳେ ସେହି ଏକା ଦୃଶ୍ୟକୁ ଜଣେ ଲେଖକ ଲିପିବଦ୍ଧ କରିସାରି ଲେଖେ ଆଃ ! କି ନିଃସଙ୍ଗତା ! ସେତେବେଳେ ପାଠକ ସତକୁ ସତ ନିଃସଙ୍ଗନିଃସଙ୍ଗ ମନେକରେ ନିଜକୁ । ଲେଖକ ଓ ପାଠକ ଭିତରେ ଏହି ହେଲା ମୌଳିକ ପାର୍ଥକ୍ୟ । କିନ୍ତୁ ସ୍ମରଣ ରଖିବା ଉଚିତ୍ ଜଣେ ବିଦଗ୍ଧ ପାଠକ ଭିତରେ କିଛି ଲେଖକତ୍ୱ ଅଛି । କେବଳ ସେ ପ୍ରକାଶ କରିପାରେ ନାହିଁ । ବିଦଗ୍ଧ' ପାଠକ ଲେଖକର ଲେଖାକୁ ପଢ଼ି ପୁନଃନିର୍ମାଣ କରେ ନ ହେଲେ ସେ ରସାସ୍ୱାଦନ କରି ପାରନ୍ତା ନାହିଁ । ସେ ସେମିତି ଏକ ମେଘାଚ୍ଛନ୍ନ ସନ୍ଧ୍ୟା ତିଆରି କରେ ଓ ବଳାକା ଦମ୍ପତି ଉଡିବାର ନିଜର ମନ ଚକ୍ଷୁରେ ଦେଖେ ଓ ତା' ପରେ ନିଜକୁ ନିଃସଙ୍ଗ ମନେକରେ ।

ଏଥିପାଇଁ ଲେଖକର ଏକାନ୍ତ ପ୍ରୟୋଜନ ବିଦଗ୍ଧ ପାଠକ ନ ହେଲେ ତା'ର ଶ୍ରମ ବୃଥା ବୋଲି ବୁଝିବାକୁ ହେବ । ସେଥିପାଇଁ ବିଭିନ୍ନ ସ୍ତରର ପାଠକମାନେ ଥାଆନ୍ତି । ସେଥିପାଇଁ କିଛି ବିଚିତ୍ର ନୁହଁ ଯେ ଅନେକ ସାର୍ତ୍ରେ ଓ କାମ୍ୟୁ, ଜେମସ୍ ଜୟେସ ବା ଭର୍ଜିନିଆ ଉଲଫ୍‌ଙ୍କୁ ବୁଝି ପାରନ୍ତି ନାହିଁ । ସେଥିପାଇଁ ବୁଝି ପାରନ୍ତି ନାହିଁ କବିସୂର୍ଯ୍ୟ ବା ଉପେନ୍ଦ୍ର ଭଞ୍ଜଙ୍କୁ । ଯେଉଁଥିପାଇଁ ପାଲାବାଲା ମାନଙ୍କର ପ୍ରୟୋଜନ ଅବଶ୍ୟମ୍ଭାବୀ ହୋଇପଡ଼େ ।

ତେଣୁ ଲେଖକ ପ୍ରଥମେ ତା'ର ପାଠକମାନଙ୍କର ସ୍ତର ନିର୍ଦ୍ଧାରଣ କରିବା ଉଚିତ୍ । ପୃଥିବୀର କୌଣସି ଲେଖକ ସବୁ ସ୍ତରର ପାଠକ ମାନଙ୍କୁ ସନ୍ତୁଷ୍ଟ କରିବା ସମ୍ଭବ ନୁହେଁ । ସେହି ଲେଖକମାନଙ୍କର ଲେଖାକୁ ବିଷୟବସ୍ତୁ ଦୃଷ୍ଟିରୁ, ଶୈଳୀର ଚମତ୍କାରିତା ଦୃଷ୍ଟିରୁ କୌଣସି କୌଣସି ପାଠକ ମାନଙ୍କ ପକ୍ଷରେ ପୁନଃନିର୍ମାଣ କରିବା ସମ୍ଭବ ନୁହେଁ ।

ପୂର୍ବରୁ ମୋର ଲେଖିବା ଆରମ୍ଭ କରିବା, ମାନସିକ ପ୍ରସ୍ତୁତି କଥା ଉଲ୍ଲେଖ କରିବାର ଉଦ୍ଦେଶ୍ୟ ଏହି ଯେ, ମୁଁ ଯଦି ଆଜି ଲେଖୁଥାଏ ତାହାହେଲେ ମୋର ସେହି ପ୍ରସ୍ତୁତି ମାନସିକ ପୃଷ୍ଠଭୂମି ଯୋଗୁଁ ମୁଁ ଜଣେ ବିଦଗ୍ଧ ପାଠକ । ତେଣୁ ବହୁ ଉନ୍ନତ ସାହିତ୍ୟର ସ୍ୱାଦ ମୋ ଭିତର ଲେଖକଟିକୁ ପଦାକୁ ନେଇ ଆସିଛି । ଶୈଶବରେ ବା ଆଦ୍ୟ ଯୌବନରେ ସାହିତ୍ୟରେ ମାଲ୍‌ବେରୀ ପତର ଖାଇ ଖାଇ ଯେଉଁ ସାଁବାଳୁଆଟି ଖୋସା ବାନ୍ଧିଥିଲା ତାହା ହୁଏତ ଅକସ୍ମାତ ଖୋସାକାଟି ପ୍ରଜାପତି ହୋଇ ଉଡିଯାଇଛି ।

ସେଦିନ ସମ୍ବାଦ ପତ୍ରର ଗୋଟିଏ ଛୋଟ ଖବର । ଭେନ୍‌କୁଆଲା ପାଖରେ ଗୋଟିଏ ପାନ୍‌ଆମ୍ ବିମାନ ଖସିପଡ଼ି ତାହାର ସମସ୍ତ ଯାତ୍ରୀ ମୃତ୍ୟୁ ମୁଖରେ ପଡ଼ିଛନ୍ତି ।

ଏହି ସମ୍ବାଦ ପଢ଼ିଲାବେଳେ ମୁଁ ହାଁ କରି କାନ୍ଦିଉଠେ ନାହିଁ ବା ଯନ୍ତ୍ରଣାରେ ମୋର ମୁଖ୍ ବିକୃତ ହୋଇଯାଏ ନାହିଁ । କିନ୍ତୁ ନିଃଶବ୍ଦରେ ମୋର ଭିତରେ ଟାଇମ୍ ବୋମାର ଘଣ୍ଟା ଟିକ୍ ଟିକ୍ ହେଇ ଚାଲିବାକୁ ଆରମ୍ଭ କରିଦେଇଥାଏ । ସେହି ଯାତ୍ରୀମାନଙ୍କ ଭିତରେ କିଛି ଶିଶୁ ଥିବେ । ସେମାନେ କି ପାପ କରିଥିଲେ ? ନା ପାପ ପୁଣ୍ୟ ବୋଲିକି କିଛି ନାହିଁ ନା ମୃତ୍ୟୁ ବୋଧହୁଏ ବାଛ ବିଚାର କରେ ନାହିଁ । ଟାଇମ୍‌ବମ୍‌ର ଘଣ୍ଟା ଚାଲିଛି ଟିକ୍‌ଟିକ୍ ହୋଇ । ଏପରିକି ମୋର ଅଜ୍ଞାତ ସାରରେ । ଦିନେ ଦିନେ ବିମାନରେ ଯାଉଥିଲା ବେଳେ ଗୋଟିଏ ଶିଶୁକୁ ଦେଖେ ଯିଏ ଆଏଲ୍‌ରେ ଖେଳୁଛି । ଯନ୍ତ୍ରଣା ବଢ଼େ, ବୋମା ଫୁଟିବାକୁ ଆଉ ଅଳ୍ପ ସମୟ । ତେଣୁ ଗନ୍ତବ୍ୟ ସ୍ଥାନରେ ପହଞ୍ଚି ପ୍ରଥମେ ଏଇ ଲେଖାଟିକୁ ଆରମ୍ଭ କରିବାକୁ ପଡେ ନ ହେଲେ ଉପାୟ ନାହିଁ, ଏଇ ଜରୁରୀ ଅବସ୍ଥା ହେଲା ଲେଖାର ସମୟ । ମୁଁ ଲେଖେ କାରଣ ତାହା ଜରୁରୀ ।

ଲେଖେ, କାରଣ ନିଜକୁ ପ୍ରକାଶ କରିବାରେ ଏକ ଗଭୀର ଆତ୍ମତୃପ୍ତି ଥାଏ । ମୁଁ ଯେ ପ୍ରକାଶ କରି ପାରୁଛି ଏହା ବୋଧହୁଏ ଆଜି ଯାଏ ମୋ ପାଇଁ ଏକ ଗଭୀର ଆନନ୍ଦଦାୟକ ବିସ୍ମୟ । ଜୈବିକ ସ୍ତରରେ ବିବାହ ପରେ ଯେପରି ସେମାନଙ୍କର ସନ୍ତାନକୁ ଗଭୀର ଉତ୍କଣ୍ଠାର ସହିତ ଅପେକ୍ଷା କରି ରହନ୍ତି । କେବଳ ନିରପେକ୍ଷ ପ୍ରକାଶ ନୁହେଁ-ପ୍ରକାଶ କରିବାରେ ସମଧର୍ମୀମାନଙ୍କର ସହିତ ଭାବ ବିନୟ କରିହୁଏ । ତାହା ଅନ୍ୟ ଏକ ଆତ୍ମସନ୍ତୋଷ ମୋର ମନେହୁଏ ମୋର ପାଠକମାନଙ୍କୁ ମୁଁ ପ୍ରଭାବିତ କରିପାରିଛି । ମୁଁ ଠିକ୍ ଯେପରି ଅନୁଭୂତି ଆଣିବାକୁ ଚାହିଁଛି ତାହା ମୁଁ କରିପାରିଛି ଶବ୍ଦ ଜରିଆରେ ସେମାନଙ୍କୁ ଆବେଶ କରି । ସେମାନେ ମୋର ଦିଗ୍‌ବିଜୟର ବଶୀଭୂତ ପ୍ରଜାକୁଳ ଯେଉଁମାନଙ୍କ ପକ୍ଷରେ ମୋର ଆଦେଶ ଲଂଘିତ କରିବା ସାଧ୍ୟାତୀତ, ତେଣୁ ମୁଁ ଲେଖେ ।

ବେଳେ ବେଳେ ଲେଖକ ଅନୁଭବ କରେ ତାର କିଛି ବକ୍ତବ୍ୟ ଅଛି । କାହିଁକି ସେହି ପିତାର ଦୁଇଟି ଯାକ ପୁଅ ଜଣକ ପରେ ଆଉ ଜଣେ ବିମାନ ଦୁର୍ଘଟଣାରେ

ମରିଗଲେ ? କାହିଁକି ସେ ମା ତା' ପୁଅକୁ ଖାଇବାକୁ ଦେଇ ନ ପାରି ଆତ୍ମହତ୍ୟା କଲା ? କାହିଁକି ସେଠି ସୁନ୍ଦର ଚଢ଼େଇମାନେ ବର୍ଷକୁ ଥରେ ଏକତ୍ରିତ ହୋଇ ଗଣ-ଆତ୍ମହତ୍ୟା କରନ୍ତି ? କାହିଁକି ଧେନୁମାନେ ପଡ଼ିଆରେ ଘାସ ଚରିବା ଛାଡ଼ିଦେଇ ଠିଆହୋଇ ରହିଛନ୍ତି ? କୃଷ୍ଣ କ'ଣ ମଥୁରାକୁ ଚାଲିଗଲେ ?

ମନର ଦର୍ପଣ ପରିଷ୍କାର ରଖିଥିଲେ ଏହିପରି ଅସଂଖ୍ୟ ପ୍ରଶ୍ନ ମନକୁ ଆସେ । ସେ ପ୍ରଶ୍ନ ସମସ୍ତଙ୍କୁ ପଚାରିବାକୁ ଇଚ୍ଛାହୁଏ । ଏପରିକି ଭଗବାନଙ୍କୁ ମଧ୍ୟ । ଏଇ ଚିରନ୍ତନ ଜିଜ୍ଞାସା ବା ତା'ର ସମ୍ଭାବ୍ୟ ଉତ୍ତର ସଂପର୍କରେ ଲୋକମାନଙ୍କ ସହିତ ଯୋଗାଯୋଗ ସ୍ଥାପନ କରିବାକୁ ଇଚ୍ଛା ହୁଏ । ତେଣୁ ଲେଖକ ଲେଖେ ଓ ମୁଁ ମଧ୍ୟ ଲେଖେ ।

ଅନ୍ୟ କାରଣଟି ଓ ଶେଷ କାରଣଟି ହେଲା ମୁଁ ଓ ମୋ'ର ପାଠକମାନେ ସମସ୍ତେ ସାମାଜିକ ଜୀବ । ତେଣୁ ମୁଁ ଯାହା କୁହେ ଓ ପାଠକ ମାନଙ୍କୁ ପ୍ରେରଣା ଦିଏ ସେଥିରେ ମୋର ଏକ ସାମାଜିକ ଦାୟିତ୍ୱ ଅଛି । ଲେଖିବା ଅର୍ଥ ଦାୟିତ୍ୱ ଗ୍ରହଣ କରିବା । ତେଣୁ ମୁଁ ଲେଖେ କାରଣ ମୁଁ ପ୍ରତିଟି ଲେଖାରେ Fact to art କରି ଚାଲିଛି ଓ ସାହିତ୍ୟ ମୂଲ୍ୟବୋଧ ତିଆରି କରି ଚାଲିଛି । ଓଡ଼ିଆ ଭାଷା ପ୍ରତି ଓ ସାହିତ୍ୟ ପ୍ରତି ମୋର କର୍ତ୍ତବ୍ୟ ତ ରହିଛି ! ତେଣୁ ମୁଁ ଲେଖେ ।

**ଅଖିଳ ମୋହନ ପଟ୍ଟନାୟକ**

# ଚନ୍ଦ୍ରର ଅଭିଶାପ

ଦଶ ବର୍ଷ ଅତିକ୍ରାନ୍ତ ହୋଇ ଯାଇଛି ।

ସରୋଜ ଆଉ ସୀମାଦ୍ରି ପରସ୍ପର ଅନ୍ତରଙ୍ଗ ବନ୍ଧୁ ଥିଲେ । ସେମାନେ ଥିଲେ ସିଟି କଲେଜର ଥାର୍ଡ଼ ଇୟର୍‌ର ଛାତ୍ର । ସୀମାଦ୍ରି ଥିଲା ଆର୍ଟିଷ୍ଟ । ସେ ଛବି ଆଙ୍କେ ନାହିଁ ବା ଶୋଇ ଶୋଇ ଜ୍ୟୋସ୍ନା ବସନ୍ତ ବା ଗୋଲାପ ଫୁଲ ମାର୍କା କବିତା ଲେଖେ ନାହିଁ । ସେ କହେ, ଜୀବନଟାକୁ ବଞ୍ଚିବା ହିଁ ସବୁଠାରୁ ବଡ଼ ଆର୍ଟ । ଆଉ ଯେ ଜୀବନଟାକୁ ପ୍ରତିଦିନ ନିତ୍ୟ ନୂତନ କରି ବଞ୍ଚି ପାରିଲା ତା'ଠାରୁ ବଡ଼ ଆର୍ଟିଷ୍ଟ ଆଉ କେହି ନାହିଁ । ସେଥିପାଇଁ ସେ ଚେଷ୍ଟରଟନ୍‌ଙ୍କ ଅପେକ୍ଷା ତାଙ୍କର 'ଅଜବ-ଜୀବିକା'ର ଚରିତ୍ର ହବାକୁ ବେଶୀ ପସନ୍ଦ କରେ । ସେ ମମ୍‌ଙ୍କ ପରି ପୃଥିବୀ ପ୍ରସିଦ୍ଧ ହବାକୁ ଚାହେଁ ନାହିଁ । ତାଙ୍କରି ସୃଷ୍ଟ 'ଷ୍ଟିକ୍‌ଲାଣ୍ଡ' ଚରିତ୍ର ପରି କେଉଁ ଅଜ୍ଞାତ ଗିରି ଗହ୍ୱରରେ ଦୁରାରୋଗ୍ୟ ବ୍ୟାଧିରେ ତିଳ ତିଳ ହୋଇ ମରିବାକୁ ଚାହେଁ । ସୀମାଦ୍ରି ଅନାବିଳ ଆର୍ଟିଷ୍ଟ ଏବଂ ରୋମାଣ୍ଟିସିଜିମ୍ ତା'ର ଏକ ସହଜାତ ପ୍ରବୃତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ସରୋଜ ପୂରାପୂରି 'ସିନିକ୍' । ଦୁନିଆଟାରେ ଯେ କିଛି ଗୋଟାଏ ହବ ବା' ମଣିଷ ଜୀବନ ନେଇ ଯେ ପ୍ରକୃତରେ କିଛି ଗୋଟାଏ ଲାଭଜନକ ଜିନିଷ କରାଯାଇ ପାରିବ ଏ କଥା ସେ ଆଦୌ ବିଶ୍ୱାସ କରେ ନାହିଁ । ସେ ଯଥାର୍ଥରେ ସୀମାଦ୍ରିର କାଉଣ୍ଟର ପାର୍ଟ—ଆଉ ସେଥିପାଇଁ ବୋଧହୁଏ ସେମାନେ ପରସ୍ପରର ଏତେ ନିକଟକୁ ଆସି ପାରିଥିଲେ ।

ସହରର କୋଳାହଳ ସେମାନଙ୍କୁ ବିଶେଷ ଆକୃଷ୍ଟ କରିପାରେ ନାହିଁ । ପ୍ରତିଦିନ ସଂଧ୍ୟାରେ ଦୁଇ ବନ୍ଧୁ ବୁଲି ଯାଆନ୍ତି କେନାଲ୍ ଆଡ଼େ । ସହରର ଉପକଣ୍ଠରେ ଏଇ କେନାଲ୍‌ଟି କିଛି ବାଟ ବହିଯାଇ ହଠାତ୍ ମୋଡ଼ ଭାଙ୍ଗି କୁଆଡ଼େ ଅଦୃଶ୍ୟ ହୋଇଯାଇଛି । ପ୍ରତିଦିନ ବୁଲି ଯାଉ ଯାଉ ସେମାନେ ସେଠି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ଆବିଷ୍କାର କରିଛନ୍ତି । ସ୍ଥାନଟି ଅଳ୍ପ କେଇଟି ବଡ଼ ବଡ଼ ଗଛର ଆଢୁଆଳରେ ଅପେକ୍ଷାକୃତ ନିର୍ଜନ । ଠିକ୍ ପାଣି କୂଳରେ କିଛି ପରିମିତ ସ୍ଥାନରେ ବାଲି ଜମି ଯାଇଛି ଆଉ ତା'ରି ଉପରେ ଗୋଟାଏ ପଥରର ଖୁଣ୍ଟି କାହିଁ କୋଉ କାଳରୁ ଠିଆ ହୋଇ ରହିଛି ପାଣି ପବନର ଅତ୍ୟାଚାର ସହ୍ୟ କରି କରି । ସେ'ଟା ବୋଧହୁଏ ଗୋଟାଏ ପୁରାତନ ଜୀର୍ଣ୍ଣ ଚଉରା, ଆଉ ସେମାନେ ଯେଉଁଠାରେ ବସନ୍ତି ସେଟା ବୋଧହୁଏ ଗୋଟାଏ ପରିତ୍ୟକ୍ତ ଗାଧୁଆ ତୁଠ । କାଳକ୍ରମେ ଗୋଟିକର ବ୍ୟବହାର ଅଭାବରୁ ଅନ୍ୟଟି ପଙ୍କୁ

ହୋଇ ପଡ଼ିଛି । ଚନ୍ଦ୍ରପକ୍ଷରେ ସ୍ଥାନଟି ବେଶ୍ ରୋମାଣ୍ଟିକ୍ ହୋଇ ଉଠେ । ସୀମାଦ୍ରି କୁହେ, ''ଏଇ ଜାଗାକୁ ଆସିଲେ ମୋର ମନେ ହୁଏ ସେକ୍‌ସପିଅର୍‌ଙ୍କର 'ମିଡ୍ ସମର୍ ନାଇଟ୍‌ସ୍ ଡ୍ରିମ୍'ର ପରୀମାନେ ବୋଧହୁଏ ନିଶାର୍ଦ୍ଧରେ ଏଇଠି ଓହ୍ଲେଇ ଆସି ହାତ ଧରାଧରି ହୋଇ ନାଚନ୍ତି ଜହ୍ନ ଆଲୁଅରେ । ସରୋଜ ଶ୍ଳେଷ ମିଶାଇ କୁହେ, ''ତୁ ତ ଜାଣୁ ସେକ୍‌ସପିଅର୍ ବୋଲି କେହି ଜଣେ ଲୋକ ଥିଲେ କି ନାହିଁ ସେଇଟା ଆଜି ୟୁରୋପୀୟ ସାହିତ୍ୟିକମାନଙ୍କର ଏକ ଚରମ ଦ୍ୱନ୍ଦ୍ୱମୂଳକ ସମସ୍ୟା, ଶେଷରେ ପୁଣି ତାଙ୍କର ଲେଖାର ପରୀମାନଙ୍କର ଅସ୍ତିତ୍ୱ—ଆଉ ପୁଣି ଏଇ କେନାଲ କୂଳରେ ।

ସୀମାଦ୍ରିର ଯେ ଠିକ୍ ଏଇ ଜାଗାରେ ଧୈର୍ଯ୍ୟଚ୍ୟୁତି ହେବ ସେ କଥା ସରୋଜ ବେଶ୍ ଜାଣେ । ସୀମାଦ୍ରି ଚିତ୍କାର କରି ଉଠେ, ''କେତେଥର କହିଛି ତତେ, ଆମେ ଯାହା ଜାଣୁ ନାଁ ସେ'ଟା ଯେ ପୃଥିବୀରେ ନାହିଁ ବା ଥାଇ ନ ପାରେ ଏକଥା ଭାବିବା ଠାରୁ ଚରମ ନିର୍ବୋଧତା ଆଉ କିଛି ନାହିଁ । ଇମାଜିନ୍—ପଞ୍ଚଦଶ ଶତାବ୍ଦୀରେ ଯଦି ତୋ' ପରି ଗୋଟାଏ ମୂର୍ଖ ଉଡ଼ାଜାହାଜର ଧାରଣାଟାକୁ ହସି ହସି ଉଡ଼େଇ ଦେଇ ଥାଆନ୍ତା ତାହାହେଲେ ସେ ହୁଏତ ଏତେଦିନ ବଞ୍ଚି ପାରନ୍ତା ନାହିଁ—କିନ୍ତୁ ଯଦି ବଞ୍ଚନ୍ତା ତାହାହେଲେ ସେ ଅବା ଉପଲବ୍‌ଧି କରନ୍ତା ତା'ର ନିର୍ବୋଧତା ।''

ଆଉ କିଛି ଦରକାର ନାହିଁ । ଯେ କୌଣସି ଗୋଟାଏ ଟପିକ୍ ହାତକୁ ଆସିଗଲେ ସମୟଟା ଚମତ୍କାର କଟେ । ଯୁକ୍ତିର କ୍ଲାଇମାକ୍‌ସରେ ସୀମାଦ୍ରି ତା' ହାତର ଚାବି ପେଣ୍ଡାଟାକୁ ଫିଙ୍ଗିଦିଏ ଦୂରକୁ । ନ ହେଲେ ପୂରା ସିଗାରେଟ୍ ପ୍ୟାକେଟ୍‌ଟାକୁ ଦଳାଦଳି କରି ଫିଙ୍ଗିଦିଏ କେନାଲ୍ ପାଣିକୁ । ଯେମିତି ଏଇ ସିଗାରେଟ୍ ଆଉ ଚାବି ପ୍ରଭୃତି ପଦାର୍ଥମାନେ ତା' ବିରୁଦ୍ଧରେ ଷଡ଼ଯନ୍ତ୍ର କରି ସରୋଜର ଯୁକ୍ତିକୁ ସମର୍ଥନ କରୁଛନ୍ତି । ସମୟ ହୋଇଗଲେ କେହି ହେଲେ ଜଣେ ଅନିବାର୍ଯ୍ୟ ସନ୍ଧି ସର୍ତ୍ତ ବାଢ଼ି ବସେ । ଆଚ୍ଛା ହଉ, "Let us agree to differ"—ଦୁଇଜଣ କ୍ଲାନ୍ତ—ବିମର୍ଷ—ଗଳଦ୍‌ଘର୍ମ ବନ୍ଧୁ ସନ୍ଧିପତ୍ରରେ ଅବିଳମ୍ବେ ସ୍ୱାକ୍ଷର କରନ୍ତି ।

ପୂଜାଛୁଟି ପରେ କଲେଜ୍ ଖୋଲିଥାଏ । ସରୋଜ ନାଇଟ୍ ଏକ୍‌ସପ୍ରେସ୍‌ରୁ ଓହ୍ଲେଇ ହଷ୍ଟେଲକୁ ଆସି ଦେଖେ ସୀମାଦ୍ରି ଆସିଗଲାଣି । ତା'ର ଜିନିଷପତ୍ର ସବୁ ଥୁଆ ହୋଇଛି ରୁମ୍‌ରେ—ଅଥଚ ସୀମାଦ୍ରି ନାହିଁ । କିନ୍ତୁ ସେକେଣ୍ଡ ସୋ ସିନେମା ତ ସରିଯିବଣି ଅନେକ ବେଳୁ । ସୀମାଦ୍ରି ଗଲା କୁଆଡ଼େ ? ସରୋଜ ଅନିବାର୍ଯ୍ୟ ସିଦ୍ଧାନ୍ତରେ ପହଞ୍ଚି କେନାଲ୍ କୂଳକୁ ଚାଲେ । କେନାଲ୍ କୂଳରେ ଆସି ସରୋଜ ଦେଖେ ତା'ର ଅନୁମାନ ନିର୍ଭୁଲ୍—ନିଶ୍ଚିତ ଭାବରେ ସେଠି ଶୋଇ ରହିଛି ସୀମାଦ୍ରି । ପ୍ରଥମଟା ଟିକିଏ ଅସ୍ୱସ୍ତିକର ମନେହୁଏ ସରୋଜକୁ । ସ୍ଥାନଟାର ନିର୍ଜନ ପରିବେଶ ଯେ କେହି ଏକୁଟିଆ ଲୋକ ମନରେ ଭୟ ସଞ୍ଚାର କରିବା ସ୍ୱାଭାବିକ । ଏତେ ରାତିରେ ଏଠି

କ'ଣ କରୁଚି ସୀମାଦ୍ରି ଏକୁଟିଆ ? ବିସ୍ମୟର ସୀମା ରହେ ନାହିଁ ସରୋଜର, ପାଖକୁ ଯାଇ ଦେଖେ ସୀମାଦ୍ରି କିନ୍ତୁ ଭୟ ପାଇବା ଅବସ୍ଥାରେ ନାହିଁ ଆଦୌ । ନିଶ୍ଚିନ୍ତ ନିଦ୍ରା ଯାଇଛି ସେ । ଆଶ୍ଚର୍ଯ୍ୟ ! ତା' ପାଖକୁ ଯାଇ ପ୍ରଥମେ କେତେଥର ଡାକିଲା ତାକୁ ସରୋଜ । କିନ୍ତୁ ସୀମାଦ୍ରି ଶୁଣେ ନାଁ । ଅଗତ୍ୟା ତା' ଦେହରେ ହାତଦେଇ ଥରେ ଦୁଇଥର ଜୋର୍‌ରେ ହଲେଇ ଦେଲା ସେ ।

କିନ୍ତୁ ତା'ପରେ ଯାହା ଘଟିଲା ସେଥିପାଇଁ ସରୋଜ ପ୍ରସ୍ତୁତ ନ ଥିଲା ଆଦୌ । ଗୋଟିଏ ଲମ୍ଫରେ ସୀମାଦ୍ରି ଉଠିପଡ଼ି ଡେଇଁପଡ଼େ କିଛି ଦୂରକୁ ଆଉ ସେଠି ଠିଆ ହୋଇ ରହି ସେ କିଛି ସମୟ ନିଷ୍ପନ୍ଦ ଭାବରେ ଚାହିଁ ରହେ ସରୋଜକୁ । ଆଉ ଠିକ୍ ତା' ପରେ ପରେ ଚିତ୍କାର କରି ଉଠେ, ''କିଏ ? କିଏ ତମେ ?'' ସୀମାଦ୍ରିର କଣ୍ଠ ଭୟବିଜଡ଼ିତ । ଖୁବ୍ ଭୟ ପାଇ ଯାଇଛି ସେ । ଆଉ କେଉଁଦିନ ହୋଇଥିଲେ ହୁଏତ ସରୋଜ ସୀମାଦ୍ରିର ଏଇ ଅବସ୍ଥାର ସୁଯୋଗ ନେଇ ଟିକିଏ କୌତୁକ କରି ଥାଆନ୍ତା । କିନ୍ତୁ ସୀମାଦ୍ରିର ଏ ଅବସ୍ଥାରେ ସରୋଜ ନିଜେ ଅନେକଟା ଆତଙ୍କିତ ହୋଇ ପଡ଼ିଲା । ମୁହୂର୍ତ୍ତେ ବିଳମ୍ବ ନ କରି ''ଆରେ ମୁଁ ସରୋଜ, ମୁଁ ସରୋଜ'' କହି ସେ ଆଗେଇଗଲା ସୀମାଦ୍ରି ଆଡ଼କୁ । କିଛି ସମୟ ପାଇଁ ନିର୍ବାକ୍ ହୋଇ ଠିଆହୋଇ ରହିଲା ସୀମାଦ୍ରି । ତା'ଦେହରୁ ଗମ୍ ଗମ୍ ହୋଇ ଝାଳ ବୋହିଯାଉଛି । ସରୋଜ ଅପରାଧୀ ପରି କୁହେ, ''ତୁ ଏତେ ଭୟ ପାଇଯିବୁ ବୋଲି ମୁଁ ମୋଟେ ଜାଣିନାହିଁ ସୀମାଦ୍ରି ।''

ସୀମାଦ୍ରି ଆଉଥରେ ଆପାଦମସ୍ତକ ଚାହିଁନିଏ ସରୋଜକୁ ଆଉ ତା' ପରେ ନିଜର ହାତଘଡ଼ିକୁ ଦେଖି କୁହେ, ''ମୁଁ କେତେବେଳେ ଯେ ଶୋଇପଡ଼ିଲି ମୁଁ ନିଜେଇ ଜାଣେନାଁ । ଏତେ ରାତି ହେଲାଣି ଅଥଚ ମତେ ଆଗରୁ ଉଠେଇ ଦେଲୁ ନାହିଁ କାହିଁକି କହିଲୁ ?''

ତା'ପରେ ସରୋଜ କୁହେ ଯେ ସେ ମାତ୍ର କେଇ ମିନିଟ୍ ତଳେ ତା'କୁ ଖୋଜି ଖୋଜି ଆସି ଏଠି ପହଞ୍ଚେ । ସେ ବା କାହିଁକି ଆଶା କରନ୍ତା ଏତେ ରାତିରେ ସୀମାଦ୍ରି ଶୋଇ ରହିଛି ଏଠି ।

ସୀମାଦ୍ରି ଆହୁରି ବିସ୍ମିତ ହୁଏ । ସନ୍ଦିଗ୍ଧ କଣ୍ଠରେ ପଚାରେ, ''ତୁ ସତ କହୁଚୁ ସରୋଜ ତୁ ମୋ' ସହିତ ଏଠିକି ଆସି ନାହୁଁ ।''

ସରୋଜ ସାମାନ୍ୟ ଆମୋଦିତ ହୁଏ ଏଥର । ସେ କୁହେ, ''ନାଇଟ୍ ମେଲ୍‌ରେ ରାତି ଦୁଇଟା ପର୍ଯ୍ୟନ୍ତ ଅନିଦ୍ରାରେ କଟେଇ ଏତେବେଳେ କେନାଲ୍ କୂଳକୁ ଆସିବାର ଉତ୍କଟ ରସିକତା ମୋର ନାହିଁ ।'' ସୀମାଦ୍ରି ନୀରବରେ ଫେରିବାକୁ ପାଦ ବଢ଼ାଏ । ଚାଲୁ ଚାଲୁ ସେ କୁହେ, ମୁଁ ମଧ ଆସି ଆଜି ଜନତାରେ ପହଞ୍ଚିଲି ସଂଧ୍ୟା ୬ଟା

ବେଳେ । ବେଶ୍ କ୍ଳାନ୍ତ ହୋଇ ପଡ଼ିଥିଲି ମୁଁ—ବିଶ୍ରାମ ନବା ପାଇଁ ବିଛଣାଟାକୁ ମେଲେଇଦେଇ ଖଟ ଉପରେ ପଡ଼ିଗଲି ।

ତା'ର ଅଳ୍ପ ସମୟ ପରେ—ମୋର ସ୍ପଷ୍ଟ ସ୍ମରଣ ଅଛି—ତୁ' ବି ଆସି ପହଞ୍ଚିଲୁ ତୋ'ର ସେଇ ଛିଣ୍ଡା ଚମଡ଼ା ସୁଟ୍‌କେଶ ଆଉ ହୋଲ୍‌ଡ଼ୁର ଖଣ୍ଡକ ନେଇ ଠିକ୍ ସେମିତି ବେପରଓ୍ୱା ଭାବରେ । କହିଲୁ, ''ଗୁଡ୍ ଇଭିନିଂ ସୀମାଦ୍ରି, ତୁ ଆସିଯାଇଛୁ ତାହାହେଲେ—ଦ୍ୟାଟ୍‌ସ ଲାଇକ୍ ଏ ଗୁଡ୍ ବୟ୍ ।'' ମୁଁ କ'ଣ ଜବାବ୍ ଦେଇଛି ମୋର ମନେ ନାହିଁ—ତା'ପରେ ତୁ ଖୁବ୍ ବ୍ୟସ୍ତ ହୋଇ ପଡ଼ିଲୁ ଆଉ କହିଲୁ—''କ'ଣ ହେଇଛି ତୋ'ର ସୀମାଦ୍ରି—ଆଇ ହ୍ୟାଭ ନେଭର୍ ସିନ୍ ୟୁ ସୋ' ଭେରି ମୁଡ଼୍‌ଡ଼ି ।'' ମୁଁ ବୋଧହୁଏ ତଥାପି କିଛି ଜବାବ୍ ଦେଇ ନାହିଁ । ତା'ପରେ ତୁ ତୋ'ର ପୋଷାକ ମଧ୍ୟ ଚେଞ୍ଜ୍ ନ କରି ମୋର ହାତ ଧରି ଗୋଟାଏ ଝିଙ୍କରେ ମତେ ଉଠେଇ ଦେଲୁ ଖଟ ଉପରୁ ଆଉ କହିଲୁ, ''ଚାଲ୍, ଚାଲ୍—ଆମର କୁରୁକ୍ଷେତ୍ରକୁ ଚାଲ୍—ଅନେକଦିନ ଯାଇନେ ସେଠିକି—ସେଇଠି ସବୁ ସମାଧାନ ହୋଇଯିବ । —ଇସ୍ ! କି ବାଜେ ପିଲା ହୋଇଯାଇଚୁ ତୁ ଏଇ କେଇଟା ଦିନର ଛୁଟି ଭିତରେ । ଛିଃ—ଛିଃ... ।''

ତା'ପରେ ଆମେ ଦିହେଁ ବାହାରକୁ ଆସିଛେ ଆଉ ଆମର ପୂର୍ବପରିଚିତ ରାସ୍ତା ଦେଇ ଆମେ ଆସିଚୁ ଏଇଠିକି ।

ମୋର ଠିକ୍ ମନେ ଅଛି ମୁଁ ଏଠି ବସି ବସି ତତେ 'ରିତା' କଥା କହୁଥିଲି ପ୍ରଥମଥର ପାଇଁ । ମୁଁ କେମିତି ରିତା ପ୍ରତି ଅତ୍ୟନ୍ତ ଅସହାୟ ଭାବରେ ଆକୃଷ୍ଟ ହେଇପଡ଼ିଛି ଅଥଚ ମୁହଁ ଖୋଲି ରିତାକୁ ନିବେଦନ କରିବାର ସାହସ ମୋର ନାହିଁ ।

ତୋ' ମୁହଁ ଏକାଥରକେ ଚାପାହସରେ ଫାଟି ପଡୁଥାଏ । ମୋର ପିଠି ବାଡ଼େଇ କହିଲୁ, ''ସେକଥା କହ । ଏଇ ଛୁଟିଟାର ବିରହରେ ୟଂ ଲକିନ୍‌ଭାର୍ ଏକାଥରକେ ଭାଙ୍ଗି ପଡ଼ିଛନ୍ତି । ତା'ପରେ ହଠାତ୍ ଗମ୍ଭୀର ହୋଇଯାଇ ତୁ କହିଲୁ—''ଆଜି କିନ୍ତୁ ମୁଁ ପ୍ରଥମ ଜାଣିଲି ସୀମାଦ୍ରି ତୋ'ର ଅନେକ କଥା ଅଛି ଯାହା ତୁ ମୋର ଜାଣିବା ପ୍ରୟୋଜନ ମନେ କରି ନାହୁଁ ।''

ତା'ପରେ ମୁଁ ଆଉ କିଛି ମନେ କରି ପାରୁ ନାହିଁ । ମୁଁ ଜାଣେନା ମୁଁ କେତେବେଳେ ଶୋଇ ପଡ଼ିଛି । ମୁଁ ଧୀରେ ଧୀରେ ସବୁ ଭୁଲି ଯାଇଛି । ଆଉ ହଠାତ୍ ନିଜକୁ ଏଠି ଆବିଷ୍କାର କରି ମୁଁ ସତରେ ଭୟ ପାଇ ଯାଇଥିଲି ।

ସରୋଜ ଚୁପ୍‌ଚାପ୍ ସବୁ ଶୁଣିଯାଉଥାଏ । ଶେଷରେ କହିଲା, ''ତୁ ତାହାହେଲେ କ'ଣ କହିବାକୁ ଚାହୁଁ ହଷ୍ଟେଲ୍‌ରୁ କେନାଲ୍ କୂଳ ପର୍ଯ୍ୟନ୍ତ ଏଇ ଅଧମାଇଲ୍ ରାସ୍ତା ତୁ' ଚାଲି ଆସିଚୁ ତୋ'ର ଅଜ୍ଞାତରେ ସମ୍ପୂର୍ଣ୍ଣ ନିଦ୍ରିତ ଅବସ୍ଥାରେ ?''

ସୀମାଦ୍ରି ଛୋଟ 'ହୁଁ' ଟିଏ କହି ନୀରବ ହୁଏ ।

ସରୋଜ କହେ, ''କିନ୍ତୁ.....''

ସୀମାଦ୍ରି କୁହେ—ଏଠି କିନ୍ତୁର ପ୍ରଶ୍ନ ନାହିଁ ସରୋଜ—ଏଇଟା ଠିକ୍ ସେଇ ଜିନିଷ ଯାହାକୁ ମେଡ଼ିକାଲ୍ ସାଇନ୍‌ସରେ କୁହନ୍ତି ''ସୋମ୍ନାମ୍ବୁଲିଜିମ୍'' ।

ଗୋଟାଏ ଦୀର୍ଘ ନିଶ୍ୱାସ ନେଇ ସୀମାଦ୍ରି କହିଚାଲେ—

ତୋର ମନେଥିବ ମୁଁ ସେଥର ଯୋଉ ଷ୍ଟେୟାର୍ କେସ୍‌ରୁ ଖସି ପଡ଼ିଥିଲି । ସେଟା ବି ସେଇ ନିଦ୍ରିତ ଅବସ୍ଥାରେ । ତୁ' ନିଶ୍ଚୟ ଭାବୁଥିବୁ ମୁଁ ଆଜିଯାଏ କାହିଁକି ତତେ ଏ କଥା କହି ନାହିଁ—ଜଣେ ସୋମ୍ନାମ୍ବୁଲିଷ୍ଟ ସହିତ ଏକା ରୁମ୍‌ରେ ରହିବାଟା ସମସ୍ତେ ସହ୍ୟ କରି ପାରନ୍ତି ନାହିଁ—ବୁଝିପାରୁଥିବୁ ନିଶ୍ଚୟ—କେମିତି ଗୋଟାଏ ଅନ୍‌କ୍ୟାନି ଫିଲିଂ ହୁଏ । କେବଳ ସେଇଥିପାଇଁ ମୁଁ କଥାଟା ଚାପି ଯାଇଥିଲି ଆଜିଯାଏ ।

ସରୋଜ କିଛି ଜବାବ୍ ଦେଲା ନାହିଁ । କିଛି ସମୟ ପରେ ସଂକ୍ଷେପରେ ପଚାରିଲା, ''ରିତା କିଏ ସୀମାଦ୍ରି ?''

ସୀମାଦ୍ରି କହିଲା—ସେ ସେକେଣ୍ଡ ଇୟର୍ ସାଇନ୍‌ସର ଛାତ୍ରୀ—ଲେଡ଼ିଜ୍ ହଷ୍ଟେଲ୍‌ରେ ଥାଏ । ବୋଟାନିକାଲ୍ ଗାର୍ଡ଼ନରେ ମୋର ତା' ସହିତ ଅକସ୍ମାତ ଦେଖା ହୁଏ । ଆଳାପ ମଧ୍ୟ ହୁଏ ।

ସରୋଜ କୁହେ, ''ହୁଁ'' ।

ଦୁଇବନ୍ଧୁ ହଷ୍ଟେଲ୍‌ରେ ପହଞ୍ଚି ଯାଇଥିଲେ ।

## ଦୁଇ

ସେଦିନ ଅତି ପରିଷ୍କାର ଜ୍ୟୋତ୍ସ୍ନା ପଡ଼ିଥାଏ । କେନାଲ୍ କୂଳରେ ସେଇ ପରିଚିତ ସ୍ଥାନର ବାଲୁକା ଶେଯରେ ଶୋଇ ରହିଥାଆନ୍ତି ଦୁଇବନ୍ଧୁ ନୀରବରେ । ସେମାନଙ୍କର କହୁଣୀ ଉପରେ ଭାର ରଖି ସେମାନେ ଏକାଗ୍ରଚିତ୍ତରେ ଲକ୍ଷ୍ୟକରି ରହିଥାଆନ୍ତି ସେଇ ପରିତ୍ୟକ୍ତ, ବିଗତ ପ୍ରତିଷ୍ଠା, ଜରାଜୀର୍ଣ୍ଣ ଚଉରାଟାକୁ । ଏଇ କିଛି ଦିନ ତଳର ଗୋଟାଏ ନୂତନ ଆବିଷ୍କାରକୁ ନେଇ ଏକ୍‌ସପେରିମେଣ୍ଟ୍ କରିବାରେ ସେମାନେ ଆତ୍ମବିସ୍ମୃତ ।

ସୀମାଦ୍ରି ଖୁବ୍ ଆସ୍ତେ ଆସ୍ତେ କହୁଥାଏ—ଦେଖ୍, ତା'ର ବାଁ ପଟର କାଖରେ ସେ ଗୋଟାଏ କଳସୀ ଧରିଛି...ପୁଣି ଅଣ୍ଟା ପାଖରେ ତା' ଦିହଟା ସାମାନ୍ୟ ବାଁ ପଟକୁ ଝୁଙ୍କି ଆସି ପୁଣି ଡାହାଣକୁ ଢଳି ଯାଇଛି । ମୁଣ୍ଡଟା ମଧ୍ୟ ଦେହର ଭାରସାମ୍ୟ ରକ୍ଷା କରିବାକୁ ଡାହାଣ ପଟକୁ ନଇଁ ଯାଇଛି ସାମାନ୍ୟ ।

ସରୋଜ କୁହେ—ହୁଁ, ତା'ର ଶାଢ଼ୀର ଭାଙ୍ଗଗୁଡ଼ିକ ମଧ ଦେଖୁଚୁ ତ !

ସୀମାଦ୍ରି ଯୋଗକରେ—ମୁଣ୍ଡରେ ନିଶ୍ଚୟ ଓଢ଼ଣା ନାହିଁ, ନ ହେଲେ ତା'ର ଏଡ଼େ ସୁନ୍ଦର କେଶବତୀ ଗଭାଟା ଲୁଚି ଯାଇଥାଆନ୍ତା ।

ଗୋଟାଏ ମୁହୂର୍ତ୍ତ ପାଇଁ ଦୁଇ ବନ୍ଧୁଙ୍କର ତନ୍ମୟ ଆକ୍ଷି ଆଗରେ ଠିଆ ହୋଇ ରହେ ଗୋଟିଏ ସ୍ୱାସ୍ଥ୍ୟବତୀ ଗ୍ରାମ-ବଧୂ ହାତରେ କଳସୀ ଧରି ।

ସରୋଜ କୁହେ ତା' ନାଁ 'ତମିସ୍ରା' ।

ସୀମାଦ୍ରି ପ୍ରତିବାଦ କରେ—"ମୁଁ କିନ୍ତୁ ତା' ନା ଦିଅନ୍ତି 'ଜ୍ୟୋସ୍ନାରେଣୁ' ।

ତର୍କ ବେଶୀ ଦୂର ଚାଲେନା । ପ୍ରତ୍ୟେକର ନିଜସ୍ୱ ନାମକରଣରେ ପ୍ରତ୍ୟେକ ସନ୍ତୁଷ୍ଟ ରହନ୍ତି । ତା' ପରେ ହଠାତ୍ ମନର ଟେନ୍‌ସନ୍ ହୁଗୁଳା କରି ଦିଅନ୍ତି । ସେମାନେ, ଆଉ ତା' ସାଙ୍ଗେ ସାଙ୍ଗେ କିଛି ଅନ୍ଧାର ଆଉ କିଛି ଜ୍ୟୋସ୍ନାର ରେଣୁ ନେଇ ଗଢ଼ି ଉଠିଥିବା ଗ୍ରାମ ବଧୂଟିର ଅପମୃତ୍ୟୁ ହୁଏ ।

ସୀମାଦ୍ରି ଆଉ ସରୋଜ ଉଭୟେ ଜାଣନ୍ତି ସେମାନେ ସେଇ ଜୀର୍ଣ୍ଣ ଚଉରାଟାକୁ ଚାହିଁ ଚାହିଁ ସେମାନଙ୍କର ମନ ଭିତରେ ଗୋଟାଏ ନିର୍ଦ୍ଦିଷ୍ଟ ମରିଚିକା ସୃଷ୍ଟି କରୁଛନ୍ତି । ଚଉରାଠାରୁ ସେମାନଙ୍କର ଦୂରତ୍ୱ ୧୫ ଗଜରୁ କମ୍ ହେବ; ତଥାପି ଚଉରାଟାର ଏଇ ରହସ୍ୟମୟୀ ଅବସ୍ଥିତି ସେମାନଙ୍କର ଆଖି ପାଇଁ ସହସ୍ର ଇନ୍ଦ୍ରଜାଲ ତିଆରି କରି ଚାଲେ । ପାଖର କି ଗୋଟାଏ ନାଁ ନ ଜଣା ଗଛର ଗୋଟାଏ ବିଶୃଙ୍ଖଳ ଦୀର୍ଘ ଶାଖା ଲମ୍ବି ଆସି ଚଉରା ଉପରେ ଗୋଟାଏ ପ୍ରଶସ୍ତ ଆବରଣ ତିଆରି କରିଛି—ଆଉ ତା'ରି ଭିତର ଦେଇ ଝରି ଝରି ପଡ଼େ ଅସଂଖ୍ୟ ଜ୍ୟୋସ୍ନାରେଣୁ । ଅନେକ ଆଲୋକ ରେଣୁ ଆଉ ଅନ୍ଧାର ରେଣୁ ଲୁଚୁକାଳି ଖେଳୁଛନ୍ତି ସେଇ ଚଉରା ଉପରେ । ସେମାନଙ୍କୁ କେବଳ ଆଖିର ଲେନ୍‌ସରେ ଧରି ନେଇ ସଜେଇବାକୁ ପଡ଼େ ଆପଣାର ମନ ଅନୁସାରେ ।

ଗ୍ରାମ-ବଧୂର ଅପମୃତ୍ୟୁ ପରେ ହୁଏତ ସେଠି ଆସ୍ତେ ଆସ୍ତେ ତିଆରି ହୁଏ ଗୋଟାଏ ଡାକ-ପିଅନ୍ । ହୁଏତ ଯେଉଁ ଅନ୍ଧକାର ରେଣୁପୁଞ୍ଜରେ ନବବଧୂଟିର କେଶବତୀ ଗଭା ତିଆରି କରାଯାଇଥିଲା ତା'କୁ ସାମାନ୍ୟ ସ୍ଥାନାନ୍ତରିତ କରି ପିଅନ୍‌ର ପୋଷ୍ଟବ୍ୟାଗ୍ ତିଆରି କରାଯାଏ । ତା'ର ଗହନ କଳା ବାଳ ଉପରେ ଚକ୍ ଚକ୍ କରୁଥିବା ରୂପା ଫୁଲଟିକୁ ନେଇ ଡାକପିଅନ୍‌ର ଟୋପିର ବୋତାମ କରାଯାଏ । ଶାଢ଼ୀର ଭାଙ୍ଗଗୁଡ଼ାକ ନେଇ ତିଆରି ହୁଏ ଖାକୀ ବ୍ରାଉଜର ।

ଏଇ ରୂପାନ୍ତରଟା ଠିକ୍ ବ୍ୟାୟାମର ନିୟମ ଅନୁସାରେ ବା' ଗଣିତର କ୍ରମ ଅନୁଯାୟୀ ହୁଏ ନାଁ । ଏଟା ହୁଏ ଗୋଟାଏ ସଂବେଦନଶୀଳ ମନର ସହଜ ଲଘୁ

ସଞ୍ଚରଣରେ—ଯେମିତି ସଂଧ୍ୟା ହେଲେ ଶତଦଳ ଧୀରେ ଧୀରେ ସଂକୁଚିତ ହୁଏ—ଯେମିତି କୃଷ୍ଣନୀରା ଯମୁନା ସହିତ ଗଙ୍ଗୋତ୍ରୀର ସ୍ୱଚ୍ଛଧାରା ଏକାକାର ହୋଇଯାଏ । ଯେମିତି କୌଣସି ନିୟମ ନ ଥାଇ କ୍ରମ ରକ୍ଷା ନ କରି ସ୍ୱପ୍ନରେ ତରଳି ମିଶିଯାଏ ଆଉ ଗୋଟାଏ ସ୍ୱପ୍ନ ।

ପ୍ରଥମ କିଛିଦିନ ଟିକିଏ ଅସୁବିଧାରେ ପଡ଼ିବାକୁ ହୁଏ ସେମାନଙ୍କୁ । କିନ୍ତୁ ଅଳ୍ପ କେଇଦିନର ଅଭ୍ୟାସରେ ଦୁଇ ବନ୍ଧୁ ଅଭ୍ୟସ୍ତ ହୋଇଗଲେଣି । ପ୍ରଥମେ ମନର ମାଂସପେଶୀ ଗୁଡ଼ାକୁ ହୁଗୁଳା କରିବାକୁ ହୁଏ—ତା'ପରେ ମନପ୍ରାଣ ଦେଇ ଗୋଟାଏ ନିର୍ଦ୍ଦିଷ୍ଟ ବସ୍ତୁକୁ ଆଖି ଆଗରେ ଫିକ୍ସ କରିନେଇ ତା'ର ଚାରିପଟେ କିଛି କୁହୁଡ଼ି ଦେଇ ଶକ୍ତ କରିବାକୁ ହୁଏ । ଗୋଟାଏ ଅବୁଝା ପିଲାକୁ ଚକୋଲେଟ୍ ଦେଖେଇ ଆଦର କଲା ପରି ମନକୁ ଆସ୍ତେ ଆସ୍ତେ ତୋଷାମଦ କରି ବିଶ୍ୱାସ କରେଇ ନବାକୁ ପଡ଼େ ।

ପ୍ରତି ସଂଧ୍ୟାରେ ସେମାନେ ଏମିତି ଅନେକ ଛାୟା ମୂର୍ତ୍ତି ଗଢ଼ନ୍ତି ଆଉ ଭାଙ୍ଗନ୍ତି । ପ୍ରଥମ ଆବିଷ୍କାରର ନିଶା ସେମାନଙ୍କର ଛାଡ଼ି ଆସିଲାଣି । ହାଲକା ଆନନ୍ଦ ଭିତରେ ସେମାନେ ଖୋଜି ବସିଲେଣି ଗୋଟାଏ କାର୍ଯ୍ୟକାରଣ ସମ୍ପର୍କ ।

ସେ ଦିନ ହଠାତ୍ ସୀମାଦ୍ରି ଗମ୍ଭୀର ହୋଇ କହିଲା, ''ଏଇଟାହିଁ ବୋଧହୁଏ ଯୋଗର ପ୍ରଥମ ସୋପାନ''—ଆମେ ଯେଉଁ ଜିନିଷକୁ ପନ୍ଦର ଗଜ ଦୂରରେ ଦେଖି ପାରୁଚୁ ଆଉ ଟିକିଏ ସାଧନା ପରେ ବୋଧହୁଏ ଆମେ ଠିକ୍ ସେଇ ଜିନିଷ ଦେଖି ପାରିବା ମାତ୍ର ପାଞ୍ଚ ଗଜ ଦୂରରୁ । ଆମେ ଆଖି ପାଇଁ ଯେଉଁ କୁହୁକ ସୃଷ୍ଟି କରି ପାରୁଚୁ ତା'କୁ ହୁଏତ ସ୍ପର୍ଶ ଓ ଗନ୍ଧ ପାଇଁ ତିଆରି କରି ପାରିବା ଆଉ କିଛିଦିନର ସାଧନା ପରେ ।

ଖାଲି ସେତିକି ନୁହେଁ, ସୀମାଦ୍ରି କହିଚାଲେ—ଆଜି ମୁଁ ବା ତୁ' କେବଳ ପରସ୍ପରକୁ ପ୍ରବର୍ତ୍ତାଇ ପାରୁଚେ କିନ୍ତୁ ହୁଏତ ଆଉ କିଛିଦିନ ପରେ ଆମେ ଠିକ୍ ଏଇ ଇନ୍ଦ୍ରଜାଲ ଅନେକ ଲୋକଙ୍କ ପାଇଁ ତିଆରି କରି ପାରିବା । ସେଥିପାଇଁ ଖାଲି ଦରକାର ମନର କ୍ଷେତ୍ର ପ୍ରସ୍ତୁତ କରି ବିଶ୍ୱାସର ବୀଜ ରୋପଣ... ।

ସରୋଜ ବିଦ୍ରୂପର ହସରେ ଫାଟି ପଡ଼େ । ''ହଁ ତା ନୁହେଁ ଆଉ କ'ଣ...ଆଉ ଟିକିଏ ସାଧନା କଲେ ହୁଏତ ଏଠି ଗୋଟାଏ ବିରାଟ ସାଧାରଣ ସଭା ଡାକି ଆମେମାନେ ପ୍ରମାଣ କରି ପାରିବା ସେମାନେ ଯାହା ଦେଖୁଛନ୍ତି ତା' ଗୋଟାଏ ଭଙ୍ଗା ଚଉରା ନୁହେଁ—ସେ'ଟା ଗୋଟାଏ କୋଣାର୍କ ମନ୍ଦିରରୁ ସଦ୍ୟ ଆନୀତ ଜୀଅନ୍ତା ଲାସ୍ୟମୟୀ ରୂପସୀ—ବୁଝିଲୁ ସୀମାଦ୍ରି କାଙ୍କେ—କାଙ୍କେ...''।

ସୀମାଦ୍ରିର ବିରକ୍ତିର ସୀମା ରହେ ନାହିଁ । କ୍ୟାରମ୍ ଖେଳର ନିଷ୍ଫଳ ରିବାଉଣ୍ଡ୍ ପରି ସେ' ତା'ର ବେଗରେ ଉଠିଯାଏ ଅତୀତର ଦାର୍ଶନିକମାନଙ୍କର ରାଜ୍ୟକୁ—ଆଉ ଏ ପ୍ରକାରର ବିଷୟ ନେଇ କିଏ କେତେବେଳେ କ'ଣ ମତାମତ ଦେଇଛନ୍ତି—ଆଉ ଠିକ୍ ତା'ପରେ ପରେ ସରୋଜକୁ ସେ' ବିଷୟରେ ସଂପୂର୍ଣ୍ଣ ନିଷ୍ପୃହ ଦେଖି—ଠିକ୍ ସେଇ ବେଗରେ ଖସି ଆସେ ଉପସ୍ଥିତ ଘଟଣାଚକ୍ର ଭିତରକୁ । ଚିତ୍କାର କରି ଉଠେ, ''ସିନିକ୍-ସିନିକ୍-ହିଜେନ୍...ଏତେ ହାଲୁକା ମନ ନେଇ ତୋ' ପକ୍ଷରେ ପ୍ରାଚ୍ୟ ଦର୍ଶନ ସମ୍ପର୍କରେ ମୌଳିକ ଧାରଣା ମଧ କରିପାରିବା ସମ୍ଭବ ନୁହେଁ ।''

ଦୁଇ ବନ୍ଧୁ ହଷ୍ଟେଲକୁ ଫେରି ଆସନ୍ତି । ସରୋଜ ବିଛଣାରେ ପଡ଼ି ରହି ଘୁଙ୍ଗୁଡ଼ିମାରେ ଆଉ ସୀମାଦ୍ରି ବିଛଣା ଉପରେ ଇତଃସ୍ତତ ହୁଏ । ତା'ର ମନ ଭିତରେ ଗୋଟିଏ ମାତ୍ର ବାସନା ଉଙ୍କିମାରେ । ତା'ର ଭାରି ଇଚ୍ଛା ହୁଏ ଯାଇ ଦେଖିବାକୁ ସେମାନେ ଆସିବା ପରେ ସେଇ ଚଉରାଟା କ'ଣ କରୁଥିବ । ସେ ଚଉରାଟା ହୁଏତ ବସିପଡ଼ି ଦୀର୍ଘନିଶ୍ୱାସ ନେଇ ସେମାନଙ୍କୁ ଅଭିଶାପ ଦେଉଥିବ । ସେମାନଙ୍କ ପାଇଁ ତା'କୁ ବହୁରୂପୀ ସାଜିବାକୁ ପଡୁଛି ମୁହୂର୍ତ୍ତକୁ ମୁହୂର୍ତ୍ତ । କିମ୍ବା ହୁଏତ ସେ'ବି ଶୋଇ ରହିଥିବ ସରୋଜ ପରି ଅଚେତ ନିଦରେ । ଅଦ୍ଭୁତ କୌତୂହଳ ହୁଏ ସୀମାଦ୍ରିର । ସେ ଯଦି ଯାଇ କୌଣସି ଗୋଟାଏ ଅସତର୍କ ମୁହୂର୍ତ୍ତରେ ଛୁଇଁ ଦେଇ ପାରନ୍ତା ସେଇ ଚଉରାଟାକୁ ତାହାହେଲେ ହଠାତ୍ ଗୋଟିଏ ଗୁଣଛିଣ୍ଡା ଧନୁପରି ହୁଏତ ସେ ଚମକିପଡ଼ି ଠିଆ ହୋଇ ପଡ଼ନ୍ତା । ଉଠନ୍ତା ଚଉରାର ପୋଷାକ ପିନ୍ଧି ପୁଣି ଥରେ । ନହେଲେ ସେ ହୁଏତ ଆଇ ମା' କାହାଣୀର ଖୋଳପା ପୋଡ଼ିଯାଇଥିବା ରୂପସୀ ବେଙ୍ଗବତୀ କନ୍ୟା ପରି ବିକଳ ହେଇ କୁହନ୍ତା, ''ଆହା' କ'ଣ କଲ, ମତେ ଛୁଇଁ ଦେଲ ତମେ ? ମୁଁ ଆଉ ରହିପାରୁ ନାହିଁ ଏଠି ।'' ତା'ପରେ ହୁଏତ ସେ ତା'ର ଦୁଇ ଶୁଭ୍ର ଡେଣା ମେଲି ଉଡ଼ିଯାଆନ୍ତା ଶାପମୁକ୍ତ କିନ୍ନରୀ ଭଳି ତା'ର ଆଲୋକରେ ଆକାଶକୁ ଦୁଇ ଭାଗ କରି । ତା' ଆରଦିନ ସନ୍ଧ୍ୟାରେ ସେ ସରୋଜକୁ ଆଣି ଏଇ ଅବିଶ୍ୱାସର ସତ୍ୟ ଉପଲବ୍ଧି କରାଇ ପାରନ୍ତା ହୁଏତ ।

ଏଟା କ'ଣ କେବଳ ଆଖିର ଭୁଲ୍ ? ଗଭୀର ସନ୍ଦେହ ସୃଷ୍ଟି ହେଇଛି ସୀମାଦ୍ରିର ମନରେ । ପ୍ରାଚୀନ ଆର୍ଯ୍ୟମାନେ ଜଡ଼ ଭିତରେ ଯେଉଁ ଜୀବନ ଆବିଷ୍କାର କରିଥିଲେ ତା' ହୁଏତ ସଂପୂର୍ଣ୍ଣ ମିଥ୍ୟା ନୁହଁ । ତା'ର ସମଗ୍ର ଶୈଶବକୁ ଆଚ୍ଛନ୍ନ କରି ରଖିଛି ଏଇ ଧରଣର ଅସଂଖ୍ୟ କିମ୍ବଦନ୍ତୀ ଆଉ କାହାଣୀ । ନିଜର ସ୍ଥୂଳ ଶରୀରକୁ ପରିତ୍ୟାଗ କରି ଅନ୍ୟ ଏକ ଜଡ଼ ପିଣ୍ଡରେ ଜୀବନ ସଞ୍ଚାର କରିବାର ଅନେକ ରୋମାଞ୍ଚକର କାହାଣୀ ଶୁଣିଛି ସେ । ସେଗୁଡ଼ା କ'ଣ ସବୁ କେବଳ କଳ୍ପନା ?

ସୀମାଦ୍ରିର ଆଖିରେ ନିଦ ଆସେନା । ସଂଶୟର ଚିର-ଅମୀମାଂସିତ ଦୋଳିରେ ବସି ସେ ଝୁଲୁଚି ଆଉ ଝୁଲୁଚି । କ୍ଲାନ୍ତି ଆଉ ଅବସାଦରେ ସେ ଭାବିପାରେନା ବେଶୀ, ତା'ର ଆଖିପତା ଲାଗି ଆସେ ଧୀରେ ଧୀରେ । ଏ ସତ୍ୟକୁ ବୋଧହୁଏ ତର୍କ ଦେଇ ଉପଲବ୍ଧି କରି ହୁଏନା—ଆଚମ୍ବିତ ଭାବରେ ହୁଏତ ଏ ସତ୍ୟ ଆସି ଧରାଦିଏ ଅକସ୍ମାତ...ସୀମାଦ୍ରି ଶୋଇପଡ଼େ ।

## ତିନି

ସରୋଜ ଖୁବ୍ ବୁଦ୍ଧିମାନ୍ । ସେଥିପାଇଁ ତା'ର ବୁଦ୍ଧି ଓ ଚିନ୍ତାଶକ୍ତିର ପରିଧି ବାହାରେ ଯେ କୌଣସି ବିଷୟ ଥାଇପାରେ ତା' ସେ ମାନିନବାକୁ ଆଦୌ ପ୍ରସ୍ତୁତ ନୁହେଁ । ବିନ୍ଦୁ ବିନ୍ଦୁ କରି ବିଶ୍ୱାସ ସଞ୍ଚୟ କରି ସୀମାଦ୍ରି ଯେତେବେଳେ ବିଶ୍ୱାସର ଗୋଟିଏ କ୍ଷୁଦ୍ରସ୍ତୁପ ତିଆରି କରେ ଆଉ ତା'ର ସମୟକୁ କୃପଣପରି ଉପଭୋଗ କରିବାକୁ ଚେଷ୍ଟାକରେ ସେତେବେଳେ ସରୋଜ ଠିକ୍ ତା'ର ଦୁର୍ବଳ ବିନ୍ଦୁଟିରେ ହିଁ ଆଘାତ କରେ ଆଉ ଆଖି ଆଗରେ ଦେଖେଇ ଦିଏ ଯେ ସୀମାଦ୍ରିର ସମଗ୍ର ସଞ୍ଚୟ ଗୋଟିଏ କ୍ଷୁଦ୍ର ମୌଳିକ ଭ୍ରମ ଉପରେ ପ୍ରତିଷ୍ଠିତ । କିନ୍ତୁ ଯେପର୍ଯ୍ୟନ୍ତ ସୀମାଦ୍ରି ଗୋଟାଏ କିଛି ହାତରେ ନ ପାଇଛି ସେପର୍ଯ୍ୟନ୍ତ ସେ କୌଣସିମତେ ସରୋଜକୁ ବୁଝାଇ ଦେଇ ପାରୁନାହିଁ ଯେ ତା'ର ବୁଦ୍ଧିର ପରିଧି ଅତ୍ୟନ୍ତ କ୍ଷୁଦ୍ର—ଆଉ ସେଇ କ୍ଷୁଦ୍ର ପରିଧିକୁ ଆହୁରି ସୀମିତ କରି ଦେଇଛି ତା'ର ଅହଙ୍କାର—ଆଉ ଯୁକ୍ତିର କୁହୁଡ଼ି ।

ଆଜିକାଲି ସରୋଜକୁ ସାଙ୍ଗରେ ନ ନେଇ ସୀମାଦ୍ରି ଏକୁଟିଆ କେନାଲ୍ କୂଳକୁ ଯାଏ । ପ୍ରତିଦିନ ସେଇ ନିର୍ଦ୍ଦିଷ୍ଟ ସ୍ଥାନରେ ଶୋଇରହି ସେ ଅନେକ ମୂର୍ତ୍ତି ଗଢ଼େ ଆଉ ଭାଙ୍ଗେ । ସେଇଠି ବସି ବସି ମନକୁ ମନ ନିଜସହିତ କ'ଣ କଥାବାର୍ତ୍ତା କରେ । ସେ ସ୍ଥାନଟା ଯେପରି ସୀମାଦ୍ରିର ଲାବରେଟରୀ । ସେ କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ଆବିଷ୍କାର କରିବା ପୂର୍ବରୁ ଆଉ କିଏ ଆସି ତା'ର ଏକ୍ସ୍‌ପେରିମେଣ୍ଟରେ ବାଧା ଦଉ ତା' ସେ ଚାହେଁନା । ସେ ଆଉ ତା'ର ଅବ୍‌ଜେକ୍ଟ ଭିତରେ ଆଉ କାହାର ଅବସ୍ଥିତି ଏକାବେଳକେ ଅସହ୍ୟ । ତା'ର ମନଟା ବି ଯା' ଭିତରେ ପୋଷା ମାନିଗଲାଣି । ମୂର୍ତ୍ତିଗୁଡ଼ାକୁ ରୂପ ଦେବା ପାଇଁ ଖୁବ୍ ଅଳ୍ପ ସମୟ ଓ ପରିଶ୍ରମ ଲାଗୁଛି ତା'କୁ । ପ୍ରାୟ ପ୍ରତିଦିନ ସୀମାଦ୍ରି ଯାଏ ସେଠିକି ଆଉ ଫେରିଆସେ ନୂଆ ବିସ୍ମୟ ଆଉ ବିଶ୍ୱାସ ନେଇ ।

'ଇମେଜ୍'ଟାକୁ ମଧ୍ୟ ସେ ପୂରାପୂରି କବଳିତ କରି ସାରିଲାଣି । କେବେ କେବେ ହଷ୍ଟେଲ୍‌ରେ ତା'ର ଝରକା ପାଖରେ ବସି ଶୂନ୍ୟ ଆକାଶରେ ସେ ଭଙ୍ଗା ଚଉରାଟାକୁ ଆଙ୍କିନିଏ ଆଉ ତା'ପରେ ପରେ ତାକୁ ବହୁ ବିଚିତ୍ର ରୂପରେ ରୂପାନ୍ତରିତ କରେ । ଶୂନ୍ୟରେ ଚଉରାଟାକୁ ବଢ଼ାଇବାକୁ ଚେଷ୍ଟା କରେ ସେ, ଆକାଶର ମହାଶୂନ୍ୟରେ

ଚଉରାଟା ଅବିଶ୍ୱାସ ଭାବରେ ଲମ୍ବା ହୋଇ ଚାଲେ...ଅନେକ ଲମ୍ବା, କ୍ଷୁଦ୍ରାୟତନ ଚଉରାଟା ଆକାଶର ପ୍ରଚ୍ଛଦପଟରେ ଠିଆହୋଇ ରହେ 'ପିସା'ର 'ଲିନିଂଟାୱାର୍' ପରି । ତା'ପରେ ହୁଏତ ସେଇ ଦୀର୍ଘ ସ୍ତମ୍ଭର ଚୂଡ଼ା ଯାଇ ଆଘାତ କରେ ଗୋଟାଏ ଉଜ୍ଜ୍ୱଳ ନକ୍ଷତ୍ରକୁ । ସୀମାଦ୍ରିର ମୁହଁରେ ସନ୍ତୋଷର ଦିପ୍ତୀ ଫୁଟିଉଠେ । ପୋତାଶ୍ରୟର 'ଲାଇଟ୍‌ହାଉସ୍' ଠିକ୍ ଏମିତି ଦେଖାଯାଏ । କେନାଲ୍ କୂଳର ସେଇ ଜୀର୍ଣ୍ଣ ଚଉରା ଆସି ଆକାଶରେ ହେଇଛି ଗୋଟାଏ ବିରାଟ ବତୀସ୍ତମ୍ଭ, କିଏ କହେ ଚଉରାଟା ଜଡ଼-ନିର୍ବେଦ-ସ୍ଥାବର ? ସେଇ ଦୀର୍ଘ 'ଲାଇଟ୍‌ହାଉସ୍'କୁ ପୁଣି ଛୋଟ କରିବାକୁ ଚେଷ୍ଟା କରେ ସୀମାଦ୍ରି ମନର ଲେନ୍‌ସ୍‌ରେ । ଅତ୍ୟନ୍ତ ଦ୍ରୁତ ଗତିରେ ଛୋଟ ହବାକୁ ଆରମ୍ଭ କରେ ତା'ର ଅବ୍‌ଜେକ୍ଟ ଆଉ ଠିକ୍ ଚଉରାର ଉଚ୍ଚତାକୁ ଆସି ସ୍ଥିର ହୋଇଯାଏ । କିନ୍ତୁ ନା—ଆହୁରି ଛୋଟ କରିବାକୁ ହେବ । ଟିକିଏ ପରିଶ୍ରମ କରିବାକୁ ପଡ଼େ ସୀମାଦ୍ରିକୁ । ତା'ର ମନେ ହୁଏ ସେ ଯେମିତି ଠିକ୍ କମାର ପରି ତା'ର ମନର ହାତୁଡ଼ିରେ ପିଟି ପିଟି ଛୋଟ କରୁଚି ଚଉରାଟାକୁ । ଛୋଟ—ଆହୁରି ଛୋଟ—ଅନେକ ଛୋଟ ହୋଇଯାଏ । ସେ ଯେମିତି ତା'ର ଆଖି ସାମ୍ନାରେ ଦେଖୁଛି ଆକାଶର ବିରାଟ ଚେସ୍ ବୋର୍ଡ଼ ଉପରେ ଠିଆ ହୋଇ ରହିଛି ଗୋଟିଏ ମାତ୍ର ନିଃସଙ୍ଗ—ନିରୋଳା 'ପନ୍' । ବାଃ ! ଖୁସି ହୋଇଯାଏ ସୀମାଦ୍ରି । କେତେ ଓଜନ ହବ ସେଇ 'ପନ୍' ଟାର ? ତା'ର ଡାହାଣ ହାତର ବୁଢ଼ା ଆଙ୍ଗୁଠି ଆଉ ବିଶି ଆଙ୍ଗୁଠିକୁ ବଢ଼େଇବାକୁ ଚେଷ୍ଟା କରେ ସେ ମହାଶୂନ୍ୟରେ । ସ୍ୱପ୍ନ ଦେଖୁ ନାହିଁ ତ ସୀମାଦ୍ରି ? ତା'ର ଆଙ୍ଗୁଠିର ପବଗୁଡ଼ାକ ବଢ଼ିବାକୁ ଆରମ୍ଭ କରିଛି । ତା'ପରେ ତା'ର ପାପୁଲି...ଆଉ ଧୀରେ ଧୀରେ ତା'ର ସମଗ୍ର ହାତଟା ଅନେକ ବାଟ ଲମ୍ବିଗଲାଣି ଆକାଶ ଭିତରକୁ । ଆଉ ମାତ୍ର କେଇ ଇଞ୍ଚ୍ ବାଟ । ଆନନ୍ଦରେ ସୀମାଦ୍ରିର ଆଙ୍ଗୁଠି ଦୁଇଟା ଥରି ଉଠୁଚି । ସତରେ କ'ଣ ସେ ଆକାଶରୁ ତୋଳି ଆଣି ପାରିବ ସେଇ କ୍ଷୁଦ୍ରାୟତନ 'ପନ୍' ଟାକୁ । ଦୁଇ ଆଙ୍ଗୁଠିର ସ୍ୱଚ୍ଛ ବ୍ୟବଧାନ ଭିତରେ ସେ ସ୍ପଷ୍ଟ ସ୍ପର୍ଶ କରି ପାରୁଛି—ସେ ନିର୍ଭୁଲ୍ ଭାବରେ ଅନୁଭବ କରୁଛି କିଛି ଗୋଟାଏ ଜିନିଷ ଧରିଛି ସେ । ଏଥର ଆକୁଞ୍ଚନ । ତା'ର ମନେ ହେଉଛି ସେ ଯେପରି ଆକାଶରୁ କୋଟିନିଧି ତୋଳି ଆଣୁଛି । କିଂ ମିଡ଼ାସ୍ ବୋଧହୁଏ ଖଣ୍ଡେ ସୁନାର ଇଟାକୁ ଯା' ଠାରୁ ଅଧିକ ସାବଧାନତାର ସହିତ ଆଣି ନ ଥାନ୍ତେ । ପୁଣି ଥରେ ଛୋଟ ହେଇ ଆସୁଚି ତା'ର ହାତ—ତା'ର ପାପୁଲି—ଆଉ ତା'ର ଆଙ୍ଗୁଠିସବୁ । ତା'ର ଚିର-ଇପ୍‌ସିତ ବସ୍ତୁଟିକୁ ସୀମାଦ୍ରି ଆଣି ରଖିଛି ତା'ର ବାଁ ହାତର ପାପୁଲି ଉପରେ । ଆଖି ଅପରେସନ୍ କରୁଥିବା ସର୍ଜନ୍ ବୋଧହୁଏ ଅଧିକ ସାବଧାନତାର ସହିତ ଫରସେପ୍‌ରେ ଧରିପାରିନଥାନ୍ତା ଆଖିର ଡୋଳାକୁ । ତା'ର ପ୍ରସାରିତ ପାପୁଲି ଉପରେ ସେ ତା'ର ଓଜନ ପର୍ଯ୍ୟନ୍ତ ଅନୁଭବ କରି ପାରୁଛି । ନୂତନ ଆବିଷ୍କାରରେ

ସୀମାଦ୍ରିର ଆଖି ଦୁଇଟା ଉଜ୍ଜ୍ୱଳ ହୋଇ ଉଠିଛି । ସେ ଭାବୁଛି ଏଇ ମୁହୂର୍ତ୍ତରେ ଯଦି ଏଠି ଥାଆନ୍ତା ମୂର୍ଖ ସରୋଜ ତାହାହେଲେ ତାକୁ କହନ୍ତା, ''ଗୋ, ରନ୍—କେନାଲ୍ କୂଳକୁ ଯା' ଦେଖି ଆସିବୁ ସେ ଚଉରାଟା ଆଉ ସେଠି ନାହିଁ । ତାକୁ ମୁଁ ଲୁଟି କରି ଆଣିଛି ମନର ଜୋର୍‌ରେ । ଆଉ ସେ ଯେତେବେଳେ କେନାଲ୍ କୂଳରୁ ବିସ୍ମିତ ହୋଇ ଫେରି ଆସନ୍ତା, ସେତେବେଳେ ସେ ତା'ର ଆଖି ଆଗରେ ଆସ୍ତେ ଆସ୍ତେ ବାଁ ହାତର ବଦ୍ଧମୁଷ୍ଟି ଖୋଲି ଦେଖେଇ ଦିଅନ୍ତା ତା'ର ଏଇ କ୍ଷୁଦ୍ର ସଂସ୍କରଣଟିକୁ ।

ଖୁବ୍ ପାଟିକରି ହସି ହସି ଦଳେ ପିଲା ପଶି ଆସିଲେ ସୀମାଦ୍ରିର ରୁମ୍ ଭିତରକୁ । ଚମକି ପଡ଼ିଲା ସୀମାଦ୍ରି । ତା'ର ବାଁ ହାତର ପାପୁଲି ତଥାପି ଖୋଲା ଅଛି—କିନ୍ତୁ ତା'ର ପ୍ରିୟ ପଦାର୍ଥଟି ଆଉ ତା' ଉପରେ ନାହିଁ । ଆଖି ପିଛୁଳାକରେ ଯେମିତି ତା'ର ପାପୁଲି ଉପରେ ସେ'ଟା ମିଳେଇ ଗଲା ସମୁଦ୍ର କୂଳର ଉଜ୍ଜ୍ୱଳ ଜେଲି-ଫିସ୍ ପରି । ମନେ ମନେ ଅସମ୍ଭବ ବିରକ୍ତ ହୋଇ ଉଠିଲା ସୀମାଦ୍ରି । ରୁକ୍ଷ ସ୍ୱରରେ କ'ଣ ସେ ସେମାନଙ୍କୁ କହିଲା ବୋଧହୁଏ—ନୀରବରେ ସେମାନେ ଫେରିଗଲେ । ରାତି ଦଶଟା ବାଜିଗଲାଣି ।

ଶୋଇବାକୁ ଚେଷ୍ଟା କଲା ସୀମାଦ୍ରି ।

X X X

ଅନେକ ରାତି ହେଲାଣି ।

ଦେଖିଲେଇ ଜଣାଯାଏ ସୀମାଦ୍ରି ଶୋଇ ରହିଛି ନିଘୋଡ଼ ନିଦରେ । କିନ୍ତୁ ସୀମାଦ୍ରି ତା'ର ମୁଦ୍ରିତ ଆଖି ଆଗରେ ସ୍ପଷ୍ଟ ଦେଖି ପାରୁଛି କେନାଲ୍ କୂଳର ସେଇ ଚଉରାଟାକୁ । ସେ ଚଉରାଟା ଆଉ ସ୍ଥାଣୁ ନୁହେଁ—ସୀମାଦ୍ରିର ମନର ରଶ୍ମିନେଇ ଯେପରି ତା'ର ସ୍ନାୟୁ ସବୁ ବଞ୍ଚି ଉଠିଲେଣି । ରୁଗ୍‌ଣ ମାଂସପେଶୀ ସବୁ ଜୀବନ୍ତ ହୋଇ ଉଠିଲେଣି । ପବନ ବହୁଛି ବୋଧହୁଏ—ଆଉ ସେଇ ପବନରେ ସେଇ ପଥରର ଚଉରାଟା ଦୋଳି ଖେଳୁଛି ହାଲୁକା ମନରେ । ଥରେ ଥରେ ଗୋଟାଏ ଝାଙ୍କ ପବନରେ ଚଉରାଟା ଏକା ଥରକେ ନଇଁ ଯାଉଛି ତଳକୁ—ଯେମିତି ସେଇଟା ଗୋଟାଏ ଚଉଖୁଣ୍ଟିଆ ରବରର ସ୍ତମ୍ଭ । ତା'ର ମନେହେଲା ଯେମିତି ସେଇ ସ୍ତମ୍ଭଟା ଦୋହଲି ଦୋହଲି ନିମନ୍ତ୍ରଣ କରୁଛି ତା'କୁ ସେଠିକି ଯିବା ପାଇଁ ।

ବିଛଣାରେ ହଠାତ୍ ଉଠି ବସିଲା ସୀମାଦ୍ରି ।

ତା'କୁ ଏଇ ମୁହୂର୍ତ୍ତରେ ହିଁ ଯିବାକୁ ହବ ସେଠିକି । ରୁମ୍‌ର ଆଲୁଅ ଦବାକୁ ମନେ ନାହିଁ ତାର । ସରୋଜ ଅଛି କି ନାହିଁ ସେଥିପାଇଁ ଭ୍ରୂକ୍ଷେପ ନାହିଁ । ହାତ ତାର ମନକୁ

ମନ ଉଠିଗଲା । ଦରଜାର ଖିଡ଼ିକି ଖୋଲିବାକୁ । ହଷ୍ଟେଲ୍‌ର ଲମ୍ବା ବାରଣ୍ଡାଟା ଏକାଥରକେ ନିର୍ଜନ । ଜଣେ ହେଲେ କେହି ପିଲା ନାହିଁ । ଗୋଟାଏ ମଳିନ ଆଲୋକର ଆସ୍ତରଣ ତଳେ ଚାଲିଚି ସେ ମନ୍ତ୍ରମୁଗ୍ଧ ପରି । ତା' ପରେ ଷ୍ଟେଆର୍ କେସ୍, ନିର୍ଭୁଲ୍ ଭାବରେ ପ୍ରତିଟି ଶିଡ଼ିରେ ଓହ୍ଲେଇ ଓହ୍ଲେଇ ଚାଲିଛି ସୀମାଦ୍ରି ଆଉ ତା' ପରେ ପରେ ମେନ୍ ଗେଟ୍ ଦେଇ ଏକାଥରକେ ବାହାର ରାସ୍ତାକୁ ।

ରାସ୍ତାଟା ମଧ ଅତ୍ୟନ୍ତ ନିର୍ଜନ । ଟ୍ରେନ୍‌ର ତୀବ୍ର ହୁଇସିଲ୍ ଷ୍ଟେସନ୍‌ରୁ ଶୁଣାଯାଉଛି ମଝିରେ ମଝିରେ । ଧାଡ଼ି ଧାଡ଼ି ରାସ୍ତା ଲାଇଟ୍ ଗୁଡ଼ାକ ସୀମାଦ୍ରିକୁ ଦେଖାଯାଉଛନ୍ତି ଆକାଶରୁ ତଳକୁ ଓହ୍ଲେଇ ଆସିଥିବା କେଇଟା ଆଶ୍ଚର୍ଯ୍ୟ ତାରକା ପରି । ଗୋଟାଏ ନିଶାଖୋର୍ ରିକ୍‌ସାବାଲା ତୀର ବେଗରେ ରିକ୍‌ସା ଚଳେଇ ନେଇଗଲା ସୀମାଦ୍ରିର ଦେହରେ ପ୍ରାୟ ଘଷି ହୋଇ । କିନ୍ତୁ ସୀମାଦ୍ରି ତା'ର ଚାରିପାଖର ସମସ୍ତ ଘଟଣା ପ୍ରତି ସମ୍ପୂର୍ଣ୍ଣ ନିର୍ଲିପ୍ତ ନିର୍ବିକାର । ତା'ର ଦୁଇଟି ଅର୍ଦ୍ଧନିମିଳୀତ ଆଖି ଆଗରେ କେବଳ ଦୋଳି ଦୋଳି ଇଙ୍ଗିତ କରୁଛି ସେଇ ଚଉରାଟା । କସ୍ତୁରୀମୃଗ ପରି ସମ୍ପୂର୍ଣ୍ଣ ଆତ୍ମବିସ୍ମୃତ ହୋଇ ସୀମାଦ୍ରି ଟାଣି ହୋଇ ଯାଉଛି ଗୋଟାଏ ଅଦୃଶ୍ୟ, ଅପରିହାର୍ଯ୍ୟ ଶୃଙ୍ଖଳର ଆକର୍ଷଣରେ ନିୟନ୍ତ୍ରିତ ହୋଇ ।

ତରଳ ରୂପାପରି ଜହ୍ନ ଆଲୁଅ ବିଛୁ ହୋଇ ପଡ଼ିଛି । ସେଇ ଜହ୍ନର, ଯାଦୁରେ କେନାଲ୍‌ର ପାଣି, ବାଲି ଆଉ ଗଛ ସବୁ ଯେମିତି ରୂପା ପାଲଟି ଯାଇଛି । ସମସ୍ତ ପରିବେଶକୁ ଆଚ୍ଛନ୍ନ କରି ରଖିଛି ଏକ ଅବ୍ୟକ୍ତ ନିର୍ଜନତା । ଏଇ ଅତି-ନିର୍ଜନ ପରିବେଶରେ ମନେହୁଏ ଯେପରି ପୃଥିବୀର ପାର୍ଶ୍ୱ ପରିବର୍ତ୍ତନ ମନ୍ଥର ହୋଇ ଆସିଛି ତା'ର ଅକ୍ଷ ଚାରିପଟେ । ଖୁବ୍ ଆସ୍ତେ ଆସ୍ତେ ପାଦ ପକେଇ ଚାଲିଛି ସୀମାଦ୍ରି—ଟିକିଏ ଜୋର୍‌ରେ ଚାଲିଲେ ଯେମିତି ଏଇ ଚିର-ରହସ୍ୟମୟୀ ପରିବେଶର କୁହୁକ ନଷ୍ଟ ହୋଇଯିବ । କେତେ ରାତି ହେଲାଣି ଜାଣିବାର ଉପାୟ ନାହିଁ । ଉଜ୍ଜ୍ୱଳ ଚନ୍ଦ୍ର ଆଲୋକର ପ୍ରଚ୍ଛଦପଟରେ ଗଛର ସାନ୍ଦ୍ର-ଦୀର୍ଘ ଶାଖାଗୁଡ଼ାକ ଦେଖାଯାଉଛି ଆହୁରି କୃଷ୍ଣକାୟ । ଗଛର ନାଁ ସୀମାଦ୍ରି ଜାଣେନାଁ—ତେବେ ଗଛଗୁଡ଼ାକର ସ୍ୱାତନ୍ତ୍ର୍ୟ ଅଛି । ପ୍ରତ୍ୟେକଟି ଗଛକୁ ଦେଖିଲେ ମନେହୁଏ ଯେମିତି ସେମାନେ କୌଣସି ଆର୍ଟିଷ୍ଟ ହାତର ଅଙ୍କା ଅସମାପ୍ତ ପେଣ୍ଟିଂ ।

ପାଖରେ ଗାର୍ଲସ୍ ହଷ୍ଟେଲ୍‌ର ଦ୍ୱିତଳକୋଠା ଦେଖାଯାଉଛି । ତା'ରି ଭିତରେ ଅନେକ ତରୁଣୀ ନିଦ୍ରା ଯାଇଥିବେ । ଯେମିତି କେଉଁ ଦୈତ୍ୟର କୁହୁକ ମନ୍ତ୍ରରେ ଅଚେତ ହୋଇ ପଡ଼ିଛନ୍ତି ସେମାନେ । ସେଇମାନଙ୍କ ଭିତରେ ମଧ ଶୋଇ ରହିଛି ରିତା । ଆହା ! କେତେ ଅତ୍ୟାଚାରିତା ରିତାର ଯୌବନ ! ରିତା କଣ ଚାହେଁନା ଏଇ ଜହ୍ନ

ଆଲୁଅରେ ଲୋଟିବାକୁ ଏଇ ଶୀତଳ ବାଲି ଶେଯରେ । ସେ କଣ ଅସହାୟ ଭାବରେ ଚାହୁଁ ନ ଥିବ ଖସି ପଡ଼ନ୍ତାକି ଏଇ କାଛର ଇଟାଗୁଡ଼ାକ ଏଇ ମାତାଲ ଜହ୍ନ ଆଲୁଅରେ ବତୁରୀ ବତୁରୀ ।

ମୁହୂର୍ତ୍ତକରେ ସୀମାଦ୍ରିର ମନ କରୁଣା-ଆର୍ଦ୍ର ହୋଇ ଉଠିଲା । ରିତାକୁ କଣ ଉଦ୍ଧାର କରି ହବ ଏଇ ଯକ୍ଷପୁରୀ ଭିତରୁ ? ହୁଏତ ସମ୍ଭବ । ତା'କୁ ଆସିବାକୁ ପଡ଼ିବ ଦିନେ ରାଜପୁତ୍ର ପରି ପାଣିର ସନ୍ଧାନ କରି...ତା'ପରେ ହୁଏତ ଘୋଡ଼ାର ଜିନ୍ ଉପରେ ତା'ର ଉଷ୍ଣୀଷ ରଖିଦେଇ ତାକୁ ଉଠିବାକୁ ପଡ଼ିବ ଲୁହାର ପାଇପ୍ ଧରି ଦୋତାଲା ଉପରକୁ । ...ତା'ପରେ ହୁଏତ...। ସୀମାଦ୍ରି ଦୃଷ୍ଟି ଫେରାଇଲା ସେଇ ଜୀର୍ଣ୍ଣ ଚଉରା ଆଡ଼କୁ, ଏଇ ଚଉରାଟାକୁ ଯଦି ସେ କରିପାରନ୍ତା ଆଲ୍ଲାଉଦିନ୍‌ର ସେଇ ଆଶ୍ଚର୍ଯ୍ୟ ଦୀପ-ଦୈତ୍ୟ, ତାହାହେଲେ ହୁଏତ ତା'କୁ ସେ ଆଦେଶ କରି ପାରନ୍ତା ରିତାକୁ ଉଦ୍ଧାରକରି ଆଣିବାକୁ । ଓଃ ! ଥରେ—ମାତ୍ର ଥରକ ପାଇଁ ଯଦି ସେ ଚେତନା ସଞ୍ଚାର କରି ପାରନ୍ତା ଏଇ ଜଡ଼—ପ୍ରସ୍ତରିତ ଜୀର୍ଣ୍ଣ ଚଉରାଟା ଦେହରେ !

ନିର୍ବିଶେଷ ଦୃଷ୍ଟିରେ ସୀମାଦ୍ରି ଚାହିଁ ରହିଛି ସେଇ ଚଉରାଟାକୁ, ସେ ଆଜି କିଛି ଭାବିବାକୁ ଚାହେଁନା । ଆଜି କେବଳ ସେ ଅପେକ୍ଷା କରି ରହିବ ତା'ର ନିଜସ୍ୱ କ୍ରମପରିବର୍ତ୍ତନକୁ, ପ୍ରଥମେ ତା'ର ମନେହେଲା ଯେମିତି ସେଇ ଚଉରା ଉପରେ ଅନେକ ଗୁଡ଼ାଏ ଆଲୋକ ଆଉ ଅନ୍ଧାର ରେଣୁ ଭାସି ବୁଲୁଛନ୍ତି ଅନିଶ୍ଚିତ ଭାବରେ । ତା'ପରେ ମନେହେଲା ଯେପରି ସେଇ ଭାସମାନ ରେଣୁଗୁଡ଼ିକ ଆସ୍ତେ ଆସ୍ତେ ସ୍ଥିର ହୋଇ ଆସୁଛନ୍ତି...ସେମାନେ ରୂପ-ପରିଗ୍ରହ କରୁଛନ୍ତି ।

ଉଶୃଙ୍ଖଳ ଜ୍ୟୋତ୍ସ୍ନା ଝରୁଛି ଆକାଶରୁ ।

ଏଇ ଭରା ଚନ୍ଦ୍ରାଲୋକରେ ମଣିଷମାନେ କୁଆଡ଼େ ପାଗଳ ହୋଇ ଯାଆନ୍ତି । ସୀମାଦ୍ରି ଆଉ ପାଗଳ ହୋଇ ଯାଉ ନାହିଁ ତ ? ତା'ର ଏଇ ଏକ୍ସପେରିମେଣ୍ଟଟା ଗୋଟାଏ ବିରାଟ ପାଗଳାମି ନୁହେଁ ତ ? ଠିକ୍ କିଛି ବୁଝି ପାରୁନାହିଁ ସେ । ପୁଣିଥରେ ଚଉରାଟା ଆଡ଼େ ଚାହିଁଲା ସୀମାଦ୍ରି—ମୁହୂର୍ତ୍ତକ ପାଇଁ ତା'ର ମନେହେଲା ଯେପରି ସେଇ ଚଉରାଟା ରୂପାନ୍ତରିତ ହୋଇଯାଇଚି ଗୋଟାଏ ମନୁଷ୍ୟର ପ୍ରତିକୃତିରେ ।

....ଗୋଟାଏ ଖାକି ରଙ୍ଗର ଫୁଲପ୍ୟାଣ୍ଟ୍ ପିନ୍ଧିଛି ଲୋକଟା । ସରୁ ଅଣ୍ଟାଠାରୁ ଉପରକୁ ଉଠିଯାଇଛି କ୍ରମପ୍ରଶସ୍ତ ଛାତିର ଦୁଇ ସୀମା ଟ୍ରାପିଜିୟମ୍‌ର ବାହୁ ପରି । ବାଁ ଆଖି ଉପରେ ଫେଲ୍ଟ ଟୋପିଟା ନଇଁ ଆସି ମୁହଁଟା ଠିକ୍ ଦେଖାଯାଉ ନାହିଁ । ସୀମାଦ୍ରି ଆସ୍ତେ ଆସ୍ତେ ଆଗେଇବାକୁ ଚେଷ୍ଟାକଲା ସେଇ ଲୋକଟା ଆଡ଼କୁ । ସେ ଯେମିତି ଯାଉଛି ଗୋଟାଏ ଅଶରୀରୀ ସହିତ ପରିଚୟ କରିବାକୁ । କିନ୍ତୁ ତଥାପି ସେଇ

ଲୋକଟା ଠିଆ ହୋଇ ରହେ ଅବିଚଳିତ ହୋଇ । ନିକଟକୁ...ଖୁବ୍ ନିକଟକୁ ଆସିଲାଣି ସୀମାଦ୍ରି—ସୀମାଦ୍ରିର ନିଶ୍ୱାସ ବୋଧହୁଏ ବାଜୁଛି ସେଇ ଲୋକଟା ଉପରେ—କିନ୍ତୁ ସେ ଲୋକଟାର କୌଣସି ପରିବର୍ତ୍ତନ ହୁଏନା । ଆଖିରେ ଅବିଶ୍ୱାସ୍ୟ ବିସ୍ମୟ ନେଇ ସୀମାଦ୍ରି ଚାହିଁ ରହେ ସେ ଲୋକଟାକୁ । ଆଗରୁ କେଉଁଠି ଦେଖିଛି ଦେଖିଛି ବୋଲି ମନେ ହୁଏ ତା'ର । ....କିନ୍ତୁ ଭୁଲିଯାଉଛି ସୀମାଦ୍ରି...ଭୁଲିଯାଉଛି ସେ । ଖୁବ୍ ଆସ୍ତେ ଆସ୍ତେ ଚାପାକଣ୍ଠରେ ପଚାରେ ସୀମାଦ୍ରି । ‘‘ତମେ କିଏ ?’’.... ନିଶ୍ୱାସର ମୃଦୁ ଶବ୍ଦ ପରି କଥାଗୁଡ଼ାକ ମିଳେଇଗଲା ପବନରେ । ଚମକି ଉଠିଲା ସୀମାଦ୍ରି ! ନିର୍ଜ୍ଜନ ପରିବେଶ ଭିତରେ ଏଇ ସାମାନ୍ୟ କେଇପଦ କଥା ଅତି ଦେଖାପ ଶୁଣାଯାଏ କାନକୁ । କିଏ କଥା କହିଲା ? ମେ ନିଜେ ନାଁ ତା' ସାମ୍ନାରେ ଠିଆ ହୋଇଥିବା ଏଇ ଅଶରୀରୀ ଯୁବକ ? ଠିକ୍ କିଛି ବୁଝିପାରୁ ନାହିଁ ସେ । ସବୁ ଯେମିତି ଗୋଳମାଳିଆ ହୋଇଯାଉଛି ତା'ର ମୁଣ୍ଡ ଭିତରେ ।

ସୀମାଦ୍ରିର ମେରୁଦଣ୍ଡ ଦେଇ ହଠାତ୍ ଯେମିତି ଖେଳିଗଲା ଗୋଟାଏ ବିଦ୍ୟୁତ୍ ତରଙ୍ଗ । ତା'ର ମନେ ହେଲା, ସେ ଯେମିତି ନିଜକୁ ଦେଖିପାରୁଚି ଗୋଟାଏ ବିରାଟ ଦର୍ପଣ ଭିତରେ । ତା'ରି ଏଇ ଅପରିଚିତ ତରୁଣ, ହେଇ ଏତେ ସମୟ ଧରି ଠିଆ ହୋଇ ରହିଛି ସେ ନିଜେ ! ହୁଁ—ଠିକ୍ ତ । ନିର୍ଭୁଲ୍ ଭାବରେ ସୀମାଦ୍ରି ଠିଆହୋଇ ରହିଛି ତା'ରି ସାମ୍ନାରେ । କିନ୍ତୁ ଏକଥା କ'ଣ ସମ୍ଭବ ? ଆଜିଯାଏ ତ କେବଳ ସୀମାଦ୍ରି ଏଇକଥା ତପସ୍ୟା କରି ଆସିଛି । କେତେ ରାତ୍ରି ସେ କଳ୍ପନା ନ କରିଛି ନିଜକୁ ସେ ଉଜ୍ଜୀବିତ କରିବ ଏଇ ନିର୍ବାକ୍, ଜଡ଼ ପଥର ଦେହରେ । ଆଜି ହୁଏତ ଅକସ୍ମାତ୍ ଆସିଚି ସେଇ ଚିର ଈପ୍ସିତ ମୁହୂର୍ତ୍ତ । ଯେପରି କ୍ଳାନ୍ତ ହୋଇ ପଡୁଚି ସୀମାଦ୍ରି । ସେ ଆଉ କିଛି ଭାବିପାରୁନାହିଁ । ଧୀରେ ଧୀରେ ତା'ର ଅଙ୍ଗ ପ୍ରତ୍ୟଙ୍ଗ ସବୁ ନିର୍ଜ୍ଜୀବ ହୋଇ ଆସୁଛି । ପକ୍ଷାଘାତ ବୋଧହୁଏ ଠିକ୍ ଏଇପରି ଆରମ୍ଭ ହୁଏ । ଅତି ଅସହାୟ ଭାବରେ ସେ ତିଳେ ତିଳେ ପ୍ରସ୍ତରିତ ହୋଇଯାଉଛି....ସେ ଚଳତ୍‌ଶକ୍ତି ରହିତ ।

ସୀମାଦ୍ରିର ପ୍ରସ୍ତର ସମାଧି ସଂପୂର୍ଣ୍ଣ ହୋଇଯାଇଛି । ତା'ର ଆଖି ପତା ମଧ ଚଳେଇବା ଆଉ ସମ୍ଭବ ନୁହେଁ । ଏଥର କିନ୍ତୁ ଚାଲିବାକୁ ଆରମ୍ଭ କରିଛି ସେଇ ଅନ୍ୟ ଲୋକଟି ସୀମାଦ୍ରିର ଦ୍ୱିତୀୟ ସଂସ୍କରଣ । ସେ' ଯେମିତି କେବଳ ଅପେକ୍ଷା କରି ରହିଥିଲା ସୀମାଦ୍ରିର ଏଇ ରୂପାନ୍ତରକୁ । କିନ୍ତୁ ସୀମାଦ୍ରିର ମସ୍ତିଷ୍କ କାର୍ଯ୍ୟ କରୁଛି ଠିକ୍ । ସେ ଠିକ୍ ଜାଣିପାରୁଛି ସେ ଲୋକଟା ଯିବ ଗାର୍ଲସ ହଷ୍ଟେଲ୍ ପାଖକୁ । ଏଟା ସୀମାଦ୍ରିର ନିଜସ୍ୱ ଭାବନା ନୁହଁ । ସେଇ ଲୋକଟାର ପ୍ରତିଟି ଚିନ୍ତାଧାରା ଯେପରି କେଉଁ ଅଜ୍ଞାତ ଶକ୍ତି ବଳରେ ପ୍ରତିବିମ୍ବିତ ହେଉଛି ସୀମାଦ୍ରିର ମନରେ । ସୀମାଦ୍ରି ଆଦୌ ଅନୁମାନ କରିବାକୁ ଚେଷ୍ଟା କରୁ ନାହିଁ କିନ୍ତୁ ତଥାପି ସେ ଜାଣିପାରୁଛି ତା'ର ପ୍ରତିଟି ଚିନ୍ତାଧାରା ।

ସ୍ପଷ୍ଟ ଦେଖିପାରୁଛି ସୀମାଦ୍ରି ଜହ୍ନ ଆଲୁଅରେ....ସେଇ ଲୋକଟା ଗାର୍ଲସ ହଷ୍ଟେଲର ପାଇପ୍ ଧରି ଉଠୁଚି ଉପରକୁ । ଖୁବ୍ ପରିଶ୍ରମ କରିବାକୁ ପଡୁଚି ସେଇ ଲୋକଟାକୁ ନିଶ୍ଚୟ...ସୀମାଦ୍ରିର ପ୍ରସ୍ତରିତ ଗୋଡ଼ର ମାଂସପେଶୀ ସବୁ ଫାଟି ପଡୁଛନ୍ତି ସେଇ ଲୋକଟାର ଉଠିବାର ଚେଷ୍ଟାରେ । ତା'ପରେ ସେଇ ଲୋକଟା ଚାଲୁଛି ଗୋଟାଏ ନାତିପ୍ରଶସ୍ତ ପାଚିରୀ ଉପରେ କୌଣସି ମତେ ନିଜର ଭାରସାମ୍ୟ ରକ୍ଷା କରି କରି—ଆଉ ଠିକ୍ ସେଇ ସ୍ପନ୍ଦନ ଅନୁଭବ କରିପାରୁଚି ସୀମାଦ୍ରି । ସେ ବି ଟଳୁଚି କେତେବେଳେ ବାଁକୁ ପୁଣି କେତେବେଳେ ଡାହାଣକୁ । ଏଇ ଅପରିହାର୍ଯ୍ୟ ଦୋଳନରେ ଦୋଳାୟିତ ହେଉଛି ସୀମାଦ୍ରି...ତା'ପରେ ଲୋକଟା ଉଠୁଛି ସନ୍ତର୍ପଣରେ ଗୋଟାଏ ସଂକୀର୍ଣ୍ଣ ପାରାପିଟ୍ ଉପରକୁ, କାନ୍ଥରେ ପିଠି ଘଷି ଘଷି ଚାଲୁଛି ଲୋକଟା...ସେ ନିଶ୍ଚୟ ଯାଉଛି ରିତାର ରୁମ୍‌ର ଝରକା ପାଖକୁ । କିନ୍ତୁ ତା'କୁ ଆହୁରି ଅନେକ ଦୂର ଯିବାକୁ ପଡ଼ିବ ସେଇ ସଂକୀର୍ଣ୍ଣ ପଥ ଦେଇ...ସୀମାଦ୍ରିର ପାଦତଳୁ ଯେମିତି ଗୁଡ଼ାଏ ମାଟି ଖସିଗଲା । ହଠାତ୍, ତା' ପାଦତଳେ ଖାଲି ରହିଚି ଗୋଟାଏ ଅପ୍ରଶସ୍ତ ମାଟିର ହିଡ଼ । ସୀମାଦ୍ରିର ଭାରସାମ୍ୟ ମଧ୍ୟ ଆନ୍ଦୋଳିତ ହବାକୁ ଆରମ୍ଭ କରିଛି । ଉଃ ! କି ଆଶ୍ଚର୍ଯ୍ୟ ଭାବରେ ସେଇ ଲୋକଟାର ପ୍ରତିଟି ବିଷୟ ସୀମାଦ୍ରିକୁ ପ୍ରଭାବିତ କରି ଚାଲିଛି ।

ନାଁ—ସୀମାଦ୍ରି ପକ୍ଷରେ ଆଉ ଠିଆ ହୋଇ ରହିବା ସମ୍ଭବ ନୁହଁ ବୋଧହୁଏ । ସେ ପ୍ରାୟ ପଡ଼ିଯାଉ ଯାଉ ରହିଗଲା ଥରେ । କିନ୍ତୁ ଏଇ କେତୋଟି ମୁହୂର୍ତ୍ତ ଅତ୍ୟନ୍ତ ଅନିଶ୍ଚିତ—କିଛି କୁହାଯାଏ ନାଁ । ହଠାତ୍ ଶୂନ୍ୟକୁ ଝୁଙ୍କି ପଡ଼ିଲା ସୀମାଦ୍ରି—ଏଥର ଆଉ କିଛି ପ୍ରତିବନ୍ଧକ ନାହିଁ । ସାମ୍ନାର ଶୂନ୍ୟତା ଭିତରକୁ ଓଜାଡ଼ି ହୋଇ ପଡ଼ିଲା ସୀମାଦ୍ରି ଖଣ୍ଡେ ଶୁଖିଲା କାଠ ଗର ପରି । ଠିକ୍ ତା' ପରେ ହିଁ ସୀମାଦ୍ରିର ଚେତନା ଶକ୍ତି ଲୋପ ପାଇଯାଇଛି...

## ଚାରି

ଗାର୍ଲସ ହଷ୍ଟେଲ୍ ପଡ଼ିଆରେ ଅନେକ ଲୋକଙ୍କର ଭିଡ଼ ଜମିଛି । ସୀମାଦ୍ରି ଛାତ ଉପରୁ ପଡ଼ିଯାଇଛି ଅସତର୍କ ହୋଇ । ସରୋଜ ବି ଆସିଚି ସେଠିକି । ସୀମାଦ୍ରିର ମୁଣ୍ଡର ଖପୁରିଟା ଛେଚି ହୋଇଯାଇ ମୁହଁଟା କିପରି ବିକୃତ ଦେଖାଯାଉଛି । ତା'ର ପିନ୍ଧିବା ଲୁଗାକୁ ଛାଡ଼ିଦେଲେ ତାକୁ ସୀମାଦ୍ରି ବୋଲି ଚିହ୍ନଟ କରିବା ସମ୍ଭବ ନହେଁ ।

ପୁଲିସ୍ ଅନୁସନ୍ଧାନ କରୁଛି । ସରୋଜ ଏ ଦୁର୍ଘଟଣା ସମ୍ପର୍କରେ କୌଣସି ଆଲୋକପାତ କରିପାରି ନାହିଁ । ସହରର ସମସ୍ତ ଜନତା ଅବଶ୍ୟମ୍ଭାବୀ ଉପସଂହାରରେ ଉପନୀତ ହୋଇ ରାୟ ଦେଇଛନ୍ତି ଯେ ସୀମାଦ୍ରି କୌଣସି

ପ୍ରେମ-ଜନିତ ବ୍ୟାପାରରେ ଜଡ଼ିତ ହୋଇପଡ଼ି ହୁଏତ ଦୁର୍ଘଟଣାର ସମ୍ମୁଖୀନ ହୋଇଛି ବା ଆତ୍ମହତ୍ୟା କରିଛି ।

ସରୋଜ କେବଳ ତା'ର ଦୁଇ ହାତକୁ ଛାତି ଉପରେ ଛକି ଦେଇ ଚିନ୍ତିତ ଭାବରେ ବୁଲୁଚି ଏପଟରୁ ସେ'ପଟ । କିଛି କୂଳକିନାରା ମିଳେନାଁ ସରୋଜକୁ । ବୁଲି ବୁଲି କେନାଲ୍ କୂଳକୁ ଆସେ ସରୋଜ ଆଉ ସେଠି ଦେଖେ—

ସେଇ ଜୀର୍ଣ୍ଣ ଚଉରାଟି ମଧ ଭାଙ୍ଗି ପଡ଼ିଛି ମୂଳରୁ—ପଡ଼ିବାର ଧକ୍କାରେ କେଇ ଖଣ୍ଡ ଇଟା ଛିଟ୍‌କି ପଡ଼ିଚି ଦୂରକୁ ।

ସରୋଜ ବିସ୍ମିତ ହୋଇଛି—କାଲି ରାତିରେ ବର୍ଷା ବା ଝଡ଼ର ବିନ୍ଦୁ ମାତ୍ର ସୂଚନା ନଥିଲା...ତେବେ ଭାଙ୍ଗିଲା କିପରି ? ହୁଏତ ସୀମାଦ୍ରି ଶେଷ ପର୍ଯ୍ୟନ୍ତ ଏଇ ପଥର ଖୁଣ୍ଟଟାର ଆତ୍ମା ଭିତରକୁ ପ୍ରବେଶ କରିପାରି ଥିଲା ।

## ପାଞ୍ଚ

ଦଶବର୍ଷ ଅତିକ୍ରାନ୍ତ ହୋଇଯାଇଚି ।

ସରୋଜ ତା'ର ସ୍ତ୍ରୀକୁ ନେଇ ଗାଡ଼ିରେ ଯାଉଥିଲା ସେଇବାଟ ଦେଇ । କେନାଲ୍ କୂଳର ସେଇ ନିର୍ଦ୍ଦିଷ୍ଟ ସ୍ଥାନଟି ପାଖରେ ସରୋଜ ଗାଡ଼ି ଠିଆ କରେ । ଗାଡ଼ିରେ ତା'ର ସ୍ତ୍ରୀକୁ ଅପେକ୍ଷା କରିବାକୁ କହି ସରୋଜ ଓହ୍ଲେଇ ପଡ଼ି ଚାଲେ କେନାଲ୍ ବନ୍ଧ ଉପରକୁ । ସେ ବୋଧହୁଏ ଦଶବର୍ଷ ପରେ ତା'ର ବନ୍ଧୁ ସୀମାଦ୍ରିକୁ ସ୍ମରଣ କରିବାକୁ ଚାହେଁ ସେଇ ପରିବେଶ ଭିତରେ ।

ଆଜି ବି ସେଇ ବାଲି ସବୁ ରୂପା ପାଲଟି ଯାଇଛନ୍ତି ଜହ୍ନର କାଉଁରୀ କାଠିରେ । ଆଜି ବି ସେଇ ଗଛ ସବୁ ସେମିତି ଠିଆ ହୋଇ ରହିଛନ୍ତି ପ୍ରତ୍ୟେକଟି ଗୋଟିଏ ଗୋଟିଏ ମୂର୍ତ୍ତିମନ୍ତ ରହସ୍ୟ ପରି ।

ଦୂରରୁ ଅସ୍ପଷ୍ଟ ଭାବରେ ଦେଖାଯାଉଛି କିଏ ଜଣେ ଭଦ୍ରଲୋକ ମୁଣ୍ଡ ତଳକୁ କରି ବୁଲୁଛନ୍ତି ସେଠି । ଏଇ ଚିର-ନିର୍ଜ୍ଜନ କେନାଲ୍ କୂଳରେ ସେ ବୋଧହୁଏ ଜଣେ ସହରର କୋଳାହଳ-ଅତ୍ୟାଚାରିତ ଆଶ୍ରୟପ୍ରାର୍ଥୀ । ଦୂରରୁ ସରୋଜ ଆସିବାର ସାମାନ୍ୟ ସଙ୍କେତ ପାଇ ସେ ଭଦ୍ରଲୋକ ଯେପରି ହଠାତ୍ ନିଶ୍ଚଳ ହୋଇଗଲେ ମୁହୂର୍ତ୍ତକ ପାଇଁ ଆଉ ଭୟ ପାଇଲା ପରି ତତ୍‌କ୍ଷଣାତ୍ ବସି ପଡ଼ିଲେ ବାଲିରେ ।

ସରୋଜ ବାଲି ଉପରକୁ ଉଠିଲା । କେଇପାଦ ଆଗକୁ ଯାଇ ସେ ଦେଖେ ଭଦ୍ରଲୋକ ବସି ପଡ଼ିଥିବା ଜାଗାରେ ମନୁଷ୍ୟର କୌଣସି ଚିହ୍ନବର୍ଣ୍ଣ ପର୍ଯ୍ୟନ୍ତ ନାହିଁ ।

ସେଠି ସେହିପରି ନିର୍ବାକ୍ ହୋଇ ପଡ଼ିରହିଛି ସେଇ ଭଙ୍ଗା ଚଉରାଟା । କାଳର ଅତ୍ୟାଚାରରେ ତା ଉପରେ ଶିଉଳି ମାଡ଼ିଗଲାଣି....ଇଟାର ଫାଟରେ ଘାସ ଉଠିଗଲାଣି ପ୍ରଚୁର ।

ଅଭିଭୂତ ହୋଇ କେଇ ମୁହୂର୍ତ୍ତ ଠିଆହୋଇ ରହିଲା ସରୋଜ । ମନେ ମନେ ଉଚ୍ଚାରଣ କଲା ସେ....''ସେଇ ଦିନଠାରୁ ଏଇଠି ତୁ ଶୋଇ ରହିଚୁ ସୀମାଦ୍ରି.... କେତେ ରାତି ଆମେ ଏଇଠି ଶୋଇ ଶୋଇ କଳ୍ପନା ନ କରିଛେ ଆମର ବାହାଘର କଥା—ମୁଁ ବାହା ହୋଇଛି—ଆ-ଦେଖିବୁ । ଆ' ମୋର ସ୍ତ୍ରୀକୁ... କେମିତି ଦେଖେଇବି ତତେ...''

ସରୋଜର ଆଖିରେ ଲୁହ ଟଳମଳ କରୁଥିଲା ।

ସରୋଜ ଫେରି ଆସିଲା ଗାଡ଼ି ପାଖକୁ ।

ସରୋଜର ସ୍ତ୍ରୀ ପଚାରିଲା, ''କିଏ ସେ ଭଦ୍ରଲୋକ ଜଣକ ଏତେ ରାତିରେ ବୁଲୁଥିଲେ ଏଠି...

ସରୋଜ ରୁମାଲ୍‌ରେ ଆଖି ପୋଛି ନଁଉ ନଉ କହିଲା, ''ଘରକୁ ଚାଲ, କହିବି'' ।



# ପକ୍ଷାଘାତ

## ଏକ

ରାତ୍ରି ଗଭୀର ହୋଇ ଆସିଲାଣି । ସାରା ସହରଟା ଯେପରି ଶ୍ରାବଣର ଅତ୍ୟାଚାରରେ କ୍ଳାନ୍ତ ହୋଇ ପଡ଼ିଛି । ବିରହିଣୀର ଶ୍ଲଥକବରୀ ପରି ଆକାଶର ମେଘସବୁ ଫିଟି ଫିଟି ପଡ଼ିଛନ୍ତି କି ଗୋଟାଏ ଅଳସ ଛନ୍ଦରେ ।

ଦୁଇତାଲାର ଝରକା ଉପରେ ଭାର ଦେଇ ଇନ୍ଦିରା ଲକ୍ଷ୍ୟ କରି ରହିଥିଲା ବାହାରକୁ । ବାହାରର ଏଇ ସୁନ୍ଦର ଆକାଶ । ପ୍ରେମଚାନ୍ଦ୍ ପାର୍କ ମୋଡ଼ର ଆଶ୍ରୟପ୍ରାର୍ଥୀ ବସ୍ତିର ଏଇ ଆକାଶ ।

ତଳ ମହଲାର ଥ୍ରି ମସ୍କେଟିୟରସ୍ ଆଡ୍‌ଭାରଟାଇଜର୍ସ୍ ଅଫିସ୍ କେତେବେଳୁ ବନ୍ଦ ହୋଇଗଲାଣି । ତଳେ ଅନେକ ତଳେ ଫୁଟ୍‌ପାଥ୍‌ର ସନ୍ତସନ୍ତିଆ ଚଟାଣ 'ଚକ୍ ଚକ୍ କରୁଛି କାହାର କ୍ଷୀଣ ଆଲୋକରେ ।

ଇନ୍ଦିରା ଗୋଟିଏ ଛୋଟିଆ ଦୀର୍ଘ ନିଶ୍ୱାସ ଭିତରକୁ ଟାଣି ନେଇ ବେକ ତଳର ଚାଇନା ସିଲ୍‌କର ସ୍କାର୍ଫ ଗଣ୍ଠିକୁ ହୁଗୁଳେଇ ଦେଲା । ଇନ୍ଦିରା ଠିକ୍ ଏଇ ଝରକା ପାଖରୁ ଏମିତି ବହୁ ରାତ୍ରି ଚାହିଁ ରହିଛି ଉପରର ଆକାଶକୁ—ତଳର ଫୁଟ୍‌ପାଥକୁ—ଆଉ—ଆଉ ଏଇ ଦିଗନ୍ତ ପ୍ରସାରୀ ଅନନ୍ତଶୂନ୍ୟତା ଭିତରକୁ । କିନ୍ତୁ କିଏ ତାର ପରିଚୟ ଦବ ? କିଏ କହିବ ସାଗରର ଅଶାନ୍ତ ତରଙ୍ଗ କାହିଁକି ମୁଣ୍ଡପିଟେ ବେଳାଭୂମିରେ ବାରମ୍ବାର ?

ଝରକା ପାଖରୁ କେଇ ହାତ ଛାଡ଼ି ଖଣ୍ଡେ ଦଉଡ଼ିଆ ଖଟରେ ଶୋଇ ରହିଛି ସୂର୍ଯ୍ୟକାନ୍ତ । ଇନ୍ଦିରା ମୁହଁ ଫେରାଇ ସୂର୍ଯ୍ୟର ବିଛଣା ଆଡ଼େ ଚାହିଁଲା । ଅନ୍ଧକାରରେ ଖଟ ଉପରେ ସୂର୍ଯ୍ୟକାନ୍ତର ଆକୃତି ସ୍ପଷ୍ଟ ଭାବରେ ଦେଖି ହେଉ ନାହିଁ । ଘର ଭିତରକୁ ପ୍ରଥମେ ଆସିଲାବେଳେ ଥରେ ମାତ୍ର ସୂର୍ଯ୍ୟକୁ ଆଲୋକରେ ଦେଖି ନେଇଥିଲା ଇନ୍ଦିରା । କେତେ ଶୀର୍ଣ୍ଣ ହୋଇଯାଇଛି ସୂର୍ଯ୍ୟ ! କିନ୍ତୁ କି ଶାନ୍ତ ସୂର୍ଯ୍ୟର ଦୁଇଟି ବିଶାଳ ମୁଦ୍ରିତ ନୟନ । ଏଇ ରୋଗଜୀର୍ଣ୍ଣ ସୂର୍ଯ୍ୟକୁ ଦେଖି ଇନ୍ଦିରାର କିପରି ଏକ ନୂତନ ଅନୁଭୂତି ଆସିଲା । ଆଜି ଯେପରି ସୂର୍ଯ୍ୟକୁ ସେ ଏକ ନୂତନ ବାୟୁମଣ୍ଡଳରେ—ଏକ ନୂତନ ପରିବେଶ ମଧ୍ୟରେ ନୂଆ କରି ଅନୁଭବ କଲା ।

କେତେ ପାଉଣ୍ଡ ଓଜନ୍ ହବ ସୂର୍ଯ୍ୟ ? ସେ ବୋଧହୁଏ ସୂର୍ଯ୍ୟର ଅଣ୍ଟା ଆଉ ବେକ ପାଖରେ ହାତ ଦେଇ ତାକୁ ଅନ୍ୟ ଏକ ଶଯ୍ୟାକୁ ଅନାୟାସରେ ସ୍ଥାନାନ୍ତରିତ କରି ପାରନ୍ତା । ଆଜି ବୋଧହୁଏ ସେ ଜୋର କରି ତାକୁ କହି ପାରନ୍ତା, ''ତମକୁ ଏ ଔଷଧ ଖାଇ ନବାକୁ ହବ—ନାଁ...ସେ କ'ଣ ଜୋର୍ କରି କହନ୍ତା ? ...ବରଂ ତା'ର ଉଷ୍ଣ କପାଳରେ ହାତ ବୁଲାଇ ସେ ମିନତି କରି କହନ୍ତା ତମକୁ କ'ଣ ଆଉ ଛୋଟ ପିଲାଙ୍କ ପରି ବୁଝାଇବାକୁ ହବ ସୂର୍ଯ୍ୟ ?

ଏଇ ସୂର୍ଯ୍ୟକାନ୍ତ—ଅତି ପୁରାତନ ସେ । ଆଜିକି ଠିକ୍ ପାଞ୍ଚ ବର୍ଷ ତଳେ...ଅତୀତ ଭିତରକୁ ପହଁରିଗଲା ଇନ୍ଦିରାର କଳ୍ପନା । ପୃଥିବୀ ଉପରେ ନୂପୁର ବଜାଇ ଆସିଥିଲା ଠିକ୍ ଏଇ ଶ୍ରାବଣ । ଆଉ ସୂର୍ଯ୍ୟ ପାର୍ଟି ଅଫିସର ଗୋଟାଏ କଣରେ ବସି ବସି ପାର୍ଟିର କାଗଜ ପାଇଁ ସଂପାଦକୀୟ ଲେଖୁଥିଲା ସିଗାରେଟ୍ ଟାଣି ଟାଣି । କି ଆଶ୍ଚର୍ଯ୍ୟ ଆଉ ଆକସ୍ମିକ ଲୋକ ସେ—ହଠାତ୍ ପକେଟରୁ ଗୋଟାଏ ଅଣି କାଢ଼ିଆଣି ଶୁଦ୍ଧ ବଙ୍ଗଳାରେ କହିଲା—ଆପଣ ଯଦି କିଛି ମନେ ନ କରନ୍ତି ତାହାହେଲେ ଏଇ ତଳ ଚା' ଦୋକାନରୁ କପେ ଚା' ପାଇଁ ବରାଦ୍ ଦେଇଦେବେ ।

ବାସ୍ ସେତିକି । ଆଉ କିଛି ନ କହି ସୂର୍ଯ୍ୟ ପୁଣି ଲେଖି ଚାଲିଲା ପୂର୍ବପରି । ସେ ଯେପରି କହିବାକୁ ଚାହେଁ ଯା'ଠାରୁ ଆଉ ଅଧିକା ଭଦ୍ର ବା ଫର୍ମାଲ ହବା ସମ୍ଭବ ନୁହଁ ତା ପକ୍ଷରେ । ସ୍ତମ୍ଭୀଭୂତ ହୋଇଗଲା ଇନ୍ଦିରା—ଅନେକଟା ଅପମାନିତ ମଧ ବୋଧ କରିଥିଲା ସେ—ପ୍ରତିବନ୍ଧ ନକରି ତଳକୁ ଓହ୍ଲାଇ ଯାଇଥିଲା ପାହାଚ ଗଣି ଗଣି ।

ଏଇ ସେମାନଙ୍କର ପ୍ରଥମ ପରିଚୟ ।

ଇନ୍ଦିରାର ସ୍ୱପ୍ନଘୋର ମନ ଯେମିତି ଚଞ୍ଚଳ ହୋଇ ଉଠିଲା । ଜ୍ୟୋସ୍ନାର କେଇଟି ପ୍ରଥମ କିରଣ ଆସି ପଡ଼ିଛି ଇନ୍ଦିରାର ଦୁଇ ସୁଗୋଲ ନଗ୍ନ ବାହୁଲତା ଉପରେ । ଆକାଶରେ ଚନ୍ଦ୍ର ଉଠିଛି । ଶ୍ରାବଣର ମେଘମୁକ୍ତ ଆକାଶରେ ଉଠିଛି ଦ୍ୱାଦଶୀର ପ୍ରଥମ ଚନ୍ଦ୍ର ।

ଠିକ୍ ଏଇ ସୂର୍ଯ୍ୟପରି ଅତ୍ୟନ୍ତ ପୁରାତନ ଆଉ ପରିଚିତ ଏଇ ଚନ୍ଦ୍ର । କିନ୍ତୁ ପୃଥିବୀର ମନୁଷ୍ୟର ଏଇ ଦୂର ଦୂରାନ୍ତର ଚନ୍ଦ୍ର ପ୍ରତି କାହିଁକି ଏତେ ଗଭୀର ଆକର୍ଷଣ ? ଏ ଆକର୍ଷଣ କ'ଣ ମିଥ୍ୟା—କ'ଣ ପ୍ରତାରଣା—ମନୁଷ୍ୟର ମନୁଷ୍ୟ ପ୍ରତି ଅହେତୁକୀ ମମତା ?

ତଳେ ରିଫ୍ୟୁଜି ବସ୍ତିର ଟିଣ ଛାତ ଉପରେ ଚନ୍ଦ୍ର କିରଣ ଲହଡ଼ି ଭାଙ୍ଗୁଛି । ଠିକ୍ ତା'ରି ତଳେ ଅସଂଖ୍ୟ ଉତ୍ପାଟିତ ମନୁଷ୍ୟ-ଜୀବ ଦେହକୁ ଦେହ ଲଗାଇ ନିଦ୍ରା

ଯାଇଥିବେ । ଜୀବନର ରଣକ୍ଷେତ୍ରର ସଂଗ୍ରାମୀ ସୈନିକ ଏମାନେ । ଏମାନେ ଏ ଶତାବ୍ଦୀର ଯାହାକିଛି ଅତିରିକ୍ତ—ଉଦ୍‌ବୃତ୍ତ—ଆଉ ସେଇଥିପାଇଁ ଉତ୍‌କ୍ଷିପ୍ତ ।

ଠିକ୍ ଇନ୍ଦିରା ପରି—ସେଇ ନୁଆଣିଆ ଟିଣ ଛାତ ଘରର କ୍ଷୁଦ୍ର ବାତାୟନ ଧାରରେ କେଉଁ ପଳାତକ ଲଳନା ଆଖିରେ ବି ସ୍ୱପ୍ନର ଢେଉ ଲାଗିଛି । ଗୋଟାଏ ଆଖିରେ ତାର ଶ୍ୟାମଳ ଜନ୍ମଭୂମିର ସ୍ୱପ୍ନ—ଅପହୃତ ଅତୀତର ସ୍ୱପ୍ନ—ଆଉ ସର୍ବୋପରି ଏଇ ଦ୍ୱାଦଶୀ ।

ଚନ୍ଦ୍ରମାର ସ୍ୱପ୍ନ । ସ୍ୱପ୍ନ ଯାହାକିଛି ଶାନ୍ତ, ସ୍ନିଗ୍ଧ ଓ ସୁନ୍ଦରର । କିନ୍ତୁ ଆଉ ଆଖି ଯେପରି ବଞ୍ଚି ରହିବାର ସ୍ୱପ୍ନରେ ଶାଣିତ ଓ ହିଂସ୍ର ହୋଇ ଉଠିଛି ।

କିନ୍ତୁ ଦୁଇଟାଯାକ ତ ସତ୍ୟ । ଯେପରି ସତ୍ୟ ଏଇ ବଞ୍ଚିବାର ସଂଗ୍ରାମ—ଠିକ୍ ସେହିପରି ବାସ୍ତବ ଏଇ ଦ୍ୱାଦଶୀର ଚନ୍ଦ୍ର—ଆଖିର ଏଇ ନୀଳ ସ୍ୱପ୍ନ—ଏଇ ଶେଷହୀନ ପ୍ରତୀକ୍ଷା ।

ସହାନୁଭୂତିରେ ଇନ୍ଦିରାର ଆଖି ଆର୍ଦ୍ର ହୋଇ ଆସିଲା ।

ଆକାଶରେ ଦ୍ୱାଦଶୀ ଚନ୍ଦ୍ର ନିମ୍ନମୁଖୀ । ଏଇତ ସେତେବେଳେ ଜନ୍ମ ଉଠିଲା । ଆଉ କେଇଟି ଦୁର୍ଲ୍ଲଭ ମୁହୂର୍ତ୍ତ ପରେ ସୃଷ୍ଟିର ଗୋଟିଏ ଚନ୍ଦ୍ର ବିଳୟ ପାଇବ '। କାଲିର ଆକାଶରେ ତ୍ରୟୋଦଶୀର ଚନ୍ଦ୍ର । କିନ୍ତୁ କଣ ଫେରି ପାରିବ ଆଜିର ଏଇ ଚନ୍ଦ୍ର ? ଲେଉଟି ଆସି ପାରିବ ଜୀବନର ଏଇ କରୁଣ ମଧୁସିକ୍ତ ମୁହୂର୍ତ୍ତ ?

ଘର ଭିତରେ ଅନ୍ଧାର ଆଉ ଚନ୍ଦ୍ରକିରଣର ମିଶାମିଶି ଏକ କମନୀୟ ପରିବେଶ ସୃଷ୍ଟି ହୋଇଛି ।

ସୂର୍ଯ୍ୟ କର ଲେଉଟେଇ ଶୋଇଲା ।

ଇନ୍ଦିରାର ଦେହେ ଦେହେ କି ଗୋଟାଏ ଅପୂର୍ବ ରୋମାଞ୍ଚ ଯେପରି ଖେଳିଗଲା ମୁହୂର୍ତ୍ତକରେ । ତାର ଦେହ ହାଡ଼, ମାଂସ ସବୁ ଯେପରି କେଉଁ ଅକାଳ ବସନ୍ତର ପୁଲକରେ ଫୁଲ ହୋଇ ଫୁଟି ଯାଉଛି । ଏଇତ ଜୀବନର ପରମ ଉପଲବ୍‌ଧି—ଚରମ ସାର୍ଥକତା ।

କିନ୍ତୁ ଆଜିର ଏ ମହୋତ୍ସବରେ କାହିଁକି ଶୋଇ ରହିଛ ତମେ ସୂର୍ଯ୍ୟ ? ସୂର୍ଯ୍ୟ ତ ନୁହଁ—ପୁଲିସ ଭୟରେ ଆତ୍ମଗୋପନକାରୀ ବୃହନ୍ନଳା ତମେ—କିନ୍ତୁ କେବେ ସରିବ ମୋଚ ଏ ଅଜ୍ଞାତବାସ ? ଇନ୍ଦିରାର ମନେ ହେଲା ସେ ଯଦି ଏଇ ମୁହୂର୍ତ୍ତରେ ସ୍ୱପ୍ନରେ ସ୍ୱପ୍ନ ତରଳି ମିଶିଗଲା ପରି ଛପି ଛପି ଯାଇ ସୂର୍ଯ୍ୟ ପାଖରେ ଠିଆ ହୋଇ ତା'

କାନରେ କୁହନ୍ତା—''ଉଠ ସୂର୍ଯ୍ୟ, ଆକାଶରେ ଚନ୍ଦ୍ର ଉଠିଛି—ଆଉ ମାତ୍ର କେଇ ମୁହୂର୍ତ୍ତ ।''

ସୂର୍ଯ୍ୟ ବୋଧେ ଧୀରେ ବିଛଣା ଛାଡ଼ି ଉଠି ଠିଆ ହୁଅନ୍ତା ନିଜ ନିଜ ଆଖିରେ । ଦୀର୍ଘ ତନୁ ସୂର୍ଯ୍ୟର ଛାତି ପାଖରେ ଇନ୍ଦିରା ତା'ର ଛୋଟ ମୁହଁଟିକୁ ଉପରକୁ ଟେକି କୁହନ୍ତା—

''ସତରେ ସୂର୍ଯ୍ୟ, ଆମହର୍ଷ୍ଟ ଷ୍ଟ୍ରିଟ୍ ଆକାଶରେ ଆଉ ଥରେ ଉଠିବନି ଆଜିର ଏଇ ଚନ୍ଦ୍ର—ଆଉ କେବେ ଫେରିବନି ଆଜିର ଏଇ ମୁହୂର୍ତ୍ତ.... ।''

ତା'ପରେ ସୂର୍ଯ୍ୟ ବୋଧହୁଏ ଇନ୍ଦିରାର କ୍ଷୀଣ କଟିରେ ବାହୁବେଷ୍ଟନ କରି ଧୀରେ ଆଗେଇ ଆସନ୍ତା—ଆଉ ଗବାକ୍ଷ ଧାରରେ ହାତର ପାପୁଲି ଉପରେ ପାପୁଲି ରଖି ଦୁଇଟି ବିଶାଳ ପଦ୍ମ ନୟନ ବିସ୍ଫାରିତ କରି ଚାହିଁ ରହନ୍ତା ଆକାଶଚାରୀ ଚନ୍ଦ୍ରଆଡ଼େ ।

ଚାପା ସ୍ୱରରେ କୁହନ୍ତା ଇନ୍ଦିରା—କୁହ ସୂର୍ଯ୍ୟ, କୁହ ସୁନ୍ଦର ଏଇ ଚନ୍ଦ୍ର । କଣ କୁହନ୍ତା ସୂର୍ଯ୍ୟ ?

ସୂର୍ଯ୍ୟ ବୋଧହୁଏ ଉନ୍ମୁଖୀ ଇନ୍ଦିରାର ଚିବୁକରେ ହାତ ଦେଇ ଇଙ୍ଗିତରେ କଥା କୁହନ୍ତା—ଉହୁଁ—ତମେ ସୁନ୍ଦର ।

ଇନ୍ଦିରାର ପଞ୍ଚବିଂଶତି ଶ୍ରାବଣର ଏଇ ଜ୍ୟୋତ୍ସ୍ନା ନିଶିଥିନୀ ସାର୍ଥକ ହୁଅନ୍ତା ।

ଚନ୍ଦ୍ର ଆହୁରି ତଳକୁ ଖସି ଆସିଛ ।

କିନ୍ତୁ ନିଷ୍ଠୁର ସୂର୍ଯ୍ୟର ନିଦ୍ରାଭଙ୍ଗ ହୁଏନାଁ ।

ଝରକାଟାକୁ ଆଉଜାଇ ଆଣି ଇନ୍ଦିରା ଘରର ସୁଇଚ୍‌ଟାକୁ ଜାଳିଦେଲା । ସୂର୍ଯ୍ୟର ବିଛଣା ଠାରୁ କିଛି ଦୂରରେ ଖଣ୍ଡେ, ଛୋଟ ଟେବୁଲ୍ ଉପରେ ଖଣ୍ଡେ ପୋର୍ଟେବଲ ଟାଇପ୍‌ରାଇଟର୍‌ର କ୍ଲିପ୍ ଦେହରେ ଖଣ୍ଡେ କାଗଜ ସଂଯୁକ୍ତ କରି ରଖାଯାଇଛି ।

କ୍ଲାନ୍ତ ହୋଇ ପଡ଼ିଛି ବୋଧହୁଏ ଦୁର୍ବଳ ସୂର୍ଯ୍ୟ—ଟାଇପ୍ ଶେଷ କରି ପାରି ନାହିଁ । ଇନ୍ଦିରାର ଇଚ୍ଛା ଥିଲା ସେ ରାତ୍ରିର ବାକୀ କେଇ ଘଣ୍ଟା ସମୟ ଭିତରେ ଟାଇପ୍ କରି ସୂର୍ଯ୍ୟର କିଛି କାମ ଲାଘବ କରିଦେବାକୁ । କିନ୍ତୁ ଏଇ କଳକଳିଗା ଟାଇପ୍‌ରାଇଟର୍‌ର ବିକଟ ଶବ୍ଦରେ କଣ ଶୋଇ ପାରିବ ସୂର୍ଯ୍ୟ ? ସେଥିରୁ ଆପାତତଃ ନିରସ୍ତ ହୋଇ ରାତ୍ରିର ଶେଷ କେଇ ମୁହୂର୍ତ୍ତକୁ ବିଶ୍ରାମ କରି କଟାଇ ଦବାପାଇଁ ନିଜକୁ ପ୍ରସ୍ତୁତ କରୁଥିଲା ଇନ୍ଦିରା ।

ଘରର ଅନ୍ୟାନ୍ୟ ଉପକରଣ ଉପରେ ଦୃଷ୍ଟି ଫେରାଉ ଫେରାଉ ଇନ୍ଦିରାର ଆଖି ସୂର୍ଯ୍ୟର ଛୋଟ ଆଲ୍‌ମାରି ଉପରେ ପଡ଼ିଲା । କେତେ ଆଡ଼ମ୍ବରହୀନ ଭାବରେ ଅଳ୍ପ କେଇଟି ଖଦଡ଼ର ଲୁଗା ଓ ପଞ୍ଜାବୀ ଅତି ପରିଚ୍ଛନ୍ନ ଭାବରେ ରଖାଯାଇଛି । ପଞ୍ଜାବୀଟାକୁ ଦେଖିଲେ ସୂର୍ଯ୍ୟ ଦେହର ଗୋଟାଏ ମୋଟାମୋଟି ଧାରଣା ମିଳେ ୮ ସୂର୍ଯ୍ୟ ଦୀର୍ଘକାୟ—ସୂର୍ଯ୍ୟର ଚଉଡ଼ା ଚଉଡ଼ା କାନ୍ଧ—କିନ୍ତୁ ପଞ୍ଜାବୀର କାନ୍ଧଗୁଡ଼ାକ ତଳକୁ ନଇଁ ନଇଁ ପଡ଼ିଛନ୍ତି—ଠିକ୍ କାନ୍ଧ ପାଖରେ କିଛି ବାଟ ସିଲେଇ ଫିଟିଯାଇ ଠିକ୍ ଗୋଟାଏ ଆଖିର ଆକୃତି ପରି ଦେଖାଯାଉଛି ଦୂରରୁ । କିଛି ମୁହୂର୍ତ୍ତ ନିରୀକ୍ଷଣ କରି ନିରବରେ ହସି ଉଠିଲା ଇନ୍ଦିରା—ଠିକ୍ ସୂର୍ଯ୍ୟର ଆଖି ପରି ବିଶାଳ ଆଉ ରହସ୍ୟମୟ । ତା'ର ମନେ ହେଲା ଯେପରି ସୂର୍ଯ୍ୟର ଆଖି ହଠାତ୍ ଜୀବନ୍ତ ହୋଇ ତା'ର ସମସ୍ତ ଗତିବିଧି ଲକ୍ଷ୍ୟ କରୁଛି ରହି ରହି । ଇସ୍ ! ସୂର୍ଯ୍ୟର ଆଖିରେ ଏ କି ଇଙ୍ଗିତ ! —ଦୁଇଟି ଲଜ୍ଜାରୁଣ ଆଖି ଆନତ କରି ଆଣିଲା ଇନ୍ଦିରା—ବିଦ୍ୟୁତ୍ ଆଲୋକରେ ନିଜର ଦୁଇ ଅର୍ଦ୍ଧମୁକୁଳିତ ନଗ୍ନ ସ୍କନ୍ଧ ଯେପରି ଝଲସି ଉଠୁଛି ।

ମୁକୁଳା ଦେହ ଉପରେ ସହ୍ୟ କରି ହୁଏନା ସୂର୍ଯ୍ୟର ସୂଚକ ଆଖି ।

ସ୍କାର୍ଫଟିକୁ ମୁଣ୍ଡ ତଳେ ଦେଇ ଇନ୍ଦିରା ଗୁଡ଼ାଏ ବିପର୍ଯ୍ୟସ୍ତ ଖବରକାଗଜର ଗଦା ଉପରେ ଶୋଇ ପଡ଼ିଲା । ଓଃ ! କି ଅବସାଦ ! କି କ୍ଳାନ୍ତି ! ଆଖିରେ ଯେମିତି ପୋଷ ପୋଷ ନିଦ ଉଚ୍ଛୁଳି ପଡୁଛି । ବିଶ୍ରାମର ଆଶ୍ୱସ୍ତିରେ ଇନ୍ଦିରା ଅସ୍ଫୁଟ ସ୍ୱରରେ ଗୁଞ୍ଜନ କରି ଉଠିଲା ସେଲିଙ୍କର ଦୁଇଧାଡ଼ି କବିତା—

"The desire of the moth for the star of the night for the morrow..."

କ୍ଳାନ୍ତିର ମଦରେ ଇନ୍ଦିରାର ଦୁଇ ଆଖି ପତା ମୁଦି ମୁଦି ହୋଇ ଆସୁଛି । ଦେହର ପ୍ରତିଟି ଅଙ୍ଗ ପ୍ରତ୍ୟଙ୍ଗ ଅତି ନିସ୍ତେଜ—ନିର୍ଜୀବ...ଆଉ ଭାବି ହେଉନାହିଁ—ସବୁ ଭାବନା ଯେପରି ଉଙ୍କି ମାରି ପୁଣି ବୁଡ଼ି ଯାଉଛନ୍ତି ଅକୂଳ ବିସ୍ମୃତି ସମୁଦ୍ରରେ...ଚେତନାର ପାରାବାରରେ ଅସୁମାରୀ ବୁଦ୍‌ବୁଦ୍...ଖାଲି ବୁଦ୍‌ବୁଦ୍ ।

The desire....The desire...The desire...

## ଦୁଇ

ରାତ୍ରି ଶେଷ ହବାକୁ ଆହୁରି ସମୟ ବାକୀ ଅଛି । ପ୍ରତ୍ୟୁଷର ଏଇ କେଇଟି ମୁହୂର୍ତ୍ତ ସୂର୍ଯ୍ୟର ଅତି ପ୍ରିୟ । ସକାଳର କୋଳାହଳ ପୂର୍ବରୁ ସେ ନିଜକୁ ସେଇ ଅଳ୍ପ ସମୟ ଭିତରେ ପ୍ରସ୍ତୁତ କରିନିଏ ।

ବିଛଣା ଛାଡ଼ି ସୂର୍ଯ୍ୟ ଉଠି ଠିଆ ହେଲା । ଦେହର ସ୍ୱାଭାବିକ ଅବସ୍ଥା ଫେରିବାକୁ ଆହୁରି କିଛିଦିନ ଲାଗିବ । କିପରି ଥଣ୍ଡା ଲାଗୁଛି । ମାଟିଆ ରଙ୍ଗର ସ୍ୱେଟର ଖଣ୍ଡକ ଦେହରେ ଗଳାଇ ଦେଇ ସୂର୍ଯ୍ୟ ଖଣ୍ଡେ କ୍ୟାପ୍‌ଷ୍ଟାନ୍‌ରେ ନିଆଁ ଧରାଇଲା ।

ସେ କିଏ ? ସୂର୍ଯ୍ୟ ଡିଆସିଲି କାଠିଟାକୁ ହାତରେ ଧରି କିଛି ସମୟ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା । ଖବରକାଗଜର ଅଳିଆ ଗଦା ଭିତରେ ଗୁଞ୍ଜି ହୋଇ ନିଃଶଙ୍କ ଭାବରେ ଶୋଇ ରହିଛି ଇନ୍ଦିରା ।

ବାଁ ହାତରେ ସୁଇଚ୍ ବଟନ୍‌କୁ ଟିପି ଦେଲା ସୂର୍ଯ୍ୟ ।

ଠିକ୍ ତ । ଇନ୍ଦିରା ଶୋଇ ରହିଛି । ଗାଢ଼ କୃଷ୍ଣ ରାତ୍ରି ଆଭରଣରେ ବେଶ୍ ସୁନ୍ଦର ଦେଖାଯାଉଛି ଇନ୍ଦିରା । ଦୁଇଟି ସୁସ୍ଥ ଭୁଜଲତାର ବନ୍ଧନୀ ଉପରେ ମୁଣ୍ଡ ରଖି ଶୋଇ ରହିଛି ସେ ଏକ ଅପୂର୍ବ ଛନ୍ଦରେ । କପାଳ ଉପରେ ଆଙ୍କି ହେଲା ପରି କେଇଟି ଚୂର୍ଣ୍ଣ କୁନ୍ତଳ ପଡ଼ିଛି...ଦୁଇ ଇନ୍ଦ୍ରଧନୁ ଆଖି ପତାରେ ଯେମିତି ଗହନ ନିଦ ଘେରି ରହିଛି । ଇନ୍ଦିରାକୁ ଜୀବନରେ ବହୁବାର ଦେଖିଛି ସୂର୍ଯ୍ୟ—କିନ୍ତୁ ଆଜି ସେ ଦେଖୁଛି ଏକ ନୂତନ ଇନ୍ଦିରାକୁ—ସୁନ୍ଦରୀ ଇନ୍ଦିରାକୁ—ଛନ୍ଦମୟୀ ଇନ୍ଦିରାକୁ ।

ପ୍ରବଳ ଇଚ୍ଛା ହେଲା ସୂର୍ଯ୍ୟର ସେ ଇନ୍ଦିରାକୁ ଉଠେଇ ଅନେକ କିଛି ପଚାରନ୍ତା—କିନ୍ତୁ ପଥଶ୍ରାନ୍ତ ପଥିକୀପରି ଇନ୍ଦିରାର ଏତେ ଘନଘୋର ନିଦ ଭାଙ୍ଗିବାକୁ ଇଚ୍ଛା ହେଲା ନାହିଁ ସୂର୍ଯ୍ୟର । ନିଜ ଖଟ ଉପରୁ ନିଜର ରାପର ଖଣ୍ଡକ ଆଣି ସେ ଧୀରେ ଆବୃତ କରିନେଲା ନିଦ୍ରିତା ଇନ୍ଦିରାର ଅଙ୍ଗଲତା ।

ଇନ୍ଦିରାର ଦେହରେ ତିଳେ ମଧ୍ୟ ସ୍ପନ୍ଦନ ନାହିଁ ।

କିନ୍ତୁ ତା'ର ଅର୍ଦ୍ଧଚେତନାର ମଥିତ ପାରାବାରରୁ ଉଠୁଛି ଅସଂଖ୍ୟ ବୁଦ୍‌ବୁଦ୍...

କିଏ ଏ ଲୋକଟା ? ଆଗରୁ ଥରେ ହେଲେ କେଉଁଠି ଦେଖିଲା ପରି ମନେ ହେଉ ନାହିଁ ଇନ୍ଦିରାର । ଖୁବ୍ ମସ୍ତବଡ଼ କଳା ଲୋକଟାଏ । ଛାତି ଉପରେ ବାହୁ ଦୁଇଟାକୁ ଛକି ଦେଇ ଠିଆ ହୋଇଛି ସ୍ଥିର ହୋଇ । ଫୁଙ୍ଗୁଳା ଛାତିର ମାଂସପେଶୀଗୁଡ଼ାକ ଅସ୍ୱାଭାବିକ ଭାବରେ ଫୁଲି ଉଠିଛନ୍ତି । ବହୁଦୂରରୁ ଲକ୍ଷ୍ୟ କଲାଣି ଇନ୍ଦିରା । କିନ୍ତୁ ସେ ଲୋକଟା ସେମିତି ସ୍ଥିର ହୋଇ ଠିଆ ହୋଇ ଚାହିଁ ରହିଛି ଇନ୍ଦିରାକୁ ଏକ ଆଖିରେ ।

ଇନ୍ଦିରା ଗୋଟିଏ ସରୁ ପିଚୁରାସ୍ତା ଉପରେ ଚାଲିଛି । ଚାଲିଛି ଗୋଟିକ ପରେ ଗୋଟିଏ ପାଦ ଗଣି ଗଣି—କିନ୍ତୁ ସରେ ନାହିଁ ଇନ୍ଦିରାର ଏଇ ପଥଚଲା...ଆଉ ସେଇ ମୂର୍ତ୍ତିଟା ବି ଠିକ୍ ସେତିକି ଦୂରରେ ଠିଆ ହୋଇ ରହିଛି ।

ଆକାଶ ପୁଣି ମେଘୁଆ ହେଲାଣି । ମେଘ କୁଣ୍ଡା ଝାଡୁଛି । ସୂର୍ଯ୍ୟ ଆଲୁଅଟାକୁ ଲିଭାଇ ଦେଇ ଝରକାର ସିଲିଂ ଉପରେ ଭରା ଦେଇ ଠିଆହେଲା ।

ଏଇ କ୍ଷୁଦ୍ର ପ୍ରକୋଷ୍ଠଟି ମଧ୍ୟରେ ସୂର୍ଯ୍ୟ ବଡ଼ ଏକାକୀ ଗତ ପାଞ୍ଚଦିନ କଟାଇ ଦେଇଛି, ବିଛଣାରେ ପଡ଼ି ପଡ଼ି । ଠିକ୍ ପଶୁପରି ଏକାନ୍ତରେ । କେତେ ସେ ଅପେକ୍ଷା ନ କରିଛି ? ଆଜିର ସକାଳ ପରି ପ୍ରତିଦିନର ସକାଳ ଆସିଛି ଆମହର୍ଷ୍ଟ ଷ୍ଟ୍ରୀଟ ରାସ୍ତାରେ ହକରଙ୍କର ଚିତ୍କାର ଭିତରେ—ତଳର ଅଫିସ ଫୋନ୍ କ୍ରିଂ କ୍ରିଂ ଚିତ୍କାର କରିଛି—କିନ୍ତୁ କାହିଁ କେହି ତ ଥରେ ହେଲେ ତା'ର ରୋଗ ଶଯ୍ୟା ଧାରରେ ମୁହଁ ନୁଆଇଁ ତାକୁ ପଚାରି ନାହିଁ କିଛି । ସେ ଯେପରି ଏ ଚଳନ୍ତି ପୃଥିବୀ ଠାରୁ ଦୂରେଇ ଯାଇଛି । କେତେ ଆକୁଳ ହୋଇ ସେ ଅପେକ୍ଷା କରି ରହିଥିଲା, କେତେ ଆଦରରେ ସେ ସ୍ୱାଗତ କରି ଥାଆନ୍ତା ଆଜିର ଏଇ ନୂଆ ଅତିଥିଙ୍କୁ, କିନ୍ତୁ ତାର ଅଲକ୍ଷ୍ୟରେ ଯେମିତି ଇନ୍ଦିରା ତାକୁ ଠକି ଦେଇ ଚାଲି ଆସିଛି ଗଭୀର ରାତ୍ରୀରେ—ସିଡ଼ିରେ ସେ ଶୁଣି ପାରିନାହିଁ ଇନ୍ଦିରାର ଶଙ୍କିତ ପଦଧ୍ୱନି ।

ଏଇ ଦୀର୍ଘ ପାଞ୍ଚବର୍ଷ ଭିତରେ ସୂର୍ଯ୍ୟ ଇନ୍ଦିରାକୁ ବିଭିନ୍ନ ପରିବେଶ ଭିତରେ ବିଭିନ୍ନ ସମୟରେ ଦେଖି ଆସିଛି । ବିଶେଷ କରି ସେମାନେ ଏକା ସାଂସ୍କୃତିକ ଗୋଷ୍ଠୀର ସଭ୍ୟ ଥିଲାବେଳେ । ସିଟି କଲେଜର ମେଧାବୀଛାତ୍ରୀ ଥିଲା ଇନ୍ଦିରା । ଇମ୍ପିରିଆଲ ଲାଇବ୍ରେରୀର ବହିର ପାହାଡ଼ ଭିତରେ ସେ ଦର୍ଶନ ଶାସ୍ତ୍ର ଉପରେ ଗବେଷଣା କରୁଥିଲା ।

କିନ୍ତୁ ହଠାତ୍ ସେଦିନ ପଥହୁଡ଼ା ପ୍ରଜାପତି ପରି ସେ ଚାଲି ଆସି ନିଜକୁ ସାମିଲ କରି ନେଇଥିଲା ଏଇ ଗୋଷ୍ଠୀ ଜୀବନରେ । ସେ ଦିନ ଏଇ ଗୋଷ୍ଠୀ ଜୀବନରେ ଟିକିଏ ଚାଞ୍ଚଲ୍ୟ ଦେଖାଯାଇଥିଲା । ସମସ୍ତେ ଯେମିତି ଆଖି ବିସ୍ତାରିତ କରି ଚାହିଁଥିଲେ ଇନ୍ଦିରାକୁ—ନବଜାତ ଏଇ ଶିଶୁ ପ୍ରଜାପତିର ଦୁଇ ଚିତ୍ରିତ ସୁନ୍ଦର ଡେଣାକୁ ।

ତା'ପରେ ଧୀରେ ଧୀରେ ଇନ୍ଦିରାର ବ୍ୟକ୍ତି ଜୀବନର ସବୁ କୋଣ ଅନୁକୋଣ ଯେମିତି ଗୋଷ୍ଠୀର ହାତୁଡ଼ିରେ ବାଜି ବାଜି ସମାନ ହୋଇଗଲା । ସେ ଆଲୋଚନା କଲା । କିନ୍ତୁ ସଂପୂର୍ଣ୍ଣ ହେଲା ନାହିଁ ଇନ୍ଦିରାର ଶିକ୍ଷା—ହଠାତ୍ ଦିନେ ତାର ଆଲୋଚନାରେ ବିଚ୍ୟୁତି ଦେଖାଗଲା—ଭୁଲ୍ ହୋଇଗଲା ଦର୍ଶନର ଦିକ୍‌ନିର୍ଣ୍ଣୟ । ଇନ୍ଦିରା କିନ୍ତୁ ତାର ପ୍ରତିବାଦ କରି ନାହିଁ । କିନ୍ତୁ ସେହି ଦିନଠାରୁ ଆଲୋଚନାର ମଙ୍ଗ ଖସିଗଲା ଇନ୍ଦିରା ହାତରୁ । ଗୋଷ୍ଠୀର ତରଣୀ ବାହିବାକୁ ଆହୁରି ଶକ୍ତି ପ୍ରୟୋଜନ—ଆହୁରି ଅଭିଜ୍ଞତା ଲୋଡ଼ା ।

ଠିକ୍ ତା' ପରେ ପରେ ଗୋଷ୍ଠୀର ଆକାଶରେ ଧୂମକେତୁ ପରି ଏକ ଦୁଃସମୟ ଆସି ପହଞ୍ଚେ । ପ୍ରତ୍ୟେକଙ୍କୁ ସାବଧାନ ରହିବାକୁ ହେବ । କୌଶଳୀ ସୈନିକ ପରି ଶତ୍ରୁର ଶିବିର ଭିତରେ ମଧ୍ୟ ନିଜକୁ ଆତ୍ମରକ୍ଷା କରିବାକୁ ପଡ଼ିବ । କାହାରିକୁ ଯେପରି ବିଶ୍ୱାସ କରି ହୁଏ ନାହିଁ ଏ ସମୟରେ । ସମସ୍ତଙ୍କ ମନ ଭିତରେ ତକ୍ଷକ ପରି କାଟି କାଟି ଗଲା ସନ୍ଦେହର କୀଟ ।

ସେ ଦିନ ପାର୍ଟିର ଗୁପ୍ତ ସର୍କୁଲାରରେ ଇନ୍ଦିରା ବିଷୟରେ ଏକ ଟିପ୍‌ପଣୀ କରାଯାଇଥିଲା ତାର ଶିକ୍ଷା ସଂପୂର୍ଣ୍ଣ ହୋଇ ନାହିଁ—ତେଣୁ ତା ପ୍ରତି ସତର୍କତା ଅବଲମ୍ବନ କରିବାକୁ ହବ । ତାକୁ କୌଣସି ଦାୟିତ୍ୱ ସମ୍ପନ୍ନ କାର୍ଯ୍ୟରେ ନିଯୁକ୍ତ କରାଯିବା ନିରାପଦ ନୁହଁ ।

ଇନ୍ଦିରାର ବ୍ୟକ୍ତିତ୍ୱ ଉପରେ ପାର୍ଟିର ଚରମ ମୋହର ପିଟି ଦିଆଗଲା ।

ଇନ୍ଦିରା ଲୋକଟାର ଖୁବ୍ ନିକଟକୁ ଚାଲି ଆସିଲାଣି । ଆରେ ଲୋକ ତ ନୁହଁ ଗୋଟାଏ ଷ୍ଟାଚ୍ୟୁ । କେତେଥର ସେ ବାଟରେ ଯାଇଛି ଇନ୍ଦିରା କିନ୍ତୁ ସବୁଥର ଯେମିତି ଏଇ ବିରାଟ ପ୍ରସ୍ତର ମନୁଷ୍ୟଟା ତାର ଆଖି ଏଡ଼ାଇ ଯାଇଛି ।

ଖୁବ୍ ପାଖକୁ ଆସି ମୂର୍ତ୍ତିଟାକୁ ନିରୀକ୍ଷଣ କଲା ଇନ୍ଦିରା । କଳା ମୁଗୁନି ପଥରକୁ ହାଣି ହାଣି ଅତି ସୁନ୍ଦର ଭାବରେ ଏଇ ସୁସ୍ଥ ପାଷାଣ ମନୁଷ୍ୟଟିକୁ ତିଆରି କରାଯାଇଛି ଇତିହାସର କେଉଁ ଏକ ବିସ୍ମୃତ ଶତାବ୍ଦୀରେ । କି ଶକ୍ତ ଆଉ ମସୃଣ ଭାବରେ କଟା ହୋଇଛି ଏଇ ମଣିଷର ମାଂସପେଶୀ ଗୁଡ଼ାକ, ସେଇ ପଥର ମୂର୍ତ୍ତି ଉପରେ ହାତ ବୁଲାଇ ଆଣୁ ଆଣୁ କି ଏକ ଗଭୀର ଭାବନାରେ ଅଭିଭୂତ ହୋଇ ପଡ଼ିଲା ଇନ୍ଦିରା । କୁଆଡ଼େ ଯାଉଥିଲା ସେ ? ସବୁ ଯେପରି ସେ ଭୁଲିଗଲା କ୍ଷଣକ ପାଇଁ ।

ବର୍ଷାର ବେଗ ବଢ଼ିଛି । ସୂର୍ଯ୍ୟର ମନର ଦୋଳନ ମଧ୍ୟ କ୍ଷିପ୍ର ହୋଇ ଉଠିଛି । ଇନ୍ଦିରାକୁ ହଠାତ୍ ଏପରି ସନ୍ଦେହ କରାଗଲା କାହିଁକି ? ସୂର୍ଯ୍ୟର ଗତ ଦେଢ଼ବର୍ଷର ଏଇ ଆତ୍ମଗୋପନ ସମୟରେ ପ୍ରାୟ ପ୍ରତ୍ୟେକ ସପ୍ତାହରେ ଆସେ ଇନ୍ଦିରା—କିନ୍ତୁ କାହିଁକି ସେ ତ ପୁଲିସ ପାଖରେ ଧରା ପକାଇ ଦେଇ ନାହିଁ ସୂର୍ଯ୍ୟକୁ ? କିନ୍ତୁ ଉପାୟ କ'ଣ ? ଗୋଷ୍ଠୀର ପରଓ୍ୱାନା ବିରୁଦ୍ଧରେ କେତେ କ୍ଷୀଣ ଜଣେ ବ୍ୟକ୍ତିର ପ୍ରତିବାଦ ? ଗୋଷ୍ଠୀ ବ୍ୟକ୍ତିବିଶେଷର ହିସାବ ରଖେନା । ଗୋଷ୍ଠୀର ଗଣିତରେ ଗୋଟାଏ ସାଧାରଣ ଗୁଣିତକ ବାହାର କରାଯାଏ । ଆଉ ସେହି ସାଧାରଣ ଗୁଣିତକ ହୁଏ ଗୋଷ୍ଠୀର ଆଦର୍ଶ—ଲକ୍ଷ୍ୟ—ଧ୍ରୁବତାରା—ଯାହା କିଛି କୁହ ।

ଆଜିଯାଏ ସୂର୍ଯ୍ୟର ଯାହା କିଛି ଗୋଷ୍ଠୀଗତ ଶିକ୍ଷା ସବୁ ଯେପରି ତା' ଆଗରେ ଏକ ବିରାଟ ପ୍ରଶ୍ନବାଚକ ହୋଇ ଠିଆହେଲା । ସମାଜନୀତି, ରାଜନୀତି, ଗୋଷ୍ଠୀ ସଙ୍ଗଠନ ସବୁ ସେ ବର୍ଷ ବର୍ଷ ଧରି ପଢ଼ିଛି । କିନ୍ତୁ ସେ ଯେମିତି ପଢ଼ିପାରି ନାହିଁ ମନୁଷ୍ୟ ମନର ବହି ।

ମନୁଷ୍ୟର ବ୍ୟକ୍ତି ଜୀବନକୁ ନେଇ...ବ୍ୟକ୍ତିର ମନସ୍ତତ୍ୱ ନେଇ ତା'ର ଯେପରି ପଢ଼ିବାର ଅନେକ ବାକୀ ରହି ଯାଇଛି ।

ଏବେ ମଧ୍ୟ ସେ ପାର୍ଟି ଭିତରେ ସବୁଠାରୁ ସଚେତନ ନୀତିବିଶାରଦ ! ଅସଂଖ୍ୟ ଗ୍ରନ୍ଥ ସେ ପଢ଼ିଛି—ଅନୁବାଦ କରିଛି, ତର୍ଜମା କରିଛି । କିନ୍ତୁ ଯାହା କିଛି ଗ୍ରନ୍ଥରୁ ପଢ଼ାଯାଏ ତା' କଣ ସବୁ ସତ୍ୟ ? ମନୁଷ୍ୟର ନିଜର ଅନୁଭୂତି ଠାରୁ କ'ଣ ଆହୁରି ସତ୍ୟ ଅନ୍ୟର ପରିପ୍ରଚାର—ଅନ୍ୟର ନିର୍ଦ୍ଦୋଷ ?

ବହୁଦିନ ତଳେ ସୂର୍ଯ୍ୟ ରବୀନ୍ଦ୍ର ସାହିତ୍ୟର ଚର୍ଚ୍ଚା କରୁଥିଲା । ସେ ମନେ ମନେ ରବୀନ୍ଦ୍ରଙ୍କର କେଇଟି ପଂକ୍ତି ଦୋଅଡ଼େଇ ନେଲା ।

''ପୁଂଥିକାଟା ଓଇ ପୋକା
ମାନୁଷକେ ଜାନେ ବୋକା
ବଇ କେନ ସେ ଚିବିଏ ଖାଏନାଁ
ଏଇ ଲାଗେ ତା'ର ଧୋଁକା ।''

ସୂର୍ଯ୍ୟ ନିଜକୁ ନିଜେ ଲକ୍ଷ୍ୟ କରି ହସିଉଠିଲା ମନେ ମନେ ।

ଇନ୍ଦିରା ସେଇ ମୂର୍ତ୍ତିର ଖୁବ୍ ନିକଟରେ—ଆହୁରି ନିକଟରେ ଠିଆ ହୋଇ ପର୍ଯ୍ୟବେକ୍ଷଣ କରୁଥିଲା । କିନ୍ତୁ ହଠାତ୍ ସେଇ ମୂର୍ତ୍ତିର ପାଷାଣ ବାହୁଦୁଇଟା ଯେମିତି ଜୀବନ୍ତ ହୋଇ ଘେରିଗଲା ଇନ୍ଦିରାର କୃଶତନୁ ଚାରିପଟେ । ସ୍ତମ୍ଭୀଭୂତ ହୋଇଗଲା ଇନ୍ଦିରା ମୁହୂର୍ତ୍ତକ ପାଇଁ । ସେଇ ପଥର ମୂର୍ତ୍ତିଟା ଦୁଇ ହାତରେ ଇନ୍ଦିରାକୁ ତା'ର ଛାତି ଉପରେ ଚାପି ଧରୁଛି ଧୀରେ ଧୀରେ । ଆଉ କିଛି ଭାବି ପାରୁନାହିଁ ସେ—ଓଃ ନିଶ୍ୱାସ ନେଇ ପାରୁନାହିଁ ଆଉ ସେ—କି କଷ୍ଟ ! ଇନ୍ଦିରାର ହାତ ମାଂସ ସବୁ ଯେପରି ପିଷ୍ଟ ହୋଇ ଯାଉଛି ଏଇ ପାଷାଣ ମନୁଷ୍ୟର ନିଷ୍ଠୁର ଆଲିଙ୍ଗନ ପାଶରେ, କିନ୍ତୁ ଶେଷ ହୁଏନାଁ ପାଷାଣର ନିବିଡ଼ ଆଲିଙ୍ଗନ—ଚିପି ହୋଇ ଯାଉଛି ଇନ୍ଦିରା—ଆହୁରି ଜୋରରେ...ଆହୁରି.... ।

ଖବର କାଗଜର ଅଳିଆ ଭିତରେ ଅସ୍ଥିର ହୋଇ ଦୁଇ ତିନିଥର ପାର୍ଶ୍ୱ ପରିବର୍ତ୍ତନ କଲା ଇନ୍ଦିରା ।

ସୂର୍ଯ୍ୟ ଇନ୍ଦିରାକୁ ଏକ ଚକ୍ଷୁରେ ଚାହିଁ ରହିଲା । ଇନ୍ଦିରା କେଡ଼େ ସୁନ୍ଦର ! କେଡ଼େ ନିର୍ଦ୍ଦୋଷ ! ଅଥଚ କେତେ ଅତ୍ୟାଚାରିତା !

ଝିପି ଝିପି ବର୍ଷାର ଗୁଞ୍ଜନ ବନ୍ଦ ହୋଇଗଲାଣି କେତେବେଳୁ । ସକାଳର ପ୍ରଥମ ଆଲୋକ ଆସି ପଡ଼ିଛି ସୂର୍ଯ୍ୟର ମୁହଁ ଉପରେ । ସୂର୍ଯ୍ୟ ମୁହଁ ଫେରାଇ ବର୍ଷା-ଧୌତ ନୀଳ ଆକାଶ ଆଡ଼େ ଚାହିଁଲା । ଆକାଶରେ ଇନ୍ଦ୍ରଧନୁ ପଡ଼ିଛି । ଶ୍ରାବଣର ମେଘମୁକ୍ତ ଆକାଶରେ ଉଠିଛି ସପ୍ତରଙ୍ଗର ଇନ୍ଦ୍ରଧନୁ ।

କିନ୍ତୁ ସମ୍ବାଦପତ୍ରର ସ୍ତୂପ ଭିତରେ ତଥାପି ଯେପରି ରୁଦ୍ଧ ଅଭିମାନରେ ଶୋଇ ରହିଛି ସୁକୁମାରୀ, ଅଭିମାନିନୀ ଇନ୍ଦିରା ।

ସୂର୍ଯ୍ୟର ମନେହେଲା ସେ ଏଇ ମୁହୂର୍ତ୍ତରେ ଇନ୍ଦିରାର ଶଯ୍ୟା ଧାରରେ ଠିଆ ହୋଇ ତା' ପାଖରୁ କ୍ଷମା ମାଗନ୍ତା—ନିବିଡ଼ ଆଲିଙ୍ଗନରେ ତାକୁ ଏଇ ଗବାକ୍ଷ ପାଖରେ ଟେକି ଧରି କୁହନ୍ତା—

"ମନୁଷ୍ୟ ଉପରେ ଅଭିମାନ କର ନାହିଁ ଇନ୍ଦିରା—ସେମାନଙ୍କୁ କ୍ଷମା କର—ଦେଖ—ଶ୍ରାବଣର ନୀଳ ଆକାଶରେ ଏଇ ଇନ୍ଦ୍ରଧନୁ କେଡ଼େ ସୁନ୍ଦର ଦେଖାଯାଉଛି ।"

ତଳ ରାସ୍ତାର ଗୋଟାଏ ଖବରକାଗଜ ବିକାଳୀର ବିକଟ ଚିତ୍କାରରେ ସୂର୍ଯ୍ୟ ଚମକି ଉଠିଲା । ତା'ର ସବୁ ତନ୍ଦ୍ରା ଯେପରି ଭାଙ୍ଗିଗଲା ମୁହୂର୍ତ୍ତକରେ ।

ପୁଣି ଥରେ ସୂର୍ଯ୍ୟ ଚାହିଁଲା ଆକାଶକୁ । ସକାଳର ପ୍ରଖର ଆଲୋକ ସୁନ୍ଦର ଇନ୍ଦ୍ରଧନୁକୁ ଗିଳିଦେଲାଣି କେତେବେଳୁ ।

## ତିନି

ତଳ ଅଫିସର କାନ୍ଥ ଘଣ୍ଟାରେ ଆଠଟା ବାଜିଲା । ମୁକୁଳା ଗବାକ୍ଷ ଭିତରେ ସକାଳର ଆଲୋକ ପଟା ପଟା ହୋଇ ଭରିଯାଇଛି ସୂର୍ଯ୍ୟର ପ୍ରକୋଷ୍ଠରେ । ଏଇ ଆଲୋକରେ ଯେମିତି ମିଳେଇ ଯାଉଛି ଗତ ରାତ୍ରିର ତନ୍ଦ୍ରା-ବିହ୍ୱଳତା ।

ସୂର୍ଯ୍ୟ ଗୋଟିଏ କଣରେ ହାତରେ କାଗଜ କଲମ ଧରି ନୀରବରେ ବସି ରହିଛି । ଅତି ଜରୁରୀ ବିଷୟଟାଏ ସେ ଭୁଲିଯାଇଥିଲା ପୂରାପୂରି । ଆଜି ଆଶ୍ରୟପ୍ରାର୍ଥୀ ମାନଙ୍କର ଗୋଟିଏ ବିରାଟ ଶୋଭାଯାତ୍ରା ବାହାରି ଚୌହାଟି ଛକ ଉପରେ ସେକ୍ରେଟେରୀଏଟ୍ ସାମ୍ନାରେ ପିକେଟିଂ କରିବାର ଅଛି । ସେମାନଙ୍କୁ ଉତ୍ତାପ ଦେବା ପାଇଁ ଗୋଟିଏ ସୁଚିନ୍ତିତ ଲିଫ୍‌ଲେଟ୍ ଲେଖିବାର ଦାୟିତ୍ୱ ସୂର୍ଯ୍ୟ ଉପରେ ।

ଇନ୍ଦିରା କପେ ଚା' ନେଇ ସୂର୍ଯ୍ୟର ଟେବୁଲ ଉପରେ ରଖିଦେଲା । ସୂର୍ଯ୍ୟ କିନ୍ତୁ ସିଆଡ଼େ ଦୃଷ୍ଟିପାତ ନକରି ପାଖ ଟେବୁଲର ଫାଇଲ ଆଡ଼କୁ ଇଙ୍ଗିତ କରି କହିଲା, ''ରିଫ୍ୟୁଜିମାନଙ୍କର ଶେଷ ସ୍ମାରକପତ୍ରର ତାରିଖଟା ଦେଖ କମ୍ରେଡ୍ ।''

ଇନ୍ଦିରା ନୀରବରେ ଫାଇଲଟାକୁ ହାତରେ ଧରି ପତ୍ର ଲେଉଟାଇଲା ।

''ମାର୍ଚ୍ଚ ୧୧ ତାରିଖ'' କିଛି ସମୟ ପରେ କହିଲା ଇନ୍ଦିରା । ସୂର୍ଯ୍ୟ ଲେଖା ଉପରୁ ମୁହଁ ନ ଫେରାଇ ସାମାନ୍ୟ ବିରକ୍ତିମିଶା କଣ୍ଠରେ ଉତ୍ତର ଦେଲା, ''ଅସମ୍ଭବ, ହୋଇପାରେ ନା ମାର୍ଚ୍ଚ ୧୧ ତାରିଖ—ଆଉ ଟିକିଏ ସାବଧାନତା ଅବଲମ୍ବନ କଲେ ବୋଧହୁଏ ଠିକ୍ ତାରିଖଟା ପାଇ ପାରିବ ।''

ଟିକିଏ ସଙ୍କୁଚିତ ହୋଇଗଲା ଇନ୍ଦିରା—ପୁଣିଥରେ ଫାଇଲ ଓଲଟାଇ କହିଲା, ''ନାଁ ସେ'ଟା ପ୍ରଥମ ସ୍ମାରକ ପତ୍ରର ତାରିଖ....ଶେଷଟା ମେ' ୨୧ ତାରିଖରେ ।''

ଭାବଗମ୍ଭୀର ସୂର୍ଯ୍ୟ କିନ୍ତୁ ପୂର୍ବପରି ନୀରବରେ ଲେଖି ଚାଲିଛି । ଇନ୍ଦିରା ଗୋଟାଏ ମୋଟା ବହି ପଢ଼ିବାର ଛଳନା କରି ପୃଷ୍ଠା ଓଲଟାଉ ଥିଲା ବସି ବସି ।

କେତେବେଳେକେ ଇନ୍ଦିରା ସ୍ମରଣ କରାଇ ଦେଲା, ''ଚା' ଥଣ୍ଡା ହୋଇଗଲା କମ୍ରେଡ୍ ।''

'ହୁଁ' । ଚା' କପ୍‌ଟାକୁ ମୁହଁ ପାଖକୁ ଟେକି ନଉ ନଉ ସୂର୍ଯ୍ୟ କହିଲା, ''ଶୁଣ କମ୍ରେଡ୍ କେମିତି ହେଇଚି ଏଇ ଲିଫ୍‌ଲେଟ୍‌ଟା ?''

ସୂର୍ଯ୍ୟ ପଢ଼ିବାକୁ ଆରମ୍ଭ କଲା । ବେଶୀ ଦୀର୍ଘ ନୁହଁ । ଅଳ୍ପ ସ୍ଥାନ ଭିତରେ ବେଶ୍ ତୀକ୍ଷ୍ଣ ହୋଇଛି ପ୍ରଚାର-ପତ୍ରଟି । ପଢ଼ିସାରି ସୂର୍ଯ୍ୟ ପଚାରିଲା, ''ଚଳିବ କମ୍ରେଡ୍—ନାଁ ଆଉ କିଛି ପରିବର୍ତ୍ତନ ?''

ଇନ୍ଦିରା ମୁହଁ ହଲାଇ ସମ୍ମତି ଜ୍ଞାପନ କଲା ।

ତଳ ଘଣ୍ଟାରେ ନ' ବାଜିଲା ।

ସମୟ ଖୁବ୍ ଅଳ୍ପ । ଦିନ ବାରଟା ପୂର୍ବରୁ ଅନ୍ତତଃ ପ୍ରେସରୁ ଛପା ହୋଇ ଆସି ଶୋଭାଯାତ୍ରା ଆରମ୍ଭ ପୂର୍ବରୁ ସେ'ଟା ପ୍ରଚାରିତ ହେବାର କଥା ।

ସୂର୍ଯ୍ୟ କାଗଜଟାକୁ ହାତରେ ଧରି ବୁଲୁଥିଲା ତା'ର ପ୍ରକୋଷ୍ଠ ଭିତରେ । ଏ କାନ୍ଥରୁ ସେ କାନ୍ଥ । ସମୟ ଅଳ୍ପ । ତା'ର ଅନ୍ତତଃ କାଲି ରାତିରୁ ଏ ଜରୁରୀ କାମଟା ଶେଷ କରିଦେବା ଉଚିତ ଥିଲା । ରିଫ୍ୟୁଜି ବସ୍ତିର କମ୍ରେଡ୍‌ମାନେ ସୂର୍ଯ୍ୟର ଏଇ ଲେଖାକୁ ଅପେକ୍ଷା କରି ବସିଥିବେ । ଏଇ ହବ ସେମାନଙ୍କର ପ୍ରଚାରର ପ୍ରଧାନ ଅସ୍ତ୍ର—ପ୍ରଥମ ତାରକା ।

ପଦଚାରଣ କରୁ କରୁ ହଠାତ୍ ଠିଆ ହୋଇପଡ଼ି ଇନ୍ଦିରା ଆଡ଼କୁ ଫେରି ଚାହିଁଲା ସୂର୍ଯ୍ୟ ।

''ଏ ଲିଫ୍‌ଲେଟ୍ ନେଇ ତମକୁ ରିଫ୍ୟୁଜି କଲୋନି ଯିବାକୁ ହବ ଇନ୍ଦିରା–ବର୍ତ୍ତମାନ ।''

ସମ୍ମତିର ଅପେକ୍ଷା ନ କରି ସୂର୍ଯ୍ୟ କହି ଚାଲିଲା, ''କେବଳ ପ୍ରଚାରରେ ସନ୍ତୁଷ୍ଟ ରହିଲେ ହବ ନାହିଁ–ତମକୁ ଶୋଭାଯାତ୍ରା ସଙ୍ଗରେ ଯୋଗଦାନ କରିବାକୁ ହବ । ସେମାନଙ୍କୁ ହିମ୍ମତ୍ ଦବାକୁ ହବ । ସେମାନେ କ୍ଷୁଧିତ–ମଧ୍ୟବିତ୍ତର ଲଜ୍ଜା ବା ସଙ୍କୋଚ ନାହିଁ ସେମାନଙ୍କ ଠାରେ । କେବଳ ଉଚିତ ପ୍ରେରଣା ଦେଇପାରିଲେ ସେମାନେ ବେଶ୍ ସଂଗ୍ରାମୀ ହୋଇ ପାରିବେ । ହଁ, ଦେଖିବ ଯେପରି ସମସ୍ତ ଆଶ୍ରୟପ୍ରାର୍ଥୀ ମହିଳାମାନେ ଶୋଭାଯାତ୍ରାରେ ବାହାରନ୍ତି ।''

ଇନ୍ଦିରା ଶୁଣୁ ଶୁଣୁ ଯିବାପାଇଁ ପ୍ରାୟ ନିଜକୁ ପ୍ରସ୍ତୁତ କରି ସାରିଲାଣି । ବେକତଳେ ସ୍କାର୍ଫର ଗଣ୍ଠିଟାକୁ ଭିଡ଼ି ଦେଇ କହିଲା ଇନ୍ଦିରା, ''ମୁଁ ତାହାହେଲେ ଆସୁଛି କମ୍ରେଡ୍ ।''

ସୂର୍ଯ୍ୟ ଟେବୁଲ ଉପରେ ନଇଁ ପଡ଼ି ଦୁଇ ଓଠ ମଝିରେ ପେନ୍‌ସିଲଟାକୁ ରଖି ଲିଫ୍‌ଲେଟ୍‌ର ଶିରୋନାମା ଭାବୁଥିଲା ।

ଇନ୍ଦିରାର କଥାରେ ଆଖି ଫେରାଇ ଚାହିଁଲା ସୂର୍ଯ୍ୟ । ସୂର୍ଯ୍ୟର ଆଖିରେ ବିସ୍ମୟର ଏକ ନୂଆ ଆନନ୍ଦ । ଇନ୍ଦିରା ପ୍ରସ୍ତୁତ । ମେରୁଦଣ୍ଡ ସଳଖ କରି ଶ୍ୱେତାଙ୍ଗୀ ରଜନୀଗନ୍ଧା ପରି ଚାହିଁ ରହିଛି ଇନ୍ଦିରା । ରେଶମୀ ସ୍କାର୍ଫର ଧାରେ ଧାରେ ଅସଂଖ୍ୟ ଚୂର୍ଣ୍ଣକୁନ୍ତଳ ଇନ୍ଦିରାର ଦୀପ୍ତ ମୁହଁଟିକୁ ଘେରି ରହିଛନ୍ତି । ସତରେ ସୁନ୍ଦରୀ ଇନ୍ଦିରା !

କେଇ ମୁହୂର୍ତ୍ତ ପାଇଁ ନିଜକୁ ଯେପରି ହଜାଇ ଦେଇଥିଲା ସୂର୍ଯ୍ୟକାନ୍ତ ।

ସୌଜନ୍ୟର ସୀମାରେ ତା'ର ଲୋଲୁପ ଆଖିକୁ ଆନତ କରି ଆଣି ଇନ୍ଦିରା ହାତ ଲିଫ୍‌ଲେଟ୍‌ଟିକୁ ବଢ଼ାଇ ଦେଲା ସେ ।

ଇନ୍ଦିରା ଆସ୍ତେ ଆସ୍ତେ ତଳକୁ ଓହ୍ଲାଇଗଲା ସିଡ଼ିରେ ।

ତଳେ ପୁଣି ସେଇ ପୁରାତନ ଆମହର୍ଷ୍ଟ ଷ୍ଟ୍ରୀଟ୍ । ଲୋକର ଭିଡ଼ ଠେଲି ଦୃଢ଼ ପଦକ୍ଷେପରେ ଆଗକୁ ଚାଲିଛି ଇନ୍ଦିରା । ସେଇ ପ୍ରେମଚାନ୍ଦ୍‌ପାର୍କର ମୋଡ଼ । ଆଉ ମୋଟେ ଦୁଇଶହ ଗଜ ଗଲେ ରିଫ୍ୟୁଜି କଲୋନିର ସୀମା ଆରମ୍ଭ ହବ ।

ଇନ୍ଦିରା ଭାବୁଥିଲା ଗତରାତ୍ରିର କଥା । ମୁକ୍ତ ବାତାୟନ ଧାରରେ ଦ୍ୱାଦଶୀ ଜ୍ୟୋସ୍ନାସ୍ନାତା ସେଇ ବିରହିଣୀ ପଳାତକ ଲଳନାର ବେଦନା ଅଶ୍ରୁ କଥା । ଯଦି ଦେଖା ହୁଏ କ'ଣ କହି ସେ ପ୍ରବୋଧ ଦବ ତା'କୁ !

କିନ୍ତୁ ସେ'ତ ଆଜି ଯାଉ ନାହିଁ ସ୍ୱପ୍ନର କୁହୁଡ଼ି ପହଁରି ଆସିନାହିଁ ସହାନୁଭୂତିର ଅଞ୍ଜନ ନେଇ । ଆଖିର ନୀଳ ସ୍ୱପ୍ନ ସବୁ ପୋଛି ଦବାକୁ ଯାଉଛି ସେ, ଗୋଷ୍ଠୀର ଭୁଜବଳନେଇ ଗୋଷ୍ଠୀର ପ୍ରତିନିଧି ହୋଇ । ପ୍ରତି ପଦକ୍ଷେପରେ ଯେପରି ଆହୁରି ସାହସୀ ହୋଇ ଉଠୁଛି ଇନ୍ଦିରା । ସେତ ବ୍ୟକ୍ତି ନୁହଁ । ସେ ଗୋଷ୍ଠୀର ମୁଖପତ୍ର । ଗୋଷ୍ଠୀ-ଆଗ୍ନେୟଗିରିର ଘୃଣାର ଲାଭା, ପ୍ରତିହିଂସାର ବହ୍ନି ସବୁ ଯେମିତି ଆତ୍ମପ୍ରକାଶ କରିବ ଇନ୍ଦିରାର ମାଧ୍ୟମରେ । ଚେତନାର ଆଲୋକ ନେଇ ଯାଉଛି ସେ ଏକ ନୂତନ ଇନ୍ଦିରା ।

କଲୋନିର ଫାଟକ ପାଖରେ ମୋଡ଼ ଭାଙ୍ଗି ଗଲା ଇନ୍ଦିରା ।

କିନ୍ତୁ ତା'ର ନିର୍ଜନ କକ୍ଷରେ ପିଠିପଟେ ହାତରେ ହାତ ଛନ୍ଦି ଅସ୍ଥିର ଭାବରେ ପଦଚାରଣ କରୁଥିଲା ସୂର୍ଯ୍ୟକାନ୍ତ ।

ଯେପରି ଅସହ୍ୟ ହୋଇ ଉଠୁଛି ଏହି ଦୀର୍ଘ ଅଜ୍ଞାତବାସୀ ବୃହନ୍ନଳାର ଜୀବନ !



# ପୌଷର ଗୋଟିଏ ରାତ୍ରି

## ଏକ

ବାଁ ହାତର ବଦ୍ଧମୁଷ୍ଟି ଭିତରେ ଖୁବ୍ ଜୋରରେ ପାଇପ୍‌ଟାକୁ ଚାପି ଧରିଚି ସୁକାନ୍ତ । କିପରି ଗୋଟାଏ ଏକାଗ୍ର ଭାବ—ସ୍ଥିର ଅବିଚଳିତ ଚକ୍ଷୁ ।

ଦୀପ୍ତ ବିଦ୍ୟୁତ୍ ଆଲୋକରେ ତୁଷାରଶୁଭ୍ର ଟେବୁଲ କ୍ଲଥ୍ ଉପରେ ପଡ଼ି ରହିଚି ଅଯତ୍ନରକ୍ଷିତ ଫେଲ୍ଟ କ୍ୟାପ । ବାଃ—ସୁନ୍ଦର ଏଇ କଫି ରଙ୍ଗର ଫେଲ୍ଟ—ଅତି କୋମଳ—ଅତି ବାଧ୍ୟ । କିନ୍ତୁ...

ଏକାଗ୍ର ଦୃଷ୍ଟିରେ ଚାହିଁ ରହିଛି ସୁକାନ୍ତ । ଦୁଇଟି ବିଶାଳ ଆଖି ଭିତରେ କ୍ଷୁଦ୍ର କ୍ଷୁଦ୍ର ରକ୍ତବାହୀ ଧମନୀଗୁଡ଼ାକ ପ୍ରଚଣ୍ଡ ଭାବରେ ସ୍ଫୀତ ହୋଇ ଉଠିଲେଣି ।

କିନ୍ତୁ ସୁକାନ୍ତର ତ ନୁହେଁ ଏଇ ଫେଲ୍ଟ—ସେ'ଦିନ ସେ ଶୋଇ ରହିଥିଲା ଫାଷ୍ଟକ୍ଲାସ୍ ଓ୍ୱେଟିଂ ରୁମ୍‌ରେ ସାରା ରାତ୍ରି । ଅର୍ଦ୍ଧ-ସୁସୁପ୍ତି ଓ ଅର୍ଦ୍ଧ-ଜାଗରଣରେ ସେ ରାତ୍ରି । ସେଇ ରାତ୍ରିର ସୁପ୍ରଭାତରେ ସେ ଆବିଷ୍କାର କରିଥିଲା ନିର୍ଜନ ଓ୍ୱେଟିଂ ରୁମ୍‌ର ପେଗ୍‌ରେ ଦୋଳାୟିତ ଏଇ ନିରୀହ, ସୁନ୍ଦର, କୋମଳ, କଫି ରଙ୍ଗର ଫେଲ୍ଟ । କିଏ ଯାର ସମ୍ମାନିତ ଅଧିକାରୀ ! ନିଶ୍ଚୟ ଗତ ରାତ୍ରିର ତନ୍ଦ୍ରାବିହ୍ୱଳିତ କେହି ଧନିକ ରେଳଯାତ୍ରୀ । ଅତି ସ୍ୱାଭାବିକ ଅନୁମାନ । ତର୍କଶାସ୍ତ୍ର-ସମ୍ମତ । ସ୍ପେକୁଲେସନ୍ ପାଇଁ ସମୟ ନାହିଁ—ଜୀବନରେ ସୁଯୋଗ ଆସେ ବଡ଼ କମ୍—ତା ପୁଣି ମୁହୂର୍ତ୍ତକ ପାଇଁ । ଗ୍ରହଣ କର—ନ ହେଲେ ବୁଲିଯିବ ପୃଥିବୀ—ବୁଲିଯିବ ଅକ୍ଷାଂଶ ଆଉ ଦ୍ରାଘିମା—ବୁଲିଯିବ ତୁମ ଜୀବନର ଗ୍ରହ ଉପଗ୍ରହ । ଚିର ଜାଗ୍ରତହିଁ ପାଏ ସ୍ୱାଚ୍ଛନ୍ଦ୍ୟ—ସ୍ୱାଧୀନତା—ଦହନ ପାଏ ସନ୍ଦିଗ୍ଧାତ୍ମା—ଅଭିଶପ୍ତ ଦୋଳଚିତ୍ତ ହାମ୍‌ଲେଟର ଦଳ ।

ମୁହୂର୍ତ୍ତକର ଦୋଳନ ପରେ ସମାଧାନ । ଅବାଧ୍ୟ, କୁଞ୍ଚିତ କେଶରାଶି ଉପରେ ଫେଲ୍ଟଟାକୁ ଚାପି ଧରି ବାହାରକୁ ଚାଲି ଆସିଲା ସୁକାନ୍ତ ।

ବାଃ ! ସୁନ୍ଦର—କି କୋମଳ ଏହି କଫି ରଙ୍ଗର ଫେଲ୍ଟ । ବାଧା ପାଇଲା ସୁକାନ୍ତର ଏକାଗ୍ରତା ।

ସଶବ୍ଦରେ ସଲାମ ଠୁକି ଟେବୁଲ ଉପରେ ପ୍ଲେଟ୍ ଥୋଇ ଦେଇଗଲା ବୟ ।

ତିନିଟା ଟଙ୍କିକିଆ ନୋଟ୍ ଆଉ ଗୋଟାଏ ଆଠଣି । ଖଣ୍ଡେ ଦଶଟଙ୍କିଆ ନୋଟ୍‌ର ଭୁକ୍ତାବଶେଷ । ପୁଣି ସେଇ ଦ୍ୱନ୍ଦ୍ୱ—କେତେ ଏଇ ସଲାମର ମୂଲ୍ୟ !

ଆଲ୍‌କହଲ ଆଣେ ବିସ୍ମୃତି—ମଧୁର ବିସ୍ମୃତି । ପାଇପ୍‌ର ନାଡ଼ାଟିକୁ ଦାନ୍ତ ଭିତରେ ଚାପି ଧରି ଅତି ହିଂସ୍ର ଭାବରେ ଟାଣି ଚାଲିଛି ସୁକାନ୍ତ । ଉଦ୍‌ଗିରିତ ପ୍ରଚୁର ଧୂମ ସ୍ରୋତ ଭିତରେ ଜଳନ୍ତା କୋଇଲା ଖଣ୍ଡେ ପରି ଦପ୍‌ଦପ୍ ଜଳି ଉଠୁଛି ପାଇପ୍‌ଟା— ସୁକାନ୍ତର ଆଖି ଦୁଇଟା ପରି ।

କେତେ ଏଇ ସଲାମ୍‌ର ମୂଲ୍ୟ ! ରାଷ୍ଟ୍ର ନେତା ପାଇଁ ଗାର୍ଡ଼ ଅଫ୍ ଅନର— ସେନାଧକ୍ଷର ସମ୍ମାନ ପାଇଁ ଧାଡ଼ିବନ୍ଧା ଲକ୍ଷ ଲକ୍ଷ ସୈନ୍ୟ ଆଉ ମୋ ପରି ଗୋଟାଏ ଅର୍ଥହୀନ, ମଦ୍ୟପ ପାଇଁ ଏଇ ପୋଷାକ ପିନ୍ଧା ବୟର ସଲାମ । ଏକା କଥା । ଦୁଇଖଣ୍ଡ ଟଙ୍କିକିଆ ନୋଟ୍ ଟାଣିଆଣି ଛାତି ପକେଟ୍‌ରେ ରଖିଲା ସୁକାନ୍ତ ।

ପୁଣି ଗୋଟାଏ ସଲାମ୍ । ଦୁଇଟା ସଲାମ୍ ପାଇଁ ଟିପ୍‌ସ୍ ଦେଢ଼ ଟଙ୍କା— ତାହାହେଲେ ପ୍ରତି ସଲାମ୍ ପାଇଁ ଭାଗ ଫଳ ବାରଅଣା ପଇସା । ମନ୍ଦ ନୁହେଁ— ଏକ୍‌ସଲେଣ୍ଟ—ମୁହୂର୍ତ୍ତକର ସମ୍ମାନିତ ଅତିଥି ।

ବ୍ଲୁ ବାର୍‌ର କାନ୍ଥ ଘଣ୍ଟାରେ ଗୋଟାଏ ବାଜିଲା ।

କ୍ରେପ୍‌ସୋଲର ଜୋତା ଉପରେ ଭାରୀ ଭାରୀ ପାହୁଲ ପକେଇ ସୁକାନ୍ତ ବାହାରି ଆସିଲା ପଦାକୁ ।

ପୌଷର ଶୀତଳ ରାତ୍ରୀ । ପୃଥିବୀ ଉପରେ ଶିଶିର ଝରୁଚି—ବରଫ ମୁଣ୍ଡା ପରି ଝରୁଛି ଏକାଦଶୀର ଶୀତଳ ଜ୍ୟୋସ୍ନା—ଅନ୍ତର ମଥିତ କରି ଝରୁଛି ଆର୍ଦ୍ର ବେଦନାସିକ୍ତ ପୌଷର ଅନ୍ତର ଅଶ୍ରୁ ।

କୋଟ୍‌ର କଲରଟାକୁ ଟେକି ଦେଇ ବେକ ଚାରିପଟେ ନିବିଡ଼ ଭାବରେ ଚାପି ଧରିଲା ସୁକାନ୍ତ । ପାଇପ୍ ଭିତରେ ଝଟ୍‌କି ଉଠୁଛି ସେଇ ରଡ଼ ନିଆଁ । ଶୀତଳ ହୃତ୍‌ପିଣ୍ଡରେ ଉଷ୍ଣତା ଦିଏ କ୍ୟାପ୍‌ଷ୍ଟାନ ଟୁବାକୋ, ଆରାମ ଦିଏ ।

ନିର୍ଜନ ପିଚୁ ରାସ୍ତାରେ ଭୀରୁ ଚନ୍ଦ୍ରିକାର ଅଭିସାର—ନୀଳ ଆକାଶରେ ମନ୍ଥର-ଗତି ପାଣ୍ଡୁର ଚନ୍ଦ୍ରମା । ପାଦ ଗଣି ଗଣି ଚାଲିଛି ସୁକାନ୍ତ ମହାନଗରୀର ରାଜପଥ ଉପରେ । ନିର୍ଜନ ମୃତ୍ୟୁ-ସ୍ତବ୍ଧ ଏଇ ରାଜପଥ—ତିମି ମାଛର ପିଠି ପରି ସୁଦୀର୍ଘ, ସୁପ୍ରଶସ୍ତ, ଆଉ ମସୃଣ । କାଲିର ସୂର୍ଯ୍ୟର ଆଲୋକରେ କୋଳାହଳ କରି ଆସିବେ ଦୃପ୍ତ ଅସୁମାରୀ ଜନତା—ପୁଣି କାଲିର ରାତ୍ରିରେ ଆସିବ ଦ୍ୱାଦଶୀର ଚନ୍ଦ୍ରମା—ପୌଷର ଶିଶିର—ଶାନ୍ତିରେ ନିଶ୍ୱାସ ନବ ଏଇ କ୍ଳାନ୍ତ—ନିପୀଡ଼ିତ ରାଜପଥ ।

ଏଇ ସୁନ୍ଦର ଚନ୍ଦ୍ରମା—କି ମନୋରମ ! କିନ୍ତୁ ପୃଥିବୀର ଅର୍ଥନୀତିର ବେଗଗାମୀ ସ୍ରୋତରେ କି ସାହାଯ୍ୟ କରେ ଏଇ ଚନ୍ଦ୍ର ! ଲକ୍ଷ ଚନ୍ଦ୍ରମାର ନିର୍ଯାସରେ ତିଆରି କରାଯାଇ ପାରେ ନା ଗୋଟାଏ ରୂପା ଟଙ୍କା । ସମ୍ବାଦପତ୍ର ପାଇଁ ଗୋଟାଏ କଲମ ମାଟାର ବି ଦେଇପାରେ ନାଁ । ଖାଲି ଦିଏ ଦୀର୍ଘଶ୍ୱାସ-ହାହାକାର-ବିରହ ଆଉ ଆତ୍ମହତ୍ୟା-ନିଛକ ଭାବପ୍ରବଣତାର ବିଷାକ୍ତ ବୀଜାଣୁ ।

ରାସ୍ତାର ଗୋଟାଏ ଲାଇଟ୍-ପୋଷ୍ଟ ତଳେ ପ୍ରଚୁର ସମ୍ବାଦପତ୍ର ବିଛେଇ ରଖି ଛିଣ୍ଡାକୋଟ୍‌ର ବୁଜୁଳି ଭିତରେ ଘୁମେଇ ପଡ଼ିଚି ହକରଟାଏ । ଖବରକାଗଜ ଗୁଡ଼ାକ ଉପରେ ଡେଇଁ ବୁଲୁଛନ୍ତି କେଇଟା ଉଡ଼ା ପୋକ । କ୍ଳାନ୍ତ ହୋଇ ଶୋଇ ରହିଚି ବାର ଚଉଦ ବର୍ଷର କୋମଳ ଅନଭିଜ୍ଞ କିଶୋର । କେତେ ଆଉ ସେ ତଣ୍ଟି ଫଟେଇ ଚିତ୍କାର କରିବ—ଘୋଷଣା କରିବ କୋରିଆର ସୀମାରେ ବିପୁଳ ଯୁଦ୍ଧସଜ୍ଜା । କୋରିଆର ଯୁଦ୍ଧ ସହିତ ତା'ର କ୍ଷୁଦ୍ର ଜୀବନର କେତେ କମ୍ ସାମଞ୍ଜସ୍ୟ ।

ନିଦ ନିଶାରେ ପିଲାଟାର କ୍ଳାନ୍ତ ମୁଣ୍ଡଟା ଝୁଙ୍କି ପଡ଼ିଛି ଛାତି ଉପରେ । ପେଟଯାଏ ଲମ୍ବି ଆସିଚି ମୁଣ୍ଡର ଛାଇଟା । କାକରରୁ ରକ୍ଷା ପାଇବା ପାଇଁ ମୁଣ୍ଡରେ ଖଣ୍ଡେ ମସିଆ ଗାନ୍ଧି ଟୋପି ।

କିପରି କରୁଣ ଲାଗେ ବାଳକର ଏଇ ଅତ୍ୟାଚାରିତ କୈଶୋର—ନିର୍ଜୀବ ରକ୍ତହୀନ' ଗୋଟାଏ ମାଂସପିଣ୍ଡୁଳା ।

ଟପ୍‌କିନା ପକେଟରୁ ଆଠଣିଟାଏ କାଢ଼ି ସୁକାନ୍ତ ଫିଙ୍ଗି ଦେଲା କାଗଜ ଉପରକୁ । ତନ୍ଦ୍ରା ବୋଧେ ଭାଙ୍ଗିଗଲା ପିଲାଟିର—ସୁକାନ୍ତର କିନ୍ତୁ ନଜର ନାହିଁ—ସେ ଚାଲିଚି ଜଣେ ନିଃସଙ୍ଗ, ଏକାଗ୍ର ପଥଚାରୀ ପରି । ଏଇ ଚାଲିବା ଯେମିତି ତାର ଅଧ୍ୟବସାୟ ।

ଗଭୀର ହୋଇ ଆସୁଚି ରାତ୍ରି ।

ଏଇ ଦେଖାଯାଏ ନିହାରିକାର ଘର—ଗବାକ୍ଷର ନୀଳ ପର୍ଦ୍ଦା ଫାଙ୍କରେ ବିଜୁଳି ଆଲୋକର ଫଳକ ପଡୁଚି ରାସ୍ତାରେ । ଏଇ ବିଦ୍ୟୁତ୍ ଆଲୋକ ଚେତେଇ ଦିଏ ନିହାରିକାର ଅବସ୍ଥିତି—ଚଞ୍ଚଳ, ତନ୍ୱୀ, ନିହାରିକାର ଅବସ୍ଥିତି ।

ଡ୍ୟାମ୍ ଇଟ୍—ଚିତ୍କାର କରି ଉଠିଲା ସୁକାନ୍ତ ।

ଗୋଟାଏ ଗେଙ୍ଗୁଟି ଉପରେ ଖସିଗଲା ସୁକାନ୍ତର ଯୋତା—କ୍ଳାନ୍ତ ଅବୟବଗୁଡ଼ାକ ଚହଲିଗଲେ ମୁହୂର୍ତ୍ତକ ପାଇଁ ।

## ଦୁଇ

ନିରାଭରଣା ହୋଇ ନିଦ୍ରା ଯିବାକୁ ଭଲ ପାଏ ନିହାରିକା ।

କାନର ଛୋଟ ଛୋଟ ଦୁଲ୍ ଦୁଇଟିକୁ ହାତରେ ଧରି ନିହାରିକା ଦର୍ପଣରେ ନିରୀକ୍ଷଣ କରୁଛି ନିଜର ମୁଖଶ୍ରୀ । ଆଦ୍ୟ ଯୌବନର ସେଇ ଚପଳତା ଆଉ ନାହିଁ–କିପରି ଗମ୍ଭୀର ଆଉ ସ୍ଥୂଳ ହୋଇଯାଉଚି ସେ । ଉଜ୍ଜଳ-ଶ୍ୟାମବର୍ଣ୍ଣର ଗଣ୍ଡଦେଶ କିପରି ହୋଇ ଆସିଲାଣି ପାଣ୍ଡୁର-ରକ୍ତହୀନ-ତୈଳାକ୍ତ ।

....ମୂର୍ତ୍ତିମାନ ଅତୀତ ଦେହଧରି ଠିଆ ହୁଏ । ଦିନକର ଗ୍ରୀଷ୍ମରେ ଆସିଥିଲା କବି ସୁମନ୍ତ–ପ୍ରଚୁର ସ୍ୱାସ୍ଥ୍ୟ ନେଇ ଆସିଥିଲା ଡାକ୍ତର ଅଧିରାଜ । ସମସ୍ତଙ୍କର ଉନ୍ମୁକ୍ତ ବାହୁପାଶରେ ସେ ଧରା ଦେଇଛି ନିର୍ବୋଧ ମରାଳୀ ପରି । କିନ୍ତୁ କାହାନ୍ତି ସେମାନେ । ଗୋଟି ଗୋଟି କରି ଉଡ଼ି ଯାଇଛନ୍ତି ମାଂସଭୋଜୀ ଶକୁନିର ଦଳ–ଆଉ ସେ ପଡ଼ିରହିଛି ସ୍ଥାଣୁ ଶାଳ୍ମଳୀତରୁ ପରି । ସେ ବି ନୀଡ଼ ରଚନା କରି ପାରିଥାନ୍ତା ଅନ୍ୟମାନଙ୍କ ପରି । ସେ ତ ଜାଣେ ନୀଡ଼ ରଚନାର କାରୁକାର୍ଯ୍ୟ–ନାରୀତ୍ୱର ନିର୍ଯାସ ଦେଇ ତା'ର ପାରିବାରିକ ଜୀବନ ସେ ହୁଏତ କରିପାରିଥାନ୍ତା ସୁନ୍ଦର । ଆଉ ସୁକାନ୍ତ–ବହୁବର୍ଷ ତଳେ ଆଜିର ପୌଷରେ ଆସିଥିଲା ସୁକାନ୍ତ ପ୍ରେମର ଫଲ୍‌ଗୁ ଛୁଟାଇ–କିନ୍ତୁ ଆଜି ସେଇ ସୁକାନ୍ତ ହିଂସ୍ର ଇଗଲ୍ ପରି ଘୁରି ବୁଲେ ଏଇ ସହରର ଗଳି କନ୍ଦିରେ–ଓଃ ଥରେ ଯଦି ଫେରିଆସନ୍ତା ସୁକାନ୍ତ–ଥରେ ଯଦି ସେ କୁହନ୍ତା, ''ମତେ କଣ ଭୁଲିଗଲ ନିହାରିକା.... !''

ବିଷାକ୍ତ ହୋଇ ଉଠେ ନିହାରିକାର ମନ ।

ଆଉ ଏଇ ରବୀନ୍ଦ୍ର ତାର ବିବାହିତ ସ୍ୱାମୀ–ଯୌବନର ପ୍ରାନ୍ତ ସୀମାରେ ଆସି ଆପେ ଆପେ ଧରା ଦେଇଥିଲା ପକ୍ଷହୀନ, ପଙ୍ଗୁ ଜଟାୟୁ ପରି–ନାରୀର କ'ଣ ବୁଝେ ରବୀନ୍ଦ୍ର ! ରକ୍ଷା ରବୀନ୍ଦ୍ର ଆଜି ନାହିଁ–ଶାନ୍ତିରେ ନିଶ୍ୱାସ ନେଇ ହୁଏ–ରବୀନ୍ଦ୍ର ପରି ବାଧ୍ୟ ସ୍ୱାମୀକୁ ନେଇ ଘର କରି ହୁଏ–କିନ୍ତୁ ପ୍ରେମ କରି ହୁଏନାଁ–କହି ହୁଏନାଁ ''ତୁମେ ସୁନ୍ଦର ରବୀନ୍ଦ୍ର, ତୁମେ ମହତ୍ ।''

ଭାବନାରେ କ୍ଳାନ୍ତି ଆସେ–ଅବସାଦ ଆସେ–ନିଜର ଭ୍ରଷ୍ଟ ବର୍ତ୍ତମାନ ବା କେତେଦିନ ମଧୁର କରିହେବ ଅତୀତର କଳ୍ପନାରେ ।

ଆଖି ଆଗରେ ବିସ୍ତାରିତ ପ୍ରଚୁର ଭବିଷ୍ୟତ–ଅଗଣ୍ୟ ସମ୍ଭାବନା; କିନ୍ତୁ ସେ ତ ଚାହେଁନା ସମ୍ଭାବନା–ଚାହେଁନା ଗୌରବ–ସେ ଖାଲି ଚାହେଁ ଗୋଟିଏ ରାତ୍ରିର ପ୍ରଣୟ ଉଷ୍ଣ ଶଯ୍ୟା–ତା'ର ନାରୀତ୍ୱର ଟିକିଏ ନିର୍ବୋଧ ପ୍ରଶଂସାପତ୍ର–ଏଇ ତ !!

କ'ଣ ନାହିଁ ତା'ର ସେଥିପାଇଁ । ଆଖି ଦୁଇଟାକୁ ହାତ ପାପୁଲିରେ ମଳି ଦେଇ ଦର୍ପଣ ଆଗରେ ମୁହଁଟାକୁ ଝାଡ଼ିନେଲା ଥରେ ଦୁଇଥର...ନାସିକାଗ୍ରତ ଅଛି ଆଗପରି ତୀକ୍ଷ୍ଣ, ବଙ୍କିମ କୃଷ୍ଣ ଭ୍ରୂଲତା ଦୁଇରେ ତ ଆଗପରି ସ୍ପନ୍ଦନ ଅଛି—କାନତଳକୁ ଲମ୍ବି ଆସିଥିବା କଅଁଳ ବାଳ ତ ଅଛି ପୂର୍ବପରି ସ୍ୱର୍ଣ୍ଣାଭ ।

ଯୌବନର ରଥ ଯେମିତି ଚାଲି ଯାଉ ଯାଉ ଅଟକି ଠିଆହୋଇ ଯାଇଚି ମୁହୂର୍ତ୍ତକ ପାଇଁ ।

କାହାର ପାଦଶବ୍ଦରେ ବ୍ୟାଧ-ଭୀତା ହରିଣୀ ପରି ପଛକୁ ଫେରି ଚାହିଁଲା ନିହାରିକା ।

ବାଁ ହାତଟାକୁ କାଉଚ୍ ପିଠିରେ ଚାପିଧରି ନୀରବ ନିଶ୍ଚଳରେ ଠିଆହୋଇ ରହିଛି ସୁକାନ୍ତ—ନିର୍ବିକାରରେ ପାଇପ୍ ଟାଣି ଚାଲିଛି । ସୁଦୀର୍ଘ ସୁଷ୍ଠ ଗୌରବର୍ଣ୍ଣ ସୁକାନ୍ତ—ଆଖି ଦୁଇଟା ବ୍ୟାଧର ଆଖି ପରି ଜଳି ଉଠୁଛି ବିଦ୍ୟୁତ୍ ଆଲୋକରେ । ସୁକାନ୍ତର ନୀରବତା ଯେପରି କୁହେ, "ନିହାରିକା—ହେ ମୋର ଅତୀତର ପ୍ରଣୟିନୀ, ମୁଁ ଆଗତ ।"

ପୂର୍ଣ୍ଣ ଭାବରେ ଏଇ ଅଭାବନୀୟ ପରିସ୍ଥିତି ସହିତ ପରିଚିତ ହେବାକୁ ନିହାରିକା କେଇ ମୁହୂର୍ତ୍ତ ସ୍ତବ୍ଧ ହୋଇ ରହିଗଲା—ତା'ପରେ ଯେମିତି ବୁଝିଲା—ଆସିଚି ସୁକାନ୍ତ—ଆସିଚି ସେଇ ପୁରାତନ ସୁକାନ୍ତ ମହାନ୍ତି ।

"ବ୍‌ସ ସୁକାନ୍ତ" ସଙ୍କୁଚିତ ହୋଇ କହିଲା ନିହାରିକା ।

ସୁକାନ୍ତ କାଉଚ୍ ଉପରେ ବସି ପଡ଼ିଲା ବହୁଦିନର ପରିଚିତ ପରି । ଫେଲ୍‌ଟଟାକୁ ଟିପୟ ଉପରେ ଫୋପାଡ଼ି ଦେଇ ତାର ଅବାଧ ବାଳଗୁଡ଼ାକ ହାତରେ ଶୃଙ୍ଖଳିତ କରି ନେଉ ନେଉ କହିଲା, "ମନେହୁଏ ରବୀନ୍ଦ୍ର ବାବୁ ଫେରି ନାହାନ୍ତି ଏ ଯାଏଁ ।"

ନିହାରିକା ଧୀରେ କହିଲା, "ନା, ଆସିନାହାନ୍ତି—ଆଉ ଆପଣ କ'ଣ ଆସିଛନ୍ତି ମତେ କିଛି ଆଘାତ ଦେଇଯିବାକୁ ଏଇ ସୁଯୋଗରେ ?"

ସୁକାନ୍ତ ଖୁବ୍ ବିଜ୍ଞ ଲୋକର ହସ ହସି ଉଠିଲା, "ସେ ଅଧିକାର ତ ମୁଁ ବହୁଦିନୁ ହରାଇ ବସିଛି—ମୁଁ ଏମିତି ଚାଲି ଆସିଲି ଟିକିଏ ଆପଣମାନଙ୍କୁ ଦେଖିଯିବାକୁ, ପୂର୍ବ ପରିଚୟର ସୁଯୋଗ ନେଇ—ବିଶେଷ କରି ମୁଁ ଟିକିଏ ବିପଦରେ ପଡ଼ିଛି ।"

"ବିପଦ ?"

ପକେଟ୍‌ରୁ ଗୋଟାଏ ଛିଣ୍ଡା ବୋତାମ କାଢ଼ି ଟେବୁଲ ଉପରେ ଥୋଇଲା ସୁକାନ୍ତ, "କିଛିଦିନ ହେଲା ଏଇ ବେକ ପାଖର ବୋତାମଟା ଛିଣ୍ଡିଯାଇଛି—ଖୁବ୍ ଅସୁବିଧା ହଉଛି, କିନ୍ତୁ ବାହାରେ ପ୍ରଚୁର ଶୀତ ।"

ହସେ ନିହାରିକା ସନ୍ତୋଷର ହସ । କି ଅଦ୍ଭୁତ ବାହାନା ନେଇ ସୁକାନ୍ତ ଆସିଚି ତା ପାଖକୁ ! ଲଘୁ ପଦକ୍ଷେପରେ ଛୁଞ୍ଚ୍ ସୂତା ସଂଗ୍ରହ କରେ । ସ୍କୁଲ ଛାତ୍ରୀ ପରି ଦୁଇ ଓଠ ଭିତରେ ସୂତାକୁ ଚାପିଧରି ମନୋଯୋଗ ସହିତ ଟାଣେ । କାଉଚର ହାତ ଉପରେ ବସି ରହି ବୋତାମ ସିଲେଇ କରୁ କରୁ କୁହେ—

"....ସୁକାନ୍ତ ଅଦ୍ଭୁତ ତୁମର ଖିଆଲ—ଟିକିଏ ଭୁଲ୍ ବୁଝା ଭିତରେ ତମେ ସିନା ମୋର ଜୀବନଟାକୁ ଛାରଖାର କରିଦେଲ ।"

ସୁକାନ୍ତ କେବଳ ନୀରବରେ ବସି ରହି ଟେବୁଲ ଉପରୁ ନିହାରିକାର ଦୁଲ୍ ଦୁଇଟା ଆଣି ହାତରେ ନଚଉଛି ବାରମ୍ବାର । ଏଇ ଶୀତଳ ନୀରବତା ଯେମିତି ପଛକୁ ଠେଲେ—ଉଦ୍‌ଗାର କରେ—ବହୁ କଟୁକ୍ତିର ହଳାହଳ ।

ପୁଣି ଆରମ୍ଭ କରେ ନିହାରିକା ଅଭିମାନମିଶା କଣ୍ଠରେ, "ତମେ ମନେହୁଏ ଜାଣିନ ସୁକାନ୍ତ... !"

ସିଲେଇ ସରି ଆସିଛି ପ୍ରାୟ, ବୋତାମରୁ ସୂତାଟାକୁ ହାତରେ ଭିଡ଼ି ଛିଣ୍ଡାଇ ଦେଇ ସୁକାନ୍ତ କହିଲା, "ଧନ୍ୟବାଦ ।"

"ପ୍ରୟୋଜନ ନ ଥିଲା—ତମେ ମନେହୁଏ ଜାଣିନାହଁ ସୁକାନ୍ତ"...ପୁରୁଣା କଥାର ଖିଅ ଧରେ ନିହାରିକା ।

ସୁକାନ୍ତର କିନ୍ତୁ ଟିକେ ଭ୍ରୂକ୍ଷେପ ନାହିଁ ସେଥିପ୍ରତି । ବାଁ ହାତରେ ଫେଲ୍‌ଟଟାକୁ ଉଠଉ ଉଠଉ କହିଲା, "ମୁଁ ଆସୁଚି ନିହାରିକା—ଅନେକ କଷ୍ଟ ଦେଲି ତମକୁ—ତା'ଛଡ଼ା ଖୁସି ହେଲି ତୁମର ସୁଖ ସ୍ୱାଚ୍ଛନ୍ଦ୍ୟ ଦେଖି ।"

ଯେମିତି ଆଘାତ ପାଇଲା ନିହାରିକା, ଓଠରେ ଶୁଷ୍କ ହସ ଟାଣି ହତାଶାର ସ୍ୱରରେ କହିଲା, "ମୋର ସ୍ୱାଚ୍ଛନ୍ଦ୍ୟ, ମୋର ସୁଖ, ମୋର ଏହି ଅଭିଶପ୍ତ ବିବାହିତ ଜୀବନର ବା କି ଭଗ୍ନାଂଶ ଜାଣିଛ ତୁମେ ?...ଏଇତ ଆସିଲ—ଯାଉଛ କୁଆଡ଼େ ତମେ—ରାତ୍ରିର ଏଇ କେଇଟା ମୂଲ୍ୟହୀନ ମୁହୂର୍ତ୍ତ ଦବାକୁ କ'ଣ ତମେ କୁଣ୍ଠା ବୋଧକର ସୁକାନ୍ତ ?"

"ଯା ଉପରେ ଆଉ ଯୁକ୍ତି କରି ହୁଏନାଁ" ସୁକାନ୍ତ ଫେଲ୍‌ଟଟାକୁ ମୁଣ୍ଡରେ ଚାପି ପାଦ ବଢ଼େଇଲା ଆଗକୁ ।

"ତମେ ଯାଅ ନାହିଁ ସୁକାନ୍ତ" ମିନତି ଆକୁଳ ନିହାରିକାର କଣ୍ଠସ୍ୱର ! ପଛକୁ ମୁହଁ ଫେରାଇ ପୁଣି ଗୋଟାଏ ପାଦ ଆଗକୁ ବଢ଼େଇଲା ସୁକାନ୍ତ ।

ଧୈର୍ଯ୍ୟଚ୍ୟୁତି ଘଟିଥିଲା ନିହାରିକାର । ହିଷ୍ଟିରିଆ ରୋଗୀ ପରି ଛୁଟି ଆସି ସୁକାନ୍ତର କୋଟ୍ କଲର୍ ଦୁଇଟାକୁ ହାତରେ ଚାପି ଧରି ଭୀଷଣ ଭାବରେ ଦୋହଲେଇବାକୁ ଆରମ୍ଭ କଲା ।

''ତମେ ଯାଇ ପାରିବ ନାହିଁ—ଯାଇ ପାରିବ ନାହିଁ ତମେ ସୁକାନ୍ତ ।''

ନିହାରିକା ତାର ଅଶ୍ରୁଳ ମୁହଁକୁ ସୁକାନ୍ତର ପ୍ରଶସ୍ତ ବକ୍ଷ ଉପରେ ଚାପି ଧରିଚି ଅତି ନିବିଡ଼ ଭାବରେ ରୁଦ୍ଧ କ୍ରନ୍ଦନର ଆବେଗରେ ଯେପରି ସେ ବାରମ୍ବାର ଆବୃତ୍ତି କରେ ସେଇ ମିନତି ''ତମେ ଯାଇ ପାରିବ ନାହିଁ ସୁକାନ୍ତ ।''

ସୁକାନ୍ତ କିନ୍ତୁ ଅବିଚଳିତ, ସ୍ଥିର, ଶୀତଳ, ବୈଜ୍ଞାନିକର ଚକ୍ଷୁରେ ଚାହିଁ ରହିଚି ଏଇ ଆଲୁଳାୟିତାକେଶା ନିହାରିକାକୁ ।

...ମଥିତ ଚମ୍ପକର ସୁରଭି ପରି ଧୀରେ ଧୀରେ ଯେପରି ଘେରି ଆସେ ବିସ୍ମୃତି—ମଧୁର ବିସ୍ମୃତି—ବାସ୍ତବ ଆଉ ସ୍ୱପ୍ନର ଏକ ଅପୂର୍ବ ଦୋଳନ ।

ସୁକାନ୍ତର ଦେହବୃନ୍ତକୁ ଆଲିଙ୍ଗନ କରି ଧୀରେ ବେଢ଼ିଆସେ ନିହାରିକାର ଶୀର୍ଣ୍ଣ ଭୁଜବଲ୍ଲରୀ—ନିହାରିକାର ତନୁଯଷ୍ଟିରେ ଏ କି ଲଘିମା ! ଭୁଜବନ୍ଧନରେ ଏ କି ନିବିଡ଼ ପୀଡ଼ନ ! ଏଇ ଭୁଜବନ୍ଧନ ଆହୁରି ଶକ୍ତ କରି ଆଣେ ନିହାରିକା—ଆହୁରି ନିବିଡ଼, କାମୁକୀ ନାରୀର ଅତି ଭୋଜନର ନିଶାରେ ଯେପରି ସେ ପିଷ୍ଟ କରି ଦଉଚି ସୁକାନ୍ତର ମାଂସଳ ମାଂସପେଶୀ ଗୁଡ଼ାକୁ । ଶିଥିଳବକ୍ଷା ନିହାରିକାର ସ୍ପର୍ଶରେ କିପରି ଗୋଟାଏ ବୀଭତ୍ସ ଶୀତ୍‌କାର ଆସେ—ଘୃଣା ଆସେ । କାଲିର ଶିରୀଷକୋମଳ, କ୍ରୀଡ଼ାଚପଳ ଏଇ ନିହାରିକା ଆଜି ଯେପରି ଲକ୍ଷ ରୂପଜୀବୀର କ୍ଷୁଧା ଧରି ଆକ୍ରମଣ କରେ—ଉପଭୋଗ କରି ହୁଏ ନାଁ ଗଣଭୋଗ୍ୟାର ଏଇ ବୁଭୁକ୍ଷୁ ନିମନ୍ତ୍ରଣ ।

ବିଷାକ୍ତ ହୋଇ ଉଠିଲା ସୁକାନ୍ତର ଅନ୍ତରର କୋଣ—ଅନୁକୋଣ ।

ବହୁ ଶ୍ରମ ସ୍ୱୀକାର ପରେ ନିଜକୁ ନିହାରିକାର ଭୁଜ ବିମୁକ୍ତ କରି ନିଜର ବିପର୍ଯ୍ୟସ୍ତ ବାଳଗୁଡ଼ାକ ଥରେ ହାତରେ ସଜାଡ଼ି ନେଲା ସୁକାନ୍ତ ।

ନିହାରିକାର ପ୍ରଶ୍ୱାସ ପ୍ରଖର ହୋଇ ଉଠିଛି ଆହତା ଲାଞ୍ଛିତା ନାଗୁଣୀର ଫୁତ୍‌କାର ପରି ।

ପ୍ରକୃତିସ୍ଥ ହୋଇ ସୁକାନ୍ତ କହିଲା, ''କ୍ଷମା କରିବେ ନିହାରିକା ଦେବୀ—ପତଙ୍ଗ ମୁଁ ନୁହେଁ । ମୋର ଆସିବାର ଉଦ୍ଦେଶ୍ୟ ଥିଲା ସଂପୂର୍ଣ୍ଣ ଅର୍ଥନୈତିକ—ଆଉ ତା' ମଧ୍ୟ ମୁଁ ହାସଲ କରି ନେଇଛି ।''

ପଚାରିଲା ଆଖିରେ ଚାହିଁ ରହିଲା ନିହାରିକା । ଆଖିର ଧାରେ-ଧାରେ ଅତୃପ୍ତ ତୃଷ୍ଣାର ସେଇ ବ୍ୟାକୁଳ ମିନତି ।

ହାତରେ ସେଇ ସୁନାର ଦୁଲ ଦୁଇଟା ନଚାଇ ନଚାଇ ସାବଲୀଳ ଭାବରେ କହିଲା ସୁକାନ୍ତ, ''କିଛିଦିନର ଖୋରାକ୍ ପାଇଁ ଚଳିଯିବ ଏଇ ଦୁଇଟା ଦୁଲ—ତୁମର କେଉଁ ପ୍ରଣୟୀର ସ୍ନେହଦତ୍ତ ଏଇ ଦୁଲ ଦୁଇଟାକୁ ମୁଁ ଲୁଣ୍ଠନ କରି ନବାକୁ ବାଧ୍ୟ ହେଉଚି—ଦିନେ ଆସିଥିଲି ଲୁଣ୍ଠନ କରିବାକୁ ତୁମର ଅଭୁକ୍ତ ଯୌବନ... ।''

''ଚୁପ୍‌କର–ସୁକାନ୍ତ ମୁଁ ସ୍ୱୀକାର କରେ ନାଁ ମୁଁ ତୁମର ଉଚ୍ଛିଷ୍ଟ ।''

ହସିଲା ସୁକାନ୍ତ–''କୁହ ମତେ ଅଭଦ୍ର, ଲମ୍ପଟ, କୁହ ମତେ ମଦ୍ୟପ, ଦସ୍ୟୁ–କୁହ ଯାହା ମନେ ହୁଏ ତମର–ମୁଁ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି–କିନ୍ତୁ ଅଗତ୍ୟା ନିହାରିକା ! ଏଇ ଅର୍ଥନୀତିର ଚାପରେ ପଡ଼ି ତମର ଅନିଚ୍ଛା ସତ୍ତ୍ୱେ ମଧ ମତେ ବାରମ୍ବାର ଆସିବାକୁ ପଡ଼ିବ ତମ ପାଖକୁ ।''

ହସି ହସି ଝଡ଼ପରି ଦ୍ରୁତ ପଦକ୍ଷେପରେ ସୁକାନ୍ତ ବାହାରିଗଲା ପଦାକୁ ।

ସ୍ୱପ୍ନୋତ୍‌ଥିତା ପରି କେବଳ ଚାହିଁ ରହିଛି ନିହାରିକା ମୁକ୍ତ ଗବାକ୍ଷ ଦେଇ । ରାତ୍ରିର ଦୁଃସ୍ୱପ୍ନ ପରି ମିଳେଇ ଯାଉଛି ଗୋଟାଏ କଳା ଛାଇ–ଅସ୍ପଷ୍ଟ ହୋଇ ଆସିଛି ସୁକାନ୍ତ–ଅଦୃଶ୍ୟ ହୋଇ ଆସୁଛି ସୁସ୍ଥ–ସୁଦୀର୍ଘ–ଗୌରତନୁ ସୁକାନ୍ତ ମହାନ୍ତି ।

ପାହାନ୍ତା ପବନରେ ନିହାରିକାର ନିଦ୍ରାହୀନ ଆଖିପତା ଦୁଇଟି ବୁଜି ହୋଇ ଆସୁଚି...ତମେ କାହିଁକି ଆସିଥିଲ ସୁକାନ୍ତ ଅତୀତର ସେଇ ମମତା ଜାଳିଦବାକୁ ମୋ' ଭିତରେ ! ହଁ–ଶେଷକୁ ଲୁଣ୍ଠନ କରିନେଇ ଦୁଇଟା ସୁନାର ଦୁଲ–ଚାହିଁଥିଲେ ପ୍ରଚୁର ଅର୍ଥ ଦେଇ ପାରିଥାନ୍ତି–ଅର୍ଥର ଅଭାବ ନାଇଁ ମୋ'ଠାରେ; କିନ୍ତୁ ଏ କ'ଣ କଲ ତୁମେ ! ଦସ୍ୟୁ ତମେ-ତସ୍କର–ମଦ୍ୟପ-ସ୍କାଉଣ୍ଡ୍ରେଲ... ।

## ତିନି

ଥୁଣ୍ଟା ଗଛର ଛନ୍ଦା ଛନ୍ଦା ଶାଖା ପ୍ରଶାଖା ଭିତରେ ଫିଟି ଫିଟି ଆସୁଛି ଅନ୍ଧାରର ସୂତା ।

ସକାଳ ହୋଇ ଆସୁଚି ।

ସୁକାନ୍ତର କିନ୍ତୁ ଭ୍ରୂକ୍ଷେପ ନାହିଁ । ପାଇପ୍‌ର ନାଡ଼ଟାକୁ ଦାନ୍ତରେ ଚାପି ଧରି ସେ' ଆଗପରି ଚାଲିଚି ଅବିରାମ–ଅବିଚଳିତ । ହାତର ପାପୁଲିରେ ଯନ୍ତ୍ରଚାଳିତ ପରି ଦୁଲ ଦୁଇଟା ଉପରକୁ ଯାଉଚି–ତଳକୁ ଆସୁଚି–ପୁଣି ଉପରକୁ । ମନରେ କିପରି ଗୋଟାଏ ସନ୍ତୋଷ । ଆଜିର ଏଇ ଗଣଭୋଗ୍ୟା ନିହାରିକାର ତନୁତୀର୍ଥରେ ସେ ହାରିଥିଲା ଯେତେ ଉଲ୍ଲାସ–ଯେତେ ଅକାରଣ ପ୍ରଣୟ–ତାକୁ ଯେମିତି କଡ଼ା କ୍ରାନ୍ତି ଆଦାୟ କରି ନଉଛି ଅର୍ଥ ରୂପରେ–ଆଦାୟ କରି ନଉଚି ପଳେ ପଳେ ।

କାଲି ରାତ୍ରିର ଜାକରରେ ଭିଜି ଭିଜି କାହାର ପଟେ ଛିଣ୍ଡା ଚଟି ପଡ଼ି ରହିଚି ରାସ୍ତା ମଝିରେ–କେମିତି କୁତ୍ସିତ ଦେଖା ଯାଉଚି । ଜୋତାର ଟୋ'ରେ ସୁକାନ୍ତ ଚଟିଟାକୁ ମାରି ଫୋପାଡ଼ି ଦେଲା ରାସ୍ତା କରକୁ ।



# ସୁକାନ୍ତ ମହାନ୍ତି

## ଏକ

ଅକ୍ଟୋବରର ଘୂମନ୍ତ ସନ୍ଧ୍ୟା ।

ଫୁଟ୍‌ପାଥ୍‌ରେ ଅଜସ୍ର ପଦାତିକଙ୍କ କାନ୍ଧରେ କାନ୍ଧ ଘସି ଚାଲିଛି ସୁକାନ୍ତ । ମନ୍ଦ ଲାଗେନି ଏମିତି ଚାଲିବା—ଚଳମାନ ଜନସ୍ରୋତରେ ଗୋଟିଏ ଆତ୍ମଭୋଳା ପରମାଣୁ ପରି । ଗୋଟାଏ ଲାଇଟପୋଷ୍ଟ ପାଖେ ଅଟକି ଯାଇ ଥରେ ନିଜକୁ ନିରୀକ୍ଷଣ କରି ନେଲା ସୁକାନ୍ତ । ପୂରାପୂରି ଭଦ୍ର ଲୋକର ପରିଧାନ—କିଏ ଅନୁମାନ କରିପାରିବ ସୁକାନ୍ତ ଦରିଦ୍ର, କପର୍ଦ୍ଦକହୀନ, ବେକାର !...ଆଉ ବିଶେଷ କରି ଏଇ ଟୁଇଡ୍ କୋଟ୍ ଖଣ୍ଡ—ଚମତ୍କାର !

କିପରି ଅସ୍ୱସ୍ତିକର ବୋଧ କଲା ସୁକାନ୍ତ । ବେଶୀଦିନ ନୁହେଁ, ଏଇ ଦିନେ ଦୁଇଦିନ ତଳେ ସେ ପହଞ୍ଚିଥିଲା ପ୍ରଦୀପ୍ତ ପାଖରେ—ବିଳାସୀ, ଧନୀ ପ୍ରଦୀପ୍ତ ପାଖରେ ତା'ର ବାଲ୍ୟ ବନ୍ଧୁତାର ସୁଯୋଗ ନେଇ । ଇଣ୍ଟରଭିଉର ବାହାନା ନେଇ ସେ ତା'ଠାରୁ ଦିନକ ପାଇଁ ମାଗି ଆଣିଥିଲା ଏଇ ଲୋମଶ ଟୁଇଡ୍ କୋଟ୍ ଖଣ୍ଡି...କିନ୍ତୁ ସେତ ପ୍ରଦୀପ୍ତକୁ ବର୍ତ୍ତମାନ ଫେରାଇ ଦେଇ ପାରୁନାହିଁ କୋଟ୍ ଖଣ୍ଡ...ଆଖି ଆଗରେ ଦାନ୍ତ ଦେଖେଇ ପଳାସି ଆସୁଛି ଶୀତ ପ୍ରଚଣ୍ଡ, କ୍ରୂର, ନଭେମ୍ବରର ଦୈତ୍ୟ...ଓଃ ! ନିର୍ଯାତିତର ପୃଥିବୀ ଉପରେ କାହିଁକି ଆସେ ଏଇ ଅଭିଶପ୍ତ ନଭେମ୍ବର ! ମନ୍ଦ ନୁହେଁ ! ଏଇ କୋଟ୍ ଖଣ୍ଡକର ଆବରଣ ତଳେ ସ୍ୱଚ୍ଛନ୍ଦରେ କାଟିହବ ୧୯୫୦ ସାଲର ଶୀତଟା ।

ପ୍ରଦୀପ୍ତକୁ ପ୍ରଚୁର ଧନ୍ୟବାଦ ଦେଲା ସୁକାନ୍ତ—ମନେ ମନେ ଆବୃତ୍ତି କଲା—"ଦୀର୍ଘଜୀବୀ ହୁଅ ପ୍ରଦୀପ୍ତ ସାମନ୍ତରାୟ...ଦୀର୍ଘଜୀବୀ ହେଉ ତୁମରି ଉଦାର, ବଦାନ୍ୟ ଗୋଷ୍ଠୀ ।"

ହଠାତ୍ ବାଁକୁ ବୁଲିପଡ଼ି କ୍ଷିପ୍ର-ଲଘୁ ପଦକ୍ଷେପରେ ସୁକାନ୍ତ ଉଠି ଚାଲିଲା—'ପାମ୍‌ବିଚ୍' ରେଷ୍ଟୋରାଁର ଶିଡ଼ି । ୱେଟରକୁ କପେ କଫି ପାଇଁ ବରାଦ୍ ଦେଇ ଗମ୍ଭୀର-ହୋଇ ବସି ରହିଲା ସୁକାନ୍ତ । ପକେଟରୁ କେଇ ଖଣ୍ଡ ନୋଟ୍ କାଢ଼ିଆଣି ଗଣିଲା—ମାତ୍ର ସାତଟଙ୍କା ଅବଶିଷ୍ଟ । କେବେ କେଉଁ ସୁମୁହୂର୍ତ୍ତରେ ସେ ଇନ୍‌ସିଓର କରିଥିଲା ମିଷ୍ଟର୍

ଓ ମିସେସ୍ ଦାସଙ୍କର ଜଏଣ୍ଟ ଲାଇଫ୍ । ଏଇ ମିଷ୍ଟର୍ ଓ ମିସେସ୍ ଦାସଙ୍କ କଥା ଭାବିଲେ ମନରେ ଅହେତୁକୀ ଈର୍ଷା ଆସେ । ମନେପଡ଼େ ସେଇ ଛୋଟ ବଂଗଲୋ ଟାଇପ୍ ଘରଟିରେ ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟର ଅପୂର୍ବ ସମ୍ଭାର ନେଇ କୂଜନ-ରତ ସେଇ ଦମ୍ପତି । ସୁନ୍ଦର ! ବନର କପୋତ କପୋତୀ ପରି ସ୍ୱୟଂ ସଂପୂର୍ଣ୍ଣ ସେମାନଙ୍କର ଜୀବନ । କି ସୁନ୍ଦର ଯୋଜନା । ...ଜଣକର ମୃତ୍ୟୁରେ ଅପର ପାଇବ ଦଶହଜାର ଟଙ୍କା—ଦଶହଜାର୍ ! ସେ ଯଦି ବିବାହ କରିଥାନ୍ତା ଓ ଠିକ୍ ଏମିତି ଗୋଟାଏ ଇନ୍‌ସ୍ୟୁରାନସ୍‌ର ପ୍ରଥମ ପ୍ରିମିୟମ୍ ଦେଇ ସାରି ଯଦି ମରିଯାଇ ଥାଆନ୍ତା ସୁକାନ୍ତର ପ୍ରାଣାଧିକା ସ୍ତ୍ରୀ....ତାହା ହେଲେ... ।

ଭୀଷଣ ଈର୍ଷା ହେଲା ସୁକାନ୍ତର । ନିଜକୁ ନିଜେ ସମର୍ଥନ କରି ବିଦ୍ରୁପର ହସ ହସୁ ହସୁ ମନେ ମନେ ସମ୍ବୋଧନ କଲା...‘‘କିନ୍ତୁ ନିର୍ବୋଧ ମିଷ୍ଟର୍ ଓ ମିସେସ୍ ଦାସ । ତମେ କ’ଣ ଜାଣ—ଇନ୍‌ସ୍ୟୁରାନସ୍ କମ୍ପାନୀ’ର ଡାଇରେକ୍ଟରମାନେ ତମ ଜୀବନର ଦାୟିତ୍ୱ ଆଦୌ ଗ୍ରହଣ କରି ନାହାନ୍ତି ? ତମେ କ’ଣ ଜାଣ ତମର ପ୍ରଥମ କ୍ୱାର୍ଟର୍ଲି ପ୍ରିମିୟମ୍‌କୁ ତିଳେ ତିଳେ ଆତ୍ମସାତ୍ କରି ବିଗତ ଗୋଟାଏ ସପ୍ତାହ ଧରି ବଞ୍ଚି ଆସିଚି ଏଇ ସ୍ୱିଣ୍ଡ୍‌ଲର୍ ସୁକାନ୍ତ ମହାନ୍ତି—ହାଃ ହାଃ ହାଃ.... ।’’

ସଶବ୍ଦେ ୱେଟ୍‌ର୍ କଫି ଥୋଇ ଦେଇ ଗଲା ।

କଫିର ସାନ୍ନିଧ୍ୟରେ ଯେପରି ଆରାମ୍ ଅନୁଭବ କଲା ସୁକାନ୍ତ । ଆକଣ୍ଠ ଆଘ୍ରାଣ କରି ନେଲା ସଦ୍ୟପ୍ରସ୍ତୁତ କଫିର ସୁରଭି । ଅଧିକା କିଛିଦିନ ଚଳିଯିବାର ଲୋଭରେ ଏଇ କେତେଦିନ ଧରି ସେ ଭଲକରି ଗୋଟାଏ ମିଲ୍ ମଧ ଖାଇ ପାରିନାହିଁ । କି ସୁନ୍ଦର ବାସ୍ନା ଏଇ କଫିର । କଫିର ସ୍ୱାଦ ଉପଭୋଗ କରୁ କରୁ ହଠାତ୍ ଯେପରି ଚମକି ଉଠିଲା ସୁକାନ୍ତ ।

ଠିକ୍ ତା’ରି ସାମ୍ନାରେ କିଏ ଜଣେ ଆସି ବସିଲାଣି । ସୁକାନ୍ତର ମନେହେଲା ଯେପରି ମନ୍ଥରଗତି ସରୀସୃପ ପରି ଏଇ ଅନାହୂତ ଆଗନ୍ତୁକ ପଶି ଆସିଛନ୍ତି ତା’ର ଅଲକ୍ଷ୍ୟରେ ।

ଚାହିଁଲେ ମନରେ ବିକାର ଆସେ । ଅସାଧାରଣ ଦୀର୍ଘ ରୋଗଜୀର୍ଣ୍ଣ ଗୋଟାଏ ମନୁଷ୍ୟ । କଂକାଳ ଉପରେ ପଳେ ହେଲେ ମାଂସ ନାହିଁ । ଗୋଟିଏ ପାଣ୍ଡୁର, ମୃତ୍ୟୁ-ମଳିନ ମୁହଁକୁ ଟେକି ଧରି ଅପ୍ରାକୃତିକ ଭାବରେ ବେକଟା ଅଯଥା ଦୀର୍ଘ ହେଇ ଲମ୍ବି ଆସିଛି ପଦାକୁ । ତାରା ପରି ମିଞ୍ଜି ମିଞ୍ଜି କରୁଛି ଦୁଇଟି କୋଟରଗତ ଚକ୍ଷୁ । ଇସ୍ ! ମଳିନ ପଞ୍ଜାବୀର ସୀମା ଡେଇଁ ଲୋକଟାର ମଣିବନ୍ଧଟା କେତେ ସରୁ ! କେତେ ରୁଗ୍ଣ !

ଚତୁର୍ଦ୍ଦିଗର ପରିସ୍ଥିତି ପ୍ରତି ବିସ୍ମୃତ ହୋଇ ଲୋକଟା ଅତି ମନୋଯୋଗ ସହକାରେ ଖାଇବାରେ ଲାଗିଚି । ଲମ୍ବା ଲମ୍ବା ଗ୍ରନ୍ଥିଳ ଆଙ୍ଗୁଠି ଗୁଡ଼ାକରେ ଖଣ୍ଡେ ମୁଣ୍ଡା ହାଡ଼ ଧରି ବଡ଼ ବଡ଼ ଦାନ୍ତ ଗୁଡ଼ାକରେ ରେକେଟୁଛି ବାରମ୍ବାର । ଖଣ୍ଡେ ମାଂସଲଗା ହାଡ଼କୁ ଏପରି ହିଂସ୍ର ଆନନ୍ଦରେ ଖାଇବାର ଖୁବ୍ କମ୍ ଲୋକ ଦେଖିଛି ସୁକାନ୍ତ ।

ହଠାତ୍ ହାଡ଼ ଖଣ୍ଡିକ ପ୍ଲେଟ୍ ଉପରେ ଥୋଇ ଦେଇ ଲୋକଟା ଅତି ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ରହିଲା ସୁକାନ୍ତକୁ । ତାରାପରି ସେଇ ମିଞ୍ଜି ମିଞ୍ଜି ଆଖି ଦୁଇଟା ଯେପରି ଜଳିଉଠିଲା ମୁହୂର୍ତ୍ତକର ଆଶାରେ । ତା'ର ଅବିଚଳିତ ଦୃଢ଼ କଣ୍ଠସ୍ୱର ଯେପରି ସୀମା ପରି ଗଳି ଗଲା ସୁକାନ୍ତର ଦେହେ ଦେହେ ।

''ଚାରଣା ପଇସା ଦେଇ ପାରିବ ବାବୁ ? ଆଉ ଗୋଟାଏ ପ୍ଲେଟ୍ ମାଂସ ଖାଇବାକୁ ଭାରି ଇଚ୍ଛା...ଓଃ ଅନେକ ଦିନ ପରେ ଆଜି ଟିକିଏ ମାଂସ ଖାଇବାକୁ ମିଳିଚି ବାବୁ...।''

ସହାନୁଭୂତିର କଣ୍ଠରେ ଯନ୍ତ୍ର ପରି କହିଲା ସୁକାନ୍ତ—''ମୋ' ପାଖେ ପଇସା କୁଆଡ଼େ ଆସିବ ଭାଇ ! ମୁଁ ତ ତୁମଠାରୁ ଆହୁରି ଦରିଦ୍ର ।''

ବିଦ୍ରୂପର କ୍ଷୀଣ ହସ ହସିଲା ଲୋକଟା....''ଏପରି ପୋଷାକରେ ମୁଁ ଜଣେ ବି ଦରିଦ୍ର ଦେଖିନାହିଁ ଆଜିଯାଏ,....ତମେଇ ପ୍ରଥମ ଆଉ ତମେଇ ଶେଷ ବୋଧହୁଏ ।''

ଏଇ ସାମାନ୍ୟ ଆଳାପର ସୁଯୋଗ ନେଇ ହଠାତ୍ ବାଚାଳ ପରି କହି ଲାଗିଲା ଲୋକଟା—ଗତକାଲି ଏଇ ପ୍ରଚଣ୍ଡ ଶୀତରେ ମଧ ତା'ର ତିରିଶ ବର୍ଷର ପୁରୁଣା ସାଲ ଖଣ୍ଡକ ସେ ବିକ୍ରୀ କରି ଦେଇ ଆସିଲା ପାଣି ମୂଲ୍ୟରେ । ଶୀତରେ ବଞ୍ଚି ହୁଏ ବାବୁ, କିନ୍ତୁ ଭୋକରେ ?

କ୍ରୁର ପ୍ରଶ୍ନବାଚକ ଦୃଷ୍ଟିରେ ସେ ଚାହିଁ ରହିଲା ସୁକାନ୍ତକୁ । କୁଅଁତ ଭୂତଳେ ତୀକ୍ଷ୍ଣ ଆଖି ଦୁଇଟା କାପାଳିକର ଆଖି ପରି । ପୁଣି ସେଇ ବିଦ୍ରୂପ ହସ ଅବିଚଳିତ ଦୃଢ଼ କଣ୍ଠସ୍ୱର—

''ଦରିଦ୍ର—ତମେ ଦରିଦ୍ର ବାବୁ ? ଆସ—ମୋ ସାଙ୍ଗରେ ଆସ, ତମର ଏଇ ଦାମୀଦା କୋଟ୍ ଖଣ୍ଡର ବିକ୍ରୀର ବ୍ୟବସ୍ଥା ମୁଁ କରି ଦଉଛି....ହାଃ ହାଃ—ଶୀତରେ ବଞ୍ଚି ହୁଏ ବାବୁ; କିନ୍ତୁ ଯେତେବେଳେ ଆସେ କ୍ଷୁଧାର ଦୈତ୍ୟ...ଖୁଁ—ଖୁଁ—ଖୁଁ...'' ହଠାତ୍ କାଶି କାଶି ଲାଲ୍ ପଡ଼ିଗଲା ଲୋକଟାର ମୁହଁ ।

ଅସ୍ୱସ୍ତିକର ବୋଧକଲା ସୁକାନ୍ତ । ଲୋକଟାର କଥା ପ୍ରତି ବିଶେଷ ମନୋଯୋଗ ନ ଦେଇ ଉଠିବାର ପ୍ରୟାସ କଲା ।

କିଏ ଯେପରି ଆଦେଶ ଦେଲା–"ବସ ବାବୁ–ହେଲା ଏବେ ମୋର ପଇସା ଦରକାର ନାହିଁ–ବସ–ତମକୁ ଆଉ ଗୋଟାଏ ଦୁଇଟା କଥା କହିଦିଏ–ଯୁବକ ତମେ–ବଞ୍ଚିବାର ମମତା ଅଛି ତୁମର–ଭବିଷ୍ୟତରେ କାମରେ ଲାଗିପାରେ....ଚଉକୀରେ ପେଚ ଅଣ୍ଟା କାଠ ମଣିଷ ପରି ସ୍ଥିର ହୋଇ ବସି ରହିଲା ସୁକାନ୍ତ ।

ଟେବୁଲ ଉପରେ ଭରା ଦେଇ ଆଉ ଟିକିଏ ଆଗକୁ ଝୁଙ୍କି ଆସିଲା ଲୋକଟା । ଆଖି ଦୁଇଟା ଯେପରି ସେଇ କୋଟର ଭିତରେ ମାର୍ବଲ ଆଖିପରି ହୋଇଗଲା ସ୍ଥିର, ଶୀତଳ, ନିର୍ଜୀବ । ଯେପରି ସେ କହିବାକୁ ଯାଉଛି କି ଗୋଟାଏ ଭୀଷଣ ସତ୍ୟ ! ପ୍ରକାଶ କରିବାକୁ ଯାଉଛି କି' ଗୋଟାଏ ଭୟାବହ ରହସ୍ୟ ! କେତେବେଳେକେ କଳା କଳା ଫଟା ଫଟା ଓଠ ଦୁଇଟା ମେଲେଇ ମେଲେଇ କହିଲା–

"ଗତ ଅନେକ ଦିନ ଧରି ମୋତେ ଯକ୍ଷ୍ମା ହେଇଚି–ରାଜଯକ୍ଷ୍ମା ।"

ମୁହୂର୍ତ୍ତେ ସୁକାନ୍ତର ମେରୁଦଣ୍ଡ ଦେଇ ଖେଳିଗଲା ଶୀତ୍‌କାରର ବିଦ୍ୟୁତ୍ । "...ଦେଖିବ ବାବୁ–ଦେଖିବ ଡାକ୍ତରର ପ୍ରେସ୍‌କ୍ରିପ୍‌ସନ–ଚମତ୍କାର–ଫ୍ରି ମେଡ଼ିକାଲ୍ ଆଡ୍‌ଭାଇସ୍ । ଖାଇବାକୁ ହେବ ଲିଭର୍ ଏକ୍‌ସଟ୍ରାକ୍ଟ...ଭିଟାମିନ 'ବି' କମ୍ପ୍ଲେକ୍‌ସ... ଛେଳି କଲିଜା–ଦୁଧ–ଘିଅ ଟନିକ୍...ହାଃ ହାଃ ହାଃ...ସନତ୍‌ରକ୍ଷିତ୍ ଆଉ ଲିଭର ଏକ୍‌ସଟ୍ରାକ୍ଟ..."

ଖଣ୍ଡେ ମସିଆ ପ୍ରେସ୍‌କ୍ରିପସନ୍ କାଗଜ ସେ' ସୁକାନ୍ତ ଉପରକୁ ଫିଙ୍ଗି ଦେଇ ହୋ' ହୋ' ହୋଇ ପାଗଳ ପରି ହସିବାକୁ ଲାଗିଲା । ହସର ଝଡ଼ରେ ରୋଗଜୀର୍ଣ୍ଣ ଶରୀରଟା ଯେପରି ଦୋହଲିଗଲା ବାରମ୍ବାର....ବେକ ପାଖର ଶିରାଗୁଡ଼ାକ ଫୁଲି ଉଠିଛନ୍ତି ପ୍ରଚଣ୍ଡ ଭାବରେ ।

ପୃଥିବୀ ବିରୁଦ୍ଧରେ ତା'ର ଦୁରନ୍ତ ଉପହାସ ସ୍ଥିର ହୋଇ ଆସିଲା ଆସ୍ତେ ଆସ୍ତେ । କ୍ଳାନ୍ତି ଓ ଅବସାଦର ଦୀର୍ଘଶ୍ୱାସ ନେଲା ସେ' । ପୁଣି ଆଖିରେ ସେଇ ଭସାଣିଆ ସୁଦୂରର ଚାହାଣୀ...ଓଦା ଓଦା ଆଖି-ପତା ଯେପରି ରୋକି ରଖିଛି ଅଶ୍ରୁର ବନ୍ୟା ।

ସହାନୁଭୂତିରେ ସୁକାନ୍ତ ଆଖି ମଧ ଓଦା ହୋଇ ଆସିଲା ।

ଭଗ୍ନ କଣ୍ଠରେ ପୁଣି ଧୀରେ ଧୀରେ ଆରମ୍ଭ କଲା ରକ୍ଷିତ..."ମୁଁ ଜାଣେ ବାବୁ, ପ୍ରତି ମୁହୂର୍ତ୍ତରେ ମୁଁ ଆଗେଇ ଚାଲିଛି ମୃତ୍ୟୁ ମୁଖକୁ...ପଳେ ପଳେ–କିନ୍ତୁ ବାବୁ, ପଛକୁ ଟାଣେ ପୃଥିବୀର ତା ଇଚ୍ଛା ହୁଏ ଆଜି ମଧ ମୁଁ ମୋର ବଂଶୀରେ ସୁରର ବନ୍ୟା ଛୁଟାଇ ପାରନ୍ତି । କିନ୍ତୁ ଆଉ ପାରୁନି–ନାଁ–ଛାତି ଭିତରଟା ଦପ୍ ଦପ୍ ପଡ଼େ, ଯେମିତି ଫାଟିଯିବ"... ।

ଅନୁଭୂତିର ପ୍ରାଚୁର୍ଯ୍ୟରେ ରକ୍ଷିତ୍‌ର କଣ୍ଠ ହିଂସ୍ର ହୋଇ ଉଠିଛି.... ।

''....ଓଃ ! ଯଦି ଏଇ ଯକ୍ଷ୍ମାର ବିଜାଣୁ ଦେଇ ମୁଁ ସାରା ବିଶ୍ୱକୁ ସଂକ୍ରାମିତ କରି ଦେଇ ପାରନ୍ତି—ଏଇ ସମଗ୍ର ମାନବ ଜାତିଟାକୁ ଯଦି ଟାଣି ନେଇ ପାରନ୍ତି ମୃତ୍ୟୁ ମୁଖକୁ—ଉପଭୋଗ କରି ହୁଅନ୍ତା; କିନ୍ତୁ....ମନୁଷ୍ୟ ମାତ୍ରେଇ ବିଶ୍ୱାସଘାତକ... ।''

ଟିକ ଟିକ କରି ରକ୍ତଗୁଡ଼ା ପୁଣି ଜମି ଆସିଲା ରକ୍ଷିତ୍ ମୁହଁରେ—ଆହତ ଫଣି ପରି ମୋଡ଼ି ମୋଡ଼ି ହୋଇ ସେ ଲୋଟି ପଡ଼ିଲା ଟେବୁଲ୍ ଉପରେ । ହାତର ଆଙ୍ଗୁଠିରେ କେବଳ ଇଙ୍ଗିତ କଲା ସୁକାନ୍ତକୁ—ଯାଅ ଯାଅ—ବାବୁ—ଯାଅ...।

ଧୈର୍ଯ୍ୟ ଲୁପ୍ତ ହୋଇଥିଲା ସୁକାନ୍ତର । ରୁମାଲ୍‌ରେ କପାଳରୁ ଝାଳ ପୋଛୁ ପୋଛୁ ଝଡ଼ ବେଗରେ ବାହାରିଗଲା ସୁକାନ୍ତ । 'ପାମ୍‌ବିଚ୍' ରେସ୍ତୋରାଁର ସେଇ ଲମ୍ବା ଶିଡ଼ିଟାରେ ଓହ୍ଲେଇ ଯାଉ ଯାଉ ଅଟକିଗଲା ମୁହୂର୍ତ୍ତେ....ଭାଙ୍ଗି ପଡ଼ିବ ନାହିଁ ତ ଏଇ ପାହାଚଗୁଡ଼ାକ !!!

## ଦୁଇ

ବାହାରେ ଅକ୍ଟୋବରର ରାତ୍ରି ।

ଫୁଟପାଥ୍‌ରେ ଜନତାର ସ୍ରୋତ—ଆଡ଼େଇ ଚାଲିଛି ଚଞ୍ଚଳ ଗତି ସୁକାନ୍ତ । ସୋଲ୍‌ରୁ ସିଲେଇ ଫିଟିଯାଇ ବାଲିଗୁଡ଼ା ପଶିଗଲାଣି ଜୋତା ଭିତରେ । ଗୋଟାଏ ଲାଇଟ୍ ପୋଷ୍ଟକୁ ଆଉଜି ବାଁ-ଗୋଡ଼ର ହିଲଟାକୁ ଦୁଇ ତିନିଥର ପିଟିନେଲା ରାସ୍ତା ଉପରେ—ବର୍ତ୍ତମାନ ନିର୍ଦ୍ୱନ୍ଦ୍ୱରେ ଚାଲିବ କିଛି ସମୟ ।

ଚାଲିଛି ସୁକାନ୍ତ ଗୋଟାଏ ନିର୍ଦ୍ଦିଷ୍ଟ ତାଳରେ ।

ପୀତ, ନୀଳ, ହରିତ୍ ଆଲୋକର ଫଳକ ପଡ଼ୁଛି ରାସ୍ତାରେ—ପୁଣି ଅସୁମାରୀ ନାଁ ନ ଜଣା ଲୋକଙ୍କର ଛାଇ । ବେଶ୍ ଲାଗେ ଏମିତି ମିଶି ଯିବାକୁ ଏଇ ବେନାମୀ ପଦାତିକର ସମଗ୍ରତାରେ—ହଜେଇ ଦବାକୁ ନିଜର ସ୍ୱାତନ୍ତ୍ର୍ୟ । କିନ୍ତୁ ପର ମୁହୂର୍ତ୍ତରେ ଚାବୁକ୍ ବାଜେ । ସେ ତ ଜନତା ନୁହଁ । ସେ ବ୍ୟକ୍ତି । ସେ ଜୀବନ-ବିଶାରଦ, ଆତ୍ମସଚେତନ, ବୈଜ୍ଞାନିକ, ସୁକାନ୍ତ ମହାନ୍ତି । ଆତ୍ମ ବିସ୍ମୃତିରେ ମାଦକତା ଅଛି ।

କିନ୍ତୁ ଆତ୍ମ-ଚେତନା ଦିଏ ଦହନ—ମୃତ୍ୟୁର ଦହନ । ବନ୍ଧୁର ପାହାଡ଼ରେ ମୁଣ୍ଡ ପିଟି ରକ୍ତ ଝରେ ଝର୍—ଝର୍—ଝର୍...ବିଜ୍ଞାନ ଦିଏ ହଳାହଳ ।

କୁଆଡ଼େ ଚାଲିଛି ଏଇ ଗୃହହୀନ, ଆଶ୍ରୟହୀନ ସୁକାନ୍ତ ?

ସେ ନିଜେ ବି ଜାଣେନା ।

....ମନରେ ପିନ୍‌କଣ୍ଟା ପରି ଚାଇଁ ଚାଇଁ ଫୋଡ଼ି ହେଇଯାଏ ସେଇ ଜଳପ୍ରପାତ ପରି 'ପାମ୍‌ବିଚ୍' ରେଷ୍ଟୋରାଁର ଅସରନ୍ତି ଲମ୍ବା ଶିଡ଼ିତାସ୍‌ର ପାହାଚ—ଆଉ ଯକ୍ଷ୍ମାଗ୍ରସ୍ତ ମୃତ୍ୟୁଦୂତ ସନତ୍ ରକ୍ଷିତ—କାନରେ ବାଜେ ସେଇ ଖୁଁ ଖୁଁ କାଶ...''ମନୁଷ୍ୟ ମାତ୍ରେଇ ବିଶ୍ୱାସଘାତକ ।'' ପୃଥିବୀର ଦ୍ୟୁତକ୍ରୀଡ଼ାରେ ସର୍ବସ୍ୱାନ୍ତ ସନତ୍ ରକ୍ଷିତ୍....ଚଳନ୍ତି ବର୍ତ୍ତମାନର ଭଗ୍ନଜାନୁ ନାୟକ-ସନତ୍ ରକ୍ଷିତ୍ ।

ନାଁ—ଗତି ବଢ଼ାଇଲା ସୁକାନ୍ତ—ଅକ୍‌ଟୋବର ଶୀତ—ମଧୁର ରାତ୍ରିକୁ ସେ ନଷ୍ଟ କରି ଦେଇ ପାରିବ ନାହିଁ । ଗୋଟାଏ ପାଗଳର ପ୍ରଳାପ ପାଇଁ ।

ମେନ୍‌ରୋଡ଼ ପଛରେ ପଡ଼ିଗଲାଣି—ଅନେକ ପଛରେ ।

ଉପରେ ଅନନ୍ତ ମହାକାଳ ପରି ମୂର୍ଚ୍ଛା ଯାଇଛି ବିସ୍ତୃତ ପ୍ରଶାନ୍ତ ନୀଳାମ୍ବରୀ ଆକାଶ । ଠିକ୍ ତାରି ତଳେ ଗଭୀର ହୋଇ ଆସୁଛି ମାୟାବିନୀ ରାତ୍ରିର ଆବେଷ୍ଟନ—ଆହୁରି ଗଭୀର ସାନ୍ଦ୍ର ।

ଏହି ଅସ୍ପଷ୍ଟ ଭାବରେ ଦେଖିହୁଏ ଚର୍ଚ୍ଚ ଉପରେ ଛକି ହୋଇ ରହିଛି ଦିଖଣ୍ଡ କାଠ—କ୍ରସ୍ । କେବେ କେତେ ଶତାବ୍ଦୀ ତଳେ ଗୋଟାଏ ବର୍ବର ସଭ୍ୟତାରେ ଜଣେ କ୍ରୁସ୍‌ବିଦ୍ଧ ହୋଇଥିଲା, ନିର୍ଭୀକ ସତ୍ୟ କହି—କିନ୍ତୁ ଆଜି ? ସୁକାନ୍ତର ଯେପରି ମନେ ହେଲା ସେଇ କ୍ରସ୍‌ରେ ଓହଳି ରହିଛି ସନତ୍ ରକ୍ଷିତ୍‌ର କଂକାଳସାର ଶୀର୍ଣ୍ଣ ଶରୀର, ଆଉ ବିଂଶ ଶତକର ଭୈରବ-ମୂର୍ତ୍ତି ସଭ୍ୟ ଦୈତ୍ୟ ଯେପରି ହାତୁଡ଼ି ଧରି ତା' ଛାତିରେ କଣ୍ଟା ପିଟୁଛି ଟଂ ଟଂ ଟଂ....

ଠନ୍ ଠନ୍ ଠନ୍.... ନିଠେଇ ନିଠେଇ ଆଙ୍ଗୁଠିରେ ଗଣିଲା ସୁକାନ୍ତ ! ବାର ବାଜିଲା ।

ନୂପୁରର ସିଞ୍ଜନୀ ଯେପରି ଶୁଣିବାକୁ ପାଇଲା ସୁକାନ୍ତ । ରାତ୍ରିର ତମିସ୍ରା-ବନାନୀ ଛିନ୍ନ କରି ଗୋଟାଏ ଲାଇଟ୍ ପୋଷ୍ଟ ତଳେ ଟେନାଏ ଆଲୁଅର ଝଲକ୍ ପଡ଼ିଚି । ସେଇ ଆଲୋକ ବୃତ୍ତକୁ କେନ୍ଦ୍ର କରି ସିଲହୁଟ୍ ଛବି ପରି ଠିଆ ହୋଇ ରହିଛି କିଏ ଏଇ ରହସ୍ୟମୟୀ ନାରୀ ? ମୁହୂର୍ତ୍ତକରେ ସୁକାନ୍ତର ଶିଥିଳ ଧମନୀରେ ରକ୍ତ ସ୍ରୋତ କ୍ଷିପ୍ର ହୋଇ ଉଠିଲା ।

ନାରୀକୁ ତନ୍ନ ତନ୍ନ କରି ଚିହ୍ନିଚି ସୁକାନ୍ତ—ସେ ବୁଝେ ସେମାନଙ୍କର ମୂକ ଇଙ୍ଗିତ । ଏମାନଙ୍କୁ ସେ ଦେଖିଛି ଆର୍ମିରେ ଥିଲାବେଳେ । ସେଠି ସେମାନଙ୍କର ରୂପର ମଦ ଆଉନ୍‌ସ ଆଉନ୍‌ସ କରି ବିକ୍ରୀ ହୁଏ—ପାଉଣ୍ଡ ପାଉଣ୍ଡ କରି ନିଲାମ ହୁଏ ସେମାନଙ୍କର ମାଂସ ।

ନିଜର ଅଜାଣତରେ ଆଗେଇ ଗଲା ସୁକାନ୍ତ ।

ପୁଣି ସେଇ ନୂପୁରର ସିଞ୍ଜିନୀ—ଚାପା ହସର ହାଲୁକା ହିଲ୍ଲୋଳ ।

ଆହୁରି ନିକଟକୁ ଆସିଛି ସୁକାନ୍ତ—'ତୋ ନାଁ କ'ଣରେ' ?

'ମୀନା'

ହାସ୍ୟମୁଖୀ ମୀନା । ଶସ୍ତା ଛିଟକନାର ବ୍ଲାଉଜ ଭିତରୁ ପଦାକୁ ବାହାରି ଆସିଛି ରାତ୍ରୀଚାରିଣୀର ସୁଗୋଲ, କୃଷ୍ଣବାହୁ । ତୈଳ-ମସୃଣ ଗୁରୁ ଗଭା ବେଷ୍ଟନ କରି ରହିଛି ରାଶି ରାଶି ବକୁଳର ବୃନ୍ତ । ଶସ୍ତା ଅତରର କଟୁ ଗନ୍ଧରେ ଯେପରି ବାୟୁମଣ୍ଡଳ ଉତ୍‌ଥଳ ହୋଇ ଉଠିଛି ।

ଧୀରେ ଧୀରେ ଭିଜା ଅନ୍ଧାରରେ ମିଶିଗଲେ ମୀନା ଓ ସୁକାନ୍ତ, ସୁକାନ୍ତ ଓ ମୀନା । ମୀନାର ଶୀର୍ଣ୍ଣ ଗ୍ରୀବାରେ ବାହୁ ବେଷ୍ଟନ କରି ଚାଲିଛି ସୁକାନ୍ତ—ବକୁଳର ଭୁରୁ ଭୁରୁ ଗନ୍ଧରେ ଆତ୍ମହରା ହୋଇ । ମୀନାର ନିଟୋଳ, ମାଂସଳ ତନିମା ଯେପରି ନିମନ୍ତ୍ରଣ କରି ଆଣେ ମାନବର ଆଦିମ କ୍ଷୁଧା ।

ଏଇ କ୍ଷୁଦ୍ର ପ୍ରାନ୍ତର ଟପିଲେ ମୀନାର କୁଟୀର ।

ଶାନ୍ତିରେ ନିଶ୍ୱାସ ନେଲା ସୁକାନ୍ତ । ଗଣିକା ମୀନାର ଆଦର ତପ୍ତ ନୀଡ଼ରେ କି ସୁନ୍ଦର କଟିବ ଆଜିର ରାତ୍ରି ! ମାଂସଳ ବାହୁପାଶରେ ଘେରି ଘେରି ଆସିବ କି ଗଭୀର ମସୃଣ ନିଦ୍ରା... । ପ୍ରାୟ ସରି ଆସିଲା ଅକ୍ଟୋବର ପନ୍ଦର ତାରିଖ । ...କିନ୍ତୁ ବଞ୍ଚିଛି ଅର୍ଥହୀନ ସୁକାନ୍ତ ମହାନ୍ତି । ଆସନ୍ତା କାଲି ତା' ନିଜର ଯତ୍ନ ନବ । ସମୁଦାୟ ଦିନଟା ଯେପରି ନାଚିଗଲା ସୁକାନ୍ତ ଆଖି ଆଗରେ....ଅସ୍ପଷ୍ଟ ସ୍ୱରରେ କହିଲା ସୁକାନ୍ତ ।

''ବିଦାୟ—ଅକ୍ଟୋବର୍ ପନ୍ଦର—ବିଦାୟ''—ଦୀର୍ଘଜୀବୀ ହୁଅ ପ୍ରଦୀପ୍ତ ସାମନ୍ତରାୟ—ଦୀର୍ଘଜୀବୀ ହୁଅ ମିଷ୍ଟର ଓ ମିସେସ୍ ଦାସ୍—କିନ୍ତୁ ସନତ୍ ରକ୍ଷିତ ?...ଓଃ ଜାହାନାମକୁ ଯାଉ ସେ' ।

## ତିନି

ମୀନାର କୁଟୀରରେ ଧୀରେ ପ୍ରବେଶ କଲେ ଦୁଇଟି ଛାୟା ମୂର୍ତ୍ତି । ଠିକ୍ ଦୁଆରବନ୍ଧ ପାଖରେ ଜଣେ ମୂର୍ଚ୍ଛା ଗଲା ପରି ପଡ଼ି ରହିଛି ।

ଦ୍ରୁତ ପଦରେ ଦୌଡ଼ି ଯାଇ ମୀନା ଝୁଙ୍କି ପଡ଼ିଲା ସେଇ ଶୀତଳ ସ୍ଥାଣୁ ମୂର୍ତ୍ତି ଉପରେ—ଆର୍ତ୍ତ କଣ୍ଠରେ ଚିତ୍କାର କରି ଉଠିଲା—'ବାପା', ସେତେବେଳକୁ ମରିଯାଇଛି ମୀନାର ଆଦରର 'ବାପା' । କାନ୍ଦି କାନ୍ଦି ମୃତ ପିତାର ବକ୍ଷ ଉପରେ ବାରଂବାର ଲୋଟି ପଡୁଛି ବାସକସଜ୍ଜା ମୀନା । 'ବାପା ବାପା' ।

ସୁକାନ୍ତ ହତବାକ୍ ହୋଇ ଯାଇଥିଲା । ସସଂକୋଚ ପାଦ ବଢ଼ାଇ ବଢ଼ାଇ ଆଗକୁ ଝୁଙ୍କିପଡ଼ି ନିରୀକ୍ଷଣ କଲା ମୀନା ପିତାର ମୃତ ଦେହକୁ । କିଏ ଯେପରି ହାତୁଡ଼ି ଧରି ପିଟିଲା ସୁକାନ୍ତ ମୁଣ୍ଡରେ । କ'ଣ ଦେଖୁଛି ସେ ?

ମୀନାର ଆଦରର ପିତା—ମୃତ୍ୟୁଦୂତ ସନତ୍ ରକ୍ଷିତ । ହଠାତ୍ ଭାବପ୍ରବଣ ହୋଇ ଉଠିଲା ସୁକାନ୍ତ । ତା'ର ମନେହେଲା ଯେପରି ସେ' ଏଇ କ୍ରୁସ୍ ବିଦ୍ଧ ସନତ୍ ରକ୍ଷିତ୍‌ର ଶବ କାନ୍ଧରେ ପକାଇ ଚିତ୍କାର କରି ଦୌଡ଼ନ୍ତା ରାସ୍ତା ରାସ୍ତା, ଗଳି ଗଳି—ଦୌଡ଼ନ୍ତା ବିଂଶ ଶତକର ହୃତପିଣ୍ଡ ଉପରେ । କିନ୍ତୁ ପର ମୁହୂର୍ତ୍ତରେ ଯେପରି ସୁକାନ୍ତ ଭିତରେ ଚେଇଁ ଉଠିଲା ଶୀତଳ, ଚତୁର, ବୈଜ୍ଞାନିକ ଆଉଜଣେ ସୁକାନ୍ତ । ଯେପରି ଜଳଦ-ଗମ୍ଭୀର ସ୍ୱରରେ କହିଲା ଏଇ ନୂତନ ସୁକାନ୍ତ—

"ତମେ ଏତେ ଭାବପ୍ରବଣ କାହିଁକି ସୁକାନ୍ତ ? ମରିଯାଇଛି ଯକ୍ଷ୍ମା ପୀଡ଼ିତ ରକ୍ଷିତ୍—ଆଉ ତା' ଉପରେ ଲୋଟିପଡ଼ି କାନ୍ଦୁଛି ତା'ର କନ୍ୟା ମୀନା । ଏ ତ ପୃଥିବୀର ଅତି ସାଧାରଣ ସତ୍ୟ ! କିନ୍ତୁ ତମେ ତ ବଞ୍ଚିବାକୁ ଚାହଁ ସୁକାନ୍ତ ! —ତମେ ତ ଜୀବନ-ସମୁଦ୍ରର କୌଶଳୀ ନାବିକ ! —ଯାଅ ସୁକାନ୍ତ ଯାଅ.... ।"

ତା'ର ଅଜାଣତରେ ସୁକାନ୍ତ ଦୌଡ଼ିବାକୁ ଆରମ୍ଭ କଲା ଅଣନିଶ୍ୱାସ ହୋଇ । ଛିଣ୍ଡା ସୋଲ୍‌ର ସେଇ ଧପ୍-ଧପ୍-ଧପ୍... ଯେପରି ତା' ପଛେ ପଛେ ଛୁଟିଛି ମୃତ୍ୟୁଦୂତ ସନତ୍ ରକ୍ଷିତ୍‌ର ପ୍ରେତାତ୍ମା ।

ବେଗ ବଢ଼ାଇଲା ସୁକାନ୍ତ ।

କିନ୍ତୁ ପ୍ରେତାତ୍ମା ମଧ୍ୟ ଛୁଟିଛି ସେତିକି ଶୀଘ୍ର—ଉପହାସ କରୁଚି ରହି ରହି "ଭୀରୁ ତମେ ସୁକାନ୍ତ...ତମେ ପଳାୟନପନ୍ଥୀ...କାପୁରୁଷ..."

ଜୀବନକୁ ପଣ କରି ବିଦ୍ୟୁତ୍ ବେଗରେ ଛୁଟିଚି ସୁକାନ୍ତ ମହାନ୍ତି । ସାରା ବିଶ୍ୱକୁ ପଛକୁ ଠେଲି ସେ ଛୁଟିଛି ଆତ୍ମରକ୍ଷା ପାଇଁ । ଧପ୍-ଧପ୍-ଧପ୍....ତା'ରି ପାଦତଳେ ଯେପରି ଦଳି ହୋଇ ଯାଉଛି ସନତ୍ ରକ୍ଷିତ୍‌ର ଆତ୍ମା——ଗର୍ଭବତୀ ମୀନାର ରାଶି ରାଶି ବକୁଳ—'ପାମ୍‌ବିଚ୍' ରେଷ୍ଟୋରାଁର କାଗଜ ଫୁଲ ପରି ହାଲୁକା ହାଲୁକା ପାହାଚ....ଦଳି ହୋଇ ଯାଉଛି ଭିଜା ରାତ୍ରିର ଅନ୍ଧାର ଘେରା ସେଲ୍ର ତ୍ରିକାଳ ଦର୍ଶୀ, ମୂକ କ୍ରସ୍...କିନ୍ତୁ ଜୀବନ ପାଇଁ ଛୁଟିଚି କୌଶଳୀ-ନାବିକ ସୁକାନ୍ତ ମହାନ୍ତି ।

ଜୀବନ—ଆହୁରି ଜୀବନ ।



# ରୂପନାରାୟଣ ସାହା

କ୍ରିଷ୍ଟମାସ ଛୁଟି ।

ବନାରସ ରାସ୍ତାରେ ରାସ୍ତାରେ ଅସମ୍ଭବ ଲୋକର ଭୀଡ଼—ବନାରସ—ଭାରତ ଭୂମିର ଅସଂଖ୍ୟ ପୂଣ୍ୟ କାଙ୍ଗାଳ ଜନତାର ଚିର ଇପ୍‌ସିତ ବନାରସ । ରାସ୍ତାରେ ସିଆର ସିଆର ହୋଇ ଲୋକର ଧାଡ଼ି ଯେମିତି ଜମାଟ ବାନ୍ଧିଯାଇଛି ବରଫ ପରି । ଗୋଟାଏ ଲାଇଟ୍‌ପୋଷ୍ଟକୁ ଆଉଜି ରହି ଅନ୍ୟମନସ୍କ ଭାବରେ ଚାହିଁ ରହିଥିଲି ରାସ୍ତାକୁ । ଜମାଟ ବନ୍ଧା ବରଫର ସ୍ତୂପ ଯେମିତି ସୂର୍ଯ୍ୟର ପ୍ରଥମ କିରଣରେ ଧୀରେ ଧୀରେ ଗ୍ଳେସିଅର ପରି ପ୍ରସରି ଯାଇଛି, ତାର ପ୍ରବାହରେ ସଂକୀର୍ଣ୍ଣ ରାଜପଥର ପ୍ରତିଟି ବର୍ଗଇଞ୍ଚକୁ ଆଲିଙ୍ଗନ କରି କରି ।

କିନ୍ତୁ ଯେତ ବନାରସ ନୁହେଁ । ବନାରସ ବହୁବର୍ଣ୍ଣ ବିଭୂଷିତ ବହୁ ବିଚିତ୍ର । କାଶୀ ବିଶ୍ୱନାଥ ମନ୍ଦିରର ସ୍ୱର୍ଣ୍ଣଚୂଡ଼ା ଆସନ୍ନ ସଂଧ୍ୟାର ମଳିନ ଆଲୁଅରେ ଟକା ଟକା କରୁଛି । ମନ୍ଦିରର ରାସ୍ତା ନାତିପ୍ରଶସ୍ତ—ଠିକ୍ ସେଇ ରାସ୍ତାରୁ ମନ୍ଦିରର ଅନ୍ତ ଆଗରୁ ଜନ୍ମ ନେଇଛି ଆଉ ଏକ ସଂକୀର୍ଣ୍ଣ ଉପପଥ । ସଂକୀର୍ଣ୍ଣ ଅଥଚ ଦୀର୍ଘ । ଡାଲ୍‌ମଣ୍ଡି ସହସ୍ରାଧିକ ବାରାଙ୍ଗନାର ଆଶ୍ରୟଦାତ୍ରୀ ଡାଲ୍‌ମଣ୍ଡି । ଲକ୍ଷ ରୂପ ପିୟାସୀ ନାଗରିକ ପଦରଜ ସିକ୍ତ ତୀର୍ଥ ଡାଲ୍‌ମଣ୍ଡି । ନାୟିକାର ଆଖିର ବର୍ଣ୍ଣରେ ସେଠି ସଂଧ୍ୟାଦ୍ରଷ୍ଟା—ମଦନ ଅର୍ଚ୍ଚନାର କୋଳାହଳରେ ରାତ୍ରି ନିର୍ବାସିତ । କିନ୍ତୁ ସେଠି ବି ସଂଧ୍ୟା ଆସେ ଆତୁରା ନାୟିକାର ନିମନ୍ତ୍ରଣ ଭୀରୁ ଆଖିର ଇଙ୍ଗିତରେ—ରାତ୍ରି ଆସେ ରତିକ୍ଳାନ୍ତା କାମୁକୀ ନାରୀର ସ୍ୱେଦସିକ୍ତ ଆଖିର ପତାରେ ପତାରେ । ନାଁ·ଡ୍ୟାମ୍‌ଲଟ । ପ୍ରଶସ୍ତିର ସୀମା ଅଛି । ଡାଲ୍‌ମଣ୍ଡି—ଏ ହତଶ୍ରୀ ସଭ୍ୟତାର ଡଷ୍ଟବିନ୍ ଡାଲ୍‌ମଣ୍ଡି ।

ଛ'ଟା ବାଜିବାକୁ ଆଉ ଦଶମିନିଟ୍ ବାକୀ ।

ଅକାରଣର ଆନନ୍ଦ ସଂଧାନ କରିବାକୁ ଆହୁରି ଲୋକ ଆସୁଛନ୍ତି—ଅନେକ ଲୋକ । ବନାରସର ସଂକୀର୍ଣ୍ଣ ଫୁଟପାଥ୍ ଉପରେ ଲୋକର ଭୀଡ଼ ଉଛୁଳି ପଡୁଛି । କିନ୍ତୁ କାହିଁ ସନ୍ଧ୍ୟା ତ ହୁଏ ନାଁ ? ଅସମ୍ଭବ କୋଳାହଳ ଆଉ ଉଦ୍‌ଭାସିତ ବିଦ୍ୟୁତ୍ ଆଲୋକ ଭିତରେ ଅଙ୍କିତା ସନ୍ଧ୍ୟା ହୁଏତ ଏଇ ମୁହୂର୍ତ୍ତରେ ବିଳାପ କରୁଥିବ କାଶୀତଳ ବାହିନୀ ଗଙ୍ଗା ମାତାର ଉଦାର ବକ୍ଷ ଉପରେ, ଶୋଇ ଶୋଇ । ଗୋଧୂଳି ଓ ଗଙ୍ଗାଜୀ ଉଭୟେ ରହସ୍ୟମୟୀ ।

ବନାରସର ଧାଡ଼ି ଧାଡ଼ି ତୁଙ୍ଗ ସୌଧ ଡେଇଁ ମୋର ଆଖି ପହଁରିଗଲା ଗଙ୍ଗାକୂଳକୁ । ସେ କି ଦୃଶ୍ୟ ! ଗଙ୍ଗାର ବିପୁଳ ଦେହବ୍ୟାପୀ ଅସ୍ତ ସୂର୍ଯ୍ୟର ସୁନା କିରଣ ଝଲମଲ କରୁଛି । ଗଙ୍ଗାର ଗହମ ରଙ୍ଗର ପାଣି ଲାଲେ–ଲାଲ । ଆଜି କ'ଣ ମୁକ୍ତକେଶୀ ଦ୍ରୌପଦୀର ବେଣୀ ବନ୍ଧନ ? ବେଣୀ ବନ୍ଧନର ଲଗ୍ନ ଏଇ ଅତିକ୍ରମ କରିଗଲା । ସନ୍ଧ୍ୟାର ଦିଗହରା ପବନରେ ଗଙ୍ଗାର କୃଷ୍ଣନୀଳ ପାଣି ଅସଂଖ୍ୟ ଢେଉରେ ଭାଙ୍ଗି ପଡୁଛି । ପ୍ରତିଟି ଢେଉର ନୀଳଗାତ୍ରରେ ଅଳ୍ପ କିଛି ଧୂସର ଅନ୍ଧାର । ଗଙ୍ଗାମାତା ଯେମିତି ତନ୍ଦ୍ରାତୁରା ଶିଶୁ ସନ୍ଧ୍ୟାକୁ କୋଳରେ ନଚେଇ ନଚେଇ ଶୁଆଇ ପକାଉଛି ରାତ୍ରିର ଗଭୀର ନିଦ୍ରାରେ ।

ଏ ଦୃଶ୍ୟ ପ୍ରତିଦିନ ଯେପରି ନିତ୍ୟ ନୂତନ ହୋଇ ଅଭିନୀତ ହୁଏ ଏଇ ମହାନଗରୀର ଉପକଣ୍ଠରେ ।

ଅନେକ ଦିନ ତଳେ ମୁଁ ବନାରସରେ ଥିଲି । କିନ୍ତୁ ଆଜି ? ଯୌବନର ଅସ୍ତଲଗ୍ନକୁ ଅପେକ୍ଷା କରି କରି ମୁଁ ଯେମିତି କୈଶୋରର ସେଇ କୌତୂହଳୀ ଆଖି ନେଇ ଆଉଥରେ ଦେଖୁଥିଲି ଏ ଗଙ୍ଗା ଗୋଧୂଳିର କରୁଣ ଏକାକିକା ।

ତା'ପରେ ? ତା'ପରେ ଆଲୋକ । କୂଳର ଅସଂଖ୍ୟ ବିଦ୍ୟୁତ୍ ଆଲୋକର ପ୍ରତିବିମ୍ବ ପଡ଼ିଛି ଗଙ୍ଗା ବକ୍ଷରେ–କେଶରୀ ମଧ୍ୟମା ଗଙ୍ଗାର କଟି ଆବୃତ୍ତ କରିଛି ସୁବର୍ଣ୍ଣ ମେଖଳା । ଆଉ ଗଙ୍ଗାର ଦେହେ ଦେହେ ଗଭୀର ନୀଳ ରଙ୍ଗର ବୁଟିଦାର ବନାରସୀ ଶାଢ଼ୀ–ଛନ୍ଦ୍ରେ ଛନ୍ଦ୍ରେ ରୂପେଲୀ ଜରିର ତାରା ଫୁଟିଛି ।

ଚକ୍ରବାଳରେ ଏବେ ବି ଆଲୋକର ଅବଶିଷ୍ଟ ଥିବ । ଉଜ୍ଜ୍ୱଳ ଚକ୍ରବାଳର ପଟ୍ଟଭୂମିରେ ସିଲ୍‌ହୁଟ ଛବି ପରି ବହୁ ଯାତ୍ରୀବାହୀ ନୌକା ଯାତାୟାତ କରୁଥିବ ଏ କୂଳରୁ ସେକୂଳ । କଦବା କ୍ୱଚିତ କୌଣସି ନୌକାରେ ଆଲୋକ ଥିଲେ ଅଲୋକର ଅଳ୍ପକିଛି ରେଣୁ ବିଞ୍ଚି ହୋଇ ପଡ଼ିଥିବ ପାଣିରେ । ଆଉ ସହସ୍ର ଫଣା ବାସୁକୀ ପରି କେଉଁ ନୌକାର ପାଲ ପବନରେ ନଇଁ ଯାଇ ଉଠିଥିବ ଉପରକୁ ।

ଲାଇଟ ପୋଷ୍ଟଟାକୁ ତଥାପି ଆଉଜି ରହି ପୁରାତନ ଅନୁଭୂତିକୁ ରୋମନ୍ଥନ କରୁଥିଲି । ଅନୁଭୂତିର ସମୁଦ୍ର ମନ୍ଥନରେ ବହୁ ପୁରାତନ ସ୍ମୃତିର ବୁଦ୍‌ବୁଦ ଭାସି ଉଠିଛି ଉପରକୁ ।

ସେ ମୋ'ର ଶୈଶବର କଥା । ବାପା ବନାରସରେ ଥାଆନ୍ତି ମିଲିଟାରୀ ଡାକ୍ତର । ସେଦିନ ଏମିତି ସନ୍ଧ୍ୟା କ୍ଷୁଦ୍ର ପରିବାରଟିର ସମସ୍ତ ଲୋକ ନୌକାରେ ଫେରୁଥାଉଁ ଗଙ୍ଗା ଆରପାରିର ରାମନଗର ଦେଖିସାରି । ଏଇ, ହରିଶ୍ଚନ୍ଦ୍ର ଘାଟର ଚିତା ନିକଟ

ହୋଇ ଆସିଲାଣି । ଆଉ ଡାକେ ବାଟ—ଆଉ ତା'ପରେ ମାଝି ନୌକା ଉଠିବ ଦଶାଶ୍ୱମେଧ ଘାଟରେ । ପବନର ପ୍ରତିକୂଳରେ ମାଝି ଆହୁଲା ଟାଣୁଛି ଜୋରସେ । ତା'ର ହାତ ହୁଗୁଳା ହୋଇ ଆସିଲା । ନୌକାରେ ପରିବାରଟିର ମୃଦୁଗୁଞ୍ଜନ ମଧ୍ୟ ନୀରବ ହୋଇଗଲା । ଚାପା କଣ୍ଠରେ ମାଝି କ'ଣ କହିବାକୁ ଆରମ୍ଭ କରିଛି—ହିନ୍ଦି ଆଉ ମୈଥିଳୀ ଆଉ ଭୋଜପୁରୀ ମିଶି ମିଶି ଅଦ୍‌ଭୁତ ସେ' ମାଝିର ଭାଷା...ତଥାପି ଅଳ୍ପ ଅଳ୍ପ ବୁଝି ହେଉଛି ଅନ୍ଦାଜ କରି । କୂଳରେ ବସିଥିବା ଗୋଟାଏ ନିଶୁଆ ଲୋକକୁ ଦେଖା ଦେଇ ସେ' କହୁଛି—ସାମ୍ନେ ବୈଠାହୁଆ ଆଦ୍‌ମି ନାବ କେ ବାରେ ମେ ଆପ୍ କୋ କୁଛ ପୁଛେ ତୋ—ନୌକା ଭାସିଯାଉଛି ପାଖକୁ ପାଖକୁ—ଆହୁରି ଧୀର କଣ୍ଠରେ କହିଲା ସେ'—ରାମନଗର କା ନାମ୍ ମତ୍ ଲିଜିୟେ ବାବୁଜୀ—ହର୍ ଆଦମି କୋ ଏକ୍ ଏକ୍ ରୂପିୟା ଟ୍ୟାକ୍ସ ଲଗା ଯାଏଗା—କର୍ପୋରେସନକା ।

ହା—

ତା'ପରେ ଆହୁଲାରେ ପାଣି ରୋକି କହିଲା—ବତା ଦିଜିୟେ ସ୍ରିଫ୍ ଘୁମ୍‌ନେ ଗୟେଥେ...ପୁଣି ମାରିଲା ଆହୁଲା ଖାଞ୍ଚେ । ଆଉ ଠିକ୍ ତା' ପରେ ସେଇ ଲୋକଟା କୂଳରୁ ଠିଆ ହୋଇ ହାତ ଟେକି ଚିତ୍କାର କରୁଛି....ରୋକିଏ ରୋକିଏ ଜୀ...ଇ...ଇ....କହାଁ ଗଇଥି ନାଓ.... । ମୁଁ ସେତେବେଳକୁ ହିନ୍ଦି ଶିଖି ନେଇଥାଏ କିଛି କିଛି । ଚିଲ୍ଲେଇ ଉଠିଲି ରାମନଗର....ରାମନଗର ଗୟେଥେ ହାମଲୋଗ । ସର୍ବନାଶ ! କାହାରି ମୁହଁରେ ଭାଷା ନାହିଁ ।

କର୍ପୋରେସନ୍ ଅଦୃଶ୍ୟ ଇଙ୍ଗିତରେ ବାଧ୍ୟ ଶିଶୁପରି ନୌକା ଲାଗିଲା । ସେ' ଲୋକ ପାଖରେ ଜଣକୁ ଟଙ୍କାଏ ହିସାବରେ ବାପାଙ୍କୁ ଗଣି ଦବାକୁ ପଡ଼ିଲା ନଗଦ ଦଶ ଟଙ୍କା ।

ନୌକା କୂଳରୁ ମୁକୁଳି ଗଲା ଟ୍ୟାକ୍ସ ଦେଇସାରି ।

ସମସ୍ତେ ଚୁପଚାପ । ଯେମିତି ଯୁଦ୍ଧ ସମୟର କଳାବଜାର ପଇସାରେ ସେମାନଙ୍କୁ କିଣିବାକୁ ହେଲା ରାମନଗରର ଏଇ ଜଲିଟ୍ରିପ୍‌ଟାକୁ ।

ବିରକ୍ତି ଆଉ ରାଗର ଶ୍ରାବଣ ମେଘ ଘୋଡ଼ାଇ ରଖିଛି ସମସ୍ତ ପରିବାରର ଲୋକଙ୍କୁ—ପ୍ରତି ମୁହୂର୍ତ୍ତରେ ବର୍ଷିଯିବାର ଆଶଙ୍କା କରି ମୁଁ ଏତେ ଟିକେ ହୋଇଯାଇଛି ଏକାଥରକେ ।

ବାପା ଆରମ୍ଭ କରି ଦେଲେ, (ଟ୍ୟାକ୍ସଟା ବାଧିଛି, ତାଙ୍କୁ ସବୁଠୁଁ ବେଶି) ସବୁ ବଡ଼ ବଡ଼ ଲୋକଙ୍କ ସାଙ୍ଗରେ ତୁ ବି ଜଣେ ବଡ଼ ମଣିଷ ହୋଇଗଲୁଣି—ନାଇଁ । ମା'

ବାପାଙ୍କର ସହଧର୍ମିଣୀ ଅନୁଶୋଚନା କଲେ—ୟାଙ୍କୁ ପରା କୁଆଡ଼େ ସାଙ୍ଗରେ ନବନି... ।

ଦାଦା ଯୋଗ ଦେଲେ—ତୋ'ର କ'ଣ ଦରକାର ଥିଲା ଯେ ତୁ'... ସେ ବାପାଙ୍କର ଅନୁଜ ।

ମୁଁ ଜନ୍ମ ହୋଇ ବଡ଼ଭାଇଙ୍କ ପ୍ରତି ବାପା ମା'ଙ୍କର ଏକାନ୍ତ ସ୍ନେହର ଭାଗୀଦାର ହୋଇଥିବାରୁ ସେ ଇଂରାଜୀ ଭାଷାରେ ତାଙ୍କର ବିରକ୍ତି ପ୍ରକଟ କଲେ—ଇଡ଼ିୟଟ୍...

ସୁବିଧାବାଦୀ ସାନଭଉଣୀ ବି ଖନେଇ ଖନେଇ ତା' ଅହନ୍ତା ସାଧିଲା । ବାପା—ଭାଇର ଆଉ ପ୍ୟାଣ୍ଟ କିଣା ହେବ ନାହିଁ ।

ଶୀକାରୁ ଆଚାର ଚୋରୀ କରିବାକୁ ତା'ର ବହୁ କରୁଣ ମିନତିକୁ ବାରମ୍ବାର ଉପେକ୍ଷା କରି ମୋର ନିଜର ସୁବିଧା ଦେଖି ମୋର ଦୀର୍ଘ ହାତକୁ ବ୍ୟବହାର କରିଛି ।

ଶେଷକୁ କ୍ଷୀଣ କଣ୍ଠରେ ଟିପପ୍‌ଣୀ କଲା ଜେଜେମା—'

କ'ଣ ଆଜି ? ସବୁଦିନ ପରା ସେଇଟା ଡବଡ଼ବିଟାଏ—ଅନେକ ଥର ଅଫିମ ପାଇଁ ଖେଳ ଛାଡ଼ି ବଜାରକୁ ଯିବାକୁ ମୁଁ ତାର ଆଦେଶ ଅମାନ୍ୟ କରିଛି ।

ଉଙ୍ଗାର ଅନ୍ୟାନ୍ୟ ସଭ୍ୟମାନେ କିଛି ନ କହିଲେ ମଧ ମୁଁ ଠିକ୍ ବୁଝି ପାରୁଛି ସେମାନେ ଗୋଟାଏ ସ୍ଥାୟୀ ସରକାର ଗଠନ କରିବାକୁ ଭୋଟ୍ ଦେଇଛନ୍ତି ସବଳ ସପକ୍ଷରେ ।

ସେତେବେଳେ ମାତ୍ର ଦଶବର୍ଷର ଶିଶୁ ମୁଁ । ମୋର ସହଜାତ ବୁଦ୍ଧି ଉପରେ ତର୍କଶାସ୍ତ୍ର ତା'ର ମାୟାଜାଲ ବିସ୍ତାର କରିବାକୁ ଆହୁରି ଅନେକ ଡେରୀ ଅଛି । ସହିବାର ସୀମା ମୋର ଅତିକ୍ରମ କରିଗଲାଣି ଅନେକ ବେଳୁ—ଆଖିରେ ଆଖିଏ ଲୁହ ଟଳମଳ କରୁଛି । ହଠାତ୍ ମୋର ଏ ବିପନ୍ନ ମୁହୂର୍ତ୍ତରେ ମତେ ମଦତ୍ ଦେଉଛି କିଏ ? ପଛକୁ ଅନେଇଲି—ମାଷ୍ଟରଜୀ ମୋ ଆଡ଼କୁ ଅନେଇ ଧୀରେ ଧୀରେ ମୁଣ୍ଡ ହଲେଇ କହୁଛନ୍ତି—''ପରିଶାନ୍ ନ ହୋ ଅଶୋକ ୟେ' ତୋ'...''

ଆଉ କି ରହେ ? ତାଙ୍କ କୋଳରେ ମୁଣ୍ଡ ରଖି କଇଁ କଇଁ ହୋଇ କାନ୍ଦି ଉଠିଲି ମୁଁ । ଆଜି ବି ମନେ ଅଛି, ମୋ ପିଠି ଉପରେ ତାଙ୍କର ବଡ଼ ପାପୁଲିଟା ଅଶ୍ୱତ୍ଥ ପତ୍ର ପରି କମ୍ପି ଉଠୁଥାଏ । ଆଉ ରୁଦ୍ଧ କଣ୍ଠରେ ସେ' କହୁଥାଆନ୍ତି, ''ରୋଅମତ୍ ବେଟା.... ରୋ...ମତ—ଅଶୋକ,'' ଅ...ଶୋ...କ—ମାଷ୍ଟରଜୀଙ୍କ ଅଣ୍ଟାକୁ ଜାବୁଡ଼ିଧରି କୋହ ଉପରେ କୋହ ଉଠୁଛି ମୋର—ବାପା, ମା, ଦାଦା ପ୍ରଭୃତି କ'ଣ ଧୀରେ ଧୀରେ କଥାବାର୍ତ୍ତା କରୁଛନ୍ତି । ଗୁରୁଗମ୍ଭୀର ସ୍ୱରରେ ଆରମ୍ଭ କଲେ ମାଷ୍ଟରଜୀ ।

ସହାନୁଭୂତି–ଆର୍ଦ୍ର ବାଷ୍ପାକୁଳ କଣ୍ଠରେ କ୍ରୋଧର ଉତ୍ତେଜନା ମିଶି ଅଦ୍ଭୁତ ଶୁଣାଯାଉଛି ତାଙ୍କର କଣ୍ଠସ୍ୱର ।

ଆପଣମାନେ ଯେ' କ'ଣ କଲେ—କ'ଣ ଭୁଲ୍ କରିଛି ଅଶୋକ ? ସତ କହିଛି, ଏଇ ତ ?

ନୌକାରେ ସ୍ତବ୍ଧ ନୀରବତା । ତାଙ୍କର କଥାର ସୁଅ ତଥାପି ବନ୍ଦ ହଉନି–ମତେ କ୍ଷମା କରନ୍ତୁ ଆପଣମାନେ–ମାନୁଛି ଆପଣମାନେ ଅଶୋକର ଗୁରୁଜନ କିନ୍ତୁ ଆପଣମାନେ ତା'ର ଯେ କି କ୍ଷତି କରୁଛନ୍ତି ତା' ବୁଝିବାର କ୍ଷମତା ଆପଣମାନଙ୍କର ନାହିଁ ।

ମାଷ୍ଟରଜୀ ପାଞ୍ଚ ଟଙ୍କା ଦରମାରେ ମୋର ଟ୍ୟୁସନ୍‌ମାଷ୍ଟର । କିନ୍ତୁ ପାଞ୍ଚଟଙ୍କା ଦରମାର ସେଇ ଅକାଳ ପ୍ରୌଢ଼ ଚିନ୍ତାଜୀର୍ଣ୍ଣ, ଦରିଦ୍ର ଶିକ୍ଷକ ହଠାତ୍ ଯେପରି ମୁହୂର୍ତ୍ତକ ଭିତରେ ଉତ୍ତୀର୍ଣ୍ଣ ହୋଇଗଲା ସମଗ୍ର ପରିବାରର ମୁରବୀ ପଦକୁ । ମୁଁ ଅନେକ ଦିନ ଧରି ଜାଣିଛି ମୋର ଏଇ ମାଷ୍ଟରଜୀଙ୍କୁ । କିନ୍ତୁ ସେ ଦିନ ମୁଁ କେବଳ ଅବାକ୍ ହୋଇ ଚାହିଁ ରହିଥିଲି ତାଙ୍କୁ । ମୋର ବହୁ ପରିଚିତ ଏଇ ପରାନ୍ନଭୋଜୀ, ନିରୀହ, ଭୀରୁ ମାଷ୍ଟରଜୀଙ୍କର କଣ୍ଠରେ କୁଆଡ଼ୁ ଆସିଲା ଏ ଗାମ୍ଭୀର୍ଯ୍ୟ, ଏ ସାହସ, ଏ ଦୃଢ଼ତା ? ସମାଲୋଚନା କରିବାର ଏ ଦୁର୍ବାର ଆତ୍ମବିଶ୍ୱାସ, ଆଦେଶ ଦେବାର ଏ ଅପୂର୍ବ ଆସ୍ପର୍ଦ୍ଧା ପାଇଲା କୁଆଡ଼ୁ ଏଇ ଚିର ଅବହେଳିତ ଶୀର୍ଣ୍ଣ ଦେହ ଭିକ୍ଷୁକ ବ୍ରାହ୍ମଣ ? ଆଚାର୍ଯ୍ୟ ? ଗତାୟୁ ଗୋଧୂଳିର ସେଇ ଲଗ୍ନରେ ମୋର ସମସ୍ତ ଇନ୍ଦ୍ରିୟ ଆଚ୍ଛନ୍ନ କରି ମାଷ୍ଟରଜୀର ସମଗ୍ର ସତ୍ତା ଯେପରି ଅନୁଭବ କରିଲି ମୁଁ ପ୍ରଥମ ଥର ପାଇଁ । ସତ୍ୟର ପ୍ରଚଣ୍ଡ ଅସ୍ତିତ୍ୱ ଯେପରି ତାଙ୍କର ଦୁର୍ବଳ ବ୍ୟକ୍ତିତ୍ୱର ପ୍ରତିଟି ତନ୍ତ୍ରୀ ପ୍ରତିଟି ରେଣୁକୁ ଉଜ୍ଜୀବିତ କରି ନିଜକୁ ପ୍ରକାଶ କରୁଛି । ସେ' ସତ୍ୟ ।

ବାପା ନୀରବରେ ମତେ କୋଳକୁ ନେଲେ ।

ମାଷ୍ଟରଜୀ—ତାଙ୍କ ମୁହଁ ଆଜି ବି ସ୍ପଷ୍ଟ ମନେ ପଡୁଛି ମୋର । ଉଜ୍ଜ୍ୱଳ ଗୌରବର୍ଣ୍ଣ–ଈଷତ୍ ଦୀର୍ଘ ମୁହଁ ଉପରେ ଉନ୍ନତ ଶୁକଚଞ୍ଚୁ ନାସିକା–ବଡ଼ ବଡ଼ ଦୁଇଟା କାନ ଉପରେ ବିପର୍ଯ୍ୟସ୍ତ ବାଳ ଲମ୍ବି ଆସିଛି କେରା କେରା ହୋଇ । ସାମାନ୍ୟ ଭିତରକୁ ପଶି ପଶି ଯାଇଛି, ଦୁଇଟି ବୁଦ୍ଧିଦୀପ୍ତ ଜୀବନ୍ତ ଆଖି । ମାଷ୍ଟରଜୀ—ଏଇ ମୋର ମାଷ୍ଟରଜୀ ।

ସତେ ତ ! ମାଷ୍ଟରଜୀଙ୍କ ଘର ବନାରସ୍‌ରେ । ଏଇଠି ହଠାତ୍ ମନେ ହେଲା ଥରେ ଯାଇ ତାଙ୍କୁ ଦେଖି ଆସିବାକୁ । ଏତେଦିନ ପରେ ମତେ ଦେଖି ନିଶ୍ଚୟ ଖୁସିରେ ଅଧୀର ହୋଇ ଉଠିବେ ମାଷ୍ଟରଜୀ–ତାଙ୍କରି ପାଠର ମୂଳଦୁଆ ଉପରେ ମୁଁ ଅନେକ ଘର କରିଗଲିଣି । ମାଟ୍ରିକୁଲେଶନ; ଆଇ.ଏ.,ବି.ଏ.,ଏମ୍.ଏ.–ଆଉ ତା' ପରେ

ବି:ଏ: ଅକ୍‌ସନ । ସବୁ ଗୋଟି ଗୋଟି କରି କହିବି ତାଙ୍କୁ ମୋର କୃତଜ୍ଞତା ବି ପ୍ରକାଶ କରିବି ।

ଏଇ ରିକ୍‌ସା ! ଚଳାଓ କ୍ୟାଣ୍ଟନମେଣ୍ଟ ରୋଡ଼ ।

ତୁହାଇ ତୁହାଇ ଶୈଶବର ସ୍ମୃତି ଉତୁରି ପଡୁଛି ମନ ଭିତରେ । ମାଷ୍ଟରଜୀଙ୍କର ଦୁଇଟି ଶିଷ୍ୟ ଥିଲେ ମୁନ୍ନା ଆଉ ମନ୍ଟୁ । ମୁନ୍ନା ମୋର ଡାକ ନାଁ ଆଉ ମନ୍ଟୁ ମୋର ପୋଷା ପାତି ମାଙ୍କଡ଼ ଛୁଆ । ମୁଁ ମନ୍ଟୁକୁ ସାଙ୍ଗରେ ନ ଧରିଲେ ନ ଯାଏ ପାଠ ପଢ଼ିବାକୁ । ମନ୍ଟୁବି ମୋ ସହିତ ସିଲଟ ଧରି ପାଠ ପଢ଼ିବାକୁ ବସେ । କିନ୍ତୁ ତଫାତ୍ ଥାଏ ଅନେକ । ମୁଁ ଦାନ୍ତ ଦେଖାଇଲେ ମତେ ଡରାନ୍ତି ମାଷ୍ଟରଜୀ କିନ୍ତୁ ମନ୍ଟୁ ଦାନ୍ତ ଦେଖେଇଲେ ମାଷ୍ଟରଜୀ ଡରି ଅସ୍ଥିର । ଭାରି ଭଲ ଲାଗେ ଡରିଲେ ମାଷ୍ଟରଜୀ । ମନ୍ଟୁ ଦାନ୍ତ ଦେଖେଇ ଟିକିଏ ଖେଙ୍କି ଦେଲେ ଦିହାତ ପଛକୁ ଘୁଞ୍ଚିଯାଇ ମାଷ୍ଟରଜୀ କୁହନ୍ତି, "ସମ୍‌ହାଲ୍‌କେ ମୁନ୍ନା ସମ୍‌ହାଲ୍‌କେ—ଚେନ ପକଡ଼ତା ରହୋ ଅଗୋର୍ ଛୁଟ୍ ଯାଏତୋ... । ମୁଁ ହସି ହସି ଗଡ଼ିଯାଏ ହୋଃ ହୋଃ... । ନେହିଁ ମାଷ୍ଟରଜୀ ଓ ତୋ ମଜାକ୍ କର୍ ରହା ହେ— । ଓଃ ସେ ପୁଣି କି ଅବସ୍ଥା—ଲଣ୍ଠନର ଠିପି ଖୋଲି ମୁଁ ପାଣି ପୂରଉଛି, ମାଷ୍ଟରଜୀ ମତେ ରୋକୁ ରୋକୁ ମନ୍ଟୁ ତାଙ୍କର ପାନବଟା ଖୋଲି ଚାରି ପାଞ୍ଚ ଖଣ୍ଡ ପାନ ଏକା ସାଙ୍ଗରେ ଉଠାଇ ଧୀରେ ଧୀରେ ପାଟିରେ ପୂରାଇବାର ସୂଚନା ଦଉଛି । ଏ ବିପନ୍ନ ମୁହୂର୍ତ୍ତରେ ମାଷ୍ଟରଜୀ କିଛି କରି ନ ପାରି ଗମ୍ଭୀର ହୋଇ ସ୍ଥିର ଭାବରେ ବସି ରହି କପଟ ଭର୍ତ୍ସନା କରି କହନ୍ତି, "କର୍‌ତା ଯାଓ, ହାଁ ହାଁ ଯୋ ତୁମ୍‌ହାରା ଖୁସି କରତା ଯାଓ, ମେରା ବକ୍‌ଖତ୍ ଆଜାନେସେ ଆଚ୍ଛେତେରା ସମ୍‌ଝାଦୁଙ୍ଗା ।" ମନ୍ଟୁ ପାନ ଖାଏ ଆଉ ମୁନ୍ନା ପାଣି ପୂରାଏ ଆଉ ପାଣି ଛାଟି ତତଲା ଲାଣ୍ଠନ କାଚକୁ ଫଟେଇ ଦିଏ । ମାଷ୍ଟରଜୀ କୁହନ୍ତି, "ମୁନାମନ୍ଟୁ ଭାଇ ଭାଇ...ଓଃ ଦୁଇ ଦୁଇଟା ମାଙ୍କଡ଼କୁ ମଣିଷ କାହାଁକେ କରେ ମୁଁ । ପଢ଼ି ସାରିଲା ବେଳକୁ ପ୍ରାୟ ହାତରେ ପିଜୁଳି ଆମ୍ବ ନ ହେଲେ ହାଲୁଆ ଧରି ଆସି ପହଞ୍ଚି ଯିବେ ମାତାଜୀ । ସେ ମାଷ୍ଟର୍‌ଜୀଙ୍କର ମା' ଓ ଆମ ସମସ୍ତଙ୍କର ବି । ଆଉ ମାତାଜୀ ହାତର ହାଲୁଆ ଯେ ଥରେ ଖାଇଛି ସେ ଭୁଲିପାରିବ ନାହିଁ ଜିନ୍ଦଗୀଭର୍ ।

ରିକ୍‌ସା ଆସି ପହଞ୍ଚିଗଲାଣି କ୍ୟାଣ୍ଟେନ୍‌ମେଣ୍ଟ ଛକ ଉପରେ । ଆଉ ଅଳ୍ପ ବାଟ ଗଲେ ସଦର୍ ବଜାର । ତା'ପରେ ସଦର୍ ବଜାରର ଛୋଟ ପୋଷ୍ଟ ଅଫିସ୍ ସାମ୍ନାର ସେଇ ଗଳି...ତା'ପରେ...ତା'ପରେ ଆଉ ମନେ ନାହିଁ ଠିକ୍ କେଉଁଠି ମାଷ୍ଟରଜୀଙ୍କର ଦରିଦ୍ର କୁଟୀର ।

କେମିତି ଦେଖାହେବ ମାଷ୍ଟରଜୀଙ୍କ ସହିତ ! ଟ୍ରପିକାଲ୍‌ର ସୁଟ୍ ଆଉ ଟୁଟାଲ ଟାଇର ଏ ପୋଷାକରେ ସେ' କ'ଣ ଚିହ୍ନି ପାରିବେ ମତେ ! ନାଁ, ମୁଁ ତାଙ୍କ ଆଖିରେ ଆଜି ପର୍ଯ୍ୟନ୍ତ ମଧ ଥିବି ସେଇ ପୁରାତନ ଚପଳ ଶିଶୁ । ଏଇତ ସନ୍ଧ୍ୟା ହେଲା । ନାଲି କିରାସିନିର ସେଇ ମୁମୂର୍ଷୁ ଲଣ୍ଠନ ଆଲୁଅରେ ସେ ତାଙ୍କର ପିଣ୍ଡା ଉପରେ ବସି ରହିଥିବେ, ଆଉ ତାଙ୍କୁ ଘେରି ବସିଥିବେ ଅନେକ ପଠନରତ ଶିଶୁ । ମୁଁ ଚଟ୍‌କରି ଚିହ୍ନିନେବି ତାଙ୍କୁ ଆଉ ଯାଇ ତାଙ୍କର ପଦଧୂଳି ନେବି । ମଥାପାତି କୃତଜ୍ଞତା ସ୍ୱୀକାର କରିବି । ପରିଚୟ ପାଇ ସେ ନିଶ୍ଚୟ ମତେ କୁଣ୍ଢେଇ ପକେଇବେ ଗଦ୍ ଗଦ୍ ହୋଇ । ସ୍ନେହ ଦୁର୍ବଳ ଏଇ ଶିକ୍ଷକର ଦୁଇ ଆଖି ଭାସିଯିବ ଆନନ୍ଦର ଅଶ୍ରୁରେ । ରୁଦ୍ଧ କଣ୍ଠରେ ସେ ବୋଧହୁଏ କହିବେ, ''ତୋ ପରି ଜଣେ ଛାତ୍ର ମୁଁ ଆଜିଯାଏ ଦେଖିନି ନାହିଁ ଅଶୋକ । ଆଉ କ'ଣ ସେ' ଦିନ ଅଛି ? କେଇଜଣ ଛାତ୍ର ତା'ର ବାଲ୍ୟ ଗୁରୁ ଋଣ ସ୍ୱୀକାର କରିବାକୁ ଆସନ୍ତି ତୋ' ପରି ? ଜାତିର ଶ୍ରେଷ୍ଠ ସନ୍ତାନ କେଉଁଦିନ ଆସି ତା'ର ବାଲ୍ୟ ଗୁରୁର ପାଦତଳେ ମଥା ନତ କରି ତା'ର କୃତଜ୍ଞତା ଜଣାଇବ ସେଇ ଚିର-ଈପ୍‌ସିତ ଦିନକୁ ଅତିଷ୍ଠ ହୋଇ ଅପେକ୍ଷା କରି ରହିଥାଏ ପ୍ରତ୍ୟେକ ଶିକ୍ଷକ । ଏତିକି ତ ତା'ର ଗର୍ବ ! ଚିର ନିର୍ଯ୍ୟାତିତ ଶିକ୍ଷକ ଗୋଷ୍ଠୀର ଏତିକି ତ ଚରମ କ୍ଷତିପୂରଣ ।''

କିସ୍ ତରଫ୍ ଚଲୁଁ ବାବୁଜୀ ?

ରିକ୍‌ସାବାଲାର ପ୍ରଶ୍ନରେ ମୋର କଳ୍ପନା ଭାଙ୍ଗିଗଲା । ରିକ୍‌ସା ଆସି ପହଞ୍ଚି ଗଲାଣି ସଦର୍ ବଜାର୍ ପୋଷ୍ଟଅଫିସ୍ ପାଖରେ । ସାମ୍ନାରେ ଦୁଇଟା ରାସ୍ତା, ଦୁଇ ଆଡ଼କୁ ବାଙ୍କି ଯାଇଛି ।

ୟେହିଁ ରୋକୋ । ଓହ୍ଲେଇ ପଡ଼ିଲି ।

ପିଣ୍ଡା ଉପରେ କେଇଜଣ ଲୋକ ଗପ ଜମେଇଛନ୍ତି । ପାଖକୁ ଯାଇ ପଚାରିଲି, ''କହିପାରିବେ ରୂପ୍‌ନାରାୟଣଜୀ କେଉଁଠି ରହନ୍ତି ?''

ଲୋକଗୁଡ଼ିକ ମତେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ—ଜଣେ କିଏ ତା' ଭିତରୁ କହି ଉଠିଲା, ''ଗଲ୍‌ତ କିଏ ହୋଙ୍ଗେ ଆପ୍ ବାବୁଜୀ, ଏକ ରୂପନାରାୟଣ କି ସୋନେକା ଦୁକାନ୍ ହୋଗା ମେରେ ଖିଆଲ୍ ପର୍ ଗୋଧୂଳିଆ ପର୍ ।''

ମୋ'ର ପୋଷାକ ଦେଖି ସେମାନଙ୍କର ଏ ଧାରଣା ହବା ସ୍ୱାଭାବିକ୍ । ଆଉଥରେ ବୁଝେଇ କହିଲି, ''ମୁଁ ଅଳଙ୍କାର ପାଇଁ ଆସିନି—ଛୋଟ ଛୋଟ ପିଲାଙ୍କୁ ପଢ଼ାନ୍ତି—ଏଇଠି ଏକାଠି ଥାଆନ୍ତି ମାଷ୍ଟରଜୀ...ରୂପନାରାୟଣ... ।''

ମୋ' କଥା ଶୁଣି ସମସ୍ତେ ଏକା ସାଙ୍ଗରେ ମୁହଁ ଟେକି ଚାହିଁ ରହିଲେ ମୋ' ପାଖରେ ଠିଆ ହୋଇଥିବା ରିକ୍ସାବାଲା ମୁହଁକୁ । ରିକ୍ସାବାଲାଟା ବୋଧହୁଏ ମୋର ଗନ୍ତବ୍ୟ ପଥର ଠିକଣା ସନ୍ଧାନ କରିବାକୁ ଆସି ଠିଆ ହୋଇ ରହିଥିଲା ମୋ' ପାଖରେ । ମୁଁ ବି ଚାହିଁଲି ରିକ୍ସାବାଲାକୁ । ଯେ କ'ଣ ! ଏ ରିକ୍ସାବାଲାଟା କାହିଁକି ମତେ ଚାହିଁ ରହିଛି ଏମିତି ! ତା'ର କୋଟରଗତ ଦୁଇଟା ଆଖି ମେଲି ସେ' ମୋତେ ଚାହିଁ ରହିଛି ଅପଲକ; ଯେମିତି ତା'ର ସେଇ ପରଳ ଲଗା ପେଚୁଆ ପେଚୁଆ ଆଖିର ଏକ୍ସରେ ଦେଇ ସେ' ମୋର ଅଭ୍ୟନ୍ତରଟାକୁ ଦେଖିବାକୁ ଚେଷ୍ଟା କରୁଛି । ଆଖିରେ ତା'ର ସୁଦୂରର ଦୃଷ୍ଟି—ଆଖି କଣର ଚମଡ଼ା ଗୁଡ଼ାକ କୁଞ୍ଚି କୁଞ୍ଚି ହୋଇ ଯାଇଛି ଅସଂଖ୍ୟ ରେଖା ସୃଷ୍ଟି କରି । ସେ ଯେପରି କ'ଣ କହିବ କହିବ ହଉଚି ଓ ସେଇ ଉତ୍ତେଜନାରେ ତା'ର କଳା କଳା ଓଠ କମ୍ପି ଉଠୁଛି ବାରମ୍ବାର । କିଛି ସମୟ ପରେ ସେ କହିଲା—ସେ ଯେମିତି କହୁଛି ବହୁ ଯୁଗର ତନ୍ଦ୍ରାଛନ୍ନ ସ୍ୱପ୍ନର କୁହୁଡ଼ି କାଟି, "ତୁମ୍ ଅଶୋକ୍ ହୋ ନାଁ—ଇତ୍‌ନି ବଡ଼ି ହୋ ଗୈ ତୁମ୍ ?"

ମୋର ମେରୁଦଣ୍ଡ ଦେଇ ବିଦ୍ୟୁତ୍‌ର ଶୀତ୍‌କାର ପହଁରିଗଲା ମୁହୂର୍ତ୍ତକ ଭିତରେ । କିଏ ଯେ ଠିକ୍ ତ ସେଇ ! ଦିହ, ସେହି ମୁହଁ, ସେଇକଥା ମୋର ସାମ୍ନାରେ, ସେଇ ବିପର୍ଯ୍ୟସ୍ତ, ଜରାକ୍ଳାନ୍ତ, ଦୀନ ରିକ୍ସାବାଲାର ମଳିନ ପ୍ରତିକୃତି ଭିତରୁ ଧୀରେ ଧୀରେ ଉଇଁ ଆସିଲା ମୋ'ର ମାଷ୍ଟର୍‌ଜୀର ସେଦିନର ଚେହେରା ।

ମାଷ୍ଟରଜୀ ! ସେ' ବିସ୍ମୟ ବର୍ଣ୍ଣନାର ଅତୀତ ।

ନଇଁପଡ଼ି ପଦଧୂଳି ନେବାକୁ ହାତ ବଢ଼ାଇଲି । ମୁହୂର୍ତ୍ତକରେ କେଇହାତ ପଛକୁ ଘୁଞ୍ଚିଯାଇ ମୋର ଦୁଇ ବାହାଧରି ଉପରକୁ ଟୋକି ନେଇ କହିଲେ—

ଦୀର୍ଘଜୀବୀ ହୁଅତୁ ଅଶୋକ—ମନେଥିଲା ତୋ'ର ଏଇ ବୁଢ଼ା ରୂପନାରାୟଣର କଥା ?

ଆଉ କହିପାରିଲେ ନାହିଁ ସେ, ଆନନ୍ଦର ଅଶ୍ରୁ ତାଙ୍କର କଣ୍ଠ ରୁଦ୍ଧ କରିଦେଲା । ସେ କି ଦୃଶ୍ୟ ! ଦୁହେଁ ଦୁହିଁଙ୍କୁ ଚାହିଁ ରହିଛୁ କେବଳ । ସେ'ଦିନ ମୁଁ ଅନୁଭବ କଲି ମନୁଷ୍ୟ କଥା କହିବା ଅପେକ୍ଷା ନୀରବରେ ତା'ଠାରୁ ପ୍ରକାଶ କରିପାରେ ଯଥେଷ୍ଟ ବେଶି !

ତା' ପରେ ପରେ ମାଷ୍ଟର୍‌ଜୀଙ୍କର ଆନନ୍ଦ ଦେଖେ କିଏ ? ତାଙ୍କର କ୍ଷୁଦ୍ର ପରିଚିତ ମହଲ ଭିତରେ ସେ ମତେ ଘୂରେଇ ଫେରେଇ ବୁଲାଇ ଆଣିଥିବେ ତିନିଥର । କଥା କଥାକେ ପ୍ରଶଂସା, ଗର୍ବ ଆଉ ଆନନ୍ଦରେ ସେ ଅସ୍ଥିର । ସେ ମୁହୂର୍ତ୍ତରେ ତାଙ୍କୁ ଯେ କେହି ଦେଖିଥିଲେ କହି ଥାଆନ୍ତା ସେ ପୃଥିବୀର ସବୁଠାରୁ ସୁଖୀ ମନୁଷ୍ୟ ।

ଦୁଇଜଣଯାକ ଫେରି ଆସିଲୁ ତାଙ୍କର ସେଇ ପୁରୁଣା ପିଣ୍ଡା ଉପରକୁ । କ'ଣ ପଚାରିବି ତାଙ୍କୁ ! ପଚାରିବି ସେ' କାହିଁକି ଆଜି ଏ ଅବସ୍ଥାରେ ! ମୋର ଠିକ୍ କ'ଣ ପଚାରିବା ଉଚିତ୍ ସେଇ କଥା ଭାବି ଭାବି ମୂକ ହୋଇ ବସି ରହିଛି । ମତେ ଏ ଅପ୍ରୀତିକର ଅବସ୍ଥାରୁ ରକ୍ଷାକରି ଦେଇ ନିଜଛାଏଁ ଆରମ୍ଭ କରି ଦେଲେ ମାଷ୍ଟର୍‌ଜୀ... ।

କିଛିଦିନ ତଳେ ସାରା ଉତ୍ତର ଭାରତ ବ୍ୟାପୀ ଯେଉଁ ନିମ୍ନ ପ୍ରାଥମିକ ଶିକ୍ଷକ ଧର୍ମଘଟ ହୋଇଥିଲା ସେଥିରେ ସେ ଥିଲେ ପୁରୋଧା । କିଛି ସମୟ ତଳର ଆନନ୍ଦ ଉଦ୍‌ବେଳିତ ଏଇ ଲୋକଟା ଯେମିତି ଭାଙ୍ଗି ପଡ଼ିଛି ହଠାତ୍ । କରୁଣ ସ୍ୱରରେ କହିଲେ, "ଆମର ଧର୍ମଘଟ କରି ସରକାର ଗଠନ କରିବାର ଇଚ୍ଛା ନ ଥିଲା ଅଶୋକ—ଏ ସମୟରେ ୧୩ ଟଙ୍କା ଦରମାରେ ଚଳୁଁ କେମିତି ? ଆଉ ସେଇଥିରେ ହିଁ ସେ, ଜେଲ୍ ଚାଲିଗଲେ । ରାଷ୍ଟ୍ର ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିବା ଅଭିଯୋଗରେ । ବର୍ଷକ ପରେ ଜେଲ୍‌ରୁ ଫେରି ଦେଖନ୍ତି ତାଙ୍କର ସ୍ତ୍ରୀ ମରିଯାଇଛି । "ଗୋଟାଏ ବଡ଼ ସମାଧାନ ହେଇଯାଇଛି ଯାହାହେଉ" କହିଲେ ମାଷ୍ଟର୍‌ଜୀ । "ପରିବାରର ବୋଝ ଲଘୁ ହୋଇଯାଇଛି ଅନେକ । ଆଉ ତା'ଛଡ଼ା ତା'ର ଯାହା ଦିଖଣ୍ଡ ଅଳଙ୍କାର ଥିଲା ସେଥିରେ ଆଉ କିଛି କରଜ ଟଙ୍କା ମିଶେଇ ଖଣ୍ଡେ ରିକ୍‌ସା ପାଇଁ ମୂଳଧନ ହୋଇଗଲା । ପ୍ରାଇଭେଟ୍ ଟ୍ୟୁସନ୍‌ରୁ ଟଙ୍କାଏ ଦୁଇଟଙ୍କା ପାଇ କ'ଣ ବଞ୍ଚି ହୁଅନ୍ତା ଅଶୋକ ?"

ସେ, ଆଖିରୁ ଲୁହ ପୋଛିଲେ । ହଠାତ୍ ଗୋଟାଏ ଝାଙ୍କ କାଶ ଆସିଲା । ସେ କାଶରେ ଯେମିତି ଦୋହଲି ଗଲା ମାଷ୍ଟର୍‌ଜୀର ଜୀର୍ଣ୍ଣ କଙ୍କାଳଗୁଡ଼ାକ । କେତେବେଳେକେ କହିଲେ ମାଷ୍ଟରଜୀ, "ଆଜିକାଲି ଆଉ ଦେହ ଭଲ ରହୁନାହିଁ । ବଳେଇ ପକେଇବାରୁ ଡାକ୍ତରଖାନାକୁ ଦେଖେଇବାକୁ ଯାଇଥିଲି । କ'ଣ ଦେଖିଲେ କେଜାଣି କହିଲେ, "ପ୍ଳୁରୁସି ହେଇଛି ଚିକିତ୍ସା କରିବାକୁ ଅନେକ ପଇସା ଲାଗିବ ।"

ପ୍ଳୁରେସି ! ମୁଁ ଚମ୍‌କି ପଡ଼ିଲି ।

"ହଁ, କେତେ ତ ରୋଗ ବାହାରିଲାଣି, ହେଲେ ଟିକିଏ କାଶ ପାଇଁ ଆଉ ଏତେ ଟଙ୍କା ଖର୍ଚ୍ଚ କରି ହଉଛି କୁଆଡୁ ?"

ସେଇ ବାଟ ଦେଇ ଗୋଟିଏ ସୁଦୃଶ୍ୟ ଦମ୍ପତି ଯାଉଥିଲେ । ବୋଧହୁଏ ସାନ୍ଧ୍ୟ ଭ୍ରମଣ ସାରି ଫେରୁଥିଲେ ସେମାନେ । ଆମ ସାମ୍ନାର ରିକ୍‌ସାଟାକୁ ଦେଖି ଅଟକି ଗଲେ ଟିକିଏ ।

ହଠାତ୍ କଥାର ଖିଅ ଛିଣ୍ଡେଇ ଦେଇ ମାଷ୍ଟର୍‌ଜୀ ଚିତ୍କାର କରି ଡାକି ଉଠିଲେ, "ରାମସରନ୍—ଏ ରାମ୍ ସରନ୍—ସବାରି ଲାଗି ହେ ତୁରନ୍ତ ଆନା ତୁରନ୍ତ । ସିଆଡୁ

କିଏ ପାଟି କରି ଉଠିଲା, "ଆଇ—ଇ—ଇ ବାବୁଜୀ ଆଇ ।" ଗୋଟିଏ ବାର ଚଉଦ ବର୍ଷର ବାଳକ ଚିଲ୍ଲ ପରି ଦଉଡ଼ି ଆସି ରିକ୍ସାରେ ବସେଇ ନେଇ ଚାଲିଗଲା ସେମାନଙ୍କୁ । ମାଷ୍ଟରଜୀ ରିକ୍ସା ଆଡ଼କୁ ଚାହିଁ ଚାହିଁ ଅବ୍‌ଶୋଷର ଦୀର୍ଘ ନିଶ୍ୱାସ ପକେଇ କହିଲେ କେବଳ,- "ବଡ଼ ପିଲାବେଳୁ ତା' ଉପରେ ଅନେକ ଦାୟିତ୍ୱ ପଡ଼ିଗଲା—ରୂପା ଆଜି ବଞ୍ଚିଥିଲେ..." ।

ପୁଣି ଥରେ ଆଖିରୁ ଲୁହ ପୋଛିଲେ ସେ । ସଦର୍ ବଜାରର ଆକାଶ ଉପରେ ଅନ୍ଧାର ଜମି ଜମି ଆସିଛି ।

ମାଷ୍ଟର୍‌ଜୀର କ୍ଷୁଦ୍ର ଇତିହାସ ମଧ୍ୟ ସରିଯାଇଛି । କାହାଣୀ କହିବାରେ ଅସାଧାରଣ ଦକ୍ଷତା ଥିଲା ତାଙ୍କର । ତାଙ୍କ କାହାଣୀର ପ୍ରତ୍ୟେକଟି ଚରିତ୍ରକୁ ସେ ଆଖି ଆଗରେ ଜୀବନ୍ତ କରି ତୋଳି ଧରି ପାରୁଥିଲେ । ତାଙ୍କ କାହାଣୀ ସ୍ୱର୍ଗର ପରୀ । ଆଣ୍ଡ୍ରୋସିଲିସ୍‌ର ସିଂହ, ସୁନୀତି ସନ୍ତାନ ଧ୍ରୁବ ସବୁ ସତ୍ୟ—ଆଉ ଏବେ ବି ଆମରି ସାଙ୍ଗରେ ବଞ୍ଚିଛନ୍ତି ରାଜପୁତ୍ ବୀର ପ୍ରତାପ ସିଂହ । ଚୌହାନ୍‌ର ପୃଥ୍ୱୀରାଜ ଆଉ ପଳାତକ ଶିଖଣ୍ଡୀନାଇ ଜୟଦ୍ରଥ । ଯେ' ସବୁ ସେବକାର କାହାଣୀ । କିନ୍ତୁ ମୁଁ କ'ଣ ଜାଣିଥିଲି ଏଇ କାହାଣୀ ଦକ୍ଷ ଦରିଦ୍ରର ମଧ୍ୟ ଗୋଟାଏ ଆମ୍ କାହାଣୀ ଅଛି ଯାହା ପରୀ ରାଜ୍ୟର କଳ୍ପନାକୁ ମଧ୍ୟ ପରାସ୍ତ କରେ—ଅଥଚ ଇତିହାସ ଠାରୁ ଆହୁରି ସତ୍ୟ । ହଠାତ୍ ମନେ ହେଲା ମୋର ଏବେ ବି ଯେମିତି ପାଠ ପଢ଼ା ଅସମାପ୍ତ ରହିଯାଇଛି ଆଉ ସେ ଦିନର ସେଇ କୌତୂହଳୀ ଶିଶୁ ପରି ଆଜି ବି ମୁଁ ମାଷ୍ଟର୍‌ଜୀଙ୍କ ପାଖରେ ବସି ବସି ବହି ପଢୁଛି । ଏଇ ବିଶ୍ୱର ବିରାଟ ବହି ଉପରେ ବହୁ ବିଚିତ୍ର ମନୁଷ୍ୟ ନାୟକ ନାୟିକାର ହୃତ୍‌ପଦ୍ମର ସ୍ପନ୍ଦନ ଶୁଣୁଛି ।

କର୍ପୋରେସନ୍‌ର କର୍ମଚାରୀ ଲାଇଟ୍‌ପୋଷ୍ଟ ଦେହରେ ଶିଡ଼ି ଆଉଜେଇ ଉପରକୁ ଉଠୁଛି ଆଲୁଅ ଜାଳିବାକୁ ।

ମାଷ୍ଟରଜୀ କହିଲେ, "ଭାରୀ ଖୁସି ଲାଗିଲା ତତେ ଏତେ ଦିନ ପରେ ଦେଖି ଅଶୋକ୍ । କିନ୍ତୁ ଏ ଭଙ୍ଗା ଘରେ ତତେ ରହିବାକୁ ମୁଁ କହିବି କେମିତି କହ ? ଗୋଟାଏ ରାତି ପାଇଁ ମଧ୍ୟ ତତେ ମୁଁ ଅତିଥି କରି ପାରୁ ନାହିଁ । ସେ ମୋର ଦୁର୍ଭାଗ୍ୟ ।"

ଉତ୍ତର ଦବାର କିଛି ନଥିଲା ମୋର । ଉଠିବାକୁ ବସିଛି ।

ମାଷ୍ଟରଜୀ ସାମ୍ନାରେ ଗୋଟିଏ ବୃଦ୍ଧାକୁ ହାତ ବଢ଼େଇ ଦେଖେଇ ଦେଲେ ମତେ । ପିଠି ଆଉ ଆଣ୍ଠୁ ଲାଗି ଗଲାଣି । ମୁଣ୍ଡରେ କେଇ କେରା ବାଳ ଝୋଟ ପରି ଫର୍ ଫର୍ ଉଡୁଛି । ସାମ୍ନାରେ ଛୋଟ ଛୋଟ ଦୁଇଟି କିରାସିନି ଟିଣ । ଦେଖିବା ଓ ଶୁଣିବାର ସମସ୍ତ ଶକ୍ତି ବି ଲୋପ ହୋଇ ଆସିଲାଣି ପ୍ରାୟ । ଜଣ ଜଣ କରି ରିକ୍ସାବାଲା

ଆସୁଛନ୍ତି । ହାତରେ ପଇସା ଧରି ଦୀପ ଆଲୁଅରେ ଖୁବ୍ ନିରୀକ୍ଷଣ କରି କିଛି ସମୟ ଦେଖି ସାରିଲା ପରେ ଥରିଲା ହାତରେ ପଳା ପଳା କରି କିରାସିନି ମାପି ଦେଉଛି ସେ' । ବୟସ ନିଶ୍ଚୟ ୭୦ ଉପରେ ।

ପଚାରିଲା ଆଖିରେ ମାଷ୍ଟରଜୀଙ୍କୁ ଚାହିଁଲି ।

ଅନ୍ୟମନସ୍କ ହୋଇ ସେ ଖାଲି କହିଲେ "ମାତାଜୀ" ।

ମାତାଜୀ !—ପାଖକୁ ଯାଇ ପାଦଧୂଳି ନେଲି । ଏଇ ମାତାଜୀ ଦିନେ ହାଲୁଆ କରୁଥିଲା । ସେ ହାଲୁଆ ଆଉ ମୁଁ ଖାଇନାହିଁ ଆଜିଯାଏ । ମାତାଜୀ ପାଖରେ ବସି ସେଦିନ ହାଲୁଆର ଗନ୍ଧ ମୁଁ ଆଘ୍ରାଣ କରିପାରିଲି ଯେମିତି । ସାମାନ୍ୟ ଉଚ୍ଚ କଣ୍ଠରେ କହିଲି, "ମେ ଅଶୋକ—ଅଶୋକ ହୁଁ ମାତାଜୀ ।" ସେ ଚିହ୍ନି ପାରିଲେ ନାହିଁ— ଚିହ୍ନିବାକୁ ଚେଷ୍ଟା ମଧ କଲେ ନାହିଁ । ଚିହ୍ନି ତାଙ୍କର ଲାଭ ନାହିଁ ଏତେ ଟିକିଏ । ପ୍ରଣାମ କଲା ବେଳେ କିରାସିନି ମାପୁ ମାପୁ ଟିକିଏ ଚିଡ଼ି ଚିଡ଼ି ହୋଇ ଉଠିଲେ, ଅସ୍ପଷ୍ଟ ସ୍ୱରରେ, "ଜୀତେ ରହୋ ବେଟା—ଜୀତେ ରହୋ ।" ମତେ ସେ ଚାହିଁ ମଧ ନାହାନ୍ତି— କଥା କହିବାର ତିଳେମାତ୍ର ସ୍ପୃହା ନାହିଁ ତାଙ୍କର । ଉଠି ଆସିଲି । ମାଷ୍ଟର୍‌ଜୀଙ୍କୁ ପଚାରିଲି, "ୟେ କ୍ୟା ହୋଗୟା ହେ ମାତାଜୀ କୋ ?"

ମାଷ୍ଟର୍‌ଜୀ ତାଙ୍କର ଡାହାଣ ହାତ ବିଷି ଆଙ୍ଗୁଠିଟାକୁ କାନ ପାଖରେ ଦୁଇ ତିନି ଥର ବୃତ୍ତକାରରେ ବୁଲେଇ ନେଇ କହିଲେ, "କୈ ସାଲ୍ ହୁଆ ଦିମାକ୍ ବିଗ୍‌ଡ଼ ଗୈ... ।" ମନେ ପଡୁଛି । ମାଷ୍ଟର୍‌ଜୀ କେବେ କାହାକୁ ନାଲି ଆଖି ଦେଖେଇ ଟିକିଏ କିଛି କହିଲେ ସେ ସିଲ୍‌ଟ ଫିଙ୍ଗିଦେଇ ଦୌଡ଼ି ଯାଉଥିଲା ଏଇ ମାତାଜୀ କୋଳକୁ । ଆଉ ଠିକ୍ ତା' ପରେ ପରେ ଆଜିର ଏଇ ଲୋଳିତ ଚର୍ମ । ଶିଥିଳ ବୃଦ୍ଧା ସେଦିନ ଦୃପ୍ତ ପଦକ୍ଷେପରେ ପଦାକୁ ବାହାରି ଆସି କହୁଥିଲା ମାଷ୍ଟର୍‌ଜୀକୁ, "କ୍ୟା ତୁମ୍‌ହାରା ଦିମାକ୍ ତୋ' ବିଗଡ୍ ନେହିଁ ଗିୟା ରୂପ୍‌ନାରାୟଣ—ବଚୋକୋ ଦାଣ୍ଡ୍‌ତା ହେ ତୁମ୍ ?"

ଏଇ ମାଷ୍ଟର୍‌ଜୀ ସଂକୁଚିତ ହୋଇ ଯାଉଥିଲା ସେ' କଥାରେ ।

ଆଜି ପୁଣି ସେଇ ମାତାଜୀର ଦିମାକ୍ ବିଗିଡ଼ି ଯାଇଛି ।

ସବୁ—ରୂପନାରାୟଣର ସୁବର୍ଣ୍ଣ ସଂସାରର ସବୁ ଯେମିତି ବିଗିଡ଼ି ଯାଇଛି ବିଲ୍‌କୁଲ୍ ।

ହାୟ ରୂପନାରାୟଣ !...

ପ୍ରଣାମ କରି ବିଦାୟ ନେଇ ହୋଟେଲ୍‌କୁ ଫେରିଲି । ଆସିଲା ବେଳେ ମାଷ୍ଟର୍‌ଜୀ ହାତରେ ଖଣ୍ଡେ କାଗଜ ବଢ଼େଇ ଦେଇ କହିଲେ, "ୟେ ରହା ହାମାରା ୟାଁହା କା ପତ୍ତା—କଭି କଭି ୟାଦ୍ ଆ ଯାଏ ତୋ ଚିଠି ଲିଖ୍‌ଖୋ ହାଁ.... ।"

କ୍ୟାଣ୍ଟନ୍‌ମେଣ୍ଟ୍ ରୋଡ୍‌ର ମସୃଣ ମ୍ୟାକାଡ଼ାମାଇଜ୍‌ଡ୍ ରାସ୍ତା ଉପରେ ଧୀରେ ଧୀରେ ପାଦ ଗଣି ଗଣି ଚାଲୁଛି ମୁଁ । ତୁହାଇ ତୁହାଇ ମନେ ପଡୁଛି ମାଷ୍ଟର୍‌ଜୀଙ୍କ କଥା । ଏଇ ଅଳ୍ପ କିଛି ସମୟ ତଳେ ଯେଉଁ ନାଟିକା ମୁଁ ଦେଖି ଆସିଲି ସେ କ'ଣ ସତ୍ୟ ! ସତରେ କ'ଣ ସେଇ ଜରାଜୀର୍ଣ୍ଣ, ଦରିଦ୍ର, ରିକ୍‌ସାବାଲାଟା ବିଦ୍ୟାଦାତା ରୂପ୍‌ନାରାୟଣ ! ଇଚ୍ଛା କରି ମୁଁ ବିଶ୍ୱାସ କରିବାକୁ ଚାହେଁ ନାଁ । କିନ୍ତୁ ମାଷ୍ଟରଜୀ ଯଦି ଜାଣିଥାନ୍ତେ ଯେ ମୁଁ ବର୍ତ୍ତମାନ ଭାରତ ସରକାରଙ୍କର ଶିକ୍ଷା ସେକ୍ରେଟେରୀ...ଯଦି ଜାଣିଥାନ୍ତେ ଯେ ମୋରି ନିର୍ଦ୍ଦେଶରେ ତାଙ୍କ ପରି ଲକ୍ଷ ଲକ୍ଷ ଶିକ୍ଷକଙ୍କର ଭାଗ୍ୟ ନିୟନ୍ତ୍ରିତ ହଉଛି...କ'ଣ ଭାବି ଥାଆନ୍ତେ ସେ ? ହୁଏ ତ ଘୃଣା କରିଥାଆନ୍ତେ ମତେ—ଭଲ ହେଇଛି ତା' ଜାଣିବାର ସୁବିଧା ପାଇ ନାହାନ୍ତି ସେ.... ଜଣେ ହତ୍ୟାକାରୀର ଭୀରୁ ସଂକୁଚିତ ବିବେକ ନେଇ ଚାଲିଛି ମୁଁ ।

କିଏ ! ମୁଁ ଚମକି ପଡ଼ିଲି । ହଠାତ୍ ମୋର ମନେ ହେଲା ମୋର କାନ ପାଖରେ କିଏ ଜଣେ ଫିସ୍ ଫିସ୍ କରି କହୁଛି, ''ଏ ଦୋଷ ତୋର ଏକା ନୁହଁରେ ଅଶୋକ—ଏ ମୂର୍ଖତା ଏଇ ସମଗ୍ର ଅନ୍ଧ ଜାତିର ।''

କିଏ ? ମାଷ୍ଟର୍‌ଜୀ ?

ହଁ, ମୁଁ ରୂପ୍‌ନାରାୟଣ.... ଏ ଦେଶର ଆମେ ଲକ୍ଷ ଦରିଦ୍ର ନିରନ୍ନ ଶିକ୍ଷକ ପ୍ରାଣପାତ କରି ପଢ଼େଇଲୁ ଏ ଜାତିକୁ; କିନ୍ତୁ କ'ଣ ଶିଖିଲେ ଏମାନେ ? ଏ ଜାତିର ଶୈଶବ ଏବେ ବି ବାକୀ...ଆଉ ଥରେ ନୂଆ କରି ଏମାନଙ୍କୁ ପ୍ରାଥମିକ ଶିକ୍ଷା ଦେବାକୁ ହେବ ଅଶୋକ ।

କିନ୍ତୁ ରୂପ୍‌ନାରାୟଣ, ତମେ ନାଁ ଏ ଜାତିର ଜନକ ? ତମେଇତ ମଣିଷ କରିବ ଏ ଜାତିକୁ ? ଶିଥିଳତା କାହିଁକି ଆଜି ? ତମର ସେଇ ଲମ୍ୱା ବେତଟା ଅନେକ ଛୋଟ ମାଷ୍ଟର୍‌ଜୀ । ସେଟାକୁ ଫିଙ୍ଗି ଦେଇ ତା' ବଦଳରେ ଗୋଟାଏ ଖୁବ୍ ଲମ୍ୱା ଚାବୁକ୍ ଧର...ଆଉ...କି କରୁଣ ସେ ମୁହଁ ! ସେ ସ୍ୱରରେ କି ସହାନୁଭୂତି !

ଛିଃ, ଅଶୋକ ତୁ କହ କେବେ ମାରିଚି ତତେ ମୁଁ ? ବେତ ମାରି ତୋ' ମାଷ୍ଟର୍‌ଜୀ କେବେ କନ୍ଦେଇଛି ତତେ ? କ'ଣ କହିବେ ମାତାଜୀ ?

ମୁଁ ଉତ୍ତେଜିତ ହୋଇ ଉଠିଛି । କ୍ଷିପ୍ର ଗତିରେ ଗୋଟାକ ପରେ ଗୋଟାଏ ଆଲୋକ ସ୍ତମ୍ଭ ମୁଁ ଅତିକ୍ରମ କରି ଚାଲିଛି ।

''ନାଁ—ଆପଣ ବୁଝି ପାରିବେ ନାହିଁ ମାଷ୍ଟର୍‌ଜୀ—ଏ ମଦ୍ୟପ ଜାତି ଯେ ଆଜି କ୍ଷମତାର ମଦ ପିଇ ବେହୋସ୍ ହୋଇପଡ଼ିଛି । ଏମାନେ କ'ଣ ଟିକିଏ ଶୁଣିଛନ୍ତି

ଆପଣମାନଙ୍କର ଏତେ ଦିନର କରୁଣ ନିବେଦନ ! ଆଜି ଆଉ ନୁହଁ–ଏ ଜାତିକୁ ଜାଗ୍ରତ କରିବାକୁ ହବ ।

ଆଜି ସେଇ ଲମ୍ବା ଚାବୁକ୍‌ଟା ଧରି ପିଟନ୍ତୁ ଏ ଜାତିକୁ ପିଟନ୍ତୁ–ଖୁବ୍ ଜୋର୍‌ରେ ପିଟନ୍ତୁ–ବିଟ୍ ଦେମ୍ ରାଇଟ୍ ଆଣ୍ଡ୍ ଲେଫ୍‌ଟ–ବ୍ଲାକ୍ ଆଣ୍ଡ୍ ବ୍ଲୁ । ଦେଖିବେ–ଦେଖିବେ ମାଷ୍ଟରଜୀ ଏ ଅଚେତନ ଜାତିର ମସ୍ତିଷ୍କରେ ଧୀରେ ଧୀରେ ଚେତନା ସଞ୍ଚାରିତ ହେବ । ଏ ଜାତି ଧୀରେ ଧୀରେ ଅହିରାଜ କୁଣ୍ଡଳିର ଶୀତ-ଶଯ୍ୟାରୁ ଚଞ୍ଚଳ ହୋଇ ଉଠିବ– ଆଉ ତା'ର ଜନକର ପାଦତଳେ ଜାନୁପାତି କ୍ଷମା ମାଗି ପୁଣି ଥରେ ବାଧ୍ୟ ଶିଶୁ ପରି ସିଲଟ ଧରି ଫେରି ଆସିବ ଆପଣଙ୍କ ଚାଟଶାଳୀକୁ ।

ଆପଣ ସେଇ ଦିନ କହିବେ, "ମୁଁ ତମକୁ କ୍ଷମା କରିଛି–ଯାଅ–ତମମାନଙ୍କର ବିଦ୍ୟା ଏଥର ସମାପ୍ତ ।"

ଚାହା ଥଣ୍ଡା ହୋଇଗଲାଣି । ରାସ୍ତା କରର ଗୋଟାଏ କାଫେ ଭିତରେ ନିଶ୍ଚଳ ହୋଇ ବସି ରହି ଖଣ୍ଡେ କାଗଜକୁ ଅନ୍ୟମନସ୍କ ହୋଇ ପାପୁଲିରେ ଦଳୁଚି ଆଉ ଦଳୁଚି । କି କାଗଜ ଏଟା ? ମଇଳା କାଗଜ ଗୁଳାଟାକୁ ଖୋଲି ଦେଖିଲି–ଲେଖା ଅଛି–

ରୂପ୍‌ନାରାୟଣ ସାହା ସଦର୍ ବଜାର
କାଣ୍ଟନ୍‌ମେଣ୍ଟ ରୋଡ୍ ବନାରସ୍ ।



# ରୁବିର ରୁବାଇୟାତ୍

ଶ୍ରାବଣ ବୁଢ଼ା ହୋଇ ଆସୁଛି ।

କିନ୍ତୁ ସେ ଦିନର ଶ୍ରାବଣ ସଂଧ୍ୟାରେ ମନେ ହେଉଥିଲା ଯେମିତି ପୁଣି ଥରେ ଫେରି ଆସିଛି ଶ୍ରାବଣର ପ୍ରଥମ ଯୌବନର ଉଦ୍ଦାମତା ।

ମୁହଁ ସଞ୍ଜର ମଇଳା ଆଲୁଅ ଭିତରେ ଲିପି ହୋଇ ଯାଇଛି ପରସ୍ତ ପରସ୍ତ ମେଘ ଅନ୍ଧାର—

ବିଜୁଳିରୁ ଯେମିତି ଖଣ୍ଡେ ଆଲୁଅ ଛିଟିକି ଆସିଲା ଆମ ଘର ଭିତରକୁ । ବିଦ୍ୟୁତ୍‌ର ଉଜ୍ଜ୍ୱଳ ଆଲୋକରେ ଦେଖାଗଲା ମି: ରବର୍ଟସନ୍‌ଙ୍କର ବାଁ ଆଖିର ଭ୍ରୂଲତା ଇନ୍ଦ୍ରଧନୁ ପରି ଉଠିଗଲା ଉପରକୁ । ମେକ୍‌ସିକୋ ତାଲିମ୍ ଜିଭରେ ଦରଖଣ୍ଡିଆ ଇଂରାଜୀ ଉଚ୍ଚାରଣ କରି ରବର୍ଟସନ କହିଲେ, ଆଶ୍ଚର୍ଯ୍ୟ ! ଅପୂର୍ବ !...ଆହା ଯଦି ମୋ ଦେଶରେ ୟାର ଶହେ ଭାଗରୁ ଭାଗେ ବର୍ଷା ହଉଥାଆନ୍ତା...

ତତ୍‌କ୍ଷଣାତ୍ ପ୍ରତିବାଦ କରି ଉଠିଲା ରିକ୍ତା—"ଆପଣଙ୍କୁ ବର୍ଷା ଭଲ ଲାଗେ ? ....ଏମିତିକିଆ ଅଚାନକ ବର୍ଷାରେ ଖୁବ୍ ଆଶ୍ୱସ୍ତି ଲାଗେ, ମନେହୁଏ ଯେମିତି ଏଇ ବର୍ଷାରେ ଆମର ଘରଗୁଡ଼ାକ ବତୁରୀ ବତୁରୀ ମିଳେଇ ଯିବ ମାଟିରେ ।"

ରବର୍ଟସନଙ୍କର କର୍ଣ୍ଣରେ ହତାଶାର ସୁର୍ । "ବର୍ଷାକୁ ଘୃଣା କରିବାର ବିକାଶ ଆପଣମାନେ ହିଁ କରି ପାରନ୍ତି, କାରଣ ଆପଣଙ୍କର ଘର ବିଷୁବରେଖାର ଛାତ ତଳେ...କିନ୍ତୁ ଆମେ ? ଆମେ ସବୁ ବୃଷ୍ଟି ବିରଳ ଦେଶର ବର୍ଷା କାଙ୍ଗାଳ ଦଳ । ବାହାରେ ବର୍ଷା ଝରୁଛି ଅବିରାମ । ରାତ୍ରିର ଅନ୍ଧାର ଆହୁରି ଘଞ୍ଚ ହୋଇ ଆସୁଛି । ରବର୍ଟସନ ଦୀର୍ଘନିଶ୍ୱାସ ନେଲେ ଆଉ କହିଲେ, "ଅଦ୍ଭୁତ ଆଜିର ଏ ବର୍ଷା ।" ଏହିପରି କାଳ ରାତ୍ରିରେ ପ୍ରେତ ଆତ୍ମାମାନେ ସେମାନଙ୍କର କବର ଖୋଲି ଉପରକୁ ଉଠନ୍ତି । ଘରର ଆଲୁଅ ଦିଆଯାଇ ନାହିଁ । ଅନ୍ଧକାର ନିବିଡ଼ ହୋଇ ଆସିଥିଲେ ମଧ୍ୟ ଆଲୁଅ ଦବା ପ୍ରୟୋଜନ କେହି ଅନୁଭବ କରୁ ନାହାନ୍ତି । ଏହି ଅନ୍ଧାର ଭିତରେ ଏହି ଅକାଳ ବୃଷ୍ଟିକୁ ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ଅନୁଭବ କରିହୁଏ । ସୌମେନ୍ଦ୍ର ତାର ସିଗାରେଟଟାକୁ ଶୀଘ୍ର ଶୀଘ୍ର ଟାଣୁଛି । ଏକ ଚକ୍ଷୁ ଦୈର୍ଘ୍ୟ ପରି ସିଗାରେଟଟା ଦପ୍ ଦପ୍ କରି ଜଳୁଛି । ନିରଞ୍ଜନ ନୀରବ ଭାବରେ ବସି ରହିଛି ।

ରବର୍ଟସନଙ୍କର ଶେଷ କେଇପଦ କଥା ଯେପରି ଉପସ୍ଥିତ ଲୋକମାନଙ୍କୁ ଏକ ଅତିନ୍ଦ୍ରିୟ ରାଜ୍ୟକୁ ନେଇଗଲା । ଅଦ୍ଭୁତ ଲାଗେ ଏହି ରାତିରେ ଅନୁଭବ କରିବାକୁ କବର ଖାନାରେ ଅଶରୀରୀମାନଙ୍କର ଏହି କାର୍ଯ୍ୟକଳାପ ।

ତାରସ୍ୱରରେ ରିକ୍ତା ପ୍ରତିବାଦ କରେ । ମିଷ୍ଟର ରବର୍ଟସନ ଏହି ଯୁଗରେ ଆପଣ ଭୂତ ମଧ୍ୟ ବିଶ୍ୱାସ କରନ୍ତି ! ରବର୍ଟସନ ବିଚଳିତ ହେଲେ ନାହିଁ । ଦୃଢ଼ କଣ୍ଠରେ ଜବାବ ଦେଲେ, ''ଯାହାର ସ୍ଥିତି ନିଶ୍ଚିତ ତାକୁ ବିଶ୍ୱାସ ନ କରିବା ଆତ୍ମପ୍ରବଞ୍ଚନ । ମୁଁ ଗୁଜବରେ ବିଶ୍ୱାସ କରେ । କିନ୍ତୁ ମୁଁ ନିଜକୁ ବିଶ୍ୱାସ କରିବାକୁ ବାଧ ।''

ସୌମେନ୍ଦ୍ର ସିଗାରେଟରେ ଶେଷ ଟାଣ ଦେଇ ଫୋପାଡ଼ି ଦେଲା । ରିକ୍ତା ଚଉକିଟାକୁ ଟାଣି ଆଣି ଲାଗି ଆସିଲା ପାଖକୁ । ନିରଞ୍ଜନ ଚିତ୍କାର କରି ଉଠିଲା– Mr. Robertson, let us hear from the horse's mouth.

ମିଷ୍ଟର ରବର୍ଟସନ ତାଙ୍କର କଥା ଆରମ୍ଭ କଲେ । ତାଙ୍କର ସ୍ୱରରେ କାହାଣୀ ବା କାଳ୍ପନିକ କଥାର ଲେସ୍ ମାତ୍ର ସ୍ପର୍ଶ ନାହିଁ । ସେ ଯେପରି ନିର୍ଲିପ୍ତ ଭାବରେ ଇତିହାସର କୌଣସି ଏକ ପରିଚ୍ଛେଦ ପାଠ କରି ଯାଉଛନ୍ତି ।

ମୁଁ ସେତେବେଳେ ରାଏପୁରରେ ନୂଆ ରେଲ ଲାଇନ ତିଆରି କରିବା ଚାର୍ଜରେ ଥାଏ । ଖୁବ୍ ଶୀଘ୍ର ଶୀଘ୍ର କାମ ସାରିବାକୁ ପଡ଼ିବ । ସେଥିପାଇଁ ଅଧିକାଂଶ ଦିନ ଆମକୁ ଅନେକ ରାତି ପର୍ଯ୍ୟନ୍ତ କାମ କରିବାକୁ ପଡ଼େ । ସେଠି କାମ ଆରମ୍ଭ ହେବାର ଅଳ୍ପ କିଛିଦିନ ପରେ ଦିନେ ରାତ୍ରିରେ ମୁଁ ଆମ କୁଲିଙ୍କ ଭିତରୁ ଜଣକୁ ଫ୍ଲାସ୍କରେ ଚା' ଆଣିବାକୁ ପଠାଏ । ଆମର କାର୍ଯ୍ୟକ୍ଷେତ୍ର ଠାରୁ ରେଲଷ୍ଟେସନ ମାତ୍ର ଅଧ ମାଇଲିଏ ବାଟ । କିନ୍ତୁ ଆଶ୍ଚର୍ଯ୍ୟର କଥା ଜଣେ ହେଲେ କେହି ମତେ ଚାହା ଆଣିଦେବାକୁ ରାଜି ହେଲେ ନାହିଁ । ଅନେକ ସମୟ ସେମାନଙ୍କୁ ପଚରା ପଚରି କରିବା ପରେ ମୁଁ ବୁଝିପାରିଲି ଯେ ସେମାନେ ଡିଷ୍ଟାଣ୍ଟ ସିଗନାଲ୍‌ଟାକୁ ଆପ୍ରାଣ ଭୟ କରୁଛନ୍ତି । କିନ୍ତୁ କାହିଁକି ? ଜଣେ ହେଲେ ବି କେହି ମୋତେ ସେ ବିଷୟରେ କହି ପାରିଲେ ନାହିଁ । କିନ୍ତୁ ରାତି ଘଡ଼ିଏ ଦୁଇ ଘଡ଼ି ପରେ କୌଣସି ଲୋକ ଡିଷ୍ଟାଣ୍ଟ ସିଗ୍‌ନାଲ୍ ବାଟଦେଇ ଯାଇ ବଞ୍ଚିକରି ଫେରି ଆସି ପାରିନାହିଁ ।

ମୋର ବୟସ ସେତେବେଳେ ମାତ୍ର ୩୦ ବର୍ଷ ଏବଂ ମୁଁ ଅବିବାହିତ । ମୁଁ ହୁଏତ ଚାହା ଆଣିବାର ପ୍ରସ୍ତାବଟାକୁ ସେଦିନ ରଦ୍ କରି ଦେଇ ପାରିଥାଆନ୍ତି କିନ୍ତୁ ଚାହା ଅପେକ୍ଷା ଆହୁରି ଲୋଭନୀୟ ହୋଇ ଉଠିଲା, ସେହି ଡିଷ୍ଟାଣ୍ଟ ସିଗ୍‌ନାଲ୍‌ଟା । ମନେହେଲା ସିଗ୍‌ନାଲ୍‌ଟା ଅନେକ ଉଚ୍ଚରୁ ମୋର ପୌରୁଷକୁ ପରିହାସ କରୁଛି । ମୋତେ ଯିବାକୁଇ ହେବ କିନ୍ତୁ ମୋର କୁଲି ଓ ସହକର୍ମୀମାନେ ମୋତେ ଛାଡ଼ିବାକୁ

ଆଦୌ ପ୍ରସ୍ତୁତ ନୁହନ୍ତି । ତାଙ୍କୁ ଅନେକ ସମୟ ବୁଝାସୁଝା କରି ମୋର ଆସିବା ପାଇଁ ଗୋଟାଏ ଯୋର କରା ଅନୁମତି ପତ୍ର ହାସଲ କରି ପାରିଲି । ମୁଁ ଆସିଲାବେଳେ ସେମାନେ ସମସ୍ତେ କାମ ଦାମ ଛାଡ଼ି ଦେଇ କେବଳ ମୋତେ ଚାହିଁ ରହିଥାଆନ୍ତି । ସେମାନେ ଯେପରି ଚାହିଁଛନ୍ତି ଜଣେ ଲୋକର ମୁହଁକୁ ଯେ ମୃତ । କେବଳ ବଞ୍ଚିବାର ଅଭିନୟ କରୁଛି ମାତ୍ର ।

ଫ୍ଲାସ୍କଟାକୁ କାନ୍ଧରେ ଓହଳେଇ ଦେଇ ମୁଁ ଚାଲିବାକୁ ଆରମ୍ଭ କଲି । ଲାଇନ୍‌ର କାଠ ପଟା ଉପରେ ପାଦ ଦେଇ ଚାଲିବାରେ ମୁଁ ଚିର ଅଭ୍ୟସ୍ତ । ତେଣୁ ଅନ୍ଧାର ହେଲେ ମଧ ଚାଲିବାରେ କିଛି ଅସୁବିଧା ହେଲା ନାହିଁ । ସାଙ୍ଗରେ ଖଣ୍ଡେ ଛୋଟ ଟର୍ଚ୍ଚ । ବ୍ୟାଟେରୀର ଅବସ୍ଥା ମଧ ସେପରି ଆଶାଜନକ ନୁହେଁ ।

ମୁଁ ବେଶ୍ କିଛିବାଟ ଆଗେଇ ଆସିଲିଣି । ଡିଷ୍ଟାଣ୍ଟ ସିଗ୍‌ନାଲ୍ ହେଲା ପ୍ରାୟ । ଆଉ ଆଗକୁ ପାଦ ବଢ଼େଇବା ଆଗରୁ ସ୍ଥିର ହୋଇ ଠିଆ ହେଇ ରହିଲି କେଇ ମୁହୂର୍ତ୍ତ । ମୁକ୍ତ ଆକାଶ ତଳେ ରାତିର ଥଣ୍ଡା ପବନ ସୁନ୍ଦର ଲାଗୁଚି ଦେହକୁ । ପଛକୁ ଫେରି ଚାହିଁଲି । କିଛି ଦୂରରେ ଯେଉଁଠି ଲାଇନ୍ ତିଆରି ହଉଛି ସେଠି ଇଲେକ୍‌ଟ୍ରିକ୍ ଆଲୁଅର ଉଜ୍ଜ୍ୱଳ ଆଭା ଅନେକ ଦୂରକୁ ଦେଖାଯାଉଛି । ଆଗରେ ବେଶ୍ କିଛି ବାଟ ପରେ ଷ୍ଟେସନ୍‌ରେ ଆଲୁଅ । ମଝିରେ କେବଳ ଅନେକ ଉଚ୍ଚକୁ ମୁଣ୍ଡଟେକି ଠିଆ ହେଇଛି ସେଇ ଡିଷ୍ଟାଣ୍ଟ ସିଗ୍‌ନାଲ୍‌ଟା । ରାତ୍ରିର ଅନ୍ଧକାରରେ ସେଇ କୃଷ୍ଣକାୟ ସ୍ତମ୍ଭଟା ଖୁବ୍ ରହସ୍ୟମୟ ଦେଖାଯାଉଛି ।

କିନ୍ତୁ ଡିଷ୍ଟାଣ୍ଟ ସିଗ୍‌ନାଲ୍ ସହିତ ମୁଁ ବହୁ ପରିଚିତ । ସେ ବିଷୟ ନେଇ ଏତେ ଭାବିବାର ବି ଅଛି କ'ଣ ? ମୁଁ ଚାଲିଛି । ମୋ ଚାରିପଟେ କୌଣସି ଅଶରୀରୀର ଉପସ୍ଥିତି ମୁଁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ ।

ସିଗ୍‌ନାଲ୍ ଖୁଣ୍ଟିଟାକୁ ଟପି ଆସି ପଛକୁ ଫେରି ଚାହିଁଲି । ସିଗ୍‌ନାଲ୍‌ଟା ଧନୁପରି ଆଉ ବଙ୍କେଇ ଆସି ନାହିଁତ ମତେ ଧରିବାକୁ ! ସିଗ୍‌ନାଲ୍‌ଟା ଠିକ୍ ସେମିତି ଠିଆ ହେଇ ରହିଛି । ''ଯେତେସବୁ ଗୁଲିଖଟି ଗପ'' କହି ସିଗାରେଟ୍‌ଟାକୁ ଛାଟିଦେଲି ଲାଇନ୍ କରକୁ । ନିଜକୁ ନିଜେ ପ୍ରଶଂସା କଲି ମନେ ମନେ ।

ଚାହା ଦୋକାନରେ ଆଦୌ ଭୀଡ଼ ନାହିଁ । ଅଳସ ଗପ କରି କରି ଚାହା ତିଆରି କରୁଛି ଦୋକାନୀ । ହଠାତ୍ ଗୋଟାଏ ସମୟରେ ମତେ ଦେଖି ସ୍ଥିର ଚକ୍ଷୁରେ ଚାହିଁ ରହିଲା ଦୋକାନୀଟା—ଯେମିତି ତା'ର ଆଖିର କୋଟର ଭିତରୁ ଆଖିଦିଟା ବାହାରି ଆସିବ ପଦାକୁ... ''ସାବ୍ ! କୋଇ ଆଦ୍‌ମି ନେହିଁ ଆପ୍‌କା ସାଥ୍ !'' ମୁଣ୍ଡ ହଲେଇ ନାହିଁ କଲି... କିନ୍ତୁ ଦୋକାନୀକୁ ଏପରି ଆଶ୍ଚର୍ଯ୍ୟ କରିଦେଇ ପାରିଥିବାରୁ ମନେ ମନେ

ହସିଲି ଖୁବ୍ । ଦୋକାନୀ କିନ୍ତୁ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ । ସେ କହିଚାଲିଲା ଯେ ଗତ ୧୫ ବର୍ଷ ଧରି ସେ କୌଣସି ଲୋକକୁ ସିଗ୍‌ନାଲ୍ ବାଟ ଦେଇ ଏତେ ରାତିରେ ଏକୁଟିଆ ଆସିବାର ଦେଖି ନାହିଁ ।

ମୁଁ କିନ୍ତୁ କିଛି ଜବାବ୍ ଦେଲି ନାହିଁ । ଏସବୁ ସ୍ଥାନରେ ନୀରବତା ହିଁ ମଣିଷକୁ ସବୁଠାରୁ ବେଶି ରହସ୍ୟମୟ କରିଥାଏ ।

ଫ୍ଲାସ୍କରେ ଚାହା ଭର୍ତ୍ତି ସରିଲା । ଫ୍ଲାସ୍କଟାକୁ କାନ୍ଧରେ ଓହଳାଇ ଦେଇ ଖଣ୍ଡେ ସିଗାରେଟ୍ ଟାଣି ଟାଣି ପୁଣି ଫେରିବାକୁ ଆରମ୍ଭ କଲି ।

ମନ ଖୁସିରେ ଗୋଟାକୁ ଗୋଟା ଲାଇନ୍‌ର କାଠ ଡେଇଁ ମୁଁ ଚାଲିଛି । ଏଥର ଡିଷ୍ଟାଣ୍ଟ୍ ସିଗ୍‌ନାଲ୍‌ଟା ସହିତ କିଞ୍ଚିତ୍ ପରିଚୟ ହୋଇ ଯାଇଛି । ହଠାତ୍ ମୁଣ୍ଡ ଉପରକୁ ନଇଁ ଆସିବାର ବା ଗୋଟିଏ ସୁନ୍ଦର ନାରୀ ହୋଇ ସାମ୍ନାରେ ଆସି କଥାକଳି ନୃତ୍ୟ କରିବାର ଆଶଙ୍କା ନାହିଁ ମୋତେ ।

ବାହାରେ ତଥାପି ବର୍ଷା ଝରୁଛି ଅବିରାମ । ଅଂଧାର ଆହୁରି ବହଳ ହେଇ ଆସିଛି । ମିଃ ରବର୍ଟସନ ପୋଖତ କଥାକାର । ତାଙ୍କର ପରିମିତି ଶ୍ରୋତାମଣ୍ଡଳୀ ସେଇ ଅଂଧାର ଭିତରେ ସ୍ପଷ୍ଟ ଦେଖି ପାରୁଛନ୍ତି ଯେ, ରବର୍ଟସନ୍ ଚାଲିଛନ୍ତି ସେଇ ଲାଇନ୍‌ର କାଠଗୁଡ଼ାକ ଡେଇଁ ଡେଇଁ ।

ରବର୍ଟସନଙ୍କର ସ୍ୱର ଗମ୍ଭୀର ହୋଇ ଆସିଛି ଅସ୍ୱାଭାବିକ ଭାବରେ । ଡିଷ୍ଟାଣ୍ଟ୍ ସିଗନାଲ୍ ପାଖ ହେଇ ଆସିଛି ।

''ମିଃ ରବର୍ଟସନ'' କିଏ ଜଣେ ଡାକିଲା ସେଇ ସୂଚୀଭେଦ୍ୟ ଅଂଧକାର ଭିତରୁ– ମୋତେ କପେ ଚା' ଦେଇ ପାରିବେ ।

ମୋର ମେରୁଦଣ୍ଡ ଦେଇ ଗୋଟାଏ ଶୀତଳ ଶୀତ୍‌କାର ବହି ଚାଲିଗଲା । ଗୋଟାଏ ମୁହୂର୍ତ୍ତରେ ମୋର ଚାରିପଟକୁ ଚାହିଁନେଲି ଥରେ । କେହି ନାହିଁ । କିନ୍ତୁ ସ୍ୱର ଶୁଣାଯାଉଛି ଅତି ସ୍ପଷ୍ଟ ଓ ଦୃଢ଼ ।

ପୁଣି ଥରେ ସେଇ ସ୍ୱର ''ଠିଆହୁଅ ମିଃ ରବର୍ଟସନ୍ । ଭୟ କର ନାହିଁ । କପେ ଚା' ଦେଇଯାଅ । ଅନେକ ଦିନ ଧରି ଚା' ଖାଇବାକୁ ପାଇନାହିଁ ।''

ଜଡ଼ତା କଟିଯାଇଛି । ଏ ଦ୍ୱିତୀୟ ଥରର କଣ୍ଠସ୍ୱରରେ ଆକସ୍ମିକତାର ବିଦ୍ୟୁତ୍ ନାହିଁ ଅଥଚ ଅନୁନୟର କାରୁଣ୍ୟ ଅଛି । ଆଉ ଭୟଭୀତ ହେଇ ଲାଭ ନାହିଁ । ଏଇ ଅଶରୀରୀର କଣ୍ଠସ୍ୱରକୁ ମୋତେ ସାମ୍ନା କରିବାକୁ ହେବ ।

ଦୃଢ଼ କଣ୍ଠରେ ପଚାରିଲି, ''ମହାଶୟ, ମୁଁ ତୁମକୁ ଦେଖି ପାରୁନାହିଁ—ଚାହା କାହାକୁ ଦେବି ? ଆଉ କିପରି ବା ଦେବି ? ସେଇ ସ୍ୱରରେ ତତ୍‌କ୍ଷଣାତ୍ ଜବାବ୍ ଆସିଲା, ''ମୋତେ ହୁଏତ ତମେ ଦେଖି ପାରନ୍ତ—କିନ୍ତୁ ଅସୁବିଧା ହେଉଛି ମୋର ମୁଣ୍ଡ ନାହିଁ । ଏ ଅବସ୍ଥାରେ ମତେ ଦେଖି ଅନେକ ଭୟ ପାଇଛନ୍ତି—ଆଉ ସେଇଥିପାଇଁ ମୋର ସାହସ ହେଉ ନାହିଁ ।''

ମୁଁ ଜବାବ୍ ଦେଲି—ନାଁ—ତମେ ମତେ ଦେଖା ଦିଅ । ତମର କବନ୍ଧଟାକୁ କେବଳ ଦେଖିବାକୁ ବର୍ତ୍ତମାନ ମୁଁ ନିଜକୁ ପ୍ରସ୍ତୁତ କରି ସାରିଲିଣି ।

ଆଶ୍ଚର୍ଯ୍ୟ !

ରେଣୁ ରେଣୁ ଅନ୍ଧାର ମିଶି ସିଗ୍‌ନାଲ୍ ପାଖରେ ଧୀରେ ଧୀରେ ସ୍ପଷ୍ଟ ହୋଇ ଆସିଲା ଗୋଟାଏ ମନୁଷ୍ୟ ମୂର୍ତ୍ତି—କେବଳ ଗୋଟାଏ କବନ୍ଧ । କବନ୍ଧଟା ପିନ୍ଧିଚି ଖଣ୍ଡେ ଖାକୀ ପ୍ୟାଣ୍ଟ୍ ଆଉ ନେଳୀ କାମିଜ ।

ମୁଁ ଯେ କ'ଣ କହିବି ପ୍ରଥମେ କେଇ ମିନିଟ୍ ଭାବିପାରିଲି ନାହିଁ । ତା'ପରେ ପ୍ରକୃତିସ୍ଥ ହେଇ ପଚାରିଲି, ''କିନ୍ତୁ ମିଷ୍ଟର ଗ୍ରୀନ୍ ତମେ ଚା' ଖାଇବ କେମିତି ?''

କବନ୍ଧ ପାଖରୁ ଟିକିଏ ସାମାନ୍ୟ ହସର ଶବ୍ଦ ଭାସି ଆସିଲା । ମୁଁ ଠିକ୍ ଖାଇପାରିବି । ତମେ କେବଳ ତଳେ ଚା'ଟା ରଖିଦିଅ ।

ମନ୍ତ୍ରମୁଗ୍ଧ ପରି କପ୍‌ରେ କପେ ଚା' ଢାଳିଦେଇ ତଳେ ଥୋଇ ଦେଲି ମୁଁ ।

ତା'ପରେ ସେ ଏକ ଅଦ୍ଭୁତ ଦୃଶ୍ୟ ।

ପ୍ଲାଷ୍ଟର କପ୍‌ଟା ଉପରକୁ ଯାଉଛି ଆଉ ତଳକୁ ଆସୁଛି । ଠିକ୍ ଯେମିତି ଜଣେ ଲୋକ ଚୁମୁକ୍ ଚୁମୁକ୍ କରି ଚା' ପିଇ ଯାଉଛି । ଟିକିଏ ପରେ କବନ୍ଧ କଥା କହିଲା । ଧନ୍ୟବାଦ ମିଃ ରବର୍ଟସନ୍—ପ୍ରଚୁର ଧନ୍ୟବାଦ—ଅନେକ ଦିନ ଧରି ଚା' ଟିକିଏ ଖାଇବାକୁ ପାଉନଥିଲି ।

ମନରେ ଖୁବ୍ ସନ୍ତୋଷ ଅନୁଭବ କଲି । ମୋର ମନେ ହେଲା ଯେପରି ଗୋଟିଏ ଚିର ତୃଷିତ ଆତ୍ମାକୁ ସାମାନ୍ୟ ଶାନ୍ତି ଦେଇ ପାରିଛି ।

ଆକାଶରେ ଅନେକ ତାରା ମିଟି ମିଟି କରୁଛନ୍ତି । ନିକଟରେ ଆଲୋକର ଚିହ୍ନ ଲେଶମାତ୍ର ନାହିଁ । ମୁଁ ଠିଆ ହେଇ ରହିଛି ଗୋଟାଏ କବନ୍ଧର ମାତ୍ର ୧୦ ଗଜ ଦୂରରେ । ମନ ଭିତରେ ଗୋଟାଏ ଅଦ୍ଭୁତ ଉତ୍ତେଜନା ।

ପୁଣି କଥା କହିଲା ଗ୍ରୀନ୍, ''କ'ଣ ଭାବୁଛ ମିଃ ରବର୍ଟସନ୍ ? ଭୟ କରିବାର କିଛି କାରଣ ନାହିଁ । ମୁଁ ତୁମ୍ଭର କୌଣସି କ୍ଷତି କରିବି ନାହିଁ । ସବୁଠାରୁ ମଜାର କଥା ତମର କୌଣସି କ୍ଷତି କରିବା ମୋର ସାଧ୍ୟାତୀତ...

କିନ୍ତୁ ଗୋଟାଏ ଅନୁରୋଧ ମିଃ ରବର୍ଟସନ—ଗ୍ରୀନ୍‌ଙ୍କର କଣ୍ଠସ୍ୱର ବାଷ୍ପରୁଦ୍ଧ । ଏଠି ତମେ ଯେତେଦିନ ଅଛ ମତେ ଦୟାକରି ପ୍ରତି ସଂଧ୍ୟାରେ କପେ କପେ ଚା' ଦବ । ତା'ପରେ ତୁହାକୁ ତୁହା ସେଇ ଅନୁରୋଧ ପ୍ଲିଜ୍-ପ୍ଲିଜ୍ ମିଷ୍ଟର ରବର୍ଟସନ୍—ଡୁ ନଟ୍ ଡିସାପଏଣ୍ଟ୍ ମି...ପ୍ଲିଜ୍ -ପ୍ଲିଜ୍...

ଏଇ ଅଳ୍ପ କେଇ ସମୟ ଭିତରେ ମୁଁ ମିଷ୍ଟର୍ ଗ୍ରୀନ୍‌ଙ୍କର ଏକାଥରକେ ବନ୍ଧୁ ହେଇ ଉଠିଲି । ପ୍ରତି ସଂଧ୍ୟାରେ ଚା' ଦବାର ପ୍ରତିଶ୍ରୁତି ମତେ ଦବାକୁ ପଡ଼ିଲା ତତ୍‌କ୍ଷଣାତ୍ ।

ଅଳ୍ପ କେଇ ଘଣ୍ଟା ଭିତରେ ଜଣେ ଅଶରୀରୀ ସହିତ ଏକାଥରକେ ବନ୍ଧୁତା କରିବାର ସୁଯୋଗ ମିଳେ କାହାକୁ ! ଆଉ ଭୟ ନାହିଁ—ଉତ୍ତେଜନା ନାହିଁ । ମୋର ନିଜର ବିଜୟରେ ମୁଁ ଆତ୍ମହରା ।

କିଛି ସମୟ ପରେ ମୁଁ ଦେଖିଲି ଗ୍ରୀନ୍ ତାଙ୍କର କାହାଣୀ କହିବାକୁ ଆରମ୍ଭ କରିଛନ୍ତି ।

ମାତ୍ର ତିନିବର୍ଷ ତଳେ ସେ' ଥିଲେ ଜଣେ ମେଲ୍ ଡ୍ରାଇଭର—କର୍ତ୍ତୃପକ୍ଷଙ୍କର ମତାମତରେ ସେ ଭଲ ଡ୍ରାଇଭରମାନଙ୍କ ଭିତରୁ ଥିଲେ ଅନ୍ୟତମ । ପ୍ରଚୁର ପଇସା ମଧ୍ୟ ପାଉଥିଲେ । ନଭେମ୍ବର ୧୫ ତାରିଖ ଦିନ ସେ ବମ୍ବେ ମେଲ୍ ନେଇ ଯାଉଥିଲେ ସବୁଦିନ ପରି— ।

ରାତି ପ୍ରାୟ ଦୁଇଟା ହେବ । ତାଙ୍କର ସହକାରୀ ଡ୍ରାଇଭରଟି ଘୁମେଇ ପଡ଼ିଛି ଅନେକବେଳୁ । ଗର୍ବର ସହିତ କହିଲେ ଗ୍ରୀନ୍—ଗ୍ରୀନ୍ ଗାଡ଼ିନେଇ ଗଲାବେଳେ ସ୍ୱୟଂ ଭଗବାନ ମଧ୍ୟ ନିଶ୍ଚିନ୍ତରେ ନିଦ୍ରା ଯାଇ ପାରନ୍ତି । ସେ ସେତେବେଳେ ଯାଉଥାଆନ୍ତି ୪୫ ମାଇଲ ବେଗରେ । ଠିକ୍ ଏଇ ଡିଷ୍ଟାଣ୍ଟ୍ ସିଗ୍‌ନାଲ୍‌ର ଲାଲ୍ ଆଲୋକ ଜଳୁଛି ଦପ୍ ଦପ୍ ହେଇ—ଗ୍ରୀନ୍ କହିଚାଲିଛନ୍ତି ଅସୀମ ଉତ୍ତେଜନାରେ...ମୁଁ ମଧ୍ୟ ଜଳଜଳ କରି ଚାହିଁ ରହିଛି ସେହି ଲାଲ୍ ଆଲୁଅକୁ...କିନ୍ତୁ ଗାଡ଼ିର ବେଗ କମାଇବାକୁ ମୋର ତିଳେହେଲେ ଚେଷ୍ଟା ନାହିଁ । ମୋରି ଆଖି ସାମ୍ନାରେ ଗାଡ଼ିଟା ମାଡ଼ି ଚାଲୁଛି । ଅଥଚ ଠିକ୍ ସେଇ ଲାଇନ୍‌ରେ ହେଡ୍ ଲାଇଟ୍‌ର ଉଜ୍ଜ୍ୱଳ ଆଲୋକ ଜଳେଇ ଠିଆ ହେଇ ରହିଛି ରାଏପୁର ପାସେଞ୍ଜର । ମୋ'ର ଚେତା ଫେରିଲାବେଳକୁ ଆଉ ଉପାୟ ନାହିଁ । ସେତେବେଳକୁ ଆଉ ମାତ୍ର ୧୫ ହାତର ତଫାତ୍ । ତା'ପରେ ଅବଶ୍ୟ କ'ଣ ଘଟିଲା ଓ କିପରି ଘଟିଲା ମୁଁ କହିପାରିବି ନାହିଁ ।

କିନ୍ତୁ ଠିକ୍ ସେହିଦିନ ଠାରୁ ଆଜିକି ତିନିବର୍ଷ ହେଲା ମୁଁ ଏଇ ଅବସ୍ଥାରେ ଏଇଠି ଠିଆ ହେଇ ରହିଛି ଲୋକଲୋଚନ ଆଗୋଚରରେ । ପ୍ରତି ରାତିରେ ବମ୍ବେ ମେଲ୍ ଛାଡୁଛି, ଆଉ ପ୍ରତିଦିନ ଆସୁଛି ରାୟପୁର ପାସେଞ୍ଜର ।

ଗ୍ରୀନ୍‌ଙ୍କର କଣ୍ଠ ରୁଦ୍ଧ ହୋଇ ଆସୁଛି । ତଥାପି ସେଇ ବାଷ୍ପରୁଦ୍ଧ କଣ୍ଠରୁ ଭାସିଆସିଲା ଗୋଟାଏ ହତାଶାର ହସ । ''ବ୍ରେନସ୍ ମେ କମ୍, ବ୍ରେନସ୍ ମେ ଗୋ ରବର୍ଟସନ୍' ବଟ୍ ଗ୍ରୀନ୍ ଷ୍ଟାଣ୍ଡ ହିଅର୍ ଫର୍ ଏଭର୍ ।''

ମୋ ଆଖିରେ ଲୁହ ଚାଲି ଆସିଥିଲା ।

କିନ୍ତୁ ଗ୍ରୀନ୍‌ଙ୍କର କଥାର ଶେଷ ନାହିଁ । ଚାବୁକ୍ ମାରିଲା ପରି କହିଲେ ଗ୍ରୀନ୍, ''ତମେ ନିଶ୍ଚୟ ଭାବୁଛ ରବର୍ଟସନ—ଜଣେ ଅସାବଧାନ, ଅନ୍ୟମନସ୍କ, ଦାୟିତ୍ୱହୀନ ଲୋକର ଆଉ କ'ଣ ଦଶା ହୁଅନ୍ତା ?

ମୁଁ ନୀରବ ରହିଲି ।

ମୁଁ ଦାୟିତ୍ୱହୀନ ବା ଅନ୍ୟମନସ୍କ ଆଦୌ ନୁହେଁ ରବର୍ଟସନ୍—ଆଦୌ ନୁହେଁ । କିନ୍ତୁ ସେଦିନ ଅନ୍ୟମନସ୍କ ରହିବା ଭିନ୍ନ ମୋର ଉପାୟାନ୍ତର ନ ଥିଲା ।

ଦୁର୍ଘଟଣା ଦିନ ସକାଳେ ମୁଁ ତିନିଦିନ ନାଇଟ୍ ଡ୍ୟୁଟି ସାରି ଫେରୁଥାଏ ଘରକୁ । ମେଲ୍ ଡ୍ରାଇଭରର ତିନିଦିନ ପରେ ଘରକୁ ଫେରିବା ଯେ କି ଆନନ୍ଦ ତା' ତମେ ଜାଣିପାରିବ ନାହିଁ । ଅନେକ ଦୂରରୁ ମୋର ଘରର ରାଣୀଗଞ୍ଜ ଟାଇଲିର ଛାତ ଦେଖାଯାଉଥାଏ । ଘର ସାମ୍ନାରେ ଛୋଟ ଖଣ୍ଡିଏ ନୀଳ ଲନ୍, ତା' ଉପରେ ନଭେମ୍ବର ସକାଳର ଖରା । ହାଡ଼ଭଙ୍ଗା ଖଟଣି ପରେ ଆଗକୁ ଦେଢ଼ ଦିନର ନିରବଚ୍ଛିନ୍ନ ବିଶ୍ରାମ । ମିସେସ୍ ଗ୍ରୀନ୍—ସୁନ୍ଦରୀ ମିସେସ୍ ଗ୍ରୀନ୍—ହଁ ମିସେସ୍ ଗ୍ରୀନ୍ ଥିଲେ ଅପୂର୍ବ ସୁନ୍ଦରୀ । ଛୋଟ ଘରଟି ଭିତରେ ଏପଟ ସେପଟ ହୋଇ ସେ ଚା' କରିବାକୁ ବ୍ୟସ୍ତ ହେଇପଡ଼ିବେ । ସତରେ ରବର୍ଟସନ—ମୋର ଛୋଟ ଘରଟିକୁ ଅନେକ ଲୋକଙ୍କର ଈର୍ଷା କରିବାର କଥା ।

କିନ୍ତୁ ମଣିଷର ଏତେ ଆନନ୍ଦ—ଏତେ ସୁଖ ଭଗବାନ ମଧ୍ୟ ଏହା ସହ୍ୟକରି ପାରନ୍ତି ନାହିଁ । ସେଇ ଦିନ ସକାଳେ ମୋର ସମସ୍ତ ଆଶା, ଆନନ୍ଦ ସବୁ କିଛି ଧୂଳିରେ ମିଶିଗଲା ।

ଡ୍ରଇଂରୁମ୍‌ର କବାଟଟାକୁ ଖୋଲିଦେଇ ଦେଖେ ମିସେସ୍ ଗ୍ରୀନ୍‌ଙ୍କର ନିବିଡ଼ ଆଶ୍ଳେଷ ଭିତରେ ବନ୍ଦୀ ହୋଇ ରହିଛନ୍ତି ମିଷ୍ଟର ଟେଲର୍ । ଟେଲର୍ ମୋର ସହକର୍ମୀ ଓ ବନ୍ଧୁ । କିନ୍ତୁ ହାୟ ମୁଁ କ'ଣ ଜାଣେ ମୋର ଅଜ୍ଞାତରେ କେବେ ଗଢ଼ି ଉଠିଛି ଏଇ

ଆତ୍ମୀୟତା ! ମୋର କହିବାକୁ କିଛି ଭାଷା ନଥିଲା । ମୋର ବୋଧହୁଏ ଉଚିତ ଥିଲା ପିସ୍ତଲ ଆଣି ଦୁଇଜଣଙ୍କୁ ଶେଷ କରିବାକୁ । କିନ୍ତୁ ପାରିଲି ନାହିଁ—ଉଚିତ ଅନୁଚିତ ବିଚାର କରିବାର ଅବସର ମୋର ନଥିଲା । ଘୃଣାରେ, ଅପମାନରେ ମୁଁ ପୁଣି ବାହାରିଗଲି ଫାଟକ ଖୋଲି ପଦାକୁ ।

ଟ୍ରେନ୍‌ର ହୁଇସିଲ୍ ଶୁଣାଯାଉଛି ୟାର୍ଡ଼ରେ । ୟାର୍ଡ଼କୁ ଚାଲିଲି । ରେଷ୍ଟସେଡ୍‌ରେ ବସି ରହିଛି ଖଣ୍ଡେ ଆରାମ ଚଉକୀରେ । କେତେବେଳେ ରାତି ହେଇଗଲାଣି ମୁଁ ଜାଣେନା । ମୁଁ ଖାଲି ଭାବୁଛି ଦୋଷ କାହାର—ମୋର—ହେଲେନର ନାଁ ଟେଲରର । କିନ୍ତୁ ସେ ତ୍ରିଭୁଜର କ'ଣ ଶେଷ ଅଛି ! ସେ କାହାଣୀର କ'ଣ ଉପସଂହାର ଅଛି !

କାହାର ହାଲୁକା ହସରେ ମୋର ଚେତନା ଆସିଲା । କଥାବାର୍ତ୍ତା କରି କରି ଘର ଭିତରକୁ ଆସିଛନ୍ତି ମିଷ୍ଟର ବାର୍ନସ୍ ଆଉ ମିସେସ୍ ବାର୍ନସ୍ । ବାର୍ନସ୍ ତାର ନବବିବାହିତା ବଧୂକୁ ଅଣ୍ଟା ପାଖରେ ହାତ ଦେଇ ଜଡ଼ାଇ ଧରିଛି ।

ବାର୍ନସ ମୋର ସହକର୍ମୀ । ମୋର ଆଜି ବିଶ୍ରାମ । ସିଏ ଆଜି ଯିବ ବମ୍ବେ ମେଲ ନେଇ, ଫେରିବ ତିନିଦିନ ପରେ । ସେଇଥିପାଇଁ ବୋଧେ ଏଇ ନିଶାର୍ଦ୍ଧରେ ମିସେସ୍ ବାର୍ନସ୍ ସାଙ୍ଗରେ ଆସିଛି ତାକୁ ଚୁମ୍ବନ ଦେଇ ବିଦାୟ ଦବାକୁ ତିନିଦିନ ପାଇଁ ।

ମୋର ଈର୍ଷା ହେଲା । କେତେ ଆଦର କରୁଛନ୍ତି ଏମାନେ ପରସ୍ପରକୁ । ଦୀର୍ଘ ତିନିଦିନ ଧରି ଏଇ ବିଚ୍ଛେଦ ଏମାନଙ୍କୁ ମନେ ହେବ ଗୋଟିଏ ଯୁଗପରି ।

ହଠାତ୍ ଠିଆ ହୋଇ କହିଲି ବାର୍ନସ୍—ଯଦି କିଛି ମନେ ନକର ତମକୁ ଗୋଟାଏ ଅନୁରୋଧ କରିବି ।

ବାର୍ନସ୍ କେବଳ ପଚାରିଲା ଆଖିରେ ଅନାଇ ।

ତମେ ଯଦି ଆଜି ନିଜକୁ 'ସିକ' ରିପୋର୍ଟ କରିପାରନ୍ତ ତାହା ହେଲେ ମୁଁ ଆଜି ଯାଆନ୍ତି ବମ୍ବେ ମେଲ ନେଇ ।

କିନ୍ତୁ ତମେ ଯେ ମାତ୍ର କାଲି ଫେରିଛ ?

ମୁଁ ଜାଣେ ବାର୍ନସ୍—କିନ୍ତୁ କୌଣସି ବିଶେଷ କାରଣରୁ ମୁଁ ଯିବାକୁ ଚାହେଁ ।

ବାର୍ନସ୍ ଦମ୍ପତିଙ୍କର ଆନନ୍ଦ ଉପଭୋଗ କରିବାର ବସ୍ତୁ । ଦୁଇଜଣଙ୍କର ଅଜସ୍ର ଧନ୍ୟବାଦ ଭିତରେ ବାରମ୍ବାର ଶୁଭୁଥାଏ ସେଇ ଗୋଟାଏ କଥା ଓ ଗ୍ରୀନ୍—ଲଭ୍‌ଲି ଗ୍ରୀନ୍...ହାଉ କାଇଣ୍ଡ୍ ଅଫ୍ ୟୁ...ଓ ଗ୍ରୀନ୍....ଆଇ ଡୁ ନଟ୍ ନୋ ହାଉ ଟୁ ଥାଙ୍କ୍ ୟୁ...ଓ ଗ୍ରୀନ୍...

ପରସ୍ପରକୁ ଆଦର କରିବାର କଳରବ କରି ଫେରିଗଲେ ସେମାନେ । ସେମାନଙ୍କର ପ୍ରତିଟି ଭଙ୍ଗୀରେ ଫୁଟି ଉଠୁଥାଏ ଆନନ୍ଦର ଆତିଶଯ୍ୟ ଆଉ ମୋ ପ୍ରତି କୃତଜ୍ଞତା ।

ବମ୍ବେ ମେଲ ଇଞ୍ଜିନ ଉପରକୁ ଉଠିଲି ଗୋଟାଏ ଲମ୍ଫରେ । ଇଞ୍ଜିନର ନିଆଁ ଧୂଆଁ ଆଉ ଉତ୍ତାପ ଭିତରେ ସବୁ କିଛି ଭୁଲିଯିବାକୁ ଚାହିଁଥିଲି ମୁଁ । କିନ୍ତୁ ସେ' କ'ଣ ଭୁଲିହୁଏ !

ଟ୍ରେନ୍ ଚାଲିଛି, ଆଉ ବନ୍ଦ ହଉଛି...ପୁଣି ଚାଲୁଛି । ସବୁ କିଛି ଘଟିଯାଉଛି ଗତାନୁଗତିକ ଭାବରେ । ଟ୍ରେନ୍ ଆସି ରାଏପୁର ପାଖରେ—ସେ କଥା ଜାଣିବା ମୋର ସାଧ୍ୟାତୀତ । ଅନେକ ଦୂରରୁ ମୁଁ ସ୍ପଷ୍ଟ ଦେଖି ପାରିଛି ଡିଷ୍ଟାଣ୍ଟ ସିଗ୍‌ନାଲର ସେଇ ଲାଲ ସଂକେତଟାକୁ । କିନ୍ତୁ ମୁଁ କ'ଣ ବୁଝିପାରିଛି ।

ମୋ ଆକ୍ଷି ଆଗରେ ଖାଲି ଗୋଟାଏ ଚିତ୍ର ଭାସି ଆସୁଥିଲା । ହେଲେନ୍‌ର ଘଞ୍ଚଛାତି ଭିତରେ ମୁଣ୍ଡ ଗୁଞ୍ଜି ରହିଛି ଟେଲର୍ ଆଉ ଟେଲର୍‌ର କଳା ବାଳ ଉପରେ ପାରିହେଲା ପରି ରହିଛି ହେଲେନ୍‌ର ଚିପା ଆଙ୍ଗୁଠି । ଆଉ ହେଲେନ୍‌ର ପରି ଆଙ୍ଗୁଠି ଉପରେ ଜକ୍ ଜକ୍ କରୁଛି ଆମର ବାହାଘର ମୁଦିର ଲାଲ୍ ରୁବି ପଥରଟା ।

ଟ୍ରେନ୍ ଚାଲିଛି । ମୁଁ ସ୍ତମ୍ଭୀଭୂତ ହେଇ ଠିଆ ହେଇ ଉର୍ଦ୍ଧ୍ୱ ଆକାଶରେ ଆଉ ଥରେ ଦେଖୁଛି ହେଲେନ୍‌ର ମୁଦି ଉପରର ସେଇ ଟକ୍ ଟକ୍ ଲାଲ୍ ରୁବି ପଥରଟାକୁ । ତଡ଼ିତ୍ ବେଗରେ ଦୃଶ୍ୟ ପରିବର୍ତ୍ତନ ହେଲା । କିନ୍ତୁ ସେତେବେଳକୁ ଆଉ ଉପାୟ ନଥିଲା ରବର୍ଟସନ୍—ଉପାୟ ନଥିଲା । ମୁଁ ସେତେବେଳକୁ ସଂପୂର୍ଣ୍ଣ ଚଳତ୍ ଶକ୍ତିହୀନ । କିଛି କରିପାରିଲି ନାହିଁ । ଦୁଇପାଟି ଦାନ୍ତ ମୋର ଯାବ ପଡ଼ିଯାଇଥାଏ ଖୁବ୍ ଜୋରରେ । ମୁଁ କେବଳ ଥରେ ମାତ୍ର ଭାବିନେଲି ଆହା, ଆଜିର ଏଇ ଟ୍ରେନ୍‌ରେ କାହିଁ ମଧୁଶଯ୍ୟା ରଚନା ନ କଲେ ହେଲେନ୍ ଆଉ ଟେଲର୍ ! ଶେଷ କେଇପଦ କଥାରେ ସଂପୂର୍ଣ୍ଣ ଭାଙ୍ଗିପଡ଼ିଥିଲା ମିଷ୍ଟର ଗ୍ରୀନ୍ ।

ପୂର୍ବ ଆକାଶରେ ସକାଳ ହୋଇ ଆସିବ ପ୍ରାୟ । ମୁଁ ଚାହିଁ ଦେଖିଲି ମିଷ୍ଟର ଗ୍ରୀନ୍‌ର କବନ୍ଧଟା ମିଳେଇ ଯାଇଛି କ୍ରମମ୍ଳାନବତୀ ଅନ୍ଧକାର ଭିତରେ । ଖାଲି ଗୋଟାଏ ସ୍ୱର ଶୁଣିଲି ଗୁଡ୍‌ମର୍ଣ୍ଣିଂ ମିଷ୍ଟର୍ ରବର୍ଟସନ୍ ।

ଆମର ଆସର ଭାଙ୍ଗିଲା ବେଳକୁ ରାତି ପ୍ରାୟ ଗୋଟାଏ ।

---

ଗଳ୍ପର ଧର୍ମ ରକ୍ଷାକରିବାକୁ ଏଥିରେ ଯାହାକିଛି ମୋର ନିଜସ୍ୱ କଳ୍ପନା ମିଳିଛି ସେଥିପାଇଁ ମୁଁ ମିଃ ରବର୍ଟସନଙ୍କ ପାଖରେ ଓ ମିଃ ଗ୍ରୀନ୍‌ଙ୍କର ଅତୃପ୍ତ ଆତ୍ମା ପାଖରେ ବିନା ସର୍ତ୍ତରେ କ୍ଷମା ମାଗି ନେଇଛି ।

ଲେଖକ

●●

# ଗ୍ରୀନ୍ ରୁମ୍

ବିରୂପାକ୍ଷ ଅତି ମାତ୍ରାରେ ବ୍ୟସ୍ତ ହୋଇ ପଡ଼ିଛନ୍ତି । ଖୁବ୍ ଅଳ୍ପ ସମୟ ଭିତରେ ତାଙ୍କୁ ଅନେକ ଗୁଡ଼ାଏ କାମ କରିବାକୁ ପଡ଼ିବ । ଶାନ୍ତିପୁରୀ ଧୋତିଟା କୁଞ୍ଚ ହୋଇ ପାରିଲା ନାହିଁ ଏ ଯାଏଁ—ଅଥଚ ଟ୍ରପିକାଲ୍—ଗଳା ବନ୍ଦ କୋଟ୍‌ଟାର ଚତୁର୍ଥ ବୋତାମଟା ୩ୟ କାଜ ଭିତରେ ପଶିଯାଇ ପୋଷାକଟାର ବାଲାନ୍‌ସ ନଷ୍ଟ କରିଦେଲାଣି ....ଛିଃ...ଛିଃ...

ଖିଲ ଖିଲ ହେଇ ବସି ଉଠିଲା କିଏ, ଯେମିତି ଗୋଟାଏ ଜଳପ୍ରପାତ ପରି ହଠାତ୍ ଝରିଗଲା ଅନେକ ଗୁଡ଼ାଏ ହସ ।

ଷ୍ଟୁପିଡ୍ ! – ଦର୍ପଣ ଭିତରେ ବରୂପାକ୍ଷଙ୍କର ଭ୍ରୂରୁ କୁଞ୍ଚିତ ହୋଇଯିବାର ଦେଖାଗଲା । ଫେରି ଚାହିଁଲେ-ସେ...

ହସି ହସି କନ୍ଦର୍ପର ଫୁଲଧନୁ ପରି ବାଙ୍କି ଯାଉଛି ମଦିରାକ୍ଷୀ—ମହାନଗରୀର ବିଖ୍ୟାତ ନର୍ତ୍ତକୀ ।

ନାଁ—କୋଟ୍—ଧୋତି ସବୁ ଅପେକ୍ଷା କରିପାରେ...କିନ୍ତୁ ଆଉଥରେ କ'ଣ ଆସିବ ଏଇ ଦୁର୍ଲ୍ଲଭ ମୁହୂର୍ତ୍ତ ! ବିରୂପାକ୍ଷର ଇଚ୍ଛା ହେଲା ତା'ର ଲୋଲୁପ ହାତର ଆଙ୍ଗୁଠି ଭିତରେ ଯଦି ଧରାଦିଅନ୍ତା ମଦିରାକ୍ଷୀର ଶାଢ଼ୀରୁ ପୁଳାଏ....ତାହାହେଲେ—ତା'ପରେ ହୁଏତ ଗୋଟାଏ ଜାପାନୀ ରବର କଣ୍ଢେଇ ପରି ବୁଲି ଯାଆନ୍ତା ମଦିରାକ୍ଷୀ...ସେ' ଯେପରି ତା'ର ହଂସୀ ନୃତ୍ୟର ଶେଷ ଚରଣ ସମାପ୍ତ କରୁଛି ।

କିନ୍ତୁ—କିନ୍ତୁ...କ'ଣ କରିବା ଠିକ୍ ହବ—ବିରୂପାକ୍ଷର ମନର ସମୁଦ୍ରରେ ଦୋଳାୟିତ ହେଉଚି ସିଦ୍ଧାନ୍ତର ନୌକା ।

କିଏ ?—ତା'ର ଡାହାଣ କାନ୍ଧ ଉପରେ କିଏ ହାତ ଥୋଇ ଡାକୁଚି ତାକୁ । ପ୍ରଫେସର ପ୍ରସାଦ୍—ତା'ର ଦର୍ଶନ ଅଧ୍ୟାପକ । ଦେହରେ ତାଙ୍କର ଜଡ଼ି ରହିଛି ରେଶମର ସୁନ୍ଦର ଡ୍ରେସିଂ ଗାଉନ୍ ଆଉ ମୁହଁରେ ପାଇପ୍... ।

ପ୍ରଫେସର କିନ୍ତୁ ବିରୂପାକ୍ଷର ମୁହଁରୁ ଦରପୋଡ଼ା କ୍ୟାପ୍‌ଷ୍ଟାନ୍ ସିଗାରେଟ୍‌ଟା ଟାଣି ନେଇ ଧୂଆଁ ଛାଡ଼ିବାକୁ ଲାଗିଲେ ନିର୍ବିକାର ଚିତ୍ତରେ ।

ଟିପ୍‌ପଣୀ କଲେ– 'ଦୁଇଟା ନିଶା ଏକାଥରକେ ନକଲେ ଚଳିବ ବିରୂପାକ୍ଷ– ପ୍ରେମ କରି ସାରି ସିଗାରେଟ୍ ଖାଇବାକୁ ଅନେକ ସମୟ ପାଇବ ।

ଓଃ–ରିଏଲ୍ଲି ହୋପ୍‌ଲେସ୍...ଜବାବ ଆସିଲା ।

ପୁଣି ବୋତାମ ଖୋଲିବାରେ ମନଦେଲେ ବିରୂପାକ୍ଷ ।

ଏପଟେ ଆଉ ଗୁଡ଼ାଏ ଚାପା ହସର କୁଆପଥର ଭାଙ୍ଗି ଚୂନା ହୋଇ ଯାଉଛି ।

ହସୁଛନ୍ତି ନରହରିପୁରର ପ୍ରବଳ ପ୍ରତାପୀ ବିଖ୍ୟାତ ଜମିଦାର ଭ୍ରମରବର ରାଏ– ତାଙ୍କର ଦୁଇଟି ପେଷଲ ଗଣ୍ଡଦେଶ ସ୍ଫୀତ ହୋଇ ଉଠୁଛି ହସର ଉତ୍ତେଜନାରେ ।

କାରଣ ଅତି ସାମାନ୍ୟ । ତାଙ୍କର ଏକ ମାତ୍ର ବଧୂ ତୃଷା ରାୟ ଗୋଟାଏ ଭଙ୍ଗା ଚାହା ଡାବଲ ଉପରେ ବସିବାକୁ ଯାଇ ଓଲଟି ପଡ଼ିଛନ୍ତି ଆଉ ଗୋଟାଏ ଭଙ୍ଗା ରିକ୍‌ସା ଆଲୁଅରୁ କିରାସିନି ଗୁଡ଼ାକ ଢାଳିଯାଇ ତାଙ୍କର ଶାଢ଼ୀଟା ଭିଜି ଯାଇଚି ଏକାଥରକେ ।

ଅବଶ୍ୟ ହାସ୍ୟାସ୍ପଦ ଅବସ୍ଥା ।

କିନ୍ତୁ ଟିକିଏ ମନଖୋଲି ହସିବାର ମଧ ଉପାୟ ନାହିଁ । କୁଆଡୁ ଝଡ଼ ପରି ପଶି ଆସିଲା ଗୋଟାଏ ରିକ୍‌ସାବାଲା ଆଉ ହଠାତ୍ ଆକ୍ରମଣ ଆରମ୍ଭ କରିଦେଲା ପ୍ରବଳ ପ୍ରତାପୀ ଜମିଦାରଙ୍କର ଗୋଟାଏ ଫାଳ ନିଶ ଉପରେ । ଆଶ୍ଚର୍ଯ୍ୟ ! ପୂରା ଫାଳେ ନିଶ ଉଠି ଆସିଲା ରିକ୍‌ସାବାଲାର ହାତ ମୁଠା ଭିତରେ ।

ଜମିଦାର ଉଠି ଠିଆ ହେଲେ ଅପରାଧୀ ପରି । ଗର୍ଜନ କରି ଉଠିଲା ରିକ୍‌ସାବାଲା–''କେତେଥର କହିଲିଣି ଖାନ୍‌ଦାନୀ ଜମିଦାରର ନିଶ ପାଇଁ ନିର୍ଦ୍ଦିଷ୍ଟ ନିୟମାନୁବର୍ତ୍ତିତା ଅଛି–କଟକୀ ବସ୍ତିବାଲାର ବେପରୱା ନିଶ ଜମିଦାରର ନାକ ତଳେ ଶୋଭା ପାଏନା ।''...

'ଗୋ ଆଣ୍ଡ ଗେଟ୍ ଇଟ୍ ଚେଞ୍ଜଡ୍'....

ଅନୁତାପ ଦଗ୍‌ଧ ଜମିଦାର ତାଙ୍କର ଅବଶିଷ୍ଟ ମାତ୍ର ଗୋଟିଏ ଫାଳ ନିଶ ଉପରେ ହାତ ବୁଲେଇ ନଉ ନଉ ଅଳସ ମନ୍ଥର ଗତିରେ ସ୍ଥାନାନ୍ତରକୁ ଗମନ କରିବାକୁ ବାଧ ହେଲେ ।

ଏଇଥର ମୁଁ ହସିଲି କିନ୍ତୁ, ମୋର ମନେ ପଡ଼ିଗଲା ପିଲାଦିନେ କେଉଁ ଗୋଟାଏ ସର୍କସ୍‌ରେ ଗୋଟାଏ ଗୁଣ୍ଡୁଣୀ ହାତୀ ଗୋଟାଏ ଲୁହାର-ବଲ୍ ଉପରେ ଠିଆ ହୋଇ ତାକୁ ଚଳେଇବାକୁ ଅକ୍ଳାନ୍ତ ପରିଶ୍ରମ କରୁଥିଲା । ମୋର ମନେହେଲା ଆହା, ଏଇ ପୃଥୁଳ ଜନ୍ତୁଟିକୁ ଏପରି ମର୍ମାନ୍ତିକ କଷ୍ଟ ନ ଦେଲେ କ'ଣ ତାଙ୍କର ସର୍କସର କିଛି କ୍ଷତି ହୋଇ ଯାଆନ୍ତା !

ରିକ୍ସାବାଲାର ବିଶ୍ରାମ ନାହିଁ । ତା'ରି ପାଖକୁ ଲାଗି ଠିଆ ହୋଇଛି ଧନୀକ ସନ୍ତାନ ପ୍ଲାବନ୍—କ୍ଲୋଫର, ଗାୱାଡ଼ିନ୍ ସୁଟ୍ ଉପରେ ଲାଲ ଟକ୍ ଟକ୍ ଟୁଟାଲ ଟାଇର କଡ଼ା ନଟ୍ ଆଣ୍ଟି, ଗୋଟାଏ ଝାଙ୍କରେ ଏତେ ସଯତ୍ନ ବିନ୍ୟସ୍ତ ଟାଇର ନଟ୍ ଗଲା ଖୋଲି । ସିକ୍ସଥ ଇୟରସ୍ ଇଂଲିଶ୍ ଛାତ୍ର ପରି ଟାଇ ବନ୍ଧା ଛାଡ଼ ପ୍ଲାବନ—ନିଜକୁ ରାସ୍ତାରେ ଘୂରି ବୁଲିବାର ପୋଷାକରେ ସଜାଅ ।

ଚୁରୁଟ୍‌ଟାକୁ ମୁହଁରେ ଦେଇ ଟାଣିବାକୁ ଚେଷ୍ଟା କଲା ପ୍ଲାବନ—କିନ୍ତୁ ନିଆଁ ଲିଭିଗଲାଣି ଅନେକ ବେଳୁ ।

ଏଇଟା ହେଲା ଠିକ୍ ଛ'ଟା ତିରିଶ୍ ମିନିଟ୍‌ରେ ଗ୍ରୀନ୍‌ରୁମ୍‌ର ଆଭ୍ୟନ୍ତରୀଣ ସଙ୍କଟର ଏକ ଅସଂଲଗ୍ନ ଚିତ୍ର । ଆଉ ମାତ୍ର ଅଧଘଣ୍ଟାଏ ସମୟ ।

ବିଶ୍ୱଜିତ୍ ଅତ୍ୟନ୍ତ ଶ୍ରୁତିକଟୁ ସ୍ୱରରେ ସମସ୍ତଙ୍କୁ ସାବଧାନ କରି ଦଉଛନ୍ତି ଯେ ସେ ଠିକ୍ ସାତଟା ବେଳେ ତୃତୀୟ ଘଣ୍ଟି ଦେବେ ଓ ସ୍କ୍ରିନ୍ ଖୋଲିବ । ବିଶ୍ୱଜିତ୍ ବହୁରୂପୀ । ସେ ଅତୀତରେ ନିର୍ଦ୍ଦେଶକର ଖୋଳପା ଭିତରୁ ବାହାରି ଆସି ବର୍ତ୍ତମାନ ଅବତୀର୍ଣ୍ଣ ହୋଇଛନ୍ତି ମଞ୍ଚ ପରିଚାଳକର ଭୂମିକାରେ ।

ଆଜି ଯୀଶୁ ଥିଲେ କହିଥାଆନ୍ତେ, 'ବିଶ୍ୱଜିତ୍‌ଙ୍କର ବାକ୍ୟ ପାଳିତ ହେଉ, ଆମେନ୍ ।'

ସବୁଆଡ଼େ ଅସମ୍ଭବ ବ୍ୟସ୍ତତା ।

ଅନେକ ଲୋକ ଏକା ସାଙ୍ଗରେ ଅନେକ କଥା କହିବାକୁ ଚେଷ୍ଟା କରୁଛନ୍ତି । ଆଉ ମାତ୍ର ଦଶ ମିନିଟ୍ ସମୟ ।

ମଞ୍ଚ ପରିଚାଳକ ଚାପାଗଳାରେ ଚିତ୍କାର କରୁଛନ୍ତି—ଦୀପ, ଦୀପ, ଆରେ ଦୀପଟା କେଉଁଠି ଅଛି ଆଣ—କି ଆଶ୍ଚର୍ଯ୍ୟ !.

ଘାଗରା କଣ୍ଠଟା ଫାଟିଯାଇ କିମ୍ଭୂତ କିମାକାର ଶୁଣାଯାଉଛି ସ୍ୱରଟା । ''ଆସ୍ତେ ବାବୁ—ଆସ୍ତେ—ତାରଟା'' ଚିଲ୍ଲେଇ ଉଠିଲା ମାଇକମ୍ୟାନ୍ । ଆଉ ଅଳ୍ପକେ ମାଇକ୍‌ର ତାରଟା ଛନ୍ଦି ଆତ୍ମଭୋଳା ପ୍ରଫେସର ସାହେବ ଓଙ୍ଗାଡ଼ି ହୋଇ ପଡ଼ିଥାଆନ୍ତେ ଟଟକା ବିଲାତ ଫେରନ୍ତା ମନୋଜ ବାବୁଙ୍କର ୟଂ ଡାର୍ଲିଂ ଲୀଳାବତୀ ଉପରେ ।

ଲୀଳାବତୀ ! ଲୀଳାବତୀ ଚିରହାସ୍ୟମୟୀ ।

ତାକୁ ଲେଖିଲେ ମନେ ହୁଏ ଯେପରି ହାଲୁକା ହସର ଗୋଟାଏ ଚିରନ୍ତନ ନିର୍ଝରିଣୀ ଉପରେ ଦୋଳାୟିତ ହେଉଛି ତା'ର ଈଷତ୍ ନୀଳ ଆଖିର ଦୁଇଟି ନୀଳ କମଳ ।

ରସିକା ଲୀଳାବତୀ ଟିପ୍‌ପଣୀ କଲା—ରଙ୍ଗମଞ୍ଚଟା ଦର୍ଶନ କ୍ଲାସ୍ ନୁହେଁ ଅଧ୍ୟାପକ...

ପଞ୍ଚାବନ ବର୍ଷର ପଳିତ କେଶ ଅଧ୍ୟାପକ ଫିକ କରି ହସିଦେଲେ । ସୁନ୍ଦର ଦାନ୍ତର ଜାବ ଭିତରୁ ପାଇପ୍‌ର ନାଡ଼ୀଟା ମୁକୁଳେଇ ନେଇ ଜବାବ ଦେଲେ— "ମୋର ଦୁର୍ଭାଗ୍ୟ ଲୀଳାବତୀ, ଏ ଦୁର୍ଘଟଣାଟା ଠିକ୍ ଯେପରି ଘଟିବା ଉଚିତ୍ ଥିଲା ସେପରି ଘଟି ପାରିଲା ନାହିଁ, କେବଳ ଯଦି ଏଇ ନିର୍ବୋଧ ମାଇକ୍ ମ୍ୟାନ୍‌ଟା ଏଠି ନଥାନ୍ତା..."

ତଳକୁ ମୁହଁ ପୋତିଲା ଲୀଳାବତୀ । କେବଳ ଦୁଇଟି ଭୂରୁ ଆସ୍ତେ ଆସ୍ତେ ଉଠିଲା ଉପରକୁ ଆଉ ଠିକ୍ ତାରି ତଳେ ଭାସମାନ ଦୁଇଟି ଢଳ ଢଳ ନୀଳ କମଳ ।

ସେମାନେ ଯେମିତି ମୁହଁ ଟେକି ଚାହୁଁଛନ୍ତି ପ୍ରତ୍ୟୁଷର ପ୍ରଥମ ସୂର୍ଯ୍ୟକୁ ।

ହଠାତ୍ ଗୋଟାଏ କୁତ୍ସିତ ଚିତ୍କାର—ଗଲା—ଗଲା ଜଳିଗଲା, ଲାଇଟ୍ ମ୍ୟାନ୍ ତା'ର ମୁଠା ଭିତରେ ଚାପି ଧରିଛି ଦୁଇନମ୍ବର ସ୍ମାରକଙ୍କର ପିନ୍ଧା ଲୁଗାରୁ ମେଞ୍ଚାଏ ।

ଯାଃ—ପୋଡ଼ିଗଲା ଲୁଗାଟା, ଭଦ୍ରଲୋକ ମୋଟା ଓ ସାମାନ୍ୟ ଅନ୍ୟମନସ୍କ । ଟିକିଏ ଅବସର ପାଇ ଚା' ଖାଇବା ଅବସ୍ଥାରେ କେହି ଦାୟିତ୍ୱହୀନ ଦୁର୍ବୃତ୍ତ ତାଙ୍କର ଲୁଗା ଉପରକୁ ଛାଟି ଦେଇଚି ଦରପୋଡ଼ା ସିଗାରେଟ୍‌ଟାକୁ । ଛିଃ—ଛିଃ...ହଉ ଛାଡ଼ ।

ମୁଁ ଖଣ୍ଡେ ଷ୍ଟୁଲ୍ ଉପରେ ସ୍ଥିର ହୋଇ ବସି ରହି ସମୁଦାୟ ପରିସ୍ଥିତିଟାକୁ ହୃଦୟଙ୍ଗମ କରିବାକୁ ଚେଷ୍ଟା କରୁଥିଲି । ମୋର ମନେ ହେଲା "ଟାୱାର୍ ଅଫ୍ ବାବେଲ୍" ତିଆରି କରିବାକୁ ଯେତେବେଳେ ମନୁଷ୍ୟମାନଙ୍କର ଆସ୍ପର୍ଦ୍ଧା ଚରମରେ ପହଞ୍ଚିଲା ସେତେବେଳେ ଭଗବାନ ଅଭିଶାପ ଦେଲାପରି ଆଜି ମଧ୍ୟ ଅଭିଶାପ ଦେଇଛନ୍ତି—

ତମମାନଙ୍କ ଭିତରେ ଭୁଲ୍ ବୁଝାମଣା ଆରମ୍ଭ ହେଉ—ତମେମାନେ କେହି କାହାର ଭାଷା ବୁଝି ନପାର ଓ ପରସ୍ପରକୁ ପ୍ରେମ ନକର—ଇତ୍ୟାଦି...ଇତ୍ୟାଦି....

ମୋର ଠିକ୍ ଡାହାଣକୁ ତମ୍ବୁ ଭିତରେ ଚାଲିଛି ରୂପସଜ୍ଜା । ଗୋଟାଏ ଟେବୁଲ୍ ଉପରେ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଛି କିଛି ରଙ୍ଗ—ଗୋଟାଏ ହାଇପାୱାର୍ ବଲବ୍— ଗୋଟିଏ ଲାଇଫ୍ ସାଇଜ୍ ଦର୍ପଣ—ଆଉ ଦୁଇହଳ ହାତ—ବାସ୍ ।

ସେଇ ଚଉକୀ ଉପରେ ପେଚ ଆଣ୍ଟିଲା ପରି ଯେଉଁ ଈଷତ୍ ମୋଟା ଲୋକଟା ବସି ରହିଛି ସେ ଯେମିତି ଗୋଟାଏ ଯାଦୁକର । ମେଞ୍ଚାଏ ମାଉଁସ ଭିତରୁ ଚାହିଁ ରହିଛି କେବଳ ଦୁଇଟି ତୀକ୍ଷ୍ଣ ଆଖିର ରଶ୍ମି । ଅସମ୍ଭବ ଆତ୍ମବିଶ୍ୱାସର ଓଜନ ନେଇ ବସି ରହିଛି ଲୋକଟା । ପଦେ ମଧ୍ୟ କଥା ନାହିଁ ତା' ମୁହଁରେ, ତଥାପି ସେ ଯେମିତି କହୁଚି....

ମତେ ପାଞ୍ଚମିନିଟ୍ ସମୟ ଦିଅ, ତମର ବୟସ ତେତିଶ୍‌ବର୍ଷ ଆଗେଇ ନେବି । ତମର ଏଇ କଳା ମଚ୍‌ମଚ୍ କୁଞ୍ଚୁକୁଞ୍ଚିଆ ବାଳକୁ ଅଦୃଶ୍ୟ କରିଦେଇ ମୁଣ୍ଡଟାକୁ ଚନ୍ଦା କରିଦେବି ମାଘ ମାସର ଖଳାବାରି ପରି । ତମର ନାକକୁ ଉଠେଇ ଦେବି ଆଉ ଇଞ୍ଚେ—ତମର ଆକ୍ଷିପତା ଉପରେ ଆଙ୍କି ଦେବି ଗୋଟାଏ ନକଲି ଆକ୍ଷି । ଟିକିଏ ରଙ୍ଗର ପ୍ରଲେପ—ଉଭେଇ ଗଲା ତମର ସାମ୍ନା ଦାନ୍ତ ଦୁଇଟା ।

ଆପଣ କିଏ ?

ମୁଁ ନାଟକର ନାୟକ ବିରୂପାକ୍ଷ—ଜମିଦାର ସନ୍ତାନ—ସଦ୍ୟ କଲେଜ୍ ଫେରନ୍ତା । ବାସ୍ ସେତିକି ଦରକାର—କିଛି ପାଉଡ଼ର୍, କିଛି ପାଣି ଆଉ କିଛି ଜିଙ୍କ୍—ଦି'ଟା ହାତର ପାପୁଲିର ଚାଲିଲା ଅବିରତ ଘର୍ଷଣ...ଏଠି...ହୁଁ—ଆକ୍ଷି ଉପରକୁ...ବେକ ତଳକୁ...କହୁଣୀ...କାମିଜ୍ ଟେକନ୍ତୁ—ଆହୁରି ଉପରକୁ....ଆହୁରି....

ହାତର ପାପୁଲି ଦିଟା ଚାଲିଚି ଇଞ୍ଜିନ୍‌ର ପିଷ୍ଟନ୍ ପରି ଥପ୍-ଥପ୍ ଥପ୍-ଥପ୍...ଅବିଶ୍ରାନ୍ତ ।

ଯେ ଗଲା ସାଧାରଣ ପ୍ରଲେପ—ଜମିଦାର୍ ସନ୍ତାନର ରଙ୍ଗ ଚାଲି ଆସିଲା ମୁହଁ ଆଉ ହାତ ଉପରେ—

ତା'ପରେ ଡିଟେଲସ୍—ସୂକ୍ଷ୍ମାତିସୂକ୍ଷ୍ମ ।

ଭଦ୍ରଲୋକଙ୍କର ଦୁଇଟା ତୀକ୍ଷ୍ଣ ଆକ୍ଷି କେବଳ ଆକ୍ଷି ନୁହଁ—ଏକାଥରକେ ହାଇପାୱାର୍ ଲେନସ୍ । ସେ ଭୂରୁର ବାଳଗୁଡ଼ାକ ଯେମିତି ଗଣି ପାରୁଛନ୍ତି ନିର୍ଭୁଲ୍ ଭାବରେ । ଦୁଇଟା ଭୂରୁ ଲାଗିଯାଇଚି ଏକାଥରକେ । ମୁହଁଟା କର୍କଶ ଦେଖାଯାଉଛି । ଦିଅ ଛୋଟ କତୁରୀଟାରେ ଦୁଇଭୂରୁ ମଝିର ଟେନାଏ ବାଳ କାଟି ଉଡ଼େଇ ଦିଅ । ଟିକିଏ ନରମି ଆସିଲା ମୁହଁଟା...ତାପରେ...ହଁ—ହସିଲା ବେଳେ ଗାଲ ପାଖରେ ଭାଙ୍ଗ ପଡ଼ିଯାଉଛି—ଦିଅ—ହାଇ ଲାଇଟ୍‌ର ଦୁଇଟା ଗାର ଟାଣିଦିଅ ସେଠି । ଭାଙ୍ଗ ପଡ଼ିବ ସତ କିନ୍ତୁ ହିପ୍ନୋଟାଇଜ୍‌ଡ଼ ଦର୍ଶକ ଦେଖିବେ ଗୋଟାଏ ନିଟୋଳ ମୁହଁ । ଓଠରେ ଅଲକ୍ତ ତୁଳୀର ଗୋଟାଏ ପ୍ରଲେପ । ବାସ୍ ସରିଲା—

ଆସ । ଆଉ କିଏ ?

ସାମ୍ନାରେ ଆସି ଉଦୟ ହେଲା ଗୋଟିଏ କ୍ଷୀଣକଟି—ଶଙ୍ଖଗ୍ରୀବା—ହାସ୍ୟଦୀପ୍ତ ମୁହଁ । ତମେ କିଏ ?

ମୁଁ, ମୁଁ ମଦିରାକ୍ଷୀ—ମହାନଗରୀର ବିଖ୍ୟାତ ନର୍ତ୍ତକୀ । ସ୍ମିତ ହସି ମଦିରାକ୍ଷୀ ଅନେଇ ରହିଛି ପେଣ୍ଟରର ମୁହଁକୁ । ସ୍ମିତ ଉପଭୋଗ କରିବାକୁ ପେଣ୍ଟର୍‌ର ସମୟ

ନାହିଁ । ସିନ୍ ଉଠିଗଲାଣି—ପନ୍ଦର ମିନିଟ୍ ସମୟ ଭିତରେ ମେକ୍-ଅପ୍ ସାରିବାକୁ ପଡ଼ିବ ।

ଭୂରୁ ଦୁଇଟାକୁ ଅସମ୍ଭବ ଲମ୍ବା କରିଦିଅ—କଜଳର ମୋଟା ଗାର ଟାଣିଦିଅ । ଆକ୍ଷିପତା ତଳେ ତଳେ—ଲୋଭନୀୟ କେଶଶ୍ରୀ ଭଦ୍ରମହିଳାଙ୍କର ! କେଶବିନ୍ୟାସର ପ୍ରୟୋଜନ ନାହିଁ । ଏଇ ବାଳର କୁଞ୍ଚିତ ଲହରୀ ଫଣା ତୋଳୁ ବିଷାକ୍ତ ନାଗିନୀ ପରି ! ଓଠ ଲାଲ୍ କର—ଆହୁରି ଲାଲ୍—ରକ୍ତମନ୍ଦାର ଲାଲ୍ । ଚୂର୍ଣ୍ଣକୁନ୍ତଳର ଦୁଇଟା ଅସଂଯତ ବୃତ୍ତ ତିଆରି କର କପାଳ ଉପରେ...

ନାଁ—ତଥାପି ହେଲାନି—ନାକଟାକୁ ଆଉ ଟିକିଏ ଉଠାଅ—ମୁହଁଟାକୁ ଆହୁରି ଧାରୁଆ କର—କାନରେ ଝୁଲେଇ ଦିଅ ନକଲି ମୁକ୍ତାର ଇୟରିଂ ।

ବାଃ ! ସୁନ୍ଦର ! ସ୍ଫଟିକର ଗଣ୍ଡଦେଶ ଉପରେ—ଶୁଭ୍ର ମୁକ୍ତାର ବିଳାସ । ନୂପୁରରେ ମୃଦୁ ଗୁଞ୍ଜରଣ ସୃଷ୍ଟି କରି ପ୍ରସ୍ଥାନ କଲେ ନର୍ତ୍ତକୀ ।

ଆଉ କିଏ ?

ଜମିଦାର୍ ଗୁମାସ୍ତା ।

ବାସ୍—ଚନ୍ଦା ମୁଣ୍ଡ—ଚୁଟି—କୋଟରଗତ ଆକ୍ଷି—କପାଳରେ ଅଜସ୍ର କୁଞ୍ଚନ—ଆଉ କିଏ ? ଆସ !

ପ୍ଲାବନ୍—ଲୋଫର୍ ।

ଭୂରୁ ଦୁଇଟାକୁ ଆହୁରି ମୋଟା କର—ନିଶ ଟିକିଏ ବଙ୍କା କରି ଉଠେଇ ଦିଅ ଉପରକୁ—ବା ଆକ୍ଷି ପାଖରେ ଗୋଟାଏ କଟା ଦାଗ ଆଙ୍କିଦିଅ—ସରିଲା । ଶୁଣନ୍ତୁ ପ୍ରଫେସର୍ ସାହେବ୍—

କ'ଣ—ପ୍ରଫେସର୍ ଫେରିଲେ ।

ପଛରେ ଭାବିଲି ଆପଣଙ୍କର ଚିବୁକରେ ଟିକିଏ ପୁଷ୍କାନ୍ ଦାଢ଼ି ସୁନ୍ଦର ମାନିବ ଆପଣଙ୍କୁ—ଖୁବ୍ ଅଚ୍ଛା । କିଛି କ୍ରେପ୍ ଆଉ ସ୍ପିରିଟ୍ ଗମ୍—ପଞ୍ଚାବନ ବର୍ଷ ଦାଢ଼ି—ଦାଢ଼ି ମଝିରେ ଧଳା ରଙ୍ଗର ଦୁଇ ଚାରିଟା ପୋଛ ଚଳେଇ ଆଣ । ହୁଁ ବେଶ୍ ହେଲା ।

ମଣିଷର ମୁହଁ ଗୁଡ଼ାକ ସେଠି ଆଉ ମୁହଁ ନୁହଁ—କେବଳ ର' ମେଟେରିଆଲ୍ । ସିନ୍ ପରେ ସିନ୍ ଉଠି ଚାଲିଚି ।

କିନ୍ତୁ ମୁଁ ବସି ରହିଚି ସେଇ ଷ୍ଟୁଲ୍ ଉପରେ । ମୋର ମେକ୍-ଅପ୍ ସରିଗଲାଣି । ମୁଣ୍ଡରେ ଗୋଟାଏ ମସ୍ତ ଠେକା ଆଉ ଠିକ୍ ଡାହାଣ ଆକ୍ଷିତଳକୁ ଗୋଟାଏ କୁତ୍ସିତ ଭାତୁଡ଼ି । ନାଁ-ଦୀନା । କାମ—ଜମିଦାରଙ୍କର ଚପ୍ରାସୀ । ମୋର ଆବିର୍ଭାବ ଦ୍ୱିତୀୟ ଅଙ୍କ ଏକାଦଶ ଦୃଶ୍ୟରେ ଓ ତିରୋଭାବ ମଧ୍ୟ ଠିକ୍ ସେଇ ଦୃଶ୍ୟରେ । ଏକ ମିନିଟ୍ ପରେ ।

ଜମିଦାର ଡାକିବେ—ଚପ୍ରାସୀ !

ମୁଁ 'ହଜୁର୍' କହି ଆବିର୍ଭାବ କରିବି ।

ଜମିଦାର୍ କହିବେ—'ବାହାରେ କିଏ' ?

ମୁଁ କହିବି—'ଆଜ୍ଞା, ଦୁଇଜଣ ବାବାଜୀ ।' ସେଦିନ ପାଇଁ ମୋର କାମ ଶେଷ । ଦୁଇଜଣ ନିର୍ଦ୍ଦେଶକ ମୋ ପାଇଁ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି । ଆବିର୍ଭାବ ସମୟରେ ମତେ ହାତଯୋଡ଼ି ପ୍ରବେଶ କରିବାକୁ ହେବ—କିନ୍ତୁ ମୋର ଦୁଇଟି ଅବାଧ ହାତ ପ୍ରାୟ ଛାତି ଉପରେ ଛକି ଦେଇ ରହିଥାଆନ୍ତି । ଯେମିତି ମୁଁ ଶୀତରେ ଥରୁଚି । ପ୍ରଥମରୁ କହିବାକୁ ହେବ 'ହଜୁର୍' କିନ୍ତୁ ମୁଁ ଥରେ ପ୍ରଥମରୁହିଁ କହି ପକାଇଲି 'ଆଜ୍ଞା, 'ଦୁଇଜଣ ବାବାଜୀ' ଓ ଦ୍ୱିତୀୟ ପ୍ରଶ୍ନର ଜବାବ ଦେଲି 'ହଜୁର' ।

ଥରେ ଗୋଟାଏ ଅକ୍ଷମଣୀୟ ଅପରାଧ କରିଥିଲି ଏବଂ ତା'ପରେ ମତେ ଆଉ ପାର୍ଟ ଦବାକୁ ସେମାନେ ପୂରାପୂରି ନାରାଜ ହେଉଥିଲେ । ବହୁ ଆୟାସ ସାଧ ତୋଷାମଦ ପରେ ମୁଁ ଶେଷ ପର୍ଯ୍ୟନ୍ତ ପାର୍ଟ ନେଇଛି । ଭୁଲ୍‌ଟା ଅବଶ୍ୟ ଅନେକଟା ଗଭୀର ମନସ୍ତତ୍ତ୍ୱର ବିଷୟ, ନିର୍ଦ୍ଦେଶକମାନଙ୍କର ସ୍ଥୂଳବୁଦ୍ଧିର ଅତୀତ । ସେଇ ଯେଉଁ ଜମିଦାରଟା ସେଠି ନିଶ ଫୁଲେଇ ମତେ ଡାକୁଛି 'ଚପ୍ରାସୀ' ବୋଲି ସିଏ ମୋର କ୍ଲାସ୍ ଫ୍ରେଣ୍ଡ୍...ତେଣୁ ରିହର୍‌ସାଲ୍‌ରେ ବିଡ଼ି ଖାଇ ଖାଇ ପ୍ରବେଶ କରି କହିଲି 'ହଜୁର' ।

କିନ୍ତୁ ମୁଁ ଶପଥ କରିଛି ପେଣ୍ଡାଲ୍ ଉପରେ ଏହାର ପୁନରାବୃତ୍ତି ହେବ ନାହିଁ ।

ବର୍ତ୍ତମାନ ୪ର୍ଥ ଦୃଶ୍ୟ ଚାଲିଛି । ମୋର ଆବିର୍ଭାବ ଆହୁରି ଅନେକ ସିନ୍ ବାକୀ ।

ତଥାପି ମୁଁ ବକଧାନରେ ଅପେକ୍ଷା କରି ରହିଛି ସେଇ କୁଶ୍ରାବ୍ୟ—ଅପମାନସୂଚକ 'ଚପ୍ରାସୀ' ଡାକଟାକୁ । ଡାକିବାଟାରେ ଅବଶ୍ୟ ସେପରି ବିବ୍ରତ ହେବାର କିଛି ନାହିଁ କିନ୍ତୁ ମୁଁ ଯେତେବେଳେ ଜମିଦାର ମୁହଁକୁ ଚାହେଁ ତା'ର ଉଦ୍ଧତ ଦୃଷ୍ଟି ସଂପୂର୍ଣ୍ଣ ଅସ୍ୱୀକାର କରେ ଯେ ମୁଁ ସେଇ ଇଡ଼ିୟଟର କ୍ଲାସମେଟ । ଠିକ୍ ସେଇଠି ମୋର ଧୈର୍ଯ୍ୟଚ୍ୟୁତି ହୁଏ ଓ ସ୍ମରଣ ଶକ୍ତି ଲୁପ୍ତ ହୁଏ—ନିଜକୁ ଜାହିର୍ କରିବାକୁ ଦୁଇଟା ହାତକୁ ଆଣି ଛାତି ଉପରେ ଛକି ବାନ୍ଧେ—ଆଉ ଅନିଚ୍ଛା ସତ୍ତ୍ୱେ ଦ୍ୱିତୀୟ ସଂଳାପଟାକୁ ପ୍ରଥମରୁ କହିପକାଏ 'ଆଜ୍ଞା ଦୁଇଜଣ ବାବାଜୀ ।'

ଦୁଇଜଣ ପାର୍ଥ-ଧନୁର୍ଦ୍ଧର ନିର୍ଦ୍ଦେଶକ ହତାଶ ହୋଇ ପରସ୍ପର ମୁହଁକୁ ଚାହାନ୍ତି ଓ କପାଳରୁ ଝାଳ ପୋଛନ୍ତି ।

କପେ ଚା' ଖାଇଲେ ଚଳନ୍ତା ।

ବାଧ ହୋଇ ଗୋଟାଏ ବିରାଟ ରିସ୍କ ନେଇ ଚାହାର ଦାତବ୍ୟ କେନ୍ଦ୍ର ଆଡ଼କୁ ଧୀରେ ଧୀରେ ଅଗ୍ରସର ହେଲି ।

୪ର୍ଥ ଦୃଶ୍ୟ ତାର ଶେଷ ପାଦରେ ପହଞ୍ଚିଛି—ଜମିଦାର ପୁତ୍ର ମଧ୍ୟରାତ୍ରିରେ ତାଙ୍କର ଶୋକାତୁରା, ପିତାମାତାଙ୍କୁ ଛାଡ଼ିଦେଇ ଗୃହତ୍ୟାଗ କରୁଛନ୍ତି—

ରଙ୍ଗମଞ୍ଚର ଆଲୋକ ମ୍ଳାନ ହୋଇଆସୁଛି ଧୀରେ ଧୀରେ ।

ପ୍ରେକ୍ଷାଳୟ ସ୍ତବ୍ଧ । ହାରମୋନିୟମ୍‌ର ଗୋଟାଏ ରିଡ୍ ଉପରେ ଆଙ୍ଗୁଠି ରଖି ଗଁ ଗଁ କରୁଛନ୍ତି ଗୁରୁଚରଣ, ବେହେଲା ବାଦକଙ୍କର ବିରାମ ନାହିଁ ।

ଭାଓଲିନ୍‌ର ତାର ଉପରେ ଅବିଶ୍ରାନ୍ତ ଘଷି ଚାଲିଛନ୍ତି ଛଡ଼ିଟାକୁ...

କି ମର୍ମସ୍ପର୍ଶୀ ସେ ସଙ୍ଗୀତ ! କିଏ ଯେମିତି କଇଁ କଇଁ ହେଇ କାନ୍ଦି ଉଠୁଛି...

ବିରୂପାକ୍ଷ ତାଙ୍କର ପ୍ରିୟ ବାସଗୃହ ଉଦ୍ଦେଶ୍ୟରେ ଶେଷ ନମସ୍କାର ଜଣାଇବାକୁ ହାତ ଟେକୁଛନ୍ତି ।

କ୍ଲାଇମାକ୍‌ସ !

ଠିକ୍ ଏଇ ଚରମ ମୁହୂର୍ତ୍ତରେ ମୁଁ ଅଧକପେ ଚା' ଖାଇବାକୁ ଗୋପନ ଅଭିସାର ଆରମ୍ଭ କରିଛି ।

ଗ୍ରୀନ୍‌ରୁମ୍‌ର ଆଲୋକ ଅତି ଅଳ୍ପ—ସେଇ ଆଲୁଅରେ—ଉଇଙ୍ଗସ୍‌ର ଫାଙ୍କରେ ନାଟକ ଦେଖିବାର ଲୋଭରେ ଅନ୍ୟମନସ୍କ ରହି ମୁଁ ଚାଲିଛି ।

ମତେ ଗୋଟାଏ ଦୁରୂହ ପଥ ଅତିକ୍ରମ କରିବାକୁ ପଡ଼ିବ । ଡାଇରେକ୍ଟରଙ୍କର ଜୋତା ଉପରେ ଗୋଡ଼ ଦେଇ—ରିକ୍‌ସାବାଲାର ଟୋପିକୁ ଚେପା କରି—ବିଶ୍ରାମରତା ଲୀଳାବତୀର ଗଭାରୁ ଫୁଲହାର ଖସେଇ—ମତେ ଏକାଥରକେ ଲମ୍ଫ ଦେବାକୁ ପଡ଼ିଲା ସ୍ମାରକଙ୍କର ଅଯତ୍ନ ଲୁଣ୍ଠିତ ସୁପରଫାଇନ୍ ଧୋତି ଉପରକୁ ।...

କିନ୍ତୁ ତା'ପରେ ଆଉ ଯାଏ କୁଆଡ଼େ ?

ଚତୁର୍ଦ୍ଦିଗ ରୁଦ୍ଧ—କିନ୍ତୁ ନଯାଇ ଉପାୟ ନାହିଁ, ବାଁ ପାଦର ଏକମାତ୍ର ବୁଢ଼ା ଆଙ୍ଗୁଠିଟା ଉପରେ କେତେ ସମୟ ମୋର ସମୁଦାୟ ଶରୀରର ଭାରକେନ୍ଦ୍ର ଠିକ୍ ରଖିପାରିବି ? (ମୋର ଓଜନ୍ ୧୪୩ ପାଉଣ୍ଡ) ଅନନ୍ୟୋପାୟ ହୋଇ ଡାହାଣ ପାଦଟାକୁ ବଢ଼େଇଲି ସିଧା ଗୁଡ଼ାଏ ପିଛିଳ ବାସନ ଗଦା ଉପରକୁ ।

ତା'ପରେ—

ହଠାତ୍ ସମସ୍ତ ସଙ୍ଗୀତକୁ ବୁଡ଼େଇ ଦେଇ କେବଳ ଗୋଟିଏ ମାତ୍ର ସଙ୍ଗୀତ ଶୁଣାଗଲା । ସମସ୍ତଙ୍କୁ—ଝନ୍—ଝନ୍—ଝିଁ—ଝିଁ—ଝିଁ....

ବାସନର ଝନତ୍କାର ସମସ୍ତଙ୍କ ଆଖି ଫେରାଇଲା ମୋ ଆଡ଼େ । ଦୁର୍ଭାଗ୍ୟ ଆହୁରି ବାକୀ ଅଛି । ନିଜକୁ ପ୍ରାୟ ପଡ଼ିବା ଅବସ୍ଥାରୁ ରକ୍ଷା କରିବାକୁ ଯାଇ କୁଆଡ଼େ

ବାଁ ଗୋଡ଼ ସାହାଯ୍ୟରେ ବେହେଲାବାଦକଙ୍କୁ ଗୋଟାଏ ଗୋଇଠା ମାରିଲି ଅକସ୍ମାତ୍ । ଫଳରେ ଛଡିଟା ତାଙ୍କ ହାତରୁ ଛିଟିକି ପଡ଼ିଲା ଷ୍ଟେଜ ଉପରକୁ ଆଉ ବେହେଲାର ଗୋଟାଏ ତାର ମଧ୍ୟ ଛିଣ୍ଡିଗଲା ।

ଦୃଶ୍ୟ ସମାପ୍ତ ହୋଇଛି—ହୁଇସିଲ ବାଜିଲା—ଆଲୁଅ ଲିଭିଲା—ସୌଭାଗ୍ୟ । ମୋ' ଉପରେ ବିଭିନ୍ନ ଲୋକଙ୍କର ଆକ୍ଷେପ, କଟୂକ୍ତି ଓ ସମାଲୋଚନା ବର୍ଣ୍ଣନୀୟ ନୁହେଁ ।

କିନ୍ତୁ ସମସ୍ତେ ଗୋଟାଏ ବିଷୟରେ ଏକମତ ଯେ ଏଇ ନିର୍ଦ୍ଦିଷ୍ଟ ଦୃଶ୍ୟର କ୍ଲାଇମାକ୍ସବେଳେ ବାସନର ଏଇ ଆକସ୍ମିକ ଝନତ୍କାର ଓ ତାର ଛିଣ୍ଡିବାର ଏଇ ତୀକ୍ଷ୍ଣ ସ୍ୱର ସ୍ଫୁଲିଙ୍ଗ ଆଶ୍ଚର୍ଯ୍ୟ effect ସୃଷ୍ଟିକଲା ।

ପ୍ରେକ୍ଷାଳୟ ଏଥିପାଇଁ ମୁକ୍ତକଣ୍ଠରେ ସଙ୍ଗୀତ ନିର୍ଦ୍ଦେଶକଙ୍କୁ ଅଜସ୍ର ସାଧୁବାଦ ଦେଲେ ।

ଚାହାଛତ୍ର ପାଖରେ ପହଞ୍ଚି ଦେଖେ ଗୋଟାଏ ମସ୍ତବଡ଼ ଟେବୁଲ ଉପରେ ଯେମିତି ଅନେକ ଚାହା କପ୍‌ର ଗୋଟାଏ ଆନ୍ତଃପ୍ରାଦେଶିକ ସମ୍ମିଳନୀ ବସିଛି । ପ୍ରତି କପ୍‌ରେ କିଛି ନା କିଛି ଚାହା ଅବଶିଷ୍ଟ ଅଛି । ପରିତ୍ୟକ୍ତ ଚାହାର ଏଇ ବହୁ ବିଭିନ୍ନ ପରିମାଣର ସୁଯୋଗ ନେଇ ଯେ କେହି ଇଚ୍ଛା କଲେ ଜଳତରଙ୍ଗ ବଜେଇ ପାରନ୍ତା ।

କେହି ଜଣେ କପେ ଚା' ଆଣି ଥୋଇଦେଲା ମୋ ସାମ୍ନାରେ ।

କପ୍‌ରେ ଚୁମୁକ୍ ଦେଲି । ଆଃ ! କି ତୃପ୍ତି । ଉଷ୍ଣ ଚା'ର ସ୍ପର୍ଶ ମୋର ବିମର୍ଷ ସ୍ନାୟୁ ଗୁଡ଼ାକୁ ଟିକିଏ ଜୀବନ୍ତ କଲା ପରି ମନେ ହେଲା ।

ହତଭାଗାର ବହୁବାଞ୍ଛିତ ଅଭିଳାଷ ପୂରଣ ହେଲା ।

ଦାତବ୍ୟ ଚା' କେନ୍ଦ୍ରକୁ ଲାଗି ଗୋଟିଏ ଛୋଟ ତମ୍ବୁ ପଡ଼ିଛି ନାରୀମାନଙ୍କର ସ୍ୱତନ୍ତ୍ର ପ୍ରସାଧନ କକ୍ଷ ।

କ୍ଷୁଦ୍ର ତମ୍ବୁଟିକୁ ରୂପର ମହିମାରେ ଉଜ୍ଜ୍ୱଳ କରି ବସି ରହିଛନ୍ତି ନିଦ୍ରାଦେବୀ । ଦେଖିଲେଇ ମନେହୁଏ ସେ ଅସାଧାରଣ—ସ୍ୱତନ୍ତ୍ର ଏକକ ।

ଗୋଟାଏ ସୂକ୍ଷ୍ମ ବ୍ରୁସ୍ ସାହାଯ୍ୟରେ ସେ' ତାଙ୍କର ଆଖି ପତାର ଝିଲିମିଲି ବାଳ ଗୁଡ଼ିକରେ କଳା ରଙ୍ଗର ପୁଟ୍ ଦଉଛନ୍ତି । ସେ ଅଳଙ୍କାରର ବିରୋଧୀ, ଜେଟ୍ କଳା ଖଣ୍ଡେ ରେଶମ୍‌ର ଫିତା ଦେହରେ ଝୁଲି ରହିଛି । ଗୋଟିଏ କ୍ଷୁଦ୍ର ଲକେଟ୍—ଲକେଟ୍ ତ ନୁହଁ ପ୍ଲାଟିନମ୍‌ର ଗୋଟାଏ ନିଖୁଣ ହାଇହିଲ ଜୋତା । ସେତିକି । ରୁଚି ଅସହ୍ୟ, କିନ୍ତୁ ଥରେ ଅଭ୍ୟସ୍ତ ହୋଇଗଲେ ମାନିବାକୁ ହୁଏ ଅସାମାନ୍ୟ । ଈଷତ୍ ଲମ୍ବା ମୁହଁର ଚାରିପଟେ ଭାଙ୍ଗି ଭାଙ୍ଗି ପଡୁଚି ସାମ୍ପୁକରା ବବ୍ ହେଆର୍‌ର ଅସଂଖ୍ୟ ଲହରୀ ।

ଟିକିଏ ଦୂରରେ ଖଣ୍ଡେ ଡେକ୍ ଚେଆର୍‌ରେ ଆଉଜି ରହି ନିବିଷ୍ଟ ଚିତ୍ତରେ ପାଇପ୍ ଟାଣୁଥିଲା ସୃଜନ । ଚତୁର୍ଦ୍ଦିଗର ଏ କୋଳାହଳ ଭିତରେ ସେ ଆତ୍ମ-ବିସ୍ମୃତ ।

ହାତର ତୂଳୀଟାକୁ ଟେବୁଲ ଉପରେ ଦୁଇଥର ପିଟି ନେଇ ନିଦ୍ରା ସୃଜନର ଦୃଷ୍ଟି ଆକର୍ଷଣ କଲା ।

ନିଦ୍ରା ଓ ସୃଜନ ଉଭୟେ ଶାନ୍ତିନିକେତନର ସହପାଠୀ ।

ନିଦ୍ରା ଗୀତ ଗାଏ—ସୃଜନ ଛବି ଆଙ୍କେ ।

ଦୁଇଟା ଅବାଧ ପାଦକୁ ନାଏଗ୍ରା ଚପ୍‌ପଲ୍‌ର ଖୋଳ ଭିତରେ ଘୋଷାରି ଘୋଷାରି ନିଦ୍ରାର ଟେବୁଲ ପାଖରେ ପହଞ୍ଚିଲା ସୃଜନ । ବାଁ ହାତର ବୁଢ଼ା ଆଙ୍ଗୁଠି ଆଉ ତର୍ଜନୀ ସାହାଯ୍ୟରେ ନିଦ୍ରାର ଚିବୁକଟାକୁ ଟେକିଧରି ତା'ର ଦୁଇଟା ଭୂରୁରେ ତୂଳୀ ଚଳାଉଛି ସୃଜନ...

ନିଦ୍ରା ଉପରକୁ ଈଷତ୍ ମୁହଁ ଟେକି ନିଶ୍ଚଳ ହୋଇ ଠିଆ ହୋଇ ରହିଛି କୋଣାର୍କର ଶିଳା-ମୂର୍ତ୍ତି ପରି...ଆଉ ସୃଜନର ଦୁଇଟା ଲମ୍ୱା ଲମ୍ୱା ଆଖିରେ ଉଛୁଳି ପଡୁଛି ସୃଷ୍ଟିର ଆନନ୍ଦ ।

ସୃଜନ ଶିଳ୍ପୀ—ନିଦ୍ରା ତାର ଶିଳ୍ପ ।

କ୍ଲାନ୍ତିର ଦୀର୍ଘନିଶ୍ୱାସ ନେଇ ଡାକିଲା ସୃଜନ୍ 'ନିଦ୍ରା' !

"ଉଁ—କୁହ ।"

"ଆକାଶରେ ମୁଁ ଅନେକଥର ଇନ୍ଦ୍ରଧନୁ ଦେଖିଛି—କିନ୍ତୁ ଚନ୍ଦ୍ରରେ ଇନ୍ଦ୍ରଧନୁ ଆଜି ଦେଖୁଚି ପ୍ରଥମ ।"

"ମାନେ ?"

"ମାନେ...ତମର ଏଇ ଦୁଇଟା ସୁଗଠିତ ଭୂରୁକୁ ଆଉ କ'ଣ ଯେ କମ୍ପ୍ଲିମେଣ୍ଟ ଦେବି ବୁଝିପାରୁ ନାହିଁ । ....ଇଚ୍ଛା ହୁଏ....।

ଈଷତ୍ ହସିଲା ନିଦ୍ରା ।

ନିକଟରେ ଆଉ କିଏ ଅଛି କି ନାହିଁ ପରୀକ୍ଷା କରିନବାକୁ ସୃଜନ ଚାରିଆଡ଼କୁ ଚାହିଁନେଲା ଥରେ ।

ମୁଁ ଅତ୍ୟନ୍ତ ନିବିଷ୍ଟ ଚିତ୍ତରେ ଶୂନ୍ୟଗର୍ଭା କପ୍‌ଟାକୁ ଓଠ ପାଖକୁ ନେଲି ।

ଭୂରୁ ଅଙ୍କନ ସମାପ୍ତ ହେଇଛି ।

ନେଲ୍‌ବ୍ରସ୍‌ରେ ନଖଗୁଡ଼ାକୁ ମାଜି ନଉ ନଉ ଜବାବ୍ ଦେଲା ନିଦ୍ରା—

''ଭୂରୁ ଦୁଇଟା ତ ଆଖିର ସହକାରୀ ଅଳଙ୍କାର କେବଳ—ମୋର ଆଜି କ'ଣ ଇଚ୍ଛା ହଉଛି ଜାଣ ସୃଜନ୍—ଆଜି ରାତିର ଅଭିନୟ ପାଇଁ ଯଦି ତମଠାରୁ ତମର ଉଜ୍ଜ୍ୱଳ ଆଖି ଦୁଇଟା ମୁଁ ଧାର୍ ନେଇ ପାରନ୍ତି—''

ଘଣ୍ଟା ବାଜିଲା ।

ପ୍ରଥମ ଅଙ୍କ ସମାପ୍ତ ।

ଆଉ ସମୟ ନାହିଁ—ଦ୍ୱିତୀୟ ଅଙ୍କ ପ୍ରଥମ ଦୃଶ୍ୟରେ ନିଦ୍ରାଦେବୀଙ୍କୁ ପାର୍କର ଗୋଟାଏ ବେଞ୍ଚ୍ ଉପରେ ବସି ଅସ୍ଥିର ଚିତ୍ତରେ ଅପେକ୍ଷା କରିବାକୁ ପଡ଼ିବ ସୃଜନ୍‌କୁ ।

ଟିକିଏ ଇତସ୍ତତଃ ହୋଇ ନିଦ୍ରା ଦେବୀ ବାହାରିଲେ ଶାଢ଼ୀ ବଦଳାଇବାକୁ । ସୃଜନ୍ ଉପରେ କଟାକ୍ଷ ହାଣି କହିଲେ—

''ଇନ୍‌ଟ୍ରୁଡ଼ରସ୍ ପ୍ଲିଜ୍ କୁଇଟ୍''...

ସୃଜନ୍ ଯେମିତି କିଛି ଶୁଣି ପାରି ନାହିଁ—ସେ' ଖଣ୍ଡେ ବରଫର ଛୋଟ ପାହାଡ଼ ଉପରେ ଗଭୀର ଏକାଗ୍ରତାର ସହିତ ବିଅର୍ ଢାଳୁଚି ଆଉ ଢାଳୁଚି ।

ସୃଜନ୍ ଆଉ ନିଦ୍ରା ଭିତରେ ଆବରଣର ଗୋଟାଏ ବାହାନା ତିଆରି କରିବାକୁ ଝୁଲି ରହିଛି ଖଣ୍ଡେ ବଡ଼ ଟର୍କିସ୍ ଟାୱେଲ୍ । ଆଉ ଠିକ୍ ତା'ରି ଆରପଟେ ନିଦ୍ରା ଦେବୀଙ୍କର ଉଜ୍ଜ୍ୱଳ ଗହମ ରଙ୍ଗର ତନୁଶ୍ରୀ ସଂପୂର୍ଣ୍ଣ ନିରାଭରଣା—ନିରାଶ୍ରୟା ।

ବିଅର୍ ଗିଲାସର ଫାଙ୍କ ଦେଇ ଆମୋଦ ମିଶା ଆଖିରେ ସୃଜନ୍ ଲକ୍ଷ୍ୟ କରୁଛି ନିଦ୍ରା ଦେବୀଙ୍କର ଦୁଇଟା ନଗ୍ନ କଲାର୍ ବୋନ୍ ଆଉ ଆଣ୍ଠୁର ଦୁଇଟା ଧୂସର ଜଏଣ୍ଟକୁ ।

କେତେବେଳେକେ କହିଲା ସୃଜନ୍, ''ହାୟ ଭଗବାନ୍—କି ଅବିଚାର ! ସେ ଯୁଗର ଲାଞ୍ଛିତା ପାଞ୍ଚାଳୀ ପାଇଁ ଟନ୍ ଟନ୍ ଶାଢ଼ୀ ଅଥଚ ଏ ଯୁଗର ବିବସ୍ତ୍ରୀ ଉର୍ବଶୀ ପାଇଁ ଦେଢ଼ଫୁଟ ଓସାରର ଖଣ୍ଡେ ଟାୱେଲ ! 'ବେଟର୍ ଲେଟ୍ ଦ୍ୟାନ୍ ନେଭର୍' କହି ଗୋଟାଏ ଝାଙ୍କରେ ତଉଲିଆଟାକୁ ଝାମ୍ପି ନେଲା ସୃଜନ୍ ନିତାନ୍ତ ଅପ୍ରତ୍ୟାଶିତ ଭାବରେ ।

କିନ୍ତୁ ହାୟ ! ନିଦ୍ରା ଦେବୀଙ୍କର ବେଶବିନ୍ୟାସ ସରିଆସିଛି । ନଇଁପଡ଼ି ଜୋତାର ଷ୍ଟ୍ରାପ୍ ଦଉ ଦଉ ଜବାବ୍ ଦେଲା ନିଦ୍ରା—

''ଏ ଯୁଗର ଦୀର୍ଘସୂତ୍ରୀ ଦୁଃଶାସନ ପାଇଁ ସେଇ ଆବରଣ ହିଁ ଯଥେଷ୍ଟ ।'' ଆଉ କିଛି ଜବାବ୍ ନାହିଁ ।

କିଛି ହତାଶା, କିଛି ଲଜ୍ଜା, ଆଉ ବିଅର୍‌ର କିଛି ଆମୋଦ୍—ସବୁକିଛି ମିଶିଯାଇ ସୃଜନ୍‌ର ଲଜ୍ଜାରୁଣ ମୁହଁ ସୁନ୍ଦର ଦେଖାଯାଉଛି ।

ଖାଲି ବିଅର୍ ବୋତଲଟାକୁ ଘାସ ଉପରେ ଗଡ଼େଇ ଦେଲା ସୃଜନ୍ ।

ସେଣ୍ଟି ପରି ଜୋତାର ହିଲ୍ ଉପରେ ଦେହର ଭାର ରଖି ହଠାତ୍ ମୁହଁ ବୁଲେଇ ନେଲା ପ୍ଲାବନ୍ । ସେ କେତେବେଳୁ ଆସି ମୋ ପାଖରେ ଠିଆହୋଇ ଏଇ ଜନାନ୍ତିକ ନାଟିକା ଉପଭୋଗ କରୁଥିଲା । କିନ୍ତୁ ସେ କ'ଣ ଠିକ୍ ଉପଭୋଗ କରୁଥିଲା...!

ମୁଁ ତରତରରେ ଦ୍ୱିତୀୟ କପ୍ ଚା'ର ଅବଶିଷ୍ଟାଂଶ ଗଳାଧଃକରଣ କଲି । ଠିକ୍ ଯାହା ଆଶଙ୍କା କରୁଥିଲି ସେଇଯାଇ ଘଟିଲା ।

ମୋର କାନ ପାଖରେ ବଜ୍ରନିର୍ଘୋଷ ସ୍ୱରରେ ଘୋଷିତ ହେଉଛି ଜମିଦାର୍‌ଙ୍କର ଜଳଦ-ଗମ୍ଭୀର ସମ୍ଭାଷଣ—ଦୀନା ! ଦୀନା !

କିନ୍ତୁ ମୁଁ ଯେ ଅନେକ ଦୂରରେ । .

ପ୍ରାୟ ୨୦ ଫୁଟ ଦୂରତ୍ୱକୁ ମାତ୍ର ଦୁଇଟି ଲମ୍ଫରେ ଅତିକ୍ରମ କରି ମୁଁ ଆସି ଉଇଙ୍ଗ୍‌ସ ପାଖରେ ହାଜର । ସେତେବେଳକୁ ଅବସ୍ଥା ପ୍ରାୟ ସାଂଘାତିକ । ବାବାଜୀ ଦୁଇଜଣ ପ୍ରବେଶମୁଖୀ ଅଥଚ ପ୍ରବେଶ କରିବାକୁ ଅସମର୍ଥ । ଜମିଦାର୍ ପିଞ୍ଜରାବଦ୍ଧ ବାଘପରି ପଇଁତରା ମାରୁଛନ୍ତି ଆଉ ତୁହାକୁତୁହା ହେଣ୍ଟାଳୁଛନ୍ତି—ଦୀନା—ଦୀନା !

ମଞ୍ଚ ଉପରକୁ ମୁଁ ଇଚ୍ଛାକରି ପ୍ରବେଶ କରିନାହିଁ । କୌଣସି ବ୍ୟକ୍ତିର ଅର୍ଦ୍ଧଚନ୍ଦ୍ର ମତେ ମଞ୍ଚ ଉପରକୁ ଆସିବାକୁ ଅନେକ ସାହାଯ୍ୟ କଲା ପରି ମନେହେଲା । ଭଦ୍ରଲୋକ ଯେ କେହି ହୁଅନ୍ତୁ ଏବେ ମଧ ସକାଳୁ ଦଣ୍ଡ ବୈଠକି ମାରିବାର ସ୍ୱାସ୍ଥ୍ୟପ୍ରଦ ଅଭ୍ୟାସ ନିଶ୍ଚିତ ଭାବରେ ରଖିପାରିଛନ୍ତି ।

କିନ୍ତୁ ଯେ କ'ଣ ? କେଉଁଠିକି ଆସିଲି ମୁଁ ? ବହୁ ଦେଶ ଦେଶାନ୍ତର ମୁଁ ପର୍ଯ୍ୟଟନ କରିଛି କିନ୍ତୁ ଏ ସ୍ଥାନର ଭୂଗୋଳ ବିଷୟରେ ମୋର ଏତେଟିକେ ମଧ ଧାରଣା ନାହିଁ ।

ଶିକାରୀର ସର୍ଚ୍‌ଲାଇଟ୍ ପରି ମୋରି ମୁହଁ ସାମ୍ନାରେ ଦାଉ ଦାଉ ହେଇ ଜଳୁଚି ଦୁଇଟା ଆଲୁଅ । ଆଉ ସେ ଆଲୁଅର ପଛପଟେ ଧାଡ଼ି ଧାଡ଼ି ହେଇ କଳା ବାକରେ ଛାଉଣୀକରା ଅସୁମାରୀ ମୁଣ୍ଡ ନିଶ୍ଚଳ ଭାବରେ ଅପେକ୍ଷା କରି ରହିଛନ୍ତି । ଏମାନେ କ'ଣ ମତେ ଶିକାର କରିବାକୁ ବସିଛନ୍ତି ! ମନ ଭିତରେ ତୁହାକୁତୁହା ଉତୁରି ପଡ଼ିଲା ସେହି ନିଃସହାୟ ମୃଗୀର ଜଣାଣ—

ଲକ୍ଷ ଯୋଜନରୁ ଡାକିଲା ଗଜ....ତା' ଡାକ ଶୁଣିଲ....କିନ୍ତୁ ଅବସ୍ଥାର କିଛି ପରିବର୍ତ୍ତନ ହେଲା ନାହିଁ । ମୋ ମୁହଁକୁ କଟ୍‌ମଟ୍ କରି ଅନେଇ ଠିଆ ହେଇଚି ସତକୁ ସତ ଗୋଟାଏ ବୃଦ୍ଧ ଜମିଦାର—ସେ ପୁଣି ଶୀର୍ଷାସନ କଲାପରି ମୁଣ୍ଡରେ ଠିଆ ହୋଇ ଗୋଡ଼ ଦୁଇଟାକୁ ଟେକିଛନ୍ତି ଉପରକୁ ।

ରଙ୍ଗମଞ୍ଚ ଦୋଳାୟିତ ହେଉଛି ଓ ତା'ର ବିପରୀତ ଦିଗରେ ଦୋଳାୟିତ ପ୍ରେକ୍ଷାଳୟ ।

ମୁଁ କେଉଁଠି ? ପ୍ରେକ୍ଷାଳୟରେ ନାଁ ରଙ୍ଗମଞ୍ଚରେ ? ପ୍ରତିଟି ଉଇଙ୍ଗ୍‌ସ ପାଖରେ ଅନେକ ମୁହଁ ଭୀଡ଼ ବାନ୍ଧି ଠିଆ ହେଇଛନ୍ତି । ଇସ୍ ! କି ବିରକ୍ତିକର ! କାନ ପାଖରେ ତୁହାକୁତୁହା ଆସି ବାଜୁଛି ଗୋଟାଏ ଫିସ୍ ଫିସ୍ ଆବାଜ୍—

କହ—କହ—ହଜୁର—ଦୀନା—କହ ହଜୁର୍ ! ....ନିର୍ଦ୍ଦେଶକ ବଦ୍ଧମୁଷ୍ଟିରେ ଅଜସ୍ର ଆସ୍ଫାଳନ କରି ଦାନ୍ତ କିଟ୍‌ମିଟ୍ କରୁଛନ୍ତି । ଏ ଦୂରବସ୍ଥାରେ ମଧ୍ୟ ହସ ମାଡ଼ିଲା ମତେ ନିର୍ଦ୍ଦେଶକଙ୍କୁ ଦେଖି । ଭଦ୍ରଲୋକ କି ପ୍ରଚଣ୍ଡ ରାଗି, କିନ୍ତୁ ମୋର କିଛି କରି ପାରିବେ ନାହିଁ—ମୁଁ ସମ୍ପୂର୍ଣ୍ଣ ନିରାପଦ ।

ଏକ ନମ୍ବର ସ୍ମାରକ ବିଚରା ଭଦ୍ରଲୋକ, କେବଳ ମୁହଁଟାକୁ ଆଁ କରି ଅନେଇ ରହିଛନ୍ତି ମତେ । କିନ୍ତୁ ଦୁଇ ନମ୍ବର ସ୍ମାରକ ନିତାନ୍ତ ଅବଷ୍ଟିନେଟ୍—ପୁଣି ସେହି ଫିସ୍ ଫିସ୍...

ଇଡ଼ିୟଟ୍ କୋଠିକାର—ଆବେ ଦୀନା ! କହ—ହଜୁର ହଜୁର । କାହାକୁ ସେ' ଲୋକଟା କହୁଚି 'ହଜୁର' ବୋଲି, 'ହଜୁର'ତ ମୋର କହିବା କଥା । ଇଲେକ୍‌ଟ୍ରିକ୍ ସକ୍ ପରି ମୋର ଚେତନା ସଞ୍ଚାର ହେଲା । ଆରେ ସତେ !

କିନ୍ତୁ ମତେ କିଛି କହିବାର ସୁଯୋଗରୁ ବଞ୍ଚିତ କରି ରାଗରେ ଫାଟି ପଡ଼ିଲେ ଜମିଦାର, ''ବୁଝିଲ ଦୀନବନ୍ଧୁ—ତମ ପରି ବୁଦ୍ଧିମାନ ଚାକର ପାଇ ମୋର ଏ ବୁନିଆଦି ବଂଶ ଧନ୍ୟହେଲା । ଦୟାକରି ବାହାରେ ଅପେକ୍ଷା କରିଥିବା ଭଦ୍ରଲୋକମାନଙ୍କୁ ଭିତରକୁ ଆସିବାକୁ କୁହ ।

ଯେ ପୁଣି କ'ଣ ? ସବୁ ଗୋଳମାଳ ହେଇଗଲା ପୁଣିଥରେ । ରିହରସାଲରେ ତ ଜମିଦାର ଏପରି କେବେ କହିବାର ମୁଁ ଶୁଣି ନାହିଁ । ମୋର କ'ଣ କହିବା ଉଚିତ୍ । ସେ ଯାହାହେଉ ମୁଁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ସଂଳାପର ନିୟମ ପ୍ରଥମେ ଯେ ଭାଙ୍ଗିଚି ତା'ର ପରବର୍ତ୍ତୀ ସମସ୍ତ ପରିଣାମ ପାଇଁ ସେ ଲୋକ ଦାୟୀ ହବ ।

କିନ୍ତୁ ଏମାନେ ମତେ ଡାକୁଛନ୍ତି କାହିଁକି ? ଦୁଇପଟର ଉଇଙ୍ଗସ୍ ଗୁଡ଼ାକ ଭିତରେ ଆତ୍ମଗୋପନ କରିଥିବା ସବୁ ଲୋକ ହାତଠାରି ଡାକୁଛନ୍ତି । ପୁଣି ସେହି ଅଶ୍ଳୀଳ ଫିସ୍ ଫିସ୍ ଶବ୍ଦ—ଦୀନା, ଚାଲିଆ—ଚାଲିଆ....କୁଆଡ଼େ ଯିବି ମୁଁ ଏ ପଟକୁ ନା ସେପଟକୁ ?

ଇସ୍ ! ସାଙ୍ଘାତିକ୍ ଅଭଦ୍ର ଅଡ଼ିଏନ୍‌ସ । ଖାଲି ତାଳି, ହସ ଆଉ ତୀବ୍ର ହୁଇସିଲ୍‌ରେ ଅଡ଼ିଟୋରିୟମ୍ ଫାଟି ପଡୁଛି, କଳାର କମଳ ବନରେ ଏମାନେ ହେଉଛନ୍ତି ଅନିବାର୍ଯ୍ୟ ପେଚକର ଦଳ ।

ମୋର ଗୋଡ଼ର ବଳାଗଣ୍ଠି ପାଖରେ ବଜ୍ରମୁଷ୍ଟିରେ ଧରି ମତେ କିଏ ଟାଣୁଚି ! ଲକ୍ଷ୍ୟକଲି ନିର୍ଦ୍ଦେଶକ ଗ୍ରୀନ୍‌ରୁମ୍‌ର ଚଟାଣ ଉପରେ ତାଙ୍କର ସମୁଦାୟ ଶରୀରର ଦୈର୍ଘ୍ୟ ମାପି ଦୁଇଟା ହାତରେ ମତେ ଟାଣି ଲାଗିଛନ୍ତି ।

ମୁଁ ନିରୁପାୟ ! ହୁଏତ ଯିବି ନ ହେଲେ ମଞ୍ଚ ଉପରେ ଓଲଟି ପଡ଼ିବି । ତେଣୁ ମତେ ଯିବାକୁ ହିଁ ହେଲା । ଗଲାବେଳେ ଅବଶ୍ୟ ଉଇଙ୍ଗ୍‌ସ କରରେ ଅପେକ୍ଷା କରି ରହିଥିବା ଦୁଇଜଣ ବାବାଜୀଙ୍କ ସହିତ ଟିକିଏ ଆକ୍‌ସିଡ଼େଣ୍ଟ୍ ହୋଇଗଲା—କିନ୍ତୁ ସେ ଅତି ସାମାନ୍ୟ ।

ଏଇ ନଗଣ୍ୟ ସଂଘର୍ଷ ଫଳରେ ଅପେକ୍ଷାକୃତ କମ୍ ବୟସ୍କ ବାବାଜୀଟିର ଦାଢ଼ିର ବେଶ୍ କିଛି ଅଂଶ ଉଠି ଆସିଲା ମୁହଁରୁ । ଫଳରେ ବିଚରା ତରୁଣ ବାବାଜୀଟିକୁ ବିନା ଦାଢ଼ିରେ ପ୍ରବେଶ କରିବାକୁ ପଡ଼ିଲା ।

ମତେ ଜଣେ ହେଲେ କେହି ଅଭିବାଦନ କରିବାକୁ ଆସିଲେ ନାହିଁ—ମୁଁ ମଧ ସେଥିପାଇଁ ବିଶେଷ ଆଶାବାଦୀ ନ ଥିଲି । ଆମ ଦେଶରେ କଳା ବୁଝନ୍ତି କେତେଜଣ !

ଆଉ ଅଳ୍ପ ସମୟ ପରେ ନାଟକ ସମାପ୍ତ ହବ ।

ଶେଷ ଦୃଶ୍ୟ ପାଇଁ ମଞ୍ଚ ସଜ୍ଜା ଚାଲିଛି ଜୋର୍‌ସୋର୍‌ରେ ।

ଦୋତାଲାର କ୍ଷୁଦ୍ର ବାଲ୍‌କନିଟି ଅତି ସୁନ୍ଦର ଭାବରେ ସଜ୍ଜା ଯାଇଛି । ତା' ଉପରେ ଆସି ପଡୁଛି ଅସ୍ତ ସୂର୍ଯ୍ୟର କେଇଟି ଶେଷ ରକ୍ତାଭ କିରଣ ।

ସିନ୍ ଉଠିଲା ।

ଗୋଟାଏ ତାନ୍‌ପୁରା ବଜେଇ ବଜେଇ ଧୀର ପଦକ୍ଷେପରେ ପଶି ଆସିଲା ପ୍ଲାବନ ।

କୁଚକ୍ରୀ ଲୋଫର୍ ପ୍ଲାବନ୍ । ସେ ଅସୀମ ଉତ୍କଣ୍ଠାର ସହିତ ପ୍ରତି ମୁହୂର୍ତ୍ତରେ ଅପେକ୍ଷା କରୁଛନ୍ତି ନିଦ୍ରା ଦେବୀଙ୍କୁ—ଆଉ ତାଙ୍କର ଉତ୍ତେଜିତ ସ୍ନାୟୁ ଗୁଡ଼ିକୁ ଶାନ୍ତ ରଖିବା ପାଇଁ ତାନ୍‌ପୁରା ବଜାଉଛନ୍ତି ।

ଠିକ୍ ସେଇ ସିନ୍‌ର ପଛପଟେ ଖଣ୍ଡେ କାଉଚ୍ ଉପରେ ଦେହ ଢାଳି ପଡ଼ିରହିଛି ସୃଜନ । କାଉଚ୍ ତଳେ ଗଡୁଚି କେଇଟା ବୋତଲ ଆଉ ଠିପି ! ସାମ୍ନାର ଫୁଲ କୁଣ୍ଡ ଉପରେ ଥୁଆ ହୋଇଛି ଅର୍ଦ୍ଧଭୁକ୍ତ ବିଅର୍ ଗିଲାସ ।

ନିଦ୍ରା ଠିଆ ହୋଇ ସୃଜନର କପାଳରେ ଖଣ୍ଡେ ବରଫ ମୁଣ୍ଡା ଧରି ଘଷୁଚି ଧୀରେ ଧୀରେ ।

ସେମାନଙ୍କର ପାର୍ଟ ସରିଗଲାଣି ।

ସାମ୍ନାର ସିନ୍ ଭେଦ କରି ଟିକିଏ ହାଲୁକା ଆଲୁଅ ପଡୁଛି ସେମାନଙ୍କ ଉପରେ– କ୍ରମମ୍ଳାନବତୀ ଗୋଧୂଳି ପରି ।

ଧୃଜନର ଗହଳିଆ ବାଳ ଗୁଡ଼ାକ ଭିତରେ ତା'ର ଆଙ୍ଗୁଠି ଚଳେଇ ନଉ ନଉ କହିଲା ନିଦ୍ରା, "ଜୀବନଟାକୁ ଏମିତି ନଷ୍ଟ କରିଦିଅ ନାହିଁ ସୃଜନ ।"

ସୃଜନ୍ ଜବାବ ଦେଲା–

"ଆରେ ଜୀବନଟା ସମସ୍ତଙ୍କର ଅଲ୍‌ଟିମେଟ୍‌ଲି ନଷ୍ଟଇ ହୁଏ । ପ୍ରଶ୍ନ ହଉଚି ସେଇ ନଷ୍ଟ ହବାର ପ୍ରସେସ୍‌ଟା । ମୁଁ ସମ୍ପୂର୍ଣ୍ଣ ନଷ୍ଟ ହବା ପୂର୍ବରୁ ମଣିଷର ସବୁ ଗୁଡ଼ାକ ଭୁଲ୍‌କୁ ଆବିଷ୍କାର କରିବାକୁ ଚାହେଁ ।"

ନିଦ୍ରା ଆଦର କରି ଢଳି ପଡ଼ିଲା ସୃଜନ ଉପରେ ।

"ତମେ ଅନେକ ଭୁଲ୍ କର ସୃଜନ–ଆଉ ସେଇଥି ପାଇଁ ତ ତମେ ଏତେ ପ୍ରିୟ ।"

କିଏ ଜଣେ ଆସି ଖବର ଦେଲା ସୃଜନ ଆଉ ନିଦ୍ରା ପ୍ଲାବନର ଚକ୍ରାନ୍ତ ବୁଝି ପାରିଛନ୍ତି, ଆଉ ସେଥିପାଇଁ ସେମାନେ ସହରର ଉପକଣ୍ଠ ଅତିକ୍ରମ କରି ଗଲେଣି– ଆଉ ମାତ୍ର ୧୫ ମିନିଟ୍ ସମୟ ପରେ ସେମାନେ ଏରୋଡ୍ରମରେ ନାଇଟ୍ ପ୍ଲେନ୍ ଧରିବେ ପେଶାଓ୍ବାର...

ପ୍ଲାବନର ସମସ୍ତ ଚକ୍ରାନ୍ତ ବ୍ୟର୍ଥ ହୋଇଗଲା–ନିଦ୍ରା ଖସିଗଲା ହାତରୁ । ନାଁ–ଆଉ ନୁହଁ ।

ଆକ୍ଷିର ଦୁଇଟି ତାରା ସ୍ଥିର କରି ପ୍ଲାବନ ଚାହିଁ ରହିଛି ସିରିଞ୍ଜର ଚକ୍‌ଚକ୍ ମୁନିଆଁ ନିଡ଼ିଲ୍‌ଟାକୁ । ସେ ଧରାପଡ଼ି ଅପମାନିତ ହବାକୁ ଚାହେଁ ନାଁ । ଆକ୍ଷିର ସମୟ ପରେ ମରଫିଆ ତା'ର କ୍ରିୟା ଆରମ୍ଭ କରିବ ।

ସୃଜନ ଓ ନିଦ୍ରା ହାତ ଧରାଧରି ହୋଇ ଚାଲିଲେ ସେଇ କ୍ଷୁଦ୍ର ତମ୍ବୁ ଭିତରକୁ– ଜାଗାଟା ଅପେକ୍ଷାକୃତ ନିର୍ଜନ । କିନ୍ତୁ ନାଁ–ଭଲ ଲାଗେ ନାଁ ଏଇ କୃତ୍ରିମ ଆଲୋକ– ତମ୍ବୁକୁ ଅତିକ୍ରମ କରି ସେମାନେ ଧୀରେ ଧୀରେ ପାଦ ବଢ଼େଇଲେ ଆହୁରି ଆଗକୁ....ତମ୍ବୁ ବାହାରେ ନେଳୀ ଘାସର ବିସ୍ତୃତ ଗାଲିଚା ଆଉ ଜହ୍ନର ଢେଉ ।

ତମ୍ବୁର ବାଡ଼ଟାକୁ ଧରି ସୁବର୍ଣ୍ଣ ପିତୁଳା ପରି ଆଉଜି ଠିଆ ହୋଇ ରହିଛି ମଦିରାକ୍ଷୀ–ହାସ୍ୟମୁଖୀ ମଦିରାକ୍ଷୀର ଦୁଇ ଆକ୍ଷି ଦେଇ ବହି ଚାଲିଛି ଅଶ୍ରୁର ଯମୁନା । ...ସୃଜନ ଆଉ ନିଦ୍ରା ତାରି ଈର୍ଷାନୀଳ ଆକ୍ଷି ଆଗରେ ଧୀରେ ଧୀରେ ଅସ୍ପଷ୍ଟ ହୋଇ ଆସୁଛନ୍ତି ଚନ୍ଦ୍ରର କୁହୁଡ଼ିରେ ।

ଅଥଚ ମୂର୍ଖ ବିରୂପାକ୍ଷ ତାର ଧାର୍ କରା ପୋଷାକ ସବୁ ସଜାଡ଼ି ରଖୁଚି ସୁଟ୍‌କେଶ୍ ଭିତରେ । ମନେପକଉଚି—ଖୋଲୁଚି—ଆଉ ଭାଙ୍ଗ ଦେଇ ଥୋଉଚି—ଆଉ ସୁଟ୍‌କେଶ୍ ବନ୍ଦ କରୁଚି,—ପୁଣି ଖୋଲୁଚି । ତା' ପାଇଁ ଏଇ ଜହ୍ନ ରାତି ଅପେକ୍ଷା ପୋଷାକର ମୂଲ୍ୟ ବେଶି—ନିର୍ବୋଧ ।

ଠିକ୍ ଏଇ ମୁହୂର୍ତ୍ତରେ ପ୍ଲାବନ କ୍ରମସ୍ତିମିତ ଆଲୋକ ତଳେ ମର୍‌ଫିଆର କ୍ରୂର ଆଲିଙ୍ଗନ ପ୍ରତ୍ୟକ୍ଷ କରୁଛି ।

ପ୍ରେକ୍ଷାଳୟ ସ୍ତବ୍ଧ ।

ପେଣ୍ଟର୍ ତା'ର ତୂଳୀ ଓ ରଙ୍ଗ ସଜାଡ଼ି ନଉଛି ।

ସ୍ମାରକ ହାଇ ମାରୁଛନ୍ତି ରହି ରହି ।

ସାରା ଦିନର କ୍ଳାନ୍ତି କଟେଇ ନବାକୁ ନିର୍ଦ୍ଦେଶକ ଖଣ୍ଡେ ଚୁରୁଟ୍‌ରେ ନିଆଁ ଧରାଉଛନ୍ତି ।

କିନ୍ତୁ ସୃଜନ ଆଉ ନିଦ୍ରା ?

କ'ଣ କରୁଛନ୍ତି ସେମାନେ ?

ଠିକ୍ ଅନୁମାନ କରି ହୁଏ ନାଁ—ସେମାନେ ସେଠି ପରସ୍ପର ପାଖରେ ବସି ରହିଛନ୍ତି । ହୁଏତ ସୃଜନ୍ ଘୁମେଇ ପଡ଼ିଛି ନିଦ୍ରାର ଆଲିଙ୍ଗନ ଭିତରେ, ଆଉ ହୁଏତ ନିଦ୍ରା ଘୁମନ୍ତ ସୃଜନର ପ୍ରଶସ୍ତ ଲଲାଟ ଚୁମ୍ବନ କରୁଛି.... ।



# ଆଷାଢ଼ସ୍ୟ ପ୍ରଥମ ଦିବସେ

## (ଏକ)

ତନୁଜାର ଭାରୀ କବରୀରେ ଅସଂଖ୍ୟ ଫୁଲର ସଭା ବସିଛି । ତନୁଜା ଆବିଷ୍ଟ ଆଖିରେ ଚାହିଁ ରହିଥିଲା । ତା'ର ଘର ସାମ୍ନାରେ ଉଜ୍ଜ୍ୱଳ ଲାଇଟ୍‌ପୋଷ୍ଟଟାକୁ । ତନୁଜାର ଏମିତି ଚାହିଁ ରହିବା ପ୍ରତିଦିନର ଅଭ୍ୟାସ । କିନ୍ତୁ ଆଜି ଯେପରି ସେ ନୂତନ କରି ଆବିଷ୍କାର କଲା—ସାମ୍ନାର ଏଇ ଉଜ୍ଜ୍ୱଳ ଲାଇଟ୍‌ପୋଷ୍ଟଟା ଠିକ୍ ତା'ରି ପରି ଅତ୍ୟନ୍ତ ଏକାକୀ ।

ତଳେ ରାସ୍ତାର କୋଳାହଳ କମି ଆସିଲାଣି । ଅସରାଏ ବର୍ଷା ହୋଇଯାଇ ରାସ୍ତାର ସବୁ ମଇଳା ଧୋଇ ନେଇଯାଇଚି ଦୁଇ କରର ନର୍ଦ୍ଦମା ଭିତରକୁ । ପବନରେ ମିଶି ମିଶି ରହିଛି କି ଗୋଟାଏ ଆଶ୍ଚର୍ଯ୍ୟ ଗନ୍ଧ ! ଦରଭୁଲା ସଙ୍ଗୀତର ଛନ୍ଦପରି ତନୁଜା ମନେ ମନେ ଖୋଜିଲା—ସତେ ତ ! ମାଟିର ଗନ୍ଧ ।

ଆକାଶରେ ଆଷାଢ଼ର ଲଘୁ ଆଡ଼ମ୍ବର ଆରମ୍ଭ ହୋଇଗଲାଣି । ତନୁଜାକୁ ଉପହାସ କରିବାକୁ ଯେପରି ଆଜି ପୁଣି ଥରେ ଫେରିଆସିଛି ଶ୍ୟାମଳ ଆଷାଢ଼ ।

ଏଇ ନୂତନ ଆଷାଢ଼କୁ ଭାରୀ ଭଲ ପାଉଥିଲା ପଙ୍କଜ । ତିନିବର୍ଷ ତଳେ ଠିକ୍ ଏମିତି ଗୋଟାଏ ଆଷାଢ଼ରେ ବନ୍ୟ ଶିଶୁ ପରି ଭିଜି ଘରକୁ ଫେରିଥିଲା—ସେ' । ରାତିରେ—ଅନେକ ରାତିରେ । ସେ'ଦିନ କିନ୍ତୁ ତନୁଜା ଅନେକ କପଟ-ଭର୍ତ୍ସନା କରି ପଙ୍କଜର ଏଇ ବିଳମ୍ବିତ ଶୈଶବକୁ ଶାସନ କରିଥିଲା ।

ପଙ୍କଜ ତିଳେ ମଧ୍ୟ ପ୍ରତିବାଦ କରିନାହିଁ । ଅସହାୟ ବାଧ୍ୟ ଶିଶୁ ପରି କେବଳ ଫୁଙ୍ଗୁଳା ଦେହରେ କାଉଚ୍ ଉପରେ ବସିରହି ଥରୁଥିଲା—ଶୀତରେ ।

ତନୁଜା କ'ଣ ସତରେ ରାଗିଥିଲା ସେଦିନ ପଙ୍କଜ ଉପରେ ନାଁ—ସେ'ଦିନ ସେ କେତେ ସନ୍ତର୍ପଣରେ ପଙ୍କଜର ଶୀର୍ଣ୍ଣ ସିକ୍ତ ଦେହଟିକୁ ସମ୍ପୂର୍ଣ୍ଣ ଜଡ଼ାଇ ଧରି କେତେ ଆଦର କରିଥିଲା—କି ଆନନ୍ଦରେ ସେ ସ୍ୱାଗତ କରିଥିଲା ପଙ୍କଜର ଏଇ ଉଚ୍ଛୃଙ୍ଖଳ ଶୈଶବକୁ !

କିନ୍ତୁ ପଙ୍କଜ କି ଶିଶୁ ! ମୁହୂର୍ତ୍ତକରେ ସେ ଯେମିତି ହଠାତ୍ ବଡ଼ ହୋଇଗଲା । ଦୃଢ଼ ହାତରେ ତନୁଜାର କଟିବେଷ୍ଟନ କରି ତା'ର କବରୀରେ ସେଦିନ ସେ

ଖୋସିଦେଇଥିଲା ଫୁଲ କଦମ୍ବ—ଚାପାସ୍ୱରରେ କାନ ପାଖରେ କହିଥିଲା, "ତମେ ଆଜି ଭାରି ସୁନ୍ଦର ଦେଖାଯାଉଛ ତନୁଜା—ନୂଆ ଆଷାଢ଼ରେ ବାହାରେ ଲକ୍ଷ କଦମ୍ବ ଫୁଟିଛି—ଆଉ ସେଇ କଦମ୍ବର ଛନ୍ଦରେ ଯେପରି ତମେ ବି ଆଜି ନୂଆକରି ଫୁଟିଛ— ନୂଆ ଛନ୍ଦରେ ।

ପଙ୍କଜ ତନୁଜାକୁ ବେଶି ଆଦର କରେ ନାହିଁ । କିନ୍ତୁ ଯେତେବେଳେ ସେ ଆଦର କରିବାକୁ ଚାହେଁ ଅତି ଉଷ୍ଣ ତାର ଆଦର—ଅତି ନିବିଡ଼ ।

ଆଜି ପଙ୍କଜ ପାଖରେ ନାହିଁ—ତନୁଜା ପାଇଁ ଆଜିର ଏଇ ପ୍ରଥମ ଆଷାଢ଼ ବ୍ୟର୍ଥ ହୋଇଯାଇଛି ।

ଆଜିକି ତିନିଦିନ ତଳେ ତନୁଜା କାଗଜରେ ଦେଖିଥିଲା ପଙ୍କଜ ଦିଲ୍ଲୀ ସେଣ୍ଟ୍ରାଲ୍ ଜେଲରୁ ଖଲାସ ହୋଇଯାଇଛି । କିନ୍ତୁ କାହିଁ । ପଙ୍କଜ ତ ଆସେନା । ଘଣ୍ଟା ଘଣ୍ଟା ଧରି ଅତିଷ୍ଠ ଚିତ୍ତରେ ତନୁଜା ସିଡ଼ିରେ ପଙ୍କଜର ପାଦ ଶବ୍ଦକୁ ଅପେକ୍ଷା କରି ରହିଛି—ପଙ୍କଜ ଅନାଗତ ।

ତନୁଜାର ଆଖିରେ ବିନ୍ଦୁ ବିନ୍ଦୁ ଅଶ୍ରୁ ଭରି ଆସିଥିଲା । ହଠାତ୍ ଆକୁଳ ଶିଶୁ ପରି ଦୁଇ ହାତରେ ମୁହଁକୁ ଚାପିଧରି କଇଁ କଇଁ ହୋଇ କାନ୍ଦି ଉଠିଲା ତନୁଜା ।

କ୍ରନ୍ଦନର ଉଚ୍ଛ୍ୱାସରେ ତନୁଜାର ବିପୁଳ ପୁଷ୍ପିତା କବରୀ ଶିଥିଳ ହୋଇ ଫିଟି ପଡ଼ିଲା ତନୁଜାର ପିଠି ଉପରେ—

ପଙ୍କଜ ଆସେନା—ପଙ୍କଜ ଅନାଗତ !

କିଛି ସମୟ ପରେ ହାତ ପାପୁଲିରୁ ମୁହଁ ଟେକି ନିରୁଦ୍ଦିଷ୍ଟ ଭାବରେ ବାହାରକୁ ଚାହିଁ ରହିଲା ତନୁଜା । ତଳେ ରାସ୍ତାର ଚଳାଚଳ ବନ୍ଦ ହୋଇ ଗଲାଣି ସମ୍ପୂର୍ଣ୍ଣ ଭାବରେ । ବର୍ଷାଧୁଆ ମସୃଣ ପିଚୁରାସ୍ତା ଉପରେ ନିରୋଳା ଲାଇଟ୍‌ପୋଷ୍ଟଟିର ପ୍ରତିବିମ୍ବ ସମୁଦାୟ ପରିବେଶଟିକୁ ଯେପରି ଆହୁରି କରୁଣ କରି ତୋଳିଛି ।

ରାତ୍ରି ଗଭୀର ହୋଇ ଆସିଲାଣି ।

ଶେଷ ହେବାର ନୁହଁ । ତନୁଜାର ଅନନ୍ତ ଏଇ ପ୍ରତୀକ୍ଷା ।

ତନୁଜା ଉତ୍‌କର୍ଣ୍ଣ ହୋଇ ଶୁଣିବାକୁ ଚେଷ୍ଟା କଲା । ବାହାର ଦରଜାରେ ଲଘୁ କରାଘାତ କରି କିଏ ଡାକୁଚି ଯେପରି । କିନ୍ତୁ ଏତେ ରାତିରେ କିଏ ଡାକୁଚି ! — ସିଡ଼ିରେ ତଳକୁ ଓହ୍ଲାଉ ଓହ୍ଲାଉ ଭାବୁଥିଲା ତନୁଜା । ପଙ୍କଜ ଆସିଥିଲେ ସେ' ତ କୋଳାହଳ କରି ଆସିଥା'ନ୍ତା । କାରାଗାରର ପକ୍ଷୀ ସେ—ସେ ଆସିଥାଆନ୍ତା ମୁକ୍ତିର ସଙ୍ଗୀତ ଗାଇ ଗାଇ ।

ଦରଜା ଖୋଲି ସତକୁସତ ଆଶ୍ଚର୍ଯ୍ୟ ହୋଇଗଲା ତନୁଜା । ମୁକୁଳା ଦରଜା ଦେଇ ତ୍ରସ୍ତ ପଦକ୍ଷେପରେ ଘର ଭିତରକୁ ପଶି ଆସିଲା ପଙ୍କଜ । ତରତରରେ ସିଡ଼ିରେ ଉଠି ଯାଉ ଯାଉ କହିଲା, ''ଶୀଘ୍ର ଦରଜା ବନ୍ଦ କରି ଦେଇ ଆସ ତନୁ !''

ତନୁଜା ବହୁ ଆଗରୁ କେତେ ଯୋଜନା କରିଥିଲା—ପଙ୍କଜକୁ ସ୍ୱାଗତ କରିବାକୁ । ପଙ୍କଜ ଆଗରେ ସେ କେମିତି ଅଭିମାନ କରି ଠିଆ ହୋଇଥାଆନ୍ତା—ଆଦୌ କଥା କହି ନଥାନ୍ତା—ମୋଟେ ନୁହେଁ । ଖାଲି ପଙ୍କଜର ଛାତି ଉପରେ ମୁହଁ ରଖି କାନ୍ଦିଥାଆନ୍ତା ବାହାରର ଏଇ କ୍ରନ୍ଦନରତା ଆଷାଢ଼ ପରି । କିନ୍ତୁ ସବୁ ଯେପରି ଓଲଟପାଲଟ ହୋଇ ଗଲା ତନୁଜାର । ଘରର ବିଦ୍ୟୁତ୍ ଆଲୋକରେ ସେ କେବଳ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିଲା ପଙ୍କଜକୁ । କିଛି ତ ପରିବର୍ତ୍ତନ ହୋଇ ନାହିଁ । ସେ ଯେପରି ପଙ୍କଜର ଛବି ଦେଖୁଛି ଠିଆ ହୋଇ ହୋଇ ।

''ମତେ ଏପରି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହନାହିଁ ତନୁ, ପାଖକୁ ଆସ ।'' ପଙ୍କଜ ତନୁଜାର ଦୁଇ ହାତ ଧରି ଆଉଜାଇ ଆଣିଲା । ପଙ୍କଜର ଛାତି ଉପରେ ମୁହଁ ରଖି ତନୁଜା ନୀରବରେ ଠିଆ ହୋଇ ରହିଲା କେବଳ । କେତେବେଳେକେ ସ୍ୱରରେ ଅଭିମାନ ମିଶାଇ କହିଲା, ''ସ୍ମରଣ ଅଛି ପଙ୍କଜ, ଆଜିକି ତିନିବର୍ଷ ହୋଇଗଲା ?''

ପଙ୍କଜ ଆଦରରେ ତନୁଜାର ପିଠି ଉପରେ ହାତ ବୁଲାଉ ବୁଲାଉ ଆବିଷ୍ଟ କଣ୍ଠରେ କହିଲା, ''ମୁଁ ତ ତମକୁ ବାରମ୍ବାର କହିଛି ତନୁ, ମୁଁ ତମର ଭଲ ପାଇବାର ଯୋଗ୍ୟ ନୁହେଁ—ରାଜନୀତିର ଝଡ଼ରେ ମୋର ନୀଡ଼ର କାଠିକୁଟା ସବୁ ଆକାଶରେ ଉଡୁଛି—ଆଉ ମୁଁ ତ ବହୁଦିନ ନିରୁଦ୍ଦିଷ୍ଟ ହୋଇ ଯାଇ କାରାଗାରର ଆଶ୍ରୟ ନେଇଛି ।''

ଏ ପଙ୍କଜର ଆଜିର କଥା ନୁହେଁ । ଚିରଦିନ ପଙ୍କଜ ପ୍ରତି କଥାରେ ତନୁଜାକୁ ଏଇକଥା ଚେତାଇ ଦେଇଛି । ସେ ତନୁଜାକୁ ଭଲପାଏ । କିନ୍ତୁ ତନୁଜା ଅପେକ୍ଷା ବେଶି ଭଲ ପାଏ ଆର:ସି:ପି:ଆଇ:କୁ । ସମଗ୍ର ଦେଶଟାକୁ ।

ପୁରାତନ ଅଭିମାନରେ ମୁହଁ ଫେରାଇ ନେଲା ତନୁଜା । ପଙ୍କଜର ଆଖି ପଡ଼ିଲା ତନୁଜାର ପୃଷ୍ଠବ୍ୟାପୀ ଶିଥିଳିତ ପୁଷ୍ପିତା କବରୀ ଉପରେ । କଥାରେ ଶ୍ଳେଷ ମିଶାଇ କହିଲା ପଙ୍କଜ, ''ତମର କବରୀକୁ ବିନୟ ଶିକ୍ଷାଦିଅ ତନୁ । ସୌନ୍ଦର୍ଯ୍ୟର ଅହଙ୍କାରରେ ଯେପରି ଭାଙ୍ଗି ପଡୁଛି ସେ ।''

ସ୍ମିତ ହସି ଉତ୍ତର ଦେଲା ତନୁଜା, ''ଅହଂକାର ଚିରଦିନ ସୁନ୍ଦରର ଅଧିକାର ପଙ୍କଜ !''

ପଙ୍କଜ ପରାହତ ହେଲା ନାହିଁ । ତନୁଜାର ଦୁଇ ସୁସ୍ଥ ଗଣ୍ଡରେ ତା'ର ହାତର ପାପୁଲି ଭରିନେଇ କହିଲା—

"କାହିଁ ! ତମର ତ ଦିନେ ଅହଂକାର ଦେଖିଲି ନାହିଁ ତନୁ ?"

ତନୁଜାର ଅଭିମାନ ଉର୍ମିଶାନ୍ତ ହୋଇ ଆସିଥିଲା ।

କାନ୍ଥ ଘଣ୍ଟାରେ ଗୋଟାଏ ବାଜିଲା ।

ପାଖ ଘରେ ତନୁଜା କଫି ପାଇଁ ପାଣି ଗରମ କରୁଥିଲା । ପର୍ଦ୍ଦା ଆଢ଼େଇ ଚାହିଁଲା ଘଣ୍ଟାକୁ "ଠିକ୍ ଗୋଟାଏ ବାଜିଲା ।" କିନ୍ତୁ ପଙ୍କଜ ଯେପରି ହଠାତ୍ ଗମ୍ଭୀର ହୋଇଯାଇଛି । ତା'ର ଧାରୁଆ ଚିବୁକ ଉପରେ ତର୍ଜ୍ଜନୀ ରଖି ହଠାତ୍ ଯେପରି ଚିନ୍ତାଗ୍ରସ୍ତ ହୋଇପଡ଼ିଛି ସେ । ତନୁଜା ପଙ୍କଜର କାନ୍ଧ ଉପରେ ହାତ ରଖି ଆସ୍ତେ ପଚାରିଲା, "କ'ଣ ହୋଇଚି ତମର ପଙ୍କଜ—କ'ଣ ଭାବୁଛ ?"

ପଙ୍କଜ କୌଣସି ଉତ୍ତର ଦେଲା ନାହିଁ । ଠିକ୍ ସେହିପରି ଠିଆ ହୋଇ ରହି କିଛି ସମୟ ପରେ ଦୃଢ଼ ସ୍ୱରରେ କହିଲା, "ମତେ କହିବାକୁ ପଡ଼ିବ, ତନୁ, ତମେ ଶୁଣିବାକୁ ପ୍ରସ୍ତୁତ ହୋଇଯାଅ ।" ଦୁଇ ଶଙ୍କା–ବିସ୍ଫାରିତ ଆଖିରେ ପଙ୍କଜର କଥାକୁ ଅପେକ୍ଷା କରି ରହିଲା ତନୁଜା ।

"ମତେ ଠିକ୍ ଆଉ ଅଧଘଣ୍ଟାଏ ପରେ ଚାଲିଯିବାକୁ ପଡ଼ିବ ।" ପଙ୍କଜ ବିଚଳିତ ହୋଇନାହିଁ । ଠିକ୍ ସେହିପରି ସ୍ଥିର ଭାବରେ ଠିଆ ହୋଇ କହିଚାଲିଛି ସେ—"ପୁଲିସ ମୋର ପାଦଚିହ୍ନ ଖୋଜି ଖୋଜି ବୁଲୁଛି—ମତେ ଆତ୍ମଗୋପନ କରିବାକୁ ହେବ ।"

ସ୍ଥିର ଭାବରେ ଉତ୍ତର ଦେଲା ତନୁଜା, "ମୁଁ ଜାଣେ ତମେ ଏମିତି କିଛି ନାଁ କିଛି ଗୋଟାଏ ବାହାନା କରିବ—କିନ୍ତୁ ମୁଁ ସ୍ପଷ୍ଟ କହି ରଖେ ମୋର ଜୀବନ ନେଇ ତମକୁ ଆଉ ମୁଁ ଖେଳିବାକୁ ଦେଇ ପାରିବି ନାହିଁ ।"

ବୁଲିପଡ଼ି ଅନୁନୟ ସ୍ୱରରେ କହିଲା ପଙ୍କଜ—"ମତେ ଭୁଲ୍ ବୁଝନାହିଁ ତନୁ, ମୁଁ ତମକୁ ଅବହେଳା କରୁନାହିଁ—କିନ୍ତୁ ମୋର ଆତ୍ମଗୋପନ ପାଇଁ ସମସ୍ତ ଆୟୋଜନ ପ୍ରସ୍ତୁତ କରାସରିଛି । ପ୍ରତି ମୁହୂର୍ତ୍ତରେ ମୋ'ର କମ୍ରେଡ଼ମାନେ ମତେ ଅପେକ୍ଷା କରୁଥିବେ । ସେମାନଙ୍କୁ କ'ଣ...

ଗର୍ଜ୍ଜନ କରି ଉଠିଲା ତନୁଜା "ମୁଁ ତମର କମ୍ରେଡ଼ ନୁହଁ ପଙ୍କଜ, ମୁଁ ତମର ବିବାହିତା ସ୍ତ୍ରୀ । ତମ ଦଳରେ ଏତେ ଟିକେ ଆସ୍ଥା ନାହିଁ ମୋର । ତମର ଖେୟାଲି କମ୍ରେଡ଼ମାନଙ୍କର ମରଛିର ପୁତଳିକା ହୋଇ ମୁଁ ଆଉ ଚଳିପାରିବି ନାହିଁ, ମନେରଖ—

ପଙ୍କଜ—ଏତେ ନିର୍ଦ୍ଦୟ ହୁଅ ନାହିଁ ତନୁ, ଯେଉଁମାନେ ଦେଶ ପାଇଁ ଏତେ ସ୍ୱାର୍ଥତ୍ୟାଗ କରି ପାରିଛନ୍ତି ସେମାନେ କ'ଣ ଖିଆଲୀ—ସେମାନଙ୍କର ଆତ୍ମବଳିଦାନ ପଛରେ କ'ଣ କିଛି ଯୁକ୍ତି ନାହିଁ ?

ତନୁଜା—ଆତ୍ମବଳିଦାନ ! କାହାକୁ ତମେ କୁହ ଆତ୍ମବଳିଦାନ ? ଏହିପରି ଚିରନିର୍ବାସିତର ଜୀବନ ଯାପନ କରିବା ସେମାନଙ୍କର ଗୋଟାଏ ବିଳାସ । ସେମାନଙ୍କର ସ୍ୱାର୍ଥତ୍ୟାଗ, ସେମାନଙ୍କର ଚରମ ଅହଂକାର, ଆଉ ଦେଶ ଓ ଦେଶପ୍ରେମ ଗୋଟାଏ ନିଛକ୍ ବାହାନା । ତମେ ଜାଣ ଦସ୍ୟୁ ରବୀନ୍‌ହୁଡ୍‌ର କାହାଣୀ—କିନ୍ତୁ ଏକଥା ତମେ କ'ଣ ଅସ୍ୱୀକାର କରିପାରିବ ପଙ୍କଜ ! ସେ ତା'ର ଦେଶବାସୀଙ୍କ ଅପେକ୍ଷା ବେଶି ଭଲ ପାଉଥିଲା ନିଜକୁ—ନିଜର ଏଇ ନିର୍ବାସିତ ଓ ବିଦ୍ରୋହୀ ଜୀବନକୁ ।

ପଙ୍କଜ—ନିଜର ସ୍ୱାର୍ଥ ପାଇଁ ଆଉ ଅଯଥା ଯୁକ୍ତି କର ନାହିଁ ତନୁଜା । ଆଜୀବନ ଯେଉଁମାନେ ନିଜର ସମ୍ଭୋଗ, ପ୍ରତିଭା ସମସ୍ତର ବିନିମୟରେ ଦେଶର ମୁକ୍ତି ଖୋଜିଛନ୍ତି ସେମାନଙ୍କୁ ତମେ କି ସାହସରେ ଦସ୍ୟୁ ରବୀନ୍‌ହୁଡ୍ ସହ ତୁଳନା କର । ତମେ ସେମାନଙ୍କୁ ଦେଖି ପାରିନାହଁ ତନୁଜା—ସେମାନେ ଦେଶର ମୁକ୍ତି ସୂର୍ଯ୍ୟ । ରାତ୍ରିକି କେବେ କଳ୍ପନା କରିଛି ଉଦୟ ସୂର୍ଯ୍ୟର ?

ତନୁଜା—ଭୁଲ କରୁଛ ତମେ ପଙ୍କଜ । ସୂର୍ଯ୍ୟ ସ୍ୱୟଂ ସଂପୂର୍ଣ୍ଣ ନୁହେଁ । ଭାରତର ଉଦୟ-ସୂର୍ଯ୍ୟଙ୍କୁ ରାତ୍ରି ଦୟାକରି ମୁକ୍ତି ଦିଏ—ଆଉ ନିଜ କୋଳକୁ ସ୍ୱାଗତ କରିନିଏ ଅସ୍ତସୂର୍ଯ୍ୟକୁ ।

ପଙ୍କଜ—ତମକୁ ଆଉଥରେ ପ୍ରାଥମିକ ଭୂଗୋଳ ଆରମ୍ଭ କରିବାକୁ ହେବ । ସୂର୍ଯ୍ୟର ଅବର୍ତ୍ତମାନ ରାତ୍ରି ଓ ରାତ୍ରିର ଅନୁପସ୍ଥିତି ସୂର୍ଯ୍ୟ ।

ପଙ୍କଜ କାଉଚ୍ ଉପରେ ଆଉଜି ରହି ଘଣ୍ଟାକୁ ଚାହିଁ ଚାହିଁ ତନୁଜାର ପ୍ରତିଟି କଥାର ଜବାବ୍ ଦଉଥିଲା । ଶେଷ କଥାଟାରେ ତନୁଜାର ଧୈର୍ଯ୍ୟଚ୍ୟୁତି ଘଟିଥିଲା, ଯେପରି ସେ ରକ୍ତାକ୍ତ ହେଇଯାଇଛି ଏଇ ବାକ୍ୟଯୁଦ୍ଧରେ । ପଙ୍କଜର ପଞ୍ଜାବୀଟାକୁ ଧରି ଚିତ୍କାର କରି ଉଠିଲା ତନୁଜା—''ମୁଁ ଯୁକ୍ତି କରିବାକୁ ଚାହେଁ ନାହିଁ ପଙ୍କଜ—ତମେ ଖାଲି ଥରେ କୁହ ଆଜି ରାତିରେ ତମେ ଯିବ ନାହିଁ—ମୁଁ ସବୁ ଜାଣେ ପଙ୍କଜ...ମୁଁ ସବୁ ଜାଣେ...କିନ୍ତୁ ଯୁକ୍ତିଦେଇ କ'ଣ ସବୁ''... ବାଷ୍ପାକୁଳ କଣ୍ଠରେ ପଙ୍କଜର କୋଳରେ ମୁଣ୍ଡ ରଖି ଅବୋଧ ଶିଶୁପରି କାନ୍ଦି ଉଠିଲା ତନୁଜା ।

ତନୁଜାର ଅନୁକରଣରେ ଯେପରି ଆଷାଢ଼ର ଗର୍ଭବତୀ ଆକାଶ ହଠାତ୍ ହା' ହା' କରି କାନ୍ଦିଉଠିଲା ।

ବର୍ଷାର ଅଳ୍ପ ଅଳ୍ପ ଛିଟ୍‌କା ଆସି ପଡୁଛି ପଙ୍କଜର ମୁହଁରେ, ଆଉ କ୍ରନ୍ଦନରତା ତନୁଜାର ଆଲୁଳାୟିତ କେଶରେ । ପଙ୍କଜ ମୁଗ୍ଧ ଆଖିରେ ଚାହିଁ ରହିଥିଲା ତନୁଜାର ଚିକ୍‌କଣ କଳା କେଶର ଧାରେ ଧାରେ ବିନ୍ଦୁ ବିନ୍ଦୁ ମୁକ୍ତା ରଚନାକୁ ।

ସତେ ! କେତେ ଅତ୍ୟାଚାରିତା ଏଇ ତନୁଜା—କି ବ୍ୟାକୁଳ ହୋଇ ସେ ତା'ର ସାନ୍ନିଧ ଭିକ୍ଷା କରୁଛି !

ପଙ୍କଜ ତନୁଜାର ମୁହଁକୁ ଦୁଇହାତରେ ଟୋକି ଧରି କ'ଣ କହିବାକୁ ଯାଉଥିଲା ।

କାନ୍ଥ ଘଣ୍ଟାରେ ପୁଣି ଗୋଟାଏ ବାଜିଲା—ସାଢ଼େ ଗୋଟାଏ ।

ପଙ୍କଜ କଥାର ସୁଅ ବଦଳାଇ କହିଲା, "ମୁଁ ଘଣ୍ଟାଏ ହେଲା ଆସିଲିଣି—ଆଉ ଏ ସୁନ୍ଦର ବର୍ଷା ରାତ୍ରିରେ ତମେ ମତେ କପେ କଫି ଦେଲନାହିଁ ତନୁ ?"

ସାମାନ୍ୟ ଅପ୍ରତିଭ ହୋଇଗଲା ତନୁଜା । ଇଲେକ୍‌ଟ୍ରିକ ହିଟର୍ ଉପରେ ପାଣି ଫୁଟିବାର ଶବ୍ଦ ଶୁଣାଯାଉଛି । ତରତରରେ ପର୍ଦ୍ଦା ଆଡ଼େଇ ଆରଘରକୁ ଚାଲିଗଲା ତନୁଜା ।

(ଦୁଇ)

ଦୁଇ ହାତରେ ସଜ୍ଜିତ କଫିର ଟ୍ରେ ଧରି ତନୁଜା ସ୍କ୍ରିନ୍ ଆଡ଼େଇ ଠିଆ ହେଲା । ସାମ୍ନାର କାଉଚ୍ ଉପରକୁ ଚାହିଁ ଯେପରି ମୂକ ହୋଇଗଲା ସେ । କାଉଚ୍‌ଟା ଶୂନ୍ୟ ପଡ଼ିରହିଛି—ପଙ୍କଜ ନାହିଁ ।

ଘଣ୍ଟାକୁ ଚାହିଁଲା ତନୁଜା, "ଗୋଟାଏ ଚାଳିଶ"—ପଙ୍କଜ କହିଥିଲା ଅଧଘଣ୍ଟାଏ ପରେ ଚାଲିଯିବ ବୋଲି—ଆଉ ଠିକ୍ ଚାଲି ବି ଗଲା । ତନୁଜାର ମୁହୂର୍ତ୍ତେ ମନେ ହେଲା ସେ ଯଦି ତଳକୁ ଯାଏ ତା ହେଲେ ଅବା କେଜାଣି ପୁଣିଥରେ ଫେରାଇ ଆଣି ପାରିବ ପଙ୍କଜକୁ ।

କିନ୍ତୁ ପଙ୍କଜ କି ନୀଡ଼ର ପକ୍ଷୀ ? ତାକୁ ସ୍ୱାଗତ କରିବାକୁ ପଥର ଧାରେ ଧାରେ ଲକ୍ଷ କୁଳାୟ ମୁକ୍ତ ରହିଚି । କେଉଁଆଡ଼େ ଅଦୃଶ୍ୟ ହୋଇଯିବା ପାଇଁ ଚତୁର ପଙ୍କଜ ପକ୍ଷେ ଦୁଇ, ତିନି ମିନିଟ୍ ସମୟ ଯଥେଷ୍ଟ । କି ସାହସରେ ପଙ୍କଜର ସନ୍ଧାନ କରିବ ତନୁଜା !

ତନୁଜାର ମନ ବିଷାକ୍ତ ହୋଇ ଉଠିଲା ।

ନା, ପଙ୍କଜର ଏତେ ନିର୍ଦ୍ଦୟ ହବାର ଅଧିକାର ନାହିଁ, କିନ୍ତୁ ପୁଣି କେତେବେଳେ ଭାବିଲା ତନୁଜା, ହୁଏତ ଫେରି ଆସିବ ପଙ୍କଜ ଆଉ ହସି ହସି କହିବ—"ମତେ ଗାଳିଦିଅ ତନୁ, ମନଇଚ୍ଛା—କିନ୍ତୁ ମୁଁ ନାଚାର । କିନ୍ତୁ କାହିଁ ପଙ୍କଜ ?"

ତିନିବର୍ଷ—ଦୀର୍ଘ ତିନିବର୍ଷ ପରେ ଯେପରି ମୁହୂର୍ତ୍ତକ ପାଇଁ ଏଇଠି-ତନୁଜାର ଦୁଇ ଆଖି ସାମ୍ନାରେ ପଦ୍ମପରି ହସି ହସି ଫୁଟିଥିଲା ପଙ୍କଜ—କିନ୍ତୁ କାହିଁ ?

ତନୁଜାର ମୁଣ୍ଡ ଭିତରେ ଯେପରି କ'ଣ ଗୋଟାଏ ଗୋଳମାଳ ହୋଇଯିବାକୁ ଆରମ୍ଭ କରିଛି । ସେ ବୋଧହୁଏ ଆଉ ବେଶି ସମୟ ଠିଆ ହୋଇ ପାରିବ ନାହିଁ ।

ବିକୃତ ଶବ୍ଦ ସୃଷ୍ଟିକରି ସମଗ୍ର କଫିର ଟ୍ରେଟା ଖସି ପଡ଼ିଲା ତନୁଜାର ହାତରୁ ।

କ୍ଷମା ମାଗିବାର କଣ୍ଠରେ ବିନୟୀ ହୋଇ ଉଠିଲା ତନୁଜା, "ମତେ କ୍ଷମା କର ପଙ୍କଜ, ହାତରୁ ଖସିପଡ଼ିଲା ଅଜାଣତରେ; ଦୁଇମିନିଟ୍‌ରେ ଆଉଥରେ କଫି ନେଇ ଆସୁଛି ।"

ତନୁଜା ପୁଣି ଥରେ ଅନେଇଲା କାଉଚକୁ ! କାହାକୁ କହୁଚି ସେ ! ପଙ୍କଜ କ'ଣ ସତରେ ନାହିଁ !

ନାଁ, କିଏ କହେ ପଙ୍କଜ ନାହିଁ ! ଏଇତ ପଙ୍କଜ ବସିଚି । ଶୂନ୍ୟ ଆଖିରେ ଅତ୍ୟନ୍ତ ଏକାଗ୍ର ହୋଇ କାଉଚ୍‌ଟାକୁ ଚାହିଁ ରହିଥିଲା ତନୁଜା । ସେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହଁ । ନାଁ, ଏଇ ତ ବସିରହିଚି ପଙ୍କଜ । ବିରହ-ବିଧୂରା ତନୁଜା ଯେପରି ତା'ର ମନର ଆଖିଦେଇ ଶୂନ୍ୟ କାଉଚ୍ ଉପରେ ତିଳ ତିଳ କରି ଗୋଟିଏ ନୂତନ ପଙ୍କଜକୁ ତିଆରି କରୁଥିଲା । ପଙ୍କଜ ଅବିସ୍ମରଣୀୟ ! ପଙ୍କଜ ସର୍ବବ୍ୟାପୀ !

କାଉଚ୍ ପଛପଟେ ଠିଆହୋଇ ତନୁଜା ପଙ୍କଜର କାନ୍ଧ ଉପରେ ହାତ ବୁଲାଇବାକୁ ଆରମ୍ଭ କଲା । ପଙ୍କଜ ଯେପରି ଅବିଚଳିତ ଭାବରେ ନିଜକୁ ସମର୍ପଣ କରି ଦେଇଛି ତନୁଜା ପାଖରେ । ପଙ୍କଜର ବାଁ ହାତର ଧାରେ ଧାରେ କହୁଣୀ ପାଖକୁ ହାତ ନେଲା ତନୁଜା—ହଁ ଠିକ୍ ତ—ସେଇ ପୁରୁଣା ଦାଗଟା ଅଛି—ଯେଉଁଠି ଅପରେସନ୍ କରାହୋଇ ଗୁଳିଟା ବାହାର କରିବାକୁ ହୋଇଥିଲା ।

ଚଳଚ୍ଚିତ୍ର ପରି ଯେପରି ଚହଲିଗଲା ପଙ୍କଜର ଛାଇ ।

ପଙ୍କଜ ଧୀରେ କାଉଚ୍ ଛାଡ଼ି ଉଠି ଠିଆ ହେଲା—ବସୁଛି ପଙ୍କଜ—କ'ଣ ହୋଇଛି ତୁମର ପଙ୍କଜ ?—କଥା କହୁ ନାହଁ କାହିଁକି ? ପଙ୍କଜ ଯେପରି ଇଙ୍ଗିତରେ କଥା କହୁଛି, "ନାଁ ତନୁ, ଆଜି ବହୁଦିନ ପରେ ଦେଖା ହଉଛି, ଏତେବେଳେ କି କଥା କୁହାଯାଏ ?"

ପଙ୍କଜ ତା'ର ଦୁଇ ହାତର ପାପୁଲିରେ ତନୁଜାର ଦୀର୍ଘ ବେଣୀଟାକୁ ନଚାଉଛି ବାରମ୍ବାର ।

ତନୁଜା ମନେ ମନେ ଭାବୁଥିଲା ଖାଲି ପଙ୍କଜ କେଡ଼େ ସରଳ, ଭାବାତୁର ଶିଶୁଟିଏ । ଦେହରେ ହାତରେ ଯେପରି ଚମ୍ପା ଫୁଲର ରଙ୍ଗ ଉକୁଟି ଉଠୁଛି । କିଏ କହେ ପଙ୍କଜ ଆତ୍ମଗୋପନ କରେ ? ଏ ଦେଶରେ ବିଚାର ମିଳେ ନାଁ—ଅଦ୍ଭୁତ—ପ୍ରମାଣ

ହୋଇଗଲା ସେ ଦିନ ପଙ୍କଜ କୁଆଡ଼େ ନିଜ ହାତରେ ରିଭଲଭର୍ ଧରି ବ୍ୟାଙ୍କର ଗାର୍ଡ଼ଟାକୁ ଗୁଳି କରିଥିଲା । ଏ ଆରକ୍ତ ପାପୁଲିରେ କ'ଣ ରିଭଲଭର୍ ଧରିବା ସମ୍ଭବ ପଙ୍କଜ ପକ୍ଷରେ ।

ରାତି ଅନେକ ହୋଇଗଲାଣି । କେତେଟା ବାଜିଲା ? ପୁଣିଥରେ ଇଙ୍ଗିତରେ ହସିଲା ଚତୁର ପଙ୍କଜ । ରାତ୍ରିଟାକୁ ଭାଗ ଭାଗ କରି ମାପି ତାକୁ ଛୋଟ କରି ଦିଅନାହିଁ ତନୁଜା—

ଆଷାଢ଼ର ଏଇ ସୁନ୍ଦର, ଅନନ୍ତ ରାତ୍ରି ଦୀର୍ଘଜୀବୀ ହେଉ ।

ତନୁଜାର ଆକ୍ଷିପତା ନିଦରେ ଭାଙ୍ଗି ପଡ଼ୁଛି । ସେ ଅନୁଭବ କଲା ଯେପରି ପଙ୍କଜ ତା'ର କାନ୍ଧରେ ହାତ ରଖି ତା'କୁ ଆକର୍ଷଣ କରୁଛି ନିଜଆଡ଼କୁ ।

ବର୍ତ୍ତମାନ ଶୋଇବାକୁ ହେବ ।

ପଙ୍କଜର ବିଶାଳ ଛାତି ଉପରେ ମୁହଁ ରଖି ତନୁଜା ବୁଡ଼ିଗଲା ନିଦ୍ରାର ସମୁଦ୍ରରେ । ତଳକୁ—ଖୁବ୍ ତଳକୁ !

ଆଃ, କି ତୃପ୍ତି ! ତନୁଜାର ଶିରାରେ ଶିରାରେ ଯେପରି ନିଦ ଲହଡ଼ି ମାରୁଛି ।

X X X X

ଭଙ୍ଗା କଫିର ବାସନ ପାଖରେ କେତେବେଳେ ତା'ର ଅଜାଣତରେ ଶୋଇପଡ଼ିଛି ତନୁଜା । ପ୍ରତ୍ୟୁଷରୁ ଗୋଟାଏ ଛୋଟ ଘରଚଟିଆ ଥଣ୍ଟରେ ଖଣ୍ଡେ କୁଟା ଧରି ତୁହାଇ ତୁହାଇ ଚିତ୍କାର କରୁଛି ।

କାହାର ଡାକରେ ଯେପରି ନିଦ ଭାଙ୍ଗିଗଲା ତନୁଜାର । ସ୍ୱଚ୍ଛ ଭାବରେ ଆଖି ଖୋଲି ଚାହିଁବାକୁ ଚେଷ୍ଟା କଲା ସେ । ଠିକ୍ ତା'ରି ସାମ୍ନାରେ ଜଣେ ପୁଲିସ୍ କର୍ମଚାରୀ ଠିଆ ହୋଇ ତା'କୁ ପଙ୍କଜ ବିଷୟରେ କ'ଣ ପ୍ରଶ୍ନ କରୁଥିଲେ ।

'ପଙ୍କଜ !' ବ୍ୟସ୍ତରେ ଠିଆ ହୋଇ ପଡ଼ିଲା ତନୁଜା । 'ଆପଣ ମୋର ସ୍ୱାମୀଙ୍କୁ ଚାହାଁନ୍ତି ? ପଙ୍କଜ ଗୁପ୍ତ—'

ପୁଲିସ୍ କର୍ମଚାରୀ ହଁ ଭରିଲେ ।

ସେ ତ ବର୍ତ୍ତମାନ ଏଇଠି ଥିଲେ । ଏଇ କାଉଚ୍ ଉପରେ ବସିଥିଲେ କେଇ ମୁହୂର୍ତ୍ତ ତଳେ । ଦେଖନ୍ତୁ ଛାତ ଉପରେ ନାହାନ୍ତି ତ ! ପୁଲିସ୍ କର୍ମଚାରୀ ସାମାନ୍ୟ ବ୍ୟସ୍ତ ହୋଇ ତଲାସ୍ କରିବାକୁ ଆରମ୍ଭ କରି ଦେଇଥିଲେ ।

ଛାତ ଉପରୁ ଭଗ୍ନ ମନୋରଥ ହୋଇ ପୁଲିସ୍ କର୍ମଚାରୀ ଫେରି ଆସିଲେ । ତନୁଜା ସ୍ଥିର ଭାବରେ କାଉଚ୍ ଉପରେ ଆଉଜି ବସି ରହିଥିଲା ।

ପାଇଲେ ନାହିଁ ?

'ନାଁ ।'

ଆଚ୍ଛା, ଆପଣ ଜାଣନ୍ତି ମୋର ସ୍ୱାମୀ ଆର୍.ସି.ପି.ଆଇ.ର ସଭ୍ୟ ?

'ହଁ ।'

ଆଶ୍ଚର୍ଯ୍ୟ ! ଆପଣ ଜାଣନ୍ତି, ଅଥଚ ସେ ଆତ୍ମଗୋପନ କରିବା ପୂର୍ବରୁ ଆପଣ ତା'ଙ୍କୁ ଖୋଜିବାକୁ ଆସୁଛନ୍ତି ତାଙ୍କର ନିଜ ଘରେ । ମନେହୁଏ ଆପଣମାନଙ୍କ ଅପେକ୍ଷା ସେମାନେ ଖୁବ୍ ବୁଦ୍ଧିମାନ୍ ।

ପୁଲିସ୍ କର୍ମଚାରୀ ସାମାନ୍ୟ ଅପ୍ରତିଭ ହୋଇ ବିଦାୟ ନେଲେ । ତନୁଜା ଉଠିଯାଇ ପୁଣିଥରେ, ସେଇ ରେଲିଂ ଦେଇ ବାହାରକୁ ଚାହିଁ ରହିଲା ଏକାଗ୍ର ଦୃଷ୍ଟିରେ ।

ସେଇ ଲାଇଟ୍‌ପୋଷ୍ଟର ଆଲୋକ ଲିଭିଗଲାଣି ଅନେକ ବେଳୁ । ଦିନର ଆଲୁଅରେ କିପରି ବିକୃତ ଦେଖାଯାଉଛି ଲାଇଟ୍‌ପୋଷ୍ଟଟା—ବ୍ୟଙ୍ଗ କଲାପରି ।

ଚକ୍ରବାଳ ଛାଡ଼ି ସୂର୍ଯ୍ୟ ଉଠି ଆସିଲାଣି ଅନେକ ଉପରକୁ । ଏକାଗ୍ର ଦୃଷ୍ଟିରେ ତନୁଜା ଚାହିଁ ରହିଥିଲା ସୂର୍ଯ୍ୟକୁ । ଏ କ'ଣ ମୁକ୍ତି ସୂର୍ଯ୍ୟ ! ଏ କ'ଣ ପଙ୍କଜ !!



# ସିଦ୍ଧାର୍ଥର ଉପକଥା

ସକାଳ ସାତଟା ବାଜି ଯାଇଛି । ଠିକ୍ ଏଇ ସମୟଟା ଶୋଇରହି ଅର୍ଦ୍ଧନିଦ୍ରା ଆଉ ଜାଗରଣ ଭିତରେ ଅସ୍ପଷ୍ଟ ଭାବରେ ଭାବିଯିବା ସିଦ୍ଧାର୍ଥର ଗୋଟିଏ ବହୁ ଅଭ୍ୟସ୍ତ ବିଳାସ ।

କିନ୍ତୁ ଠିକ୍ ଏଇ ସମୟଟାରେ ହିଁ ଘରର ଝରକା ଗୁଡ଼ାକ ସଶବ୍ଦେ ଖୋଲିଦେଇ—ରେଙ୍ଗେଇ ଫୋପାଡ଼ି—ରେଡ଼ିଓ ଲଗେଇ ସିଦ୍ଧାର୍ଥକୁ ବିରକ୍ତ କରିବା ଅହଲ୍ୟାର ଗୋଟାଏ ଦୁର୍ବାର କୌତୁକ । ସିଦ୍ଧାର୍ଥ ଭାଷାରେ ଏଇଟା ଅହଲ୍ୟାର ଗୋଟାଏ ''ଇନ୍‌କରିଜିବିଲ୍ ହବି ।''

ଅହଲ୍ୟାର ଏଇ ଅତ୍ୟାଚାରରୁ ମୁକ୍ତି ପାଇବାକୁ ସିଦ୍ଧାର୍ଥ ଗୋଟାଏ ତକିଆରେ ମୁହଁ ମାଡ଼ି ଆଉ ଗୋଟାଏ ତକିଆ ବେକ ଉପରେ ଚାପିଧରି ବିଛଣାରେ ପଡ଼ିରହିଛି । ଅହଲ୍ୟା ବୋଧହୁଏ ଯାଇଚି ଗରମ କଫିର ଟ୍ରେ ଆଣି ସିଦ୍ଧାର୍ଥକୁ ପ୍ରଲୁବ୍ଧ କରିବାକୁ ।

ଅହଲ୍ୟାର ଏଇ ସାମୟିକ ଅନୁପସ୍ଥିତିର ସୁଯୋଗ ନେଇ ସିଦ୍ଧାର୍ଥ ତା'ର କିଛିବର୍ଷ ତଳର ନିକଟ-ଅତୀତଟାକୁ ରୋମନ୍ଥନ କରି ନଉଛି ମନେ ମନେ ।

ପରୀକ୍ଷା—ଅସହଯୋଗ ଆନ୍ଦୋଳନ କରି ଏମ୍.ଏସ୍.ସି. କ୍ଲାସରୁ ରଷ୍ଟିକେଟେଡ୍ ହେବା ପରେ ସେ ହଠାତ୍ ବିଲାତ ଚାଲିଯାଏ—ଆଃ ! କିଛିବର୍ଷ ପାଇଁ ବିଲାତ ତାକୁ ଖୁବ୍ ଭଲ ଲାଗିଥିଲା ସତରେ ! ବରଫ ଜମି ଯାଇଥିବା ଝରକା ଗୁଡ଼ାକ ସକାଳୁ ଖୋଲାଇ ଯାଏନାଁ—ବାହାରେ ହୁଏତ କୁହୁଡ଼ି ନହେଲେ ଝିପି ଝିପି ବର୍ଷା । ର୍‌ୟାପର୍ ତଳେ ନେପ୍‌ଟି ପଡ଼ି ଗରମ ଗରମ କଫି ଖାଉ ଖାଉ ରବିବାରର ଅଳସ ସକାଳ ଗୁଡ଼ାକ ସୁନ୍ଦର ଉପଭୋଗ କରିହୁଏ । କିଛି ଗୋଟାଏ କରିବାକୁ ପଡ଼ିବ ବୋଲି ସେ ମେଡ଼ିକାଲ କଲେଜ୍‌ରେ ଭର୍ତ୍ତି ହୁଏ । ଆଉ କିଛି ବର୍ଷ ପରେ ଏମ୍.ଆର୍.ସି.ପି. ଡିଗ୍ରୀ ହାସଲ କରି ନିତାନ୍ତ ସାଧାରଣ ଭାବରେ ଭାରତବର୍ଷକୁ ଫେରି ଆସେ ।

କାର୍‌ମାଇକେଲ୍ ଓ ଜୁହୁ ମେଡ଼ିକାଲ୍ କଲେଜ୍‌ରେ ଦୁଇଟି କ୍ଲାସ୍ ୱାନ୍ ସର୍ଭିସ୍‌କୁ ଅତ୍ୟନ୍ତ ନିର୍ବିକାର ଚିତ୍ତରେ ରିଫ୍ୟୁଜ୍ କରିଦେଇ ପରିବର୍ତ୍ତନ ପାଇଁ ଶାନ୍ତିନିକେତନରେ ଯାଇ ରହେ କିଛିଦିନ ।

ତା'ପରେ ଛ'ବର୍ଷ ତଳର ଗୋଟାଏ ନିର୍ଦ୍ଦିଷ୍ଟ ଫାଲ୍ଗୁନରେ ସେ ଶାନ୍ତିନିକେତନରେ ଅହଲ୍ୟାକୁ ଆବିଷ୍କାର କରେ । ତା'ର ମନେହୁଏ ଅହଲ୍ୟା ଯେପରି ତା'ର ଚିର ପରିଚିତା, ତାର ବହୁ ଜନ୍ମର ବାନ୍ଧବୀ । କେହି କିଛି ଚିନ୍ତା କରିବାର ଅବସର ପାଇବା ପୂର୍ବରୁ ସେ ବିଦ୍ୟୁତ୍ ବେଗରେ ଅହଲ୍ୟାକୁ ବାହାହୋଇ ପଡ଼ି ଶାନ୍ତିନିକେତନରୁ ଅଦୃଶ୍ୟ ହୋଇଯାଏ ।

....ତା'ର କିଛିଦିନ ପରେ ଦେଖାଯାଏ ଗୋଟାଏ ଶାନ୍ତ ସୌମ୍ୟ ସଂଧ୍ୟାରେ ବିରତିପୁର ଗାଁ ଦାଣ୍ଡରେ ଖଣ୍ଡେ ଶଗଡରୁ ଓହ୍ଲେଇ ଆସନ୍ତି ସିଦ୍ଧାର୍ଥ ଆଉ ଅହଲ୍ୟା । ନୂଆଁଣିଆ ଖଣ୍ଡିଏ ଚାଳଘର ଭିତରେ ମହମବତୀର କ୍ଷୀଣ, ନିଷ୍ପ୍ରଭ ଆଲୋକ ଶିଖାରେ ଅହଲ୍ୟା ଖୁବ୍ ସୁନ୍ଦର ଦେଖାଯାଉଥିଲା । ସିଦ୍ଧାର୍ଥ ଅହଲ୍ୟାର କୋଳରେ ଚୁପ୍ ଚାପ୍ ଶୋଇ ରହି ଅହଲ୍ୟାକୁ ଚାହିଁ ଚାହିଁ ଭାବେ—ଅହଲ୍ୟା ଯେପରି ଜଣେ ଅଭିଶପ୍ତା କିନ୍ନରୀ—ରୂପର ଅପୂର୍ବ ସମ୍ଭାର ଧରି ସେ ଓହ୍ଲେଇ ଆସିଛି ପୃଥିବୀ ଉପରକୁ । ଆବେଗଜଡ଼ିତ କଣ୍ଠରେ ସିଦ୍ଧାର୍ଥ କହେ, ''ଜାଣ ଅଳି, ମୁଁ କାହିଁକି ସହର ପରେ ସହର ଡେଇଁ ଏମିତି ଅଣଃନିଶ୍ୱାସୀ ହୋଇ ଛୁଟିଛି ?''

ଅହଲ୍ୟା ନୀରବ ବିସ୍ମୟରେ ସିଦ୍ଧାର୍ଥକୁ ଚାହିଁରହେ । ସିଦ୍ଧାର୍ଥ ସତରେ ଅଦ୍ଭୁତ—ଅଦ୍ୱିତୀୟ ।

ଗୋଟାଏ ଦୀର୍ଘନିଶ୍ୱାସ ନେଇ କହିଚାଲେ ସିଦ୍ଧାର୍ଥ ।

''ଖାଲି ଟିକିଏ ଶାନ୍ତ ନିଭୃତ ପରିବେଶ ଭିତରେ ତମକୁ ନିବିଡ଼ ଭାବରେ ଅନୁଭବ କରିବି ବୋଲି ।''

ସକାଳର ପ୍ରଥମ ଆଲୁଅରେ ସିଦ୍ଧାର୍ଥ ଆଉ ଅହଲ୍ୟା ବିରତିପୁରକୁ ଆବିଷ୍କାର କରନ୍ତି । ବିରତିପୁର ସତରେ ରମଣୀୟ । ତା'ର ଗୋଟାଏ ପଟେ ଅନେକ ଉପରକୁ ମୁଣ୍ଡଟେକି ଉଠିଛି କର୍ଣ୍ଣଗିରି ପାହାଡ଼ର ଆକାଶ ଛୁଆଁ ଶିଖର—ଆଉ ତାକୁ ଯେପରି ଘେରି ବଙ୍କେଇ ବଙ୍କେଇ ବହି ଯାଇଚି ରତ୍ନଚିରା । ଅନ୍ୟପଟେ ପ୍ରାୟ ଚାରି ମାଇଲ ଦୂରରେ ଗୋଟାଏ କ'ଣ କାରଖାନା ବସୁଛି । ଅନେକ ଲୁହା ଲକ୍କର କାରବାର । ଅନବରତ ମାଲଗାଡ଼ି ଯିବାଆସିବା ଲାଗିରହିଚି । ପ୍ରଚୁର ଆଦିବାସୀ ସ୍ତ୍ରୀଲୋକ କୁଡ଼ିଆ କରି ପଡ଼ିରହିଛନ୍ତି । ଅନେକ ହାଣ୍ଡିଆ—ଅନେକ ବାଜା—ଅନେକ ଗୀତ । ଆଉ ମଝିରେ ମଝିରେ ଜିପ୍ ଗାଡ଼ିରୁ ଗୋରା ସାହେବମାନେ ଓହ୍ଲେଇ ପଡ଼ନ୍ତି । ଧୂ ଧୂ ନାଲି ସଡ଼କ ଉପରେ ଧାଡ଼ି ଧାଡ଼ି ଟ୍ରକର ପଟୁଆର ।

ଏଇ ବନ୍ୟ ପରିବେଶ ଖୁବ୍ ଭଲ ଲାଗିଛି ସିଦ୍ଧାର୍ଥକୁ । ଆଉ ସେହିଦିନଠାରୁ ଏଇଠି ସ୍ଥାବର ହୋଇଯାଇଛି ସିଦ୍ଧାର୍ଥ ।

ଅବସର ବିନୋଦନ ପାଇଁ ସିଦ୍ଧାର୍ଥ ଡାକ୍ତରୀ ଚିକିତ୍ସା କରିବାକୁ ଆରମ୍ଭ କରିଛି । କିଛିଦିନ ଭିତରେ ରୋଗୀମାନଙ୍କର ସ୍ୱେଚ୍ଛାକୃତ ଦାନର ପାଣ୍ଠିରେ ପଚାଶ ଜଣ ଇନ୍‌ଡୋ଼ର୍ ପେସେଣ୍ଟ୍ ରହିବା ପରି ଗୋଟିଏ ଡାକ୍ତରଖାନା ତିଆରି ହୋଇ ପାରିଛି । ସିଦ୍ଧାର୍ଥର ବଦାନ୍ୟତା ଓ ଡାକ୍ତର ହିସାବରେ ସୁନାମ ମାଇଲ୍ ଧରି ବ୍ୟାପି ଯାଇଛି । କିନ୍ତୁ ସିଦ୍ଧାର୍ଥ ସତରେ ଅସାଧାରଣ । ସିଦ୍ଧାର୍ଥ ଆଗରେ କେହି ତା'ର ପ୍ରଶଂସା କଲେ ସିଦ୍ଧାର୍ଥ ଦୁଇ ହାତର ପାପୁଲିକୁ ଦେଖେଇ ଦେଇ କୁହେ, 'ସେଟା ଭଗବାନଦତ୍ତ ଏଇ ହାତର ଲକ୍ଷଣ', ଆଉ ପୁଣି ଦି'ହାତକୁ ଯୋଡ଼ି କପାଳରେ ଲଗେଇ କୁହେ, 'ଭଗବାନ୍ ନ ଚାହିଁଲେ, ମଣିଷ ଔଷଧ ଦେଇ ରୋଗ ଭଲ କରିବା ସମ୍ଭବ ନୁହେଁ ।'

ସିଦ୍ଧାର୍ଥ ବିନୀତ, ନିଜକୁ ମଣିଷ ଠାରୁ ଛୋଟ ମନେ କରେ—ଠିକ୍ ସେଇଥିପାଇଁ ଲୋକେ ତାକୁ ମଣିଷ ଠାରୁ ବଡ଼ ଆସନ ଦିଅନ୍ତି । ପଇସାପତ୍ର ବିଷୟରେ ସିଦ୍ଧାର୍ଥ ସବୁଦିନ ପରି ଆଜି ମଧ୍ୟ ଉଦାସୀନ । କିନ୍ତୁ ସିଦ୍ଧାର୍ଥ ଆଉ ପାରି ଉଠେ ନାଁ—ଦିନସାରା ରୋଗୀ ଦେଖି ଦେଖି କ୍ଳାନ୍ତ ହୋଇ ପଡ଼େ । ସିଦ୍ଧାର୍ଥ ନିଜକୁ ବହୁଧା ବିଭକ୍ତ କରେ । ତା'ର ଡାକ୍ତରଖାନାରେ ଦୁଇଜଣ ନୂଆ ପାସ୍‌କରା ଡାକ୍ତର ଆସି ରହିଲେଣି—ପାଖର କାରଖାନାରେ ଆସି ବସତି ସ୍ଥାପନ କରିଥିବା ଜର୍ମାନ୍ ପରିବାରର ଦୁଇଟି ଝିଅ ଆସି ସିଷ୍ଟର୍ ହେଲେଣି । ପ୍ରୟୋଜନ ଅନୁଯାୟୀ କେତେଗୁଡ଼ିଏ ଆଧୁନିକ ଯନ୍ତ୍ରପାତି ମଧ୍ୟ ଆସିଲାଣି ।

ସିଦ୍ଧାର୍ଥ କିଛି ଯୋଜନା କରିନାହିଁ—ସବୁ ହୋଇଯାଇଛି ପ୍ରୟୋଜନ ଅନୁଯାୟୀ—ପରିସ୍ଥିତିର ତାଗିଦରେ, ଆଉ ଯା'ଭିତରେ କିଛି ପଇସା ମଧ୍ୟ ଆସି ଯାଇଛି । ସିଦ୍ଧାର୍ଥ ପାଖକୁ ନୁହଁ—ଅହଲ୍ୟା ପାଖକୁ ।

ସିଦ୍ଧାର୍ଥର ସ୍ପଷ୍ଟ ମନେ ଅଛି—ସେଦିନ ରାତିରେ ଖଣ୍ଡେ ଛୋଟ ବାଥ୍‌ରୁମ୍ କରିବା ପାଇଁ ଅହଲ୍ୟା ଆଉ ସିଦ୍ଧାର୍ଥ ଭିତରେ କଥାବାର୍ତ୍ତା ପଡ଼ିଥିଲା । ହଠାତ୍ ଅହଲ୍ୟା କୁହେ, ''ରହିବା ପାଇଁ ଖଣ୍ଡେ ଘର କରିବାକୁ ହବ—ବଡ଼ ଅସୁବିଧା ହେଲାଣି ।''

ସିଦ୍ଧାର୍ଥ ସତରେ ଆଶ୍ଚର୍ଯ୍ୟ ହେଇଯାଇଥିଲା । ଘର କରିବାର ପ୍ରୟୋଜନ ବା' କ'ଣ ! ଆଉ ଯଦିବା ପ୍ରୟୋଜନ ଅଛି ସେଥିପାଇଁ ଅର୍ଥ ଆସିବ କୁଆଡୁ ! କିନ୍ତୁ ଅହଲ୍ୟା ଯେତେବେଳେ କୁହେ ଯେ ତା' ପାଖରେ ବର୍ତ୍ତମାନ ତିରିଶ ହଜାର ଟଙ୍କା ରଖି ପାରିଛି, ସିଦ୍ଧାର୍ଥର ବିସ୍ମୟର ସୀମା ରହେ ନାହିଁ । ସିଦ୍ଧାର୍ଥ କେଇ ମିନିଟ୍ ସଂପୂର୍ଣ୍ଣ ନିର୍ବାକ୍ ହୋଇ ଦୂର ଚକ୍ରବାଳକୁ ଚାହିଁ ରହେ ଆଉ କୁହେ—

''ବୁଝିଲ ଅଳି, ଏଇ ଲୋକମାନେ ଚିରଦିନ ମୋ' ବିନା ଚଳି ଆସୁଥିଲେ । କିନ୍ତୁ ଏଇ ଚାରିବର୍ଷ ଭିତରେ ମୁଁ ସେମାନଙ୍କ ପାଇଁ ଏକାଥରକେ ଅପରିହାର୍ଯ୍ୟ

ହୋଇପଡ଼ିଛି । ଆଉ ଠିକ୍ ସେଇଥିପାଇଁ ସେମାନଙ୍କୁ ଏଇ ତିରିଶହଜାର ଟଙ୍କାର ସମୂହ ଟିକସ ଦେବାକୁ ପଡ଼ିଛି । ମୁଁ ଯାହାକୁ ଆଜି ପର୍ଯ୍ୟନ୍ତ ବଦାନ୍ୟତା ବୋଲି ମନେ କରି ଆସିଛି—ଆଜି ବୁଝୁଛି ସେ'ଟା କେବଳ ଟଙ୍କା ରୋଜଗାର କରିବା ପାଇଁ ଗୋଟାଏ ବାହାନା ।

ଅହଲ୍ୟା ସିଦ୍ଧାର୍ଥର ଏ ଔଦାସୀନ୍ୟ ପ୍ରତି ଅଭ୍ୟସ୍ତ । ସେ କିଛି ଜବାବ୍ ଦିଏ ନାହିଁ ।

ଅକ୍ଳାନ୍ତ ପରିଶ୍ରମ କରି ସିଦ୍ଧାର୍ଥ ଜଣେ ଜର୍ମାନ୍ ଇଞ୍ଜିନିୟରଙ୍କର ସ୍ତ୍ରୀକୁ ସଂପୂର୍ଣ୍ଣ ଆରୋଗ୍ୟ କରି ପାରିଛି ଏଇ କିଛିଦିନ ତଳେ । ଜର୍ମାନ୍ ଦମ୍ପତି କୃତଜ୍ଞତା ଜଣାଇବାକୁ ଆସି ଚା' ଖାଉ ଖାଉ ଦଶମିନିଟ୍ ଭିତରେ ଖଣ୍ଡେ କାଗଜରେ ସିଦ୍ଧାର୍ଥର ପ୍ରସ୍ତାବିତ ଘର ପାଇଁ ପ୍ଲାନ୍ ଆଙ୍କି ଦେଇ ଗଲେ ।

ସିଦ୍ଧାର୍ଥ ତା'ପରେ ଗଲା ଡାକ୍ତରଖାନାକୁ, ଆଉ ଅହଲ୍ୟା ଗଲା ଇଟା ପାଇଁ ବରାଦ ଦବାକୁ ।

ଗତ ଦୁଇବର୍ଷ ଧରି ସେହି ଗାରର ନିର୍ଦ୍ଦେଶ ଅନୁସାରେ ଇଟା ଉପରକୁ ଉଠିଛି—ଆଉ ପୁଣି ତଳେ ଗଦା ଗଦା ଇଟା ଆସି ଜମି ଯାଇଛି । ଟନ୍ ଟନ୍ ଲୁହା ଛଡ଼ ଆଉ ସିମେଣ୍ଟ୍ ଆସି ଥାକ ମାରି ଥୁଆ ହୋଇଛି—ଆଉ ତା'ପରେ ଧୀରେ ଧୀରେ କୁଆଡ଼େ ମିଳେଇ ଯାଇଛି । ଯୁଆଡ଼େ ଦେଖିବ ସିଆଡ଼େ ଘର ତିଆରିର ସରଞ୍ଜାମ । ଆଜି ଟ୍ରକ୍ ଆସି ଆଠ ଦଶଟା ଗରକାଠ ପକେଇ ଦେଇ ଗଲାଣି ତ କାଲିକୁ ସେସବୁ ଚିରା ହୋଇ ପଟା ହେଇଗଲାଣି । ସିମେଣ୍ଟ୍, ଚୂନ, ବାଲି ତ ଫେଣ୍ଟା ଚାଲିଛି ଅନବରତ । କାମ ପ୍ରାୟ ସରି ଆସିଲାଣି । କେଉଁଠି କେମିତି ଟିକିଏ କାମ ବାକୀ ରହିଯାଇଛି । ବାଥ୍ରୁମ୍ ବାରଣ୍ଡା ଖଣ୍ଡକ ସିମେଣ୍ଟ୍ ହବ ତ—କୋ' କୋ' କବାଟ ଝରକାରେ ରଙ୍ଗ ଲାଗିବ । ହତା ଭିତରେ ପଡ଼ିରହିଥିବା ଭଙ୍ଗା ଇଟା, ଛିଣ୍ଡା ସିମେଣ୍ଟ୍ ବସ୍ତା ଆଉ ରେଜା କାଠପଟା ସବୁ ପରିଷ୍କାର କରାଯିବ । ଆଉ କମ୍ପାଉଣ୍ଡ ୱାଲ୍‌ରେ ଗୋଟାଏ ଫାଟକ ଲାଗିବ ।

ନୂଆ ଘରର ବାଲ୍‌କନି ଉପରେ ସେଦିନ ସନ୍ଧ୍ୟାରେ ଗୋଟିଏ ଛୋଟ ଘରୋଇ ଆସର ଜମିଥିଲା । ସିଦ୍ଧାର୍ଥ, ଅହଲ୍ୟା ଆଉ ସିଦ୍ଧାର୍ଥ ଦମ୍ପତିର ଦୁଇବନ୍ଧୁ ରମାକାନ୍ତ ଓ ସୌମେନ୍ । ଆଲୋଚ୍ୟ ବିଷୟ ହଉଛି ଏଇ ବିଶାଳ ହତାରେ କି ପ୍ରକାରର ଫାଟକ ଲଗାଯିବ । ସିଦ୍ଧାର୍ଥର ଅନୁବାରିତ ପ୍ରତିବାଦକୁ ହସରେ ଉଡ଼େଇ ଦେଇ ସେଦିନର ସନ୍ଧ୍ୟା ଆସରରେ ଅହଲ୍ୟାର ଜିତ୍ ହେଇଛି । ବହୁ ସଂଖ୍ୟକ ମତରେ ଗ୍ରହଣ କରାଯାଇଛି କୋଲାପ୍‌ସିବିଲ୍ ଗେଟ୍ ଲଗାଯିବ । ଯା' ବିରୁଦ୍ଧରେ ସିଦ୍ଧାର୍ଥର ପ୍ରତିବାଦଟା ଟିକିଏ ସୂକ୍ଷ୍ମ । ଅତୀତରେ ବହୁ କୋଲାପ୍‌ସିବିଲ୍ ଗେଟ୍ ବାହାରେ ଠିଆହୋଇ ସିଦ୍ଧାର୍ଥ ତା'ର ଭିତରର ଲୋକମାନଙ୍କୁ ଦୟା କରିଛି । ମନେ ମନେ

କହିଛି, ''ଏତେ ଭୟ କର ତମେ ବାହାରର ଲୋକଙ୍କୁ, ସେଥିପାଇଁ ନିଜ ପାଇଁ ତମେ ଏ କାରାଗାର ତିଆରି କରିଛ ।'' କିନ୍ତୁ ସିଦ୍ଧାର୍ଥ କ'ଣ ସେତେବେଳେ ଜାଣିଥିଲା ତା'ରି କଥା ଦିନେ ତା'ରି ପାଖକୁ ଫେରି ଆସିବ ପ୍ରତିଧ୍ୱନି ପରି ।

ବେଶି ସମୟ ଲାଗିନାହିଁ । ସମୟ ଅତିବାହିତ ହେଇଯିବାର ସୁଯୋଗ ଦେଇନାହିଁ ଅହଲ୍ୟା । ମାତ୍ର ଏକମାସ ଭିତରେ କୋଲାପ୍‌ସିବିଲ୍ ଫାଟକ ଆସି ଲାଗିଗଲାଣି ପାଚିରୀରେ । ଫାଟକକୁ ଚାହିଁ ଅହଲ୍ୟା ମନେ ମନେ ଭାବିଛି, ''ଘର ଲାଏକ୍ ମୁଖବନ୍ଧ ହବା ଦରକାର ।''

ଗୋଟାଏ କରୁଣ ସୂର୍ଯ୍ୟାସ୍ତରେ ହଠାତ୍ ଦିନେ ସିଦ୍ଧାର୍ଥ ଲୁହା-ଫାଟକର ଅବସ୍ଥିତି ବିଷୟରେ ଚେତନା ପାଏ । କିପରି ଅସ୍ୱସ୍ତିକର ଲାଗେ ସିଦ୍ଧାର୍ଥକୁ । ଦୋତାଲାର ବାଲ୍‌କନି ଉପରେ ଠିଆ ହେଇ ତା'କୁ ଲାଗେ ସେ ଯେମିତି ତା'ର ମନର ଅରମାନ୍ ମେଣ୍ଟେଇ ନବାକୁ ମୋଗଲ ସମ୍ରାଟର ପ୍ରହସନ କରୁଛି । କିନ୍ତୁ ଏତିକିରେ କ'ଣ ମଣିଷର ଶୋଷ ଶେଷ ହୁଏ ! ସେ ଫାଟକ ପାଖରେ ହାତରେ ବନ୍ଧୁକ ଧରି ଗୁର୍ଖା ଦରୱାନ୍ ଠିଆ ହେବା ଦରକାର—ଆଉ ଘରର ପୋର୍ଟିକୋର ଛାଇରେ ନେପ୍‌ଟିପଡ଼ି ଆଲ୍‌ସେସିଆନ୍ କୁକୁର ଜିଭ ଲହ ଲହ କରୁଥିବା ଦରକାର, ତା'ପରେ...? ତା'ପରେ ଅନେକ କିଛି । ଶେଷ ନାହିଁ ଯା'ର । ବିରକ୍ତିରେ ମୁହଁ ଫେରେଇ ଆଣେ ସିଦ୍ଧାର୍ଥ । ତା'ର ସନ୍ଦେହ ହୁଏ ଅହଲ୍ୟା ବୋଧହୁଏ ଏଇ ଫାଟକ ପରି ଶକ୍ତ ଆଉ ଦାମ୍ଭିକ ହେଇଯାଉଛି ଧୀରେ ଧୀରେ । ହୁଏତ ପ୍ରସ୍ତରମୟୀ ହେଇଗଲାଣି ଅହଲ୍ୟା ।

ତକିଆ ଗୁଡ଼ାକୁ ମୁଣ୍ଡ ଉପରୁ ଫିଙ୍ଗି ଦେଇ ଉଠିବସେ ସିଦ୍ଧାର୍ଥ । କେବେ ଆସିବ ସେ ଶୁଭ ମୁହୂର୍ତ୍ତ, ଯେଉଁଦିନ ରାମଚନ୍ଦ୍ରଙ୍କର ପାଦସ୍ପର୍ଶରେ ତା'ର ପଥରର ଖୋଳ ଛାଡ଼ି ଉଠିଆସିବ ମାନବୀ ଅହଲ୍ୟା ! କିଏ ?...

ବୋଡ୍‌ରୁମ୍‌ର ଅସଂଖ୍ୟ ଗବାକ୍ଷ ଦେଇ ଆଲୋକସ୍ରୋତ ମାଡ଼ି ଆସୁଛି ଭିତରକୁ । ସକାଳର ପବନରେ ଡ୍ରପର ଗୁଡ଼ାକ ଉଡ଼ିବାକୁ ଆରମ୍ଭ କଲେଣି ।

ଅହଲ୍ୟା କଫିର ଟ୍ରେ ଆଣି ପାଖରେ ରଖିଲା, ଆଉ ଠିକ୍ ତା' ପରେ ପରେ ରେଡ଼ିଓ ସିଲୋନ୍‌ର ଅଶ୍ରାବ୍ୟ ସିନେମା ସଙ୍ଗୀତ । ନାଁ— ଶେଷ ପର୍ଯ୍ୟନ୍ତ ଉଠିବାକୁ ହବ ସିଦ୍ଧାର୍ଥକୁ । ଆଉ ଶୋଇ ରହିବା ସମ୍ଭବ ନୁହେଁ । ଆଉ ତା'ଛଡ଼ା ସକାଳର କଫିଟା ମଧ ସତରେ ଲୋଭନୀୟ ।

ସିଦ୍ଧାର୍ଥର ମନେପଡ଼େ ଅନେକଦିନ ତଳେ ସେ ଅହଲ୍ୟାକୁ ଦିନେ ଆକ୍ଷେପ କରି କହିଥିଲା, ''ଏଇ ସକାଳର କଫିଟା ଚାକର ହାତରେ ପଠେଇ ନଦେଇ ତମେ ଆଣିଲେ ଭଲ ହୁଅନ୍ତା ବୋଧହୁଏ ।'' ସେହିଦିନଠାରୁ ପ୍ରତିଦିନ ଅହଲ୍ୟା ନିର୍ଭୁଲ

ଭାବରେ ସକାଳର କଫି ନେଇ ଆସେ । ଟିକିଏ ରସିକତା କରିବାର ଲୋଭରେ ସିଦ୍ଧାର୍ଥ ହଠାତ୍ ଉଠିପଡ଼ିଲା ବିଛଣାରୁ । ସାମ୍ନାରେ ଟ୍ରେ ଥୁଆ ହେଇଛି—କଫି ଆଉ ଦୁଇଖଣ୍ଡ କ୍ରିମ୍‌କ୍ରାକର୍ ବିସ୍କୁଟ । ବ୍ରେକ୍‌ଫାଷ୍ଟ ଆସିବାକୁ ତଥାପି ଡେରି ଅଛି । କିନ୍ତୁ ଅହଲ୍ୟା କାହିଁ !

ପାଖଘରୁ ଅହଲ୍ୟାର କଣ୍ଠସ୍ୱର ଶୁଣାଯାଉଛି ମିସ୍ତ୍ରୀମାନଙ୍କୁ ବରାଦ୍ ଦବାର । ଏଠି ରଙ୍ଗ ଲଗାଅ—ସେଠିକି ସିମେଣ୍ଟ୍ ପଠାଅ—ସେ ଘରର କାଛଗୁଡ଼ାକରେ ପାଣି ଛିଞ୍ଚ—ଇତ୍ୟାଦି ଇତ୍ୟାଦି । ବିରକ୍ତି ଓ ହତାଶରେ ସିଦ୍ଧାର୍ଥର ସ୍ନାୟୁ ସବୁ ଉତ୍ତେଜିତ ହୋଇ ଉଠିଲେ । ଗତ ଦୁଇବର୍ଷ ଧରି ଏଇ ସିମେଣ୍ଟ୍ କଂକ୍ରିଟ୍ ଆଉ ଲୁହା ତା'ର ଜୀବନଟାକୁ ଅସହ୍ୟ କରି ତୋଳିଲେଣି । ଅଥଚ ମଣିଷ ଜୀବନର ଅଳ୍ପ କେଇଟି ସୁନ୍ଦର ସକାଳରେ ମଧ୍ୟ ସେମାନେ ଅନଧିକାର ପ୍ରବେଶ କରି ତା'କୁ ବିଷାକ୍ତ କରିଦେଇ ଯିବେ । ଅସହ୍ୟ ! କିନ୍ତୁ ମୁହଁ ଖୋଲି ସିଦ୍ଧାର୍ଥ କୁହେ ନାହିଁ କିଛି ।

ଚାମୁଚରେ କଫି ଘାଣ୍ଟୁ ଘାଣ୍ଟୁ ସିଦ୍ଧାର୍ଥ ତା'ର ବେଡ଼୍‌ରୁମ୍ ଛାତକୁ ଲକ୍ଷ୍ୟ କରେ । ଅହଲ୍ୟାର ଜଣେ ବିଦେଶୀ ସହପାଠିନୀ କିଛିଦିନ ତଳେ ସେମାନଙ୍କର ଆତିଥ୍ୟ ସ୍ୱୀକାର କରି, କୃତଜ୍ଞତାର ନିଦର୍ଶନ ସ୍ୱରୂପ ଖଣ୍ଡେ ପେଣ୍ଟିଂ କରିଦେଇ ଯାଇଛନ୍ତି । ନଗର ଭ୍ରମଣରୁ ପ୍ରତ୍ୟାବର୍ତ୍ତନ କରି ସୁନ୍ଦରୀ ଗୋପା ଦେବୀଙ୍କ ପାଖରେ ଶୋଇ ରହିଛନ୍ତି ପ୍ରଶାନ୍ତ ମୂର୍ତ୍ତି ବୁଦ୍ଧଦେବ ଆଉ ତାଙ୍କର ଅବଚେତନ ମନର କୁହୁଡ଼ି ଭିତରେ ଦେଖା ଯାଉଛନ୍ତି ସେଇ ଗଳିତ-ଚର୍ମ, ଶୁକ୍ଳ-କେଶ, ବୃଦ୍ଧ, ବ୍ୟାଧିଗ୍ରସ୍ତ ପଙ୍ଗୁ, ଅକାଳମୃତ ତରୁଣ ଓ ପ୍ରଶସ୍ତ ଲଲାଟ ଚକ୍ଷୁ । ଅସମ୍ଭବ ଜୀବନ୍ତ ହୋଇଛି ଛବିଟା । ଦୀର୍ଘନିଶ୍ୱାସ ନେଇ କଫିରେ ଚୁମୁକ୍ ଦେଲା ସିଦ୍ଧାର୍ଥ । କଫି ଥଣ୍ଡା ହୋଇ ଆସିଲାଣି । ଆଉ କିଛିଦିନ ତଳେ ହୁଏତ ଅହଲ୍ୟା ଏକଥା ସହ୍ୟ କରନ୍ତା ନାହିଁ । ନିଜେ ଉଠିଯାଇ ଆଉ ଗୋଟାଏ କପ୍ କଫି ତିଆରି କରି ଆଣିଥାଆନ୍ତା—କିନ୍ତୁ ଆଜି ହୁଏତ ଅହଲ୍ୟା ଆରପଟ ଘରର ଝରକାରେ ଦେଖୁଛି ଆଉ ଗୋଟାଏ କୋଟ ରଙ୍ଗ ଦରକାର ହବ କି ନାଁ ।

ସିଦ୍ଧାର୍ଥର ମୁହୂର୍ତ୍ତକ ପାଇଁ ମନେ ହେଲା ସେ ଅହଲ୍ୟାକୁ ପାଖକୁ ଡାକି ଟଲ୍‌ଷ୍ଟଏଙ୍କର ସେଇ ଗପଟା ତାକୁ କୁହନ୍ତି । "How much land a man needs"—ସେଇ ଯେଉଁ ଲୋକଟା ଅନେକ ଜାଗା ପାଇବ ବୋଲି ପୂରା ଗୋଟାଏ ଦିନ ବିନା ବିଶ୍ରାମରେ ଦୌଡ଼ି ଦୌଡ଼ି ଶେଷକୁ ମରିଗଲା ଆଉ ତା'ର ସମାଧି ପା'ଇଁ ମୋଟେ ଦରକାର ହେଲା ସାତ ହାତ ଭୂମି । ନାଁ ଆଉ ଅହଲ୍ୟା ଅନ୍ତଃସତ୍ତ୍ୱା । ମୋ' ମନ ଭିତରେ ଏଇ ଗପଟାର ଅଶୁଭ ଇଙ୍ଗିତ ସୃଷ୍ଟି କରିବାଟା ଉଚିତ୍ ହେବନାହିଁ ।

ତଳେ କାହାର ପାଟିତୁଣ୍ଡ ଶୁଣି ବାଲ୍‌କନି ଉପରକୁ ଆସି ସିଦ୍ଧାର୍ଥ ଦେଖେ ଯେ ଜଣେ ଲୋକ ହତା ଭିତରକୁ ଆସିବାକୁ ଚାହୁଁଛି ଅଥଚ ସିଦ୍ଧାର୍ଥର ଚାକର ତା'କୁ ଆସିବାକୁ ଦଉନାହିଁ । ମନେପଡ଼ିଗଲା ସିଦ୍ଧାର୍ଥର, ଆଜି ରବିବାର । ଅହଲ୍ୟାର କଡ଼ା ହୁକୁମ୍, ଯେମିତି କେହି ରୋଗୀ ଆସି ସିଦ୍ଧାର୍ଥ ସହିତ ଦେଖା ନକରନ୍ତି । ସିଦ୍ଧାର୍ଥର ବିଶ୍ରାମ ପ୍ରୟୋଜନ ।

ରୋଗୀଟିକୁ ଭିତରକୁ ଆସିବାକୁ ଦେବାପାଇଁ ଚାକରକୁ ଡାକି ସଙ୍କେତ ଦେଲା ସିଦ୍ଧାର୍ଥ । ଏତେ ଦୂରରୁ ମଧ ରୋଗୀଟିର ମୁହଁରେ କୃତଜ୍ଞତାର ସ୍ପଷ୍ଟ ଚିହ୍ନ ଦେଖି ହେଲା । ମନକୁ ମନ ହସିଲା ସିଦ୍ଧାର୍ଥ—ମୂର୍ଖ ଅହଲ୍ୟା—ତମେ କ'ଣ ଜାଣ ଯେ ମଣିଷର ଟିକିଏ ଉପକାର ପାଇଁ ସିଦ୍ଧାର୍ଥର ସାରା ଜୀବନର ବିଶ୍ରାମ ଯଦି ବିନିମୟ କରାଯାଏ, ତାହାହେଲେ ମଣିଷର ଉପକାରଟାହିଁ ହବ ବେଶି କାମ୍ୟ ।

ତଳକୁ ଆସି ସିଦ୍ଧାର୍ଥ ଯାହା ଦେଖିଲା ସେଥିରେ ନିଜେ ଆତଙ୍କିତ ହୋଇ ଉଠିଲା । ସେ ଲୋକଟାର ଡାହାଣପଟ ଗାଲରେ ଗୋଟାଏ ବିରାଟ ଗର୍ତ୍ତ ହୋଇ ଭୟଙ୍କର ଦେଖାଯାଉଛି ଲୋକଟା । କାନ୍‌ସର ଆଉ କ୍ଷତସ୍ଥାନ ଉପରେ ଲକ୍ଷ ଲକ୍ଷ ମ୍ୟାଗଟ୍ ସବୁ ଘେରି ବସିଛନ୍ତି । ଯାକୁଇ କୁହାଯାଏ ଜୀବନ୍ତ ସମାଧି, କିନ୍ତୁ ଉପାୟ ନାହିଁ ସିଦ୍ଧାର୍ଥର । ବିନା ସର୍ତ୍ତରେ ସ୍ୱୀକାର କରିବାକୁ ହେବ ଯେ ମନୁଷ୍ୟର ଚିକିତ୍ସା-ବିଜ୍ଞାନ ଅତ୍ୟନ୍ତ ସୀମିତ; କିନ୍ତୁ କ'ଣ କହିବ ସେ ରୋଗୀକୁ ! ସତ୍ୟ କହିଲେ ସେ କୁହନ୍ତା, ''ତମକୁ ଅସହାୟ ଭାବରେ ଆଉ ମାତ୍ର ଗୋଟିଏ ମାସ ଅପେକ୍ଷା କରିବାକୁ ପଡ଼ିବ ନିଶ୍ଚିତ ମୃତ୍ୟୁ ମୁଖରେ ପଡ଼ିବାକୁ ।'' କିନ୍ତୁ ଏକଥା କ'ଣ କୁହାଯାଏ ! ଅପରାଧୀ ପରି ଭୀରୁ ଜଡ଼ିତ କଣ୍ଠରେ ସିଦ୍ଧାର୍ଥ କୁହେ, ''ମୋ ପାଖରେ ଏ ରୋଗର ଔଷଧ ନାହିଁ—ବଡ଼ ଡାକ୍ତରଖାନାରେ ଦେଖ, ସେଠି ମିଳିପାରେ ହୁଏତ ।'' କିନ୍ତୁ ରୋଗୀମାନେ ଛାଡ଼ିବାକୁ ପ୍ରସ୍ତୁତ ନୁହଁ । ''ବାବୁ ଆପଣଙ୍କ ନାଁ ଶୁଣି ଅନେକ ବାଟରୁ ଆସିଚି—ଆପଣଙ୍କର ଯାହା ଫିସ୍ ହବ ମୁଁ ସବୁ ଦେବି—ମତେ ଖାଲି ଟିକିଏ ଭଲ କରିଦିଅ ଡାକ୍ତରବାବୁ !''

କଥାଟା ସିଦ୍ଧାର୍ଥର ଠିକ୍ ଜାଗାରେହିଁ ଲାଗିଲା । ଠିକ୍ କଥା, ସେ ଚିକିତ୍ସାର ବ୍ୟବସାୟ କରେ । କିନ୍ତୁ ଆଜି କି ଜବାବ୍ ଦବ ସିଏ ? ସିଦ୍ଧାର୍ଥର ମନେହେଲା, ଯଦି ସେ ତା'ର ସବୁକିଛି ବିନିମୟରେ ଏ ଲୋକଟିକୁ ଆରୋଗ୍ୟ କରିଦେଇ ପାରନ୍ତା ତାହାହେଲେ ଅବା ସେ ଟିକିଏ ଆଶ୍ୱସ୍ତ ହୁଅନ୍ତା । କିନ୍ତୁ ଉପାୟ ନାହିଁ । କ୍ଳାନ୍ତ ପଦକ୍ଷେପରେ ସିଦ୍ଧାର୍ଥ ପୁଣି ଫେରିଗଲା ବାଲ୍‌କନି ଉପରକୁ । ସେଇ ରୋଗୀଟି ଆସ୍ତେ ଆସ୍ତେ ପାଦପକେଇ ଫେରିଯାଉଛି । କିପରି କରୁଣ ଆଉ କୁତ୍ସିତ ଦେଖାଯାଉଚି ଲୋକଟା । ସେ ଯେମିତି ବିଧି-ପ୍ରେରିତ ହେଇ ତା ପାଖକୁ ଆସିଥିଲା ତା'ର ନକଲି

ବଦାନ୍ୟତାକୁ ଅପମାନ କରିଯିବାକୁ, ଚିକିତ୍ସକର ଦାମ୍ଭିକତାକୁ ଅବନତ କରିଦେଇ ଯିବାକୁ ।

ସିଦ୍ଧାର୍ଥ ଅକାରଣରେ ମନକୁ ମନ ନିଜ ଉପରେ ବିରକ୍ତ ହୋଇ ଉଠିଲା । ଅସମ୍ଭବ ରାଗ ହେଲା ସେଇ ଲୋକଟା ଉପରେ ସିଦ୍ଧାର୍ଥର । ସେ ଯେପରି ମୃତ୍ୟୁକୁ ଅପେକ୍ଷା କରିବାକୁ କହିଦେଇ ଆସି ସିଦ୍ଧାର୍ଥକୁ କହିଗଲା, ''ତମେ ଅସମର୍ଥ—ତମେ ଅସହାୟ ।'' କି ପ୍ରୟୋଜନ ବା' ଥିଲା ତା'ର ଏଇ ସୁନ୍ଦର ସକାଳଟାକୁ ବିଷାକ୍ତ କରି ଦେଇ ଯିବା ପାଇଁ । ମନଟାକୁ ବାରମ୍ବାର ଫେରେଇ ନବାକୁ ଚେଷ୍ଟା କଲା ସିଦ୍ଧାର୍ଥ—କିନ୍ତୁ ହୁଏନାଁ ।

ସେଇ ଲୋକଟା ଅନେକ ବାଟ ଚାଲିଗଲାଣି । ଅନେକ କ୍ଷୁଦ୍ର ଦେଖାଯାଉଛି ଲୋକଟା—ଗୋଟାଏ ବିନ୍ଦୁପରି । ସେ ହୁଏତ ତା' ଘରକୁ ଫେରିଯାଇ....

ନାଁ-ନାଁ-ନାଁ ଚିତ୍କାର କରି ଉଠିଲା ସିଦ୍ଧାର୍ଥ—ସେ ଲୋକଟା କଥା ଆଦୌ ଭାବିବି ନାହିଁ ମୁଁ—ଜାହାନ୍ନାମାକୁ ଯାଉ ସେ ।

ଆଉ କପେ କଫି ଖାଇଲେ ଚଳନ୍ତା । 'ପୁଝାରୀ'—ଡାକଦେଲା ସିଦ୍ଧାର୍ଥ ।

ରାସ୍ତା ଉପରେ ଦୁଇଟା ପିଲା ଗୁଡ଼ି ଉଡ଼ଉଛନ୍ତି । ସେମାନଙ୍କର ବୟସ ବୋଧହୁଏ ତେରଠାରୁ ଷୋହଳ ଭିତରେ ହବ । ଚମତ୍କାର ବୟସ କିନ୍ତୁ ଗୁଡ଼ି ଉଡ଼େଇବା ପାଇଁ । ଗୁଡ଼ି ଉଠିଚି ଅନେକ ଉପରକୁ । ଇସ୍ ! ଆଖି ପାଏନା । ଗୋଟାଏ ବିନ୍ଦୁ ହୋଇ ଆକାଶରେ ମିଶି ଯାଇଛି ଏକାଥରକେ । ଉଜ୍ଜ୍ୱଳ ଖରାରେ ଗୁଡ଼ି ସୂତାର ଟେର୍ ମିଳେନାଁ । ଆତ୍ମବିସ୍ମୃତ ହୋଇ ଭାବୁଚି ସିଦ୍ଧାର୍ଥ । ଠିକ୍ ଗୁଡ଼ିର ଏଇ ସୂତା ପରି ମଣିଷ ତା'ର ମନକୁ ସୂକ୍ଷ୍ମ ଆଉ ସୁଦୂରପ୍ରସାରୀ କରିବା ପ୍ରୟୋଜନ । ତାହାହେଲେ ମନୁଷ୍ୟର ସ୍ଥୂଳ ଶରୀର ସଂସାରର ପଙ୍କରେ ଲୋଟୁଥିଲେ ବି ମନଟା ଉପରକୁ ଉଠିଯାଇ ସତ୍-ଚିତ୍-ଆନନ୍ଦର ସ୍ପର୍ଶ ପାଏ । ମୁହୂର୍ତ୍ତକରେ ସିଦ୍ଧାର୍ଥର ମନର କାପ୍ତା ତୀର ବେଗରେ ଉଡ଼ି ଚାଲିଲା ସେଇ ଗୁଡ଼ି ସାଙ୍ଗରେ । ଉପରକୁ—ଆହୁରି ଉପରକୁ । ସେ ବୋଧହୁଏ ଚିରଆନନ୍ଦର ଦେଶ । ସୂର୍ଯ୍ୟର ପବିତ୍ର ଆଲୋକରେ ନୀଳ ଆକାଶ ସେଠି ଶୋଇ ଶୋଇ ହାଇ ମାରୁଚି ।

କିନ୍ତୁ ସିଦ୍ଧାର୍ଥ ଡାକ୍ତର ଯେ' ତା'ର କୋଠାର ବାଲ୍‌କନି ଉପରେ ସ୍ଥୂଳ ଶରୀର ଧରି ଠିଆ ହୋଇ ରହିଛି ସେ'ଟା କ'ଣ ଭୁଲି ହୁଏ ! ସେ'ଟା ବି ତ ଗୋଟାଏ ସତ୍ୟ, ଯାହାକୁ ଆଖିମିଟ୍‌କା ମାରି ଅସ୍ୱୀକାର କରାଯାଏ ନାଁ । ନିଜର ଦେହ ଭିତରେ ସିଦ୍ଧାର୍ଥର ମନ ଗୋଟାଏ ତୀକ୍ଷ୍ଣ ଯନ୍ତ୍ରଣାରେ ଛଟ୍‌ପଟ୍ ହବାକୁ ଲାଗିଲା । ସିଦ୍ଧାର୍ଥ ମୁକ୍ତି ପାଇବାକୁ ଚାହେଁ । ତା'ର ମନେ ହେଲା ଯେପରି ତା'ର ବ୍ୟବସାୟ, ତା'ର ଏଇ

ପ୍ରାସାଦ ସବୁକିଛି ମାଡ଼ି ବସିଛନ୍ତି ତା'କୁ ଅସମ୍ଭବ ଜୋର୍‌ରେ । ହୁଏତ ଅହଲ୍ୟା ବି ସେମାନଙ୍କ ସହିତ ଯୋଗ ଦେଇଛି ସିଦ୍ଧାର୍ଥକୁ ପଙ୍ଗୁ କରିଦବାକୁ ।

କିଛିସମୟ ତଳେ ଯେଉଁ ଗୁଡ଼ିଟା ଗୋଟାଏ ନିଶ୍ଚଳ ବିନ୍ଦୁ ପରି ଆକାଶ ବକ୍ଷରେ ସ୍ଥିର ହୋଇ ଯାଇଥିଲା, ପବନର ବେଗରେ ସେ'ଟା ଅସ୍ଥିର ଭାବରେ ଟକ୍‌କର ଦେବାକୁ ଆରମ୍ଭ କରିଛି । ଠିକ୍ ସେଇ ଗୁଡ଼ିଟା ପରି ଅସ୍ଥିର ଭାବରେ ଆଜି ସିଦ୍ଧାର୍ଥ ବି ମୁକ୍ତି ଚାହେଁ । ନାଁ—ଆଉ ଗୁଡ଼ିଟାକୁ ଆୟତ୍ତରେ ରଖା ଯାଏନାଁ, ପବନର ସୁଅରେ ଗୁଡ଼ିଟା ବିଦ୍ୟୁତ୍ ବେଗରେ ବୃତ୍ତ କାଟି ଚାଲିଛି ଶୂନ୍ୟରେ । ...ଯାଃ, ଗଲା । କଟିଗଲା ଗୁଡ଼ିଟା । ଆଉ ସେ' ଅସ୍ଥିରତା ନାହିଁ । ବର୍ତ୍ତମାନ ଗୋଟାଏ ନିର୍ଲିପ୍ତ ପ୍ରଶାନ୍ତି ନେଇ ଭାସି ଚାଲିଚି ଗୁଡ଼ିଟା । ସେ ଯେପରି ସୁଦୂରର ଯାତ୍ରୀ । ବେଗ ନାହିଁ—ଉଦ୍‌ବେଗ ନାହିଁ ।

ବାହାରେ ଖରା ଟାଣ ହେଇ ଆସୁଛି । ଘର ଭିତରକୁ ଆସିଲା ସିଦ୍ଧାର୍ଥ । ଏପର୍ଯ୍ୟନ୍ତ ଅହଲ୍ୟାର କାମ ସରିନାହିଁ । ଲୋକମାନଙ୍କର କାମ ସରିନାହିଁ । ଲୋକମାନଙ୍କର କାମ ତଦାରଖ୍ କରିସାରି ଅହଲ୍ୟା ପ୍ରାୟ ଦିନ ଦୁଇଟା ପୂର୍ବରୁ ଖାଇବାକୁ ଯାଇପାରେ ନାହିଁ । ପ୍ରତି ରବିବାର ଦି'ପହରରେ ବସି ବସି ଜମିଯାଇଥିବା ଖବରକାଗଜ ଆଉ ପତ୍ରପତ୍ରିକା ସବୁ ଓଲଟେଇବା ସିଦ୍ଧାର୍ଥର ଚିରାଚରିତ ଅଭ୍ୟାସ । କିନ୍ତୁ ଆଜି ସିଦ୍ଧାର୍ଥର ହଠାତ୍ ମନେହେଲା ଯେପରି ସେଗୁଡ଼ା ପଢ଼ି ଲାଭ ନାହିଁ କିଛି । ବହି ପଢ଼ା ଜ୍ଞାନ ହଉଛି ଅଭିଜ୍ଞତାର ଗୋଟାଏ ଶସ୍ତା ନକଲି ସଂସ୍କରଣ । ଯେଉଁମାନେ ଜୀବନର ବହି ପଢ଼ିପାରି ନାହାନ୍ତି, ସେମାନେ ଘରେ ବସି ବସି ପଙ୍ଗୁପରି ବହିରୁ ଚର୍ବିତ ଚର୍ବଣ କରନ୍ତି । ଏଇ ଗଦା ଗଦା ବହିର ବାହାରେ ମଧ୍ୟ ଗୋଟାଏ ଜୀବନ ଅଛି ଯାହାକୁ ସାମ୍ନା କରିବା ପାଇଁ ପ୍ରଚୁର ସାହସ ଦରକାର । ଯାହାକୁ ବଞ୍ଚିବା ପାଇଁ ଅନୁକୂଳ ଦୃଷ୍ଟିଭଙ୍ଗୀ ଦରକାର । ପଶ୍ଚାତ୍ ଦୃଷ୍ଟିରେ ସିଦ୍ଧାର୍ଥ ଦେଖେ ତା'ର କୌଣସିଟାର ହିଁ ଅଭାବ ନଥିଲା । କିନ୍ତୁ ଆଜି ସେ ଅହଲ୍ୟାର ବାହୁର ନଟେଇ ଭିତରେ ଅତି ଅସହାୟ ଭାବରେ ଧରା ପଡ଼ିଛି । ତା'ର ସ୍ଥୂଳ ଶରୀରର ସାମାନ୍ୟ ସ୍ୱାଚ୍ଛନ୍ଦ୍ୟ ପାଇଁ ସେ ତା'ର ମନର ଝରକା ବନ୍ଦ କରି ଦେଇଛି ଅନେକ ଦିନୁ । ଆଜି ହୁଏତ କେଉଁ ଶୁଭଙ୍କରୀ ଝଡ଼ର ଧକ୍‌କାରେ ସେ ଝରକା ଯାଇଚି ଖୋଲି—ଆଉ ସିଦ୍ଧାର୍ଥ ଆଶ୍ଚର୍ଯ୍ୟ—ବିସ୍ମୟ ନେଇ ଆବିଷ୍କାର କରିଛି ସତେ ! ଏତେଦିନ ଧରି ଏ ଗବାକ୍ଷର ଆଲୋକ ସ୍ରୋତ ରୁଦ୍ଧ କରି ଠିଆ ହୋଇ ରହିଛି ମୋହିନୀ ଅହଲ୍ୟା ।

ଧୀର ପଦକ୍ଷେପରେ ଅହଲ୍ୟା ଘର ଭିତରକୁ ଆସିଲା । ଏତେବେଳ ପରେ ଏଇ ବୋଧହୁଏ ସମୟ ହେଲା ଅହଲ୍ୟାକୁ ଗଣ୍ଡାଏ ଖାଇନବା ପାଇଁ । ଆଗନ୍ତୁକ ସନ୍ତାନର ଭାରରେ ଅହଲ୍ୟାର ଶରୀର ଆହୁରି ଶ୍ଲଥ ହେଇଯାଇଛି—ମୁହଁ ଉପରକୁ ଝୁଲି ଆସିଛି ଚିର-ଅବିନ୍ୟସ୍ତ କେଶରାଶି । ଅହଲ୍ୟା ଅନେକ କ୍ଳାନ୍ତ ଆଉ ଅବସନ୍ନ ଦେଖାଯାଉଛି ।

କିନ୍ତୁ କାହିଁକି ସେ ବରଣ କରି ନେଇଚି ଏ କ୍ଲାନ୍ତିକୁ ନିଜ ଛାଏଁ ଛାଏଁ ? ଏଇଟା ବୋଧହୁଏ ନାରୀ ଜାତିର ସହଜାତ ପ୍ରବୃତ୍ତି । ତାକୁ ହୁଏତ ଏଡ଼ି ଦେଇ ହୁଏନା । ଏଇ କିଛିଦିନ ଧରି ସିଦ୍ଧାର୍ଥ ସ୍ପଷ୍ଟ ଦେଖିପାରୁଛି ଅହଲ୍ୟା ଅତି ଭୀରୁ ଭାବରେ କେବଳ ତା'ର ଜୀବନ ରକ୍ଷା କରିବାରେ ହିଁ ଲାଗିଛି । ସିଦ୍ଧାର୍ଥର ଗଭୀର ସନ୍ଦେହ ହୁଏ—ଏଇ ଜୀବନ ରକ୍ଷା କରିବାର ଦୁର୍ବାର ଚେଷ୍ଟାରେହିଁ ହୁଏତ ଅହଲ୍ୟା ଧୀରେ ଧୀରେ ତଳେଇ ଯାଉଛି ମୃତ୍ୟୁର ଚୋରାବାଲି ଭିତରକୁ ।

ସିଦ୍ଧାର୍ଥ ଠାରୁ ଅଳ୍ପ ଦୂରରେ ଶୋଇ ରହିଛି ଅହଲ୍ୟା । ଦେହରେ ଏତେଟିକିଏ ମଧ ସ୍ପନ୍ଦନ ନାହିଁ । ନିଶ୍ଚଳ ଭାବରେ ପଡ଼ିରହି ସେ ହୁଏତ ତା'ର ଶ୍ରମବିଧ୍ୱସ୍ତ ସ୍ନାୟୁପୁଞ୍ଜକୁ ଶାନ୍ତ କରିବାକୁ ଚେଷ୍ଟା କରୁଛି । ତନ୍ଦ୍ରାଜଡ଼ିତ ଆଖିରେ ଅହଲ୍ୟାକୁ ଚାହିଁରହି ଭାବୁଛି ସିଦ୍ଧାର୍ଥ....ଅହଲ୍ୟା ହୁଏତ ତା'କୁ କାମନା କରେ ନାହିଁ । କିନ୍ତୁ ତଥାପି ଅହଲ୍ୟାର ନିଜ ପାଇଁ ଓ ତା'ର ଭାବୀ ସନ୍ତାନ ପାଇଁ ସିଦ୍ଧାର୍ଥ ଅହଲ୍ୟା ପାଖରେ ଅପରିହାର୍ଯ୍ୟ । ସିଦ୍ଧାର୍ଥ ଯଥାର୍ଥରେ ଅହଲ୍ୟାର ହୃତ୍‌ପିଣ୍ଡ, ଯାହାକୁ ଏକ ପୂର୍ବ ନିର୍ଦ୍ଧାରିତ ପଦ୍ଧତି ନେଇ ନିୟନ୍ତିତ ହେବାକୁ ହେବ । କିନ୍ତୁ ଅହଲ୍ୟାର ଛାତିର ପଞ୍ଜରାହାଡ଼ ଭିତରେ ରହି ରହି ସିଦ୍ଧାର୍ଥର ଶ୍ୱାସରୁଦ୍ଧ ହେଇ ଆସିଲାଣି । ସେଠି ଗୋଟାଏ ଡମି ସିଦ୍ଧାର୍ଥ ରଖିଦେଇ ସେ ଯଦି ଖସିଆସି ପାରନ୍ତା କୌଣସିମତେ—

କେତେ ସମୟ ସିଦ୍ଧାର୍ଥ ଶୋଇ ରହିଛି, ସେ ନିଜେଇ ଜାଣେନା ! ବାହାରେ ଖରା ଅନେକ ନଇଁ ଆସିଲାଣି । ଅହଲ୍ୟାର ଡାକରେ ନିଦ ଭାଙ୍ଗିଲା ସିଦ୍ଧାର୍ଥର । ଅନେକ ମସୁଧା କରିବାକୁ ଅଛି ଅହଲ୍ୟାର—ଆହୁରି ସାଲିମାର୍ ପେଣ୍ଟ ଆସିବ ଦଶ ପାଉଣ୍ଡ୍— ଝରକା ଆଉ କବାଟ ପାଇଁ ଡ୍ରପର ଆସିବ, ଡ୍ରଇଂରୁମ୍ ଚଟାଣ ପାଇଁ କୋଡ଼ିଏ ଫୁଟ ଲମ୍ବ ଓସାରର ଗାଲିଚା ଆସିବ । ଏସବୁ ପାଇଁ ହୁଏତ ଥରେ କଲିକତା ଯିବାକୁ ପଡ଼ିପାରେ । ସିଦ୍ଧାର୍ଥ ସବୁ ଶୁଣିସାରି କୁହେ—ପ୍ରତିଟି ଜିନିଷ ଦେଖିଚି ଟଙ୍କା ଦେଇ କିଣିହବ—ଏଥିପାଇଁ ମୋର ପ୍ରୟୋଜନ କ'ଣ ଅଛି ?

ମୁହଁରେ ବିରକ୍ତି ପ୍ରକାଶ ନ କରି ଅହଲ୍ୟା ଚାଲିଗଲା । ସିଦ୍ଧାର୍ଥ ସାମ୍ନାର ଦିଗନ୍ତବିସ୍ତାରୀ ପ୍ରାନ୍ତରକୁ ଚାହିଁ ରହିଲା କେବଳ । ଢେଉ ଢେଉ ହୋଇ ଧୂସର-ଶ୍ୟାମଳ ପ୍ରାନ୍ତରର ସୀମାରେଖା ମିଶିଛି ଦୂର-ଦିଗ୍‌ବଳୟରେ ଆଉ ତା'ର କ୍ଳାନ୍ତିକର ମନୋଟୋନି ଭାଙ୍ଗି ପାଞ୍ଚ, ଛଖଣ୍ଡ ତମ୍ବୁ ମୁଣ୍ଡ ଟେକିଛନ୍ତି ଉପରକୁ । କେତେଦିନ ଧରି ଦଳେ କାବୁଲୀ ଆସି ସେଠି ବସତି ସ୍ଥାପନ କରିଛନ୍ତି । ଏମାନଙ୍କର ଜୀବନ ଧାରଣର ପଦ୍ଧତି କେତେ ସହଜ ସତେ ! ଏଇତ ସେଦିନ ସେମାନେ ଦଳେ ଲୋକ ଆସିଲେ ପରିବ୍ରାଜକ ପରି ଅଥଚ ଆଜି ସେମାନେ ଏଠିକାର ସ୍ଥାୟୀ ବାସିନ୍ଦା । ସେମାନଙ୍କୁ ଟିକସ ଦବାକୁ ପଡ଼େ ନାହିଁ—ଜାଗା ପାଇଁ ଅନୁମତି ନବାକୁ ପଡ଼େ ନାହିଁ । ତାଙ୍କ

ଦେଶରୁ ଆସିଲାବେଳେ ସେମାନେ ହୁଏତ ସାଙ୍ଗରେ ଅନେକ ଖଲାଜିତ୍, ତାଳମିସିରି ଆଉ ପାହାଡ଼ୀ ଔଷଧ ନେଇ ଆସିଛନ୍ତି । ସକାଳ ହେଲେ ପୁରୁଷମାନେ ଦଳ ଦଳ ହୋଇ ବାହାରନ୍ତି ଜିନିଷ ବିକ୍ରୀ କରିବାକୁ ଆଉ ସ୍ତ୍ରୀମାନେ ଘରେ ବସି ବସି ପୁରୁଷମାନଙ୍କର ଓ ଛୁଆମାନଙ୍କର ଜାମା, କୁର୍ତ୍ତା, ପାଇଜାମା ସିଲେଇ କରନ୍ତି—ଖସି ଯାଇଥିବା ତମ୍ବୁରେ ତାଳି ପକାନ୍ତି ଆଉ ପୋହଳା ଗୁନ୍ଥି ମାଳି ତିଆରି କରନ୍ତି । କିଛି ଜିନିଷ ଜମିଗଲେ ସେମାନେ ମଝିରେ ମଝିରେ ବାହାରନ୍ତି ବିକ୍ରୀକରି—ଛୁରୀ, କଟୁରୀ, ଆଉ ଅନେକ ରଙ୍ଗର ପୋହଳା ମାଳି । ବଞ୍ଚିବାଟା ସେମାନଙ୍କର ମୁଖ୍ୟ ଆଉ ବଞ୍ଚିବାର ଉପକରଣ ସେମାନଙ୍କ ପାଇଁ ଗୌଣ । ସେମାନଙ୍କର ମୁଖ୍ୟ ଆଉ ବଞ୍ଚିବାର ଉପକରଣ ସେମାନଙ୍କ ପାଇଁ ଗୌଣ । ସେମାନଙ୍କର ଜୀବନଧାରଣର ପ୍ରୟୋଜନ ଖୁବ୍ କମ୍ ଆଉ ସାଧାରଣ । ସେଥିପାଇଁ ସେମାନଙ୍କର ନିଜସ୍ୱ କରିବାରେ ଲୋଭ ମଧ ସେତିକି ସୀମିତ । ସାରାଦିନ ସେମାନଙ୍କର .କଟେ ପରିଶ୍ରମର ଆନନ୍ଦରେ, ଆଉ ସନ୍ଧ୍ୟା— ସେମାନଙ୍କ ପାଇଁ ଆସେ ଭଗବାନଙ୍କର ଆଶୀର୍ବାଦ ପରି ହସ, ଗୀତ ଆଉ ନାଚ ଭିତରେ । ସେମାନେ ଯେମିତି ଜୀବନର ସବୁ ଦୁଃଖ, ଦୈନ୍ୟ, ଆଉ ଅବସାଦ ଫୁଙ୍କି ଉଡ଼େଇ ଦିଅନ୍ତି ।

ସନ୍ଧ୍ୟା ଆହୁରି ନିବିଡ଼ ହୋଇ ଆସିଲାଣି—ଅଥଚ ସିଦ୍ଧାର୍ଥ ବାଲ୍‌କନି ଉପରେ ସେମିତି ବସିରହି ଚାହିଁଛି ଦୂରରେ ଦିଶୁଥିବା ଅଳ୍ପ କେଇଟି ତମ୍ବୁର ନିରାଡ଼ମ୍ବର ସମାରୋହକୁ ।

ଅହଲ୍ୟା କଫି ଆଣି ସାମାନ୍ୟ ବିରକ୍ତି ମିଶା କଣ୍ଠରେ କହିଲା, ''କ'ଣ ହେଇଚି କୁହନା ତମର ଆଜିକାଲି । ସେତେବେଳୁ ଚୁପ୍‌ଚାପ୍ ବସିଛ ଯେ ଏକାଥରକେ, ମୁଁ ଘରଯାକ ଖୋଜି ଖୋଜି ଆଜି ଅସ୍ଥିର ହେଲିଣି ।'' ସିଦ୍ଧାର୍ଥ ଜବାବ୍ ଦିଏ, ''ଖାଲି ବସି ରହିନି ଅଳି, ଚିନ୍ତା କରୁଛି ।''

''କ'ଣ ଚିନ୍ତା ଗୁଡ଼ାଏ ତମର ଅଛି ଯେ କରୁଛ ଶୁଣେ ? ଆଜି ରୋଗୀ ଦେଖିବାକୁ ଯାଇନାହଁ ବୋଲି ମୋ ଉପରେ ବିରକ୍ତ ହେଉଚ ନିଶ୍ଚୟ ।'' ସିଦ୍ଧାର୍ଥ, ''ନୁହେଁ ମୁଁ ଆଜି ନିଜେ ଅସୁସ୍ଥ—ଆଜି ମୋ ପାଇଁ ବୋଧହୁଏ ଡାକ୍ତର ଦରକାର ।''

''କ'ଣ, ତମର ଦେହ ଭଲ ଲାଗୁନାହିଁ ?''

ଦିହଟା ଠିକ୍ ଅଛି ଅଳି, ଅସୁବିଧାଟା ମନର । ମୁଁ ଭାବୁଚି ସେଇ ଯାଯାବର କାବୁଲୀମାନେ କେତେ ସୁଖୀ ।

'ହୁଁ' ଗମ୍ଭୀର ହେଇ କୁହେ ଅଳି—''ଏତେଦିନ ତମ ପାଖରେ ରହିଲି କିନ୍ତୁ ତମର ମନଟାକୁ ମୁଁ ବୁଝିପାରିଲି ନାହିଁ ସିଦ୍ଧାର୍ଥ—ତମେ ଚିରଦିନ ଅଶାନ୍ତ—ସବୁଦିନ ଅସନ୍ତୁଷ୍ଟ ।''

ସିଦ୍ଧାର୍ଥ କୁହେ, "ସେକଥା ସ୍ୱୀକାର କରିବାକୁ ମୋର ଲଜ୍ଜା ନାହିଁ ଅଳି– ଯେଉଁଥିରେ ମନ ସନ୍ତୁଷ୍ଟ ହୁଏନାଁ–ମନର ଆନନ୍ଦ ହୁଏ ନାଁ ତା' ସହିତ ସାଲିସ୍ କରିନବାର ସହଜ ପନ୍ଥା ମତେ ଜଣା ନାହିଁ ମୋଟେ । ଆଉ ମୋର ମନଟାକୁ ଅନ୍ୟକୁ ବୁଝେଇ ନପାରିବାଟା ପୂରାପୂରି ମୋର ଦୋଷ । ହୁଏତ ମୁଁ ଦୁର୍ବୋଧ୍ୟ ଆଉ ଦୁଷ୍ପ୍ରାପ୍ୟ ।"

କଥାର ମୋଡ଼ ଫେରେଇବାକୁ ଚେଷ୍ଟା କରେ ଅହଲ୍ୟା, "ଆଉ କପେ କଫି ଦେବି ?" ସିଦ୍ଧାର୍ଥ କଥାର ଖିଅଧରି କୁହେ, "ମୁଁ ବେଳେ ବେଳେ ଭାବେ ଅଳି ଆମେମାନେ ଆଜିପର୍ଯ୍ୟନ୍ତ କେବଳେଇ ଜୀବନର ଗୋଟାଏ ଦିଗ ଦେଖିଲେ ସେଟା ହଉଛି ଜୀବନର ନିରାପତ୍ତା । ଦିନରାତି ଆମେ କେବଳ ଭୀରୁ ପରି ଜୀବନଟାକୁ ସଞ୍ଚୟ କରି ଲାଗିଛେ–କିନ୍ତୁ ସେମାନଙ୍କୁ ଦେଖ ସେମାନେ ଗୋଟାଏ ଜୀବନ ବଞ୍ଚୁଛନ୍ତି ଯାହାକୁ ସେମାନେ ପ୍ରତିଦିନ ହସି ହସି ଲୋଟେଇ ଦଉଛନ୍ତି ପବନର ଢେଉରେ–ନିଃଶଙ୍କ ଭାବରେ ବିଞ୍ଚି ଦଉଛନ୍ତି ସୂର୍ଯ୍ୟର ଆଲୁଅରେ । ପ୍ରତିଦିନ ବ୍ୟୟ କରି ସେମାନଙ୍କର ଜୀବନ ସମୃଦ୍ଧ ।"

"ଟ୍ରେଟା ରଖିଦେଇ ଆସେ ।" ଅହଲ୍ୟା ପଳେଇବାର ବାଟ ଖୋଜେ । ଅହଲ୍ୟାର ବୋଧହୁଏ ଧୈର୍ଯ୍ୟଚ୍ୟୁତି ଘଟିଛି ।

କିନ୍ତୁ ସିଦ୍ଧାର୍ଥ ତଥାପି ଚାହିଁ ରହେ ସେହି ସୂଚୀଭେଦ୍ୟ ଅନ୍ଧକାରକୁ । ସିଦ୍ଧାର୍ଥ ବୋଧହୁଏ ଦେଖିପାରୁଛି ଗୋଟିଏ ଶତଛିନ୍ନ ତମ୍ବୁ ତଳେ ଜଣେ କାବୁଲୀ ଜନନୀ ତା'ର ଶିଶୁକୁ ଦୋଳିରେ ଝୁଲେଇ ଝୁଲେଇ ଶୁଆଇ ପକାଇବାକୁ ଗୀତ ବୋଲୁଚି ଗୁଣୁ ଗୁଣୁ ହେଇ, ଆଉ କୋଡ଼ିଏ ବର୍ଷ ପରେ ସେ ଶିଶୁର ମାଂସପେଶୀ ବି ଟାଣ ହବ ପଥର ପରି–ଆଉ ସେ ବି ମୁଣ୍ଡରେ ପଗଡ଼ି ବାନ୍ଧି, କାନ୍ଧରେ ମୁଣି ଝୁଲେଇ ପାହାଡ଼ୀ ଔଷଧ ବିକ୍ରୀ କରି ବାହାରିବ । ଆଉ ହୁଏତ କେଉଁ କାବୁଲୀ ରମଣୀ ତମ୍ବୁ ସାମ୍ନାରେ କୋଇଲା ଚୁଲୀର ଦିକ୍ ଦିକ୍ ନିଆଁ ଆଞ୍ଚରେ ରୁଟି ସେକୁଚି ବସି ବସି । ସାରାଦିନର କ୍ଲାନ୍ତି ନେଇ ଫେରିଛନ୍ତି ପୁରୁଷମାନେ । ସେମାନେ ଖାଇବେ ଖୁବ୍ ମୋଟା ମୋଟା ରୁଟି, ବହଳିଆ ଡାଲି, ଖଣ୍ଡେ ଆଚାର ଆଉ ମୁଠାଏ ଖୁସି । ଆଉ ହୁଏତ କିଏ ତା'ର କୈଶୋରର ଶେଷ ପାଦରେ ତା'ର ପ୍ରଣୟିନୀକୁ ନେଇ ତମ୍ବୁର ଆଖପାଖ ଅନ୍ଧକାର ଭିତରେ ଆତ୍ମଗୋପନ କରିଛି । ଏମାନଙ୍କର ପ୍ରତ୍ୟେକଟି ଦିନ ସ୍ୱୟଂସଂପୂର୍ଣ୍ଣ । ନିଜର ଅଜ୍ଞାତରେ ନିଜେ ଉଚ୍ଚାରଣ କରି ଉଠିଲା ସିଦ୍ଧାର୍ଥ, "ଏମାନେ ଜୀବନ ବଞ୍ଚନ୍ତି–ଆମେ ଜୀବନ ଧାରଣ କରୁ ।"

ଅନେକ ରାତି ହୋଇଗଲାଣି । ଖାଇବା ପାଇଁ ଅହଲ୍ୟା ଡାକିଗଲାଣି କେତେଥର । ଖାଇବାକୁ ତା'ର ଆଦୌ ଆଗ୍ରହ ନାହିଁ । କେବଳ 'ସୁପ୍' ତକ ଖାଇ ଦେଇ ସ୍ଲିପିଂ ସୁଟ୍

ପିନ୍ଧି ଶୋଇବାକୁ ଯିବା ପାଇଁ ନିଜକୁ ପ୍ରସ୍ତୁତ କରୁଥିଲା ସିଦ୍ଧାର୍ଥ । ଅହଲ୍ୟା ଆସି ସଂକ୍ଷେପରେ ପଚାରିଲା—

'କିଛି ଖାଇଲ ନାହିଁ ତାହାହେଲେ ?' ତା'ର କଣ୍ଠ ଅଭିମାନ ରୁଦ୍ଧ । ଆହୁରି ସଂକ୍ଷିପ୍ତ ଜବାବ୍ ଆସିଲା—'ନାଁ' ।

ସିଦ୍ଧାର୍ଥ ଖଟ ଉପରେ ଶୋଇ ପଡ଼ିଲା ମୁହଁମାଡ଼ି ।

X X X X

ହଠାତ୍ ନିଦ ଭାଙ୍ଗିଗଲା ସିଦ୍ଧାର୍ଥର ।

କେତେ ରାତି ହେଲାଣି ଜାଣିବାର ଉପାୟ ନାହିଁ । ବେଡ୍ଲ୍ୟାମ୍ପର ନିଷ୍ପ୍ରଭ ଆଲୋକରେ ସମସ୍ତ ଘରଟା ଇନ୍ଦ୍ରଜାଲ ପରି ଅସ୍ପଷ୍ଟତା ଭିତରେ ବୁଡ଼ି ରହିଛି । ଦୂରରେ କି ଗୋଟାଏ ବାଜା ବାଜୁଛି । ଏତେ ରାତିରେ ବାଜାଟା କିପରି ଅଦ୍ଭୁତ ଶୁଣାଯାଉଛି । ଖିଆଲ୍ ଆସିଲା ସିଦ୍ଧାର୍ଥର । ବୋଧହୁଏ କାବୁଲୀମାନଙ୍କର ତମ୍ବୁରେ ଆନନ୍ଦର ଭୂରିଭୋଜନ ଚାଲିଛି । ସ୍ୱଳ୍ପାୟୁ ମନୁଷ୍ୟ ଜୀବନରେ ଶୋଇ ରହି ରାତ୍ରିର ଅପବ୍ୟୟ କରାଯାଏ ନାଁ । ନିକଟରେ ଖଟ ଉପରେ ଅସାଡ଼ ହୋଇ ଶୋଇ ରହିଛି ଅହଲ୍ୟା ଅଭିଶପ୍ତା କିନ୍ନରୀ ପରି । ଆଜି ହୁଏତ ଅହଲ୍ୟା ବି କିଛି ଖାଇ ନାହିଁ । ଅଭିମାନ କରି ଶୋଇ ପଡ଼ିଛି । ଅନ୍ୟ କେଉଁ ଦିନ ହୋଇଥିଲେ ସିଦ୍ଧାର୍ଥ ଅହଲ୍ୟାକୁ ଆଲିଙ୍ଗନ କରି ତା'ର ଅଭିମାନ ଭାଙ୍ଗିଥାଆନ୍ତା; କିନ୍ତୁ ଆଜି ନୁହଁ । ଅହଲ୍ୟା ଅସମର୍ଥ—ଅହଲ୍ୟା ଜୀବନକୃପଣ । ଯେଉଁ ଜୀବନ ସହିତ ଅହଲ୍ୟା ତାଳ ରଖି ଚାଲି ପାରିନାହିଁ ତା'କୁ ସେ କୁହେ ଅଶାନ୍ତି । ଯେଉଁ ମନର ଗଭୀରତାକୁ ଅହଲ୍ୟା ସ୍ପର୍ଶ କରିପାରି ନାହିଁ ତାକୁ ସେ କୁହେ 'ଦୁର୍ବୋଧ' । ଅହଲ୍ୟାର ଚରମ ଅଭିଳାଷ ପୂରଣ ହୋଇଛି । ଅହଲ୍ୟା ଆଜି ସ୍ୱୟଂସଂପୂର୍ଣ୍ଣ—ଅତ୍ୟନ୍ତ ନିରାପଦ । ଅହଲ୍ୟା ଆସନ୍ନସମ୍ଭବା ।

ଝରକା ଭିତର ଦେଇ ବାହାରକୁ ଚାହିଁଲା ସିଦ୍ଧାର୍ଥ । ତମ୍ବୁ ପାଖରେ କେଇଟି କ୍ଷୀଣ ଆଲୋକ ରଶ୍ମି ଦେଖାଯାଉଛି—ଆଉ ବାଜାର ଶବ୍ଦ ଶୁଣାଯାଉଛି ଆହୁରି ଜୋର୍‌ରେ । ଈର୍ଷାରେ ସିଦ୍ଧାର୍ଥର ଆଖି ଦୁଇଟା ଛୋଟ ଛୋଟ ହେଇ ଆସିଲା । ଇସ୍ ! ଶହେଗଜ ଦୂରରେ ସେଠି ଆନନ୍ଦର ହରିଲୁଟ ଲାଗିଛି ଅଥଚ ସିଦ୍ଧାର୍ଥ ଏଠି ପଡ଼ି ରହିଥିବ ଇଟା କଂକ୍ରିଟ୍‌ର କାରାଗାର ଭିତରେ—ପଙ୍ଗୁ ଅଥର୍ବ ପରି । ତାକୁ ଯିବାକୁଇ ହେବ ସେଠିକି । ପ୍ରାଣର ତାଗିଦ୍‌କୁ କୃତ୍ରିମତାର ଆବରଣ ଦେଇ ରୁଦ୍ଧ କରି ହୁଏନା । ବାହାରକୁ ଯିବା ପାଇଁ ସିଦ୍ଧାର୍ଥ ମୁହୂର୍ତ୍ତକରେ ଉନ୍ମାଦ ହେଇ ଉଠିଲା । ଉତ୍ତେଜନାରେ ସିଦ୍ଧାର୍ଥର କପାଳରେ ଫୁଟି ଉଠିଲା ଅସଂଖ୍ୟ ସ୍ୱେଦବିନ୍ଦୁ । ତା'ର ମନେହେଲା ତାକୁ ଯେପରି କିଏ ଅଦୃଶ୍ୟ ଶୃଙ୍ଖଳ ଦେଇ ଆକର୍ଷଣ କରୁଛି ଦୃଢ଼ ଭାବରେ ।

ଗୋଡ଼ରେ ଚଟି ଗଳେଇ ନଉ ନଉ ସିଦ୍ଧାର୍ଥ ଆଉଥରେ ଫେରି ଚାହିଁଲା ଅହଲ୍ୟାକୁ । ଶୁଭ୍ର-ସୁନ୍ଦର ଅହଲ୍ୟା ତଥାପି ଶୋଇ ରହିଛି ନିସ୍ପନ୍ଦ ହୋଇ । ତା'ର ଦୁଇଟି ଶୀର୍ଷ ଓଠରେ ଲାଗି ରହିଛି କ୍ଷୀଣ ହସର ସଙ୍କେତ । ସେ ବୋଧହୁଏ ସ୍ୱପ୍ନ ଦେଖୁଛି ତାର ଚିର-ବାଞ୍ଛିତ ମାତୃତ୍ୱର । କିନ୍ତୁ ଅହଲ୍ୟା ତ ଏତେବେଶି ଅଭିମାନ କେବେ କରେ ନାହିଁ—ସିଦ୍ଧାର୍ଥର ମନ କରୁଣା-ଆର୍ଦ୍ର ହୋଇ ଆସିଲା । ଅହଲ୍ୟା ନିଷ୍ପାପ—ଅହଲ୍ୟା ନିର୍ଦ୍ଦୋଷ । ଅହଲ୍ୟା ତ କେବେ ସିଦ୍ଧାର୍ଥକୁ ଅବହେଳା କରିନାହିଁ—କିନ୍ତୁ ତା'ର ନିଜର ସୀମାରେଖା ଡେଇଁ ସେ ଯେ ଊର୍ଦ୍ଧ୍ୱକୁ ଉଠିପାରି ନାହିଁ, ସେଥିପାଇଁ ଅହଲ୍ୟାକୁ ଦୋଷ ଦେଇ ହୁଏନା ।

ଆତଙ୍କିତ ହୋଇ ଉଠିଲା ସିଦ୍ଧାର୍ଥ । ସେ' କ'ଣ ପ୍ରକୃତରେ ଅହଲ୍ୟା ପ୍ରତି ସନ୍ଦେହଶୀଳ ନା ବାହାର ଜୀବନର ଭୟ ପାଇଁ ଏଟା ଗୋଟାଏ ବାହାନା । ସେମାନଙ୍କର ବିବାହିତ ଜୀବନରେ ସିଦ୍ଧାର୍ଥ ଥରେହେଲେ ଅହଲ୍ୟାର ଅଜ୍ଞାତରେ ବାହାରକୁ ଯାଇନାହିଁ । କିନ୍ତୁ ଆଜିର ଏଇ ଲଗ୍ନରେ ସିଦ୍ଧାର୍ଥକୁ ଯିବାକୁ ହିଁ ହବ । ବାହାରର ଦିଗହଜା ପ୍ରାନ୍ତର ଆଉ ଯାଯାବର ବସତି ସିଦ୍ଧାର୍ଥକୁ ମୁହୁର୍ମୁହୁ ଆକର୍ଷଣ କରୁଛନ୍ତି । ଠିକ୍ ଅହଲ୍ୟା ପରି ଆଜି ସିଦ୍ଧାର୍ଥ ବି ସୀମିତ । ସେ ନାଚାର୍ । ଅହଲ୍ୟା ପାଖକୁ ଯାଇ ତା'ର ଚୂର୍ଣ୍ଣକୁନ୍ତଳ ଉପରେ ତାର ହାତର ପାପୁଲି ଥରେ ବୁଲେଇ ଆଣିଲା ଆସ୍ତେ ଆସ୍ତେ । ଆଉ ମନେ ମନେ ଉଚ୍ଚାରଣ କଲା, ''ମତେ କ୍ଷମାକର ଅଳି—ମତେ ଯିବାକୁ ହିଁ ହବ ।''

ଆସ୍ତେ ଆସ୍ତେ ବାହାରକୁ ପାଦ ବଢ଼ାଇଲା ସେ । ହଠାତ୍ ଦେଖେ ସେଇ କୋଲାପ୍‌ସିବିଲ୍ ଗେଟ୍‌ଟା ସିଦ୍ଧାର୍ଥର ପଥରୁଦ୍ଧ କରି ଠିଆ ହେଇଛି ଗୋଟାଏ ଦୈତ୍ୟ ପରି । ରାତ୍ରିର ଅନ୍ଧକାରରେ ଆହୁରି ଭୀଷଣକାୟ ଦେଖାଯାଉଛି ସେଇଟା । ଚାବି ଆଣି ଫାଟକ ଖୋଲିବାର ଆଉ ଧୈର୍ଯ୍ୟ ନାହିଁ ସିଦ୍ଧାର୍ଥର । ପାଚିରୀ ଉପରେ ହାତ ଭାର ଦେଇ ପାଚେରୀଟାକୁ ଡେଇଁ ପଡ଼ିଲା ସେ । ତା'ର ମନେହେଲା ଯେମିତି ଯାବଜ୍ଜୀବନ କାରାଦଣ୍ଡ ପାଇଥିବା ଗୋଟାଏ ବନ୍ଦୀ ଲୁଚି ଡେଇଁ ପଡ଼ିଲା ଜେଲ୍‌ର ପାଚିରୀ । କିଛି ବାଟ ଯାଇ ପୁଣିଥରେ ଫେରି ଚାହିଁଲା ସିଦ୍ଧାର୍ଥ । ରେଣୁ ଦେଖାଯାଉଛି ତା'ର ଦୋମହଲା କୋଠାଟା । ତା'ର ମନେହେଲା ଯେମିତି ଏ ସମୁଦାୟ ପ୍ରାସାଦର ଭାରକେନ୍ଦ୍ର ତା'ର ମେରୁଦଣ୍ଡ ଉପରୁ ଖସେଇ ଦେଇ ପାରିଛି ସେ । ଅସମ୍ଭବ ହାଲୁକା ଲାଗୁଛି ତା'ର ଦେହ ଆଉ ମନ । ଜୀବନର ଏଇ ବହୁ ଇପ୍‌ସିତ ମୁହୂର୍ତ୍ତଟି ପାଇଁ ଯେମିତି ସେ ଅପେକ୍ଷା କରି ରହିଥିଲା ସାରା ଜୀବନ....

ଏଇ ନୂତନ ଜୀବନର ସ୍ୱାଦ ମନେ ମନେ ଅନୁଭବ କରୁ କରୁ କିଛିବାଟ ଆଗେଇ ଗଲାଣି ସିଦ୍ଧାର୍ଥ । ଚନ୍ଦ୍ରୋଦୟ ହେଇ ଆସୁଛି ଧୀରେ ଧୀରେ; ଆଉ ତା'ରି ମଳିନ

ଆଲୋକରେ ଯାଯାବର ବସତିର ସମସ୍ତ ସ୍ତ୍ରୀ ପୁରୁଷ ଗୀତ ଗାଇ ନାଚୁଛନ୍ତି । ତମ୍ବୁଗୁଡ଼ାକ ସବୁ କାଢ଼ିନେଇ ଗଧ ଉପରେ ଲଦି ଦେଇ ସାରିଲେଣି ସେମାନେ । ଏଇଟା ଏ ଜାଗାରେ ସେମାନଙ୍କର ଶେଷ ରାତ୍ରି । କାଲି ସକାଳୁ ସେମାନେ ଆଉ ଏକ ନୂତନ ଭୂଇଁରେ ପାଦ ଦେବେ । ଆଉ ଏକ ନୂତନ ଲୋକାଳୟକୁ ଶିଶୁର ବିସ୍ମୟ ନେଇ ଉପଭୋଗ କରିବେ । ଆଶ୍ଚର୍ଯ୍ୟ ଉନ୍ମାଦନା ନେଇ ସେମାନେ ନାଚି ଚାଲିଛନ୍ତି ଆଉ ସମବେତ କଣ୍ଠରେ ଗାଉଛନ୍ତି ତାଙ୍କର ଦେଶର ଭାଷାରେ—

ରେ ଦେଶ ! ତତେ ଆମେ ଜୁହାର କରୁଚୁ
ତୁ ଆମକୁ ଭୂଇଁ ଦେଇଚୁ ରହିବାକୁ
ତୁ ଆମକୁ ପିଇବାକୁ ପାଣି ଆଉ ଖାଇବାକୁ ରୁଟି ଦେଇଚୁ
ତୋ'ପରି ଦେଶ ଆମେ ଦେଖିନାହୁଁ—ଦେଖିନାହୁଁ...
ଆମେ ଯାଉଚୁ—ଆମେ ଯାଉଚୁ ।

ଦୋହରେଇ ଦୋହରେଇ ଗାଉଥାଆନ୍ତି ଆମେ ଯାଉଚୁ—ଆମେ ଯାଉଚୁ । କିଛିସମୟ ପରେ ମନ୍ଥର ହେଇ ଆସିଲା ସେମାନଙ୍କର ସଙ୍ଗୀତ । ସେମାନଙ୍କୁ ଯିବାକୁ ହବ ଅନେକ ଦୂର । ଆଉ ସମୟ ନାହିଁ—ରାତି ଥାଉ ଥାଉ ବାହାରିଗଲେ ଖରା ଆସିଲା ବେଳକୁ ସେମାନେ ଅନେକ ବାଟ ଆଗେଇ ଯାଇଥିବେ ।

ସବୁ ପ୍ରସ୍ତୁତ ଅଛି । ଏଠି ଯେ ଗୋଟାଏ ବସତି ବସିଥିଲା—ମଣିଷ ଦିନେ ହସି, ଗାଇ ନାଚି କୁଦି ଚଳୁଥିଲେ ତା'ର ପତ୍ତା ମିଳେନା । କୌଣସି ଆଡ଼ମ୍ବର ନକରି ସେମାନେ ଚାଲିବାକୁ ଆରମ୍ଭ କରିଦେଲେ । ଏଇ ଯିବାଟା ତାଙ୍କ ପକ୍ଷରେ ନିତ୍ୟନୈମିତ୍ତିକ, ଅତ୍ୟନ୍ତ ସାଧାରଣ । କ୍ଷୀଣ ଚନ୍ଦ୍ରାଲୋକରେ ଏଇ ଯାଯାବର ଦଳର ପଦଯାତ୍ରା ଖୁବ୍ ରୋମାଞ୍ଚକର ମନେହେଲା ସିଦ୍ଧାର୍ଥକୁ । ପ୍ରାୟ ସମସ୍ତେ ଆଗେଇ ଗଲେଣି । ଯିବାର କୌଣସି କ୍ରମ ନାହିଁ । ପୁରୁଷ, ସ୍ତ୍ରୀ, ଶିଶୁ ଆଉ ଗଧ—ସମସ୍ତେ ଚାଲିଛନ୍ତି ଏକାଠି । ସେମାନେ ବିଭିନ୍ନ ନୁହନ୍ତି—ସେମାନେ ସମୂହ । ସିଦ୍ଧାର୍ଥ ପାଖକୁ ଲାଗି ତମ୍ବୁର ବୋଝଧରି ନୀରବରେ ଠିଆ ହେଇ ରହିଥିବା ଗଧଟି ଦୁଇଥର ଫଁ ଫଁ କରି ନିଶ୍ୱାସ ନେଇ ଲମ୍ବା ଲମ୍ବା କାନ ଦୁଇଟାକୁ ହଲେଇ ନେଲା ଦୁଇଥର । ଆଉ ତା'ପରେ ଧୀର ମନ୍ଥର ଗତିରେ ଅନୁସରଣ କରିବାକୁ ଆରମ୍ଭ କଲା ସେମାନଙ୍କୁ । ମନ୍ତ୍ରମୁଗ୍ଧ ପରି ଠିଆହେଇ ରହିଛି ସିଦ୍ଧାର୍ଥ । କ'ଣ କରିବ ସେ ? ପୁଣିଥରେ ପଛକୁ ଫେରି ଚାହିଁଲା ସିଦ୍ଧାର୍ଥ । ଯକ୍ଷର ନିଃଶବ୍ଦ ପାଷାଣପୁରୀ ପରି ଠିଆ ହେଇ ରହିଛି ଅହଲ୍ୟାର ପ୍ରିୟ ପ୍ରାସାଦ । କିଏ ଜାଣେ କେବେ ସେଠିକି ଫେରିବ ପ୍ରାଣର କୋଳାହଳ ? କିଛି ସିଦ୍ଧାନ୍ତ କରିବା ପୂର୍ବରୁ ଆଗକୁ ଚାଲିବାକୁ ଆରମ୍ଭକଲା ସିଦ୍ଧାର୍ଥ—

ଆଗକୁ ଆହୁରି ଆଗକୁ—ଅନେକ ଆଗକୁ । ଏଇ ଯାଯାବରମାନେ ହୁଏତ ଯାଦୁ ଜାଣନ୍ତି ।

ସିଦ୍ଧାର୍ଥ ଚାଲିଚି ମନ୍ତ୍ରମୁଗ୍ଧ ପରି । ଆଉ କେଇ ମୁହୂର୍ତ୍ତ ପରେ ହୁଏତ ଅହଲ୍ୟା ଆବିଷ୍କାର କରିବ ସିଦ୍ଧାର୍ଥ ପଳାତକ । ସେ' ପ୍ରଥମ ଥର ପାଇଁ ଉପଲବ୍ଧି କରିବ ସେଇ ଅବିଶ୍ୱାସ୍ୟ ସତ୍ୟ—ସିଦ୍ଧାର୍ଥ ତାକୁ ପରିତ୍ୟାଗ କରିଛି । କିନ୍ତୁ କ'ଣ ଭୁଲ୍ କରୁଛି ସିଦ୍ଧାର୍ଥ ? ବର୍ଷ ବର୍ଷ ଧରି ସେ ସିଦ୍ଧାର୍ଥକୁ ବ୍ୟବହାର କରି ଆସିଚି ଗୋଟାଏ ନିର୍ବୋଧ ଅସ୍ତ୍ର ଭାବରେ ତା'ର ନୀଡ଼ ରଚନା ପାଇଁ ଏବଂ ସିଦ୍ଧାର୍ଥ ମଧ ତା'ର ଜନ୍ମ-ଜନ୍ମାନ୍ତରରେ ଋଣ ପରିଶୋଧ କରି ଯାଇଛି ପ୍ରତିବାଦ ନକରି । କିନ୍ତୁ ହୁଏତ ଅହଲ୍ୟା ଚାହିଁଥିଲା ସିଦ୍ଧାର୍ଥର ସମଗ୍ରତାକୁ କବଳିତ କରିବାକୁ—ଆଉ ଠିକ୍ ସେଇଥିପାଇଁ ସିଦ୍ଧାର୍ଥର ଚିର-ଯାଯାବର ମନ ତା'କୁ ମୁକ୍ତି ଦେଇଛି ।

ସିଦ୍ଧାର୍ଥ ଚାଲିଛି । ଏତେ ବର୍ଷ ଧରି ସ୍ଥାବର ହୋଇଯାଇଥିବା ସିଦ୍ଧାର୍ଥ ଆଜି ଚଳମାନ । ତା'ର ଗୋଟିଏ ଆଖିରେ ଶ୍ଳଥ—ଅବସନ୍ନ ସୁନ୍ଦରୀ ଅହଲ୍ୟାର ଛାଇ ଲାଗିଛି—ଅନ୍ୟ ଆଖିରେ ହିମାଳୟର କେଉଁ ଦୁର୍ଗମ ଗିରିବର୍ତ୍ମ ଅତିକ୍ରମ କରି ସୁଦୂର କାବୁଲ୍ କାନ୍ଧାହାରର ସ୍ୱପ୍ନ ।

ସିଦ୍ଧାର୍ଥ ଚାଲିଚି—ଅବିଶ୍ରାନ୍ତ । ତା' ସାମ୍ନାରେ ଚାଲିଛନ୍ତି ସିଲ୍‌ହୁଟ୍ ଛବି ପରି ଅନେକ ମଣିଷ ଆଉ ପଶୁ । ଆଉ ତା'ରି ଦିହ ଘଷି ହୋଇ ତା'ର ଠିକ୍ ପାଖେ ପାଖେ ଚାଲିଛି ସେଇ ନିର୍ବିକାର—ନିର୍ଲିପ୍ତ—ପ୍ରଶାନ୍ତ-ଚିତ୍ତ—ଗର୍ଦ୍ଦଭ ।



# ମମ୍ମିର କ୍ରନ୍ଦନ

ଦାର୍ଜିଲିଂ । ଝିପି ଝିପି ବରଫର ଦାର୍ଜିଲିଂ ।

ଉଚ୍ଚା ନୀଚା ଭୂଇଁ ଦେଇ ସରୁ ସରୁ ରେଲ ଲାଇନର ଦାର୍ଜିଲିଂ । ହିମଗିରିର ବରଫ ଉପରେ ଥଣ୍ଡା ଥଣ୍ଡା ପବନ ବହିଆସେ ସେଠିକି । ଭାବିଲେ ଆଖିପତା ଲାଗି ଲାଗି ଆସେ ।

ପ୍ଲେନ୍ ଅମ୍ବାରୀ ଏରୋଡ୍ରମ ଛୁଇଁବାକୁ ଆହୁରି ଘଣ୍ଟାଏ ବାକୀ–ସେଠୁ ମଟରରେ ଦାର୍ଜିଲିଂ ମାତ୍ର ଘଣ୍ଟାକର ରାସ୍ତା ।

ଭାଇକାଉଣ୍ଟ ସାତହଜାର ଫୁଟ ଉପରେ ଉଡ଼ିଚାଲିଛି ଘଣ୍ଟାକୁ ୨୫୦ ମାଇଲ ଗତିରେ । ପାସେଞ୍ଜର କ୍ୟାବିନର ଅଳ୍ପ କେଇଜଣ ଯାତ୍ରୀଙ୍କ ଭିତରେ ଖଣ୍ଡେ ରିକ୍ଲାଇନିଂ ଚଉକୀରେ ନିସ୍ତେଜ ହୋଇ ପଡ଼ି ରହିଛନ୍ତି ଶିଳ୍ପପତି ଗୋସ୍ୱାମୀ । ପାଟି ଭିତରେ ଗୋଟାଏ ପାଇପ ଧରିଛନ୍ତି । କିନ୍ତୁ ସେଥିରେ ଟୁବାକୋ ନାହିଁ ଡାକ୍ତରଙ୍କର ନିଷେଧାଜ୍ଞା ଅନୁସାରେ । କେବଳ ଅଭ୍ୟାସ ମେଣ୍ଟାଇ ନେବାକୁ ସେ ଦୁଇପାଟି ଦାନ୍ତର ଜାବ ଭିତରେ ପାଇପ୍‌ର ନାଡ଼ାଟାକୁ ଚାପି ଧରିଛନ୍ତି ।

ସେ ଦେଖିବାକୁ ଖୁବ୍ ସୁନ୍ଦର କହିଲେ ଅତ୍ୟୁକ୍ତି କରାଯାଏ ନା । କାନ ଉପରର ଈଷତ୍ ଧଳାବାଳ କୁହେ ସେ ପଚାଶର ପାଦଦେଶରେ ପହଞ୍ଚିଛନ୍ତି । କଲିକତାର ଆଖପାଖରେ ତାଙ୍କର ଦୁଇଟି ବଡ଼ ମିଲ୍ ଓ ଦୁଇ ତିନି ଖଣ୍ଡ ଛୋଟ କାଚର କାରଖାନା ଚାଲୁଅଛି । ପ୍ରାଚୁର୍ଯ୍ୟ ସହିତ ତାଙ୍କର ପରିଚୟ ଅଛି । ସେ ଚିରଦିନ ଖୁବ୍ ସୁସ୍ଥ ଥିଲେ । କିନ୍ତୁ କ'ଣ ଯେ ହଠାତ୍ ହେଲା....

ମଧ୍ୟ ଆକାଶରେ ଦ୍ରୁତଗାମୀ ପ୍ଲେନଟା ମନେ ହେଉଛି ଘୁମେଇ ପଡ଼ିଲା ପରି । ଯାତ୍ରୀମାନେ ସବୁ ଚୁପ୍ ଚାପ୍ ପଡ଼ି ରହିଛନ୍ତି । ଆଉ ଗୋସ୍ୱାମୀ ତାଙ୍କର ଦୁଇ ଆଖିପତାର ବ୍ୟବଧାନକୁ ସଂକୀର୍ଣ୍ଣତମ କରି ଆଣି ନିକଟ ଅତୀତଟାକୁ ରୋମନ୍ଥନ କରି ନେଉଛନ୍ତି ମନେ ମନେ....

....ସେଦିନ ଖୁବ୍ ସମ୍ଭବ ସେ ତାଙ୍କର ଅଫିସର ବ୍ୟାଲ୍‌କନି ଉପରେ ବସି ରହି ମିଲ୍‌ର କାମ ଲକ୍ଷ୍ୟ କରୁଥିଲେ । ଟନ୍ ଟନ୍ ତୁଳା ଆସି ଗଦେଇ ହୋଇଯାଉଛି ଗୋଟାଏ ପଟେ....ତା'ପରେ ଫୁଆରାରୁ ପାଣି ପଡ଼ିଲା ପରି ସେଥିରୁ ଲକ୍ଷ ଲକ୍ଷ ସୂତା

ବାହାରିଯାଇ ଛନ୍ଦି ହୋଇ ଯାଉଛନ୍ତି ନିର୍ଦ୍ଦିଷ୍ଟ ପାଟର୍ଣ୍ଣରେ—ଆଉ ସେ ପଟେ ବାହାରି ଯାଉଛି ମାଇଲ ମାଇଲ ଲମ୍ବାର କନା, ଧୋତି, ଚାଦର, ଶାଢ଼ୀ... କେତେ କ'ଣ । ସବୁଠାରୁ ବେଶି ଆଖିରେ ପଡ଼େ ଏଇ ଧାଡ଼ି ଧାଡ଼ି ହୋଇ ଅସୁମାରି ସୂତା ଗୁଡ଼େଇବାର ସ୍ପିଣ୍ଡଲ୍ ଗୁଡ଼ାକ । ମିନିଟ୍‌କରେ କେତେ ସେମାନଙ୍କର ରିଭଲ୍ୟୁସନ ? କେତେ ଗଜ ସୂତା ଗୁଡ଼େଇ ନେଉଥିବେ ସେମାନେ ? ନାଁ—ସେ ହିସାବ କରାଯାଏନା । ଏଇ ଚକ୍‌ଚକ୍ ଉଜ୍ଜ୍ୱଳ ସୂତାର ନଟେଇ ଗୁଡ଼ାକୁ ଦେଖିଲେ ମନେ ହୁଏ ଯେମିତି ଲକ୍ଷ ଲକ୍ଷ ଟସରପୋକ ଆସି ଏହି ମିଲ୍ ଭିତରେ ସେମାନଙ୍କର ମସୃଣ ଖୋସା ବାନ୍ଧିଛନ୍ତି ।

ବହୁବାର ଏଇ ମିଲ୍ ଚାଲିବାଟାକୁ ଲକ୍ଷ୍ୟ କରିଛନ୍ତି ଗୋସ୍ୱାମୀ ତାଙ୍କର ଏହି ନିର୍ଦ୍ଦିଷ୍ଟ ସ୍ଥାନରୁ । ଗୋଟାଏ ଅଦ୍ଭୁତ ଶବ୍ଦ ଶୁଣାଯାଏ । ଧାତୁରେ ଧାତୁ ବାଜିବାର ବିଭିନ୍ନ ଶବ୍ଦକୁ ଯେମିତି କେଉଁ ଶିଳ୍ପୀ ବାନ୍ଧିଛି ଗୋଟାଏ ନିର୍ଦ୍ଦିଷ୍ଟ ନିୟମରେ—ତା'ର ବ୍ୟତିକ୍ରମ ହୁଏନାଁ । ଟିକିଏ ଗଭୀର ଭାବରେ ଶୁଣିବାକୁ ଚେଷ୍ଟା କଲେ ତା ଭିତରୁ ଗୋଟାଏ ନିର୍ଦ୍ଦିଷ୍ଟ ସଂଗୀତ ଆବିଷ୍କାର କରାଯାଏ । ଧାତୁରେ ଧାତୁର ଆଘାତର ସଂଗୀତ । ଯନ୍ତ୍ର ସଙ୍ଗୀତ । ସେଇ ଏକଟଣା ସଙ୍ଗୀତ ଶୁଣୁ ଶୁଣୁ ବୋଧହୁଏ ଗୋସ୍ୱାମୀ ସେଦିନ ଶୋଇ ପଡ଼ିଥିଲେ ତାଙ୍କର ଆରାମ ଚଉକୀ ଉପରେ....

ତା' ପରେ ଦୃଶ୍ୟ ବଦଳିଗଲା । ଗୋସ୍ୱାମୀ ଦେଖିଲେ ଗୋଟାଏ ପଟେ ହଣ୍ଡା ହଣ୍ଡା ରୂପା ତରଳ ହୋଇ ଚାଲିଛି ଆଉ ଆରପଟେ ବାହାରି ଯାଉଛି ଅସୁମାରୀ ରୂପା ଟଙ୍କା । ଚକ୍ ଚକ୍ ଟଙ୍କା ଗୁଡ଼ାକର ଉଜ୍ଜ୍ୱଳ ଆଲୋକରେ ହଲ୍‌ର ପ୍ରତିଟି କଣ ଆଲୋକିତ ହୋଇ ଉଠୁଛି । ଆଶ୍ଚର୍ଯ୍ୟ ! ....ସେଇ ଟଙ୍କାଗୁଡ଼ାକ ଗୋଟାଏ ସୁଡ଼ଙ୍ଗ ଦେଇ ଗଡ଼ି ଗଡ଼ି ଆସୁଛି ତାଙ୍କରି ଆଡ଼କୁ ଆଉ ଅଜାଡ଼ି ହୋଇ ପଡୁଛି ତାଙ୍କରି ପାଦତଳେ । ଟଙ୍କା-ଟଙ୍କା ଆଉ ଟଙ୍କା । ଟଙ୍କାର ଗୋଟାଏ ଛୋଟ ପାହାଡ଼ ତିଆରି ହୋଇଗଲାଣି ତାଙ୍କର ସାମ୍ନାରେ ତଥାପି ତା'ର ବିରାମ ନାହିଁ । ରୂପାର ଚକ୍‌ତି ଗୁଡ଼ାକ ଛିଟ୍‌କି ପଡୁଛନ୍ତି ତାଙ୍କର ଦୁଇପଟେ । ଆଶ୍ଚର୍ଯ୍ୟର ପ୍ରଥମ ଧକ୍କାଟା କଟି ଯାଇଛି....ବର୍ତ୍ତମାନ ଆନନ୍ଦିତ ହବାର ସମୟ । ଟଙ୍କାର ଏଇ କୂଳ ଉଛୁଳା ସୁଧକୁ ସେ ଦୁଇ ବାହୁ ବିସ୍ତାରିତ କରି ସ୍ୱାଗତ କରୁଛନ୍ତି—ଆଲିଙ୍ଗନ କରୁଛନ୍ତି ।

ହଠାତ୍ ତାଙ୍କର ବେକ ପାଖରେ ଶୀତଳ ସ୍ପର୍ଶ ପାଇ ପଛକୁ ଫେରି ଚାହାନ୍ତି ଗୋସ୍ୱାମୀ । ଇସ୍....ତାଙ୍କର ଅଜାଣତରେ ତାଙ୍କର ପଛପଟେ ଜମିଗଲାଣି ଅନେକ ଟଙ୍କା...ଆଗରେ, ପଛରେ, ଆଉ ଦୁଇପଟେ ତାଙ୍କର ଉଠି ଚାଲିଛି ଗୋଟାଏ ରୂପାର ପାଚିରୀ । ଆନନ୍ଦ ଓ ଉତ୍ତେଜନାରେ ଅସ୍ଥିର ହୋଇ ଠିଆ ହେଇପଡ଼ିଲେ ଗୋସ୍ୱାମୀ । କିନ୍ତୁ ଏ କ'ଣ ?...ଟଙ୍କାର ଅନିବାର୍ଯ୍ୟ ପାଚିରୀ ତାଙ୍କର ଉଚ୍ଚତାକୁ ଅତିକ୍ରମ କରି ଉଠିଗଲାଣି ଅନେକ ଉପରକୁ, ଆଉ ତଥାପି ମଧ୍ୟ ଉଠି ଚାଲିଛି ଅବିରାମ । ତାଙ୍କର

ସାମ୍ନାରେ ଟଙ୍କା ଗଦାରେ ହାତ ଦେଇ ଆଡ଼େଇବାକୁ ଚେଷ୍ଟା କଲେ ସେ । କିନ୍ତୁ ହାୟ ! ଟନ୍ ଟନ୍ ଟଙ୍କାର ପାହାଡ଼କୁ କ'ଣ ଦୁଇଟା ହାତରେ ଝୁଙ୍କେଇଦବା ସମ୍ଭବ ।

ଆଲୋକ କ୍ରମଶଃ ହ୍ରାସ ଯାଉଛି...ଗୋସ୍ୱାମୀ ନିତାନ୍ତ ଅସହାୟ ଭାବରେ ଠିଆ ହୋଇ ରହିଛନ୍ତି ଟଙ୍କାର ଗୋଟାଏ ଦୁର୍ଭେଦ୍ୟ ସୁଡ଼ଙ୍ଗ ଭିତରେ । ସେ ଚିତ୍କାର କରିବାକୁ ଚେଷ୍ଟା କରୁଛନ୍ତି... କିନ୍ତୁ କାହିଁ ଶବ୍ଦ ଶୁଣାଇ ଯାଏ ନାଁ । ସୁଡ଼ଙ୍ଗ ଭିତରେ ପବନ ଯାତାୟାତ ବିରଳ ହେଇ ଆସୁଛି—ନିଃଶ୍ୱାସ ନବାକୁ କଷ୍ଟ ହେଲାଣି ତାଙ୍କର, କିନ୍ତୁ ସେହି ଏକଟଣା ଝମ୍ ଝମ୍ ଶବ୍ଦରେ ଟଙ୍କା ଗଦା ହେଇ ଚାଲିଛି । ଦୁଇ ବାହୁର ସମସ୍ତ ଶକ୍ତି ଦେଇ ଟଙ୍କାର ପାଚେରୀଟାକୁ ଝୁଙ୍କେଇବାକୁ ଚେଷ୍ଟା କରୁଛନ୍ତି ଗୋସ୍ୱାମୀ—ଓଃ, କି କଷ୍ଟ !...ଏଇଟା ବୋଧହୁଏ ମୃତ୍ୟୁର ପୂର୍ବ ମୁହୂର୍ତ୍ତ । ମାଂସପେଶୀର ଶୀରା ଗୁଡ଼ାକ ଫୁଲି ଉଠିଛନ୍ତି ପ୍ରଚଣ୍ଡ ଭାବରେ... ହୃତ୍‌ପିଣ୍ଡଟା ବୋଧହୁଏ ଆଉ ରକ୍ତ ଉଠେଇ ପାରୁନାହିଁ... ମନ୍ଥର ହୋଇ ଆସୁଛି... ଲଙ୍ଗ୍‌ସ ଦୁଇଟା ଯେମିତି ପବନ ପାଇଁ ପାଟି ପାକୁ ପାକୁ କରୁଛନ୍ତି ।

ତା'ପରେ ଅକସ୍ମାତ୍ ଗୋଟାଏ ପ୍ରାଣ ମୂର୍ଚ୍ଛା ଧକ୍‌କାରେ ଝନତ୍‌କାର ଶବ୍ଦ କରି ଭୁଷୁଡ଼ି ପଡ଼ିଲା ଟଙ୍କାର ପାଚେରୀଟା ।

ଗୋସ୍ୱାମୀଙ୍କର ମଧ୍ୟାହ୍ନ ତନ୍ଦ୍ରାର ଅବସାନ ହେଲା । ଚାରିଟା ବାଜି ଯାଇଛି । ତାଙ୍କର ଗୋଡ଼ବାଜି ସାମ୍ନାର ଚାହା ଟ୍ରେର କପ୍ ସସର୍ ଗୁଡ଼ାକ ଟୁକୁରା ଟୁକୁରା ହୋଇ ଗଡୁଛନ୍ତି ବ୍ୟାଲକନିର ଚଟାଣ ଉପରେ । ଖୁବ୍ ଅଳ୍ପ ସମୟ ଭିତରେ ଗୋସ୍ୱାମୀଙ୍କର ହାଉସ୍-ଫିଜିସିଆନ୍ ଡକ୍ଟର ସର୍‌କାର୍ ଆସି ରକ୍ତଚାପ ପରୀକ୍ଷା କରିସାରି ସତର୍କ ବାଣୀ ଶୁଣାଇ ଦେଇଯାଆନ୍ତି—

ରୋଗୀ ଯଦି ଅହସଯୋଗ କରେ ତାହାହେଲେ ଡାକ୍ତର ଠାରୁ ଅସହାୟ ଜୀବ ଆଉ କେହି ନାହିଁ—ଆପଣଙ୍କୁ ଶେଷଥର ପାଇଁ କହୁଛି ଆପଣ ହିଲ୍ ଷ୍ଟେସନରେ ବିଶ୍ରାମ ନିଅନ୍ତୁ—''ୟୁ ପସିବଲ୍ କାଣ୍ଟ ପ୍ଲେ ଉଇଥ୍ ଇଓର୍ ନର୍ଭସ ।'' ତା' ଆରଦିନ ସକାଳୁ ଗୋସ୍ୱାମୀ ପ୍ଲେନ୍ ଧରନ୍ତି ଦାର୍ଜିଲିଂକୁ । ଖୁବ୍ ଦ୍ରୁତ ଗତିରେ ପ୍ଲେନ୍‌ଟା ହାଇଟ୍ ଲୁଜ କରୁଛି । ତନ୍ଦ୍ରା ଭାଙ୍ଗିଗଲା ଗୋସ୍ୱାମୀଙ୍କର । ଡାହାଣ ହାତର ପାପୁଲିରେ ଶୂନ୍ୟଗର୍ଭା ପାଇପ୍‌ର ବୋଲ୍‌ଟଟାକୁ ଧରି ନେଇ ଦୁଇ ତିନି ଥର ଜୋର୍‌ରେ ଟାଣିନେଲେ ଗୋସ୍ୱାମୀ । ପ୍ଲେନ୍‌ଟା ସାମାନ୍ୟ ଟିକିଏ ସ୍ପନ୍ଦିତ ହୋଇ ନିଷ୍ପନ୍ଦ ହୋଇଗଲା....ସେଫ୍ ଟଚ୍ ଡାଉନ୍ । ଅମ୍ବାରୀ ଏରୋଡ୍ରମରେ ଗୋଟାଏ କପ୍. କଫି ଖାଇ ଗୋସ୍ୱାମୀ ଟାକ୍‌ସି ଧରନ୍ତି । ତାଙ୍କ ସାଙ୍ଗେ ସାଙ୍ଗେ ଦାର୍ଜିଲିଂ ଯାଉଛନ୍ତି ଡକ୍ଟର୍ ସର୍‌କାର । ଖୁବ୍ କ୍ଳାନ୍ତ ବୋଧ କରୁଛନ୍ତି ସେ । ପବନର ହିମ-ଶୀତଳ ସ୍ପର୍ଶରେ ତାଙ୍କର

ଆକ୍ଷି ଲାଗିଆସେ । ତା'ପରେ ଦାର୍ଜିଲିଂ । ହିମ-ଶୀତଳ ଦାର୍ଜିଲିଂ । ଛୁଟି ଆଉ ଆଳସ୍ୟର ଦାର୍ଜିଲିଂ ।

'ହିଲ୍‌ହୋମ୍' ହୋଟେଲ୍‌ର ଗୋଟିଏ ରୁଚିସମ୍ପନ୍ନ ଡ୍ରଇଂ ରୁମ୍‌ରେ ବସି ବସି ଅଳସ ଚିନ୍ତା କରୁଥିଲେ ଗୋସ୍ୱାମୀ । ତାଙ୍କ ହାତରେ କେତେ ପ୍ରଚୁର ସମୟ ରହିଛି । କଲିକତାରେ ଯଦି ସକାଳର ଚାହାଟା ନିର୍ଦ୍ଦିଷ୍ଟ ସମୟରେ ଆସି ପାରିନାହିଁ ତାହାହେଲେ ବୋଧହୁଏ ସେଦିନର ସେଇ କିସ୍ତୀ ଚା'ଟା ଆଉ ଆସିବାର ଅବସର ପାଏ ନାହିଁ—କିନ୍ତୁ ଏଠି ? ଚାହା ତୋଳି—ପ୍ରସେସ୍ କରି—ଆଁ କରି ନିର୍ଦ୍ୱନ୍ଦରେ ଖିଆଯାଇପାରେ । ସମୟ ପଛରେ ଅଣନିଶ୍ୱାସୀ ହୋଇ ଦୌଡ଼ିବାର ପ୍ରୟୋଜନ ନାହିଁ । ଏଠି—ଏଠି କେବଳ ସମୟର ପ୍ରାଚୁର୍ଯ୍ୟ ଭିତରେ ମଛର ଗତିରେ ଭାସି ବୁଲିବାକୁ ହୁଏ ।

ସୁବର୍ଣ୍ଣ ଅପରାହ୍‌ଣ ମଳିନ ହେଇ ଆସୁଛି । ପଶ୍ଚିମ ଆକାଶରେ ସୂର୍ଯ୍ୟ ଯେମିତି ରୋଗାଗ୍ରସ୍ତ ହୋଇ ସ୍ଥିର ହୋଇ ଯାଇଛନ୍ତି, କେଇ ମୁହୂର୍ତ୍ତ । ଏକାଗ୍ର ଭାବରେ ଚାହିଁ ରହିଥିଲେ ଗୋସ୍ୱାମୀ—ତାଙ୍କର ମନେଇ ପଡ଼ୁନା ସେ ଶେଷ ସୂର୍ଯ୍ୟାସ୍ତ କେବେ ଦେଖିଥିଲେ ।

ପଶ୍ଚିମ ଆକାଶକୁ ରୁଧିରାକ୍ତ କରି ସୂର୍ଯ୍ୟ ଅସ୍ତ ଯାଉଛନ୍ତି । ...ଇସ୍ ! ଅସ୍ଫୁଟ ଶବ୍ଦ କରି ଉଠିଲେ ଗୋସ୍ୱାମୀ । ହିମାଳୟର ବରଫ ଘେରା ଚୂଡ଼ା ଗୁଡ଼ାକ ଉପରେ କିଏ ଯେମିତି ନିଆଁ ଓଜାଡ଼ି ଦେଇଚି । ଆକ୍ଷି ଆଗରେ ଏତେ ବଡ଼ ଅଗ୍ନିକାଣ୍ଡ ଅଥଚ ସମସ୍ତେ ନୀରବ, ନିସ୍ପନ୍ଦ—ନିଶ୍ଚେଷ୍ଟ ।

ମାତ୍ର କେଇଟି ମୁହୂର୍ତ୍ତ ପରେ ଚାହୁଁ ଚାହୁଁ ଲିଭିଗଲା ସବୁ ନିଆଁ । ରାତ୍ରର ବିହଙ୍ଗ ତା'ର ପକ୍ଷପୁଟରେ ଯେମିତି ବିଞ୍ଚି ଦେଇଗଲା ପୁଞ୍ଜା ପୁଞ୍ଜା ଅନ୍ଧାର । ଦାର୍ଜିଲିଂର ଶୀତ-ହିମ ରାତ୍ରି ଅଗ୍ରସର ହେଉଚି ଗୋଟିଏ କତିକାୟ ପ୍ରାଗ୍‌ଐତିହାସିକ ସରିସୃପ ପରି ।

ଗୋସ୍ୱାମୀଙ୍କର ଅଲକ୍ଷ୍ୟରେ ଅନ୍ଧାରର ଢେଉ ପରେ ଢେଉ ଆସି ତାଙ୍କୁ ଗ୍ରାସ କରି ଦେଇ ସାରିଲାଣି ଆପାଦମସ୍ତକ । ଇଟାଲିଆନ୍ ବ୍ଲାଙ୍କେଟ୍‌ଟାକୁ ନିଜର ଦିହ ଉପରକୁ ଟାଣି ଆଣିଲେ ସେ... ଦାର୍ଜିଲିଂ ସତରେ ରମଣୀୟ । ଏଇ ଅଳ୍ପ କେଇ ଘଣ୍ଟାର ବ୍ୟବଧାନ ଭିତରେ ଯେମିତି ତାଙ୍କର ସ୍ନାୟୁ ଗୁଡ଼ାକର ଟେନ୍‌ସନ୍ ହୁଗୁଳା ହେଇ ଯାଉଛି ଆଶାତୀତ ଭାବରେ । ଏଠି ପ୍ରଚୁର ପବନ—ଅନେକ ଆଲୋକ—ଅନେକ ଅନ୍ଧାର ! ମନକୁ ମନ ସ୍ମିତହାସ୍ୟ କରି ଉଠିଲେ ଗୋସ୍ୱାମୀ—'ସବୁଠାରୁ ମଜାର କଥା ଦୁଇହାତରେ ଟଙ୍କା ଓଜାଡ଼ି ଦେଇ ମଧ ଗୋଟାଏ କ୍ୟୁବିକ୍ ଇଞ୍ଚ୍ ଖୋଲା ପବନ ବା ଆଉନ୍‌ସେ ଅନ୍ଧାର କିଣା ଯାଇପାରେ ନାଁ ।'' ଅନ୍ଧାର ଜମାଟ୍ ବାନ୍ଧି ଆସୁଛି । ଏତେ

ଅନ୍ଧାର କିନ୍ତୁ କାହିଁ ଶ୍ୱାସରୁଦ୍ଧ ତ ହୁଏ ନା । ଅନ୍ଧାର ଗୁଡ଼ାକର କ'ଣ ଓଜନ ଅଛି ? ମନକୁ ମନ ପ୍ରଶ୍ନ କରନ୍ତି ଗୋସ୍ୱାମୀ । ତା'ପରେ ସେ ତାଙ୍କର ଦୁଇଟି ଖୋଲା ପାପୁଲିରେ ଅନ୍ଧାର ଗୁଡ଼ାକୁ ଓଜନ୍ କରି ନବାକୁ ଚେଷ୍ଟା କରନ୍ତି । ମୋଟେ ଓଜନ ନାହିଁ—ସେଥିପାଇଁ ତ ଅନ୍ଧାର ଏତେ ଚମତ୍କାର ।

କିନ୍ତୁ ଟଙ୍କା !!! ଗୋସ୍ୱାମୀଙ୍କର ମେରୁଦଣ୍ଡ ଦେଇ ଗୋଟାଏ ଶୀଘ୍ର ଶୀତ୍‌କାର ଖେଳିଗଲା ବାରଂବାର । ହଠାତ୍ ଅସ୍ୱାଭାବିକ ଭାବରେ ଗମ୍ଭୀର ହେଇ ଯାଇଛନ୍ତି ଗୋସ୍ୱାମୀ । ଚଉକି ଛାଡ଼ି ଛାତି ଉପରେ ଦୁଇହାତ ଛକି ଦେଇ ବାରଣ୍ଡାରେ ଟହଲ ମାରୁଛନ୍ତି ସେ । ବୋଧହୁଏ ମନେ ମନେ ତଉଲିବାକୁ ଚେଷ୍ଟା କରୁଛନ୍ତି ଆବଶ୍ୟକୀୟ 'କଟନ୍-ମିଲ୍ ଆଉ ଏଇ ଅନାବଶ୍ୟକ ଦାରିଦ୍ର୍ୟ ପିରାମିଡ୍‌ର ସ୍ଫିଂକସ୍ ପରି ସେ କେବଳ ଯୁଗ ଯୁଗ ଧରି ଚାହିଁ ରହିଛନ୍ତି କେଉଁ ଗୋଟାଏ ଦିଗକୁ ଅଥଚ ତାଙ୍କର ଆତ୍ମା ଟଙ୍କାର ପିରାମିଡ଼ ଭିତରେ ସ୍ଥାବର ହେଇଯାଇଛି । ଚିର-ନିଶ୍ଚଳ ଶେଷହୀନ ଇଜିପ୍‌ସିଆନ୍ ମମିପରି । ହୁଏତ ଦାର୍ଜିଲିଂର ଏଇ ଶୁଭ ମୌସୁମୀ...

କିଏ ବୋଧହୁଏ ସୁଇଚ୍ ଟିପିଲା । ଉଜ୍ଜ୍ୱଳ ବିଦ୍ୟୁତ୍ ଆଲୋକରେ ଗୋସ୍ୱାମୀ ଦେଖିଲେ ତାଙ୍କର ସାମ୍ନାରେ ଜଣେ ପ୍ରୌଢ଼ା ଗୋଟାଏ ଉଦ୍ବେଗରେ କିଛି ନିଆଁ ଧରି ତାଙ୍କର ଆଦେଶକୁ ଅପେକ୍ଷା କରୁଛି । ହୋଟେଲ ସର୍ଭିସ୍‌ର ଏଇଟା ଗୋଟାଏ ରୁଟିନ୍ ବନ୍ଧା ଅଂଶ ।

କିନ୍ତୁ ଗୋସ୍ୱାମୀ ସମ୍ପୂର୍ଣ୍ଣ ନିର୍ବାକ୍ ହୋଇ ଠିଆ ହେଇ ରହିଛନ୍ତି କେବଳ । କିଏ ଏଇ ଜରାଜୀର୍ଣ୍ଣା ପ୍ରୌଢ଼ା ? କିନ୍ତୁ ଏ ମୁହଁତ ଭୁଲିବାର ନୁହେଁ । ଠିକ୍ ଯେମିତି ସେ ମନେ ପକାଇ ପାରୁ ନାହାନ୍ତି । ଏତେ ଚିହ୍ନା ମୁହଁ ଅଥଚ ମନେଇ ପଡ଼େନା....ତାଙ୍କର ଛାତି ଉପରେ ଦୃଢ଼ ଭାବରେ ଚିବୁକଟାକୁ ଚାପି ଧରିଛନ୍ତି ଗୋସ୍ୱାମୀ...ମନ ଭିତରେ ଅବଚେତନର ଅସଂଖ୍ୟ ବୁଦ୍‌ବୁଦ୍ ଉଠି ଚାଲିଛି ଉପରକୁ—ହଁ ଠିକ୍ ସେଇ ମୁହଁ....ପୁଣି ସେଇ ଚାବୁକ୍‌ର ମାଡ଼ । ପାଞ୍ଚବର୍ଷର ଜମାଟ୍ ବନ୍ଧା ସ୍ମୃତିକୁ ସେ ଠେଲି ଠେଲି ଉପରକୁ ଆସିଛି ସେଇ ମୁହଁ । ...ଗୋସ୍ୱାମୀଙ୍କର ମିଲ୍‌ର କ୍ରେନ୍ ଆକ୍‌ସିଡ଼େଣ୍ଟରେ ଲୁଗା ବେଲ୍ ତଳେ ଚପାପଡ଼ି ଜଣେ ଶ୍ରମିକ ମରିଯିବାର ଅଧଘଣ୍ଟାଏ ପରେ ମିଲ୍‌ର ଫାଟକ୍ ପାଖରେ ଗୋସ୍ୱାମୀଙ୍କୁ ସାମ୍ନା କରିବାକୁ ପଡ଼ିଥିଲା ଠିକ୍ ଏମିତି ଗୋଟାଏ ନାରୀର ମୁହଁ । ଠିକ୍ ଏତିକି ଉଚ୍ଚ—ଏଇ ରଙ୍ଗ—ଏମିତି ଲୁଗା ପିନ୍ଧା, ଆଉ ମୁହଁରେ ଠିକ୍ ସେଇ ଦାରିଦ୍ର୍ୟର ଆଞ୍ଚୁଡ଼ା ଚିହ୍ନ ।

କାନରେ ସେଦିନର ସେଇ ନାରୀର ଚିତ୍କାର ବାଜୁଚି ତୁହାକୁ ତୁହା— ମୋ ପୁଅକୁ ଫେରେଇ ଦିଅ ମତେ...ବାବୁ ମୋ ପୁଅ...ମୋ ଧନକୁ...। ଛାତିରେ ହାତ ପିଟି—କାନ୍ଦି

କାନ୍ଦି ଲୋଟି ଯାଉଛି ସେଇ ଅର୍ଦ୍ଧ ଉଲଗ୍ନ ସ୍ତ୍ରୀ ଲୋକଟା । ଥାଇ ଥାଇ ସେଇ ଗୋଟାଏ କଥା ଲହରେଇ ଲହରେଇ କହୁଛି—ସେଇ ଗୋଟାଏ ସୁର୍...ବାବୁ ମୋ ଧନକୁ ଫେରାଇ ଦିଅ ।

ସେଇ ନାରୀର ବିଳାପରେ ସେଦିନ ଯେମିତି ଆକାଶ ଦୁଇଭାଗ ହୋଇ ଯାଉଥିଲା– ''ମୋ' ଧନରେ ତୁ କୁଆଡ଼େ ଗଲୁ !''

ଗୋସ୍ୱାମୀଙ୍କର ସଂଜ୍ଞା ଲୋପ ପାଇବାକୁ ଆରମ୍ଭ କରିଛି...ଅସଂଲଗ୍ନ ଭାବରେ ସେ ନିଜେଇ ବୁଝିପାରୁଛନ୍ତି ଯେ ଦୁଇଟା ପାଦରେ ତାଙ୍କର ଦେହର ଭାରସାମ୍ୟ ରହିବା ଆଉ ସମ୍ଭବ ନୁହଁ ।

ଡକ୍ଟର ସରକାର ଗୋସ୍ୱାମୀଙ୍କୁ ଆସ୍ତେ ଆସ୍ତେ ନେଇଗଲେ ତାଙ୍କର ବିଛଣା ଉପରକୁ ।

ବିଛଣା ଉପରେ ଶୋଇ ରହିଛି ଗୋସ୍ୱାମୀଙ୍କର ଦେହଟା କେବଳ । ଗୋସ୍ୱାମୀଙ୍କର ମନର କପୋତ କିନ୍ତୁ ତୀର ବେଗରେ ଛୁଟି ଚାଲିଛି ସେଦିନର ସେଇ ପ୍ରୌଢ଼ା ନାରୀର ସନ୍ଧାନରେ । ଅନେକ ଦିନର ଗୋଟାଏ ପୁରାତନ ଋଣ ପରିଶୋଧ କରିବାର ଅଛି ତାଙ୍କର...

ହାଉଡ଼ାର ଗିନ୍ ଗିନ୍ ଲୋକଗହଳି ଦେଇ କାନ୍ଧରେ କାନ୍ଧ ଘଷି ଅବିଶ୍ରାନ୍ତ ଚାଲିଛନ୍ତି ଗୋସ୍ୱାମୀ...ସିଆଡ଼କୁ କିନ୍ତୁ ଭ୍ରୁକ୍ଷେପ ନାହିଁ ଗୋସ୍ୱାମୀଙ୍କର । ସେ ସିଧା ଚାଲିଛନ୍ତି କୁଲି ବସ୍ତି ଆଡ଼କୁ...

ସହରଟା ସଂକୀର୍ଣ୍ଣ ହେଇ ଆସୁଚି ଆସ୍ତେ ଆସ୍ତେ । ଲମ୍ୱା ଲମ୍ୱା ଚଉଡ଼ା ଚଉଡ଼ା ରାସ୍ତା ଗୁଡ଼ାକ ଧୀରେ ଧୀରେ ସରୁ ଗଳିରେ ପରିଣତ ହେଇ ଯାଉଛନ୍ତି । ମଝିରେ ମଝିରେ ଜମି ରହିଚି ନାନା ଆବର୍ଜନା । ଠିକ୍ ଏଇ ଗୁଡ଼ାକୁ ବୋଧହୁଏ ସହରତଳି ବୋଲି କୁହାଯାଏ.....ଚାଲିଛନ୍ତି ଗୋସ୍ୱାମୀ... ଉଡ଼ି ଚାଲିଛି ଗୋସ୍ୱାମୀଙ୍କର ଅନୁତପ୍ତ ମାନସକପୋତ ।

ରାସ୍ତା କରରେ ଠିଆ ହୋଇ ରହିଛି ଗୋଟାଏ ଭଙ୍ଗା ଲ୍ୟାମ୍ପୋଷ୍ଟ, ଆଉ ତା'ରି କଳଙ୍କିଲଗା ଟିଣ ଫ୍ରେମର ଭଙ୍ଗା କାଚ ଗୁଡ଼ାକ ଦିନର ଆଲୁଅରେ ମନେ ହେଉଛନ୍ତି ଖତେଇ ହେଲା ପରି । ଠିକ୍ ତା'ରି ତଳେ ଗୋଟାଏ ଡଷ୍ଟବିନ୍କୁ ଦେହ ଘଷି ବସି ରହିଛି ଗୋଟିଏ ଜରାଜୀର୍ଣ୍ଣା ବୃଦ୍ଧା—ତା ସାମ୍ନାରେ ଗଦା ହେଇ ରହିଛି କେତେ ଗୁଡ଼ାଏ ଛିଣ୍ଡା କନ୍ଥା ଆଉ କାଗଜର ଅପୂର୍ବ ସମାରୋହ ।

ଗୋସ୍ୱାମୀ ନିଶ୍ଚଳ ହେଇଗଲେ ଠିକ୍ ସେଇଠି । ପାଞ୍ଚବର୍ଷର ବ୍ୟବଧାନ ଭିତରେ କ'ଣ ସେ ମୁହଁକୁ ଭୁଲ୍ କରି ହୁଏ !

ଗୋସ୍ୱାମୀ ସ୍ଥିର ହୋଇ ଠିଆ ହେଇ ରହିଛନ୍ତି ସେଇ ବୃଦ୍ଧା ପାଖରେ ।

ସେ ଯେପରି ଠିଆ ହୋଇଛନ୍ତି କେଉଁ ବିଗତ ଆତ୍ମା ସହୀଦ୍‌ର କବର ପାଖରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ।

ସେ ବୋଧହୁଏ ବୃଦ୍ଧାକୁ କିଛି କହିଲେ । କିନ୍ତୁ ବୃଦ୍ଧା ଶୁଣିବାକୁଇ ଚାହେଁନା । ଦୁଇଟା ହାଡୁଆ ହାଡୁଆ ଆକ୍ଷିପତା ତଳୁ ଗହିରିଆ ଆକ୍ଷିଟେକି ବୃଦ୍ଧାଟି ଥରେ ମାତ୍ର ଉପରକୁ ଚାହିଁଲା...ସେ ଯେମିତି ତା'ର ସେଇ ସୁଦୂର ପ୍ରସାରି ଦୃଷ୍ଟି ଦେଇ ଗୋସ୍ୱାମୀଙ୍କର ପ୍ରତିକୃତି ଦେହରେ କାହାକୁ ଖୋଜୁଛି ଆକୁଳ ହୋଇ, କିନ୍ତୁ ନାଁ ନିଷ୍ପ୍ରୟୋଜନ । ଆକ୍ଷି ତଳକୁ କଲା ବୃଦ୍ଧା—ତା'ର ଆକ୍ଷିରେ ପୁଣି ଫେରି ଆସିଛି ସେଇ ନିର୍ଲିପ୍ତ ପ୍ରଶାନ୍ତି....

ଗୋସ୍ୱାମୀ ଥରେ ଦୁଇଥର ଇତସ୍ତତଃ କରି ନୋଟ୍‌ର କେଇଟା ମୋଟା ମୋଟା ତାଡ଼ା ରଖିଦେଲେ ତା' ସାମ୍ନାରେ । ବୃଦ୍ଧାଟି ନୋଟ୍‌ର ତାଡ଼ାଗୁଡ଼ାକ ହାତରେ ଥରେ ଦୁଇଥର ଖେଳେଇ ନେଇ ସେ ଗୁଡ଼ାକୁ ଫିଙ୍ଗିଦେଲା ପାଖର ଡଷ୍ଟବିନ୍ ଭିତରକୁ ।

ଓଃ ! ନୋଟ୍‌ର ତାଡ଼ାଟା ଯେମିତି ଆସି ପଡ଼ିଲା ଗୋସ୍ୱାମୀଙ୍କର ହୃତ୍‌ପିଣ୍ଡ ଉପରେ । ଦପ୍‌କରି ଲିଭିଗଲା ଆକାଶର ସୂର୍ଯ୍ୟ । ପୁଣି ସେଇ ସୂଚୀଭେଦ୍ୟ ଅନ୍ଧକାର !

ବିଛଣା ଉପରେ ପଡ଼ିରହି ଅସହ୍ୟ ଯନ୍ତ୍ରଣାରେ ଛଟ୍‌ପଟ୍ କରିବାକୁ ଲାଗିଲେ ଗୋସ୍ୱାମୀ ।

ଦାର୍ଜିଲିଂର ସକାଳ ଚିର-ବିଳମ୍ବିତ । ତା ଆରଦିନ ସକାଳେ ଦେଖାଗଲା ଗୋସ୍ୱାମୀଙ୍କର କୋଠରୀର ଚାରିଆଡ଼େ ବିଛିହେଇ ପଡ଼ିଚି ଅନେକ ଅନେକ ଟଙ୍କାର ନୋଟ୍ ଆଉ ତାଙ୍କର ବିଛଣା ପାଖରେ ବସିରହି ଡକ୍ଟର୍ ସରକାର୍ ଇଞ୍ଜେକ୍‌ସନ୍ ପାଇଁ ସିରିଞ୍ଜ୍ ପ୍ରସ୍ତୁତ କରୁଛନ୍ତି ।

କୋଠରୀ ବାହାରେ ଜମିଯାଇଥିବା ଜିଜ୍ଞାସୁ ଲୋକମାନଙ୍କର ଭିଡ଼କୁ ଇଙ୍ଗିତରେ ନୀରବ ରହିବାକୁ କହି ଗୋଟାଏ କଥାରେ ଡକ୍ଟର ସରକାର୍ ବୁଝାଇ ଦେଲେ— ''କମ୍ପ୍ଲିଟ୍ ଫେଲିଓର୍ ଅଫ୍ ନର୍ଭସ୍...''

*(କଟକ-ବେତାର କେନ୍ଦ୍ର ସୌଜନ୍ୟରୁ)*



# କେତୋଟି ମୁହୂର୍ତ୍ତ

ଶିଡ଼ିଟା ଅନେକ ଲମ୍ବା ।

ତଳ ପାହାଚ ଉପରେ ଠିଆ ହୋଇ ଉପରକୁ ଲକ୍ଷ୍ୟ କଲା ଶ୍ରୀକାନ୍ତ । ଥାକ ଥାକ ହୋଇ ପାହାଚ ଉପରେ ପାହାଚ ଉଠି ଚାଲିଛି । ଗତ ସାତବର୍ଷ ଧରି ପ୍ରତିଦିନ ସେଇ ପାହାଚଗୁଡ଼ାକ ଉପରେ ଗୋଡ଼ ରଖି ସେ ପ୍ରକୃତରେ କ୍ଲାନ୍ତ । ଗଣି ଗଣି ତାକୁ ଉଠିବାକୁ ପଡ଼ିବ ତେଇଶିଟା ପାହାଚ । ପ୍ରତିଥର ଡାହାଣ ଗୋଡ଼ର ଆଣ୍ଠୁଟାକୁ ଭାଙ୍ଗି ଉପର ପାହାଚ ଉପରେ ପାଦ ଦେଇ ତା'ପରେ ଅଣ୍ଟାର ଜୋର୍‌ରେ ଉପରକୁ ଉଠେଇବାକୁ ପଡ଼ିବ ତା'ର ବାଁ ଗୋଡ଼ଟାକୁ... ଆଉ ତା'ପରେ ପୁଣି ସେଇ ଏକା କଥା କରିବାକୁ ପଡ଼ିବ । ବାଇଶଥର ଦେହର ନିର୍ଦ୍ଦିଷ୍ଟ ମାଂସପେଶୀର ଆକୁଞ୍ଚନ ପ୍ରସାରଣରେ ତାକୁ କ୍ରମେ କ୍ରମେ ଅତିକ୍ରମ କରିବାକୁ ପଡ଼ିବ ପ୍ରତିଟି ପାହାଚ ।

ଏଇ ପାହାଚଗୁଡ଼ାକ ଉଠୁ ଉଠୁ ଶ୍ରୀକାନ୍ତ ବେଳେ ବେଳେ ଭାବେ ନର୍ଦ୍ଦମା ଭିତରେ ବିଚରଣ କରୁଥିବା ଲାଙ୍ଗୁଡ଼ା ପୋକଗୁଡ଼ାକର କଥା । ସେମାନେ ଠିକ୍ ଏଇପରି ଭାବରେ ନିଜକୁ ଗତିଶୀଳ କରନ୍ତି; କିନ୍ତୁ ମଣିଷ ସେମାନଙ୍କଠାରୁ ଅନେକ ବଡ଼ ଗୋଟାଏ ପୋକ ଯେ ନିଜର ଭାରସାମ୍ୟ ରକ୍ଷାକରି ଠିଆ ହେଇପାରେ ।

ଶିଡ଼ି ପାଖରେ ପହଞ୍ଚିବା ପୂର୍ବରୁ ଶ୍ରୀକାନ୍ତ ଦିନେ ଦିନେ ଭାବେ ଭାରୀ ମଜା ହୁଅନ୍ତା ଯଦି ସେ' ଘରେ ପହଞ୍ଚି ଦେଖନ୍ତା ଏଇ ଶିଡ଼ିଗୁଡ଼ାକ କୁଆଡ଼େ ଉଭେଇ ଯାଇଛି । ତା'ପରେ ହୁଏତ ସେ ପ୍ରଥମ ଥର ପାଇଁ ତା'ର ପ୍ରତିବେଶୀମାନଙ୍କୁ ଏକାଠି କରି ଆଶ୍ଚର୍ଯ୍ୟ ହେଇ ପଚାରନ୍ତା– "ଆଜ୍ଞା ଦେଖନ୍ତୁ ମୋର ଘରକୁ ଯିବାର ସବୁ ଗୁଡ଼ାକ ପାହାଚ ଗଲା କୁଆଡ଼େ ? ସେଦିନ ହୁଏତ ସେ ପ୍ରଥମଥର ପାଇଁ ଜାଣି ପାରନ୍ତା ତା'ର ତଳ କୋଠରୀଗୁଡ଼ିକରେ ଜଣେ କ୍ରିକେଟ୍‌ଖେଳାଳୀ ରହେ...ଆଉ ଦିନେ ଦିନେ ଯୋଉ ସିଲେଇ ମେସିନ୍‌ଟା ଖଟ୍ ଖଟ୍ କରି ଉଠେ ତାକୁ ଚଳାଏ ଜଣେ ବୃଦ୍ଧ ଦରଜୀ– ଆଉ ମଧ ଜଣେ ସ୍କୁଲ ଶିକ୍ଷକ ରହେ ଯେ ଅଧୁନା ତା'ର ଚାକିରୀ ଚାଲି ଯିବାରୁ କେତେଗୁଡ଼ିଏ କିଶୋର ବାଳକ-ବାଳିକାଙ୍କୁ ପାଠ ପଢ଼େଇ ପେଟ ପୋଷେ ।

କିନ୍ତୁ ସେମାନେ କ'ଣ ଶ୍ରୀକାନ୍ତର ପରିଚୟ ପାଇ ପାରନ୍ତେ ? ସେ ବୋଧହୁଏ

ସେମାନଙ୍କ ଆଗରେ ଠିଆ ହେଇ ରହନ୍ତା ଜଣେ ଦୁର୍ବୋଧ ଯାଦୁକର ପରି, ଯାହାର ଉପର ମହଲାକୁ ଯିବାର ପାହାଚ ଗୁଡ଼ାକ ମଧ ଦିନେ ଦିନେ ଅକସ୍ମାତ୍ ହଜିଯାଏ ।

କିନ୍ତୁ ନା - ଏଇ ପାହାଚଗୁଡ଼ାକ ନିତାନ୍ତ ଅଶ୍ଳୀଳ ଭାବରେ ସ୍ଥାବର । ଏମାନଙ୍କର ଏତେ ଟିକେ ରସବୋଧ ମଧ ନାହିଁ ।

ରାତ୍ରିର ଅନ୍ଧକାର ଭିତରେ ତଳ ପାହାଚ ଉପରେ ଗୋଡ଼ ରଖି ଶ୍ରୀକାନ୍ତ ଠିଆ ହେଇ ରହିଛି ସେମିତି । ତା'ର ଡାହାଣ ହାତର ଦୁଇଟା ବଙ୍କା ଆଙ୍ଗୁଠିର ଆଙ୍କୁଶରେ ଓହଳି ରହିଛି ଗୋଟାଏ ଓଜନ୍‌ଦାର ଟୁଇଡ୍ କୋଟ୍ । କୋଟ୍‌ଟାର ଓଜନ ଯେମିତି ତା'ର ପିଠିଟାକୁ ମାଡ଼ି ବସିଛି ଗୁଡାଏ ଅଳଗା ବାଳର ବୋଝ ପରି ।

ନାଁ ସେ ଆଜି ସତରେ ଉପରକୁ ଯିବାକୁ ଚାହେଁନା । ବିଶେଷ କରି ତା'ର ମନେ ପଡ଼ିଗଲା ଯେ ଘର ଖୋଲିବା ମାତ୍ରକେ ତା'ର ଆଖିରେ ପଡ଼ିବ କାଛରେ ଟଙ୍ଗା ହେଇ ରହିଥିବା ସେଇ ଭଙ୍ଗା ଭାଓଲିନ୍ । ବଜେଇବାକୁ ଚେଷ୍ଟା କରୁଥିଲା ସେ; କିନ୍ତୁ ଦିନେ ସେ ଜାଣି ପାରିଲା ଭାଓଲିନ୍‌ର ଛଡ଼ିର ସୂତାଗୁଡ଼ାକ ବିଲେଇ ଅନ୍ତିରୁ ତିଆରି । ଏ ସମ୍ବାଦଟା ଠିକ୍ କି ଭୁଲ୍ ତାକୁ ଜାଣିବାକୁ ଚେଷ୍ଟା କରିନାହିଁ ଶ୍ରୀକାନ୍ତ; କିନ୍ତୁ ତା'ପରେ ଦିନେ ସନ୍ଧ୍ୟାରେ ଭାଓଲିନ୍ ବଜଉ ବଜଉ ଅତି ନିବିଷ୍ଟ ଚିତ୍ତରେ ଭାଓଲିନ୍‌ଟାକୁ ଶୁଣିବାକୁ ଚେଷ୍ଟା କଲା ସେ । ଶ୍ରୀକାନ୍ତର ମନେ ହେଲା ଭାଓଲିନ୍‌ଟା ବାଜୁ ନାହିଁ ଆଦୌ କେବଳ ଗୋଟାଏ ବିଲେଇ ମ୍ୟାଉଁ ମ୍ୟାଉଁ କରି କାନ୍ଦୁଛି । ତା'ର ମେରୁଦଣ୍ଡ ଦେଇ ଗୋଟିଏ ଛୋଟ ବିଦ୍ୟୁତ୍ ଶୀତ୍‌କାର ପହଁରି ଗଲା, ଆଉ ତା'ପରେ ଭାଓଲିନ୍‌ଟାକୁ ଛାଟି ଫୋପାଡ଼ି ଦେଲା ଶ୍ରୀକାନ୍ତ ସାମ୍ନାର କାଛ ଉପରକୁ । ଅସହ୍ୟ ! ବିଲେଇ ପରି ଗୋଟାଏ ନିର୍ବୋଧ, ନିରୀହ, ନିଃସହାୟ ଜୀବର କରୁଣ ବିଳାପର ଅନୁକରଣରେ ସଙ୍ଗୀତ ସୃଷ୍ଟି କରାଯାଏ ନାଁ—

ସେଇ ଭଙ୍ଗା ଭାଓଲିନ୍‌ଟା ତଥାପି କାଛରେ ଟଙ୍ଗା ହେଇ ରହିଛି । ବେଳେ ବେଳେ ତାକୁ ଭାଓଲିନ୍‌ଟା ଦେଖାଯାଏ ଗୋଟାଏ ବିଲେଇ ପରି । ବିଲେଇଟା ଯେମିତି ତା'ର ଲାଙ୍ଗୁଡ଼ଟାକୁ ସିଧା କରି, ପେଟଟାକୁ ଖାଙ୍କି ଦେଇ ନେପ୍‌ଚି ପଡ଼ିଛି କାଛ ଉପରେ ।

ନାଁ—ଉପରକୁ ଆଜି ଶ୍ରୀକାନ୍ତ ଯାଇ ପାରେ ନା । ଶ୍ରୀକାନ୍ତ ତା'ର ଶେଷ ସିଦ୍ଧାନ୍ତରେ ଉପନୀତ ହେଲା । ପୁଣି ଥରେ ଶ୍ରୀକାନ୍ତକୁ ଫେରି ଯିବାକୁ ପଡ଼ିବ ତା'ର ଚିର ଲୀଳାଭୂମି ରାଜପଥ ଉପରକୁ ।

ତା'ର ଜୀବନର ଅନେକ ସନ୍ଧ୍ୟାରେ ସେ ଏଇ ରାଜପଥ ଉପରେ ନିରୁଦ୍ଦିଷ୍ଟ ହେଇ ଯାଇଛି । ଜନାକୀର୍ଣ୍ଣ ରାଜପଥର ଏଇ ଜନସମାଗମ ଶ୍ରୀକାନ୍ତକୁ ଖୁବ୍ ଭଲ ଲାଗେ । ଲୋକଙ୍କର ସାନିଧରେ କାନ୍ଧକୁ କାନ୍ଧ ଘଷି ଚାଲିବାରେ ଅନେକଟା ଆତ୍ମପ୍ରତ୍ୟୟ

ଆସେ । ମନେହୁଏ—ନା—ସବୁ ଭୁଲ୍ ନୁହଁ । ସବୁ କଳ୍ପନା ନୁହଁ । ପୃଥିବୀ ଅଛି—ଆଉ ତା' ଉପରେ ଅଛନ୍ତି ଏଇ ଲକ୍ଷ ଲକ୍ଷ ନର ନାରୀ । ଏମାନଙ୍କର ସ୍ଥିତି ପ୍ରତ୍ୟୁଷର ସୂର୍ଯ୍ୟାଲୋକ ପରି ସତ୍ୟ । ଏମାନେ ଦେବତା ପରି ଜିତେନ୍ଦ୍ରିୟ ନୁହନ୍ତି ବା ଅଶରୀର ନୁହନ୍ତି । ଏମାନେ କାମ, କ୍ରୋଧ, ମୋହ ପ୍ରଭୃତି ଷଡ୍‌ରିପୁ କବଳିତ ଅସହାୟ ମନୁଷ୍ୟଶିଶୁ ।

କିନ୍ତୁ ପୁଣି ବେଳେ ବେଳେ ଶ୍ରୀକାନ୍ତକୁ ତା'ର ସହଜାତ ନିର୍ଜନତା ଗ୍ରାସ କରି ବସେ । ଅୟୁତ-ଜନର ଏଇ କୋଳାହଳ ଭିତରେ ତା'ର ମନେ ହୁଏ ସେ ଏକାନ୍ତ ଏକାକୀ—ସେ ନିର୍ଜନ—ସେ ନିଃସ୍ୱ । ସେ ନିଜକୁ ଆବିଷ୍କାର କରିବାକୁ ଯେତିକି ବଦ୍ଧପରିକର ହୁଏ ତା'ର ମନେହୁଏ ସେ ସେତିକି ଅସ୍ପଷ୍ଟ ହେଇ ଆସୁଛି । ତା'ର ସମସ୍ତ ଯୁକ୍ତି ଦେଇ ସେ ନିଜର ସ୍ଥିତି ପ୍ରମାଣ କରିବାକୁ ଅକ୍ଷମ । ନିଜର ସ୍ଥିତି କ'ଣ କେବଳ ପ୍ରମାଣ କରାଯାଏ ? ନାଁ—ସେଇଟାକୁ ଧରିନବାକୁ ହୁଏ ଜ୍ୟାମିତିକ ସରଳ ରେଖା ପରି । ପୃଥିବୀରେ କିଛି ପ୍ରମାଣ କରାଯାଏ ନାଁ । ଏଇ ଧର ଅକ୍ଷାଂଶ ଦ୍ରାଘିମା । ପୃଥିବୀଟାକୁ ବର୍ତ୍ତୁଳାକାର ବୋଲି ଭାବି ନେଇ ତା' ଉପରେ ଛକି ଦେଇ ଅସଂଖ୍ୟ କାଳ୍ପନିକ ରେଖା ଟାଣି ନବାକୁ ହୁଏ । ଆଉ ତା'ପରେ ସେଇ ରେଖାର ଆନୁପାତିକ ଅବସ୍ଥିତିରୁ ଭୂଗୋଳ ଗ୍ରନ୍ଥ ତିଆରି କରିବାକୁ ହୁଏ । ଗଣିତ ଶାସ୍ତ୍ର ମଧ୍ୟ ଠିକ୍ ସେମିତି । 'ଏକ୍'ଟାକୁ ଧରି ନବାକୁ ହୁଏ । ତା'ପରେ ଏକ୍‌ରେ ଏକ୍ ମିଶାଇ ଦୁଇ, ଏକ୍‌ରୁ ଅନେକ । ପୁଣି ଅନେକରୁ ହରଣ, ଫେଡ଼ାଣ, ଗଣନ, ବହୁ ସୂତ୍ର ଦେଇ ସେଇ 'ଏକ୍' ପାଖକୁ ଆସିବାକୁ ହୁଏ । କିନ୍ତୁ 'ଏକ୍' ଟା କ'ଣ ? ଶୂନରୁ 'ଏକ୍' ପାଖକୁ ଆସିବାକୁ କୌଣସି ସୂତ୍ର ନାହିଁ । ଶୂନ୍‌କୁ କୌଣସି ସୂତ୍ରର ଯାଦୁରେ ଏକ କରାଯାଇ ପାରେ ନା । ତା'ର ଏକମାତ୍ର କାରଣ ଶୂନ୍‌ଟା ହଉଚି ଏକ ଅବିମିଶ୍ରିତ ମୌଳିକ ପଦାର୍ଥ । ତାକୁ ପରିବର୍ତ୍ତନ କରାଯାଏନା ।

ରାଜପଥର ସ୍ମୃତି ପୁଣି ଶ୍ରୀକାନ୍ତର ଆଖି ଆଗକୁ ପହଁରି ଆସେ । ନିଜକୁ ତା'ର ତିନି ମହଲା ଉପରର ଛୋଟ ବାଲ୍‌କନି ଉପରେ ରଖି ଲୋକମାନଙ୍କୁ ଲକ୍ଷ୍ୟକରେ ସେ । ରାଜପଥକୁ ଆଲିଙ୍ଗନ କରି ଅବିଶ୍ରାନ୍ତ ଚାଲିଛନ୍ତି ଏଇ ଲୋକମାନେ । ସେ ଯେମିତି ଦେଖୁଛି ଅନେକଗୁଡ଼ାଏ ପିମ୍ପୁଡ଼ି ଚାଲିଛନ୍ତି ସିଆର କାଟି; କିନ୍ତୁ ରାସ୍ତା ଉପରେ ଲୋକଗୁଡ଼ାକୁ ସାମ୍ନାସାମ୍ନି ଦେଖିଲେ ତା'ର ମନେହୁଏ ଏମାନେ ପ୍ରତ୍ୟେକ ଗୋଟିଏ ଗୋଟିଏ କଣ୍ଢେଇ । ସମସ୍ତଙ୍କର ମୁଣ୍ଡ ଉପରୁ ଗୋଟାଏ ଗୋଟାଏ ଅଦୃଶ୍ୟ ସୂତା ଯାଇ ମିଶିଛି ସେଇ ରହସ୍ୟମୟ ପ୍ରଶାନ୍ତ ଆକାଶରେ । ସେଠି କିଏ ଜଣେ ଏମାନଙ୍କୁ ଚଳାଉଛି ଏଇ ରାସ୍ତା ଉପରେ—ଠିକ୍ ସମୟରେ ମୁଣ୍ଡ ହଲାଉଛି । ଆଉ ଜଣକ ଦିହରେ ଆଉ

ଜଣେ ବାଜି ଗଲେ ଜଣେ କହୁଚି "କ୍ଷମା କରିବେ ।" ରଙ୍ଗମଞ୍ଚର ଆଲୋକସଜ୍ଜା ମଧ୍ୟ ବଦଳି ଚାଲିଛି । ସୂର୍ଯ୍ୟର ଆଲୋକରେ ଏମାନେ ଖାଦ୍ୟ ସଂଗ୍ରହ କରିବାକୁ ବାହାରିଛନ୍ତି । ଚନ୍ଦ୍ରର ଶୀତଳ ଆଲୋକରେ ଏମାନେ ପରସ୍ପରର କାନ ପାଖରେ ମଧୁର ଗୁଞ୍ଜନ କରୁଛନ୍ତି ଆଉ ରାତ୍ରିର ଅନ୍ଧକାରରେ ନିଜନିଜର ଖୋଳା ଭିତରେ ଭୀରୁପରି ଆଶ୍ରୟ ନଉଛନ୍ତି ।

କିନ୍ତୁ ଠିକ୍ ଏଇ ମୁହୂର୍ତ୍ତରେ ରାଜପଥ ଶୂନ୍ୟ । ଗୋଟିଏ ହେଲେ କଣ୍ଟେଇ ନାହିଁ । ଶ୍ରୀକାନ୍ତର ଆଖି ଆଗରେ ସହରକୁ ଦୁଇ ଭାଗରେ ବିଭକ୍ତ କରି ଏଇ ଶୂନ୍ୟ ରାଜପଥଟା ନିସ୍ତବ୍ଧ ଆଉ ନିଶ୍ଚେଷ୍ଟ ହେଇ ପଡ଼ି ରହିଛି । ତାକୁ ଭାରି ଭଲ ଲାଗେ ଠିକ୍ ଏଇ ସମୟରେ ମୁଣ୍ଡରେ ଡର୍ବି ହ୍ୟାଟ୍ ପିନ୍ଧି ଚାଲିବାକୁ । ତା'ର ନିଜର ଯୋତାର ପ୍ରତିଟି ଶବ୍ଦ ସେ ଶୁଣିପାରେ । ସେ ପ୍ରତି ପଦକ୍ଷେପରେ ପ୍ରମାଣିତ କରେ ଯେ ସେ ଚାଲୁଛି । ସେ ଯେମିତି ପୃଥିବୀର ରଙ୍ଗମଞ୍ଚରେ ଏକ ବିଶିଷ୍ଟ ନାୟକର ଭୂମିକାରେ ଅବତୀର୍ଣ୍ଣ ହୋଇଛି । ତା'ର ସହକାରୀ ଅଭିନେତା କେହି ନାହିଁ ।

ଫୁଟ୍‌ପାଥ ଦେହକୁ ଘଷି ହେଇ ତିନିଟା ଟ୍ୟାକ୍‌ସି ନିଶ୍ଚଳ ହେଇ ଅପେକ୍ଷା କରି ରହିଛନ୍ତି । ନା, ଏମାନଙ୍କୁ ତାଙ୍କର ଅଳସ ତନ୍ଦ୍ରାରୁ ଉଠେଇବାଟା ଅତ୍ୟନ୍ତ ଅନ୍ୟାୟ ହେବ । ଆଉ ତା' ଛଡ଼ା ଶ୍ରୀକାନ୍ତକୁ ଟ୍ୟାକ୍‌ସିରେ ବସିବାକୁ ଆଦୌ ଭଲ ଲାଗେ ନାହିଁ । ଟ୍ୟାକ୍‌ସି ଗୁଡ଼ାକ କେବଳ ଗୋଟାଏ ବେଗର ଛଳନା ତିଆରି କରନ୍ତି ଅଥଚ ଭିତରର ଆରୋହୀ ବସିଥାଏ ନିତାନ୍ତ ନିରୁଦ୍ବେଗ ଭାବରେ । ତା' ଭିତରେ ବସି ଶ୍ରୀକାନ୍ତର ମନେହୁଏ ବାହାରର ସମସ୍ତ ମନୁଷ୍ୟ ଆଉ ବସ୍ତୁ ବେଗବାନ୍ ଅଥଚ ନିଜେ ସିଏ ସ୍ଥବିର ।

ଅନେକବାଟ ଚାଲି ଆସିଲାଣି ଶ୍ରୀକାନ୍ତ । ମଧ୍ୟରାତ୍ରିର ରାସ୍ତା ଉପରେ କୌଣସି ସ୍ପନ୍ଦନ ନାହିଁ । ଆକାଶର ଅଜଳନ ତାରା ଆଖି ମିଟିମିଟି କରି ଚାହିଁ ରହିଛନ୍ତି ଅଭିଜ୍ଞତା ଆହରଣର ଏଇ ଅକାଳ-ବୋଧନକୁ । ଶ୍ରୀକାନ୍ତ ଚାଲିଛି । ଶ୍ରୀକାନ୍ତର ଏକାଗ୍ରତାକୁ ମଝିରେ ମଝିରେ ବାଧା ଦେଉଛନ୍ତି ତା'ର କାନ୍ଧର ସେହି ଭାଓଲିନ୍‌ଟା ଆଉ ରାସ୍ତା କରର ଦୁଇ ତିନିଟା ତନ୍ଦ୍ରାଳସ-ଟ୍ୟାକ୍‌ସି । ସ୍ତିମିତ ଆଲୋକରେ ଧାଡ଼ିବନ୍ଧା କେତେଗୁଡ଼ିଏ କୋଠରୀ ଦେଖାଯାଉଛି...ସେଟା ଦାତବ୍ୟ ଚିକିତ୍ସାଳୟ । ଘରଠାରୁ ଅନେକ ବାଟ ଚାଲି ଆସିଲାଣି ।

ସନ୍ତର୍ପଣରେ ଡାକ୍ତରଖାନାର ଫାଟକ ଭିତରକୁ ପଶିଲା ଶ୍ରୀକାନ୍ତ । ଡାକ୍ତରଖାନାର ଲମ୍ବା ଲମ୍ବା ଓ୍ୟାର୍ଡ ଗୁଡ଼ାକ ଯେପରି ମୂର୍ଚ୍ଛିତ ହେଇ ପଡ଼ିଛନ୍ତି ସେଇ ନିଷ୍ପ୍ରଭ ଆଲୋକର ଯାଦୁରେ । ଗୋଟାଏ ଲମ୍ବ କୋରିଡର୍‌ର ଶେଷ ପ୍ରାନ୍ତରେ ଦେଖାଯାଉଛି ଗୋଟିଏ ଶୁଭ୍ର

ବିନ୍ଦୁ । ଡିଉଟି ସାରି ବୋଧହୁଏ ସିଷ୍ଟର୍ ଜଣେ ଘରକୁ ଫେରୁଛି । ସିମେଟ୍ ଚଟାଣ ଗୁଡ଼ାକରେ ହାଇହିଲ୍ ଯୋତାର ଠକ୍,ଠକ୍ ଶବ୍ଦ ଶୁଣାଯାଉଛି—ଶବ୍ଦଟା ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ଆସୁଛି ଧୀରେ ଧୀରେ । ଲମ୍ବା ସିମେଟ୍‌ର ଚଟାଣ ଉପରେ ଯୋତାର ଶବ୍ଦ ଶୁଣିବାକୁ ଭାରୀ ଭଲ ଲାଗେ ଶ୍ରୀକାନ୍ତକୁ । ତା'ର ମନେ ହୁଏ ଯେମିତି ଗୋଟାଏ ଝରଣା ପାହାଡ଼ର ବନ୍ଧୁର ଶିଳା ରାଶି ଦେଇ ବହି ଚାଲିଛି ତଳକୁ । .....ଅନେକ ତଳକୁ ।

....ଖୁବ୍ ପାଖକୁ ଆସିଲାଣି ସିଷ୍ଟରଟି । ମନେ ମନେ ଗୋଟାଏ କିଛି କହିବାକୁ ନିଜକୁ ପ୍ରସ୍ତୁତ କରୁଛି ଶ୍ରୀକାନ୍ତ ।

କିନ୍ତୁ ନାଁ କିଛି କହିବାର ପ୍ରୟୋଜନ ନାହିଁ । ଡାକ୍ତରଖାନାର ବାରଣ୍ଡାରେ ତା'ର ଏଇ ଉପସ୍ଥିତି ପାଇଁ ସେ କାରଣ ଦର୍ଶାଇବାକୁ ବାଧ ନୁହଁ । ଆଉ ତା' ଛଡ଼ା ସିଷ୍ଟରଟି ଖୁବ୍ କମ୍ ବୟସ୍କା—ପଛରେ ବୟସର ଓଜନ ନ ଥିଲେ ହଠାତ୍ ପ୍ରଶ୍ନ କରିବାର ସାହସ ସଞ୍ଚୟ କରି ହୁଏନା । ବିପଦଟା କଟିଗଲା । ସିଷ୍ଟରଟି ଅତ୍ୟନ୍ତ ନିର୍ଲିପ୍ତ ଭାବରେ ଶ୍ରୀକାନ୍ତକୁ ଥରେ ଚାହିଁଦେଇ ସାମ୍ନା ମୋଡ଼ରେ ଅଦୃଶ୍ୟ ହେଇଗଲାଣି ।

ସର୍ଜିକାଲ ଓ୍ୱାର୍ଡର ଦୁଆର ଦେଇ ଭିତରକୁ ଚାଲିଲା ଶ୍ରୀକାନ୍ତ । ଦୁଇ ପଟରେ ଧାଡ଼ି ଧାଡ଼ି ହୋଇ ସଜ୍ଜିତ ଶଯ୍ୟା ଉପରେ ଶୋଇ ରହିଛନ୍ତି ରୋଗୀମାନେ । ନାଁ—ଆଉ ନୁହଁ । ରୋଗୀମାନଙ୍କ ନିକଟକୁ ଯାଇ ସେମାନଙ୍କର ଯନ୍ତ୍ରଣା ଦେଖିବା ଶ୍ରୀକାନ୍ତକୁ ଆଦୌ ଭଲ ଲାଗେ ନାହିଁ । ଏଇ ବେଶ୍—ଶୃଙ୍ଖଳାବଦ୍ଧ ଭାବରେ ଶୋଇ ରହିଛନ୍ତି ଦଳେ ଅଭିଶପ୍ତ ଭାଗ୍ୟହତ ମନୁଷ୍ୟର ଦଳ । ଏମାନଙ୍କର କୌଣସି ବ୍ୟକ୍ତିଗତ ପରିଚୟ ନାହିଁ, ସେଇଥିପାଇଁ ଏମାନଙ୍କର ଶଯ୍ୟାଧାରରେ କେବଳ ସଙ୍କେତହିଁ ଯଥେଷ୍ଟ । ଏମାନେ ବ୍ୟାଧିଗ୍ରସ୍ତ—ସେତିକି ଏମାନଙ୍କର ସାମୂହିକ ପରିଚୟ ।

ପୁଣି ଡାକ୍ତରଖାନାର ଫାଟକ ଦେଇ ବାହାରକୁ ଆସିଲା ଶ୍ରୀକାନ୍ତ । ବେଶୀ ସମୟ ସହ୍ୟ କରି ହୁଏନା ମନୁଷ୍ୟର ଏଇ ଅସହାୟ ଅବସ୍ଥା । ସକାଳର ଆଲୁଅରେ ସୁସ୍ଥ ଲୋକମାନଙ୍କୁ ଦେଖିବାକୁ ଖୁବ୍ ଭଲ ଲାଗେ । ସେମାନଙ୍କୁ ଦେଖିଲେ ମନେହୁଏ ସେମାନେ ପ୍ରତି ମୁହୂର୍ତ୍ତରେ ସେମାନଙ୍କର ଦୁର୍ବଳ, ଅସହାୟ ବ୍ୟକ୍ତିତ୍ୱଟିକୁ ପ୍ରଚ୍ଛନ୍ନ ରଖି ଗୋଟାଏ ମିଛ ଅହଂକାରର ମୁଖା ପିନ୍ଧି ଚାଲିଛନ୍ତି । ମନୁଷ୍ୟର ଆସ୍ପର୍ଦ୍ଧା ଗଗନଚୁମ୍ବୀ । ରାସ୍ତାରେ ଅନେକ ଗମ୍ଭୀର ଲୋକ ଦେଖିଛି ଶ୍ରୀକାନ୍ତ, ଆଉ ତା'ର ସବୁବେଳେ ମନେ ହେଇଛି ସେମାନଙ୍କୁ କୁତୁ କୁତୁ କରି ତାଙ୍କର ଏଇ ମିଛ ଗାମ୍ଭୀର୍ଯ୍ୟର ମୁଖାଟାକୁ ତଳକୁ ଖସେଇ ଆଣିବାକୁ । ମଣିଷ ମୋଟେଇ ଜଣେଇ ଦବାକୁ ଚାହେଁନା ଯେ ସେ କେତେ ଅସହାୟ । କେତେ ଦୁର୍ବଳ, କେତେ କ୍ଷୁଦ୍ର ।

ଭଗବାନ୍ ! ଶ୍ରୀକାନ୍ତର ଯୁକ୍ତହାତ ଉପରକୁ ଉଠିଗଲା । ମନୁଷ୍ୟର ଏଇ ଅହଂକାର କ୍ଷମା କର । ମନୁଷ୍ୟର ଏଇ ଔଦ୍ଧତ୍ୟକୁ ଦୟାର ଆଖିରେ ଦେଖ...ଶ୍ରୀକାନ୍ତର ମନେ ହେଲା ସେଇ ରାସ୍ତା କରରେ ଜାନୁପାତି ବସି ଯଦି ସେ ସମଗ୍ର ମନୁଷ୍ୟସମାଜ ପାଇଁ ଭଗବାନ୍‌ଙ୍କ ପାଖରେ କ୍ଷମା ମାଗିନେଇ ପାରନ୍ତା । ....ଯୁଗ ଯୁଗ ଧରି ବହୁ ମହାମାନବ ମନୁଷ୍ୟର ଏଇ ଅଦୂରଦର୍ଶିତା ପାଇଁ କ୍ଷମା ମାଗି ଆସିଛନ୍ତି ।

ଆକାଶରେ ଜମିଥିବା ଅନ୍ଧାର ଧୀରେ ଧୀରେ ଫିକା ପଡ଼ି ଆସୁଛି । ଶ୍ରୀକାନ୍ତର ରାତ୍ରିର ଅଭିଯାନ ମଧ୍ୟ ପ୍ରାୟ ସମାପ୍ତ । ଶ୍ରୀକାନ୍ତ ଘରକୁ ଫେରୁଛି । ପୁଣି ସେଇ ତେଇଶିଟା ପାହାଚର ଶିଡ଼ି ଶ୍ରୀକାନ୍ତର ଆଖି ଆଗରେ ଥାକ ଥାକ ହେଇ ଉଠି ଯାଇଛି ଉପରକୁ । ଉପାୟ ନାହିଁ । ଗୋଟିକ ପରେ ଗୋଟିଏ ଅତିକ୍ରମ କରିବାକୁ ହବ ଶ୍ରୀକାନ୍ତକୁ ।

ଡାହାଣ ପାଦର ଆଙ୍ଗୁଠିଟାକୁ ଭାଙ୍ଗି ପାହାଚ ଉପରକୁ ଥୋଇଲା ଶ୍ରୀକାନ୍ତ । ପୁଣି ସେଇ ଅଣ୍ଟାର ମାଂସପେଶୀର ଆକୁଞ୍ଚନ କରିବାକୁ ହବ ଆଉ ସେଇ ଜୋର୍‌ରେ ଟାଣି ଉପରକୁ ଉଠେଇବାକୁ ହବ ବାଁ ପାଦଟାକୁ । ତା'ପରେ ଥର ଥର କରି ବାଇଶିଥର ତାକୁ ପୁନରାବୃତ୍ତି କରିବାକୁ ହବ ସେଇ ଏକା କଥା । ଶ୍ରୀକାନ୍ତର ଯୁକ୍ତି ନିର୍ଭୁଲ୍ । ମଣିଷ ସତରେ ଗୋଟାଏ ପଶୁ—ସତରେ ଗୋଟାଏ କୀଟ । ମନୁଷ୍ୟତା କେବଳ ଗୋଟାଏ ମୁଖା—ଗୋଟାଏ ଆବରଣ ।

କବାଟଟାକୁ ଖୋଲିବା ପୂର୍ବରୁ କେଇ ମୁହୂର୍ତ୍ତ ଅପେକ୍ଷା କଲା ଶ୍ରୀକାନ୍ତ । ତା'କୁ ସତର୍କ ହେଇ ଘର ଭିତରକୁ ପଶିବାକୁ ପଡ଼ିବ । ସେଇ ଭାଓଲିନ୍‌ଟା ଯେପରି ପ୍ରଥମେ ତା ଆଖିରେ ନ ପଡ଼େ ।



# ଅହଲ୍ୟାର ଇତିବୃତ୍ତି

ଅନେକ ରାତିରେ ଘରକୁ ଫେରିଛି ଶ୍ରୀକାନ୍ତ—ଆଲୁଅ ଜାଳି ଦେଇ ଗୋଟାଏ ଚଉକି ଉପରେ କ୍ଳାନ୍ତ ହୋଇ ବସି ପଡ଼ିଲା ସେ । ଉଜ୍ଜ୍ୱଳ ଆଲୋକରେ ଘରଟାର ଚେହେରା ସ୍ପଷ୍ଟ ଦେଖିହୁଏ । ଗୋଟାଏ କଣରେ ପଡ଼ିରହିଛି ଅଯତ୍ନ ରକ୍ଷିତ ଫ୍ରିଜିଡାୟାର—ଆଉ ଟିକିଏ ଦୂରରେ ଅଳନ୍ଧୁଲଗା ରେଡ଼ିଓଗ୍ରାମ୍—ଏଠି ସେଠି କେଇଟା ଦାମୀ ଦାମୀ ଡିନ୍‌ର ସେଟ୍‌ର ଭଗ୍ନାବଶେଷ ଆଉ ପ୍ରଚୁର ବହି । ଦେଖିଲେ ସ୍ପଷ୍ଟ ବୁଝିହୁଏ ଏ ଘରଟାର ଗୋଟାଏ ସମୃଦ୍ଧିଶାଳୀ ଅତୀତ ଥିଲା । କୌଣସି ଅଶୁଭ ଲଗ୍ନରେ ଏଇ ଘରଟାର ଅଗ୍ରଗତି ଅକସ୍ମାତ୍ ବ୍ୟାହତ ହୋଇ ପଡ଼ିଛି ।

ଅବ୍‌ଦୁଲ୍ ଯନ୍ତ୍ରଚାଳିତ ପରି ଆସି ଯୋତା ଖୋଲି ଦେଇଗଲା ଆଉ ବବୁର୍ଚି ଆଣି ରାତ୍ରିର ଆହାର ରଖିଦେଇ ଗଲା ଟ୍ରେ'ରେ । ବେଶୀ ରାତିରେ ଫେରିଲେ ଏଇପରି ଭାବରେ ଖାଦ୍ୟ ରଖିଦେଇଯିବା ଏ ଘରର ଚିରାଚରିତ ପଦ୍ଧତି । ଶ୍ରୀକାନ୍ତ ଟ୍ରେ'ର କଭର୍‌ଟାକୁ ଟାଣି ନେଇ ଖଣ୍ଡେ ମାଛର କଟ୍‌ଲେଟ୍‌କୁ ବାଁ ହାତରେ ଦୁଇଟା ଆଙ୍ଗୁଠିରେ ଟେକି ଧରିଲା । ମାତ୍ର ଗୋଟାଏ ବା ଦୁଇଟା ଦ୍ୱିଧାଗ୍ରସ୍ତ ମୁହୂର୍ତ୍ତ—ନାଁ, ଥାଉ । ଅକ୍ଷୁର୍ଣ୍ଣ କଟ୍‌ଲେଟ୍‌ଟି ଫେରିଗଲା ଯଥାସ୍ଥାନକୁ ।

ଘରର ଦକ୍ଷିଣ ବ୍ୟାଲ୍‌କନିରେ ଖଣ୍ଡେ ଡେକ୍ ଚେଆର୍ ଉପରେ ଆଉଜି ପଡ଼ିଲା ଶ୍ରୀକାନ୍ତ, ଆଉ ଠିକ୍ ତା'ପରେ ପରେ ଅବଦୁଲ୍ କିଛି ବରଫ୍‌ପାଣି ଆଣି ଥୋଇ ଦେଇଗଲା ସାମ୍ନାର ଟି'ପୟ ଉପରେ । ଅର୍ଦ୍ଧରାତ୍ରିର ଏଇ କେଇଟି ମୁହୂର୍ତ୍ତର ସ୍ପନ୍ଦନ ପରେ ପୁଣି ଥରେ ଶ୍ରୀକାନ୍ତର ଏଇ ନିର୍ଜନ ଘରଟି ନୀରବ ହୋଇଗଲା ।

ଆଶ୍ଚର୍ଯ୍ୟ ମାୟାବିନୀ ରାତ୍ରି । ବାହାରେ ତ୍ରୟୋଦଶୀର ଜ୍ୟୋସ୍ନା ଚୈତ୍ରର ଉଚ୍ଛୃଙ୍ଖଳ ପବନରେ ମୁଣ୍ଡ କୋଡ଼ି ମରୁଛି । ଶ୍ରୀକାନ୍ତର ମନେ ହେଲା ଯେପରି ଏଇ ଅପର୍ଯ୍ୟାପ୍ତ ଜ୍ୟୋସ୍ନାର ଅପବ୍ୟୟ ହୋଇ ଯାଉଛି ତା' ପାଇଁ । ସେ ଯଦି ମୁଠା ମୁଠା ଜହ୍ନ ଅବିର ପରି ଫିଙ୍ଗି ଫିଙ୍ଗି ହୋରି ଖେଳି ପାରନ୍ତା !

ଅଳ୍ପ ଦୂରରେ—ସେଇ ଦୁଇଟା ତାଳ ଗଛର ଫାଙ୍କରେ ସୁମିତ୍ରାର ଘର ଦେଖାଯାଉଛି । ଜ୍ୟୋସ୍ନା ତା'ର କାଉଁରୀ କାଠି ଦେଇ ସେଇ ଘର ଉପରେ ଅପୂର୍ବ ମାୟା ସୃଷ୍ଟି କରିଛି । କ'ଣ କରୁଥିବ ସୁମିତ୍ରା ? ସେ ବୋଧହୁଏ ତା'ର ନିଃସଙ୍ଗ ଶଯ୍ୟା

ଉପରେ କର ଲେଉଟଉଥିବ; କିନ୍ତୁ ଏତେ ରାତିରେ ଶ୍ରୀକାନ୍ତର କ'ଣ ପ୍ରୟୋଜନ ଅଛି ସୁମିତ୍ରା କଥା ନେଇ ବ୍ୟସ୍ତ ହେବା ପାଇଁ ? ଶ୍ରୀକାନ୍ତର ମଧ୍ୟ ଉପାୟ ନାହିଁ । ସେ ଅତ୍ୟନ୍ତ ଅସହାୟ ଭାବରେ ସୁମିତ୍ରାର ସୁଖ ଦୁଃଖ ଭବିଷ୍ୟତ୍ ଓ ଦୈନନ୍ଦିନ କାର୍ଯ୍ୟକ୍ରମ ସହିତ ଜଡ଼ିତ ହୋଇ ପଡ଼ିଛି ।

କାଲିପରି ଲାଗୁଛି ସୁମିତ୍ରାର ସ୍ୱାମୀ ଚିନ୍ମୟ ଓ ଶ୍ରୀକାନ୍ତ ପ୍ରାୟ ଏକା ସମୟରେ ସାନ୍ତାକ୍ରୁଜ୍ ଏଆର୍ ପୋର୍ଟ୍‌ରେ କାମ ଆରମ୍ଭ କରନ୍ତି । ଦକ୍ଷ ବିମାନ-ଚାଳକ ହିସାବରେ ଦୁଇଜଣଙ୍କର ଖୁବ୍ ସୁନାମ ଥିଲା । ବହୁବାର ସେମାନେ ବିଭିନ୍ନ ପ୍ରକାରର ବିମାନ ନେଇ ଉପରକୁ ଉଠିଛନ୍ତି ଆଉ ତଳକୁ ଓହ୍ଲେଇଛନ୍ତି...ଚିନ୍ମୟର ପ୍ରାୟ ଦଶହଜାର ଘଣ୍ଟା ସଂପୂର୍ଣ୍ଣ ହୋଇ ଆସୁଛି ।

ସେଦିନ ସେପ୍ଟେମ୍ବର ଚବିଶ ତାରିଖ । ଚିନ୍ମୟର ଜନ୍ମଦିନ ପାର୍ଟି ପାଇଁ ସୁମିତ୍ରା ଅସମ୍ଭବ ବ୍ୟସ୍ତ ଅଛି । ଚିନ୍ମୟର ଲନ୍‌ରେ ଅଳ୍ପ କେଇଜଣ ଅନ୍ତରଙ୍ଗ ବଂଧୁମାନଙ୍କ ପାଇଁ ପାର୍ଟିର ଆୟୋଜନ କରାଯାଇଛି । ଲନ୍‌ଟିର ସାଜସଜ୍ଜାର ପ୍ରତିଟି ଛନ୍ଦ୍ରରେ ଅପୂର୍ବ ରୁଚି ଓ ପରିପାଟି ଫୁଟି ଉଠୁଛି । ପାର୍ଟି ଠିକ୍ ୬ଟାରେ ଆରମ୍ଭ । ଆମନ୍ତ୍ରିତ ବନ୍ଧୁମାନଙ୍କ ଭିତରୁ କେହି କେହି ଆସି ପହଞ୍ଚିଗଲେଣି; କିନ୍ତୁ ଚିନ୍ମୟ ଆସିନାହିଁ ଏ ପର୍ଯ୍ୟନ୍ତ । ସେଦିନ ସକାଳୁ ସେ ଯାଇଚି ଦମ୍‌ଦମ୍ । ସେ ସାନ୍ତାକ୍ରୁଜ୍‌ରେ ଓହ୍ଲେଇବ ଠିକ୍ ପାଞ୍ଚଟା ତେଇଶ୍ ମିନିଟ୍‌ରେ—ଆଉ ଏଆର୍ ପୋର୍ଟ୍‌ରୁ ତା'ର ଘର ଠିକ୍ ପନ୍ଦର ମିନିଟ୍ । ପାଞ୍ଚଟା ଅଠତ୍ରିଶ୍ ମିନିଟ୍‌ରେ ସେ ଆସି ପହଞ୍ଚିବ ପାର୍ଟିରେ ।

କିନ୍ତୁ ଏଆର୍ ପୋର୍ଟ୍‌ର ଗାଡ଼ି ନିର୍ଦ୍ଧାରିତ ସମୟର ପାଞ୍ଚମିନିଟ୍ ପୂର୍ବରୁ ଆସି ପହଞ୍ଚେ ଚିନ୍ମୟର ଘରେ । ଚିନ୍ମୟର ବନ୍ଧୁମାନେ ଅସ୍ପଷ୍ଟ କୋଳାହଳ କରି ଠିଆ ହୁଅନ୍ତି ଚିନ୍ମୟକୁ ସ୍ୱାଗତ କରିବାକୁ । ଗୋଟାଏ ଅସ୍ପଷ୍ଟ ମୃଦୁ ଗୁଞ୍ଜରଣ ଖେଳିଗଲା ପାର୍ଟିର ନିମନ୍ତ୍ରିତ ବନ୍ଧୁମାନଙ୍କ ଭିତରେ । ସୁମିତ୍ରାର ସୁନ୍ଦର ଆଖି ଉଜ୍ଜ୍ୱଳ ହୋଇ ଉଠେ ମୁହୂର୍ତ୍ତକ ପାଇଁ ।

ଆଉ ଠିକ୍ ତା' ପରେ ପରେ ଶ୍ରୀକାନ୍ତ ଅନ୍ୟ କେତେଜଣଙ୍କ ସାହାଯ୍ୟରେ ଚିନ୍ମୟର ମୃତ ଶରୀରଟାକୁ ଗାଡ଼ିରୁ ଆଣି ଶୁଆଇ ଦେଲା ଲନ୍ ଉପରେ । ଲ୍ୟାଣ୍ଡ କରୁ କରୁ ବିମାନଟିରେ ନିଆଁ ଧରି ଯାଇ ଚିନ୍ମୟକୁ ପୋଡ଼ି ଅଙ୍ଗାର କରି ଦେଇଛି ।

ସେଦିନ ସଂଧ୍ୟାରେ ସୁମିତ୍ରାର ସୂର୍ଯ୍ୟ ଅସ୍ତମିତ ହୋଇଗଲା ଚିରଦିନ ପାଇଁ । ପ୍ରଥମ ଧକ୍‌କାଟା କଟିଯିବାର ଅନେକ ସମୟ ପରେ ପୋର୍ଟିକୋ ତଳେ ପାଖକୁ ପାଖ ଲାଗି ଠିଆ ହୋଇ ରହିଥିଲେ ଶ୍ରୀକାନ୍ତ ଓ ସୁମିତ୍ରା । କାହାରି ମୁହଁରେ କଥା ନାହିଁ । କ'ଣ ବା କରିବେ ସେମାନେ ? ସୁମିତ୍ରାର ଦେହଟାକୁ କୌଣସି ମତେ ଟାଣି ନେଇ ବିଛଣା ଉପରେ ପକେଇ ଦେଇଥିଲା ଶ୍ରୀକାନ୍ତ । ରାତି ତିନିଟା ବାଜିବ । ଶେଷ ରାତ୍ରିର

ଅବଶିଷ୍ଟ କେଇଘଣ୍ଟା ଶ୍ରୀକାନ୍ତ ସିଗାରେଟ୍ ଖାଇ ଖାଇ ବୁଲୁଥିଲା ଲନ୍‌ରେ । ଫାଟକରୁ ପୋର୍ଟିକୋ—ପୋର୍ଟିକୋରୁ ଫାଟକ୍ ।

ତା' ଆରଦିନ ସୂର୍ଯ୍ୟ ଆଲୋକର ପିଚକାରୀ ମାରି ସୁମିତ୍ରା, ଶ୍ରୀକାନ୍ତ ଆଉ ଚିନ୍ମୟର ଗୋଟାଏ ବିଶେଷ ଦିନକୁ ଠେଲି ନେଲା ବିସ୍ମରଣର ଅନ୍ଧକୂପ ଭିତରକୁ । ବିଗତ କାଲିଟା, ବର୍ତ୍ତମାନର ଆଜି ପାଇଁ ଅତୀତ ହୋଇଗଲା ।

(ଦୁଇ)

ଶ୍ରୀକାନ୍ତ ଅବିବାହିତ । ଏ କଥା ବିଶେଷ କରି ଜାଣେ ସୁମିତ୍ରା । ଅତୀତରେ ଶ୍ରୀକାନ୍ତ ଓ ସୁମିତ୍ରାର ଗୋଟାଏ କ୍ଷୁଦ୍ର ଅଙ୍ଗୀକାର, ଘଟଣା ସ୍ରୋତରେ ବୁଦ୍ ବୁଦ୍ ପରି ମିଳେଇ ଯାଏ, ଆଉ ଚିନ୍ମୟ ସହିତ ସୁମିତ୍ରାର ବିବାହ ହୋଇଯାଏ; କିନ୍ତୁ ସେତେବେଳେ କିଏ ଜାଣିଥିଲା ସେମାନଙ୍କୁ ଆସି ରହିବାକୁ ପଡ଼ିବ ଏଇ ଏକା ଜାଗାରେ ମାତ୍ର ଶହେଗଜର ବ୍ୟବଧାନରେ । ଜୀବନର ପ୍ରଥମ ଫାଲ୍‌ଗୁନ ସମସ୍ତଙ୍କ ପାଇଁ ଅବିସ୍ମରଣୀୟ । ଶ୍ରୀକାନ୍ତ ଓ ସୁମିତ୍ରା ମଧ ତାର ବ୍ୟତିକ୍ରମ ନୁହନ୍ତି । କିନ୍ତୁ ଚିନ୍ମୟର ଅମାୟିକ ବ୍ୟକ୍ତିତ୍ୱକୁ ସେମାନେ ନତ ମସ୍ତକରେ ସ୍ୱୀକାର କରି ନେଇଛନ୍ତି । ଚିନ୍ମୟ ସେମାନଙ୍କର ଅବାଧ ମିଳାମିଶାକୁ କେବେ ହେଲେ ବାଧା ଦେଇ ନାହିଁ । ଗୋଟାଏ ଦିଗରେ ନିଜର ସହଧର୍ମିଣୀ ଉପରେ ପ୍ରଚୁର ବିଶ୍ୱାସ, ଅନ୍ୟ ଦିଗରେ ନିଜର ସହକର୍ମୀ ବନ୍ଧୁ ପ୍ରତି ମମତା, ସେମାନଙ୍କର ଘରୋଇ ଆସରଟିକୁ ପବିତ୍ର କରି ତୋଳିଛି କିନ୍ତୁ ପ୍ରତିଟି ମୁହୂର୍ତ୍ତ ଶ୍ରୀକାନ୍ତ ଆଉ ସୁମିତ୍ରା କାଟିଛନ୍ତି ନିଜର ମନ ଉପରେ ମିଛ ମୁଖା ପିନ୍ଧି । ଧନୁଗୁଣର ଦୁଇ ଆକୃଷ୍ଟ ପ୍ରାନ୍ତରେ ସୁମିତ୍ରା ଓ ଶ୍ରୀକାନ୍ତ—ଆଉ ସେମାନଙ୍କୁ ତା'ର ଦୁଇ କୋଟିରେ ଯୁକ୍ତ କରି ଚିନ୍ମୟ ଶୋଇ ରହିଛି ପ୍ରଶାନ୍ତ, ନିରୁଦ୍‌ବିଗ୍ନ ସୁନ୍ଦର ଇନ୍ଦ୍ରଧନୁ ପରି ।

ଶ୍ରୀକାନ୍ତର ପ୍ରଚୁର ଅବସର ବିନୋଦନ । ସେ ମାଛ ମାରେ, ବେହେଲା ବଜାଏ, ବହି ପଢ଼େ—ଶୀକାର କରେ ଆଉ କେବେ କେବେ ହୁଳି ଡଙ୍ଗା ନେଇ ଆହୁଲା କାଟେ ନଈରେ । ଶ୍ରୀକାନ୍ତ ଭୁଲିଯାଏ—ମନକୁ ଭୁଲେଇ ନିଏ । କିନ୍ତୁ ସୁମିତ୍ରା ଭୁଲି ପାରେନାଁ ।

ଚିନ୍ମୟର ଅନୁପସ୍ଥିତିରେ ସୁମିତ୍ରା ଶ୍ରୀକାନ୍ତକୁ ଡକେଇ ପଠାଏ । ଶ୍ରୀକାନ୍ତ ପାଇଁ ମନୋଯୋଗ ସହକାରେ ଚା' ତିଆରି କରିଦିଏ—ଶ୍ରୀକାନ୍ତ ଆଗରେ ଖିଅର ହବାର ସବୁ ସରଞ୍ଜାମ ରଖିଦେଇ କହେ, "ଅବିବାହିତ ଲୋକମାନଙ୍କର ଧୀରେ ଧୀରେ ଏପରି ବର୍ବର ଅଭ୍ୟାସ ହୋଇଯାଏ କାହିଁକି ?" ଶ୍ରୀକାନ୍ତ ପ୍ରତିବାଦ କରେ ନାହିଁ—କେବଳ ଆଶ୍ଚର୍ଯ୍ୟ ହୋଇ ଚାହିଁରହେ, ସୁମିତ୍ରାକୁ । ସୁମିତ୍ରା ଶ୍ରୀକାନ୍ତର ଆଖି ଉପରୁ

ସନ୍ ଗ୍ଲାସ୍‌ଟାକୁ କାଢ଼ି ନେଇ କହେ, ସବୁବେଳେ ଆଖିରେ ଚଷମାଟା ଦେଇ ରଖିବା କି କଦର୍ଯ୍ୟ ଅଭ୍ୟାସ କୁହ ନାଁ !

ଶ୍ରୀକାନ୍ତର ଅବଚେତନ ମଥିତ ହୋଇ ଫେନିଳ ହୋଇ ଉଠେ । ସେ କେବଳ କହେ, "ମୁଁ କୌଣସି ଉଜ୍ଜ୍ୱଳ ଜିନିଷକୁ ଖାଲି ଆଖିରେ ଚାହିଁପାରେ ନାହିଁ ।" ସୁମିତ୍ରା ଶୁଣି ନ ପାରିବାର ଛଳନା କରେ—ତଳକୁ ମୁହଁ ପୋତି ପଚାରେ, "କେଇ ଚାମୁଚ୍ ଚିନି ଦେବି ଚାହାରେ ।"

ଅକାରଣ ଅଳସ ଗପ ଭିତରେ ଶ୍ରୀକାନ୍ତ ଓ ସୁମିତ୍ରା ଭୁଲି ଯାଆନ୍ତି ଅତୀତକୁ । ଉତପ୍ତ ଅପରାହ୍ଣ ଶୀତଳ ହୋଇ ଆସେ । ବିଗତ ଦିନର ସ୍ମୃତି କଣ୍ଟାପରି ଫୋଡ଼ି ହୋଇଯାଏ ଶ୍ରୀକାନ୍ତର ମନରେ । ଶ୍ରୀକାନ୍ତ କହେ, "ଦେଖ ସୁମିତ୍ରା, ଚିନ୍ମୟ ମୋର ବନ୍ଧୁ—ମୋର ଏଠିକି ନ ଆସିବାଟାହିଁ ବୋଧହୁଏ ଉଭୟଙ୍କ ପକ୍ଷରେ କଲ୍ୟାଣକର ।"

ସୁମିତ୍ରା ବେକ ଭାଙ୍ଗି ଚାହେଁ—ତୀକ୍ଷ୍ଣ ଜବାବ ଦିଏ; "କିନ୍ତୁ ମୁଁ ଡାକିଲେ ଯେ ତମକୁ ଆସିବାକୁ ହବ ଯା'ର କ'ଣ କିଛି ମାନେ ଅଛି । ନିଜର ତାକିଦ୍ ପାଇଁ ମୋର ବାହାନା ନ ନେଲେ ଖୁବ୍ ଚଳିବ ।" ଶ୍ରୀକାନ୍ତ ଉଠି ଠିଆ ହୁଏ ଟିକିଏ ଇତସ୍ତତଃ କରି କିଛି ଜବାବ୍ ନ ଦେଇ ବାହାରି ଆସେ ସୁମିତ୍ରା ପାଖରୁ । ତା'ର ଠିକ୍ ପରେ ପରେ ସୁମିତ୍ରାର ଚାକର ଆସି ଖବର ଦେଇଯାଏ, "ମେମ୍‌ସାହେବ ଖବର ଦେଇଛନ୍ତି ଆପଣ ଚଷମା ଆଉ ପାଉଚ୍ ଛାଡ଼ି ଆସିଛନ୍ତି ବୋଲି ।" ଶ୍ରୀକାନ୍ତର ମନ ଆଉ ଦେହ ସବୁ ଯେମିତି ଭାଙ୍ଗି ପଡୁଛି । ବିଛଣା ଉପରେ କଚାଡ଼ି ହୋଇ ପଡ଼େ ଶ୍ରୀକାନ୍ତ ।

ଅବସର ସମୟରେ ସୁମିତ୍ରାକୁ ବିଶ୍ଳେଷଣ କରେ ଶ୍ରୀକାନ୍ତ । କି ଅଦ୍ଭୁତ ନାରୀ ଏଇ ସୁମିତ୍ରା । ସୁମିତ୍ରା ସୁରୁଚିସମ୍ପନ୍ନା—ସୁମିତ୍ରା ମିଷ୍ଟଭାଷିଣୀ—ସୁମିତ୍ରା ସଂବେଦନଶୀଳା, କିନ୍ତୁ ସୁମିତ୍ରାର ଭିତରଟା କି ହିଂସ୍ର । ବନ୍‌ଶୀ କଣ୍ଟାରେ ମାଛଟା ଛଟ୍‌ଛଟ୍ ହୋଇ ଉପରକୁ ଉଠିଲା ବେଳେ ଶ୍ରୀକାନ୍ତ ଲକ୍ଷ୍ୟ କରିଛି ସୁମିତ୍ରା କି ଆନନ୍ଦରେ ଅସ୍ଥିର ହୋଇ ଉଠେ । ଅନେକ ବେଳେ ଶ୍ରୀକାନ୍ତର ସେଇ ଛୋଟ ଡ୍ୟାସ୍ ହାଉଣ୍ଡ କୁକୁରଟା କଥା ମନେ ପଡ଼େ । ପଡ଼ୋଶୀ ମିସେସ୍ ରବର୍ଟସନଙ୍କ ଠାରୁ ସୁମିତ୍ରା ମାଗି ଆଣିଥିଲା ସେଇ କୁକୁରଟାକୁ; କିନ୍ତୁ କୁକୁରଟା ମୋଟେ ସୁମିତ୍ରା ପାଖରେ ରହିବାକୁ ଚାହେଁନା । ଥରେ ଖୋଲା ହେଲେ ସିଧା ଛୁଟେ ମିସେସ୍ ରବର୍ଟସନ୍ ପାଖକୁ । ପୂରା ଗୋଟାଏ ମାସର ଅକ୍ଳାନ୍ତ ପରିଶ୍ରମ କରି ମଧ କୁକୁରଟାକୁ ପୋଷା ମନେଇ ପାରିଲା ନାହିଁ ସୁମିତ୍ରା । ଦିନେ ହଠାତ୍ ଦେଖାଗଲା କୁକୁରଟା ମରିଯାଇଛି ରାତିରେ । କିନ୍ତୁ ସୁମିତ୍ରା ତାକୁ ଫୋପାଡ଼ି ଦେଲା ନାହିଁ । "ହାଇଡ୍ ଆଣ୍ଡ ହାଇଡ୍‌ର" ଲୋକ ଆସି କୁକୁରଟାକୁ ଷ୍ଟଫ୍ କରି ଦେଇଗଲା । ସୁମିତ୍ରାର ଡ୍ରଇଂ ରୁମ୍‌ରେ ବର୍ତ୍ତମାନ ସେଇ ଷ୍ଟଫ୍ ଡ୍ୟାସ୍ ହାଉଣ୍ଡ

କୁକୁରଟା ବହୁ ଶୋଭାବର୍ଦ୍ଧନକାରୀ ବସ୍ତୁ ଭିତରେ ଅନ୍ୟତମ । ଦେଖିଲେ ବଞ୍ଚିଛି ବୋଲି ଅନେକଙ୍କର ଭୁଲ୍ ହୁଏ । ଅନେକ ବନ୍ଧୁ ଆସି କୁକୁରର ଷ୍ଟଫିଙ୍ଗ୍‌କୁ ବହୁ ପ୍ରଶଂସା କରି ଯାଆନ୍ତି ଆଉ ପ୍ରଶଂସା କରି ଯାଆନ୍ତି ସୁମିତ୍ରାର ପଶୁବତ୍ସଳତାକୁ ।

କିନ୍ତୁ, କୁକୁର ମରିବାର ଅବ୍ୟବହିତ ପରେ ହିଁ ସୁମିତ୍ରା ଶ୍ରୀକାନ୍ତକୁ ଏକାନ୍ତରେ କହେ ଯେ ସେ କୁକୁରଟାକୁ ନିଜ ହାତରେ ବିଷ ଦେଇ ମାରି ଦେଇଛି । ଶ୍ରୀକାନ୍ତ ସୁମିତ୍ରାର ହିଂସ୍ର ପ୍ରବୃତ୍ତି ଦେଖି ନିର୍ବାକ୍ ହୋଇଯାଏ । ସୁମିତ୍ରା କହି ଚାଲେ, "କୁକୁରଟା କୌଣସିମତେ ମୋ ପାଖରେ ରହିବାକୁ ଚାହେଁନା, କିନ୍ତୁ ମୁଁ ମଧ୍ୟ ନାଚାର—ମୁଁ ତାକୁ କୌଣସିମତେ ଛାଡ଼ି ଦେଇ ପାରେ ନାଁ ।" ତା'ପରେ କୁକୁର ଆଡ଼କୁ ଚାହିଁ ଦିଗ୍‌ବିଜୟୀର ହସ ହସି କହେ, "ଆଉ ଥରେ ଯା ଦେଖି ମିସେସ୍ ରବର୍ଟସନ୍ ପାଖକୁ ।"

ଚୈତ୍ରର ପବନ ଶ୍ରୀକାନ୍ତକୁ ଡେକ୍ ଚେଆର୍ ଉପରେ ଶୁଆଇ ଦେଇଛି ଅନେକ ବେଳୁ...

ଚିନ୍ମୟ ମରିବାର ପ୍ରାୟ ଦେଢ଼ବର୍ଷ ଅତୀତ ହୋଇଗଲାଣି ।

ପୂର୍ବପରି ବୁଦ୍ଧିମତୀ ସୁମିତ୍ରା ଶ୍ରୀକାନ୍ତକୁ ପାଖରେ ପାଇବା ପାଇଁ ବହୁ ଅବସ୍ଥା ଓ ସୁଯୋଗ ସୃଷ୍ଟି କରିଛି ଆଉ ପ୍ରତିଥର ଶ୍ରୀକାନ୍ତର କଙ୍କାଳ ଭିତରେ ଫୁଙ୍କି ଫୁଙ୍କି ପାଉଁଶ ଭିତରୁ ଅତୀତର ସେଇ ନିଆଁକୁ ଓଟାରି ଆଣିଛି ପଦାକୁ; କିନ୍ତୁ ସୁମିତ୍ରା ତା' ନିଜ ଚାରିପଟେ ଗୋଟାଏ କାଚର ଘର ତିଆରି କରି ବସି ରହିଛି ସମାହିତ ଭାବରେ । ଆଉ ଶ୍ରୀକାନ୍ତ ସେଇ ନିଆଁରେ ଦଗ୍ଧ ହୋଇ ଆର୍ତ୍ତ ଚିତ୍କାର କଲାବେଳେ ସୁମିତ୍ରା କ୍ରୂର ଆନନ୍ଦରେ ହସି ହସି ଦେଖୁଛି କେବଳ । ପର୍ଦ୍ଦାର ଆରପଟେ ସୁମିତ୍ରା ବସିଛି ସୂକ୍ଷ୍ମ ଦଉଡ଼ି ଧରି ଆଉ ତା'ରି ଆଙ୍ଗୁଠିର ଇଙ୍ଗିତରେ ଶ୍ରୀକାନ୍ତ କଣ୍ଢେଇ ନାଚ ନାଚି ଉପହାସିତ ହୋଇଛି ପୃଥିବୀର ରଙ୍ଗମଞ୍ଚରେ ।·ଇସ୍ ! ଶ୍ରୀକାନ୍ତ ଆଉ ପାରି ଉଠେନା । ଶ୍ରୀକାନ୍ତର ମନେହୁଏ ସେ ଥରେ ତା'ର ଦୃଢ଼ ମୁଷ୍ଟି ଦେଇ ସୁମିତ୍ରାକୁ ଟାଣି ଆଣନ୍ତା, ଆଉ ଚାବୁକ୍ ଦେଇ ପିଟି ଦେଇ ଯାଆନ୍ତା ସୁମିତ୍ରାକୁ, ସୁମିତ୍ରାର ମିଛ ମୁଖାଟା ତଳେ ଖସି ପଡ଼ିବା ପର୍ଯ୍ୟନ୍ତ । ସୁମିତ୍ରା ବୋଧହୁଏ ମନେ ମନେ ଠିକ୍ ସେଇ ଘଟଣାକୁ ଅପେକ୍ଷା କରି ରହିଛି ।

ଶ୍ରୀକାନ୍ତ ଅସହ୍ୟ ଯନ୍ତ୍ରଣାରେ କର ଲେଉଟାଇଲା ଡେକ୍ ଚେୟାର୍ ଉପରେ । ନାଁ ଆଉ ସହ୍ୟ କରା ଯାଏନାଁ—ଶ୍ରୀକାନ୍ତକୁ ଏଇ ମୁହୂର୍ତ୍ତରେ ଯିବାକୁ ପଡ଼ିବ ସୁମିତ୍ରା ପାଖରୁ ।

ଚନ୍ଦ୍ରର ଶୁଭ୍ର କିରଣ ବୋହି ଯାଉଛି ସ୍ୱଚ୍ଛନୀରା ଶୀତଳ ତଟିନୀ ପରି-ଦୁଇକୂଳ ପ୍ଲାବନ କରି । ଆଉ ତା'ରି ଭିତରେ ମନର ଆନନ୍ଦରେ ସନ୍ତରଣ କରୁଛି, ଶ୍ରୀକାନ୍ତ । ତା'ର ନିଜର ଅଲକ୍ଷ୍ୟରେ ଗୋଟାଏ ଭୀଷଣକାୟ ବିଭସ କୁମ୍ଭୀରର ପ୍ରତିକୃତି ନେଇଛି ଶ୍ରୀକାନ୍ତ । ତା'ର ଚାରି ଗୋଡ଼ରେ ଆହୁଲା କାଟି ସେ ସନ୍ତରଣ କରୁଛି ଅନାୟାସରେ । ସେ ମୁଖ ବ୍ୟାଦାନ କରୁଛି ଲାଙ୍ଗୁଡ଼ଟାକୁ ପାଣିରେ ପିଟୁଛି ମନର ଆନନ୍ଦରେ—ଆଉ ଆଖିର ଇଙ୍ଗିତରେ ସେ ନିମନ୍ତ୍ରଣ କରୁଛି ଗଛ ଉପରେ ବସିଥିବା ମାଙ୍କଡ଼କୁ । ମୁହୂର୍ତ୍ତକରେ ଲମ୍ଫ ଦେଇ ମାଙ୍କଡ଼ଟା ଓହ୍ଲେଇ ଆସେ କୁମ୍ଭୀରର ପିଠି ଉପରକୁ । ଇସ୍ ! କେତେ ହାଲୁକା ଏଇ ସୁମିତ୍ରା । ସୁମିତ୍ରାର ଓଜନ ମୋଟେଇ ଅନୁଭବ କରିପାରେ ନାଁ ଶ୍ରୀକାନ୍ତ ।

ଶ୍ରୀକାନ୍ତ ଭାସିଚାଲେ ନଈରେ ଅନେକ ଦୂରକୁ । କୂଳ ଦେଖାଇ ଯାଏନାଁ । ଠିକ୍ ଏତିକିବେଳେ କୁମ୍ଭୀର କଥା କହେ, ''ତମକୁ ଦେଖିବାକୁ ଏତେ ଭଲ ଲାଗେ ସୁମିତ୍ରା—ତମର କଲିଜାଟା ନିଶ୍ଚୟ ଖୁବ୍ ମିଠା ହୋଇଥିବ । ଆଉ ମନେରଖ ସୁମିତ୍ରା ତମର କଲିଜାଟା ଯଦି ଘରେ ରଖି ଦେଇ ଆସିଛ ବୋଲି କହ ତା'କୁ ବିଶ୍ୱାସ କଲାପରି ନିର୍ବୋଧ କୁମ୍ଭୀର ମୁଁ ନୁହେଁ ।''

କୁମ୍ଭୀରର ପିଠି ଉପରେ ଛୋଟ ମାଙ୍କଡ଼ଟା ଚିଁ ଚିଁ କରି ହସି ଉଠେ । ତମକୁ ମୁଁ ଏତେ ନିର୍ବୋଧ ବୋଲି କେବେ ଭାବି ନାହିଁ ଶ୍ରୀକାନ୍ତ—କିନ୍ତୁ ସେଥିପାଇଁ ଏତେ ଛଳନା କରିବାର କ'ଣ ବା ପ୍ରୟୋଜନ ଥିଲା—ମୁଁ ତ ସବୁବେଳେଇ ପ୍ରସ୍ତୁତ ଅଛି । ମୋର କଲିଜାଟା ତମକୁ ଦେଇ ପାରିଲେ ଯେମିତି ମୁକ୍ତି ପାଆନ୍ତି ମୁଁ; କିନ୍ତୁ କାହିଁ—ମୋର କଲିଜାଟାକୁ ଯେ ତମେ ଚାହଁ ଏଇଟା ତ ମୁଁ ଜାଣୁଛି ଏଇ ପ୍ରଥମ ।

ହିଂସ୍ର କୁମ୍ଭୀରଟା ତା'ର ହାତ ପାଦ ଲାଞ୍ଜ ସଙ୍କୁଚିତ କରି ଦେଇ ପଡ଼ି ରହେ ନିଶ୍ଚେଷ୍ଟ ହୋଇ—ପାଣିର ସୁଅରେ ଯିମିତି ଭାସି ଚାଲିଛି ଗୋଟାଏ ମଲା କୁମ୍ଭୀର ।

ଦୁହିଁଙ୍କର କ୍ରୋଧ, ଅଭିମାନ, ଛଳନା, ଦମ୍ଭ ସବୁ ଯେମିତି ଲୋପ ପାଇଗଲା ମୁହୂର୍ତ୍ତକରେ—ଏଇଟା କେବଳ ଆତ୍ମସମର୍ପଣର ମୁହୂର୍ତ୍ତ । ଶ୍ରୀକାନ୍ତ ଅନୁଭବ କଲା ଯଦି ତା'ର ଜୀବନର ଏଇ ସାର୍ଥକ ମୁହୂର୍ତ୍ତଟି ବିଳମ୍ବିତ ହେଇ ପାରନ୍ତା ବର୍ଷ ବର୍ଷ ଯୁଗ ଯୁଗ ଧରି । ଆନନ୍ଦରେ ରୋମାଞ୍ଚିତ ହୋଇ ଉଠିଲା ସେ ।

ଅବ୍ଦୁଲର ଡାକରେ ନିଦ ଭାଙ୍ଗିଲା ଶ୍ରୀକାନ୍ତର...ପାଞ୍ଚଟା ବାଜିଗଲାଣି । ପାଞ୍ଚଟା ଚାଳିଶ ମିନିଟ୍‌ରେ ତାକୁ ଫ୍ଲାଇଂ କରିବାକୁ ପ୍ରସ୍ତୁତ ହବାକୁ ହବ । ଡେକ୍ ଚେଆର୍‌ରେ ପୂରା ଗୋଟାଏ ରାତି ଶୋଇ ରହି ତା'ର ବେକଟାରେ ଟିକିଏ ରକା ଲାଗି ଯାଇଛି ବୋଧହୁଏ; କିନ୍ତୁ ପର ମୁହୂର୍ତ୍ତରେ ବିସ୍ମୟରେ ଶ୍ରୀକାନ୍ତର ସମସ୍ତ ତନ୍ଦ୍ରା କଟିଗଲା ।

ପାଖ ଚଉକୀରେ ବସି ରହି ସୁମିତ୍ରା ଶ୍ରୀକାନ୍ତର ସକାଳର ଚା' ତିଆରି କରୁଛି । ଚିନ୍ମୟର ମୃତ୍ୟୁ ପରେ ସୁମିତ୍ରା ବୋଧହୁଏ ଆଜି ପ୍ରଥମ ଥର ପାଇଁ ପାଦ ଦେଇଛି ଶ୍ରୀକାନ୍ତର ଘରେ । ଶ୍ରୀକାନ୍ତ କିଛି କହିବା ପୂର୍ବରୁ ସୁମିତ୍ରା ଚା' କପ୍‌ଟା ଆଗେଇ ଦେଇ କହିଲା, "ତମେ ଆଜି ଫ୍ଲାଇଂ ପାଇଁ ଯିବ ନାହିଁ ଶ୍ରୀକାନ୍ତ—ଏଇ ସୁନ୍ଦର ସକାଳଟା ବସି ବସି ଗପ କରାଯାଉ ।"

ଚା' ପିଉ ପିଉ ଶ୍ରୀକାନ୍ତ କହେ, "ମୁଁ ଚାକିରି କରୁଛି ସୁମିତ୍ରା—ଚାକିରିଟା ଖେଳଘର ନୁହଁ—ଆଉ ତା' ଛଡ଼ା ଆମର କମ୍ପାନୀ ସକାଳୁ ଗପ କରିବାଟାକୁ ଆଦୌ ପସନ୍ଦ କରନ୍ତି ନାହିଁ ।"

ଅଭିମାନରେ ସୁମିତ୍ରାର କଣ୍ଠ ଆର୍ଦ୍ର ହେଇ ଆସିଛି । ଶ୍ରୀକାନ୍ତର ବେକଟାକୁ ତା'ର ଦୁଇବାହୁ ଦେଇ ଗୁଡ଼େଇ ଧରିଲା ସୁମିତ୍ରା—ମୁଁ ଗୋଟାଏ ଅଶୁଭ ସ୍ୱପ୍ନ ଦେଖିଲି କାଲି । ଠିକ୍ ଏଇ ସ୍ୱପ୍ନ ମୁଁ ଦେଖିଥିଲି ତମର ବନ୍ଧୁଙ୍କର ଶେଷ ଜନ୍ମ ଦିନରେ—ତମେ ଆଜି ଯିବ ନାହିଁ ଶ୍ରୀକାନ୍ତ—ତମକୁ ମୁଁ ଯିବାକୁ ଦେବି ନାହିଁ ।

ଶ୍ରୀକାନ୍ତ ନିଶ୍ଚଳ ହେଇ ବସି ରହେ । ନାରୀ କଣ୍ଠର ଏଇ ମମତାସିକ୍ତ ଅନୁରୋଧ ତା'ର ପ୍ରତିଟି ଲୋମକୂପ ରୋମାଞ୍ଚିତ କରି ଦେଇଯାଏ....

ସୁମିତ୍ରା ଭଙ୍ଗା ଭଙ୍ଗା କଣ୍ଠରେ କହିଚାଲେ—ମୋର ଅନେକ କ୍ଷତି ହୋଇ ଯାଇଛି—ଶ୍ରୀକାନ୍ତ' ଆଉ କ୍ଷତି ମୁଁ ସହି ପାରିବି ନାହିଁ । ....ଆଉ ସହି ପାରିବି ନାହିଁ....

ଶ୍ରୀକାନ୍ତ ତା'ର ବେକ ପାଖରେ ଉଷ୍ଣ ଲୋତକର ସ୍ପର୍ଶ ପାଇ ସୁମିତ୍ରାକୁ ଫେରି ଚାହେଁ—

ସୁମିତ୍ରାର ଆଲୁଳାୟିତ କେଶରାଶିରେ ଆଙ୍ଗୁଠି ଚଳେଇ ନଉ ନଉ କହେ ...ମୋ ପାଇଁ ସତରେ ତମର ମମତା ଅଛି ଦେଖୁଛି.... ମୁଁ ଧନ୍ୟ ହେଲି ସୁମିତ୍ରା । ...ସୁମିତ୍ରା କିଛି ଜବାବ୍ ଦିଏ ନାହିଁ । ଶ୍ରୀକାନ୍ତର ବେକ ଚାରିପଟେ ତା'ର ଆଶ୍ଲେଷ ଆହୁରି ନିବିଡ଼ କରି ଆଣେ କେବଳ ।

ଟେଲିଫୋନ୍‌ର ରିସିଭର୍‌ଟା ହାତରେ ଟେକି ନେଇ ଶ୍ରୀକାନ୍ତ କହେ—"ଏଆର୍ ପୋର୍ଟ ପ୍ଲିଜ୍" ।



# ଶେଷ ଚୈତ୍ରର ସଂବାଦ

ଝରା ପତ୍ରର ନୂପୁର ବଜାଇ ବହୁବାର ଚୈତ୍ର ଆସିଚି ରତିକାନ୍ତଙ୍କର ଜୀବନରେ; କିନ୍ତୁ ଆଜିର ଏଇ ଚୈତ୍ର ଯେମିତି ରତିକାନ୍ତଙ୍କ ପାଇଁ ଏକ ବିଶେଷ ସମ୍ବାଦ ବହନ କରି ଆଣିଥିଲା ।

ରତିକାନ୍ତଙ୍କର ବୟସ କେତେ ? ବୟାଳିଶ୍ କି ତେୟାଳିଶ୍ ସେଥିପ୍ରତି ଆଦୌ ସେ ମନୋଯୋଗୀ ନୁହଁନ୍ତି; କିନ୍ତୁ ସେ ନିଜେ ତାଙ୍କର ପରିବାର ଓ ବଂଧୁ ମହଲ ଗୋଟିଏ ସତ୍ୟ ଜାଣନ୍ତି ଯେ ସେ ବହୁଦିନୁ ଯୌବନକୁ ପଛରେ ପକାଇ ଆସିଛନ୍ତି । ଅତିକ୍ରାନ୍ତ ଯୌବନ ରତିକାନ୍ତ ତାଙ୍କର କାନ ପାଖର ଧଳା ବାଳଗୁଡ଼ିକ ସହିତ ଅତି ଘନିଷ୍ଠ ଭାବରେ ପରିଚିତ ହେଇ ସାରିଲେଣି । ରତିକାନ୍ତଙ୍କର ଗୋଟିଏ ଦିନ ବେଳେ ବେଳେ ମନେ ପଡ଼େ । ଦିନେ ମନ ଖୁସିରେ କ'ଣ ଗୋଟାଏ ଗୀତ ଗାଇ ଗାଇ ବାଥ୍ରୁମ୍ ଭିତରୁ ବାହାରି ଆସୁ ଆସୁ ରତିକାନ୍ତ ଦେଖନ୍ତି ତାଙ୍କ ସାମ୍ନାରେ ଠିଆ ହୋଇ ରହିଛି ତାଙ୍କର ଝିଅ ମିତା । ସାମ୍ନାର ଦୀର୍ଘ ଇଉକାଲିପଟାସ୍ ଗଛର ଶାଖାରେ ବସିରହିଥିବା ନିଃସଙ୍ଗ କପୋତଟିକୁ ଚାହିଁରହି ମିତା ଏକ ଅପୂର୍ବ ଭଙ୍ଗୀମାରେ ଠିଆ ହୋଇ ରହିଥିଲା । ରତିକାନ୍ତଙ୍କର ମନେ ହେଲା କିଶୋରୀ ମିତା ଯେମିତି ଠିଆ ହୋଇ ରହିଛି ସମାଗତ ଯୌବନ ଜଳପ୍ରପାତର ଶୀର୍ଷତମ ବିନ୍ଦୁରେ । ରତିକାନ୍ତ ଆହୁରି ଅଗ୍ରସର ହେଇ ମିତାର ଅନ୍ୟମନସ୍କତାକୁ ବାଧା ଦବାକୁ ସାହସ କରିପାରି ନାହାନ୍ତି । ସେ ଧୀରେ ଧୀରେ ଅତି ସନ୍ତର୍ପଣରେ ବାଥ୍ରୁମ୍ କବାଟଟାକୁ ଆଉଜେଇ ନେଇ ପୁଣି ଥରେ ବାଥ୍ରୁମ୍ ଭିତରକୁ ଫେରିଗଲେ ।

ସ୍ୱଚ୍ଛାଲୋକିତ ବାଥ୍ରୁମ୍‌ର କ୍ଷୁଦ୍ର ପ୍ରକୋଷ୍ଠଟି ମଧ୍ୟରେ ସେଦିନ ଅନେକ ଦିନ ପରେ ରତିକାନ୍ତ ନିଜକୁ ଆଉଥରେ ଆବିଷ୍କାର କଲେ । ସ୍କୁଲ ଛାତ୍ରମାନେ ଡ୍ରିଲ୍ କଲାପରି ଦୁଇହାତକୁ ଦୁଇପଟେ ପ୍ରସାରିତ କରି ମେରୁଦଣ୍ଡ ସଳଖ ରଖି ଠିଆ ହେଲେ ସେ । ତାଙ୍କର ନିଜର ଓଜନ୍ ବା ଉଚ୍ଚତା କିଛି ମନେ ନାହିଁ । ସେ'ଗୁଡ଼ା ହୁଏତ ଦିନେ ତାଙ୍କର ସ୍ମରଣ ଥିଲା, କିନ୍ତୁ ଏଇ କିଛି ବର୍ଷ ଧରି ସେ ନିଜର ଅଜ୍ଞାତରେ ନିଜର କ୍ରମବର୍ଦ୍ଧିଷ୍ଣୁ ଶରୀର ଓ ବୟସ ଦୁଇଟିକୁ ବହନ କରି ଆସିଛନ୍ତି ସ୍ୱଚ୍ଛନ୍ଦରେ । ଡାହାଣ ହାତଟାକୁ କାନ୍ଧ ଉପରକୁ ଭାଙ୍ଗିନେଇ ନିଜର ମାଂସପେଶୀଟାକୁ ଥରେ ପରୀକ୍ଷା କଲେ ରତିକାନ୍ତ । ନାଁ—ବୟସ ହୋଇଛି ।

ସେଦିନ ବାଥ୍‌ରୁମ୍ ଭିତରେ ରତିକାନ୍ତଙ୍କର ମାନସିକ ପ୍ରସ୍ତୁତି ଘଟିଥିଲା, ଯାହାର ମୂଳଦୁଆକୁ ଭିତ୍ତିକରି ଗତ ଛ’ ସାତ ବର୍ଷଧରି ନିରବଚ୍ଛିନ୍ନ ଭାବରେ ସେ ଏକ ଶାନ୍ତ, ସ୍ଥିରବୁଦ୍ଧି ଅଥଚ ନିର୍ଲିପ୍ତ ସାଂସାରିକ ଜୀବନ ଯାପନ କରି ଆସିଛନ୍ତି । ରତିକାନ୍ତଙ୍କର ଏଇ ଶୃଙ୍ଖଳାବଦ୍ଧ ତରଙ୍ଗ ବିହୀନ ଜୀବନ ସହିତ ଅଭ୍ୟସ୍ତ ହୋଇ ପଡ଼ିଥିବା ଲୋକମାନେ ଭୁଲିଯାଇଛନ୍ତି ଯେ ଏଇ ଆପାତଃ ସ୍ଥିର ଲୋକଟି ଭିତରେ ଅତୀତରେ ଦିନେ ଗୋଟିଏ ଦୁର୍ଦ୍ଦାନ୍ତ, ଦୁର୍ମଦ, ଅସ୍ଥିର ଲୋକ ବଞ୍ଚିଥିଲା ଯାହାର ବଞ୍ଚିବାର ଉଚ୍ଛଳ ଆନନ୍ଦରେ ପ୍ରତିଟି ମୁହୂର୍ତ୍ତ ରୋମାଞ୍ଚିତ ହୋଇ ଉଠୁଥିଲା ।

କିନ୍ତୁ ଆଜି ରତିକାନ୍ତ ସହରର ଉପକଣ୍ଠର ଏକ ଅପେକ୍ଷାକୃତ ନିର୍ଜନ ପାର୍କର ଗୋଟିଏ ବେଞ୍ଚରେ ବସି ରହିଥିଲେ । ସଂଧ୍ୟାର ଠିକ୍ ଅବ୍ୟବହିତ ପୂର୍ବରୁ ତାଙ୍କର ହୁଏତ ଘରକୁ ଫେରିଯିବା କଥା । କିନ୍ତୁ ଆଜି କେଜାଣି କାହିଁକି ରତିକାନ୍ତଙ୍କର ସାମାନ୍ୟ ଆଳସ୍ୟ ବିଳାସ କରିବାକୁ ଇଚ୍ଛା ହେଉଛି । ରତିକାନ୍ତ ଖଣ୍ଡେ ଚୁରୁଟ୍‌ରେ ନିଆଁ ଧରାଇଲେ । ତାଙ୍କ ଆଖି ସାମ୍ନାରେ ସୂର୍ଯ୍ୟ ଅସ୍ତ ଯାଉଛି । ଦୂରର ଘରଗୁଡ଼ାକ ଆସ୍ତେ ଆସ୍ତେ ଅସ୍ପଷ୍ଟ ହୋଇ ଆସି ସିଲ୍‌ହଟ୍ ଛବି ପରି ମୁଣ୍ଡଟେକି ଠିଆହୋଇଛନ୍ତି—ଆସ୍ତେ ଆସ୍ତେ ପାଖର ଗଛପତ୍ର ସବୁ ଏକ ଅଖଣ୍ଡ ଅଂଧକାର ଭିତରେ ଲୁଚିଗଲେଣି । ରତିକାନ୍ତଙ୍କର ଚୁରୁଟ୍‌ରେ ଜଳୁଥିବା ଦପ୍ ଦପ୍ ରଡ଼ ନିଆଁଟା ଅନ୍ତତଃ ରତିକାନ୍ତଙ୍କୁ ମନେପକେଇବା ଉଚିତ୍ ଯେ ବେଶ୍ ଅନ୍ଧାର ହୋଇ ଆସିଲାଣି । କିନ୍ତୁ ରତିକାନ୍ତ ତଥାପି ବସି ରହିଛନ୍ତି ନିର୍ବେଦ—ନିଶ୍ଚେଷ୍ଟ । ମୁହୂର୍ତ୍ତକ ପାଇଁ ରତିକାନ୍ତଙ୍କର ଯେ ଘରକୁ ଫେରିବା କଥା ମନେ ନ ପଡ଼ିଥିଲା, ନୁହଁ । ଆସନ୍ନ ସଂଧ୍ୟା ସହିତ ଆପେ ଆପେ ତାଙ୍କର ଘରର ଗୋଟିଏ ଚିତ୍ର ତାଙ୍କ ଆଗରେ ଭାସି ଉଠୁଥିଲା । ସେ ପ୍ରଥମେ ଯାଇ ତାଙ୍କର ଘରର ଫାଟକ ପାଖରେ ପହଞ୍ଚିବେ—ଫାଟକର ଲୁହାରୁ ରଙ୍ଗ ଛାଡ଼ିଗଲାଣି ଅନେକ ଦିନୁ । ଆଉ ତା’ପରେ ତାଙ୍କର କୁକୁର ଚିରାଚରିତ ରୀତିରେ ତାଙ୍କୁ ଆସି ସ୍ୱାଗତ କରିବ—କୁକୁରଟାର ବି ବୟସ ହୋଇଗଲାଣି—ଆଗପରି ସେ ଆଉ ଉଚ୍ଛୃଙ୍ଖଳ ଭାବରେ ରତିକାନ୍ତଙ୍କ ଉପରେ ଦୁଇ ଗୋଡ଼ ରଖି ଚଢ଼ି ଯାଏ ନାହିଁ—କେବଳ ପାଖକୁ ଆସି ମୁଣ୍ଡ ନୁଆଁଇ ଠିଆ ହୁଏ—କୁହେ—“ମୁଁ ଜାଣେ ତମର ଆସିବାର ସମୟ ହୋଇଛି—ଆସ—ଭିତରକୁ ଆସ ।” ଆଉ ଠିକ୍ ଫାଟକ ପାଖରୁ ଦେଖାଯିବ ମିଠା ତାର ପଢ଼ା ଘରେ ବହି ଉପରେ ମୁଣ୍ଡ ନୁଆଁଇ ବସି ପରୀକ୍ଷା ପାଇଁ ପ୍ରସ୍ତୁତ କରୁଛି ନିଜକୁ... । ସେଇ ପୁରୁଣା କଥା—ସେଇ ପୁରୁଣା ଦୃଶ୍ୟ । ମୁହୂର୍ତ୍ତକରେ ରତିକାନ୍ତଙ୍କର ମନ ବିଷାକ୍ତ ହୋଇ ଉଠିଲା । ଇସ୍—କି ବାଜେ କଥା—ପରୀକ୍ଷା ଆଉ ପାଠ୍ୟ ପୁସ୍ତକ ଏଇ ଦୁଇଟା ଜିନିଷ ତାଙ୍କର ଏକାଥରକେ ଅସହ୍ୟ ହୋଇ ଉଠେ । ରତିକାନ୍ତଙ୍କର ମନର ମୁକ୍ତ ଗବାକ୍ଷ ପାଖରେ ତାଙ୍କର ବୟସ କର୍ତ୍ତବ୍ୟବୋଧର ବୟନଟ୍ ଧରି ସତର୍କ ପ୍ରହରୀ ପରି ଠିଆ

ହେଇ ରହିଛି । ନ ହେଲେ ରତିକାନ୍ତ ବୋଧହୁଏ ଇଙ୍ଗିତ କରି ଝରକା ଏପଟୁ ମିତାକୁ ଚୁପ୍ ଚୁପ୍ ବାହାରକୁ ଡାକି ଆଣନ୍ତେ ଆଉ କୁହନ୍ତେ—ତୁ ଏକଦମ୍ ବୋକୀ ଝିଅଟାଏ—ସବୁବେଳେ କ'ଣ ଗୋଟାଏ ବସି ପାଠ ପଢୁଚୁ—ଯାଃ—ସାଙ୍ଗ ଘରେ ବସି ଆଡ୍‌ଡ଼ା ମାରିବୁ ନ ହେଲେ ଜହ୍ନ ରାତିରେ ଗୀତ ଗାଇବୁ, ନ ହେଲା ବା ପରୀକ୍ଷା । କାଲିର ଜୀବନକୁ ସମୃଦ୍ଧ କରିବା ଆଶାରେ ଜୀବନର ପ୍ରତିଟି ଆଜି'କୁ ହତ୍ୟା କରିବା ରତିକାନ୍ତଙ୍କର ମତରେ ଏକ ଗୁରୁତର ଅପରାଧ ।

ଆକାଶରେ ଚନ୍ଦ୍ର ଉଠି ଆସିଲାଣି । ଶୁକ୍ଳା ତ୍ରୟୋଦଶୀର ଉଜ୍ଜ୍ୱଳ ଚନ୍ଦ୍ର ଆକାଶରେ ମାତାଲ୍ ପରି ଢଳି ଢଳି ଚାଲିଛି—ଆଉ ଠିକ୍ ତାରି କରରେ ଗୋଟାଏ ଦୀର୍ଘ ଦେବଦାରୁର ଅନ୍ଧକାର ସ୍ତମ୍ଭ ଠିଆ ହେଇ ରହିଛି ନିଶ୍ଚଳ ହେଇ ।

ଅକସ୍ମାତ୍ ରତିକାନ୍ତଙ୍କର ଏକ ଅଦ୍ଭୁତ ଭାବାନ୍ତର ଉପସ୍ଥିତ ହେଲା । ତାଙ୍କର ମନେ ହେଲା ଯେପରି ତାଙ୍କର ମେରୁଦଣ୍ଡ ଦେଇ ଗୋଟାଏ ଶୀତଳ ପ୍ରବାହ ବିଦ୍ୟୁତ୍ ବେଗରେ ସଞ୍ଚାରିତ ହେଇଗଲା । ଆଜିର ଏଇ ପରିବେଶ ଏଇ ମାତାଲ ଜହ୍ନ ଆଉ ରହସ୍ୟାବୃତ ଦେବଦାରୁ ମୁହୂର୍ତ୍ତକରେ ରତିକାନ୍ତଙ୍କୁ ସ୍ଥାନାନ୍ତରିତ କରିନେଲା କୋଡ଼ିଏ ବର୍ଷ ତଳର ଏକ ନିର୍ଦ୍ଦିଷ୍ଟ ଘଟଣାକୁ । ଆଜି ମାର୍ଚ୍ଚ ୧୪ ତାରିଖ । କି ଆଶ୍ଚର୍ଯ୍ୟ ! ଠିକ୍ ଆଜିର ତାରିଖରେ କୋଡ଼ିଏ ବର୍ଷ ତଳେ ଉଠିଥିଲା ଏଇ ଚନ୍ଦ୍ର ଆଉ ଠିଆ ହେଇ ରହିଥିଲା ଏଇ ଦେବଦାରୁ—ଆଉ ଏଇ ଦେବଦାରୁର ପାଖକୁ ଲାଗି ଠିଆ ହେଇ ରହିଥିଲା ରତିକାନ୍ତଙ୍କର କଣ୍ଠଲଗ୍ନା ହେଇ ସୁମିତ୍ରା ।

ଆଉ ବିଳମ୍ବ ନ କରି ରତିକାନ୍ତ ଅପେକ୍ଷାକୃତ ଦ୍ରୁତଗତିରେ ଘରକୁ ଫେରିଲେ । ଘରେ ମଧ୍ୟ ତାଙ୍କର ସମୟ ନଷ୍ଟ କରିବାର ଉପାୟ ନାହିଁ । ତାଙ୍କୁ ଏଇ ମୁହୂର୍ତ୍ତରେ ବାହାରିବାକୁ ପଡ଼ିବ । ପ୍ରସ୍ତୁତ ହେଇ ଗାଡ଼ିରେ ବସିବା ପର୍ଯ୍ୟନ୍ତ ରତିକାନ୍ତଙ୍କୁ ବୋଧହୁଏ ଖୁବ୍ ବେଶୀ ଦଶ ମିନିଟ୍ ସମୟ ଲାଗିଥିବ । ସ୍ଥିତଧୀ ରତିକାନ୍ତଙ୍କର ଏଇ ବ୍ୟତିକ୍ରମ ପାଇଁ ରତିକାନ୍ତଙ୍କର ପରିବାରବର୍ଗ ସମସ୍ତେ ବେଶ୍ ଆଶ୍ଚର୍ଯ୍ୟାନ୍ୱିତ ହେଇଥିଲେ ମଧ୍ୟ ରତିକାନ୍ତଙ୍କର ଅଦ୍ଭୁତ ବ୍ୟକ୍ତିତ୍ୱ ସମସ୍ତଙ୍କୁ ନୀରବ ରହିବାକୁ ବାଧ୍ୟ କରିଥିଲା । ଗତ ଛ' ସାତ ବର୍ଷ ଧରି ରତିକାନ୍ତ କେବେ ହେଲେ ନିଜେ ଗାଡ଼ି ଚଳାଇ ନାହାନ୍ତି, କିନ୍ତୁ ଆଜି ଡ୍ରାଇଭରକୁ ମନା କରି ଦେଇ ରତିକାନ୍ତ ଯେତେବେଳେ ଗାଡ଼ିରେ ଷ୍ଟାର୍ଟ ଦେଲେ ସେତେବେଳେ ରତିକାନ୍ତଙ୍କ ସ୍ତ୍ରୀଙ୍କର କ୍ଷୀଣ ପ୍ରତିବାଦ ଇଞ୍ଜିନର ଘର୍ଘର ଶବ୍ଦ ଭିତରେ ଏକ ନିଷ୍ଫଳ ଅଭିମାନ ପରି କୁଆଡ଼େ ବିଲୀନ ହୋଇଯାଇଥିଲା ।

ରତିକାନ୍ତ ତାଙ୍କର ଛୋଟ ଟୁରର୍ ଗାଡ଼ିଟିରେ ବସି ଚାଲିଛନ୍ତି ରାସ୍ତା ଉପରେ—ତାଙ୍କୁ ଯିବାକୁ ହେବ ପ୍ରାୟ ଦଶ ମାଇଲ୍ । ଆକାଶରେ ଚନ୍ଦ୍ର ଅନେକ କିଛିବାଟ ଉପରକୁ

ଉଠି ଆସିଲାଣି । ଚୈତ୍ର ସଂଧ୍ୟାର ଉଚ୍ଛୃଙ୍ଖଳ ପବନରେ ରତିକାନ୍ତ ବେଶ୍ ଉତ୍‌ଫୁଲ୍ଲ ହୋଇ ଉଠିଛନ୍ତି । ତାଙ୍କର ମନେ ହେଉଛି ବହୁଦିନ ଧରି ବନ୍ଦ ହେଇ ଯାଇଥିବା ଗୋଟାଏ ଅନ୍ଧ ଅର୍ଗଳି ଯେପରି ଅକସ୍ମାତ୍ ଉନ୍ମୋଚିତ ହେଇ ଯାଇଛି ।

ହେଇ–ଦୂରରୁ ସେଇ ଉଲଗ୍ନ ପାହାଡ଼ଟା ସେଦିନ ପରି ମଧ୍ୟ ଆଜି ଠିଆ ହେଇ ରହିଛି ବିଭୂତି ଆବୃତ ସନ୍ନ୍ୟାସୀ ପରି ଯୋଗାସୀନ ହୋଇ । ସେଇ ପାହାଡ଼କୁ ଗଭୀର ଆଶ୍ଳେଷରେ ବାନ୍ଧି ରଖି ତା' ଚାରିପଟେ ବୋହିଯାଇଛି ଇନ୍ଦ୍ରାବତୀ ନଦୀ... ସେମାନଙ୍କର କିଛି ମନେ ନାହିଁ– ଆଜିକି ଠିକ୍ କୋଡ଼ିଏ ବର୍ଷ ତଳେ ସେଠିକି ପିକ୍‌ନିକ୍ କରିବାକୁ ଯାଇଥିବା ବହୁ ଲୋକଙ୍କ ମଧ୍ୟରୁ କାହାରି କିଛି ମନେ ନାହିଁ, କିନ୍ତୁ ମନେ ଅଛି ରତିକାନ୍ତଙ୍କର । ସେଦିନର ସେଇ କୋଳାହଳ ଭିତରୁ ସମସ୍ତଙ୍କର ଅଗୋଚରରେ ରତିକାନ୍ତ ଓ ସୁମିତ୍ରା ଓହ୍ଲେଇ ଆସିଥିଲେ ପାହାଡ଼ ତଳର ସରୁ ଘାଟୀ ରାସ୍ତା ଉପରକୁ । ରାସ୍ତା ଉପରକୁ ଆସି ସେମାନେ ଟିକିଏ ଆଶ୍ୱସ୍ତି ଅନୁଭବ କରିଥିଲେ । ପିକ୍‌ନିକ୍‌ର ସମସ୍ତ କୋଳାହଳ, ତାସ୍ ଖେଳ, ସଂଗୀତ ଚର୍ଚ୍ଚା ଏପରିକି ପେଟ୍ରୋମାକ୍ସ ଲାଇଟ୍ ଗୁଡ଼ାକ ପର୍ଯ୍ୟନ୍ତ ସବୁ କିଛି ସେଦିନ ସେମାନଙ୍କର ମନେ ହେଇଥିଲା ଅଶ୍ଳୀଳ-ଅତିରିକ୍ତ-ଅନର୍ଥକ । ଆକାଶର ଚେନାଏ ଜହ୍ନ ଆଉ ଗୋଟିଏ ଦେବଦାରୁ ଗଛ ସେମାନଙ୍କର ପରିବେଶଟିକୁ ସଂପୂର୍ଣ୍ଣ କରିବା ପାଇଁ ଯଥେଷ୍ଟ ଥିଲା ।

ସହରକୁ ବେଶ୍ ପଛରେ ପକାଇ ଦେଇ ଆସିଲାଣି ରତିକାନ୍ତଙ୍କର ଛୋଟ ଟୁର୍‌ର ଗାଡ଼ିଟି । ପାହାଡ଼ ତଳର କ୍ରମ ସଂକୀର୍ଣ୍ଣ ରାସ୍ତା ଦେଇ ଚାଲିଛି ଗାଡ଼ିଟା–ଆଉ ସେଇ ଗାଡ଼ି ଭିତରେ ଯେପରି ସମ୍ମୋହିତ ହୋଇ ବସି ରହି ରତିକାନ୍ତ ଶୁଣୁଛନ୍ତି କୋଡ଼ିଏ ବର୍ଷ ତଳର ଟେପ୍ ରେକର୍ଡ଼ କରାଯାଇଥିବା ଦୁଇଟି ଯୁଗ୍ମ କପୋତର ମଧୁର କୂଜନ ।

ରତିକାନ୍ତଙ୍କର ବାହୁ ବନ୍ଧନ ଭିତରେ ସେଦିନ ସୁମିତ୍ରା ଅତି ଶାନ୍ତ ସମାହିତ ଭାବରେ ନୀରବ ହୋଇ ଆଉଜି ରହିଥିଲା କିଛିକ୍ଷଣ । କ'ଣ ବା କଥାବାର୍ତ୍ତା କରିବାର ଥିଲା ସେମାନଙ୍କର ? ସେଇ ଚିରାଚରିତ ଗୋଟିଏ କଥା ।

ଆଜି ମତେ ତମକୁ ଭାରି ଭଲ ଲାଗୁଚି ସୁମିତ୍ରା !

ସୁମିତ୍ରାର ଜବାବ୍ ଦବାର କିଛି ଦରକାର ନଥିଲା ଅନେକ ଦିନ ଧରି । କିନ୍ତୁ ସେଦିନ ସୁମିତ୍ରାକୁ ଜବାବ୍ ଦବାକୁଇ ପଡ଼ିବ । ତାକୁ ସ୍ପଷ୍ଟ ଭାବରେ କହି ଦବାକୁ ପଡ଼ିବ ଯେ ସେମାନଙ୍କର ବିବାହ ଅସମ୍ଭବ । ବାପାଙ୍କର ଅବାଧ ହେଇ ବିବାହ କରିବାକୁ ସୁମିତ୍ରାର ସାହସ ନାହିଁ, ଅନ୍ୟ ଦିଗରେ ଦୀନ, ଦୁର୍ବଳ ରତିକାନ୍ତ ମଧ୍ୟ ସେଦିନର ସେଇ ପରିସ୍ଥିତି ଭିତରେ ସୁମିତ୍ରାର ସଂପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିବାକୁ ଅକ୍ଷମ । ଆଜି ସେମାନଙ୍କର ଶେଷ ଦେଖା–ହୁଏତ ଆଉ ଦେଖା ନହେଇପାରେ–ଦେଖା ନ ହେବା ମଧ୍ୟ ସବୁ ଦିଗରୁ ନିତାନ୍ତ ଉଚିତ୍ ।

ପିକ୍‌ନିକ୍‌ର ଲୋକମାନେ କ୍ଲାନ୍ତ ହେଇଯିବେଣି—ଭୋଜି ଆରମ୍ଭ ହବାର ଠିକ୍ ପୂର୍ବରୁ ହୁଏତ କେହି କେହି ଏ ଦୁହିଁଙ୍କର ଅନୁପସ୍ଥିତି ଆବିଷ୍କାର କରି ପାରନ୍ତି ଏବଂ ତା' ପରର ଅବସ୍ଥାଟା ଏକ୍‌ବାରେ ସ୍ପୃହଣୀୟ ନୁହେଁ—ସେମାନଙ୍କୁ ଖୁବ୍ ଶୀଘ୍ର ଫେରିଯିବାକୁ ପଡ଼ିବ ସେମାନଙ୍କ ସହିତ ଯୋଗ ଦବାକୁ ନକଲି ମୁଖା ପିନ୍ଧି ।

ଫେରିଯିବାର ଠିକ୍ ଅବ୍ୟବହିତ ପୂର୍ବରୁ ରତିକାନ୍ତ ଗୋଟିଏ ପ୍ରତିଶ୍ରୁତି ଦାବୀ କରି ବସେ—କୁହ ସୁମିତ୍ରା—ଆଜିକି ଠିକ୍ କୋଡ଼ିଏ ବର୍ଷ ପରେ ଆମେ ଯିଏ ଯେଉଁ ଅବସ୍ଥାରେ ଥାଏ ନାଁ କାହିଁକି ଆଉଥରେ ଯେମିତି ଆମର ଏଇଠି ଦେଖା ହୁଏ—ଠିକ୍ ଏଇ ପାହାଡ଼ ତଳେ, ଏଇଠି । ପ୍ରତିଶ୍ରୁତି ଯେ କେତେଦୂର ରକ୍ଷା କରାଯାଇ ପାରିବ ବା ରକ୍ଷା କରାଯିବା ଉଚିତ୍ ସେଥିପ୍ରତି କାହାର ସେଦିନ ତିଳେ ହେଲେ ଖିଆଲ୍ ନଥିଲା । ବୟସର ବହୁ ନିରର୍ଥକ ଖିଆଲ୍ ପରି ଏ଼ଟା ମଧ୍ୟ ଗୋଟାଏ ନିରର୍ଥକ ପ୍ରତିଶ୍ରୁତି । ତଥାପି ସେଇ ଦେବଦାରୁ ଗଛକୁ ସାକ୍ଷୀ ରଖି ଦୁଇଜଣ ଯାକ ଏଥିରେ ଏକମତ ହୋଇଥିଲେ ।

ରତିକାନ୍ତଙ୍କର ଟୁରର୍ ଗାଡ଼ି ଘାଟୀ ଉଠିବାକୁ ଆରମ୍ଭ କରିଛି । ରତିକାନ୍ତ ଭାବୁଛନ୍ତି କେବଳ ସୁମିତ୍ରାର କ'ଣ କୋଡ଼ିଏ ବର୍ଷ ତଳର ସେଇ କ୍ଷୀଣ ଅର୍ଥହୀନ ପ୍ରତିଶ୍ରୁତି ମନେ ଥିବ । ଆଜିକାଲି କେଉଁଠି ସୁମିତ୍ରା ? ବହୁଦିନ ଧରି ରତିକାନ୍ତ ସୁମିତ୍ରାର କୌଣସି ଖୋଜ ଖବର ରଖି ନାହାନ୍ତି । ସୁମିତ୍ରା ହୁଏତ ଭାରତବର୍ଷ ବାହାରକୁ ଚାଲିଯାଇଛି ଯା' ଭିତରେ ।

କିନ୍ତୁ ରତିକାନ୍ତଙ୍କର ଏ ଅଦ୍ଭୁତ ଖିଆଲ କାହିଁକି ? କିନ୍ତୁ କିଏ ଜାଣେ ହୁଏତ ସୁମିତ୍ରା ଆସି ରତିକାନ୍ତ ପାଇଁ ସେଠି ଅପେକ୍ଷା କରିଚି....

ନିର୍ଜନ ଆଉ ସଂକୀର୍ଣ୍ଣ ଘାଟୀ ରାସ୍ତା ଉପରେ ରତିକାନ୍ତଙ୍କର ଗାଡ଼ି ଉଠିଚାଲିଛି ଉପରକୁ—ଆହୁରି ଉପରକୁ । ମଟର୍‌ର ଆଲୁଅରେ ଦୁଇ କରର ଜଙ୍ଗଲ ଭିତରେ ସରୁ ରାସ୍ତାଟା ଦେଖାଯାଉଛି ଖଣ୍ଡେ ଇସ୍ପାତ୍‌ର ଧାରୁଆ ଛୁରୀ ପରି । ଆଉ ଖୁବ୍ ଅଳ୍ପବାଟ ଏଇ—ଦୂରରୁ ସେଇ ଦେବଦାରୁ ଗଛଟା ସ୍ପଷ୍ଟ ଦେଖାଯାଉଛି । ମଟର୍‌ଟା ଯେତିକି ଆଗକୁ ଆସୁଛି ରତିକାନ୍ତଙ୍କର ଉତ୍କଣ୍ଠା ଯାଇ ଉଦ୍‌ବେଗ ବଢ଼ିଚାଲିଛି ଆହୁରି ଉପରକୁ ।

ଖୁବ୍ ଅସ୍ପଷ୍ଟ ଭାବରେ ଦେଖାଯାଉଛି ସେଇ ଦେବଦାରୁ ଗଛ ମୂଳରେ ଠିଆ ହୋଇ ରହିଛି ଗୋଟିଏ ନାରୀ ମୂର୍ତ୍ତି । ଉତ୍କଣ୍ଠା ଓ ଆନନ୍ଦର ଆତିଶଯ୍ୟରେ ରତିକାନ୍ତଙ୍କର ସମସ୍ତ ଶରୀରରେ ବେପଥୁ ଆରମ୍ଭ ହୋଇଛି । ସୁମିତ୍ରା ତମର କ'ଣ ମନେ ଅଛି ଏତେଦିନର ପ୍ରତିଶ୍ରୁତି ? କିନ୍ତୁ ୟେ' କ'ଣ ? ଦେବଦାରୁ ଗଛତଳେ ସ୍ଥାଣୁ ଭାବରେ ଠିଆ ହେଇ ରହିଛି ସୁମିତ୍ରା । ଯେମିତି ଖଣ୍ଡେ ପଥରକୁ ହାଣି ହାଣି କିଏ ସୁମିତ୍ରାର ମୂର୍ତ୍ତି ଗଢ଼ିଛି ସେଠି । ସୁମିତ୍ରାର କିଛି ପରିବର୍ତ୍ତନ ହେଇ ନାହିଁ ଏଇ ଦୀର୍ଘ

କୋଡ଼ିଏ ବର୍ଷ ଭିତରେ ? କିନ୍ତୁ ଯେ କ'ଣ ସମ୍ଭବ ? ଏଇ କୋଡ଼ିଏଟି ବର୍ଷର ଦୀର୍ଘ ସମୟ ସୁମିତ୍ରାର ମୁହଁ ଉପରେ କୌଣସି ଛାପ ରଖି ଯାଇ ନାହିଁ—ସୁମିତ୍ରା ଠିଆ ହେଇ ରହିଛି ମୃତ୍ୟୁଞ୍ଜୟୀ—କାଳଜୟୀ ଅନନ୍ତ ଯୌବନା ଉର୍ବଶୀ ପରି ।

ଗାଡ଼ିରେ ବ୍ରେକ୍ ଦେଲେ ରତିକାନ୍ତ । ମଟରର ଆଲୁଅଟା ତଥାପି ଜଳୁଛି ସଂକୀର୍ଣ୍ଣ ପାର୍ବତ୍ୟ ପଥଟିକୁ ପ୍ରଖର ଆଲୁଅର ସ୍ରୋତରେ ଉଦ୍‌ଭାସିତ କରି । ରତିକାନ୍ତ ଉନ୍ମାଦ ପରି ଦୁଇହାତ ଉନ୍ମୁକ୍ତ କରି ଗାଡ଼ିରୁ ଓହ୍ଲେଇ ସୁମିତ୍ରା ଆଡ଼କୁ ଅଗ୍ରସର ହେଲେ । କିନ୍ତୁ ସୁମିତ୍ରା ଦୁଇହାତ ଆଗକୁ ପ୍ରସାରିତ କରି କେବଳ ଇଙ୍ଗିତରେ ଯେମିତି କହୁଛି, ''ଆଉ ଆଗକୁ ଆସ ନାହିଁ ରତିକାନ୍ତ—ମତେ ସ୍ପର୍ଶକର ନାହିଁ ।'' କିନ୍ତୁ ସୁମିତ୍ରାର ମୁହଁରେ କଥା ନାହିଁ ।

ରତିକାନ୍ତ ତଥାପି ଅଗ୍ରସର ହେଲେ । ସୁମିତ୍ରାର ପ୍ରତିଟି ଅଙ୍ଗ-ଭଙ୍ଗୀରେ ଆହୁରି ଅନୁନୟ ବିନୟର ମୂକ ମିନତି ସ୍ପଷ୍ଟ ହେଇ ଉଠିଛି କିନ୍ତୁ ରତିକାନ୍ତଙ୍କର ସ୍ନାୟୁ କେନ୍ଦ୍ର ଉତ୍ତୀର୍ଣ୍ଣ ହୋଇ ଉଠିଛି । ରତିକାନ୍ତଙ୍କର ପ୍ରସାରିତ ବାହୁ ଯୁଗଳରୁ ନିଜକୁ ରକ୍ଷା କରିବାକୁ ଯାଇ ସୁମିତ୍ରା ଗୋଟାଏ ଲମ୍ଫରେ ଡେଇଁ ପଡ଼ିଲା ରାସ୍ତାର ଅନ୍ୟ ପଟକୁ ।

ଠିଆ ହୁଅ ସୁମିତ୍ରା, ଯାଅ ନାହିଁ—ବିଚାର ବୁଦ୍ଧିଶୂନ୍ୟ ଭାବରେ ଚିତ୍କାର କରିଉଠିଲେ ରତିକାନ୍ତ । ସୁମିତ୍ରା ନିରୁତ୍ତର । ରତିକାନ୍ତଙ୍କର କର୍କଶ ଚିତ୍କାରର ପ୍ରତିଧ୍ୱନି କେବଳ ପର୍ବତ ଉପତ୍ୟକାରୁ ଦୋହରେଇ ଦୋହରେଇ ଫେରି ଆସିଲା ।

ସୁମିତ୍ରା ଆଉ ଗୋଟାଏ ଲମ୍ଫରେ ଘାଟିରେ ତଳକୁ ଡେଇଁ ପଡ଼ିଲା ଆଉ ତା ସହିତ ମଧ୍ୟ ତଳକୁ ଡେଇଁ ପଡ଼ିଲେ ପ୍ରସାରିତ ପାଣିରେ ରତିକାନ୍ତ ସୁମିତ୍ରାକୁ ଆଲିଙ୍ଗନ କରିବାର ନିଷ୍ଫଳ ପ୍ରୟାସରେ । ରତିକାନ୍ତଙ୍କର ଶେଷ ଚିତ୍କାର ''ସୁମିତ୍ରା'' କେବଳ ପ୍ରତିଧ୍ୱନି ଛଳରେ ଘୂରି ବୁଲିଲା ସେଇ ପାର୍ବତ୍ୟ ଉପତ୍ୟକାର ନିର୍ଜନ ବାୟୁମଣ୍ଡଳ ମଥିତ କରି ।

ଆକାଶରେ ତ୍ରୟୋଦଶୀର ଚନ୍ଦ୍ର ଖଣ୍ଡେ କଳା ବାଦଲ କବଳିତ ହେଇ ଯନ୍ତ୍ରଣାରେ ଛଟ୍‌ପଟ୍ କରୁଥିଲା ।



# ଲ୍ୟାମ୍ପପୋଷ୍ଟର ଇତିକଥା

ସେଦିନ ଖୁବ୍ ଶୀତ ।

କୋଟ୍ ପକେଟ୍‌ରୁ ହାତଗୁଡ଼ାକ କାଢ଼ିବାକୁ ମନ ହଉ ନାହିଁ ମୋତେ । ଗୋଟାଏ ବହି ଦୋକାନ ସାମ୍ନାରେ ଠିଆ ହୋଇ ଅନ୍ୟମନସ୍କ ଭାବରେ ଚାହିଁ ରହିଥିଲି ରାସ୍ତାକୁ । ରାସ୍ତାରେ ବହୁଲୋକଙ୍କର ଭିଡ଼ ଜମିଛି—କିନ୍ତୁ ଚିହ୍ନିବାର ଉପାୟ ନାହିଁ କାହାକୁ । କାହାର ଦେହ ଉପରେ ଛ ଇଞ୍ଚ୍ ବହଳର ଗରମ ପୋଷାକ ଲୋକଟାକୁ ଅସ୍ୱାଭାବିକ ଭାବରେ ମୋଟା କରି ଦେଇଛି —ଆଉ କାହାର ଫେଲ୍‌ଟ କ୍ୟାପ୍ ତଳକୁ ନଇଁ ଆସି ଚିବୁକ ପର୍ଯ୍ୟନ୍ତ ଢାକି ଦେଇଛି ଗୋଟାଏ ଲମ୍ବା ଛାଇରେ । ଆଉ କାହାର ମୁହଁରେ ଗୋଟାଏ ଅସମ୍ଭବ ଲମ୍ବା ଆଉ ମୋଟା ସିଗାର୍, ଖଣ୍ଡେ ଜଳନ୍ତା କୋଇଲା ପରି ଦପ୍ ଦପ୍ କରୁଛି । ଲୋକଟାର ଆକୃତି ନିତାନ୍ତ କ୍ଷୁଦ୍ର । ଦେଖିଲେ ମନେହୁଏ ଯେମିତି ଏଇ ବିରାଟକାୟ ଜଳନ୍ତା ସିଗାର୍‌ଟା ଲୋକଟାକୁ ଏଇ ପ୍ରଚଣ୍ଡ ଶୀତ ରାତିରେ ଟାଣି ଟାଣି ଚାଲିଛି ତା'ର ଅଗ୍ନିର ଚୁମ୍ବକ ଦେଇ ।

ନାଁ—ସମସ୍ତେ ଚାଲିଛନ୍ତି । ଏଇ ଚାଲିବାଟାଇ ବୋଧହୁଏ ଦେହକୁ ଉତ୍ତାପ ଦିଏ । ମତେ ମଧ ଚାଲିବାକୁ ହେବ । ମୋ'ର ଅଜାଣତରେ କେତେବେଳେ ଚାଲିବାକୁ ଆରମ୍ଭ କରିଦେଇଛି, ମୁଁ ଜାଣେନା । ଆଣ୍ଠୁର ଜଏଣ୍ଟ୍‌ଟା ବେଶ୍ କାର୍ଯ୍ୟଦକ୍ଷ ଥିଲା ପରି ମନେ ହେଉଛି । ଏତେ ଶୀତରେ ମଧ ସଂପୂର୍ଣ୍ଣ ଜମାଟ ବାନ୍ଧି ଯାଇ ପାରିନାହିଁ ସେଗୁଡ଼ାକ । ମନେ ମନେ ଖୁବ୍ ତାରିଫ୍ କଲି ମୋର ଏଇ ଦୁଇଟା ଆଣ୍ଠୁକୁ । ଆହା ! ଏମାନେ କେତେ ବିଶ୍ୱସ୍ତ ।

ମୁଁ ଯେ କାହିଁକି ଚାଲିଛି ତା' ମୁଁ ଜାଣେନା । କିନ୍ତୁ ଚାଲିବାକୁ ହେଲେଇ କୌଣସି ନା' କୌଣସି ନିର୍ଦ୍ଦିଷ୍ଟ ଦିଗରେ ଚାଲିବାକୁ ହେବ । ଶୈଶବର ବହୁ କିମ୍ବଦନ୍ତୀ ସ୍ମରଣ ଅଛି ମୋର । ଏମିତି ଗୋଟାଏ ଗୋଟାଏ ମୁହୂର୍ତ୍ତରେ ଯେତେବେଳେ ବ୍ୟକ୍ତିବିଶେଷ ପାଇଁ କୌଣସି ନିର୍ଦ୍ଦିଷ୍ଟ ଦିଗ ତା'ର ଅର୍ଥ ହଜାଇ ବସେ—ସେତେବେଳେ ତା'ର ଭାଗ୍ୟପୁରୁଷହିଁ ତାକୁ ପଥର ଇଙ୍ଗିତ ଦିଏ ।

ଖୁବ୍ ଲମ୍ବା ଲମ୍ବା ପାଦ ପକାଇ ଆଗକୁ ଚାଲିଛି ମୁଁ । ମୋର ଦୁଇ କର ଦେଇ କାନ୍ଧରେ କାନ୍ଧ ଘଷି ଚାଲିଛନ୍ତି ଅନେକ ଅନେକ ଲୋକ । ସେମାନଙ୍କର କୌଣସି

ନିର୍ଦ୍ଦିଷ୍ଟ ପରିଚୟ ନାହିଁ । ସେମାନଙ୍କର ଆକୃତି ମଧ୍ୟ ନିତାନ୍ତ ବୈଶିଷ୍ଟ୍ୟହୀନ । ସେମାନଙ୍କର ଏକମାତ୍ର ସାମୂହିକ ପରିଚୟ ହେଉଛି, ସେମାନେ ହେଉଛନ୍ତି ରାଜପଥର ଶୀତ-କବଳିତ ନାମହୀନ ପଦାତିକର ଦଳ ।

ଦୂରରୁ ଦେଖାଯାଉଛି ନୀଳ ନିଅନ୍ ଆଲୋକର ସ୍ତିମିତ ସଂକେତ । "Fill your glass and feel the difference" ବାଃ ! ଶୀତର ପ୍ରାରମ୍ଭରେ ନୂଆ ଡ୍ରିଙ୍କ୍‌ର ଷ୍ଟକ୍ ଆସିଥିବ ନିଶ୍ଚୟ । ଆଉ ସେଇ ଯେଉଁ ଝିଅଟି ପାନଶାଳାର ଅତିଥିମାନଙ୍କ ଭିତରେ ରାଜହଂସୀ ପରି ପହଁରି ଯାଉଛି, ମଦର ବୋତଲ ଧରି ତା' ନାଁ 'ଲୋରିଆ'—ହୁଏତ ନୁହଁ । କିନ୍ତୁ ତା'ର ସୁଗଠିତ ଭୂରୁ କହିଦିଏ ତା' ଘର ଜାପାନ୍‌ରେ । ସେ ହୁଏତ ବ୍ରିଟିଶ ଅଧିକୃତ ଜାପାନର ନିଷ୍ଠିତ ପ୍ରତୀକ ।

ସହରର ଉପକଣ୍ଠରେ ଏହି ଆଦିମ ପାନଶାଳା କାହିଁ କେଉଁ ଯୁଗର ନିମନ୍ତ୍ରଣର ଆଖି ନେଇ ଚାହିଁ ରହିଛି ମୋରି ପରି ଉଦ୍ଦେଶ୍ୟହୀନ ଅସଂଖ୍ୟ ପଥଚାରୀଙ୍କୁ । ଠିକ୍ ତାରି ଦେହ ଘଷି ରୂପବ୍ୟବସାୟୀମାନଙ୍କର କେଳି-କଲୋନି । ନୀତିର ପାଚିରୀ ଡେଇଁ ଏହି ଦୁଇଟି ଅନୁଷ୍ଠାନ ଏଠି ଗଢ଼ି ଉଠିଛି ସହରର କୋଳାହଳ ଠାରୁ ଅନେକ ଦୂରରେ ଓ ଠିକ୍ ସେଇଥିପାଇଁ ଆଜି ଏଇ ଶୀତ-ହିମ ରାତିରେ ସହରର ରାଜପଥ ଶୂନ୍ୟ; ଯେମିତି କୋଳାହଳ ବସା ବାନ୍ଧିଛି ଏଇ ଘୃଣ୍ୟ ନର୍କର ନାଭିକେନ୍ଦ୍ରରେ ।

କିନ୍ତୁ ଏଇ ଚିରନ୍ତନ ପଙ୍କିଳ ବୃତ୍ତର ସମାପ୍ତି କେଉଁଠି ? ହୁଏତ ଏଥିପାଇଁ ଦାୟୀ ସେଇ ପ୍ରଥମ ନୀତିବାଗୀଶ, ଯେ ତାଙ୍କର ଅଯୌକ୍ତିକ ଖିଆଲ ଚରିତାର୍ଥ କରିବାକୁ ନୀତି ଓ ଅନୀତି ଭିତରେ ତିଆରି କଲେ ପ୍ରଥମ ପାଚିରୀ, କିନ୍ତୁ ସେ କ'ଣ ଜାଣିଥିଲେ ସେ ତିଆରି କରୁଥିଲେ ଗୋଟାଏ ତାସ୍‌ର ପାଚିରୀ ।

ନା—ଆଜି ଥାଉ । ନହେଲା ବା ଆଜି ତାପନିୟନ୍ତ୍ରିତ ପ୍ରକୋଷ୍ଠରେ ବିଳାସ ମଦ୍ୟପାନ । ବେଶ୍ ଲାଗୁଛି ଏଇ ପ୍ରଚଣ୍ଡ ଶୀତ । ପୌଷ ରାତ୍ରିର ଏଇ ତିକ୍ତମଧୁର ହିମ ଚୁମ୍ବନ ।

ଆହୁରି ଆଗକୁ ପାଦ ବଢ଼େଇଲି । ମୁଁ ଚାଲିଛି । କେବଳ ଚାଲିବା ପାଇଁ । କି ଅନ୍ଧାର ! ରାସ୍ତା କରର ଦେବଦାରୁ ଗଛ ଗୁଡ଼ାକ ମନେ ହେଉଛନ୍ତି ଗୋଟାଏ ଗୋଟାଏ ଅନ୍ଧକାରର ସ୍ତମ୍ଭ ପରି । ଏତେ ବଡ଼ ଗୋଟାଏ ସ୍ତବ୍ଧ ଚେତନାହୀନ, ଆକାଶର ଗୋଟିଏ କଣରେ ମାତ୍ର ଦୁଇ ଚାରିଟି ତାରା । ସେମାନେ ଯେମିତି ପହରା ଦବା ଛାଡ଼ି ଏକାଠି ବସି ବସି ଗପ କରୁଛନ୍ତି ସମୟ କାଟିବାକୁ ।

କିନ୍ତୁ କାହିଁ ଏତେ ଅନ୍ଧକାରରେ ମଧ୍ୟ ରୋମାଞ୍ଚ ଆସେନା—ଭୟ ବି ତ ହୁଏନା । ଏଇ ବସୁନ୍ଧରା ଉପରେ ପାଦ ଦେଇଥିବ ଯେଉଁ ପ୍ରଥମ ମନୁଷ୍ୟ, ସେ ନିଶ୍ଚୟ ଆଶ୍ଚର୍ଯ୍ୟ

ବିସ୍ମୟ ଭାବ ନେଇ ଲକ୍ଷ୍ୟ କରିଥିବ ଏଇ ସାନ୍ଦ୍ର ଅନ୍ଧକାରକୁ । କିନ୍ତୁ ଆଜି ଆମ ପାଇଁ ଏଇ ପୁଞ୍ଜୀଭୂତ ଅନ୍ଧକାର ଯେପରି ଗୋଟାଏ ପ୍ରୟୋଜନୀୟ ଆବରଣ । ଆଲୋକର ନିର୍ଲ୍ଲଜ ଅତ୍ୟାଚାରରୁ ରକ୍ଷା ପାଇବାକୁ ଯେପରି ଆମେ ଦୟାକରି ସୃଷ୍ଟି କରିଛୁ ଏଇ କେତେ ମୁଠା ଅନ୍ଧାର ।! ଆହା ! ପୃଥିବୀରେ ଯଦି ତିଆରି କରାଯାଇ ପାରନ୍ତା ଆଉ କିଛି ଅନ୍ଧାରର ଫସଲ !!

ଗୋଟାଏ ଝଲକ ଥଣ୍ଡା ପବନ ଆସି ମୋର ଅନାବୃତ ମୁହଁଟାକୁ ଅସାଡ଼ କରିଦେଇଗଲା । ଉତ୍ତାପ ପାଇଁ ଖଣ୍ଡେ ସିଗାରେଟ୍‌ରେ ନିଆଁ ଧରାଇଲି । ବାଃ ! ମୁଁ ତ ନିଜକୁ ଦେଖି ପାରୁଛି ବେଶ୍ । ଉପରକୁ ଚାହିଁଲି । ଗୋଟାଏ ଲ୍ୟାମ୍ପପୋଷ୍ଟକୁ ଆଉଜି ରହି ଅନେକ ସମୟ ଧରି ଠିଆହୋଇ ରହିଛି ମୁଁ—ଆଉ ମୋ ଚାରିପଟେ କିରାସିନୀ ଲ୍ୟାମ୍ପର କ୍ଷୀଣ ଆଲୋକବୃତ୍ତ ଏକ ରହସ୍ୟମୟ ପରିବେଶ ସୃଷ୍ଟି କରିଛି ।

ମୁଁ ଇତିହାସର ଅଧମ ଛାତ୍ର । ମୁଁ ଜାଣେନା ଲ୍ୟାମ୍ପପୋଷ୍ଟ ଦେଇ କିଏ ଏଇ ଧରଣର ରାସ୍ତା ଆଲୋକିତ କରିବାର ପ୍ରଣାଳୀ ଆବିଷ୍କାର କଲା—ବା, କେଉଁ ଦେଶହିତୈଷୀ ସମ୍ରାଟ ବା ଭାଇସ୍‌ରାୟ ଭାରତୀୟ ରାସ୍ତାରେ ଏହାର ଅବତାରଣା କଲେ । କିନ୍ତୁ ମୁଁ ମୁକ୍ତ କଣ୍ଠରେ ତାରିଫ୍ କରୁଛି ତାଙ୍କର ଏ ଅନବଦ୍ୟ ସୃଷ୍ଟିକୁ ।

ଲ୍ୟାମ୍ପପୋଷ୍ଟ୍ ମୋର ଶୈଶବର ଅବିସ୍ମରଣୀୟ ଚରିତ୍ର । କେତେଥର ନ ଲେଖିଥିବି ଲ୍ୟାମ୍ପପୋଷ୍ଟ୍‌ର ଆତ୍ମକାହାଣୀ । ମୋର ଜନ୍ମ ହୁଏ କେଉଁ ପର୍ବତର ପାଦଦେଶରେ—ଆଉ କେଉଁ ପାମର ମତେ ସେଠାରୁ କାଟି ଆଣି ଗୋଟାଏ କାଠଘେରା ଲୁହାର ଟୋପି ପିନ୍ଧାଇ ଦିଏ । ଆଉ ତା'ପରେ ମୁଁ ପ୍ରତି ସଂଧ୍ୟାରେ ଜଳେ ଓ ପ୍ରତି ସକାଳେ ଲିଭେ ।

ଆଜିର ଏଇ ଲ୍ୟାମ୍ପପୋଷ୍ଟ୍ ମତେ ମନେପକାଇ ଦିଏ ଆଜିକି ସାତବର୍ଷ ତଳର ଠିକ୍ ଏମିତି ଗୋଟାଏ ଅନ୍ଧକାରମୟ ଶୀତଳ ରାତ୍ରି । ସେତେବେଳେ ମୁଁ ମୋର କୈଶୋରର ଶେଷ ପାଦରେ । ଏମିତି ଗୋଟାଏ ନିର୍ଜନ ଲ୍ୟାମ୍ପପୋଷ୍ଟର ଭୀରୁ ଆଲୋକ ତଳେ ବାହୁରେ ବାହୁ ଛନ୍ଦି ଠିଆ ହୋଇ ରହିଥିଲୁ ଆମେ । ମୁଁ ଓ ପ୍ରତିମା । ପ୍ରତିମା ଓ ମୁଁ । ସେଇ ରାତିକ ପାଇଁ ଆମେ ଥିଲୁ ଏକ ଅପରର ସର୍ବସ୍ୱ । ପ୍ରତିମାର ସମସ୍ତ କ୍ଷୁଦ୍ର ଦେହଟିକୁ ଆବୃତ କରି ରହିଛି ମୋର ଲମ୍ବା ଆଉ ଢିଲା ଗ୍ରେଟ୍‌କୋଟ୍ ଆଉ ମୋର ବେକ ଚାରିପଟେ ମୁଠାହେଇଛି ପ୍ରତିମାର ଦୁଇଫୁଟ୍ ଚଉଡ଼ାର କଫି ରଙ୍ଗର ସ୍କର୍ଫ ।

ପାଖ ଗଛର ଡାଳଟା ବେଶ୍ ଜୋର୍‌ରେ ଦୋହଲିଗଲା ଦୁଇଥର । ମୋର ଅଣ୍ଟାକୁ ଖୁବ୍ ଜୋର୍‌ରେ ଚାପି ଧରିଲା ତ୍ରସ୍ତା ପ୍ରତିମା ।

"ଯଶୋଦା !" (ମୋ ନାଁ ଯଶୋଦା ଜୀବନ)

"କ'ଣ" ।

"ଭୟ ଲାଗୁନି ?"

"କାହାକୁ ?"

"ଏଇ ଅନ୍ଧାରକୁ" ?

"ଧୁତ୍" ।

"ସତେ ଯଶୋଦା, ମତେ ଖୁବ୍ ଭୟ ଲାଗେ ଅନ୍ଧାରକୁ । ଦେଖୁନାହଁ ତମେ–ଲ୍ୟାମ୍ପପୋଷ୍ଟର ଏଇ ମଳିନ ଆଲୁଅ, ଏଇ ବିକଟ ଅନ୍ଧକାରକୁ ଭୟକରି କେତେ ତ୍ରସ୍ତ କେତେ ସଂକୁଚିତ ହୋଇଯାଇଛି ।

ସତେ ! ଆଉଥରେ ଚାହିଁଲି ଲ୍ୟାମ୍ପପୋଷ୍ଟର ଆଲୋକକୁ । ଆଲୋକ ଅନ୍ଧକାରକୁ ଏତେ ଭୟ କରିବାର ମୁଁ ଦେଖିନାହିଁ ଆଉ କେବେ । ସେଇ ନିର୍ଜନ ବାୟୁମଣ୍ଡଳ ଭିତରେ ମୋର ନିଜର ହସରେ ନିଜେ ଚମକି ପଡ଼ିଥିଲି ମୁଁ ।

ବାଃ, ଚମତ୍କାର ପ୍ରତିମା ! ଚେଷ୍ଟରଟନ୍ ମଧ ଯା' ଠାରୁ ଉଚକୋଟୀର ପାରାଡ଼କସ୍ ତିଆରି କରି ପାରିନଥାନ୍ତେ ।

"କିନ୍ତୁ ଯଶୋଦା" ପ୍ରତିମାର କଣ୍ଠସ୍ୱର ଶୁଣାଯାଉଥାଏ ରଙ୍ଗମଞ୍ଚର ସ୍ମାରକର କଣ୍ଠ ପରି ଧୀର ଅଥଚ ସ୍ପଷ୍ଟ ।

"ଏଇ ଦିଗନ୍ତ ବିସ୍ତାରୀ ଅନ୍ଧକାର କ'ଣ ତଥାପି ସଂପୂର୍ଣ ଗ୍ରାସ କରି ପାରିଛି ଏଇ ମୁମୂର୍ଷୁ ଦୀପଶିଖାର ଜଳିବାର ଅଦମ୍ୟ ଅହଙ୍କାରକୁ ?"

ଦୁଇଟି ମୁହୂର୍ତ୍ତର ବ୍ୟବଧାନ ଭିତରେ ମୋତେ ଦୁଇଟି ସଂପୂର୍ଣ୍ଣ ପରସ୍ପର-ବିରୋଧୀ ଉକ୍ତିକୁ ଗ୍ରହଣ କରିନେବାକୁ ହେଲା ।

ପ୍ରତିମାକୁ ମୋର ଦୁଇବାହୁ ମଧ୍ୟରେ ସଂପୂର୍ଣ୍ଣ ଜଡ଼ାଇ ଧରି କହିଲି, "ତମେ ପ୍ରତିମା, ଏଇ ଦୀପଶିଖାଠାରୁ ଆହୁରି କ୍ଷୁଦ୍ର, ଆହୁରି ଶୀର୍ଣ୍ଣ । କେତେ ପାଉଣ୍ଡ୍ ବା ଓଜନ୍ ତମର ? ମାନେ ତମେ ଏତେ ଛୋଟ ଯେ ମୁଁ ତମକୁ ମୋର ଗ୍ରେବ୍‌କୋଟ୍‌ର ପକେଟ୍ ଭିତରେ ରଖିଦେଇ ତମକୁ ବିନା ମାସୁଲରେ ନିଉଜିଲ୍ୟାଣ୍ଡ୍ ନେଇଯାଇପାରେ–ଏକାଥରକରେ କଷ୍ଟମ୍ ଫ୍ରି ।

ତମେ ଏତେ କ୍ଷୁଦ୍ର, ଅଥଚ ଆଜିର ରାତ୍ରିପରି ସହସ୍ର ରାତ୍ରିର ପିପାସା ନେଇ ମୁଁ କ'ଣ ସଂପୂର୍ଣ୍ଣ ପାଇ ପାରିଲି ତମକୁ ?"

'ଯଶୋଦା !'–ଚକିତ ହରିଣୀପରି ପ୍ରତିମା ମୁହଁ ଟେକି ଚାହିଁ ରହିଲା ମତେ ।

ସକାଳର ପ୍ରଥମ ଆଲୁଅ ଏଇ ଆସିବ । ପ୍ରତିମାର ଦୁଇ ଆଖି ତଳେ ଝଲମଲ କରୁଥିବା ଦୁଇଟି ମୁକ୍ତା ବିନ୍ଦୁକୁ ଓଠ ଦେଇ ଶୋଷି ନେଲି ମୁଁ ।

ଗ୍ରେଟ୍‌କୋଟ୍‌ର ଖୋସା ଭିତରୁ ପ୍ରଜାପତି ପରି ବାହାରି ଯାଇ ପ୍ରତିମା ଚାଲିଗଲା ପୂର୍ବଦିଗର ରାସ୍ତାରେ ଅବାରିତ ଆଲୋକ-ସ୍ରୋତର ସାମ୍ନା କରି କରି । ମୁଁ କେଇ ପାଦ ଫେରି ପୁଣି ଥରେ ଚାହିଁଲି ପଛକୁ । ଆଲୋକର ସ୍ରୋତ ମାଡ଼ି ଆସୁଛି ତୀର ପରି ଆଉ ତା'ରି ପ୍ରଚ୍ଛଦପଟରେ କ୍ଷୁଦ୍ରରୁ କ୍ଷୁଦ୍ରତର ହୋଇ ଆସୁଛି ତନ୍ୱୀ ପ୍ରତିମାର ତନୁଯଷ୍ଟି ।

ପ୍ରତିମା ଚାଲିଗଲା । ଜୀବନରେ ଅନେକ ଅନେକ କରୁଣ ସୂର୍ଯ୍ୟାସ୍ତରେ ମୁଁ ନିର୍ବୋଧ ଆଶା ନେଇ ଅପେକ୍ଷା କରି ରହିଛି ପ୍ରତିମାକୁ । ପ୍ରତିମା ଫେରିନାହିଁ—ପ୍ରତିମା ଫେରିବ ନାହିଁ ।

ସିଗାରେଟ୍‌ଟା ହାତରୁ ଖସି ପଡ଼ିଗଲା ତଳେ । ଠିକ୍ କ'ଣ ଯେ ଅନୁଭବ କଲି ପ୍ରକାଶ କରି ପାରୁ ନାହିଁ । ଆଉଥରେ ନିଶ୍ଚଳ ରହି କାନପାତି ଶୁଣିବାକୁ ଚେଷ୍ଟା କଲି ମୁଁ । ଠିକ୍ ସେହି ସ୍ୱର । ଅତି ସ୍ପଷ୍ଟ ଅଥଚ ଦୃଢ଼କଣ୍ଠରେ ଡାକୁଛି ମତେ କିଏ ? କିନ୍ତୁ ପ୍ରତିମା ଭିନ୍ନ ଯଶୋଦା ଜୀବନକୁ ଯଶୋଦା ବୋଲି ଡାକିବ କିଏ ? ବୁଲିପଡ଼ି ଲ୍ୟାମ୍ପପୋଷ୍ଟକୁ ଚାହିଁଲି । ସେ ବିଷୟ ବର୍ଣ୍ଣନାତୀତ ! ଲ୍ୟାମ୍ପପୋଷ୍ଟର ଦୁଇପଟୁ ଦୁଇଟି ବାହୁ ମତେ ବେଷ୍ଟନ କରି ଧରିଛି ଦୃଢ଼ ଭାବରେ ।

ଭୟ ଓ ବିସ୍ମୟ କାଟି ଅବସ୍ଥାକୁ ଠିକ୍ ଭାବରେ ବୁଝିବାକୁ ଚେଷ୍ଟା କରୁଛି ମୁଁ । ପ୍ରତିମାର କଣ୍ଠସ୍ୱର ଅବିକଳ ଅନୁକରଣ କରି ଏଇ ନିର୍ଜୀବ ଲ୍ୟାମ୍ପପୋଷ୍ଟ କଥା କହୁଛି ମତେ ।

''ଭୟ କର ନାହିଁ ଯଶୋଦା ! —ମୁଁ ପ୍ରତିମା, ବିଶ୍ୱାସ କର ମତେ ।''

ମୁଁ ସ୍ପଷ୍ଟ ଅନୁଭବ କରିପାରୁଛି ମୋର ଗୋଡ଼ ହାତ ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଅସାଡ଼ ହୋଇ ଆସୁଛି ଧୀରେ ଧୀରେ—ମୁଣ୍ଡଟା ଓଜନ ଲାଗୁଛି ଅସମ୍ଭବ ଭାବରେ । ଆଉ ଠିକ୍ ମୋରି ଆଖି ଆଗରେ ରେଣୁ ରେଣୁ ଅନ୍ଧାର ମିଶି ତିଆରି ହେଉଛି ପ୍ରତିମାର ପ୍ରତିମୂର୍ତ୍ତି । କିନ୍ତୁ ମୋ'ର ଏ କ'ଣ ହେଲା ପ୍ରତିମା ? ଅସୀମ ସାହସ ସଞ୍ଚୟ କରି ପଚାରିଲି ମୁଁ ।

ରକ୍ତମାଂସର ଜୀବନ୍ତ ପ୍ରତିମା ଠିଆ ହୋଇ ରହିଛି ମୋ ସାମନାରେ । ତା'ର ଆଖିରେ ଆଖିଏ ଲୁହ । ପଣତରେ ଲୁହ ପୋଛି ନେଇ କ'ଣ କହିବାକୁ ଯାଉଥିଲା ପ୍ରତିମା । କିନ୍ତୁ ତା'ର ଧୈର୍ଯ୍ୟର ବନ୍ଧ ଯେମିତି ଭୁଷୁଡ଼ି ପଡ଼ିଲା ମୁହୂର୍ତ୍ତକରେ ।

ମୋର ଦେହ ବେଷ୍ଟନ କରି କାନ୍ଦି କାନ୍ଦି ଲୋଟି ଯାଉଛି ପ୍ରତିମା । ସେ କେବଳ ଫୁଲି ଫୁଲି କାନ୍ଦୁଛି ଆଉ ଲୋଟି ଯାଉଛି ଭୂଇଁରେ । କିନ୍ତୁ ମୋର ଜଡ଼ବାହୁରେ ଆଉ ଚେତନାର ସଞ୍ଚାର ହୁଏନା'—କ୍ରନ୍ଦନରତା ପ୍ରତିମାକୁ ମୁଁ କ'ଣ ବା ସାନ୍ତ୍ୱନା ଦେବି !

ଧୀରେ ଧୀରେ ପ୍ରତିମା ନିଜକୁ ପ୍ରକୃତିସ୍ଥ କରି ତା'ର କାହାଣୀ ଆରମ୍ଭ କରେ । ସେ ଏକ ଅବିଶ୍ୱାସ୍ୟ ଆରବ୍ୟ ଉପନ୍ୟାସର କାହାଣୀ ! ଠିକ୍ ଆଜିକି ସାତ ବର୍ଷ ଧରି ପ୍ରତିମା ରାସ୍ତାର ଏଇ ଛକ ଉପରେ ଠିଆ ହୋଇ ରହିଛି ଏଇ ଲ୍ୟାମ୍ପପୋଷ୍ଟରେ ରୂପାନ୍ତରିତ ହୋଇ । ଆଉ ଆଜି ତା'ର ମୁକ୍ତି ଦିବସ । ଆଉ ଆଜି କୁଆଡ଼େ ସେ ମୁକ୍ତି ପାଇଛି ମୋ ଉପରେ ତା'ର ସମସ୍ତ ଅଭିଶାପର ବୋଝ ଓଜାଡ଼ି ଦେଇ ।

ନିଜକୁ ନିଜେ ନିରୀକ୍ଷଣ କଲି ମୁଁ । କେବଳ ମୋର ନିଜସ୍ୱ ଚେତନାକୁ ଛାଡ଼ିଦେଲେ ମୋର ହୋଇ ଆଉ କିଛି ନାହିଁ । ମୁଁ ଠିକ୍ ସେହି ନିର୍ଦ୍ଧାରିତ ସ୍ଥାନରେ ଠିଆ ହୋଇ ରହିଛି ଅଥଚ ଗୋଟାଏ ଜରାଜୀର୍ଣ୍ଣ ଲ୍ୟାମ୍ପପୋଷ୍ଟର ଆକୃତି ନେଇ ।

ମୋରି ଦେହରେ ଦେହ ଘଷି ଠିଆ ହୋଇଛି ପ୍ରତିମା, ଶାପମୁକ୍ତ ରାଜକନ୍ୟା ପରି । ମତେ ଜଣାଯାଉଛି ଯେପରି ମୋର କୋଟ୍‌ର କଲର୍ ଦୁଇଟାକୁ ଦୁଇହାତରେ ଧରି କହିଯାଉଛି ପ୍ରତିମା—

ଅନେକ ପୌରୁଷର ଆସ୍ଫାଳନ କରିଛ ତମେ ଯଶୋଦା—କିନ୍ତୁ ଥରେ ଭାବି ଦେଖ, ନାରୀ ପାଇଁ କେବେ ତମର ସର୍ବସ୍ୱ ଉତ୍ସର୍ଗ କରିପାରିଛ ତମେ ? କେବେ କହିପାରିଛ, "ମତେ ଦିଅ ତମର ସମସ୍ତ ନିର୍ଯ୍ୟାତନା, ତମର ସମସ୍ତ ଅଭିଶାପ ?" ଏଇଠି ଲୋକଲୋଚନ ଅନ୍ତରାଳରେ ବର୍ଷ ବର୍ଷ ଧରି ନୀରବରେ ସହ୍ୟ କରିବା ବୋଧହୁଏ ତମର ହେବ ପ୍ରଥମ ଓ ଚରମ ପୌରୁଷ ।

ପ୍ରତିମାର ଅବସର ନିତାନ୍ତ ସଂକ୍ଷିପ୍ତ । ଧାରାବାହିକ ଭାବରେ ସମସ୍ତ ଘଟଣା କହିବାକୁ ସମୟ ନାହିଁ ତା'ର । ଯାହା ଘଟିଛି ତାକୁ ଗ୍ରହଣ କରିନବାକୁ ହେବ ମତେ । ପ୍ରତିମା ପୁଣିଥରେ ଫେରିଯିବ ତା'ର ବହୁ ପରିଚିତ ପୃଥିବୀ ପ୍ରାଙ୍ଗଣକୁ, ନୂତନ ଅଭିନୟ ପାଇଁ ପ୍ରସ୍ତୁତ ହେବାକୁ ।

ରାତ୍ରିର ଶେଷ ଅନ୍ଧାର ସହିତ ଅସ୍ପଷ୍ଟ ହୋଇ ମିଳେଇଗଲା ପ୍ରତିମା । ସକାଳର ଆଲୁଅରେ ସ୍ଥାଣୁପରି ଠିଆହୋଇ ରହିଲା ଏଇ ଜରାଜୀର୍ଣ୍ଣ ଅଥଚ ନୂତନ ଲ୍ୟାମ୍ପପୋଷ୍ଟ—ରୂପାନ୍ତରିତ ଯଶୋଦା ଜୀବନ ।

ନୀରବରେ ଠିକ୍ ସେହି ବିନ୍ଦୁ ଉପରେ ମୁଁ ଠିଆହୋଇ ରହିଛି ଦିନ ଦିନ ଧରି । ସକାଳର ସୂର୍ଯ୍ୟ ମୋ ଦେହ ଉପରେ ଜମି ଯାଇଥିବା ବିନ୍ଦୁ ବିନ୍ଦୁ କାକର ଚାଟି ନେଇ ଯାଇଛି । ଅସଂଖ୍ୟ ଶ୍ରାବଣ ସନ୍ଧ୍ୟାରେ ମୁଁ ବର୍ଷୁକ ଆକାଶ ସହିତ ଛନ୍ଦ ରଖି

ଲୋତକପାତ କରିଛି । କିନ୍ତୁ ଠିକ୍ ପୂର୍ବପରି ଲୋକର ଅସରନ୍ତି ଧାଡ଼ି ମୋ ଚାରିପଟେ ବାଘବଜାରୀ କାଟି ଚାଲିଛନ୍ତି—ଆଉ ଚାଲିଛନ୍ତି ।

ଦିନ ଦିନ ଧରି ଅସହ୍ୟ ଯନ୍ତ୍ରଣା ନେଇ ମୁଁ ଅନୁଭବ କରିଛି କିପରି ଗୋଟାଏ ଜୀବନ୍ତ ଯଶୋଦା ଜୀବନର ସମାଧି ହୋଇଗଲା; ଗୋଟାଏ ଲ୍ୟାମ୍ପପୋଷ୍ଟର ପ୍ରାଣହୀନ ଅସ୍ତିତ୍ୱ ଭିତରେ । କିନ୍ତୁ ସେ କ'ଣ ମୋର ଭୁଲ୍ ? ବେଳେ ବେଳେ ମୁଁ ମଧ ଭାବେ ଯଦି କେବେ ମୁଁ ନିଜକୁ ରିପ୍ ଭ୍ୟାନ୍ ଉଇଙ୍କିଲ୍ ପରି ଶତାବ୍ଦୀର ନିଦ୍ରାଭଙ୍ଗ ପରେ ଆବିଷ୍କାର କରେ ତାହାହେଲେ କିଏ ବିଶ୍ୱାସ କରିବ ମୋର ଏଇ ଅବିଶ୍ୱାସ କାହାଣୀ ! ପ୍ରତିଟି ପ୍ରତ୍ୟୁଷ ସହିତ ମୋର ମନେପଡ଼େ ପ୍ରତିମାର ସେଇ ଲୁହଭିଜା ଦୁଇଟି ଆଖି – ଆଉ ପ୍ରତିଟି ଅସ୍ତସୂର୍ଯ୍ୟ ସହିତ ମୁଁ ଚାହିଁରହେ ଚାରିପଟର ଶୂନ୍ୟ ରାଜପଥକୁ । କିଏ କହିବ ହୁଏତ ଆଜିର ସନ୍ଧ୍ୟାରେ ପ୍ରତିମା ଆସୁଥିବ ତା'ର କୀଟଦଷ୍ଟ ବିବେକର ପ୍ରାୟଶ୍ଚିତ କରିବାକୁ ।

(ଦୁଇ)

ସାତ ବର୍ଷ ଅତୀତ ହୋଇଯାଇଛି ।

(ତିନି)

ସେଦିନ ଜୁଲାଇର ସଂଧ୍ୟା ନିତାନ୍ତ ସାଧାରଣ । ଆଉ ମାତ୍ର କେଇଟି ମୁହୂର୍ତ୍ତ, ତା'ପରେ ସେଇ ଲୋକଟା ଆସିବ ହାତରେ ଗୋଟାଏ ଶିଡ଼ି ଆଉ କିରାସିନୀ ବୋତଲ ଧରି, ପକେଟରୁ ଖଡ଼ ଖଡ଼ କରି ଗୋଟାଏ ଡିଆସିଲି କାଢ଼ି ହୁଏତ ନିଆଁ ଧରେଇବ ଖଣ୍ଡେ ଅଧାପୋଡ଼ା ବିଡ଼ିରେ । ଶିଡ଼ିଟାକୁ ମୋ ଉପରେ ଆଉଜେଇ ଦେଇ ସେ ଯେ ପ୍ରତିଦିନ କ'ଣ ଭାବେ ମୁଁ ଜାଣେନାଁ, ଆଉ ତା'ପରେ ଧୀରେ ଧୀରେ ଶିଡ଼ି ଦେଇ ଉପରକୁ ଉଠିଯିବ ସେ ଆଲୁଅ ଲଗାଇବାକୁ । ଏଇତ, ଦେଖାଯାଉଛି ସେଇ ଲମ୍ୱା ଶିଡ଼ିଟା ଧରି ସେ ଲୋକଟା ରାସ୍ତାର ବାଙ୍କ ବୁଲୁଛି । ଇସ୍ ! କାଲି ଏଇ ଲୋକଟାର କାମିଜ୍‌ଟା ଏତେ ବେଶୀ ଚିରି ଯାଇଥିଲା ଯେ ଦେଖିଲେ ଦୟା ଆସେ । କିନ୍ତୁ ସେ ଯଦି ଜାଣନ୍ତା ଏଇ ଲ୍ୟାମ୍ପପୋଷ୍ଟର ସମୀବୃକ୍ଷରେ ଲୁଚି ରହିଛି ଯଶୋଦା ଜୀବନ, ଯାହା ଦେହର ଗୋଟାଏ ନୂଆ ଗରମ୍ କୋଟ୍ ଝୁଲି ରହିଛି ଅକାରଣରେ—ତାହାହେଲେ ସେ ନିଶ୍ଚୟ ପ୍ରଲୁବ୍ଧ ହୁଅନ୍ତା ।

ଅନେକ ପାଖକୁ ଆସିଗଲାଣି ସେଇ ଲୋକଟା । ନା, ସେ ତ ନୁହଁ । ହାତରେ ସେଇ ଶିଡ଼ି ଆଉ ବୋତଲ ଧରି ଠିଆ ହୋଇଛି ପ୍ରତିମା ! ହୁଏତ ଆଜିର ଏଇ

ଅପ୍ରତ୍ୟାଶିତ ସଂଧ୍ୟାରେ ମୋର ବିଚଳିତ ହୋଇ ପଡ଼ିବା ସ୍ୱାଭାବିକ୍ କିନ୍ତୁ ଏ ଅକସ୍ମାତ୍ ବିସ୍ମୟ ଯେପରି ମତେ ବରଫ ପରି ଜମାଟ୍ ବାନ୍ଧି ଦେଇଛି । ମୁଁ କେବଳ ସ୍ଥିର ଆଖିରେ ଚାହିଁ ରହିଛି ପ୍ରତିମାକୁ । କ'ଣ ପରିବର୍ତ୍ତନ ହେଇଛି ପ୍ରତିମାର ? କିଛି ତ ନୁହଁ । ଦେଖିଲେ ମନେହୁଏ ଯେପରି ସାତବର୍ଷର ଏ ଜୀବନକୁ ଖାତାରୁ ଚିରି ଫୋପାଡ଼ି ଦେଇଛି ସିଏ, ଗୋଟାଏ ଅର୍ଥହୀନ ଅଶ୍ଳୀଳ କବିତା ପରି ଗୋଟିଏ ବି କଥା ନାହିଁ ପ୍ରତିମା ମୁହଁରେ । ନୀରବରେ ସେ କେବଳ ଠିଆ ହୋଇ ରହିଛି ମୋ ଦେହକୁ ଆଉଜି ରହି । ସେ କଥା କହିବାକୁ ଆସିନାହିଁ—ସେ କଥା କହିବାକୁ ଚାହେଁନା ଆଜି ।

ସଂଧ୍ୟା ଉତୀର୍ଣ୍ଣ ହୋଇଯାଇଛି । ଅଂଧାରର ଢେଉ ପରେ ଢେଉ ଆସି ଆମ ଦୁହିଁକୁ ଗ୍ରାସ କରିଦେଲାଣି ସଂପୂର୍ଣ୍ଣ । କିନ୍ତୁ ପ୍ରତିମା ଦୁଇ ହାତର ବଂଧନୀରେ ମତେ ବେଷ୍ଟନ କରି ଠିଆ ହୋଇଛି ମୂକ ଶିଳାମୂର୍ତ୍ତି ପରି । ଦୀର୍ଘରୁ ଦୀର୍ଘତର ହେଉଛି ନୀରବତାର ଅସ୍ୱସ୍ତି । କିନ୍ତୁ କିଏ ଚାହିଁବ ଏଇ ବହୁବାଞ୍ଛିତ କେଇଟି ମୁହୂର୍ତ୍ତର ନିବିଡ଼ ଅନୁଭୂତିକୁ ନଷ୍ଟ କରିଦବାକୁ କଥାର କଳରବରେ ? ଆଜି ଆଲୋକ ନାହିଁ—ଆଜି ମୋର ଛୁଟି । ଛାୟାମୂର୍ତ୍ତି ପରି କେଇଜଣ ଶୀତାକ୍ରାନ୍ତ ପଥଚାରୀ ଆମକୁ ଅତିକ୍ରମ କରିଗଲେଣି । ସେମାନଙ୍କର ଶଙ୍କିତ ପଦକ୍ଷେପ ମିଳେଇ ଗଲାଣି ନିର୍ଜ୍ଜନ ରାଜପଥ ଉପରେ ।

ଶେଷ ପର୍ଯ୍ୟନ୍ତ ମତେ ହିଁ ଆରମ୍ଭ କରିବାକୁ ପଡ଼ିଲା ।

''ପ୍ରତିମା''—

''କ'ଣ''—ସେ ଯେପରି ଜବାବ ଦଉଛି କେଉ ସ୍ୱପ୍ନାଲୋକରୁ ।

''ତମକୁ ସାତ ବର୍ଷ ତଳେ ଯାହା ଦେଖିଥିଲି—ଠିକ୍ ସେଇଆ ହିଁ ଅଛ ତମେ ।''

''ଅଭିନେତାମାନଙ୍କର ପରିବର୍ତ୍ତନ ହୁଏ କେବଳ ରଙ୍ଗମଞ୍ଚରେ ଯଶୋଦା— ଗ୍ରୀନ୍‌ରୁମ୍ ବାହାରେ ସେମାନେ ଠିକ୍ ସେଇୟା ହିଁ ଥାଆନ୍ତି ।''

''ମୁଁ ମାନୁଛି ତମେ ବୁଦ୍ଧିମତୀ—କଥା କହିବାର ଦକ୍ଷତା ଅଛି ତମର ।'' ପ୍ରତିମା କିନ୍ତୁ କଥାର ଜବାବ୍ ଦିଏ ନାହିଁ କିଛି, ଯେମିତି ସେ ଶୁଣି ପାରିନାହିଁ ମୋର ଏଇ ପ୍ରଶଂସାପତ୍ର ।

କିଛି ସମୟ ପରେ କୁହେ ପ୍ରତିମା—

''ମୁଁ ଯେ ବୁଦ୍ଧିମତୀ ଏକଥା ମୁଁ ନିଜେ ବିଶ୍ୱାସ କରେ । ଆଉ ଠିକ୍ ସେଇଟାହିଁ ହେଉଛି ଟ୍ରାଜେଡ଼ି । ଆଜି ଯେମିତି ମନେ ହେଉଛି ମୁଁ ମୋର ସମସ୍ତ ଜୀବନଟାକୁ ଏଇ ଦୁର୍ବିସହ ବୁଦ୍ଧିର ଓଜନ୍ ତଳେ ଘୋଷାରି ଘୋଷାରି ଚାଲିଛି । ଗୋଟାଏ ଟନ୍ ବୁଦ୍ଧିର ବିନିମୟରେ ମତେ ଯଦି କେହି ଦେଇ ପାରନ୍ତା ଗୋଟାଏ ଆଉନସ୍ ହୃଦୟ ।''

ଅଶ୍ରୁର ଆବେଗରେ ପ୍ରତିମାର କଣ୍ଠ ରୁଦ୍ଧ ।

—"ଛି ! ତମେ କାନ୍ଦୁଛ ପ୍ରତିମା ?"

—"ନାଁ ମୁଁ ଜାଣେ ଅନେକ ଲୋତକ ଦେଇ ମଣିଷର ଭାଗ୍ୟଲିପିର ଗୋଟାଏ ମଧ୍ୟ ଅକ୍ଷର ଧୋଇ ନିଆଯାଇ ପାରେ ନା କିନ୍ତୁ ତୁମେ ତ ଜାଣ ଯଶୋଦା ଆମ ଦୁହିଁଙ୍କର ଜନ୍ମ ଦୁଇ ସ୍ୱତନ୍ତ୍ର କକ୍ଷରେ ଘୂରିବୁଲିବାକୁ, ଠିକ୍ ଯେପରି ପୃଥିବୀ ଆଉ ଚନ୍ଦ୍ର । ଏଇ ଲକ୍ଷ ଯୋଜନର ଦୂରତା ଅତିକ୍ରମ କରି କାହିଁକି ତମେ ତମର ବାହୁ ବିସ୍ତାର କର ?"

"ତମେ ଭୁଲ୍ ବୁଝିଛ ପ୍ରତିମା । ନିଜ କକ୍ଷରେ ବୁଲୁବୁଲୁ ଦିନେ ଦିନେ ନା ସୂର୍ଯ୍ୟ ପୃଥିବୀ ଆଉ ଚନ୍ଦ୍ର ଆସି ଠିଆ ହେବେ ଗୋଟାଏ ସରଳରେଖାରେ । ସେଦିନ ପ୍ରଚଣ୍ଡ ସୂର୍ଯ୍ୟକୁ ସାମ୍ନା କରିବାକୁଇ ହବ । ମତେ ଆଉ ତମକୁ ମଧ୍ୟ ଗ୍ରହଣ କରିନେବାକୁ ହେବ ମୋର ମସୀଲିପ୍ତ କଳାଛାଇ ଅତୀତରେ ତମ ଛାତିରେ କଳଙ୍କ ଦେଇ ମରିଥିଲା ଯେଉଁ ତୃଷାର୍ତ୍ତ ଭୀରୁ ଶଶକ ସେ ଆଜି ଆଉଥରେ ଜନ୍ମ ନେଇଛି ବୁଭୁକ୍ଷୁ ରାହୁ ହୋଇ ତମକୁ ଗ୍ରାସ କରିବାକୁ । ଏ ନିଷ୍ଠୁର ସତ୍ୟରୁ ତମର ମୁକ୍ତି କାହିଁ ପ୍ରତିମା ?"

"ମୁଁ ସ୍ୱୀକାର କରୁଛି ।" କୁହେ ପ୍ରତିମା, "କିନ୍ତୁ ଥାଉ ଆଜି ଆଉ ତର୍କ ନୁହଁ— ମୁଁ ଆଜି ସତରେ କ୍ଳାନ୍ତ । ମୁଁ କେବଳ ଫେରି ଆସିଛି ଆଜି ଆଶ୍ରୟ ନବାକୁ ଏଇ ଲ୍ୟାମ୍ପପୋଷ୍ଟର ଶୀତଳ କବର ଭିତରେ । ଏ ରାତ୍ରି ପ୍ରଭାତ ହେବା ପୂର୍ବରୁ ପ୍ରତିମା ଅସ୍ତ ଯିବ ଆଉ ଯଶୋଦା ଜୀବନ ଉଦୟ ହବ ଉଦୟାଚଳରେ ।"

ମଧ୍ୟନିଶିର ସହସ୍ର ସହସ୍ର ତାରା ଆଖି ତରାଟି ଚାହିଁଛନ୍ତି ତଳକୁ । ପ୍ରତି ରାତିରେ ଏମାନଙ୍କ ସହିତ ମୋର ନିବିଡ଼ ପରିଚୟ । କାଲି ସକାଳେ ହୁଏତ ମୁଁ ଏଇ ଖୋଳ ଭିତରୁ ବାହାରିଯାଇ ସଂପୂର୍ଣ୍ଣ ଭୁଲିଯିବି ଏମାନଙ୍କୁ । କିନ୍ତୁ ପୃଥିବୀ କ'ଣ ଏତେ ସୁନ୍ଦର— ଜୀବନ କ'ଣ ଏତେ ଇପ୍‌ସିତ ? ଆଜି ଅତୀତ ମନେହୁଏ ଗୋଟାଏ ସ୍ୱପ୍ନ ପରି । ଗୋଟାଏ ଶୀତ ସକାଳରେ ମୁଁ ପ୍ରତିମାକୁ ଆବିଷ୍କାର କରିଥିଲି ଏକ୍‌ସପ୍ରେସ୍ ଟ୍ରେନ୍‌ର ଗୋଟିଏ ସେକେଣ୍ଡ କ୍ଲାସ୍ କମ୍ପାର୍ଟମେଣ୍ଟ୍ ଭିତରେ । ଆଉ ତାପରେ ଆମେ ଭଲ ପାଇ ବସିଲୁ ପରସ୍ପରକୁ । ମନେହେଲା ଅନେକ ଦିନ ଧରି ମୁଁ ଗୋଟାଏ ଅଗ୍ନିର ସ୍ଫୁଲିଙ୍ଗକୁ ଧରି ଧରି ବୁଲୁଛି ହାତର ପାପୁଲି ଉପରେ । ଆଶ୍ଚର୍ଯ୍ୟ ଉଜ୍ଜ୍ୱଳ ପ୍ରତିମା କିନ୍ତୁ ଅଗ୍ନିର ଦହନ ନାହିଁ । ଆଉ ଆଜି ସେହି ପ୍ରତିମାକୁ କବର ଦେଇ ମୁଁ ଚାଲିଯିବି ଆତ୍ମକେନ୍ଦ୍ରୀ ପୃଥିବୀର ହୃଦୟହୀନତା ଭିତରକୁ ।

ଅଭ୍ୟାସର ଆଶ୍ଚର୍ଯ୍ୟ ଯାଦୁ ଅଛି ।

ମୁହୂର୍ତ୍ତ ମୁହୂର୍ତ୍ତ ଧରି ସାତବର୍ଷ ବଞ୍ଚି ଆସିଛି ଏଇ କ୍ଳୀବ ଲ୍ୟାମ୍ପପୋଷ୍ଟର ଜୀବନ । ଆକାଶର ପ୍ରତିଟି ତାରାକୁ ମୁଁ ଚିହ୍ନିଛି ନିଜର ଆତ୍ମୀୟ ପରି–ମଧ୍ୟାହ୍ନର ପ୍ରତିଟି ସୂର୍ଯ୍ୟକୁ ମୁଁ ଉପହାସ କରି ଉଡ଼େଇ ଦେଇଛି–ଆଉ ପ୍ରତି ସଂଧ୍ୟାରେ ଆସେ ସେହି ଯେଉଁ ଲୋକଟି ତାକୁ ମୁଁ ଭଲ ପାଇଛି ।

ମୁଁ ତ ଲ୍ୟାମ୍ପପୋଷ୍ଟ୍ ! ଲ୍ୟାମ୍ପ୍‌ପୋଷ୍ଟ୍‌ତ ମୋର ଏକମାତ୍ର ପରିଚୟ ।

ଯଶୋଦା ଜୀବନ ତ ଇତିହାସର ଜୀବ ।

ନା–ମୁଁ ନିଜେ ବିଶ୍ୱାସ କରୁଛି ମୁଁ ଆଉଥରେ ଫେରିଯିବାକୁ ଚାହେଁ ନାହିଁ ଇତିହାସର ଜୀର୍ଣ୍ଣପୃଷ୍ଠା ଉପରେ ଜୀବନ ଧାରଣ କରିବାକୁ ।

ମୋର ଅଜାଣତରେ ଚିତ୍କାର କରି ଉଠିଲି–

"ମୁଁ ମୁକ୍ତି ଚାହେଁନା ପ୍ରତିମା–ମୁଁ ବେଶ୍ ଅଛି ।"

"କିନ୍ତୁ ମୁଁ ଯେ ମୁକ୍ତି ଚାହେଁ ଯଶୋଦା ।" ଜବାବ୍ ଆସେ । ପ୍ରତିମାର ଚିବୁକ ଦେଇ ବୋହି ଚାଲିଛି ଅଶ୍ରୁର ଯମୁନା...ତମେ ଯଦି ଥରେ ମୋର ବିବେକଟାକୁ ଧରି ଦୁଇହାତରେ ଓଜନ୍ କରି ଦେଖିପାରନ୍ତ !

ଆଜି ଆମ ଜୀବନରେ ପୁଣି ଥରେ ଫେରି ଆସିଛି ସେହି ପୁରାତନ ବହୁ ପରିଚିତ ମୁହୂର୍ତ୍ତ ଯେଉଁ ମୁହୂର୍ତ୍ତର ଦ୍ୱନ୍ଦ୍ୱ କଳ୍ପନାତୀତ । ଏ ମୁହୂର୍ତ୍ତର ଅବସର ନିତାନ୍ତ ସୀମିତ–କିନ୍ତୁ କିଛି ହିଁ କରିହୁଏନା–କେବଳ ନିର୍ବେଦ ହୋଇ ଅପେକ୍ଷା କରିବାକୁ ପଡ଼େ ସମୟର ସ୍ରୋତକୁ ।

ଲ୍ୟାମ୍ପପୋଷ୍ଟ୍ ଗୁଡ଼ାକୁ ପୃଥିବୀ ବକ୍ଷରୁ ନିଶ୍ଚିହ୍ନ କରିଦେଇ ହୁଏନା । ଏଇ ନିର୍ଦ୍ଦିଷ୍ଟ ସ୍ଥାନରେ ଯେଉଁ ଲ୍ୟାମ୍ପପୋଷ୍ଟ ଥିଲା, ତା' ମଧ୍ୟରେ ଜଣକୁ ନା ଜଣକୁ ପ୍ରବେଶ କରିବାକୁ ହେବ । ହୁଏତ ଯଶୋଦା ନତୁବା ପ୍ରତିମା ।

ଆକାଶର ସିଲଟ ଧୀରେ ଧୀରେ ପରିଷ୍କାର ହୋଇ ଆସୁଛି ଉଷାର ପ୍ରଥମ କିରଣରେ । ଆଉ ସେହି କରୁଣ ପରିବେଶ ତଳେ ପାଖ ପାଖ ଠିଆହୋଇ ରହିଛନ୍ତି ଜଣେ ଅନୁତପ୍ତା, କ୍ଳାନ୍ତ ନାରୀ ଓ ଆଉ ଜଣେ ମୂର୍ଖ, ଭାବପ୍ରବଣ ପୁରୁଷ । ଏଇଟାହିଁ ସେମାନଙ୍କର ଖଣ୍ଡିତ ଜୀବନ ନାଟିକାର ଶେଷ ଦୃଶ୍ୟ ।

ଯେଉଁ ମୁହୂର୍ତ୍ତର ଚିର ଅମୀମାଂସିତ ତାର ସମାଧାନ ହୁଏ ନାଁ । ପ୍ରତିମା ଫେରିଯାଏ ନିଜକୁ ଗୋପନ ରଖିବାକୁ ସକାଳର କୁତ୍ସିତ ଆଲୋକରୁ–ଯଶୋଦା ଠିଆହୋଇରହେ ନିର୍ବୋଧ, ନିରୀହ ଲ୍ୟାମ୍ପପୋଷ୍ଟର ଛଦ୍ମବେଶରେ ।

## (ଚାରି)

ଠିକ୍ ମୋରି ସୀମା ଦେଇ କେଇଜଣ ଲୋକ ଗୋଟାଏ ଜରାଜୀର୍ଣ୍ଣ ଲ୍ୟାମ୍ପପୋଷ୍ଟକୁ କାନ୍ଧରେ ବୋହି ବୋହି ଚାଲିଛନ୍ତି । ନିଜ ନିଜ ଭିତରେ କଥାବାର୍ତ୍ତା କରୁଛନ୍ତି ସେମାନେ । ଖୁବ୍ ଶୀଘ୍ର ଏ ଲାଇନ୍‌ର ସମସ୍ତ ଲ୍ୟାମ୍ପ୍‌ପୋଷ୍ଟ ଗୁଡ଼ାକୁ ବୋହି ନବାକୁ ପଡ଼ିବ ସେମାନଙ୍କୁ । ହେଇପାରେ ଖୁବ୍ ନିକଟରେ ବିଦ୍ୟୁତ୍ ଆଲୋକରେ ଉଦ୍‌ଭାସିତ ହୋଇ ଉଠିବ ଏଇ ରାସ୍ତାଟା । ଲ୍ୟାମ୍ପପୋଷ୍ଟର ମଳିନ ଆଲୋକ ଆଉ ସହ୍ୟ କରାଯାଏନା । ନିର୍ମମଭାବରେ କାଟି ସଫା କରିଦେବାକୁ ହେବ ଅନ୍ଧାରର ଏଇ ଅସଭ୍ୟ ଅରଣ୍ୟ ।

ମୋର ମେରୁଦଣ୍ଡ ଦେଇ ମୁହୂର୍ତ୍ତକରେ ଗୋଟାଏ ଶୀତ୍‌କାର ଖେଳିଗଲା । କିନ୍ତୁ ଅବଶ୍ୟମ୍ଭାବୀକୁ ବାଧା ଦେବ କିଏ ? ନିଜକୁ ନିଜେ ତିଆରି କରିବାକୁ ଆରମ୍ଭ କରିଦେଲି ମୁଁ ।

ବାଃ ସୁନ୍ଦର ଲାଗୁଛି ଏଇ ରୌଦ୍ର-ଉତପ୍ତ ସକାଳଟା । ପ୍ରଜାପତିର ଉଜ୍ଜ୍ୱଳ ଡେଣା ପରି କି ସୁନ୍ଦର ଖରା । କିଏ ଜାଣେ କାଲି ହୁଏତ ଏଇ ଯଶୋଦାଜୀବନ ପଡ଼ିଥିବ ଗୋଟାଏ ଭଗ୍ନ ଲ୍ୟାମ୍ପପୋଷ୍ଟର ସ୍ତୂପ ଭିତରେ ଶ୍ୱାସରୁଦ୍ଧ ହୋଇ । ସେଠି ଆଲୋକ ନାହିଁ—ପବନ ନାହିଁ । ଖାଲି ଲ୍ୟାମ୍ପପୋଷ୍ଟ୍ ଆଉ ଲ୍ୟାମ୍ପ୍‌ପୋଷ୍ଟ୍ । ଭଲ ହେଇଛି ପ୍ରତିମା ନାହିଁ ପାଖରେ—ଚମତ୍କାର ଲାଗେ କାହାକୁ ଠିକଣା ନଦେଇ ହଠାତ୍ ନିରୁଦ୍ଦିଷ୍ଟ ହେଇ ଯିବାକୁ ଏମିତି ।

ଭାବିଯିବାକୁ ଭାରି ଚମତ୍କାର ଲାଗୁଛି । ମନର ଘୋଡ଼ା ଯେପରି ଲଗାମ୍ ମାନିବାକୁ ଚାହେନା ଆଜି । ମତେ କ'ଣ ତାହାହେଲେ ପଡ଼ିରହିବାକୁ ହେବ ଏଇ ଜୀର୍ଣ୍ଣ ଲ୍ୟାମ୍ପପୋଷ୍ଟ୍‌ର ସ୍ତୂପ ଭିତରେ ଯକ୍ଷ୍ମାରୋଗୀ ପରି କ୍ଷୟ ହେବାକୁ ପଳେ ପଳେ । କିନ୍ତୁ ୟା'ବି ତ ହୋଇପାରେ କୌଣସି ଏକ ଅପ୍ରତ୍ୟାଶିତ ସକାଳର ଏଇ ସ୍ତୂପ ଭିତରୁ ମୁକ୍ତକରି ମତେ ନେଇଯାଇ ପାରନ୍ତି କେଇଜଣ ଲୋକ । କୁଆଡ଼େ ନେବେ ସେମାନେ ? କାହିଁକି ବା ନେବେ ? ମୁଁ ସ୍ପଷ୍ଟ ଦେଖିପାରୁଛି ସେମାନେ ମତେ ନେଇ ଚାଲିଛନ୍ତି ସହରର ଉପକଣ୍ଠକୁ । ସେଠି କେତେଜଣ ବିମର୍ଷ ଲୋକ ଠିଆହେଇ ରହିଛନ୍ତି ମତେ ଅପେକ୍ଷା କଲାପରି । ତାଙ୍କ ସାମ୍ନାରେ ଶବାଧାର ଭିତରେ ଚିରନିଦ୍ରାରେ ଶୋଇ ରହିଛି ମୋରି ପରି ଗୋଟିଏ ଜୀବନ । ବାଃ, ନିତାନ୍ତ ରୋମାଞ୍ଚକର ଅନୁଭୂତି କିନ୍ତୁ ଶେଷରେ ଗୋଟିଏ ଜୀବନ୍ତ ଲୋକ ଦେହରେ ଅଗ୍ନି ସଂଯୁକ୍ତ ହୋଇ...

ମୃତବ୍ୟକ୍ତିଟିର ସମସ୍ତ ଶରୀର ଆବୃତ କରାଯାଇଛି ଖଣ୍ଡେ ଧଳା ଚାଦରରେ । କେବଳ ଆବରଣ ଠେଲି ବାହାରକୁ ଦେଖାଯାଉଛି ଗୋଟିଏ ଶୀର୍ଣ୍ଣ ପାଂଶୁଳ ମଣିବନ୍ଧ

ଘେରି କେଇପଟ ପ୍ଲାଷ୍ଟିକ୍‌ର ନାଲି କାଚ । କିଏ ଏଇ ନାରୀ, ଯାହା ସହିତ ସହମରଣରେ ଯିବାକୁ ହେବ ଯଶୋଦା ଜୀବନକୁ ? ଚମତ୍କାର ହୁଅନ୍ତା ଯଦି ଏଇ ନାରୀ ହୁଏ ପ୍ରତିମା । ଜୀବନରେ ଯାହାର ଅଗ୍ନି ଆକର୍ଷଣ ମତେ ତିଳେ ତିଳେ ଦଗ୍‌ଧ କରିଛି । ତା'ର ଋଣ ହୁଏତ ମୁଁ ପରିଶୋଧ କରିପାରନ୍ତି ମୃତ ପ୍ରତିମା ଦେହରେ ଅଗ୍ନି ସଂଯୋଗ କରି ।

କିନ୍ତୁ ମୋର ଏ କଳ୍ପନା ସତ୍ୟ ନ ହେଉ ।

ଦୀର୍ଘଜୀବୀ ହେଉ ପ୍ରତିମା ।

ଗୋଟାଏ ପ୍ରତାରିତ ବିବେକର ଓଜନ ବୋହି ବୋହି ଚାଲୁ ପ୍ରତିମା, ତା'ର ସମସ୍ତ ଜୀବନ । ପ୍ରତିମାକୁ କ୍ଷମା କରାଯାଏନା ।

ଆଉ ମାତ୍ର କେଇ ମିନିଟ୍ ସମୟ । ମୋର ନିକଟତମ ପ୍ରତିବେଶୀ ଲ୍ୟାମ୍ପପୋଷ୍ଟିକୁ ନେଇ ଏଇବାଟ ଦେଇ ଚାଲିଗଲେଣି ସେଇ ଲୋକଯାକ କିଛି ସମୟ ହେଲା । ବର୍ତ୍ତମାନ ବୋଧହୁଏ ମୋର ପ୍ରତିବେଶୀଟିକୁ ସ୍ତୂପୀକୃତ ଲ୍ୟାମ୍ପପୋଷ୍ଟର ଗଦା ଉପରେ ଶୁଆଇ ଦେଇସାରି ଫେରୁଥିବେ ସେମାନେ ।

ସୂର୍ଯ୍ୟ ଅସ୍ତ ଯାଏ, ଯାଏ ଏଇ ଶେଷସୂର୍ଯ୍ୟ ଯାହା ସହିତ ମୁଁ ମଧ ଅସ୍ତ ଯିବି । ଆଉ କିଛି ସମୟ ପରେ ହୁଏତ ପ୍ରତିମା ଆସିବ । ଜମି ଆସୁଥିବା ଅନ୍ଧାର ଭିତରେ ହୁଏତ ଚ୍‌ଷମାର କାଚଟାକୁ ପୋଛିନେଇ ଆଉଥରେ ଭଲ କରି ଚାହିଁବ ସେ ।

କିନ୍ତୁ କିଏ କହିବ ତାକୁ ଏଇ ଜୀବନ୍ତ ଲ୍ୟାମ୍ପପୋଷ୍ଟର ଇତିକଥା । କିଏ କହିବ ତାକୁ ନିରୁଦ୍ଦିଷ୍ଟ ଯଶୋଦା ଜୀବନର ଠିକଣା ।

ଏଇ ସେମାନେ ଫେର୍ ଆସିଲେଣି । ସେମାନଙ୍କର ବଳିଷ୍ଠ ମାଂସପେଶୀ ଉପରେ ବିନ୍ଦୁ ବିନ୍ଦୁ ଝାଳ ଜମି ଚିକ୍ ଚିକ୍ ଦେଖାଯାଉଛି ସୂର୍ଯ୍ୟର ଅସ୍ତ କିରଣରେ । ଆଜିର ଦିନପାଇଁ ମୁଁ ତାଙ୍କର ଶେଷ ଶୀକାର । ସେମାନଙ୍କର ପେଶଳ ବାହୁ ଛନ୍ଦି ଦେଇ ସେମାନେ ମତେ ଚିପି ଧରିଲେଣି ଗୋଟାଏ ଦୈତ୍ୟର ବଳ ଦେଇ । ମତେ ଟାଣିବାକୁ ଚେଷ୍ଟା କରୁଛନ୍ତି ସେମାନେ ।

କ'ଣ କହୁଛନ୍ତି ସେମାନେ ।

ମଦତ୍ କରୋ....

ହେଇୟାଁ....

ଔର ଜୋର୍ ସେ....

ହେଇୟାଁ....

ସମ୍ହାଳକେ...

ହେଇୟାଁ...

ଖୁବ୍ ଆର୍ଟିଷ୍ଟିକ୍ ଲୋକ ଏମାନେ । ମେହନତ୍‌ରେ ମଧ୍ୟ ସଙ୍ଗୀତ ଅଛି ଏମାନଙ୍କର ।

(ପାଞ୍ଚ)

ମତେ ଏଇଥର ଉଠିବାକୁଇ ହେବ ।

ଆଖି ଖୋଲି ଚାହିଁଲି । ଗୋଟାଏ ଟ୍ରାଫିକ୍ ପୋଲିଶ ମୋ ମୁହଁ ସାମ୍ନାରେ ନଇଁ ପଡ଼ି ମୋର କାନ୍ଧ ଦୁଇଟାକୁ ଖୁବ୍ ଜୋର୍‌ରେ ହଲାଇ ଚାଲିଛି । ଲ୍ୟାମ୍ପପୋଷ୍ଟଟାକୁ ଆଉଜି ରହି କେତେ ସମୟ ଯେ ସେଠି ମୁଁ ବସି ରହିଛି ତା' ଜାଣେନା ।

ଓଭରକୋଟ୍ ଉପରେ ଜମିଯାଇଥିବା ରାସ୍ତାର ଧୂଳି ଝାଡ଼ି ଆଗକୁ ପାଦ ବଢ଼ାଇଲି ମୁଁ । କେଇପାଦ ଆଗକୁ ଆସି ପୁଣି ଥରେ ଫେରି ଚାହିଁଲି ମୋର ବିଗତ ରାତ୍ରିର ଆଶ୍ରୟସ୍ଥଳୀକୁ ।

ସକାଳର ଆଲୁଅରେ କିପରି ବିକୃତ ଦେଖାଯାଉଛି ସେଇ ଲ୍ୟାମ୍ପପୋଷ୍ଟଟା । ମନେ ହେଲା ଯେମିତି ଲ୍ୟାମ୍ପପୋଷ୍ଟଟା ରହି ରହି ହାଇ ମାରୁଛି ଗତରାତିର ଅବସାଦ କଟାଇନବାକୁ ।

# ପୁଷ୍ପ ଧନୁ

ଝରକା ଦିହକୁ ଏକାଥରକେ ଘସି ହେଇ ଲାଗିରହିଛି ଝଙ୍କାଳିଆ ପଣସ ଗଛଟା । ସନ୍ଧ୍ୟା ହେଲେ ଅନ୍ଧାର ଗୁଡ଼ାକ ପୁଞ୍ଜା ପୁଞ୍ଜା କରି ଆସି ଯେମିତି ପଣସ ଗଛର ବହଳିଆ ପତ୍ର ଗୁଡ଼ାକ ଉପରେ ବସା ବାନ୍ଧନ୍ତି । ଏଇ ଘଞ୍ଚ ପତ୍ରର ଫାଙ୍କ ଦେଇ ଆରପଟେ ସୂର୍ଯ୍ୟ ଅସ୍ତ ଯାଏ–ମନେହୁଏ ଯେମିତି ପଣସ ଗଛର ଆରପଟେ କିଏ ଗୋଟାଏ ସୁନାର ଜରିକାଗଜ ମଡ଼େଇ ଦେଇଛି ।

ବହୁ ସନ୍ଧ୍ୟାରେ 'ରୋନା' ଆକ୍ଷିରେ ଗୋଟାଏ ନିରର୍ଥକ ଭାବଲେଶଶୂନ୍ୟ ଚାହାଣି ନେଇ ପଣସ ଗଛ ଫାଙ୍କ ଦେଇ ସୂର୍ଯ୍ୟାସ୍ତର ବର୍ଣ୍ଣବିଭବକୁ ଲକ୍ଷ୍ୟ କରିଛି । ପ୍ରତିଟି ସନ୍ଧ୍ୟାରେ ମନକୁ ମନ ସେ ଅସଂଖ୍ୟ ପ୍ରଶ୍ନ ପଚାରିଛି; କିନ୍ତୁ କୌଣସିଟିର ଜବାବ୍ ସେ ପାଇପାରିନାହିଁ ।

ଆଜି 'ରୋନା' ଠିକ୍ ସେଇ ନିର୍ଦ୍ଧାରିତ ସ୍ଥାନରେ ବସି ରହିଛି ହାତରେ ପଟେ ତାଳିପକା ଜୋତା ଧରି । 'ଡେରିକ୍'ର ଯୋତା - ମିଷ୍ଟର୍ ଡେରିକ୍ ଡେନିସନ୍‌ର ଡାହାଣ ଗୋଡ଼ର ପଟେ ତାଳିପକା ଜୋତା । ଏଇ ପରିତ୍ୟକ୍ତ ଛିଣ୍ଡା ଜୋତା ଉପରେ ବର୍ତ୍ତମାନ ରଙ୍ଗ ଦବାକୁ ପଡ଼ିବ 'ରୋନା'କୁ - ଦାରିଦ୍ର୍ୟର ଧୃତରାଷ୍ଟ୍ର ଆଲିଙ୍ଗନ କବଳରୁ ରକ୍ଷା କରିବାକୁ ପଡ଼ିବ ନିଜକୁ ଆଉ ''ଡେରିକ୍''କୁ ।

'ରୋନା'ର ବାଁ ହାତର ତିନୋଟି ସୁନ୍ଦର ଆଙ୍ଗୁଠି ଉପରେ ଲଘୁଭାର ରଖି ଏଇ ଜୋତା ପଟକ ଓହଳି ରହିଛି ଅନେକ ବେଳୁ...କିନ୍ତୁ 'ରୋନା' ହଠାତ୍ ଅନ୍ୟମନସ୍କ ହୋଇ ପଡ଼ିଛି.....

ଆଜିର ରୋନା ଡେନିସନ୍ ନିକଟ ଅତୀତରେ ମାତ୍ର ଥିଲା ରୋନା ଫର୍ଣ୍ଣାଡ଼ିସ୍ । କିନ୍ତୁ ଆଜି ରୋନାର ମନେହୁଏ ସେ ଯେମିତି କାହିଁ କୋଉ ଯୁଗର କଥା । କାନପୁର ୟାର୍ଡର ଆଂଗ୍ଲୋଇଣ୍ଡିୟାନ କଲୋନିର ସବୁଠାରୁ ସୁନ୍ଦରୀ ଝିଅ ଥିଲା ରୋନା । ତା'ର ଦୁଇଟି ନୀଳ ଆକ୍ଷି ଆଉ ସୁନେଲି କେଶଗୁଚ୍ଛ ନେଇ ରୋନାର ମନେ ହଉଥିଲା ପୃଥିବୀରେ ସବୁ କିଛି ଜୟ କରାଯାଇ ପାରେ ଗୋଟାଏ ମୁହୂର୍ତ୍ତରେ । କିନ୍ତୁ ଆଜି ଏ କଣ ହେଲା ରୋନାର ? ତା'ର ମନେହୁଏ ସେ ଯେମିତି ନିୟତିର ଦୁଇଟି ନିଷ୍ଠୁର

ଆଙ୍ଗୁଠିରୁ ଓହଳି ରହିଛି ତା'ରି ହାତର ଛିଣ୍ଡା, ତାଳିପକା ପଟେ ପରିତ୍ୟକ୍ତ ଜୋତାପରି ।

ମାତ୍ର ପାଞ୍ଚ ବର୍ଷତଳେ ଚୈତ୍ରର ଗୋଟିଏ ମଳୟିତ ସନ୍ଧ୍ୟା । 'ରୋନା' କ୍ଲବର ନାଚଘରର କାଠ ଚଟାଣ ଉପରେ ଠିଆ ହୋଇ ରହିଥିଲା ତା'ର ଅପରୂପ ସୌନ୍ଦର୍ଯ୍ୟର ଅହଂକାର ନେଇ । ତା'ରି ଚାରିପଟେ ଭିଡ଼ ବାନ୍ଧି ଠିଆ ହୋଇ ରହିଛନ୍ତି ରୂପ କାଙ୍ଗାଳ ଅସଂଖ୍ୟ ଯୁବକ । ଦୁଇଟି ଅଭିମାନ—ନୀଳ ସୁନ୍ଦର ଆକ୍ଷିର କ୍ଷିପ୍ର କଟାକ୍ଷ ହାଣି 'ରୋନା' ପ୍ରତିଟି ପାଣିପ୍ରାର୍ଥୀକୁ କଳନା କରି ନଉଛି । ସେ କି ଆନନ୍ଦ ! ପ୍ରତିଟି ଆକ୍ଷିର ନୀରବ ପ୍ରଶଂସାରେ ପୁଲକିତ ହେଉ ଉଠିଛି 'ରୋନା' । ଅସଂଖ୍ୟ ଚାପା ନିଶ୍ୱାସରେ ପ୍ରତିଧ୍ୱନିତ ହେଉଛି ଗୋଟିଏ କଥା—କିଏ ସେ ଭାଗ୍ୟବାନ ! ଯାହାର କଟି ବେଷ୍ଟନ କରିବ ରୋନାର ମୃଣାଳ-କୃଶ ବାହୁ—ଆଉ ତା'ପରେ ସେମାନେ ନାଚିବେ ଗୋଟିଏ ଛନ୍ଦରେ—ସେମାନେ ଦୋଳାୟିତ ହେବେ ଗୋଟିଏ ମୂର୍ଚ୍ଛନାର ବେପଥୁରେ ।

ଏଇ ଭିଡ଼ର ଟିକିଏ ଦୂରରେ ରୋନା ଆଡ଼କୁ ପଛ କରି ଠିଆ ହୋଇ ରହିଥିଲା— ଡେରିକ୍ । ଡେରିକ୍ ଡେନିସନ୍ । ଧନୀ ରବର୍ଟ ଡେନିସନ୍‌ର ଏକମାତ୍ର ଦାୟାଦ । ରୋନାର ଝାପ୍‌ସା ଝାପ୍‌ସା ମନେ ପଡ଼ିଛି...ଡେରିକ୍‌ର ବେକ ପଛର ଅବିନ୍ୟସ୍ତ ବାଳ ଗୁଡ଼ାକ ଝୁଲି ପଡ଼ିଥିଲା କାମିଜର କଲାର ଉପରକୁ । ଦୀର୍ଘ ବପୁ ଡେରିକ୍ ଠିଆ ହେଇ ରହିଛି ନିଶ୍ଚଳ ଭାବରେ ଅହଂକାରର ପ୍ରତିମୂର୍ତ୍ତି ପରି । ରୋନାର ଉପସ୍ଥିତି ପ୍ରତି ଏପରି ଏକ ଅମାର୍ଜନୀୟ ତାଚ୍ଛଲ୍ୟ ସହ୍ୟ କରିବା ରୋନାର କଳ୍ପନାର ଅତୀତ । ମେରୁଦଣ୍ଡ ସିଧା ରଖି ଠିଆ ହେଇ ରହିଥିବା ଏଇ ଉଦ୍ଧତ, ଅହଂକାରୀ ମନୁଷ୍ୟଟାକୁ ତା'ର ହାତର ସାମାନ୍ୟ ଲଘୁ ସ୍ପର୍ଶରେ ନୁଆଁଇ ଆଣିବାକୁ ପଡ଼ିବ ରୋନାକୁ । ରୋନାର ଦୁଇଟି ଭ୍ରୂଲତା ସାମାନ୍ୟ ଉତ୍ତୋଳିତ ହୋଇଗଲା ଆଉ ତା'ରି ତଳେ ଦୁଇଟି ନୀଳ କମଳ ପରି ଢଳ ଢଳ ହେଲା ଦୁଇଟି ଚକ୍ଷୁତାରକା । ସେ ଯେପରି ପୁଷ୍ପଧନୁରେ ନୀଳୋତ୍ପଳ ଶରାରୋହଣ ।

ଅଳ୍ପ କେଇଟି ନିଶ୍ଚିତ ପଦକ୍ଷେପରେ 'ରୋନା' ଡେରିକ୍ ପାଖକୁ ଲାଗି ଆସି ଡେରିକ୍‌ର ବାହୁ ଉପରେ ମୃଦୁଚାପ ଦେଲା । ଡେରିକ୍ ବିଚଳିତ ହୋଇନାହିଁ—ଡେରିକ୍‌ର ଅଭ୍ୟସ୍ତ ହାତ ଧୀରେ ଗୁଡ଼େଇ ହେଇ ଆସିଲା ରୋନାର କୃଶ କଟି ଚାରିପଟେ । ତା' ପରେ ଆରମ୍ଭ ହେଲା ନାଚର ପ୍ରଥମ ପଦକ୍ଷେପ । ଡେରିକ୍ ସୁନ୍ଦର ନାଚେ—ଆଉ ସବୁଠାରୁ ଉପଭୋଗ୍ୟ ଡେରିକ୍‌ର ନୃତ୍ୟ-ସହଚରୀର ଭୁଲ ପାଇଁ ପ୍ରଭୂତ ସମ୍ବେଦନଶୀଳତା । ଡେରିକ୍‌ର ବାହୁ ବେଷ୍ଟନରେ ପ୍ରଚୁର ଉଷ୍ଣତା ଅଛି; କିନ୍ତୁ ସାମାନ୍ୟତମ ଉଦ୍‌ବେଗ ନାହିଁ ।

ଡେରିକ୍‌ର ସମଶୀତୋଷ୍ଣ ଆଲିଙ୍ଗନ ଭିତରେ ସେ ଦିନ 'ରୋନା' ନାଚିଥିଲା ବିଭୋର ହୋଇ ଆଉ ସେ ଦିନର ଏଇ ଯୁଗ୍ମ ନୃତ୍ୟରେ କରତାଳିରେ ନୃତ୍ୟ ପ୍ରାଙ୍ଗନ ଉଚ୍ଛୁଳି ପଡ଼ିଥିଲା ।

ନାଚ ଶେଷରେ 'ରୋନା' ତଳକୁ ଓହ୍ଲେଇ ଆସିଥିଲା ଡେରିକ୍‌କୁ କାରରେ ଛାଡ଼ିଯିବା ପାଇଁ । କାରରେ ଷ୍ଟାର୍ଟ ଦେଲା ଡେରିକ୍ - ରୋନା ପାଟିରୁ ଅକସ୍ମାତ ବାହାରି ପଡ଼ିଥିଲା ସେଦିନ, ''ତମେ ମତେ ଚୁମ୍ବନ କରିବ ନାହିଁ ଡେରିକ୍ ?'' ଅଳ୍ପ କେତୋଟି ଅପ୍ରତିଭ ମୁହୂର୍ତ୍ତ ପରେ ପୋର୍ଟିକୋର ମଳିନ ଆଲୋକର ସୁଯୋଗ ନେଇ ଦୁଇଟି ଓଷ୍ଠାଧାର ସେଦିନ ଏକତ୍ରିତ ହୋଇ ଯାଇଥିଲା ।

ଆଜି ରୋନାର ମନେ ପଡ଼େ...ସେ ଦିନ ରାତିରେ ମନକୁ ମନ ଅନେକ ହସିଛି ରୋନା । ବିଛଣାରେ ଶୋଇ ଶୋଇ ସେ କଳ୍ପନା କରିଛି ଡେରିକ୍ ସକାଳୁ ଉଠି ନିଶ୍ଚୟ ଆବିଷ୍କାର କରିବ ତା'ର ଓଠ ଉପରେ ରୋନାର ଲିପଷ୍ଟିକର ଦୁଇଧାର ନିଶ୍ଚିତ ସଂକେତ...ତା'ପରେ ହୁଏତ ସକାଳୁ ସକାଳୁ ଡେରିକ୍ ରୋନାର ଘର ଦରଜାରେ କରାଘାତ କରି କହିବ, ''ମତେ କପେ ଗରମ ଚା' ଦେଇ ପାରିବ ରୋନା ?''

କିନ୍ତୁ ଡେରିକ୍ ତା' ପରଦିନ ସକାଳୁ ଆସି ନାହିଁ...ତା' ପରେ ପରେ ଅନେକ ସକାଳରେ ମଧ୍ୟ ଆସି ନାହିଁ । କିଛିଦିନ ପରେ ରୋନାକୁ ହିଁ ଯିବାକୁ ପଡ଼ିଛି ଡେରିକ୍ ଘରକୁ ।

....ସେ'ଦିନ ଡେରିକ୍ ଦ୍ୱାର ସାମ୍ନାର ନୀଳ ଲନ୍ ଉପରେ ପୌଷର ଚକ୍ ଚକ୍ ଖରା ଓଜାଡ଼ି ହୋଇ ପଡ଼ିଛି ଯେମିତି...ଆଉ ସେଇ ଖରାରେ ଖଣ୍ଡେ ଆରାମ୍ ଚୌକି ଉପରେ ଶୋଇ ଶୋଇ କ'ଣ ଖଣ୍ଡେ ବହି ପଢୁଛି ଡେରିକ୍ । କେଇ ମିନିଟ୍ ନିଶ୍ଚଳ ହେଇ ଠିଆ ହୋଇ ରହିଥିଲା ରୋନା । ସେଦିନ ଡେରିକ୍‌ର ବସିବାର ଭଙ୍ଗୀ ଭାରି ସୁନ୍ଦର ଲାଗିଥିଲା ରୋନାର ଆଖିକୁ । ରୋନାର ମନେ ହେଲା ଯେମିତି ଡେରିକ୍ ଲନ୍ ଉପରେ ବସି ରହିଛି ଗୋଟାଏ ବିରାଟ ଝିଙ୍କାରି ପରି, ଯେ ଆରାମରେ ତାର ପର ଗୁଡ଼ାକ ଖୋଲି ଟିକିଏ ଖରା ଖୁଆଇ ନେଉଛି । ଏଇ ଝିଣ୍ଟିକାଟି ଏକାନ୍ତ ନିରପରାଧ । ସେ ଗୀତ ଗାଇ ପାରେ, ନାଚି ପାରେ ଆଉ ଖେଳିପାରେ...କିନ୍ତୁ ହାୟ ! ସେ ଦିନ କ'ଣ ରୋନା ବୁଝିଥିଲା ଏଇ ଝିଙ୍କାରିଟି କେବଳ ମନ ଖୁସିରେ ନାଚିକୁଦି ପାରେ ଅଥଚ ବର୍ଷା ଦିନ ପାଇଁ ସାମାନ୍ୟତମ ସଞ୍ଚୟ ମଧ୍ୟ ରଖି ପାରେନା ।

ଡେରିକ୍ ସହିତ ଘନିଷ୍ଠ ହୋଇ ଉଠିବାକୁ ଖୁବ୍ ଅଳ୍ପ ସମୟ ଲାଗିଛି ରୋନାକୁ । ଘନିଷ୍ଠତାର ପ୍ରତି ପଦକ୍ଷେପରେ ରୋନା ଅନୁଭବ କରିଛି ଯେପରି ସେ ତିଳ ତିଳ କରି ଡେରିକ୍‌ର ପ୍ରତିଟି ଅଂଶକୁ ଜୟ କରି ଚାଲିଛି । ଡେରିକ୍ ବହୁବାର 'ରୋନା'କୁ

ବୁଝେଇବାକୁ ଚେଷ୍ଟା କରିଛି ଯେ ତା'ପରି ଜଣେ ଦାୟିତ୍ୱହୀନ ଲୋକ ସହିତ ବିବାହ କରିବା ହୁଏତ ରୋନା ପକ୍ଷରେ ଶୁଭକର ନ ହୋଇ ପାରେ । କିନ୍ତୁ ଅବସ୍ଥାଟାକୁ ବିଚାର କରିବା ପାଇଁ ରୋନାର ସମୟ ନାହିଁ—'ରୋନା' ତା'ର ଅହଂକାରର ମୀନାର୍ ଉପରୁ ଲମ୍ଫ ଦେଇ ସାରିଛି—ତାକୁ କେଉଁଠି ନା କେଉଁଠି ଓହ୍ଲେଇବାକୁ ପଡ଼ିବ ।

ଏପ୍ରିଲ ୭ ତାରିଖ ଦିନ ମିସ୍ ରୋନା ଫର୍ଣ୍ଣାଡ଼ିସ୍ ମିସେସ୍ ରୋନା ଡେନିସନ୍‌ରେ ପରିଣତ ହୁଅନ୍ତି—ଆଉ ଠିକ୍ ତା'ର ପରେ ଡେରିକ୍ ଆଉ ରୋନା ସିଲଂ ଯାଆନ୍ତି ବିଳମ୍ବିତ ମଧୁ ଚନ୍ଦ୍ରିକା ଯାପନ କରିବାକୁ ।

କାନ୍ଥ ଘଣ୍ଟାରେ ଠଂ ଠଂ କରି ୭ଟା ବାଜିଲା । ବସି ବସି ଅଳସ ଭାବନାରେ ସମୟ କଟେଇ ଦବାର ଅବସର ଆଜି ରୋନାର ନାହିଁ ।

ଡେରିକ୍‌ର ଛିଣ୍ଡା ଯୋତା ଉପରେ ରୋନା ହାତର ବ୍ରୁସ ରଙ୍ଗ ଦେଇ ଚାଲିଲା ଇଞ୍ଜିନର ପିଷ୍ଟନ ପରି ।

ତା'ପରର ଇତିହାସ ଅତି ସଂକ୍ଷିପ୍ତ । କେବଳ ପୈତୃକ ପୁଞ୍ଜି ଉପରେ ନିର୍ଭର କରି ଡେରିକ୍ କିଛି ଉପାର୍ଜନର ପନ୍ଥା କରିନାହିଁ କୌଣସି ଦିନ । ଅଥଚ ଖର୍ଚ୍ଚର ସବୁଠି ରାସ୍ତା ଖୋଲା ଅଛି । ଡେରିକ୍ ବିଲିୟାର୍ଡସ୍ ଖେଳେ, ବେହେଲା ବଜାଏ ଆଉ ରେସକୋର୍ସରେ ଘୋଡ଼ା ଉପରେ ବାଜି ରଖେ । ବିଶେଷ କରି ଗୋଟାଏ ରାତି ମନେ ପଡ଼ିଯାଏ ରୋନାର । ଡେରିକ୍‌ର ଖାଇବା ଜିନିଷ ଘୋଡ଼େଇ ରଖି ଅନେକ ରାତିଯାଏ ଅପେକ୍ଷା କରି କରି ଡିନର ଚଉକି ଉପରେ ବସି ବସି ଘୁମାଇ ପଡ଼ିଥିଲା ରୋନା । ବେଶ୍ ଅନେକ ରାତି କରି ଘରକୁ ଫେରିଲା ଡେରିକ୍ । କିନ୍ତୁ ରୋନାର ବିଶ୍ୱାସ ବି ହୁଏନା । କ'ଣ ମଦ ଗନ୍ଧରେ ଡେରିକ୍ ପାଖକୁ ଯାଇ ହଉନାହିଁ, ଆଉ ଅତ୍ୟଧିକ ହେଇ ଯାଉଥିବା ଫଳରେ ମୁହଁ ଉପରକୁ ରକ୍ତ ଉଠିଆସି ମୁହଁଟା ଲାଲ ଦେଖା ଯାଉଛି । କଥା କହିବାର ବିଶେଷ ଶକ୍ତି ନଥିଲା ଡେରିକ୍‌ର । ବିଛଣାରେ ଯାଇ ପଡ଼ିଯିବା ପୂର୍ବରୁ କୌଣସିମତେ ଡେରିକ୍ କହିଛି, "ମତେ କ୍ଷମା କର ଡାର୍ଲିଂ ମୁଁ ଖାଇ ପାରିବି ନାହିଁ ।"

ଡାର୍ଲିଂ ! ନାସିକା କୁଞ୍ଚିତ ହେଇ ଉଠିଲା ରୋନାର ।

କିନ୍ତୁ ସେଦିନ ପ୍ରଥମ ବିସ୍ମୟଟା କଟିଯିବା ପରେ ରୋନା ଦେଖିଲା ଯେ ଡେରିକ୍‌ର ଶରୀରଟା ଟେର୍ଛା ହେଇ ପଡ଼ି ରହିଛି ଖଟର ଗୋଟାଏ ଅଂଶରେ । ଖଟ ପାଖରେ ବସି ବସି ଡେରିକ୍‌ର ଗୋଡ଼ରୁ ଜୋତା ମୋଜା ଗୋଟି ଗୋଟି କରି ଖୋଲିଥିଲା ସେଦିନ ରୋନା । ଆଉ ତା'ପରେ ମାତା ମେରୀଙ୍କ ଫଟ ପାଖରେ ଜାନୁପାତି କରୁଣା ଭିକ୍ଷା କରିଥିଲା ରୋନା.....

ମାତା ମେରୀ ଡେରିକ୍‌କୁ କ୍ଷମା କର—ଏ ପରିବାରକୁ ଧ୍ୱଂସ ମୁହଁରୁ ରକ୍ଷା କର ତମେ.....

ଥରେ ନୁହଁ, ଦୁଇଥର ନୁହଁ—ପ୍ରାୟ ପ୍ରତ୍ୟହ ଚାଲିଲା ଏଇ ଦୃଶ୍ୟର ପୁନରାବୃତ୍ତି । ଆଉ ଇତିମଧ୍ୟରେ ଡେନିସନ୍ ପରିବାର ଦ୍ରୁତ ଗତିରେ ଦରିଦ୍ରରୁ ଦରିଦ୍ରତର ଅବସ୍ଥାକୁ ଓହ୍ଲାଇ ଚାଲିଛି ।

ରୋନା ବହୁବାର ଡେରିକ୍‌ର କାନପାଖରେ ଚିତ୍କାର କରି ଜଣେଇ ଦବାକୁ ଚାହିଁଛି ଯେ ଏ ସଂସାର ଆଉ ଚଳେନା । କିନ୍ତୁ ଡେରିକ୍ ତା'ର ସ୍ୱଭାବ ସୁଲଭ ନିର୍ଲିପ୍ତତା ନେଇ କୁହେ, ଠିକ୍ ଚଳିବ ରୋନା, ଠିକ୍ ଚଳିବ, ଏବେ ବି ଘରର ସେଇ କଣରେ ତିନିହଜାର ଟଙ୍କାର ରେଡିଓଗ୍ରାମ ସେଟ୍‌ଟା ବେକାର ହୋଇ ପଡ଼ି ରହିଛି....

ଧୀରେ ଧୀରେ କେଉଁ ଅଲକ୍ଷ୍ମୀର ନିର୍ଦ୍ଦେଶରେ ଘରର ରେଡିଓଗ୍ରାମ, ଡାଇନିଂଟେବୁଲ, କ୍ରୋକରୀ, ଏପରିକି ଟିପଯ ପର୍ଯ୍ୟନ୍ତ ବିକ୍ରୀ ହୋଇ ଯାଇଛି ପାଣି ମୂଲ୍ୟରେ । ଧୀରେ ଧୀରେ ଅଲକ୍ଷ୍ୟରେ ଅଥଚ ନିଶ୍ଚିତ ଭାବରେ ବେଡ୍ କଭର୍ ଉପରର ଛିଦ୍ର ସବୁ ବୃହତ୍ତର ଆକୃତି ଧାରଣ କରିଛନ୍ତି—ଖାଇବା ଚାଇନା ବାସନ ସବୁ ଶିରା ଶିରା ହେଇ ଫାଟି ଗଲାଣି, ଆଉ ଚାମୁଚ ସବୁ ରଙ୍ଗ ଛାଡ଼ି ବିବର୍ଣ୍ଣ ହେଇ ଗଲେଣି...

କିନ୍ତୁ ଡେରିକ୍ ଅନିବାର୍ଯ୍ୟ । ପ୍ରାୟ ରାତି ଏଗାରଟା ବେଳେ ପ୍ରତିଦିନ ଫେରିବ ସେ ଟଳି ଟଳି । କେଉଁଦିନ ହୁଏତ ତା'ର ପ୍ରସାରିତ ଓଠ ଉପରେ ବିଶିଆଙ୍ଗୁଠି ଚାପିଧରି କହିବ ସ୍ ସ୍ ସ୍ ସ୍...ଚିତ୍କାର କର ନାହିଁ ରୋନା, ରାତିରେ ନିସ୍ତବ୍ଧତାକୁ ସମ୍ମାନ କରିବାକୁ ଶିକ୍ଷାକର...ଆଉ କେଉଁଦିନ ହୁଏତ ଗୋଟାଏ ଗୀତର କେଇଟା ଅସଂଲଗ୍ନ ପଦ ଗୁଣୁଗୁଣୁ କରି ଆସିବ ଡେରିକ୍ ଆଉ କହିବ ମତେ କିଛି ଖାଇବାକୁ ଦେଇ ପାରିବ ରୋନା...ମୁଁ ଅନେକ ଦିନପରେ କ୍ଷୁଧା ପାଇଚି ଆଜି । ସେଇ ଅର୍ଦ୍ଧ ରାତ୍ରରେ ଦାରିଦ୍ର୍ୟର କଷାଘାତରେ ଆଖି ଛଳ ଛଳ କରି ଦୁଇଦିନର ଶୁଖିଲା ପାଉଁରୁଟି ଉପରେ ଛୁରୀ ଚଳେଇଛି ରୋନା । ଦୁଇ ସ୍ଲାଇସ୍ ଶୁଖିଲା ପାଉଁରୁଟିକୁ ପ୍ଲେଟ୍‌ରେ ଧରି ଡେରିକ୍ ପାଖକୁ ଆସିଲା ବେଳକୁ ଡେରିକ୍ ଶୋଇ ଗଲାଣି ବିଛଣା ଉପରେ—ଆଉ ତାକୁ ଉଠାଇବା ସମ୍ଭବ ନୁହେଁ ।

ରାତି ସାଢ଼େ ନ'ଟା ପରେ କଲୋନି ସମ୍ପୂର୍ଣ୍ଣ ନିର୍ଜନ ହୋଇ ଗଲାଣି । ରୋନା ରାସ୍ତାରେ ଚାଲିଛି ପ୍ଲାଟଫର୍ମ ଆଡ଼େ । ରୋନାର ମନେ ରହିଛି ଯେମିତି ଷ୍ଟ୍ରୀଟ୍ ଲାଇଟ୍ ସବୁ ବଡ଼ ବଡ଼ ଆଖି କରି ଚିହ୍ନୁଛନ୍ତି ରୋନା ଡେନିସନ୍‌କୁ ଆଉ ବୋଧେ ଗୋଟାଏ

କ୍ୟାମ୍ପପୋଷ୍ଟ ଆଉ ଜଣଙ୍କ କାନରେ ଫିସ୍ ଫିସ୍ କରି କହୁଛି ଆଜିକି ୬ ବର୍ଷ ତଳେ ଏଇ ଥିଲା ରୋନା ଫର୍ଣ୍ଣାଡ଼ିସ୍ । ରୋନା ଫର୍ଣ୍ଣାଡ଼ିସ୍ ଫୁଃ - ମିସ୍ ରୋନାର କବର ଉପରେ ଆଜି ଚାଲୁଛି ରୋନା ଡେନିସନ୍ ।

ରୋନାକୁ ରାତି ୧୧ଟା ୧୫ ମିନିଟ୍‌ରେ ଏକସ୍‌ପ୍ରେସ ଧରିବାକୁ ପଡ଼ିବ ଜବଲପୁରକୁ ।

ଫାଷ୍ଟକ୍ଲାସ କମ୍ପାର୍ଟମେଣ୍ଟର ବାର୍ଥକୁ ଆଉଜି ରହି ନିସ୍ତେଜ ଭାବରେ ବସି ରହିଛି ରୋନା—ତାକୁ ଚାଲି ଯିବାକୁ ହେବ । ଦାରିଦ୍ର୍ୟ ହୁଏତ ସହ୍ୟ କରି ହୁଏ କିନ୍ତୁ ଡେରିକ୍‌କୁ ଆଉ ସହ୍ୟ କରା ଯାଏନା । ତା'ର ସମସ୍ତ ସାହସ ଠୁଳ କରି ସେ ଡେରିକ୍‌କୁ ଅଳ୍ପ କେଇ ଧାଡ଼ି ଚିଠିରେ ଜଣେଇ ଦେଇ ଆସିଛି ଯେ ସେ ଆଉ ବିଳାସପୁରକୁ ଫେରୁ ନାହିଁ ।

ତନ୍ଦ୍ରାରେ ରୋନାର ଆଖି ଲାଗି ଆସିଛି—ରୋନାର ମୁଦ୍ରିତ ଆଖିପତା ଉପରେ ଯେମିତି ପାଦ ରଖି ଟଳି ଟଳି ଘରକୁ ଫେରୁଛି ଡେରିକ୍ । ଦୀର୍ଘବପୁ, ନୃତ୍ୟକୁଶଳୀ ଡେରିକ୍ । ମଦ୍ୟପ ବେକାର ଡେରିକ୍ । ନିର୍ଲିପ୍ତ, ନିରପରାଧ ଡେରିକ୍ । ଡେରିକ୍ ବୋଧହୁଏ ଗୁଣୁଗୁଣୁ କରି ଗାଉଛି, ''ଆକାଶରେ ଚନ୍ଦ୍ର ଉଠିଛି—ଏ ଚନ୍ଦ୍ର ତମର, ଏ ଚନ୍ଦ୍ର ମୋର, ଏ ଚନ୍ଦ୍ର ଆମର.....''

ଏଇ ଡେରିକ୍ ଆସି ପହଞ୍ଚି ଗଲାଣି ଫାଟକ ପାଖରେ...ତାପରେ ସେଇ ଗୋଡ଼ିବିଛା ରାସ୍ତା ଟିକକ କେତେ ବା—ଡେରିକ୍ ଅସଂଯତ ପଦକ୍ଷେପରେ ବାରଣ୍ଡା ଉପରକୁ ଉଠି ଡାକୁଛି, ''ଡାର୍ଲିଂ...ରୋନା ଡାର୍ଲିଂ...'' କିଏ ଜବାବ ଦବ ? ଗୋଟାଏ ଅଶ୍ୱସ୍ତିକର ପରିବେଶ ଭିତରେ ଡେରିକ୍ ବୋଧହୁଏ ହାତ ମାରିଛି ଦାଣ୍ଡ କବାଟରେ । ଇସ୍ ! କି ଶବ୍ଦ କରେ ଡାହାଣପଟ କବାଟଟା, ଅନେକ ଦିନୁ ତେଲ ଦିଆଯାଇ ପାରିନାହିଁ । ତା'ପରେ ନିଶ୍ଚୟ ଡେରିକ୍ ହାତଦବ ସୁଇଚ୍ ଉପରେ ଆଉ ମୁହୂର୍ତ୍ତକରେ ନିର୍ଲ୍ଲଜ ଆଲୁଅରେ ପ୍ରକଟିତ ହୋଇ ଉଠିବ ଡେନିସନ ପରିବାରର ଦୀନତା...ଗୋଟାଏ ଖାନଦାନୀ ଘରର କଙ୍କାଳ ପରି ଠିଆ ହୋଇ ରହିଛି ବିରାଟ ହଲ୍‌ଟା—ଆଉ ତା' ଭିତରେ ଅନେକ ଫାଙ୍କା ଯାଗା—ବହୁତ ଆସବାବପତ୍ର ରହିବାର ନିଷ୍ଫଳ ସମ୍ଭାବନା ।

ତା'ପରେ ଡେରିକ୍‌ର ଆଖି ପଡ଼ିବ ଟେବୁଲ ଉପରେ ଥୁଆ ହୋଇଥିବା ଲଫାପା ଖଣ୍ଡକ ଉପରେ—ତା'ପରେ ଗୋଟାଏ ପରିତ୍ୟକ୍ତ ଜୀର୍ଣ୍ଣ ଘର ଭିତରେ ଗୋଟାଏ ନବାଗତ ବିଲେଇ ପରି ଡେରିକ୍ ବୋଧହୁଏ ଚାହିଁବ ଘରର ଚାରିଆଡ଼କୁ...ରୋନା-ରୋନା କାହିଁ ? ରୋନା ?

ଡେରିକ୍ ହାତ ବଢ଼ଉଛି ଲଫାପାଟା ଆଡ଼କୁ...ନା...ନୋ ଚିତ୍କାର କରି ଉଠିଲା ରୋନା—ତା'ର ବେକ ପାଖର ଶିରା ମର୍କି ହୋଇଗଲା । ଅସମ୍ଭବ—ଡେରିକ୍ ସେ ଚିଠି ପଢ଼ିପାରେ ନା—

କମ୍ପାର୍ଟମେଣ୍ଟଟା ଝାଙ୍କି ହୋଇଗଲା । ଜବଲପୁର ଏକ୍ସପ୍ରେସ୍ ଛାଡୁଛି । ତଡ଼ିତ୍ ବେଗରେ ଓହ୍ଲେଇଗଲା ରୋନା...ଆଉ ତାରି ଆଖି ସାମନାରେ ଜବଲ୍‌ପୁର ଏକ୍ସପ୍ରେସ୍ ଅଦୃଶ୍ୟ ହେଇଗଲା ।

ପ୍ଲାଟ୍‌ଫର୍ମ ସମ୍ପୂର୍ଣ୍ଣ ନୀରବ-ନିର୍ଜନ । ରୋନାର ହାତ ଘଡ଼ିରେ ୧୧ଟା ବାଜିଲା—ଡେରିକ୍‌ର ଫେରିବା ସମୟ ହେଇଗଲାଣି...ତା' ପୂର୍ବରୁ ଚିଠିଟାକୁ ଚିରିଦବାକୁ ପଡ଼ିବ ରୋନାକୁ ।

ଦ୍ରୁତଗତିରେ ଚାଲିବାକୁ ଆରମ୍ଭ କଲା ରୋନା—ପ୍ଲାଟ୍‌ଫର୍ମର ନିର୍ଜନତା ଭଙ୍ଗକରି ରୋନାର ହାଇହିଲ୍ ଜୋତାର ଶବ୍ଦ ଶୁଣାଯାଉଛି ଠକ୍ ଠକ୍ ଠକ୍ ଠକ୍ ।

କିଏ ଯେପରି କାଠ ତରଙ୍ଗ ବଜାଉଛି ଅନେକ ଦୂରରୁ...

*(ଆକାଶ ବାଣୀ କଟକ କେନ୍ଦ୍ରଙ୍କ ସୌଜନ୍ୟରୁ)*



# ଝଡ଼ର ଈଗଲ ଓ ଧରଣୀର କୃଷ୍ଣସାର

ମଧ-କାର୍ତ୍ତିକର ଗୋଟିଏ ଶୀତ-ନୀରବ ସନ୍ଧ୍ୟା । ପୃଥିବୀ ବୁକୁରେ ବିସ୍ତୀର୍ଣ୍ଣ ଗାଲିଚା ପରି ପଡ଼ିରହିଛି ସବୁଜ ନିର୍ଜନ ପ୍ରାନ୍ତର—ଅତି ନିର୍ଜନ ଅଥଚ ପ୍ରାଣବାନ୍ । ପ୍ରାନ୍ତରର ପଶ୍ଚିମ ଉପକଣ୍ଠରୁ ଏବେ ମଧ ସୂର୍ଯ୍ୟର ଶେଷରାଗ ଲିଭିଯାଇ ନାହିଁ ସଂପୂର୍ଣ୍ଣ । ସେହି କ୍ରମମ୍ଳାନବତୀ ସଂଧ୍ୟାରେ ନିଜର ଆସ୍ତରଣ ଛାଡ଼ି ମୁଣ୍ଡ ଟେକିଲା କୃଷ୍ଣସାରଟିଏ । ମୁହୂର୍ତ୍ତେ କୃଷ୍ଣସାରର ଲୋମ କୂପେ କୂପେ ଛାଇଗଲା ସୁବର୍ଣ୍ଣ—ତା'ପରେ ଗଲା ଲିଭି ।

କୃଷ୍ଣସାର—ସବଳ, ସଜୀବ କୃଷ୍ଣସାର ! ଅଂଗେ ଅଂଗେ ତା'ର ଆଦ୍ୟ ଯୌବନର ନୂତନ ଆଗମନୀ; ଅଥଚ କିପରି ନିଷ୍ପ୍ରଭ, ମ୍ଳାନ ଆଉ ଭଗ୍ନ ମନୋରଥ ।

କୃଷ୍ଣସାର ମୁଖ ଫେରାଇଲା ପୂର୍ବ ନଭକୁ, ଯେପରି କାହାର ପ୍ରତୀକ୍ଷାରେ—କେହି ନାହିଁ । କୃଷ୍ଣସାରର ଯୂଥ ଏବେ ମଧ ଆସି ନାହିଁ ଶସ୍ୟ ଆହରଣ ପାଇଁ । ତଥାପି ଅନେକ ଡେରି !

ସୂର୍ଯ୍ୟ ଗଲାଣି ଲିଭି ପ୍ରାୟ । ଅଥଚ ଆଜିର ଏ ଚନ୍ଦ୍ରୋଦୟ ବିଳମ୍ବିତ କାହିଁକି ? ଶିଶିର ପଡ଼ି ଆସିଲାଣି । ଘାସରେ ପାଦ ପକାଇ ଚାଲିଲେ ଏଇ ମୁହୂର୍ତ୍ତଟା ଅତି କରୁଣ ମନେହୁଏ । ଓଃ ! ଅତି କରୁଣ—ଯେପରି ସମଗ୍ର ପୃଥିବୀ ନୀରବରେ ବିଳାପ କରିଉଠୁଛି । ଶିଶିରସିକ୍ତ ଏ ସର୍ବଂସହା ଧରଣୀ—ଦିଗନ୍ତ ଘେରି ନୀରବତାର ହାହାକାର—ସୂର୍ଯ୍ୟର ସତ୍ତା ଲୁପ୍ତପ୍ରାୟ, ଅଥଚ ତ୍ରୟୋଦଶୀ ଶଶୀ ଅନାଗତ । ଅତି କରୁଣ ଏ ମୁହୂର୍ତ୍ତ—ଅତି ପୀଡ଼ିତ କରେ ଏ ମୌନବତୀ ଭୀରୁ ସନ୍ଧ୍ୟା । ଠିକ୍ ଏଇ ମୁହୂର୍ତ୍ତରେ ଚକ୍ରବାକର ଛାତି ଫାଟେ ।

ଉପରକୁ ଦୃଷ୍ଟିକ୍ଷେପ କଲା କୃଷ୍ଣସାର—ଈଗଲ ଆସ୍ତେ ଆସ୍ତେ ଚକାଭଉଁରୀ ଖେଳି ଆସୁଛି ତଳକୁ; ନିହାତି ପାଖରେ । ଏଇ ଈଗଲ—ବୃହତ୍, ଅଥଚ ସୁନ୍ଦର । ଆକାଶର ଧାରେ ଧାରେ ଉଡ଼ିବୁଲେ ଏଇ ଈଗଲ—ଆଉ ଶିକାର କରେ । କୃଷ୍ଣସାର ଏଇ ମାଟିର ଧରଣୀରୁ ସବୁ ସମୟରେ ଲକ୍ଷ୍ୟ କରିଛି ଈଗଲକୁ ଅନେକ ଦିନ ଧରି । ଆଃ—ଈଗଲ କି ସୁନ୍ଦର ! ଦୁଇଟା ମୁକ୍ତ ପକ୍ଷାଘାତରେ ସେ ପବନ ପହଁରି ଯାଏ ଅନାୟାସରେ ।

ଈଗଲ ଯେପରି ଝଂଝାର ଅଗ୍ରଦୂତ ! ସକାଳ ଆଉ ସନ୍ଧ୍ୟା ସେ ବୁଲେ, ଆଉ ବୁଲେ । ଈଗଲ ମଧ୍ୟ ଅନେକ ଦିନ ଧରି ଲକ୍ଷ୍ୟ କରେ ମାଟିର ଏଇ କୃଷ୍ଣସାରକୁ । ଅତି ସୁନ୍ଦର ଏଇ ଦୀର୍ଘକାୟ କୃଷ୍ଣସାର—କି ଚଞ୍ଚଳ ! ଘୂର୍ଣ୍ଣିବେଗରେ ସେ ଛୁଟିପାରେ ନିଜକୁ ପୃଥିବୀର ଶ୍ୟାମଳିମା ସହିତ ଏକାକାର କରିଦେଇ । କି ସୁନ୍ଦର କୃଷ୍ଣସାରର ଆକର୍ଣ୍ଣ ଲମ୍ବିତ ଦୁଇଟି ଲୋଚନ ! କି ଭୟଙ୍କର ତା'ର ମୋଟା ମୋଟା ଶିଙ୍ଗଗୁଡ଼ାକ ! ପୁରୁଷର କି ସୌଷ୍ଠବ—ଅଥଚ କେତେ ନିରୀହ, କେତେ ଶାନ୍ତ ସେ । ମର୍ମସ୍ପର୍ଶୀ ତା'ର ନୀରବ କରୁଣ ପ୍ରତୀକ୍ଷା !

ଏଇ—ଈଗଲ ଆସିଗଲା ଖୁବ୍ ନିକଟକୁ । ସିଧା ଆସି ସେ ବସିପଡ଼ିଲା କୃଷ୍ଣସାର ପାଖରେ । କୃଷ୍ଣସାର ମଧ୍ୟ ଅଭିନନ୍ଦନ ଜଣାଇଲା । ତା'ପରେ ହଠାତ୍ କୃଷ୍ଣସାର ଛଳନା କରି ପଚାରେ—

''ତୁମେ ଏ ଧରଣୀରେ ଈଗଲ ?''

ଈଗଲ କହେ, ''ନା—ଅତି କ୍ଲାନ୍ତ ଲାଗିଲା ଏ ଉଡ଼ି ବୁଲିବା—ତା' ଛଡ଼ା ମୋର ଗୋଟାଏ ଡେଣା ଜଖମ ହୋଇଯାଇଛି ଝଡ଼ରେ ।''

କୃଷ୍ଣସାର ଭାବପ୍ରବଣ ହୋଇଉଠେ—''ସତରେ ଈଗଲ, ତୁମେ ଏ ପୃଥିବୀକୁ ଆସିଛ—ଓଃ ! ଏତେ ଦିନର ପ୍ରତୀକ୍ଷା—ମୁଁ ଭାରି ଭଲପାଏ ତୁମକୁ ।''

''କୃଷ୍ଣସାର ! ମୁଁ ବି...ଅତି କ୍ଲାନ୍ତ ମୁଁ ।''

ଈଗଲ ଅତି ଅସ୍ଫୁଟ ଭାବରେ ପ୍ରକାଶ କରେ ନିଜକୁ; ଆଉ ଆସ୍ତେ ଆସ୍ତେ ଦୁଇଟି କ୍ଷୁଦ୍ର ପାଦରେ ଲମ୍ଫଦେଇ କୃଷ୍ଣସାର ଦେହକୁ ଆଉଜି ଆସେ ।

କରୁଣ ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଯାଇଛି । ଆକାଶରେ ଅନେକ ଦୂର ଉଠି ଆସିଛି ଚନ୍ଦ୍ର ।

ତରଳ ରୂପାରେ ଧୋଇ ହୋଇ ଯାଉଛି ଈଗଲର କୋମଳ ଶରୀର, ଆଉ କୃଷ୍ଣସାରର ଦେହେ ଦେହେ ଖାଲି ରୂପା—ଆଉ ରୂପା !

ଦୁହିଙ୍କ ଆଖିରେ ନୀରବ ଅଶ୍ରୁ; କିନ୍ତୁ କାହିଁକି ଏ ଅହେତୁକୀ ଅଶ୍ରୁର ଦରଦୀ ପ୍ଲାବନ ?

କୃଷ୍ଣସାର ତା'ର ଈଷତ୍-ଦୀର୍ଘ ମୁହଁଟି ନେଇ ଆସ୍ତେ ଈଗଲର କୋମଳ ପର ଉପରେ ରଖେ, ଆଉ କହେ—''ତୁମେ ଅତି କୋମଳ ଈଗଲ ! ଇସ୍ ଝଡ଼ର ପକ୍ଷୀ, ଅଥଚ ଏତେ କୋମଳ !''

ଈଗଲ ତୃପ୍ତିରେ ଚକ୍ଷୁ-ତାରକା ଦୁଇଟି ମୁଦ୍ରିତ କରି ଆଣେ କେବଳ । କିଛିଦିନ ବିତିଯାଏ ।

କୃଷ୍ଣସାର ପଚାରେ, ''ତୁମେ ଆଗରୁ କେବେ ପୃଥିବୀକୁ ଆସିଥିଲ ?'' ଈଗଲ କହେ-''ଅନେକ ଥର ଆସିଛି, ଅନେକ ଥର । ଶିକାର କରିବା ପ୍ରବୃତ୍ତିଟା ଯେପରି ମୋର ନିହାତି ରକ୍ତଗତ । ଆକାଶରେ ଉଡୁ ଉଡୁ ଯେତେବେଳେ ଦେଖେ, ନିରୀହ ମେଷଯୂଥ ତୃଣ ସନ୍ଧାନରେ ବାହାରନ୍ତି, ଆନନ୍ଦରେ ନାଚି ଉଠେ ମୁଁ । ତା'ପରେ ନିହାତି ଗୋଟାଏ ହିଂସ୍ର ଆନନ୍ଦରେ ଘୂରି ଘୂରି ମୁଁ ଓହ୍ଲେଇ ଆସେ ପୃଥିବୀ ଉପରକୁ । ଆଉ ଏ ନଖ ଦେଖୁଛ କେତେ ତୀକ୍ଷ୍ଣ, ଆଉ ଶିକାରୀ ନଖ । ଏଇ ନଖରେ ଅନେକ– ଅନେକ କୋମଳ ମେଷଶିଶୁ ମୁଁ ଝାମ୍ପି ନେଇ ଉଡ଼ି ଯାଇଛି ଉପରକୁ । ସେଇ ପାହାଡ଼—'' ଈଗଲ ଆଉ କହି ପାରିଲା ନାହିଁ—କେବଳ ଆଖି ଦୁଇଟାକୁ ଧୀରେ ଧୀରେ ଛୋଟ କରି ଆଣି ଅନେଇ ରହିଲା ସେହି ପାହାଡ଼ ଚୂଡ଼ାକୁ—ତୁଙ୍ଗ ଗିରିଚୂଡ଼ା । ତା' ଉପରେ ନୀଳ ଆକାଶର ଧୂସର ବାଦଲ ଲହଡ଼ା ମାରୁଛି—କୃଷ୍ଣସାର ବି ଅନେଇ ରହେ ସ୍ଥିର ଦୃଷ୍ଟିରେ ।

କିଛି ସମୟ ପରେ କୃଷ୍ଣସାର ପ୍ରକୃତିସ୍ଥ ହୋଇ ପଚାରେ, ''ତା'ପରେ ? ତା'ପରେ !'' ଈଗଲ ପ୍ରକୃତିସ୍ଥ ହୁଏ ।

''ତା'ପରେ ମୁଁ ସେହି ନିର୍ବୋଧ ନିରୀହ ମେଷଶିଶୁକୁ ନେଇ ଉଡ଼ିଯାଏ ସେହି ପାହାଡ଼ର ଚୂଡ଼ାକୁ । ଏହି ନଖରେ ସେମାନଙ୍କର ଛାତି ଚିରେ । ସେମାନଙ୍କର ଉଷ୍ଣ ରକ୍ତ ସ୍ରୋତରେ ନିଜର ଥଣ୍ଟ ବୁଡ଼େଇ ଦେଇ ଆକଣ୍ଠ ପାନ କରେ । ଭାରି ଭଲ ଲାଗେ ସେମାନଙ୍କର ଲୁଣି ଲହୁ । ବଡ଼ ତୃପ୍ତି ଦିଏ ସେମାନଙ୍କର ନରମ ମାଂସ ।''

ଉତ୍ତେଜିତ ହୋଇ ଉଠେ ଈଗଲ । କିପରି ଗୋଟାଏ ହିଂସ୍ର ଆନନ୍ଦରେ ତାର ପରଗୁଡ଼ାକ ଫୁଲି ଉଠନ୍ତି ଭୟାନକ ଭାବରେ । ବିସ୍ଫାରିତ ଆଖି ଦୁଇଟାରେ ସେ ଚାହିଁରହେ କେବଳ ।

ଅଥଚ ନିରୀହ କୃଷ୍ଣସାର ଆଶ୍ୱସ୍ତିର ନିଃଶ୍ୱାସ ନିଏ । ଯେପରି ସେ ଅନୁଭବ କରିପାରୁ ନାହିଁ—ସମର୍ଥନ କରି ପାରୁ ନାହିଁ ଏ ହିଂସ୍ର ଆନନ୍ଦ । ତଳକୁ ଅନାଏ । ତଳେ ସବୁଜ ତୃଣର ମହୁଆ ଗନ୍ଧ । ମାଟିର ମାତାଲ ନିଶା–

ଏଇ ପୃଥିବୀ—ଓଃ ! କୃଷ୍ଣସାର ଏତେ ଭଲପାଏ ଏଇ ପୃଥିବୀକୁ !

କୃଷ୍ଣସାର ହସେ– ଛଳନା କରେ । ''ତାହା ହେଲେ ଏଥର ମତେ ବୋଧହୁଏ ଶିକାର କରିବାକୁ ଆସିଥିଲ ତମେ ?''

ଦୁଃଖ କରେ ଈଗଲ । ତା' ଆଖିରେ ଜମିଆସେ ବିନ୍ଦୁ ବିନ୍ଦୁ ଅଶ୍ରୁ । ''ଛିଃ, କୃଷ୍ଣସାର—ଏତେ ଅମଙ୍ଗଳ କଥା କହିବନି ଆଉ କେବେ—ମୁଁ ତୁମକୁ ଭଲପାଏ—ମୁଁ

ତୁମ ପାଖକୁ ଆସିଥିଲି ଆତ୍ମନିବେଦିତା—ଠିକ୍ ଝଡ଼ରେ ଆହତ ଭୀରୁ କପୋତୀ ପରି । ତା' ଛଡ଼ା କୃଷ୍ଣସାର ! ତୁମେ କେଡ଼େ ସୁନ୍ଦର—କେଡ଼େ ଶକ୍ତ ତୁମର ମାଂସପେଶୀ—କି କ୍ଷିପ୍ର ତୁମର ଗତି—ଆଉ କି ଚଞ୍ଚଳ ତୁମର ଦୁଇଟା ଚପଳ ଚତୁର ନୟନ ! ତୁମର ଶିକାର—ମୋର କ୍ଷମତା କାହିଁକି, କଳ୍ପନାର ବି ବାହାରେ । ମୁଁ ତୁମ ପାଖରେ ପରାଜିତା ।''

କୃଷ୍ଣସାର ତା'ର ନରମ ମୁହଁରେ ଈଗଲର ଲୁହ ପୋଛିଦିଏ । ଏକା ସାଙ୍ଗରେ ରହନ୍ତି ଈଗଲ ଓ କୃଷ୍ଣସାର ।

ସ୍ନେହର ପୀଡ଼ାରେ ପରସ୍ପର ନିକଟରୁ ନିକଟତର ହୋଇ ଆସନ୍ତି । କୃଷ୍ଣସାର ଆଉଁଷି ଦିଏ ଈଗଲର କୋମଳ ପର—ଆଉ ଈଗଲ ଫୁଲି ଫୁଲି କାନ୍ଦେ କେବଳ କୃଷ୍ଣସାରର ଏ ଅନନୁଭୂତି ସ୍ନେହରେ । ଈଗଲ କେବଳ ମର୍ମେ ମର୍ମେ ଅନୁଭବ କରେ ଏ ନିବିଡ଼ ସାନ୍ଦ୍ର ସ୍ନେହ । ଲୋମ କୂପେ କୂପେ ସେ ରୋମାଞ୍ଚ ପାଏ ।

କେବେ କେଉଁ କରୁଣ ଅପରାହ୍ନରେ କୃଷ୍ଣସାର କହେ—

''ଈଗଲ, ତୁମେ ସହି ପାରିବନି ମୋର ଏ ସ୍ନେହ ।''

ଈଗଲ ନୀରବ ରହେ—ଆଖିରେ ସେହି ଅହେତୁକୀ ଅଶ୍ରୁ ।

ଈଗଲର ଯୂଥ ଆସି ଆକାଶ ଛାଇ ଦିଅନ୍ତି ଝଡ଼ର ପାଞ୍ଚଜନ୍ୟ-ନିନାଦ କରି । ଆପେ ଆପେ ହସନ୍ତି, ଆଉ ବିଦ୍ରୂପ କରନ୍ତି ଧରଣୀର ଈଗଲକୁ । କୁହନ୍ତି, ''ଆଶ୍ଚର୍ଯ୍ୟ—ଝଡ଼ର ଈଗଲ ପୁଣି ଯାଇ ପୃଥିବୀର କୃଷ୍ଣସାରର ଭୁଜବଲ୍ଲରୀ ଭିତରେ ! ହାୟ ! ମାଂସାଶୀ ଈଗଲ ପୁଣି ଯାଇ କୃଷ୍ଣସାର ସହିତ ତୃଣଭୁକ୍ ।''

ବିଦ୍ରୂପର ଶ୍ଳେଷ ଅତୀତ ହୋଇଯାଏ ।

ନାଚି ନାଚି ଆସନ୍ତି ଶସ୍ୟ କାଙ୍ଗାଳ କୃଷ୍ଣସାରର ଯୂଥ ସବୁଜ ପୃଥିବୀ ଉପରେ । ବିଦ୍ରୂପ କରନ୍ତି କୃଷ୍ଣସାରକୁ । ବେଳେ ବେଳେ ସହାନୁଭୂତିର ସ୍ୱରରେ କହନ୍ତି—''ହାୟ କୃଷ୍ଣସାର ! ଅକୁର ଚିତ୍ତରେ ଢାଳି ଦେଉଛ ତୁମର ଭଲ ପାଇବା—ନିଃଶେଷ କରି ଦେଉଛ ତୁମର ଶକ୍ତି—ତୁମର ପ୍ରତିଭା—ତୁମର ଯୌବନ ଗୋଟାଏ ମାଶାଣି ଆଲୁଅ ପଛରେ । ଆହତ ସେ ଝଡ଼ର ଈଗଲ—ପୃଥିବୀରେ ଓହ୍ଲେଇଛି—ପୁଣି ଯିବ ଉଡ଼ି—ଶିକାରୀ ଈଗଲ—ଝଡ଼ର ଈଗଲ ।''

ଏ ବିଦ୍ରୂପ ବିନ୍ଧେ ଦୁହିଁଙ୍କୁ—ଆହତ ହୁଅନ୍ତି ଉଭୟେ । କୃଷ୍ଣସାର କୁହେ, ''ନାଁ ଈଗଲ, ଶୁଣ ନାହିଁ ଏମାନଙ୍କର କଥା—ଏମାନେ ଭ୍ରାନ୍ତ, ଏମାନେ ଆମର ଶତ୍ରୁ—

ଏମାନେ ଈର୍ଷା କରନ୍ତି ଆମର ଏଇ ଭଲ ପାଇବାକୁ । ସମ୍ଭବ—ଆକାଶର ଈଗଲ ଓ ଧରଣୀର କୃଷ୍ଣସାର ମଧ୍ୟରେ ଭଲପାଇବା ସମ୍ଭବ—ନିଶ୍ଚୟ ସମ୍ଭବ ।''

ତ୍ରସ୍ତ ଈଗଲ ଆଉଜି ଆସେ କୃଷ୍ଣସାର ପଶମ କଅଁଳ ଦେହକୁ ଆଉ ଆସ୍ତେ କୁହେ, ''ହଁ ସମ୍ଭବ—କୃଷ୍ଣସାର !''

ଦିନ ବିତିଯାଏ ।

ଅନେକ ଦିନ ।

ଈଗଲକୁ ଆଉ ଭଲ ଲାଗେ ନାହିଁ ଏ ପୃଥିବୀ ।

ସେ କୃଷ୍ଣସାର ପରି ଶୁଣିପାରେ ନାହିଁ ପୃଥିବୀର ସଙ୍ଗୀତ । ସେ ତୃପ୍ତି ପାଇପାରେ ନାହିଁ ତୃଣ ଭୋଜନ କରି । ଶିକାର କରିବା ପ୍ରବୃତ୍ତିଟା ଯେପରି ତା' ଭିତରେ ଚେଇଁ ଉଠେ ବାରମ୍ବାର । ଇସ୍ ! ଯଦି ସେ ଥରେ ପାରନ୍ତା ଶିକାର କରି ଏଇ କୃଷ୍ଣସାରକୁ । ହଉନା ବଳବାନ ଏ କୃଷ୍ଣସାର—ହଉନା ତା'ର ଅତି ପ୍ରିୟ—ତଥାପି ଯଦି ସେ ଥରେ ପାରନ୍ତା ! ଦିବାସ୍ୱପ୍ନ ଦେଖେ ଈଗଲ । ସେ ନିଜେ ତା'ର ଶାଣିତ ନଖ ଗୁଡ଼ାକରେ କୃଷ୍ଣସାରକୁ ଝାମ୍ପି ନେଇ ଚାଲିଯାଉଛି ସେଇ ପର୍ବତ ଚୂଡ଼ାକୁ—ଅତର୍କିତରେ ଛାତି ଚିରି ସେ ପିଇ ଚାଲିଛି ଉଷ୍ଣ ରକ୍ତପ୍ରବାହ । କି ତୃପ୍ତି ! କି ଆନନ୍ଦ ! ତା'ପରେ ନିରୀହ ମେଷଶିଶୁଙ୍କର କ୍ଷୁଦ୍ର ଉପେକ୍ଷିତ ଅସ୍ଥିମେଳରେ ମିଶି ଏକାକାର ହୋଇଯାଉଛି କୃଷ୍ଣସାରର ଅପେକ୍ଷାକୃତ ବୃହତ୍ତର ଅସ୍ଥି ରାଶି । ଇସ୍ ! ସେ କ'ଣ ଭାବୁଛି । ପୁଣି ଆଖିରେ ଭରି ଆସେ ଅଶ୍ରୁ । ଭୀଷଣ ଦ୍ୱନ୍ଦ୍ୱ । ସେ ଶିକାର ଚାହେଁ—ଅଥଚ କୃଷ୍ଣସାର ତା'ର ଅତି ପ୍ରିୟ ।

ଦିନେ ହଠାତ୍ ଈଗଲ କୁହେ, ''କୃଷ୍ଣସାର ମତେ ଚାଲିବାକୁ ଖୁବ୍ କଷ୍ଟ ହେଲାଣି । ଦେଖୁ ନାହଁ ମୋର ଗୋଡ଼ଗୁଡ଼ାକ କେଡ଼େ ଶୀର୍ଣ୍ଣ । କିନ୍ତୁ ମୋର ଡେଣା ଖୁବ୍ ଶକ୍ତ ।''

କୃଷ୍ଣସାର ହସି ହସି କୁହେ, ''ଭୟ କର ନାହିଁ ଈଗଲ ! ମୋର ପିଠିରେ ବସ । ମୁଁ ତମକୁ ବହି ନେଇ ଯାଇ ପାରିବି ଚିର ଜୀବନ । ମୁଁ ତୁମକୁ ନେଇ ଯାଇପାରିବି ଏଇ ମୋ'ର ଅତି ପ୍ରିୟ ଶିଳାରାଶି ଭିତରେ । ମୁଁ ତୁମକୁ ନେଇ ଡେଇଁ ଯାଇ ପାରିବି ଯେ କୌଣସି ପ୍ରଶସ୍ତ ଝରଣା ।''

ଘୃଣାରେ ଈଗଲର ନାସିକା କୁଞ୍ଚିତ ହୋଇ ଆସେ ।

ନାଁ ସେ କାହା ଉପରେ ନିର୍ଭର କରି ଚଳି ପାରିବ ନାହିଁ—ସେ ବଞ୍ଚି ପାରିବ ନାହିଁ ପରାଙ୍ଗପୁଷ୍ଟ ହୋଇ । ତା'କୁ ଉଡ଼ିଯିବାକୁଇ ହେବ । ସେ ଝଡ଼ର ଈଗଲ—ଶିକାରୀ

ଈଗଲ । ଈଗଲ କୁହେ—''ଛିଃ ! କ'ଣ କହିବେ ସମସ୍ତେ ? ତୁମର ପକ୍ଷ ନାହିଁ ମୁଁ ଜାଣେ; କିନ୍ତୁ ଯଦି ଉଡ଼ିବାକୁ ଚାହଁ, ଆସ ମୋର ମଧ୍ୟ ଅଛି ଅଶେଷ ଶକ୍ତି, ମୁଁ ତୁମକୁ ମୋର ପକ୍ଷରେ ନେଇଯିବି । ଉଡ଼ିବା ଆକାଶରେ । କି ସୁନ୍ଦର ସେଇ ସୁନୀଳ ଆକାଶ—ମିଶିଯିବା ଗୋଟିଏ ବିନ୍ଦୁ ହୋଇ । ତା'ପରେ ଆସିବ ଝଡ଼, ଆଉ ସେ ଝଡ଼ର ମଦ ପିଇବା ଉଭୟେ ।''

କୃଷ୍ଣସାର କୁହେ—''ନାଁ ଏଇ ଧରଣୀରେ ରହିବା ଈଗଲ । କି ସୁନ୍ଦର ଏଇ ସବୁଜ ଧରଣୀ—ମହୁଆ ଏ ମାଟିର ଗନ୍ଧ—ଏଇ ପାହାଡ଼ର ବିଚିତ୍ର ଶିଳାରାଶି—ସ୍ୱଚ୍ଛ ଝରଣାର ପାଣି—କି ଚମତ୍କାର ଏଇ ଧରଣୀର ସଙ୍ଗୀତ !''

ହାୟ ! ଈଗଲ ସହିତ କୃଷ୍ଣସାର ଉଡ଼ିପାରେ ନାହିଁ ବା କୃଷ୍ଣସାର ସହିତ ଈଗଲ ଚାଲିପାରେ ନାହିଁ ।

X X X X

ଏତିକି ଗପ । ଗପଟାକୁ ଟେବୁଲ ଉପରେ ପକାଇ ଦେଇ ଯାଇଥିଲି ବାହାରକୁ ।

ଫେରିଲାବେଳକୁ ପ୍ରାୟ ସନ୍ଧ୍ୟା ଆସି ଘରର ସୁଇଚ୍‌ଟାକୁ ଜଳାଇ ଦିଏତ କାଉଚ୍ ଉପରେ ହାତରେ ଗପଟାକୁ ଧରି ବସି ରହିଛି ସୁଜାତା । ସୁଜାତା ! ମୁଁ ଆଶ୍ଚର୍ଯ୍ୟ ହୋଇଗଲି ଏକାବେଳକେ ! ଏଇ ସୁଜାତା, ଯେ ମୋ' ପାଖକୁ, ରାଗରେ ଆଉ ଘୃଣାରେ ଘରକୁ ଆସିବା ଦୂରେ ଥାଉ, ଚିଠି ମଧ୍ୟ ଦିଏ ନାହିଁ, ସେଇ ସୁଜାତା ପୁଣି ଏଠି—ପୁଣି ମୋର ଅନୁପସ୍ଥିତିରେ । ସୁଜାତା କୁହେ, ''ଏଟା ତା'ର ଅଭିମାନ—ସେ ଦୂରରୁ ରହି ମତେ ଅନୁଭବ କରିବାକୁ ଚାହେଁ ।''—କିନ୍ତୁ କି କ୍ରୂର ଏ ଅଭିମାନ—କି ନିଷ୍ଠୁର ଏ ସଚେତନ ଅବହେଳା ! ଛାଡ଼ ।

ନିଜର ଭାବନାକୁ ଗୋପନ ରଖି ହଠାତ୍ ହସି କହିଲି—

''ଚା' ଖାଇବ ସୁଜାତା ?''

''ହୁଁ''

ଚା' ପିଆଲାରୁ ମୁହଁ ଫେରାଇ ସୁଜାତା କହିଲା—''ତା' ପରେ ଲେଖକ ! କେବେ ଆପଣଙ୍କର କୃଷ୍ଣସାର ଉଡ଼ି ଶିଖିବ ବା ଈଗଲ ଚାଲି ଶିଖିବ ?''

ମୁଁ କହିଲି—''ନା, ସେମାନେ ସେହିପରି ରହିଯିବେ ।''

ତୀର୍ଯ୍ୟକ୍ ଦୃଷ୍ଟି ଫେରାଇ ସୁଜାତା କହିଲା, ''ଈଗଲର ମନୋବୃତ୍ତି ଆପଣ ଲକ୍ଷ୍ୟ କରିଛନ୍ତି ଏଇ କେତେ ଦିନ ଧରି ?''

ସଂକ୍ଷେପରେ କହିଲି, ''ପ୍ରୟୋଜନ ନାହିଁ ।''

ତଥାପି କହୁଛି ମୁଁ—''ଈଗଲର ହିଂସ୍ର ପ୍ରବୃତ୍ତି ଅନେକଟା ମରି ଆସିଲାଣି ।'' ମୁଁ ଅନେକ ସମୟ ନୀରବ ଥିଲି ।

ଖାଲି ଚା' କପ୍ ଥୋଇ ଦେଇ ସେ ଚାଲିଗଲା ବେଳକୁ କେବଳ କହିଲା, ''ଅନ୍ୟାୟ ହବ ଲେଖକ ! ସେମାନେ ପରସ୍ପରକୁ ଏତେ ଭଲ ପାଉଥିଲେ—ତା'ର ଅନ୍ତତଃ ଗୋଟାଏ କିଛି ସମାଧାନ ଆପଣଙ୍କର କରିବା ଉଚିତ ।''

''ହୁଏତ ଦେବି''—ମୁଁ କହିଲି ।

ସୁଜାତା ଗଲାବେଳେ କେବଳ କହିଗଲା, ''ଆଶାକରେ ସମାଧାନ କରିବେ ।''

X X X X

ପୁଣି ଗପଟାକୁ ବଢ଼ାଇବାକୁ ବସିଲି ।

ତା'ପରେ ଆଉ ପାରିଲା ନାହିଁ ଈଗଲ । ଶିକାର ପ୍ରବୃତ୍ତି ତା' ଭିତରେ ଚେଇଁ ଉଠିଲା ବାରମ୍ବାର । ତାକୁ ଯିବାକୁଇ ହେବ । ଦିନେ କୃଷ୍ଣସାରର ଅଜାଣତରେ ଈଗଲ ଯାଇଛି ଉଡ଼ି ।

କୃଷ୍ଣସାର ଉପରକୁ ଚାହିଁଲା । ଈଗଲ ପ୍ରାୟ ଅର୍ଦ୍ଧଆକାଶରେ । ତା'ର ମନେହେଲା ଯେପରି ଈଗଲ ଉଡ଼ି ଉଡ଼ି ତାକୁ ଉପହାସ କରି ଯାଉଛି—ହାଣିଦେଇ ଯାଉଛି ଶାଣିତ ବ୍ୟଙ୍ଗ—ବାରମ୍ବାର ସେହି ତିକ୍ତ ଶ୍ଳେଷ, ''ତୁମେ ହାରିଗଲ କୃଷ୍ଣସାର, ତୁମେ ହାରିଗଲ, ମୁଁ କିନ୍ତୁ ଝଡ଼ର ଈଗଲ, ଝଡ଼ରେ ଯାଉଛି ମିଶି ।''

ତା'ପରେ ବିତିଗଲା ଅନେକ ଦିନ—

ଈଗଲ ମନେହୁଏ ଝଡ଼ରେ ଅନେକ ସମୟ ଯୁଦ୍ଧ କରି ଆନନ୍ଦ ପାଇଲା । ଆହୁରି ଅନେକ ନିରୀହ ମେଷଶିଶୁ ବୋଧହୁଏ ଶିକାର କଲା । ବେଳେବେଳେ କିଏ ଜାଣେ, ହୁଏତ ଈଗଲ ଭାବୁଥିବ—''ହାୟ କୃଷ୍ଣସାର—ତୁମକୁ ଯାହା ମୁଁ ଶିକାର ନ କରି ପାରିଲି ।''

ଈଗଲ ପୁଣି ଦିନେ କ୍ଳାନ୍ତ ହୋଇ ପଡ଼ିଲା—ଧରଣୀର ସବୁଜିମା ଯେପରି ତାକୁ ହାତ ଠାରି ଇସାରା କଲା—''ଝଡ଼ର ଈଗଲ—ଝଡ଼ ଭିତରେ ସବୁ ମିଳିପାରେ ନାହିଁ—ତୁମେ ଫେରିଆସ ।''

ଈଗଲ ଓହ୍ଲେଇଲା ଧରଣୀକୁ ।

କିନ୍ତୁ କୃଷ୍ଣସାର ସେତେବେଳେକୁ ଯାଇଛି ମରି ।

ଈଗଲ ଦୁଃଖ କଲା, ନିଜକୁ କେତେ ଧିକ୍କାର କଲା । ଆପଣାର ଆତ୍ମଗ୍ଲାନିରେ ସେ କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଲା—ଖାଲି ବସି ବସି ଅଶ୍ରୁ ଗଡ଼ାଇଲା କୃଷ୍ଣସାରର ସମାଧି ଉପରେ ।

ସେଦିନ ମଧ୍ୟ ସେହିପରି ବିଳମ୍ବିତ ଚନ୍ଦ୍ରୋଦୟ—ନୀରବ କରୁଣ ଶିଶିର-ସିକ୍ତ ସଂଧ୍ୟା !

ଈଗଲ ଅତି ମନଯୋଗ ସହକାରେ ବସି ବସି ଭାବୁଛି ତାର କୃଷ୍ଣସାରକୁ । କେତେ ଭଲ ପାଉଥିଲା ତାକୁ ସେ ! ତା'ର ମନେହେଲା ଯେପରି ସେହି ଅଶ୍ରୁରେ ତିଳେ ତିଳେ ଜୀବନ୍ତ ହୋଇ ଉଠୁଛି କୃଷ୍ଣସାର; କିନ୍ତୁ ହାୟ ! କୃଷ୍ଣସାର ଯାଉଛି ମରି । ଈଗଲ ସେହିଦିନ ପ୍ରଥମ କରି ଶୁଣିଲା ମାଟିର ବାଣୀ ଓ ଧରଣୀର ସଙ୍ଗୀତ—ଶେଷଥର ପାଇଁ ଅନୁଭବ କଲା କୃଷ୍ଣସାରର ନିବିଡ଼ ଚୁମ୍ବନ ।

କିନ୍ତୁ ଠିକ୍ ସେହି ମୁହୂର୍ତ୍ତରେ ଏକ ସୁନ୍ଦର ସୌଷ୍ଠବାନ୍ୱିତ କୃଷ୍ଣସାର ଆସ୍ତେ ଆସ୍ତେ ପାଲଟି ଯାଉଛି ଫସିଲ୍ ମାଟିର କେଉଁ ନିଭୃତ ସ୍ତରରେ । ଦୀର୍ଘ, ଦୁର୍ବୋଧ ଦେବଦାରୁ ଚୂଡ଼ାରେ କ୍ଷୀଣ ବଙ୍କିମ ଶଶିଲେଖା ଯେପରି ସ୍ଥିର ହେଇଯାଇଛି ମୁହୂର୍ତ୍ତକ ପାଇଁ !



# ଢ଼ିମିରିଫୁଲ

ଭଦ୍ରମହିଳା ମୋତେ ପ୍ରଥମରୁ ହିଁ ସଂଜୟ ବୋଲି ଧରି ନେଇଥିଲେ । ମୋର ସେଥିରେ ପ୍ରତିବାଦ କରିବାକୁ ମଧ୍ୟ ସାହସ ନ ଥିଲା ।

ଘଟଣାଟା ପ୍ରଥମରୁ କୁହେ ।

ମୁଁ ଆହ୍ଲାବାଦ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଛାତ୍ର । ପୂଜା ଛୁଟିରେ ବୁଲି ଯାଇଥିଲି ଗୌହାଟୀ । ସେଇଟା ବୋଧହୁଏ ସହରର ଏକ ଅଭିଜାତସମ୍ପନ୍ନ ପଡ଼ା ହେବ । କାରଣ ପ୍ରାୟ ଏକାପ୍ରକାରର ସୁନ୍ଦର ସୁନ୍ଦର ଘର ସବୁ ଧାଡ଼ି ବାନ୍ଧି ରାସ୍ତା କଡ଼ରେ ଠିଆ ହୋଇଛନ୍ତି । ଏଇ ନୂଆ ନୂଆ ଘରଗୁଡ଼ିକ ଯେ ଆଧୁନିକ ରୁଚିସମ୍ପନ୍ନ ଏଥିରେ କୌଣସି ସନ୍ଦେହ ନାହିଁ, କିନ୍ତୁ ବେଳେ ବେଳେ ଏମାନଙ୍କ ଏକ ପ୍ରକାରର ଗଠନ ପ୍ରଣାଳୀ ଦର୍ଶକ ମନରେ ଏକ କ୍ଳାନ୍ତି ଆଣିଦିଏ । ମନେହୁଏ ଏମାନେ ଯେମିତି ରାତାରାତି ବଜାରରେ ବିକ୍ରି ହେଉଥିବା କୌଣସି ପ୍ରାସାଦ-ଶୈଳୀ ବହି ଭିତରୁ ଓହ୍ଲେଇ ଆସି ଏଇ ରାସ୍ତା କଡ଼ରେ ସ୍ଥାବର ହେଇ ଯାଇଛନ୍ତି । ଘର କହିଲେ ଯେଉଁ ସ୍ୱାତନ୍ତ୍ର୍ୟ କଥାଟା ମନକୁ ଆସେ ତାହା ଯେପରି ଏଇ ଅତିକାୟ ପ୍ରାସାଦ ଗୁଡ଼ିକରେ ଏକାନ୍ତ ଅଭାବ । ସେ' ଘରର ଅଧିବାସୀମାନଙ୍କ ସହିତ ମୋର ପରିଚୟ ନ ଥିବା କଥା ।

ତେବେ ଘର କଥାଟା ମୋତେ ମୁଖ୍ୟ କଥା ନୁହଁ । ମୁଁ ମୋର ମୂଳ କଥାକୁ ଫେରିଆସେ ।

ମୁଁ ରହୁଥାଏ ଏହି ଅଭିଜାତ ପଡ଼ାର ଗୋଟିଏ ହୋଟେଲ୍‌ରେ । ଏକ ପ୍ରାୟ ଆସନ୍ନ ସନ୍ଧ୍ୟାରେ ମୁଁ ପାଦ ଗଣି ଗଣି ସେଇ ରାସ୍ତାରେ ହୋଟେଲକୁ ଫେରୁଚି ।

ଅକସ୍ମାତ ଆକାଶର ଉତ୍ତର କୋଣରୁ ମେଘ ଘୋଟି ଆସିଲା ଓ ପ୍ରବଳ ବେଗରେ ପବନ ବହିବାକୁ ଆରମ୍ଭ କଲା । ବଡ଼ ବଡ଼ ବର୍ଷା ଟୋପା ପଡ଼ିବାକୁ ଆରମ୍ଭ କରିବାରୁ ମନେହେଲା ଆଉ ଅଳ୍ପ ବାଟ ମଧ୍ୟ ଅଗ୍ରସର ହେବା ସମ୍ଭବ ନୁହଁ ।

ଅଗତ୍ୟା ରାସ୍ତା କଡ଼ର ନିକଟତମ ଘର ଆଡ଼କୁ ଆଶ୍ରୟ ପାଇଁ ପ୍ରାୟ ଦୌଡ଼ିବାକୁ ଆରମ୍ଭ କଲି । ସାଧାରଣ ସମୟ ହୋଇଥିଲେ ଫାଟକ ଖୋଲିବା ଆଗରୁ ଦରୱାନ ବା

ଆଲସେସିଆନ୍ କୁକୁର ଜନିତ ଯେଉଁ ସ୍ୱାଭାବିକ ସଙ୍କୋଚ ବା ଭୟ ଆସୁଥାଆନ୍ତା, ଆସନ୍ନ ବର୍ଷାର ବୃହତ୍ତର ଆଶଙ୍କାରେ ସେ' ସମସ୍ତ କଥା ମୁହୂର୍ତ୍ତକ ପାଇଁ ମଧ୍ୟ ମନକୁ ଆସିଲା ନାହିଁ । ଫାଟକ ଖୋଲି, ସମ୍ପୂର୍ଣ୍ଣ ଓଦା ହୋଇଯିବା ପୂର୍ବରୁ ଘରର ବାରଣ୍ଡା ଉପରକୁ ଉଠିଯାଇ ସାମାନ୍ୟ ଆଶ୍ୱସ୍ତ ଅନୁଭବ କଲି ।

ଘରର ବାରଣ୍ଡାଟି ଏକ ଲୋଭନୀୟ ରୁଚିରେ ସଜ୍ଜା ଯାଇଛି । ମସୃଣ ପ୍ରଶସ୍ତ ମୋଜାଇକ୍‌ର ମେଜିଆ ଉପରେ ଚାରିଖଣ୍ଡ ବେତବୁଣା ବାସ୍କେଟ୍ ଚଉକି । କାନ୍ଥରେ ପାଲିସ୍ କରା ସାଗୁଆନ୍ କାଠର ନାମଫଳକ ତଳକୁ ଛୋଟ ଗୋଟିଏ ଚିଠି ବାକ୍ସ । ଦକ୍ଷିଣ ପଟର ସିମେଟ୍ ଜାଲି ଉପରେ ଘଞ୍ଚ ରାଧାତମାଳ ଲତା ଲଟେଇ ପଡ଼ିଚି । କିଛି ପୋର୍ସିଲେନ୍‌ର କୁଣ୍ଡରେ ଛୋଟ ଛୋଟ କେତୋଟି ଦୁଷ୍ପ୍ରାପ୍ୟ କାକ୍‌ଟସ୍ ।

ବାହାରେ ବର୍ଷାର ତାଣ୍ଡବ ଚାଲିଛି ଅବିରାମ ଓ ମଝିରେ ମଝିରେ ବିଜୁଳି ଆକାଶକୁ ଦୁଇଭାଗ କରୁଛି । କିନ୍ତୁ ଆଶ୍ଚର୍ଯ୍ୟ ! ଏତେ ବଡ଼ ଘରଟାରେ କେହି ଲୋକ ଥିଲାପରି ମନେ ହେଉନାହିଁ । ଏହି ପରିସ୍ଥିତିରେ ରେଡ଼ିଓ ବା କାଚ ବାସନର ଶବ୍ଦ ଶୁଣାଯିବା ସଙ୍ଗତ ନ ହେଲେ ମଧ୍ୟ ଘରର କବାଟ ଝର୍କା ବନ୍ଦ କରାଯିବା ପାଇଁ ଅନ୍ତତଃ ତତ୍ପରତା ଦେଖାଯିବା ଉଚିତ । କିନ୍ତୁ କିଛି ହେଲେ ଶବ୍ଦ ଶୁଣିବାକୁ ମିଳେନା । ଉତ୍ତାଳ ପବନରେ ସଦର ଦର୍ଜାର ଝୀନ୍ ପର୍ଦ୍ଦା କନା ଗୋଡ଼ ହାତ ଲମ୍ୱେଇ ଚିତ୍ ହୋଇ ଆନନ୍ଦରେ ଉଡୁଚି, ଏବଂ ତା ଭିତର ଦେଇ ଦେଖି ହଉଚି ଯେ ଡ୍ରଇଂ ରୁମ୍‌ର କିଛି ପତ୍ରପତ୍ରିକା ମଧ୍ୟ ଘର ଭିତରେ ଉଡ଼ି ବୁଲୁଛନ୍ତି । ଯେ' କେହି ଲୋକ କେବଳ ଶବ୍ଦ ଶୁଣି ମନେ କରନ୍ତା ସେ' ଘର ଭିତରେ ଯେପରି ଅନେକଗୁଡ଼ିଏ ପାରା ବାହାରକୁ ବାହାରିବାର ନିଷ୍ଫଳ ଚେଷ୍ଟାରେ ଡେଣା ପିଟୁଛନ୍ତି ।

ନାଚଖାନାର ଆଡ଼୍‌ଡାରୁ ଶୁଣାଯାଉଥିବା ବିଭିନ୍ନ ଯନ୍ତ୍ର ସଂଗୀତର ଉଚ୍ଛୃଙ୍ଖଳ ଐକ୍ୟତାନ ପରି ବର୍ଷା ଝରି ଚାଲିଚି । ଦୂରର ଲାଇଟ୍‌ପୋଷ୍ଟ ପାଖରେ ସ୍ପଷ୍ଟ ଦେଖି ହଉଚି କେମିତି ଗୋଟିଏ ଗୋଟିଏ ଜଳବିନ୍ଦୁ ତଳର ପାଣି ଉପରେ ବର୍ଚ୍ଛାର ଉଜ୍ଜ୍ୱଳ ଫଳକ ପରି ବିଦ୍ଧହୋଇ ପର ମୁହୂର୍ତ୍ତରେ ରୂପାର ଗୁଣ୍ଡ ପରି ବିଚ୍ଛୁରିତ ହୋଇ ପଡୁଛନ୍ତି ।

ଖୁବ୍ ଦ୍ରୁତ ଗତିରେ ଗୋଟାଏ ଅତି ଦୀର୍ଘ କୃଷ୍ଣକାୟ ଲିମୋସିନ୍ ପୋର୍ଟିକୋ ତଳକୁ ପଶି ଆସି ବ୍ରେକ୍ ଦେଲା । ଗାଡ଼ି ପୋର୍ଟିକୋ ତଳେ ନିଶ୍ଚଳ ହୋଇଯିବା ପରେ ମଧ୍ୟ ତା'ର ଉଜ୍ଜ୍ୱଳ ଆଲୁଅ ଦୁଇଟା ତଥାପି ଜଳୁଥିଲା ଓ ସେଇ ଆଲୁଅ ମୋ' ଉପରେ ପଡ଼ି ମୋ'ର ସମସ୍ତ ବ୍ୟକ୍ତିତ୍ୱକୁ ଲାଞ୍ଛିତ କରୁଥିଲା ପ୍ରତି ମୁହୂର୍ତ୍ତରେ । ମୋର ମନେ ହେଲା, ମୁଁ ଯେପରି ଜଙ୍ଗଲରେ ପଥଭ୍ରଷ୍ଟ ହୋଇଥିବା ସେଇ କଟୁଆଳ ପୁତ୍ର ଯିଏ ଏକ ନିଶ୍ଚିତ ଆଶ୍ରୟର ସନ୍ଧାନରେ ପ୍ରତାରିତ ହୋଇ ଦୈତ୍ୟର ଗୁମ୍ଫାରେ ଆଶ୍ରୟ ନେଇଛି ।

ଆଲୁଅ ଲିଭିଗଲା ଓ ଅନ୍ଧକାର ମୁଖ ବ୍ୟାଦାନ କରି ସମଗ୍ର ପରିବେଶଟିକୁ ମୁହୂର୍ତ୍ତକ ମଧ୍ୟରେ ଗିଳିନେଲା ।

ଗାଡ଼ି ଭିତରୁ ଗୋଟିଏ ଉତ୍କଣ୍ଠିତା ନାରୀକଣ୍ଠ ବେଶ୍ ଜୋର୍‌ରେ କହି ଉଠିଲା, "ଆରେ ! ତମେ ସଂଜୟ..." ଏବଂ ତା'ପରେ ଯେଉଁ ନାରୀ ଗାଡ଼ିରୁ ଓହ୍ଲେଇ ଆସି ଏକ ମଧୁର ଉଷ୍ମ ଆକର୍ଷଣରେ ମତେ ଘର ଭିତରକୁ ନେଇଗଲେ ତାଙ୍କୁ ମୁଁ ଆଲୁଅରେ ପ୍ରଥମଥର ପାଇଁ ଦେଖିଲି ।

ଭଦ୍ରମହିଳାଙ୍କର ବୟସ ପ୍ରାୟ ଚାଳିଶ ପାଖାପାଖି, କିନ୍ତୁ ତାଙ୍କର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ଅତୁଟ ରଖିବାକୁ ଯେ ସେ' ଖୁବ୍ ଯତ୍ନବାନ୍ ଏଥିରେ ସନ୍ଦେହର ଅବକାଶ ନାହିଁ । ଆଲୋକରେ ଆମେ ଦୁହେଁ ପରସ୍ପରକୁ ଚାହିଁ ରହିଚୁ ଅଥଚ କାହା ମୁହଁରେ କଥା ନାହିଁ । କିନ୍ତୁ ସେ' ଯେ ମତେ ସଂଜୟ ବୋଲି ଭୁଲ୍ କରୁଛନ୍ତି ଏଇ କଥାଟା ମୁଁ କେମିତି କହିବି, ସେଇ କଥା ହିଁ ମୁଁ ଚିନ୍ତା କରୁଛି ମନେ ମନେ ଏବଂ ଠିକ୍ ଏଇ ସମୟରେ ମୋ' କଥାକୁ ଅପେକ୍ଷା ନ ରଖି ଆରମ୍ଭ କଲେ ଭଦ୍ରମହିଳା ।

"ତମେ ଏତେ ଟିକିଏ ବି ବଦଳି ନାହଁ ସଞ୍ଜୟ । –ସେବେ ତମକୁ ଯେମିତି ଦେଖିଥିଲି ତମେ ଠିକ୍ ସେମିତି ଅଛ ।" ...ତା'ପରେ ପୂଝାରୀକୁ ଡାକି କଫି ପାଇଁ ବରାଦ ଦିଆଗଲା । –"ମୁଁ ଠିକ୍ ମନେ ରଖିଚି ନାଁ ତମେ ଚା' ଖାଅ ନାହିଁ । ବାପା ମା' ମାନେ ପିଲାମାନଙ୍କ କଥା ସବୁ ଠିକ୍ ଠିକ୍ ମନେ ରଖନ୍ତି । କିନ୍ତୁ ତମେ କହିଲ ଦେଖି ସଞ୍ଜୟ ମୁଁ ଚା'ରେ କେତେ ଚାମୁଚ୍ ଚିନି ଖାଏ ?"

ଏକ ନିଶ୍ଚିତ ଭୁଲ୍ ଉତ୍ତର ଦେବା ଅପେକ୍ଷା ନୀରବ ରହିବା ଉଚିତ୍ ମନେ କଲି । କିନ୍ତୁ ଏଇ ଅଳ୍ପ ସମୟ ଭିତରେ ଭଦ୍ରମହିଳାଙ୍କର ଆଖି ଦୁଇଟାକୁ ଏକ ସୁଦୂର ପ୍ରସାରୀ ଉଦାସୀନତା ଗ୍ରାସ କରି ବସିଚି । ସେ' କାଉଚ ଉପରେ ସାମାନ୍ୟ ଆଉଜି ପଡ଼ି କହିଲେ–, "ମୁଁ ଜାଣେ ସଞ୍ଜୟ ତମର ବୟସରେ ଆମମାନଙ୍କ କଥା ମନେ ରଖିବା ଖୁବ୍ ସ୍ୱାଭାବିକ ନୁହଁ, କିନ୍ତୁ ଏହି ମଞ୍ଜୁ କଥା ଦେଖ, ସେ ଏମିତି କ'ଣ ବା ରିସର୍ଚ୍ଚ କରୁଛି । ଏଇ ଚାରି ପାଞ୍ଚ ବର୍ଷ ଭିତରେ ଥରେ ଆସି ଆମମାନଙ୍କୁ ଦେଖିଯିବାକୁ ତା'ର କ'ଣ ସମୟ ହେଉନାହିଁ ? ଏଇ ତମେ ତ ଆସିଲ ! ତା'ର ବାପା ମତେ କହୁଥିଲେ ସେ ତା' ପାଇଁ ପ୍ଳେନ୍ ଟିକଟ୍ ପଠେଇ ଦେଇଛନ୍ତି.... କିନ୍ତୁ କାଇଁ ଛୁଟି ତ ଆରମ୍ଭ ହୋଇ ସରିବାକୁ ବସିଲା–ଆସିଲା ନାହିଁ ତ ?"

ମୁଁ ମୂକ ହୋଇ ବସି ରହିଛି କେବଳ । ଗୋଲକଧନ୍ଦା ଜଟିଳରୁ ଜଟିଳତର ହେଇ ଚାଲିଚି । ବାହାରର ବର୍ଷା ନ କମିଲେ ମୋର ଏ ପରିସ୍ଥିତିରୁ ମୁକ୍ତି ପାଇବା ଯେ ଅସମ୍ଭବ ସେ କଥା ମୁଁ ଅନୁମାନ କରି ସାରିଲିଣି ।

ଭଦ୍ରମହିଳା କହି ଚାଲିଛନ୍ତି । ....ମଞ୍ଜୁ ତ ଜାଣେ ଯେ ସେ ଏଇ ଆସନ୍ତା ଡିସେମ୍ବରରେ ବିଲାତ ଚାଲିଯିବ । ତା'ର ବାପା ପ୍ରାୟ ସବୁ ଠିକ୍ କରି ସାରିଲେଣି । ତା'ପରେ ପୁଣି ଯେ କେବେ ଦେଖା ହବ ସେ କଥା କିଏ ଜାଣେ ? ପିଲାଦିନେ ପାଖରେ ମଞ୍ଜୁ ଥିଲା, ତୁମେ ଥିଲ, ଭାରି ଭଲ ଲାଗୁଥିଲା । କିନ୍ତୁ ପାଠପଢ଼ିବାକୁ ଯାଇ ଏତେଟା ନିଜର ଲୋକମାନଙ୍କ ଠାରୁ ଦୂରେଇ ଯିବା ଠିକ୍ ନୁହଁ । ଭଦ୍ରମହିଳାଙ୍କ କଣ୍ଠସ୍ୱର ଓ ଦୃଷ୍ଟି କଠିନ ହୋଇ ଉଠିଲା—ମୁଁ ମଞ୍ଜୁର ଟଙ୍କା ବନ୍ଦ କରିଦେଇ ତାକୁ ଯେ କୌଣସି ମୁହୂର୍ତ୍ତରେ ଆସିବାକୁ ବାଧ କରି ପାରନ୍ତି—କିନ୍ତୁ ସଞ୍ଜୟ, ମା' ହେଇ ତା'ତ କରାଯାଏନା ।

ବର୍ଷାର ବେଗ ସାମାନ୍ୟ କମିଚି । କର୍ଣ୍ଣିସ୍‌ରେ ଲାଗି ରହିଥିବା ଟୋପା ଟୋପା ପାଣି ଟପ୍ ଟପ୍ ହେଇ ତଳକୁ ପଡ଼ିବାର ଶବ୍ଦ ସ୍ପଷ୍ଟ ଶୁଣି ହେଉଛି । ମୁଁ ଘଣ୍ଟାକୁ ବାରମ୍ବାର ଦେଖି ଉଠିବାର ସୂଚନା ଦେଲି ଓ କହିଲି ଯେ ମୋର ଜଣେ ବନ୍ଧୁଙ୍କ ସହିତ ଆପଏଣ୍ଟମେଣ୍ଟ ଥିବାରୁ ମୁଁ ଶୀଘ୍ର ଚାଲିଯିବାକୁ ବାଧ ହଉଛି । ଆସିଲାବେଳେ ଭଦ୍ରମହିଳା ମୋର ଠିକଣା ପଚାରିଲେ ଓ ମୁଁ କହିଲି ଯେ ମୁଁ ଏଇ ମୋଡ଼ ଉପରେ ଟି ଭ୍ୟୁ ହୋଟେଲ୍‌ର ୨୪ ନମ୍ବର ରୁମ୍‌ରେ ଆସି ଓହ୍ଲେଇଚି । ଭଦ୍ରମହିଳା ବୋଧହୁଏ ଆଉ କଣ କହିବାକୁ ଯାଉଥିଲେ କିନ୍ତୁ ମୁଁ ସେତେବେଳକୁ ପାହାଚ ତଳକୁ ଓହ୍ଲେଇ ସାରିଥିଲି ।

ଭଦ୍ରମହିଳା ପୁଣି ଥରେ ବାଧାଦେଲେ । ନାଁ—ତମେ ଏଇ ବର୍ଷା ପାଣିରେ ଚାଲିକରି ଯିବନାହିଁ ସଞ୍ଜୟ । ତାଙ୍କର କଣ୍ଠରେ ଆଦେଶର ସ୍ୱର ବ୍ୟଞ୍ଜନା । —ଗାଡ଼ିରେ ବସ । ସୋଫର୍ ତମକୁ ନେଇ ଛାଡ଼ି ଦେଇ ଆସିବ ଆଉ ତା' ଛଡ଼ା ସେ, ତମ ହୋଟେଲ୍‌ଟା ମଧ୍ୟ ଦେଖି ଆସିବ ।

ଅଗତ୍ୟା ଗାଡ଼ିରେ ବସିଲି ଏବଂ ଗାଡ଼ିରେ ଯେତେ ସମୟ ବସିଥିଲି ଭଦ୍ରମହିଳା କିମ୍ବା ତାଙ୍କର ପରିବାର ବିଷୟରେ ମୋର ସମସ୍ତ କୌତୂହଳ ଅତି କଷ୍ଟରେ ଦମନ କରିଥିଲି ।

ତା' ଆରଦିନ ହୋଟେଲ୍‌ର ବେହେରା ସକାଳୁ ଆସି ଚା'ର ସରଞ୍ଜାମ ମୋର ଖଟ ପାଖରେ ରଖିଦେଇ ଯାଇଚି ଏବଂ ଠିକ୍ ଏତିକିବେଳେ ଶୁଣିଲି ଜଣେ ଭଦ୍ରଲୋକ କବାଟରେ ଠକ୍ ଠକ୍ କରି ସୂଚନା ଦେଉଛନ୍ତି, ''ମୁଁ ଭିତରକୁ ଆସିପାରେ'' । ନିଜର ପରିଧେୟ ସାମାନ୍ୟ ସଜ୍ଜିତ କରିନେଇ କହିଲି, ''ଆସନ୍ତୁ'' ।

ଘର ଭିତରକୁ ପଶି ଆସିଲେ ଜଣେ ପ୍ରୌଢ଼ ଭଦ୍ରଲୋକ । ଦେଖିଲେଇ ମନେ ହବ ଯେପରି କୌଣସି ଦାରୁଣ ଦୁଃଖର ଆଘାତରେ ତାଙ୍କର ବୟସ ଅଯଥା ଆଗେଇ

ଯାଇଚି ଅନେକ ବର୍ଷ । ଦେହର ଧୋତି-ପଞ୍ଜାବୀ ଓ ହାତର ବାଡ଼ି ଏକ ସୁସ୍ପଷ୍ଟ ଆଭିଜାତ୍ୟର ସୂଚନା ଦିଏ । ଭଦ୍ରଲୋକ ମୋଟା ଲେନ୍ସର ଚଷମାଟାକୁ ଆଖିରୁ କାଢ଼ି ଆଣି ରୁମାଲ୍‌ରେ ଥରେ ଦୁଇଥର ପୋଛି ନେଇ ପୁଣି ଥରେ ଆଖିରେ ଦେଲେ ଓ ଚଉକି ଉପରେ ବାଡ଼ିଟିକୁ ଆଉଜେଇ ଦେଇ ଆଉ ଥରେ ଭଲ ଭାବରେ ଦେଖିନେଲେ ମତେ ।

ମୁଁ ତାଙ୍କୁ ଚଉକିରେ ବସିବା ଲାଗି ଇଙ୍ଗିତ ଦେଲି ।

ଚଉକୀରେ ବସୁ ବସୁ ଭଦ୍ରଲୋକ କହିଲେ– "ମୁଁ ଠିକ୍ ଜାଣିଥିଲି ଯେ, ମୋର ସ୍ତ୍ରୀ ଏକ ମସ୍ତ ଭୁଲ୍ କରୁଛନ୍ତି–ହଁ ତମେ କାଲି ସନ୍ଧ୍ୟାରେ ଯେଉଁ ବଙ୍ଗଳାରେ ବର୍ଷା ବେଳେ ଆଶ୍ରୟ ନେଇଥିଲ ସେଟା ମୋର ଘର ଓ ସେ ମୋ ସ୍ତ୍ରୀ । ଆଜି ସକାଳେ ସେ ମତେ ପ୍ରାୟ ଜୋର୍ କରି ପଠେଇଲେ । ସେ ସ୍ଥିର ନିଶ୍ଚିତ ଯେ ତମେ ହଉଚ ସଞ୍ଜୟ ।"

ମୁଁ କ୍ଷମା ମାଗିବାର ଭଙ୍ଗୀରେ କହିଲି– "ଦେଖନ୍ତୁ, ମୋ ନାଁ ଅଶୋକ । ମୁଁ କାଲି ସନ୍ଧ୍ୟାରେ ପରିସ୍ଥିତି ପାଇଁ ସତରେ ଲଜ୍ଜିତ । କିନ୍ତୁ କେଜାଣି କାହିଁକି ଆପଣଙ୍କ ସ୍ତ୍ରୀଙ୍କର ସ୍ନେହର ଆତିଶଯ୍ୟରେ ମୁଁ ମୁହଁ ଖୋଲି କହିପାରିଲି ନାହିଁ ଯେ ମୁଁ ସଞ୍ଜୟ ନୁହେଁ ।"

ଭଦ୍ରଲୋକ କହିଲେ– "ମୁଁ ମାନୁଚି ସଞ୍ଜୟର ଗଠନ ସହିତ ତମର ଅନେକ ଆଶ୍ଚର୍ଯ୍ୟ ସାମଞ୍ଜସ୍ୟ ଅଛି । ଖୁବ୍ ନିରୀକ୍ଷଣ କରି ଦେଖିଲେ ହୁଏତ ଜାଣିହେବ ତମେ ସଞ୍ଜୟ ନୁହଁ । ତେବେ ଏଥିରେ ତମର କ୍ଷମା ମାଗିବା ବା ଲଜ୍ଜିତ ହେବାର କୌଣସି କାରଣ ନାହିଁ, ଅଶୋକ ଏଟା ନିୟତିର ଏକ ନିଷ୍ଠୁର ପରିହାସ । ଦିନେ ମୋର ଝିଅ ମଞ୍ଜୁଶ୍ରୀ ସହିତ ସଞ୍ଜୟର ବିବାହ ପ୍ରାୟ ସ୍ଥିର ହୋଇ ଯାଇଥିଲା କିନ୍ତୁ ତା'ତ ଆଉ ସମ୍ଭବ ହେଲା ନାହିଁ...."

ଭଦ୍ରଲୋକଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇ ଯାଇଥିଲା ଓ ସେ ସ୍ଥିର ଚକ୍ଷୁରେ ଟିପୟର୍ ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁକୁ ଚାହିଁ ବସି ରହିଲେ ।

ମୁଁ ଯା' ଭିତରେ କପେ ଚା ତିଆରି କରି ଭଦ୍ରଲୋକଙ୍କ ଆଡ଼କୁ ଆଗେଇ ଦେଲି । ଠିକ୍ ପୂର୍ବପରି ଅନ୍ୟମନସ୍କ ଭାବରେ ଚା' କପ୍‌କୁ ଓଠ ପାଖକୁ ନଉ ନଉ ସେ କହିଲେ– "ସେ କଥା ତମକୁ କହି ଲାଭ ନାହିଁ ! ତେବେ ଅନେକ ଦିନ ପରେ ମୁଁ ମୋର ସ୍ତ୍ରୀକୁ କାଲି ରାତିରେ ପ୍ରକୃତରେ ଖୁସି ହେବାର ଦେଖିଲି । ସେ ତମକୁ ଦେଖି ଭାବୁଛନ୍ତି ଯେ, ତାଙ୍କର ଏକମାତ୍ର ସ୍ୱପ୍ନ ସାର୍ଥକ ହେବାକୁ ଯାଉଚି । ମୁଁ ତାଙ୍କର ଭୁଲ୍ ଭାଙ୍ଗି ଦେବାକୁ ଚାହେଁନା–ଏକ ନିରପରାଧ ଭ୍ରମର ବିନିମୟରେ ଯଦି ସେ ତାଙ୍କର ଅବଶିଷ୍ଟ ଜୀବନ ଆନନ୍ଦରେ କଟାଇ ପାରନ୍ତି ତାହା ହେଲେ ତା'ଠାରୁ ଆଉ ଅଧିକ କ'ଣ ହୋଇପାରେ !"

ଏତିକି କହି ଭଦ୍ରବ୍ୟକ୍ତି ପୁଣି ଥରେ ନୀରବ ହେଲେ—ସେ ଯେପରି ସମସ୍ତ କଥା କେବଳ ମନେ ମନେ ନିଜକୁ ହିଁ କହୁଥିଲେ । ଆଖିରୁ ମୋଟା ଲେନ୍ସର ଚଷମାଟା କାଢ଼ିନେଇ ରୁମାଲ୍‌ରେ ଆଖି ପୋଛୁ ପୋଛୁ ସେ ପୁଣି ଆରମ୍ଭ କଲେ—

''ତମେ ବୟସରେ ମୋ ପୁଅ ପରି, ତମକୁ ମୁଁ ଅଶୋକ ବୋଲି—ନାଁ ଭୁଲ୍ କହିଲି, ତମକୁ ମୁଁ ସଞ୍ଜୟ ବୋଲି ହିଁ ଡାକିବି । କୌଣସି ଅସତର୍କ ମୁହୂର୍ତ୍ତରେ ଧରାପଡ଼ିଯାଇ ମୁଁ ମୋ ସ୍ତ୍ରୀଙ୍କର ମଧୁର ଭ୍ରମ ଭାଙ୍ଗିଦେବାକୁ ଚାହେଁନା ।''

—'ଶୁଣ ସଞ୍ଜୟ, ଆଜିଠାରୁ ଏ ପରିବାରରେ ତମର ଏକମାତ୍ର ପରିଚୟ ସଞ୍ଜୟ । ଆଉ ତମ ପାଖରେ ମୋର ଗୋଟିଏ ମାତ୍ର ଭିକ୍ଷା—ଭିକ୍ଷା ନୁହେଁ ଦାବି—ତମକୁ ମଝିରେ ମଝିରେ ଆସିବାକୁ ପଡ଼ିବ ଏଠିକି । ମୋର ଅର୍ଥର ଅଭାବ କେବେ ନଥିଲା, ଏବେ ବି ନାହିଁ—ତେବେ ଯାହା ଅଭାବ ରହିଯାଇଛି ତାକୁ କେବଳ ତମେ ହିଁ ପୂରଣ କରିପାରିବ ।''

ଭଦ୍ରବ୍ୟକ୍ତିଙ୍କ ସ୍ୱରର କାତରତା ବର୍ଣ୍ଣନାର ଅତୀତ ।

—''ତମେ କଥା ଦିଅ ସଞ୍ଜୟ, ତମର ସମସ୍ତ ଅସୁବିଧା ସତ୍ତ୍ୱେ ବି ତମେ ମଝିରେ ମଝିରେ ଆସି ସଞ୍ଜୟର ଅଭିନୟ କରିଯିବ ।''

ମୁଁ ସତରେ ବିଚଳିତ ହୋଇ ପଡ଼ିଥିଲି—କହିଲି, ''ମୁଁ କଥା ଦଉଚି ଆସିବି । ଆପଣ ନିଶ୍ଚିନ୍ତ ରହି ପାରନ୍ତି ।''

ଭଦ୍ରଲୋକଙ୍କ ଛାତି ଉପରୁ ଗୋଟାଏ ମସ୍ତ ଓଜନଦାର ପଥର ଓହ୍ଲାଇଗଲା ଯେମିତି ।

—''ହଁ ମୁଁ ଶୁଣିଲି, ତମେ ଆଜି ସନ୍ଧ୍ୟା ପ୍ଲେନ୍‌ରେ ଦିଲ୍ଲୀ ଯାଉଚ । ମୋର ସ୍ତ୍ରୀ, ମଞ୍ଜୁଶ୍ରୀ ପାଇଁ କିଛି ଜିନିଷ ପଠେଇବ । ଆମେ ଦୁଇଜଣ ଯାକ ଏୟାର୍‌ପୋର୍ଟରେ ତମକୁ ଦେଖା କରିବୁ—ଆଉ ତମର ସମୟ ନଷ୍ଟ କରିବି ନାହିଁ, ମୁଁ ଚାଲିଲି ।''

ଭଦ୍ରଲୋକଙ୍କୁ କିଛି ବାଟ ବଳେଇ ଦେଇ ମୁଁ ମୋର ରୁମ୍‌କୁ ଫେରିଲି ।

ଏୟାର୍‌ପୋର୍ଟ ଲାଉଞ୍ଜରେ ଇତସ୍ତତଃ ହୋଇ ମନେ ମନେ ଏଇ ରହସ୍ୟମୟ ଦମ୍ପତିଙ୍କୁ ଖୋଜୁଥିଲି ।

ହଠାତ୍ ଦେଖିଲି ଭଦ୍ରଲୋକ ମୋ କାନ୍ଧ ଉପରେ ମୃଦୁ ଚାପ ଦେଇ କହୁଛନ୍ତି—''ହାଲୋ, ସଞ୍ଜୟ ।'' ଚମକି ପଡ଼ିଲି । ଦେଖିଲି ତାଙ୍କର ବାହୁଲଗ୍ନା ହୋଇ ଠିଆ ହୋଇଛନ୍ତି ବିଗତ ରାତ୍ରିର ସେଇ ସ୍ନେହମୟୀ ନାରୀମୂର୍ତ୍ତି—ଭଦ୍ରମହିଳା ଗୋଟିଏ ସୁନ୍ଦର

ପ୍ୟାକେଟ୍ ମୋ ହାତକୁ ବଢ଼େଇ ଦେଇ ସୁନ୍ଦର ଇଂରାଜୀରେ କହିଲେ– ''ଦିସ୍ ଇଜ୍ ଫର୍ ମଞ୍ଜୁ–ମାଇଣ୍ଡ ଦି ଟ୍ରବଲ୍ ।''

ମୁଁ ସମୀହ ହୋଇ ତାଙ୍କ ହାତରୁ ତାକୁ ଗ୍ରହଣ କଲି । ପ୍ୟାକେଟ୍ ଉପରେ ଫେଲଟ୍ ପେନ୍‌ସିଲ୍‌ରେ ବଡ଼ ବଡ଼ ଆଙ୍କୁଡ଼ା ଅକ୍ଷରରେ କେବଳ ଦୁଇଟା ଅକ୍ଷର ଲେଖାଯାଇଚି– ମଞ୍ଜୁ ।

ଧାତବ କଣ୍ଠରେ ମାଇକ୍ ପାସେଞ୍ଜରମାନଙ୍କୁ ପ୍ଲେନ୍‌କୁ ଯିବାକୁ ଅନୁରୋଧ କଲା ।

ଭଦ୍ରମହିଳା ମୋର ବାଁ ହାତ ଉପରେ ତାଙ୍କର ପାପୁଲିର ମୃଦୁ ଚାପ ହୁଗୁଳା କରିନେଲେ ।

ମୁଁ ଭଦ୍ରଲୋକଙ୍କୁ ସାମାନ୍ୟ ଦୂରକୁ ଡାକି ନେଇ ଆସ୍ତେ ପଚାରିଲି –''ଦେଖନ୍ତୁ, ମୁଁ ତ ମଞ୍ଜୁ ଦେବୀଙ୍କ ଠିକଣା ଜାଣେନା, ପ୍ୟାକେଟ୍ ଉପରେ ଲେଖିଦେଲେ ସୁବିଧା ହୁଅନ୍ତା ।''

ମନୁଷ୍ୟର ଆଖି ଏପରି ସ୍ଥିର-ନିର୍ଜୀବ ହୋଇଯିବାର ଆଗରୁ କେବେ ଦେଖିନାହିଁ–ଠିକ୍ କାଚର ଆଖିପରି । ତା'ପରେ ଗୋଟାଏ ପ୍ରଚଣ୍ଡ ଅଟ୍ଟହାସ୍ୟର ନୀରବ ଇଙ୍ଗିତରେ ତାଙ୍କର ପ୍ରୌଢ଼ ଶରୀରଟି ଦୋହଲି ଗଲା ଦୁଇଥର ।

ସେ ମୋର କାନର ଆହୁରି ପାଖକୁ ମୁହଁ ଆଣି ଦାନ୍ତ ଚିପି ଚିପି କହିଲେ–

''ମଞ୍ଜୁର ଠିକଣା ମୁଁ ମଧ୍ୟ ଜାଣେନା । ମୋର ସ୍ତ୍ରୀଙ୍କର ମସ୍ତିଷ୍କ ବିକୃତି ହେବା ପରେ ପରେ ସେ ଆଜିକି ବହୁବର୍ଷ ତଳେ ବ୍ରେନ୍ ଆକ୍‌ସିଡେଣ୍ଟ୍‌ରେ ମରିଯାଏ । ସେ' ସମ୍ବାଦ ମୋର ସ୍ତ୍ରୀକୁ ଆଜିଯାଏଁ ଦିଆଯାଇ ନାହିଁ । ସେତେବେଳେ ମଞ୍ଜୁ ପଢୁଥିଲା ଥାର୍ଡ଼ ଇୟାର୍‌ରେ–ତେଣୁ ଆଜି ତିନିବର୍ଷ ପରେ ସେ ରିସର୍ଚ୍ଚ କରିବାକୁ ବାଧ ଓ ତା'ପରେ ତାକୁ ବିଲାତ ଯିବାକୁ ପଡ଼ିବ ଆହୁରି ଗବେଷଣା କରିବାକୁ....''

ପ୍ଲେନ୍‌ର ପ୍ରପେଲର ପ୍ରଚଣ୍ଡ ଶବ୍ଦ କରି ଘୂରିବାକୁ ଆରମ୍ଭ କଲାଣି । ମାଇକ୍‌ର ସେହି ଧାତବ କଣ୍ଠ ତୁହାକୁ ତୁହା ମୋ ନାଁ ଧରି ଡାକୁଚି । ମୁଁ ତରତରରେ ପ୍ଲେନ୍‌ର ସିଡ଼ି ଉପରକୁ ଉଠିଗଲି । ସିଡ଼ିର ମଝିରେ ଆଉଥରେ ମୁହଁ ଫେରେଇ ଚାହିଁଲି । ସେମାନେ ମୋତେ ହାତ ହଲେଇ ବିଦାୟ ଦେଉଥିଲେ–

ମୋର ମନେ ହେଲା ଭଗବାନଙ୍କର ନିଷ୍ଠୁର ସୃଷ୍ଟିର ଦୁଇଟି ନିଃସଙ୍ଗ, ଅଭିଶପ୍ତ ମନୁଷ୍ୟ-ପିତୁଳା ଆକାଶକୁ ହାତ ଟେକି ନାଚୁଛନ୍ତି !



# ଗୋଟିଏ ଲଟେରୀ ଟିକେଟ୍

ପର୍ଶୁ ସକାଳେ ସଞ୍ଜେ ଯେତେବେଳେ ତା'ର ବେତ ମୋଡ଼ାଟିକୁ କାଖରେ ଧରି ମୁଣ୍ଡ ଉପରେ ଗୋଟାଏ ବଡ଼ ପିତଳ ଥାଳୀ ଓ କିଛି ଡବା ମୁଣ୍ଡେଇ ଯେତେବେଳେ କୋରେଇ ସହର ରାସ୍ତାରେ ଯାଏ, ସେତେବେଳେ କୋରେଇ ସହରର ଲୋକେ କେହି ବିଶେଷ ମନଯୋଗ କରି ଚାହାନ୍ତି ନାହିଁ । କାରଣ ଏଇଟା ହେଲା ଗୋଟିଏ ନିତ୍ୟ ନୈମିତ୍ତିକ ଦୃଶ୍ୟ । ବାରିପଟର ଆମ୍ବଗଛ, ଘର ସାମ୍ନାର ଇଲେକ୍ଟ୍ରିକ୍ ପୋଷ୍ଟ ଓ କୋଇଲା ଖଣିକୁ ପ୍ରତି ଦୁଇଘଣ୍ଟାରେ ଥରେ ଯାଉଥିବା ସଟଲ୍ ଟ୍ରେନ୍ ସର୍ଭିସ୍ ପରି, ଦେଖି ମଧ ଭୁଲି ହୋଇଯାଏ । ପର୍ଶୁ ପଛେ ପଛେ ସମାନ ତାଳ ରଖି ଚାଲିଚାଲି ଯାଉଥିବା ମାଟିଆ ଧୂସରା କୁକୁରଟା ମଧ ଦେହଘଷା ହୋଇଗଲାଣି । ସବୁଦିନ ପର୍ଶୁ ସଙ୍ଗରେ ଯାଏ ଆଉ ରାତିରେ ପର୍ଶୁ ଫେରିଲାବେଳେ ତା' ସାଙ୍ଗେ ସାଙ୍ଗେ ଫେରେ ।

ସକାଳ ସାଢ଼େ ଦଶଟା ଠାରୁ ଖେଳଛୁଟି ସରିବା, ଅର୍ଥାତ୍ ଦୁଇଟା ବାଜିବା ପର୍ଯ୍ୟନ୍ତ ପର୍ଶୁ ଠିଆହୁଏ ସ୍କୁଲ୍ ହତାର ଗୋଟାଏ ଝଙ୍କାଳିଆ ଆମ୍ବଗଛ ତଳେ । ପିଲାଏ ଆସି ଭିଡ଼ ଜମାନ୍ତି ଆଉ ପର୍ଶୁ ଖଣ୍ଡେ ଖଣ୍ଡେ ଚାରିକଣିଆ ଖବର କାଗଜ ଟୁକୁରାରେ ଘୁନ୍‌ପାମ୍ପୁଡ଼ି ଖାଇବାକୁ ଦିଏ ଓ ପଇସାକୁ ନେଇ ଗୋଟାଏ ତେଲଚିକିଟା ଡବା ଭିତରେ ପକେଇଦିଏ । ସେ ସ୍କୁଲ୍‌ର ପ୍ରାୟ ପ୍ରତ୍ୟେକ ପିଲାକୁ ଚିହ୍ନେ ଓ ନାଁ ଧରି ଡାକେ । ବେଳେବେଳେ କୁହେ, ''ହଇଓ ରମେଶବାବୁ, ତମ ବଡ଼ଭାଇ ତ ସ୍କୁଲ୍‌ରୁ ପାଶ୍‌କରି କଲେଜରେ ପଢ଼ିଲେଣି ଯେ ମୋର ଦଶଅଣା ପଇସା ଦେଇନାହାନ୍ତି ଆଉ ତମ ନାଁରେ ପୁଣି ବାକିଖାତା ଖୋଲିବି ?''

ପର୍ଶୁର ଚେହେରାଟା ଭାରି ନିର୍ବୋଧ ନିର୍ବୋଧ । ଆଖି ଦୁଇଟା ସାମାନ୍ୟ ଢେଗା ଢେଗା । ପିନ୍ଧିବା ଧୋତିକୁ ପାଇକଚ୍ଛା ମାରିଦେଇଥାଏ ଆଉ ତା' ଉପରେ ଖଣ୍ଡେ ରଙ୍ଗିନ୍ କାମିଜ୍ ଯାହାର ଛାତି ପାଖରେ ଦୁଇଟା ବୋତାମ ପ୍ରାୟ ଖୋଲା ଥାଏ । ସେ କଥା କହିଲାବେଳେ ତା'ର ଓଠ ଦୁଇଟା କେମିତି ଅସ୍ୱାଭାବିକ ଭାବରେ ପାକୁଳି ହେଇଯାଏ ଯେମିତି ସେ ଅନେକ କଷ୍ଟରେ କଥା କହୁଚି । କଥା ସଙ୍ଗରେ ସମାନ ତାଳ ରଖି ଆଖି ଦୁଇଟି ମଧ ଆହୁରି ବଡ଼ ବଡ଼ ଢେଗା ଢେଗା ହେଇଯାଇ କେମିତି କରୁଣ ଦେଖାଯାଏ । ତେଣୁ ତା'ର କଥାକୁ କେହି ଦିହକୁ ନିଅନ୍ତି ନାହିଁ । ଖୁବ୍ ଦୁଷ୍ଟ ପିଲାମାନେ

ମଧ୍ୟ ପର୍ଶୁକୁ ପଇସା ଠକନ୍ତି ନାହିଁ । କାରଣ ଯିଏ ପଇସା ଠିକ୍ ଠିକ୍ ଗଣିପାରେ ନାହିଁ, ଘେରିଥିବା ପିଲାମାନଙ୍କର ଗତିବିଧି ଉପରେ ଠିକ୍ ଠିକ୍ ନଜର ରଖିପାରେ ନାହିଁ, ତାକୁ ଠକି ଦେଇହୁଏ ସତ କିନ୍ତୁ ସେ ଠକିବାରେ ଆନନ୍ଦ ନାହିଁ—ମନେହୁଏ ଯେମିତି ଗୋଟାଏ ଅନ୍ଧ ଭିକାରୀ ହାତରେ ପାଞ୍ଚ ପଇସା ପକେଇ ଦେଇ ଦଶପଇସିଟାଏ ଉଠେଇ ଆଣିବା ପରି ।

ପର୍ଶୁ ଦୁଇଟା ବେଳେ ଘରକୁ ଫେରି ଖାଇଦେଇ ଆଉ ସ୍କୁଲ୍‌କୁ ଯାଏ ନାହିଁ, କାରଣ ଚାରିଟାବେଳେ ଛୁଟି ହେଲେ ପିଲାମାନେ ବହି ବସ୍ତାନି ଧରି ଏତେ ତରତର ହୁଅନ୍ତି ଘରକୁ ଫେରିବା ପାଇଁ ଯେ ସୁନ୍‌ପାମ୍ପୁଡ଼ି କିଣି ଖାଇବାର ଅବସର ନଥାଏ— ଆଉ ତା'ଛଡ଼ା ଚାରିଟା ବେଳକୁ କାଁଭାଁ ଜଣେ ଦୁଇ ଜଣଙ୍କୁ ଛାଡ଼ିଦେଲେ ସମସ୍ତଙ୍କ ପକେଟ୍ ଖାଲି । ତେଣୁ ତିନିଟା ବେଳଠାରୁ ପାଞ୍ଚଟା ବାଜିବା ପର୍ଯ୍ୟନ୍ତ ପର୍ଶୁ ଡେରା ପକାଏ ବସ୍ ଷ୍ଟାଣ୍ଡ ପାଖରେ । ଏଇ ସମୟରେ ଅନେକ ବସ୍ ଆସେ ଓ ଆଉ ଅନେକ ବସ୍ ଛାଡ଼େ, ତେଣୁ ଭଲ ଦି'ପଇସା ବିକ୍ରି ମଧ୍ୟ ହୁଏ ।

କିନ୍ତୁ ବସ୍‌ଷ୍ଟାଣ୍ଡର ବାୟୁମଣ୍ଡଳ ତାକୁ ଭଲ ଲାଗେ ନାହିଁ । ସବୁବେଳେ ଘୋ' ଘୋ' । ବସ୍ ଛାଡୁଚି ନହେଲେ ଆସୁଚି । କଣ୍ଡକ୍ଟର କ୍ଲିନର୍ ଓ ଯାତ୍ରୀମାନଙ୍କର ହଇହଲ୍ଲା ଓ ସାଇକେଲ୍ ରିକ୍ସାର ଟିଂ ଟିଂ । ଆଉ ସବୁଠାରୁ ବେଶୀ ପର୍ଶୁକୁ ବିରକ୍ତିକର ଲାଗେ—ସେଇ ଲଟେରୀ ବିକ୍ରି କରିବା ଲୋକଟାକୁ—ଭାସ୍କର ରାଓ—ଯିଏ ଗୋଟାଏ ବିକୃତ ସ୍ୱରରେ ମାଇକ୍ ଯୋଗେ ଅନବରତ ସେଇ ଏକା କଥାକୁ ଦୋହରେଇ ଦୋହରେଇ ଘୋଷଣା କରି ଚାଲିଥାଏ । କିଓ ! ଯେ ଗୋଟାଏ କ'ଣ ? ଧୀର ସ୍ଥିର ହେଇ ଠିଆ ହୁଅ, ଲୋକେ ଆପେ ଆପେ ଆସି ଜିନିଷ କିଣିବେନି ? ଏତକ କଥା ପର୍ଶୁ ମନେ ମନେ ଭାବେ କେବଳ କିନ୍ତୁ ଭାସ୍କର ରାଓକୁ କେବେ ମୁହଁ ଖୋଲି କହିବାକୁ ସାହସ କରେନାହିଁ ।

ଭାସ୍କର ରାଓର ଶୁଆଥଣ୍ଟିଆ ନାକ, କୁଞ୍ଚୁକୁଞ୍ଚିଆ ବାଳ ଆଉ ଗହିଡ଼ା ହେଇ ପଶିଯାଇଥିବା ଆଖିର କୋରଡ଼ ଭିତରୁ ଦୁଇଟା ତୀକ୍ଷ୍ଣ ଚକ୍ ଚକ୍ ଆଖି ଦେଖି ପର୍ଶୁ ଭରସି ତା' ସହିତ ବେଶୀ କଥା କହେନାହିଁ । ଡାହାଣ ହାତରେ ଘଣ୍ଟା ପିନ୍ଧି ଲୋକଟା ଅନବରତ ଗୋଟାଏ ଗିଲାସ ଧରି ନାଲି ଚା' ପିଉଥାଏ ଆଉ ଚିଲ୍ଲଉଥାଏ । ମଝିରେ ମଝିରେ ଟିକିଏ ଫୁରୁସତ୍ ପାଇଲେ ରାଓ କେବେ କେମିତି ପର୍ଶୁ ପାଖକୁ ଆସି ତା' କାନ୍ଧରେ ହାତ ଥାପୁଡ଼େଇ କହେ ''କିଓ ପର୍ଶୁବାବୁ, କେମିତି ବିକ୍ରିବଟା ହେଲା ?'' ପର୍ଶୁ ତା'ର ଜବାବ୍‌ରେ କିଛି କହେନାହିଁ ଖାଲି ଓଠ ନେସେଡ଼େଇ ଦେଇ କୁଣ୍ଠିତ ହସଟିଏ ହସିବାକୁ ଚେଷ୍ଟା କରେ ।

କେବେ କେମିତି ଭାସ୍କର ରାଓ ଆସି ପର୍ଶୁର ଡବା ଉପରୁ ଉଠାଇ ନେଇ ଗୋଟାଏ ଦୁଇଟା ସୁନ୍‌ପାମ୍ପୁଡ଼ି ପାଟିକୁ ପକେଇ ଦେଇ ପାକୁଳି କରୁ କରୁ କହେ, ‘‘ଆଜି ବିକ୍ରି ବଡ଼ ମାନ୍ଦା, ମୁଁ ତୋ ପଇସା କାଲି ଦେଇଦେବି’’ । ପର୍ଶୁ ହଁ କରେ ନାହିଁ କି ନାହିଁ କରେ ନାହିଁ—ମୁହଁର ଭାବଟା ହଉଛି—ହଁ ! ଏଇଟା ଗୋଟାଏ ମାମୁଲି କଥା, ଏଥିରେ ପଚାରିବାର କି କହିବାର କ’ଣ ଅଛି । କିନ୍ତୁ ସେ ‘‘କାଲି’’ ଅନେକ ଦିନ ପର୍ଯ୍ୟନ୍ତ ଆସେନାହିଁ ।

ଛ’ଟା ବାଜିବାକୁ ଅଳ୍ପ ସମୟ ଥାଏ ପର୍ଶୁ ଡେରା ଉଠାଏ ଜ୍ୟୋତି ସିନେମା ହଲ୍ ପାଖକୁ । ଫାଷ୍ଟ ଶୋ’ ଆରମ୍ଭ ହୋଇଗଲେ ପର୍ଶୁ ପୁଣି ମୁଣ୍ଡରେ ଥାଳୀ ମୁଣ୍ଡେଇ ବେତ ମୋଡ଼ାଟାକୁ କାଖେରେ ଜାକି ଗୋଟିଏ ଗୋଟିଏ ଘରକୁ ଫେରେ । ଆସିଲା ବେଳକୁ ଖାଲି ଡାକୁଟାଏ ମାରେ ‘‘ଚାଲ୍ ବୁଲା ଚାଲ୍’’ ଆଉ ବୁଲା ତା’ର କୁଣ୍ଡଳୀ ପକେଇ ଶୋଇଥିବା ଜାଗାରୁ ଉଠିପଡ଼ି ଥରେ ଦୁଇଥର ଝାଡ଼ିହେଇ ପଡ଼େ ଓ ତା’ ପଛେ ପଛେ ଚାଲେ ପାଦ ଗଣି ଗଣି । ଘରକୁ  ଫେରିବା ବାଟରେ କେବେ କେମିତି ଆଳୁ ଦି’ଟା, ସାରୁ ଦି ବୁଦା କି ପୋଇ ଡଙ୍କ ଖଣ୍ଡେ କିଣି ସାଙ୍ଗରେ ଘରକୁ ନେଇଆସେ । ଠିକ୍ ସେତିକିବେଳକୁ ଘରକାମ ସାରି ଦାଣ୍ଡ ଦୁଆରେ ଏପଟ ସେପଟ ହଉଥାଏ ତା’ର ସ୍ତ୍ରୀ ବିଳାସୀ ଓ ମୋଡ଼ ମୁଣ୍ଡରେ ଯେମିତି ତା’ର ଆଗକୁ ଠେଲି ବାହାରି ଆସିଥିବା ବେତମୋଡ଼ାଟା ଉପରେ ନଜର ପଡ଼ିଯାଏ, ଗୋଟାଏ ସ୍ୱସ୍ତିର ନିଃଶ୍ୱାସ ମାରି ବିଳାସୀ ଘର ଭିତରକୁ ପଶେ । ଯାହାହଉ ଲୋକଟା ଏତେବେଳେକେ ଫେରିଲା ।

କିନ୍ତୁ ପର୍ଶୁର ଅତୀତଟା ଆଜିକାର ପରି ଏତେ ବୈଚିତ୍ର୍ୟହୀନ, କ୍ଳାନ୍ତିକର ଓ ଏକଟଣା ନଥିଲା । ସମସ୍ତଙ୍କ ପରି ତା’ର ଯେ ଗୋଟାଏ ଭଲ ନାଁ ଥିଲା ବା ଥାଇପାରେ ଏ କଥା କୋରେଇ ସହରର ସମସ୍ତଙ୍କୁ ବିସ୍ମିତ କରିବ କେବଳ ପର୍ଶୁ ଛଡ଼ା । ପର୍ଶୁର ନାଁ ଏକଦା ଥିଲା ପର୍ଶୁରାମ ଭ୍ରମରବର ମର୍ଦ୍ଦରାଜ ରାୟ । ସଂକ୍ଷିପ୍ତରେ କହିଲେ ସେ ଥିଲା ଏକ କ୍ରମକ୍ଷୟିଷ୍ଣୁ ରାଜପରିବାରର ଅନ୍ତର ପୁତ୍ରମାନଙ୍କର ଉତ୍ତରାଧିକାରୀ । କିନ୍ତୁ ଏକ ପରିଣତ ବୟସରେ ଆର୍ଥିକ ଅନାଟନଜନିତ ଜଞ୍ଜାଳଗ୍ରସ୍ତ ହୋଇପଡ଼ିବା ପରେ ରାଜ ପରିବାର ଦତ୍ତ ଏଇ ଦୀର୍ଘ ପଦବୀଟିକୁ ସର୍ବସାଧାରଣରେ ବ୍ୟବହାର କରିବାର ସାହସ ଅଥବା ସୁଯୋଗ ପର୍ଶୁର ଭାଗ୍ୟରେ ଜୁଟି ନଥିଲା ।

କୋରେଇ ସହରରେ ପର୍ଶୁର ରହିବା ଘର ଯଦିଓ ମାଟି ଓ ଚାଳ ତଥାପି ତାହା ଯଥେଷ୍ଟ ପ୍ରଶସ୍ତ । ଦୁଇ ମହଲା ଘର ମଝିରେ ଗୋଟାଏ ପ୍ରକାଣ୍ଡ ଅଗଣା ଭିତରେ ଚଉରା ଉପରେ ଗୋଟିଏ ଶୀର୍ଣ୍ଣ ତୁଳସୀ ବୃକ୍ଷ ଭିନ୍ନ ଆଜି ଆଉ କିଛି ଦେଖିବାକୁ ମିଳେ ନାହିଁ । ତା ବାହାରେ ଗୋଟାଏ ପ୍ରକାଣ୍ଡ ଖଳା ବାରି । ଦିନ ଥିଲା ଯେତେବେଳେ ସେହି

ଖଳାବାରିରେ ଦୀର୍ଘ ତିନିମାସ ଧରି ଅନବରତ ବେଙ୍ଗଳା ପଡ଼ି ଚାଲିଥିଲା ଓ ପର୍ବତକାୟ କଳେଇ ଓ କୁଟା ଗଦାମାଟି ଖଳାବାରିର ଶୋଭାବର୍ଦ୍ଧନ କରୁଥିଲା ।

କ୍ରମେ ଏହା ଏକ ଶିଳ୍ପାଞ୍ଚଳ ଘୋଷିତ ହୋଇ କୋରେଇ ଗ୍ରାମ ଏକ ସହରରେ ଅତି ଦ୍ରୁତଗତିରେ ରୂପାନ୍ତରିତ ହବାକୁ ଲାଗିଲା ଏବଂ ତତ୍ ସଙ୍ଗେ ସଙ୍ଗେ ଏକ ବଡ଼ ଚାଷୀର ଗ୍ରାମୀଣ ବିଳାସ ମଧ୍ୟ କର୍ପୂର ପରି ଶୂନ୍ୟରେ ମିଳାଇଗଲା । ମାଇଲ୍ ମାଇଲ୍ ଧରି ଧାନକ୍ଷେତ ଉପରେ ଅଶ୍ଳୀଳ ସଙ୍କେତ ପରି ଏଠିସେଠି କୋଠାଘର ସବୁ ମୁଣ୍ଡ ଟେକିଲେ ଓ ସହରର ଉପାନ୍ତମାନଙ୍କରେ ଇଟା ଭାଟିର ଚିମିନି ସବୁ ଧୂମ ଉଦ୍‌ଗୀରଣ କଲେ । ପର୍ଶୁର ଆଦ୍ୟ ଯୌବନରେ ସେ ଉପଲବ୍ଧ କଲା ଯେ, ଧାନକ୍ଷେତ, କଳେଇ ଧାନଗଦା, ଘାଗୁଡ଼ି ଲଗା ବଳଦ ସବୁ କୁଆଡ଼େ ଅଦୃଶ୍ୟ ହୋଇଯାଇଛନ୍ତି ଓ କେବଳ ତା'ର ଭିତର ବାରଣ୍ଡାରେ ଦୁଇଟା ଶଗଡ଼ ଚକ ଆଉଜା ହେଇ ରଖାହେଇଛନ୍ତି, ଏକ ସଚ୍ଛଳ ନିକଟ ଅତୀତର ବେଦନାମୟ ସ୍ମାରକୀ ରୂପେ । ସେଇ ଦୁର୍ଦ୍ଦିନରେ ଯେ ବଳରାମପୁର ଛୋଟରାୟ ପରିବାରର କନିଷ୍ଠା କନ୍ୟା ବିଳାସୀ ତା' ଘରକୁ ବଧୂ ରୂପେ ଆସିଥିଲା, ସେଥିପାଇଁ ପର୍ଶୁ ଭଗବାନଙ୍କୁ ଅଜସ୍ର ଧନ୍ୟବାଦ ଦିଏ ଓ ବିଳାସୀକୁ କୁହେ ''ବିଳାସୀ ତମେ ଗୋଟାଏ ଦରିଦ୍ର ଘରକୁ ଆସିଲ ବୋହୂହେଇ, ମୁଁ ତୁମର ଯୋଗ୍ୟ ନୁହେଁ ।''

ପର୍ଶୁରାମର ଆଜିର ସଂସାର ଜମିବାଡ଼ିରୁ ମିଳୁଥିବା ଅଳ୍ପ କିଛି ଧାନ ସତ୍ତ୍ୱେ ମଧ୍ୟ, ଏଇ ସୁନପାମ୍ପୁଡ଼ି ବ୍ୟବସାୟ ଉପରେ ମୁଖ୍ୟତଃ ନିର୍ଭର କରେ । ପିଲାଦିନେ ଗୋଟାଏ ସୁନପାମ୍ପୁଡ଼ି ବାଲାର ପୁଅ ପର୍ଶୁର ବାଲ୍ୟସାଥୀ ଥିଲା ଓ ସେଇ ସମୟରେ ଏକ ଅହେତୁକୀ କୌତୁହଳ ପାଇଁ ଶିଖିଥିବା ସୁନପାମ୍ପୁଡ଼ି ତିଆରି ଯେ ଦିନେ ତା'ର ସଂସାରର ଏକମାତ୍ର ଅବଲମ୍ବନ ହବ— ଏ କଥା, ଆହୁରି ଅନେକ ଅନେକ କଥା ପରି ପର୍ଶୁର କଳ୍ପନାର ବହିର୍ଭୂତ ଥିଲା । କିନ୍ତୁ ତଥାପି ସମୟ ପର୍ଶୁରାମ ଭ୍ରମରବର ମର୍ଦ୍ଦରାଜ ରାୟଙ୍କୁ ଓ ତାଙ୍କର ସହଧର୍ମିଣୀ ବିଳାସୀକୁ ଆଜିର ପରିସ୍ଥିତି ସହିତ ସାଲିସ୍ କରାଇ ନେଇଛି । ନିଃସନ୍ତାନ ପର୍ଶୁରାମର ସଂସାରରେ ପର୍ଶୁର ନିତାନ୍ତ ବାଧ୍ୟ ଏଇ କୁକୁରଟି ଭିନ୍ନ ଆଉ ଦ୍ୱିତୀୟ ପ୍ରାଣୀ ନାହାନ୍ତି ।

ସେଦିନ ବସ୍‌ଷ୍ଟାଣ୍ଡ ପାଖରେ ଭାସ୍କର ରାଓର ସେଇ ଅଶ୍ଳୀଳ ଚିତ୍କାର ଅବିଶ୍ରାନ୍ତ ଚାଲିଥାଏ । ଯେପରି ସେହିଦିନ ରାତିରେ ପୃଥିବୀ ପ୍ରଳୟ ହୋଇଯିବ । ଭାସ୍କର ରାଓର କହିବା କଥା ଯେ କାଲି କେରଳ ଲଟେରୀର ପୂଜା ବମ୍ପର୍ ଡ୍ର' ଏବଂ ଆଜି ଟିକେଟ୍ ବିକ୍ରିର ଶେଷଦିନ ଓ ତା' ପାଖରେ ମାତ୍ର ଦଶଟି ଟିକେଟ୍ ମହଜୁଦ୍ ଅଛି । କିନ୍ତୁ ବମ୍ପର୍ ଡ୍ର'ଟା କ'ଣ ? କେଜାଣି । କ'ଣ ତ ଯାଦୁ, ସିଆଡୁ କେତେ କଥା

ଗପୁଥାଏ । ପୁଣି ସେଇ କାନଫଟା ଚିତ୍କାର "ଛତିଶ ଲକ୍ଷ ଟଙ୍କା, ଗୋଟାଏ ଏୟାର୍ କଣ୍ଡିସନ୍ଡ୍ ସିନେମା ହଲ୍ ଓ ଗୋଟାଏ ଆମ୍ବାସେଡର୍ ଗାଡ଼ି ଇତ୍ୟାଦି...ଇତ୍ୟାଦି ।" ମନେ ମନେ ଭାବୁଥାଏ ପର୍ଶୁ, "ତା ମାଲ୍ ବିକିବା ପାଇଁ କେତେ ଫିକର ନ କରୁଚି ଭାସ୍କର ରାଓ !"

ପାଟି କରି କରି ଥକିଯିବା ପରେ ଭାସ୍କର ରାଓ ତା' ଜାଗାରୁ ଉଠି ପର୍ଶୁ ଆଡ଼କୁ ପାଦ ବଢ଼େଇଲା । ପର୍ଶୁର ପକେଟ୍‌ରେ ଖଣ୍ଡେ ଚିତ୍ର ବିଚିତ୍ର ଲଟେରୀ ଟିକେଟ୍ ଗୁଞ୍ଜି ଦେଇ କହିଲା, "ଦେଖ୍ ପର୍ଶୁ, ଭାଗ୍ୟରେ ଥିଲେ କୋଟିପତି । ଶଳା ଟିକଟ୍ ଖଣ୍ଡେ ରଖିଥା ।" ପର୍ଶୁ ନାହିଁ ନାହିଁ କରୁ କରୁ ପୁଣି ଥରେ ଖେଙ୍କି ଉଠିଲା ଭାସ୍କର ରାଓ, "ରଖିଥାବେ ଶଳା—ମନେ କରୁଥିବୁ ।" ଆଉ ପ୍ରତିବାଦ କରିବାକୁ ସାହସ କରିପାରିଲା ନାହିଁ ପର୍ଶୁ । ଖାଲି ପକେଟ୍ ଉପରେ ତା'ର ବାଁ ହାତଟା ବୁଲେଇ ଆଣିଲା ପର୍ଶୁ, ଲାଗୁଛି ତ ଖଣ୍ଡେ କାଗଜ ଥିଲା ପରି । ସେଦିନ ନିର୍ଦ୍ଧାରିତ ସମୟରେ ଯେତେବେଳେ ବସ୍‌ଷ୍ଟାଣ୍ଡରୁ ପର୍ଶୁ ତା'ର ପସରା ଉଠେଇଲା ସେତେବେଳେ ଭାସ୍କର ରାଓ ତା'ର ଅନର୍ଗଳ ବକ୍ତୃତା ବନ୍ଦ କରି କହିଲା, "ପର୍ଶୁ ଦି ଟଙ୍କା ବାରଅଣାରୁ ଦି ଟଙ୍କା କଟିଗଲା, ଆଉ ରହିଲା ବାରଅଣା—ହିସାବ ଯେମିତି ଭୁଲ୍ ନକରୁ ।" ପର୍ଶୁ ସେତେବେଳକୁ ତା'ର ପସରା ମୁଣ୍ଡ ଉପରକୁ ଟେକି ସାରିଥିଲା ଓ ସେଇ ଅବସ୍ଥାରେ ମୁଣ୍ଡଟାକୁ ସାମାନ୍ୟ ବୁଲେଇ ନେଇ ଆଖି କଣରେ ସେ ଥରେ ଚାହିଁ ନେଇଥିଲା ଭାସ୍କର ରାଓକୁ !

ଘରେ ପହଞ୍ଚି ଘରର ସ୍ତିମିତ ଆଲୁଅରେ ଥରେ ଲଟେରୀ ଟିକଟଟାକୁ ପରଖି କରିଥିଲେ ପର୍ଶୁ ଓ ବିଳାସୀ । ପରଖି କରିବା ପାଇଁ ନୁହଁ, ତାଙ୍କର ଦରିଦ୍ର ସଂସାରର ହିସାବ ମିଳେଇବା ପାଇଁ । ବେଶ୍ ଚିତ୍ର ବିଚିତ୍ର କାଗଜ । ପଛପଟେ ପିମ୍ପୁଡ଼ି ପରି ଛୋଟ ଛୋଟ ଅକ୍ଷରରେ କ'ଣ ଏତେ ସବୁ ଲେଖାଯାଇଛି ? ଛତିଶ ଲକ୍ଷ ଟଙ୍କାର ପରିମାଣଟାକୁ ଯଥାଯଥ ଭାବରେ ଉପଲବ୍ଧ କରିବା ସେମାନଙ୍କର ଶକ୍ତିର ଅତୀତ ଥିଲା; ଲଟେରୀ ଟିକେଟ୍‌ଟିକୁ ଠାକୁର ଘର ଖୋଲି ମହାଦେବଙ୍କ ଫଟର ଖଟୁଲି ତଳେ ରଖୁ ରଖୁ ବିଳାସୀ ଭାବୁଥିଲା— "ହଁଃ, ଏତେ ଲୋକ ତ କିଣୁଛନ୍ତି—ଗଲେ ଗଲା ଦିଟା ଟଙ୍କା ।"

ତା' ଆରଦିନ ଓ ଏହିପରି ପର ପର ଛ, ସାତ ଦିନ ପର୍ଶୁ ତା'ର ସୁନ୍‌ପାମ୍ପୁଡ଼ି ମୋଡ଼ା କାଖେଇ ଦାଣ୍ଡକୁ ବାହାରିଲା ବେଳକୁ ସେଇ ଚିତ୍ର ବିଚିତ୍ର ଟିକଟଟିର କଥା ସମ୍ପୂର୍ଣ୍ଣ ବିସ୍ମୃତ ହୋଇସାରିଥିଲା । କିନ୍ତୁ ସେଦିନ ଭାସ୍କର ରାଓ ବିଶେଷ ପାଟିତୁଣ୍ଡ କରୁ ନଥାଏ, ନାକ ଅଗରେ ଗୋଟାଏ ଚଷମା ପିନ୍ଧି ଗୋଟାଏ କାଗଜ ସାଙ୍ଗରେ ତା'ର

ଟିକଟ, ସବୁ ମିଳେଇ ମିଳେଇ ଦେଖୁଥାଏ ନିଠେଇ ନିଠେଇ । ସେଇ ଚଷମା ଭିତରୁ ଥରେ ଦୁଇଥର ସେ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲା ପର୍ଶୁ ଆଡ଼କୁ ଓ ତା'ପରେ ଗୋଟାଏ ଚିତ୍କାର କଲା, ମନେହେଲା ଯେମିତି ସେ ଚିତ୍କାରରେ ବ୍ରହ୍ମାଣ୍ଡର ପ୍ରଚଣ୍ଡ କୋଳାହଳ ମୁହୂର୍ତ୍ତକ ପାଇଁ ନୀରବ ହେଇଗଲା । ପର୍ଶୁ ଆଡ଼କୁ ବଡ଼ ବଡ଼ ପାହୁଣ୍ଡ ପକେଇ ଧପାଳି ଆସିଲା ଭାସ୍କର ରାଓ ଆଉ ତା' କାନ୍ଧରେ ଗୋଟାଏ ପ୍ରଚଣ୍ଡ ଚପେଟାଘାତ କରି ପାଟିକଲା ଆହୁରି ଜୋର୍‌ରେ, "ଆବେ ପର୍ଶୁ—ରଜା ହୋଇଗଲୁ ବେ—ରଜା ହୋଇଗଲୁ ।" ଦି'ଟଙ୍କା ବାରଅଣାର ସୁନ୍‌ପାମ୍ପୁଡ଼ି ଦେଇ ପାଇଗଲୁ ଛତିଶ ଲକ୍ଷ ଟଙ୍କା—ଛ-ତି-ଶ-ଲ-କ୍ଷ... । ପାଖ ଆଖର ପାନ ଦୋକାନୀ, ବରା ବିକାଳୀ, ରିକ୍ସାବାଲା ସମସ୍ତେ ହାଁ କରି ଚାହିଁ ରହିଥାଆନ୍ତି ଏଇ ଅଚାନକ ନାଟକୀୟ ପରିସ୍ଥିତିକୁ ହୃଦୟଙ୍ଗମ କରିବା ପାଇଁ । ଏତିକିବେଳେ ଜଣେ କିଏ ଗ୍ରାହକ ସୁନ୍‌ପାମ୍ପୁଡ଼ି କିଣିବାକୁ ଆସି ଠିଆ ହେବାରୁ ପର୍ଶୁ ତରତର ହେଇ ଡବା କରରେ ଗୁଞ୍ଜା ହେଇଥିବା କାଗଜ ଖଣ୍ଡେ କାଢୁ କାଢୁ, ଭାସ୍କର ରାଓର ଗୋଡ଼ର ଗୋଟାଏ ଧକ୍‌କାରେ ପର୍ଶୁର ମୋଢ଼ା ଓ ସୁନ୍‌ପାମ୍ପୁଡ଼ି ଡବା ଉଭୟେ ଭୂମିସାତ୍ ହେଲେ । "ଧେତ୍‌ରିକା—ଶଳା ରାଜା ହେଇ ସାରିବା ପରେ ପରେ ଆଉ ଏଇ ପାମ୍ପୁଡ଼ି ବିକିବା ଧନ୍ଦା ପୁଣି କ'ଣ ?" କହିଲେ ଭାସ୍କର ରାଓ ।

ପର୍ଶୁ ସେମିତି ବଲ ବଲ କରି ଅନେଇ ରହିଲା ରାଓକୁ ପୁଣି ତଳେ ବିଛୁ ହେଇଯାଇଥିବା ସୁନ୍‌ପାମ୍ପୁଡ଼ିକୁ । କେତେବେଳେକେ ସେମିତି ଓଠ ନେସେଡ଼େଇ କହିଲା ପର୍ଶୁ, "ଭାସ୍କର ଭାଇ, ଯେ ଗୋଟାଏ କ'ଣ, ଲକ୍ଷ୍ମୀ ପସରାଟାକୁ ଗୋଇଠା ମାଇଲ ।" ଭାସ୍କର ରାଓ ଶୁଣିବା ଅବସ୍ଥାରେ ନଥିଲା । ଖାଲି କହିଲା "ଆରେ ଲକ୍ଷ୍ମୀ ତ ଆସି ତୋ' କାନ୍ଧରେ ବସିଲେଣି ଆଉ କ'ଣ ପସରାରେ ଅଛନ୍ତି ?"

ଭାସ୍କର ରାଓ ପକେଟ୍‌ରେ ଗୁଞ୍ଜି ଦେଇଥିବା ଖଣ୍ଡେ ଟିପା କାଗଜ ନେଇ ମୋଢ଼ା ଡବା ସବୁ ଗୋଟାଗୋଟି କରି ସେଦିନ ଘରକୁ ସଅଳ ଫେରି ଆସିଲା ପର୍ଶୁ ।

ସେଦିନ ସନ୍ଧ୍ୟାରେ ଆଲୁଅ ଜାଳି ଟିପା କାଗଜ ସହିତ ଠାକୁରଙ୍କ ବେଦୀ ଉପରେ ଥୁଆ ହେଇଥିବା ଲଟେରୀ ଟିକଟଟିକୁ ଅନେକ ବେଳ ଧରି ମିଳେଇଥିଲେ ପର୍ଶୁ ଓ ବିଳାସୀ । ଦୀର୍ଘ ଦିନର ଅଭ୍ୟାସବଶତଃ ପର୍ଶୁ ଇଂରାଜୀ ଅଙ୍କ ସହିତ ପରିଚୟ ହରେଇ ବସିଥିଲେ ମଧ ଦୁଇଟି ଅଙ୍କକୁ ପଢ଼ି ଗୋଟିକର ଲିଖନ ପ୍ରଣାଳୀ ସହିତ ଅନ୍ୟଟିର ସାମଞ୍ଜସ୍ୟ ଉପଲବ୍ଧି କରିବାକୁ ତା'ର ବିଶେଷ କିଛି ଅସୁବିଧା ହେଇ ନଥିଲା । ବିଳାସୀ ଠାକୁର ଘର ଖୋଲି ଠାକୁରଙ୍କ ପାଖରେ ମୁଣ୍ଡିଆ ମାରିଥିଲା ଅନେକଥର, ଆଉ ଖାଇପିଇ ସାରି ଯେତେବେଳେ ସେମାନେ ଶୋଇବାକୁ ଗଲେ ସେତେବେଳେ

ପର୍ଶୁର ଆଖିକୁ ନିଦ ଆସି ନଥିଲା ବହୁ ସମୟ ଧରି । ସେ ଅନେକ କ୍ଷୁଦ୍ର କ୍ଷୁଦ୍ର ସ୍ୱପ୍ନ ଦେଖିବାରେ ବ୍ୟସ୍ତ ଥିଲା । ଛତିଶ ଲକ୍ଷ ଟଙ୍କାର ପରିମାଣ ଯାହା ହଉନା କାହିଁକି ତାହା ଯେ ଅନେକ ଟଙ୍କା, ଆଶାତୀତ ଟଙ୍କା ଏକଥା ପର୍ଶୁ ହୃଦୟଙ୍ଗମ କରି ପାରୁଥିଲା ଓ ଭାବୁଥିଲା ଏଥର ଆଉ ଖରା, ବର୍ଷା, ଶୀତରେ ପାମ୍ପୁଡ଼ି ଡବା ଧରି ତାକୁ ଏଠିସେଠି ଠିଆ ହବାକୁ ପଡ଼ିବ ନାହିଁ । ବୋଧହୁଏ କିଛି ସୁନା ଗହଣା କରେଇ ନେଇ ବିଳାସୀର ଦୀର୍ଘଦିନର ଅଭିଳାଷ କିଛିଟା ପୂରଣ କରିନେଇ ପାରିବ ଓ.... ଏମିତି ବହୁ ଛୋଟ ଛୋଟ କଥା ଭାବି ଭାବି ଅନେକ ରାତିରେ ପର୍ଶୁର ଆଖି ଲାଗି ଯାଇଥିଲା ।

କିନ୍ତୁ ତା' ଆରଦିନର ସକାଳ ପର୍ଶୁ ପାଇଁ ଏକ ବିଚିତ୍ର ଓ ଅନନ୍ୟ ସାଧାରଣ ସକାଳ ଥିଲା । ପର୍ଶୁର ଘର ଦାଣ୍ଡ ଦେଇ କେତେ ମାଛବାଲା, ପରିବାବାଲା, ଶାଢ଼ୀ ବିକ୍ରି କରିବା ଲୋକ, ପ୍ରତିଦିନ ଡାକି ଡାକି ଯାଆନ୍ତି; କିନ୍ତୁ ଦିନେ କେହି ପର୍ଶୁ ଘର ଦାଣ୍ଡରେ ଠିଆ ହେଇ ପଚାରି ନାହିଁ ବାବୁ ଘରେ କିଛି ଜିନିଷ ଦରକାର ପଡ଼ିବ ନାହିଁ କି ବୋଲି । କିନ୍ତୁ ଅହୋଭାଗ୍ୟ ! ବଡ଼ି ଭୋର୍‌ରୁ ଘର ଦୁଆର ମୁହଁରେ ଆସି ବସିଛି ବୈରାଗୀ ଚରଣୀ । ସେ'ଟା ବୈରାଗୀର ଯିବା ଆସିବା ବାଟ । ପର୍ଶୁ ଦାଣ୍ଡ ଦୁଆରକୁ ଆସିବାମାତ୍ରେ ଗୋଟାଏ ହାର୍ଦ୍ଦିକ ସମ୍ବର୍ଦ୍ଧନାର ପ୍ରଫୁଲ୍ଲତାରେ ବୈରାଗୀର ହାଡୁଆ ମୁହଁ ପ୍ରଫୁଲ୍ଲିତ ହୋଇ ଉଠିଲା ଓ ସେ ସମ୍ଭାଷଣ କଲା, ''ପର୍ଶୁବାବୁ, କାଲି ରାତିରେ କଥାଟା ଶୁଣି ମୋ ମନ କଦମ୍ବ ଫୁଲ ପରି ଖୁସି ହେଇଗଲା । ଧର୍ମ ଅଛି ପର୍ଶୁବାବୁ, ଧର୍ମ ଅଛି । ତା' ନହେଲେ କୋରେଇ ସହରର ଏତେ ଲୋକ ଥାଉ ଥାଉ ଲକ୍ଷ୍ମୀ ଆସି ତମ କୋଳରେ ବସନ୍ତେ କାହିଁକି ?'' ପର୍ଶୁର ସେଇ ଉଦାସୀନ ଭାବ । ଯେପରି ତା'ର କାଲି ଆଉ ଆଜି ଭିତରେ କିଛି ପ୍ରଭେଦ ନାହିଁ । ବୈରାଗୀ ପୁଣି କଥାଟାକୁ ଉଖରେଇଲା ପରି କହିଲା; ''ନାଇଁ କ'ଣ କି, ଘରକୁ ଘର ଲାଗିକରି ଯେତେବେଳେ ଅଛୁ, ଆମର ତ ପୁଣି ବିପଦବେଳେ ସମ୍ପଦ ବେଳେ ତମ ପାଖରେ ଠିଆ ହେବାକୁ ପଡ଼ିବ ।'' ପର୍ଶୁ ସଂକ୍ଷିପ୍ତ ଉତ୍ତର ଦେଲା, ''ତା' ସତ ।''

ବୈରାଗୀର ବକ୍ତବ୍ୟ ଥିଲା ବହୁବିଧ ଓ ସୁଦୂରପ୍ରସାରୀ । ବୈରାଗୀ ପ୍ରସ୍ତୁତ ଥିଲା ପର୍ଶୁକୁ, ଦାସ୍ ସାହେବ ଓକିଲଙ୍କ ପାଖକୁ ନେଇଯିବା ପାଇଁ । ସହରରେ ଦାସ୍ ସାହେବ ଓକିଲଙ୍କର ବେଶ୍ ନାଆଁ ଡାକ ଅଛି ଆଉ ସିଏ ଧୁରୁଖୁରୁରେ ଏଇ ଛତିଶ ଲକ୍ଷ ଟଙ୍କାର ଲଟେରୀ ଟିକେଟ୍‌ଟାକୁ ନିଆ ଆଣ କରିପାରିବେ । ସକାଳେ ସଞ୍ଜେ ବୈରାଗୀ କୁହେ ଓ ସମୟ ସମୟରେ ଆସି ପର୍ଶୁ ବାରଣ୍ଡାରେ ବସେ । ପର୍ଶୁର କେତେ ବା ଯୁ' ? ଶେଷକୁ ଦିନେ ଦେଖାଗଲା ପର୍ଶୁ ଲଟେରୀ ଟିକଟ୍‌ଟିକୁ ପକେଟ୍‌ରେ ରଖି ଦାସ ସାହେବଙ୍କ ଚେମ୍ବର ଆଡ଼କୁ ମୁହେଁଇଛି ।

ଦାସ୍ ସାହେବ ଗୋଟାଏ ବର୍ଣ୍ଣିଳ ନାଇଟ୍ ଗାଉନ୍ ପିନ୍ଧି ଘର ଚଉକି ଉପରେ ବସି କ'ଣ ଇତସ୍ତତଃ ଭାବୁଥିଲେ । ବୈରାଗୀ ଓ ପର୍ଶୁର ଆଗମନ ପ୍ରତି ସେ ଯଥେଷ୍ଟ ମନଯୋଗୀ ନଥିଲେ; ପର୍ଶୁ ଲଟେରୀ ଟିକଟ ପାଇଥିବା କଥା ଶୁଣିବା ପରେ ମଧ୍ୟ । କିନ୍ତୁ ଯେତେବେଳେ ଟଙ୍କାର ଅଙ୍କଟା ଛତିଶ ଲକ୍ଷ ବୋଲି ଶୁଣିଲେ, ସେତେବେଳେ ତାଙ୍କର ଗୋଡ଼ ହଲା ଚଉକିଁରେ ବାଆଁକୁ ଡାହାଣ ମୃଦୁ ଆନ୍ଦୋଳନ ସବୁ ମୁହୂର୍ତ୍ତକ ପାଇଁ ସ୍ଥିର ହୋଇଗଲା । ମନେହେଲା, ତାଙ୍କର ପାଇପ୍‌ରୁ ସଦ୍ୟ ନିର୍ଗତ ଧୂମ୍ରକୁଣ୍ଡଳୀ ସ୍ୱାଭାବିକ ପ୍ରକ୍ରିୟାରେ ଉପରକୁ ନ ଉଠି ତାଙ୍କରି ଓଠ ପାଖରେ ମୁଣ୍ଡାଏ ପାଉଁସିଆ ବରଫ ପରି ଜମାଟ ବାନ୍ଧିଗଲା । କିନ୍ତୁ ଦାସ ସାହେବ ଅଳ୍ପ କିଛି ସମୟ ପରେ ସଂବିତ ଫେରିପାଇ ସାମାନ୍ୟ ବିସ୍ତାରିତ ଆଖିରେ ପର୍ଶୁକୁ ଚାହିଁଲେ । କିନ୍ତୁ ପର୍ଶୁ ମୁହଁରେ କିଛି ମାତ୍ର ପ୍ରତିକ୍ରିୟା ନାହିଁ । ସେମିତି କିଛି ବୁଝିପାରୁ ନଥିବା ଢେଗା ଢେଗା ଆଖି, ସାମାନ୍ୟ ନେସିଡ଼ି ପଡ଼ିଥିବା ଓଠ ଓ ସର୍ବୋପରି ଏକ ନିର୍ବୋଧ କରୁଣ ଅଭିବ୍ୟକ୍ତି ।

ଦାସ୍ ସାହେବଙ୍କ ଚେମ୍ବରରେ ଏକ ସୁବିସ୍ତୃତ ଯୋଜନା ସଙ୍ଗେ ସଙ୍ଗେ ତିଆରି କରାଗଲା । ଲଟେରୀ ଟିକଟର ଫଟୋଷ୍ଟାଟ୍ କପି କରାଯିବ, କେରଳ ଲଟେରୀର ଚେୟାରମ୍ୟାନ୍‌ଙ୍କ ନିକଟକୁ ଟେଲିଗ୍ରାମ୍ ପଠାଯିବ ଓ ପର୍ଶୁ ତରଫରୁ ଏତେଗୁଡ଼ାଏ ଟଙ୍କାକୁ ହେପାଜତ୍ ସହକାରେ ଆଣିବା ପାଇଁ ଦାସ ସାହେବ ଯିବେ ନିଜେ ଓ ସେଥିପାଇଁ ପର୍ଶୁ ଦାସ ସାହେବଙ୍କ ନାଆଁରେ ଗୋଟାଏ ପାୱାର୍ ଅଫ୍ ଆଟର୍ଣ୍ଣି ରେଜିଷ୍ଟ୍ରି କରିଦବ । ଅତି ଦ୍ରୁତ ଗତିରେ ଏଇ ଯୋଜନା ସବୁ ତାଲିକା କରାଯାଉଥିବା ବେଳେ ସମୟ ଓ ପରିସ୍ଥିତି ଅନୁଯାୟୀ ବୈରାଗୀ ମୁହଁର ଅଭିବ୍ୟକ୍ତି ଦ୍ରୁତ ପରିବର୍ତ୍ତନ ହଉଥାଏ ଜଣେ ପୋଖତ୍ ଅଭିନେତା ପରି । କେତେବେଳେ ଆଶ୍ଚର୍ଯ୍ୟ, କେତେବେଳେ ସନ୍ତୁଷ୍ଟ ତ କେତେବେଳେ ପୁଣି ଆତଙ୍କିତ । ଯାହାହେଉ, ଯୋଜନା ପାଇଁ ବେଶ୍ କିଛି ପ୍ରାରମ୍ଭିକ ଖର୍ଚ୍ଚର ପ୍ରୟୋଜନ ପଡ଼ିଲେ ତାହା ଦାସ୍ ସାହେବ ନିଜେ ବହନ କରିବେ ବୋଲି ପର୍ଶୁକୁ ଆଶ୍ୱାସନା ମଧ୍ୟ ଦେଇଥିଲେ ।

ଯୋଜନା ପରେ ପର୍ଶୁ ଘରକୁ ଫେରି ବିଳାସୀକୁ କିଛି କହିବା ପୂର୍ବରୁ ତା'ର ଦେଖା ହୋଇଥିଲା ଚକ୍ରଧର ରାୟ ଓରଫ୍ ଚକୁ ବାବୁଙ୍କ ସାଙ୍ଗରେ । ଚକୁବାବୁ ତାଙ୍କ ଆଦ୍ୟ ଯୌବନରେ ପର୍ଶୁରାମଙ୍କ ଭଉଣୀକି ବିବାହ କରିଥିଲେ ମଧ୍ୟ ମାତ୍ର ଦୁଇବର୍ଷର ବିବାହିତ ଜୀବନ ପରେ ସେ ତାଙ୍କର ସ୍ତ୍ରୀକୁ ତାଙ୍କ ଘରେ ଅସହାୟ ଅବସ୍ଥାରେ ଛାଡ଼ିଦେଇ ଦୀର୍ଘ ପଚିଶି ବର୍ଷ ଧରି କଲିକତାରେ ଅନ୍ୟ ଏକ ରକ୍ଷିତା ସହିତ ଜୀବନଯାପନ କରନ୍ତି ବୋଲି ଶୁଣାଯାଏ । କଲିକତାରେ ତାଙ୍କର ବୃତ୍ତି ହେଲା ଓଡ଼ିଶାର ମଫସଲରୁ କୁଲି ନେଇ ବଡ଼ ବଡ଼ କଣ୍ଟ୍ରାକ୍ଟରମାନଙ୍କୁ ଯୋଗାଇ ମଝିରେ କମିଶନ୍ ପାଇବା । ଆଜି ପର୍ଶୁ ସହିତ ତାଙ୍କର ଦେଖା ଦୀର୍ଘ କୋଡ଼ିଏ ବର୍ଷ ପରେ । ପର୍ଶୁ

ଚକ୍ରଧରଙ୍କୁ ଦେଖି ନମସ୍କାର କରି ପଚାରିଲା, 'ଚକୁଭାଇ, କେବେ ଆସିଲ ?'' କିନ୍ତୁ ଚକୁଭାଇଙ୍କର ଉତ୍ତର ଥିଲା ଅନ୍ୟ ରକମ । ଅଳ୍ପ ସମୟ ପୂର୍ବରୁ ପର୍ଶୁ ସହିତ ଆସୁଥିବା ଲୋକଟିର ସେ ପରିଚୟ ପାଇବାକୁ ଚାହିଁଥିଲେ ଏବଂ ବୈରାଗୀର ଯଥାଯଥ ପରିଚୟ ପାଇବା ପରେ ସେ ସାମାନ୍ୟ କପଟ କ୍ରୋଧ ପ୍ରକାଶ କରି କହିଲେ, ''ମୁଁ ଜାଣେ ପରା, ଆସୁ ଆସୁ ତୋ' ଚାରିପଟେ ଶାଗୁଣା ପରି ଟାଉଟର୍, ଟରଣୀ ଘେରିଯିବେଣି ।'' ପର୍ଶୁର ସେଇ ଭାବଲେଶ ଶୂନ୍ୟ ଚାହାଣୀ । ତା' ପରେ ପରେ ଚକୁ ଭାଇ ତାଙ୍କର ପୂର୍ବ ନିର୍ଦ୍ଧାରିତ ଖସଡ଼ାର ଏକ ସୁବିସ୍ତୃତ ତାଲିକା ଆରମ୍ଭ କରିଦେଲେ । ସେ ଖସଡ଼ା ଭିତରେ ଏଠୁ ବାହାରି ତ୍ରିଭେନ୍ଦ୍ରମ୍‌ରେ ପହଞ୍ଚି ଟଙ୍କା ଆଣି ପୁଣି ଘରକୁ ଫେରିଆସିବା ପର୍ଯ୍ୟନ୍ତ କୌଣସି କ୍ଷୁଦ୍ରତମ ଘଟଣା ପର୍ଯ୍ୟନ୍ତ ବାଦ ପଡ଼ିନାହିଁ । ଅଧା କଥାରୁ ପର୍ଶୁ ଦାଣ୍ଡଦୁଆରୁ ଉଠି ଘର ଭିତରକୁ ପଶିଲା । ଦୂରରୁ ବିଳାସୀ ହସି ହସି ଆସୁଛି । ବିଳାସୀକୁ ଏଡ଼େ ଖୁସି ହବାର ଆଗରୁ କେବେ ପର୍ଶୁ ଦେଖିନାହିଁ । ପାଖକୁ ଆସି ଖଣ୍ଡେ ଜରି ଶାଢ଼ୀ ପର୍ଶୁ ଆଗରେ ମେଲେଇ ଦେଇ ବିଳାସୀ କହିଲା, ''ଦେଖିଲଣି, ଚକୁଭାଇ ମୋ' ପାଇଁ କଲିକତାରୁ ଶାଢ଼ୀ ଆଣିଛନ୍ତି ।''

ସେଦିନ ସନ୍ଧ୍ୟାରେ ପର୍ଶୁ, ତା'ର ଦାଣ୍ଡପିଣ୍ଡାରେ ବସି ମନକୁ ମନ ଭାବୁଥିଲା ଯେ ସିଏ ଏଇ କିଛିଦିନ ହେଲା ସୁନପାମ୍ପୁଡ଼ି ବିକିବା ବନ୍ଦ କରି ଦେଇଥିବାଟା ବୋଧହୁଏ ଉଚିତ କଥା ହେଲା ନାହିଁ । ଏତିକିବେଳେ ଭୁଷ୍‌କିନା ସାଇକେଲ୍ ଉପରୁ ଓହ୍ଲେଇପଡ଼ିଲା ଭାସ୍କର ରାଓ । ରାଓ କହିଲା, ''ପର୍ଶୁ, ସାବଧାନ, ଏଇନା କେତ ଲୋକ କେତେ ବେଶ ନେଇ ଆସିବେ । ତମେ ଟିକେ ଭାବିଚିନ୍ତି କାମକର । କାହା ହାତକୁ ସେ ଲଟେରୀ ଟିକଟ ଯେମିତି ନ ଯାଏ ।'' ପର୍ଶୁ ତା'ର ଚିରାଚରିତ ରୀତିରେ ସବୁ ଚୁପ୍‌ଚାପ୍ ଶୁଣି ଯାଉଥିଲା । ରାଓ ଫେର୍ କହିଲା, ''ଭାଇ ପର୍ଶୁ ଶୁଣ, ତମ ଭାଗ୍ୟ ଯୋଗୁଁ ମତେ ବି ଦି' ହଜାର ଟଙ୍କା ମିଳିବ । ମୋର ଆଉ ଲୋଭ କରିବା ଦରକାର ନାହିଁ । ତମକୁ ଯାହା କହିଯାଉଛି ଠିକ୍ ଠିକ୍ ମନେ ରଖିଥିବ ଯେମିତି ।''

ଏତିକି କହିସାରି ସାଇକେଲ୍ ପ୍ୟାଡେଲ୍ ଉପରେ ଗୋଡ଼ ଦଉ ଦଉ ଦାଣ୍ଡଘରୁ ଚକୁଭାଇଙ୍କ ଉତ୍ତ୍ୟକ୍ତ କଣ୍ଠସ୍ୱର ଶୁଣାଗଲା, ''ଥାଉ ଥାଉ, ଏତେ ଉପଦେଶ ଦବା ଦରକାର ନାହିଁ । ଆମ ଘରକଥା କେମିତି ସମ୍ଭାଳିବାକୁ ହବ, ତା' ଆମେ ଜାଣୁ ।'' ଭାସ୍କର ରାଓ ସାଇକେଲ୍ ସିଟ୍ ଉପରେ ବସୁ ବସୁ ଟିକିଏ ଚଢ଼ା ଗଳାରେ କହିଲା, ''ହଇଓ ପର୍ଶୁ, ଇଏ ପୁଣି କିଏ ? ଯାଙ୍କୁ ତ ମୁଁ ଦିନେ ଦେଖିନି ?'' ପର୍ଶୁ ଦାଣ୍ଡଦୁଆରୁ ଉଠି ଘର ଭିତରକୁ ଗଲା । ବିଳାସୀକୁ ଡାକି କହିଲା, ''ହଇଓ ଶୁଣୁଚ, ଆଜି ଲଣ୍ଠନର କାଚ ଭଲକରି ପୋଛା ହେଇନାହିଁ ବୋଧହୁଏ । ଆଲୁଅଟା କେମିତି ମଇଳା ମଇଳା ଦିଶୁଚି ।''

ପର୍ଶୁ ପାଇଁ ଆସନ୍ତା ପନ୍ଦର କୋଡ଼ିଏ ଦିନ ଅତ୍ୟନ୍ତ କଷ୍ଟଦାୟକ ଥିଲା । ଓକିଲଙ୍କ ଚେମ୍ବରରୁ ବୈରାଗୀ ଚରଣୀ, ବୈରାଗୀ ଠାରୁ ଭାସ୍କର ରାଓ ଓ ଭାସ୍କର ରାଓ ଠାରୁ ଚକ୍ରୁଭାଇ । ସେମାନେ ସମସ୍ତେ ଯେପରି ପର୍ଶୁକୁ ଗୋଟାଏ ପମ୍ପ କମିଯାଇଥିବା ଧାବ୍‌ଡ଼ା ଫୁଟ୍‌ବଲ୍ ପରି ଏପଟକୁ ସେପଟ ଫିଙ୍ଗୁଥିଲେ । ଏମାନଙ୍କ ସହିତ ଯେ ଆହୁରି ଅନେକ ଖେଳ୍‌ଓ୍ୱାର୍ଡ଼ ନଥିଲେ ତା'ନୁହେଁ; କିନ୍ତୁ କାଳକ୍ରମେ ଅନ୍ୟମାନେ ଏଇ ବୁଦ୍ଧିମାନ ଖେଳ୍‌ଓ୍ୱାର୍ଡ଼ମାନଙ୍କ ସଙ୍ଗରେ ତାଳ ରଖି ନପାରି ପ୍ରତିଯୋଗିତାରୁ ଓହରି ଯାଇଥିଲେ ।

ସବୁଠାରୁ ବେଶୀ ଅସୁବିଧାରେ ପଡୁଥିଲା ପର୍ଶୁ ଖବରକାଗଜବାଲା ମାନଙ୍କ ପାଖରେ । କ'ଣ ସେ ଏତେ ସବୁ ଫନ୍ଦିଫିକର କରି ଏମାନେ ସବୁ ପଚାରନ୍ତି, ପର୍ଶୁ ତା'ର ଥଳକୂଳ କିଛି ପାଏନା । ସବୁ ପଚରା ଉଚୁରା କରି ସାରିବେ, ତା'ପରେ ପର୍ଶୁର ମୁହଁକୁ ଲକ୍ଷ୍ୟକରି ମାରିବେ ଦି'ଚାରିଟା ଚକ୍ ଚକ୍ ଆଲୁଅ । ପ୍ରାୟ ସବୁ ଖବରକାଗଜରେ ପର୍ଶୁର ଫଟ ଏଇ କିଛିଦିନ ହେଲା କ୍ରମାଗତ ବାହାରି ଚାଲିଚି । କିନ୍ତୁ ସବୁ ଫଟଗୁଡ଼ିକରେ ପର୍ଶୁର ସେଇ ଗୋଲ୍ ମୁହଁ, ଢେଗା ଢେଗା ଆଖି, ସାମାନ୍ୟ ନେସେଡ଼ି ପଡ଼ିଥିବା ଓଠ । ଆଉ ସର୍ବୋପରି ସେଇ କରୁଣ ନିର୍ବୋଧ ଅଭିବ୍ୟକ୍ତି । ଖବରକାଗଜବାଲାଙ୍କ ପାଇଁ ବା ପୃଥିବୀର ଲୋକମାନଙ୍କ ପାଇଁ ପର୍ଶୁର କୌଣସି ବାର୍ତ୍ତା ନାହିଁ । ତା'ର ଯଦି ବାର୍ତ୍ତା ଦବାର କ୍ଷମତା ଥାଆନ୍ତା, ତାହାହେଲେ ତା'ର ଏକମାତ୍ର ବାର୍ତ୍ତା ହୋଇଥାନ୍ତା, ''ମତେ ଟିକିଏ ଏକୁଟିଆ ରହିବାକୁ ଦିଅ ।'' କିନ୍ତୁ ସେପରି ଅବସ୍ଥା ଅଧୁନା ପର୍ଶୁ ପକ୍ଷରେ ଏକ ବିଡ଼ମ୍ବନା ମାତ୍ର ।

ପ୍ରତିଦିନ ପର୍ଶୁର ପାରିପାର୍ଶ୍ୱିକ ଅବସ୍ଥାର ଦ୍ରୁତ ପରିବର୍ତ୍ତନ ଘଟିଚାଲିଛି । ଏବେ କିଛିଦିନ ହେଲା ବୈରାଗୀ ଆଉ ଚକ୍ରୁ ଭାଇନା ଦାଣ୍ଡ ଦୁଆରେ ଚା' କପ୍ ଧରି ବିଡ଼ି ଟାଣି କ'ଣ ସବୁ ଅନେକ ସମୟ ଧରି ଗପୁଛନ୍ତି । ପର୍ଶୁ ପୁଣି ଥରେ ଦୁଇଥର ଦାସ୍ ସାହେବଙ୍କ ଚେମ୍ବରକୁ ଟଣା ହେଇଯାଇଛି । କିନ୍ତୁ ଦାସ ସାହେବଙ୍କ ଚେମ୍ବରରେ ଲଟେରୀ ଟିକଟ ବିକିଳାବାଲା ଭାସ୍କର ରାଓ ବସିଚି କାହିଁକି ? ରାଓ ବେଶ୍ ଗୋଡ଼ହାତ ମେଲେଇ ଚଉକି ଉପରେ ଜମିକରି ବସିଚି, ଘଣ୍ଟାପିନ୍ଧା ଡାହାଣ ହାତରେ ଖଣ୍ଡେ ଚାର୍‌ମିନାର୍ ଧରେଇଚି । ଆଉ ଦାସ୍ ସାହେବ ତାଙ୍କର ସେଇ ଘୂରା ଚଉକିରେ ବସି ପାଇପ୍‌ର ନାଡ଼ଟାକୁ ଦାନ୍ତରେ କାମୁଡ଼ି ଲଟେରୀ ଟିକଟ୍‌ର ମୁଣ୍ଡା ରସିଦ୍‌ଗୁଡ଼ାକୁ ଗୋଟାଏ ମୋଟା କାଚ ଦେଇ ନିରିଖେଇ ନିରିଖେଇ ଦେଖୁଛନ୍ତି ।

ପର୍ଶୁ ଆଶ୍ଚର୍ଯ୍ୟ ହୁଏ ଯେ ଦାସ୍ ସାହେବ, ବୈରାଗୀ, ଭାସ୍କର ରାଓ ଆଉ ଚକ୍ରୁ ଭାଇନା ପରସ୍ପରକୁ ଜାଣିଲେ କେମିତି । କିନ୍ତୁ ତଥାପି ସେକଥା ଉପରେ ସେ ବିଶେଷ ଗୁରୁତ୍ୱ ଆରୋପ କରେ ନାହିଁ । ଶୋଇଲାବେଳେ ବିଳାସୀ ସାଙ୍ଗରେ ପଦେ ଦି'ପଦ କଥାବାର୍ତ୍ତା ହୁଏ । ଆଉ ତା'ପରେ ପରେ ଶୋଇଯାଇ, ଦିବ୍ୟ ଘୁଙ୍ଗୁଡ଼ି ମାରେ ।

ୟା' ଭିତରେ ଦାସ ସାହେବ, ବୈରାଗୀ, ଚକ୍ରୁ ଭାଇନା ଇତ୍ୟାଦି ପର୍ଶୁର ଶୁଭାକାଙ୍କ୍ଷୀମାନେ ପର୍ଶୁ ପାଇଁ ଗୋଟିଏ ସର୍ବସମ୍ମତ ଯୋଜନା ତିଆରି କରିସାରିଛନ୍ତି । ପର୍ଶୁର ଆଉ ଏପଟ ସେପଟ ହବାର ବାଟ ନାହିଁ । ତା' ପାଇଁ ଗୁଳା ଠିକଣା କରି ଦିଆଯାଇଛି, ତାକୁ ସେହି ଗୁଳାରେଇ ଯିବାକୁ ପଡ଼ିବ ।

ଦରଜୀ ଆସି ପର୍ଶୁର ଫୁଲ୍‌ପ୍ୟାଣ୍ଟ ଆଉ କୋଟ୍ ପାଇଁ ମାପ ନେଇ ସାରିଲାଣି । ଯେତେ କଷ୍ଟ ହଉ ପଛକେ ପର୍ଶୁକୁ ପ୍ୟାଣ୍ଟ କୋଟ୍ ପିନ୍ଧିବାକୁଇ ପଡ଼ିବ । ତା'ନହେଲେ ତ୍ରିଭେନ୍ଦ୍ରମ୍‌ରେ ପହଞ୍ଚିଲାବେଳକୁ ଲଟେରୀ ଟଙ୍କା ଦେଉଥିବା ଲୋକମାନଙ୍କର ମୂଳରୁ ହିଁ ଗୋଟାଏ ସନ୍ଦେହ ହେଇପାରେ । ଅବଶ୍ୟ ପରଓ୍ୱା କରିବାର କିଛି ନାହିଁ । ସାଙ୍ଗରେ ନିଜେ ଟିକଟ ବିକିଲାବାଲା ମହଜୁଦ୍ ଅଛି । ହାଜର ଅଛନ୍ତି ଓକିଲ ଆଉ ଖୋଦ୍ ନିଜର ଭିଣୋଇ ଚକ୍ରୁ ଭାଇନା । ଟିକଟ ତ ଅଛି । ଆଉ ସନ୍ଦେହର ଅବକାଶ ରହିଲା କୁଆଡ଼େ ?

ପର୍ଶୁର ସୁନ୍‌ପାମ୍ପୁଡ଼ି ବିକ୍ରି କରିବା ବନ୍ଦ ହେଇଯିବା ପରେ ପର୍ଶୁର ଅଭାବର ସଂସାର ଆହୁରି ଅଭାବଗ୍ରସ୍ତ ହେଇପଡ଼ିବା ଉଚିତ୍ । କିନ୍ତୁ ତା' ହୋଇନାହିଁ । ବଜାରକୁ ଯାଇ ମାଛ, ପନିପରିବା, କେତେବେଳେ କେମିତି ମିଠା ପ୍ରାୟ ଚକ୍ରୁ ଭାଇନା ନେଇ ଆସନ୍ତି । ତିନିଦିନ ତଳେ ବୈରାଗୀ ଗୋଟାଏ ବଣା ଗୁଡ଼, ଆଉ କିଛି ବାରି ପିଜୁଳି ଦେଇ ଯାଇଥିଲା । ପର୍ଶୁର ଦାଣ୍ଡଘର ବୈଠକୀରେ ଚା', ବିଡ଼ି, ସିଗାରେଟ୍‌ର ଖର୍ଚ୍ଚ ପାଇଁ ଭାସ୍କର ରାଓ ପକେଟ୍‌ରୁ ପଟାପଟ୍ ପାଞ୍ଚଟଙ୍କିଆ ନୋଟ୍ ବାହାରି ପଡ଼େ । ଦାସ୍ ସାହେବ ଅବଶ୍ୟ ଟିକିଏ ଦୂରତ୍ୱ ରକ୍ଷା କରନ୍ତି । କିନ୍ତୁ ସେଦିନ ପର୍ଶୁ ଆଖି ସାମ୍ନାରେ ଦୁଇଟା କଡ଼କଡ଼ିଆ ଶହେଟଙ୍କିଆ ନୋଟ୍ କାଢ଼ି ବୈରାଗୀକୁ ଧରେଇ ଦେଲେ କଚିରୀର କାଗଜ କୋର୍ଟଫିସ୍ ଖର୍ଚ୍ଚ ପାଇଁ । କିନ୍ତୁ ପର୍ଶୁ ତାର ଏଇ ଅଭାବନୀୟ ସ୍ୱଚ୍ଛଳତାରେ ଖୁସି ବି ହୁଏ ନାହିଁ, ଦୁଃଖ ବି କରେ ନାହିଁ ।

ତ୍ରିଭେନ୍ଦ୍ରମ୍ ବାହାରିବାର ଦିନ ପାଖେଇ ଆସୁଛି । ୟା' ଭିତରେ ଟେଲିଗ୍ରାମ୍‌ର ଜବାବ୍ ଆସିଗଲାଣି । K K No. 744274 ଟିକଟ୍ ଫାଷ୍ଟ ପ୍ରାଇଜ୍ ପାଇଛି । ତା' ଭିନ୍ନ ଆଉ ଗୋଟାଏ ଲମ୍ବା ଚିଠି ମଧ୍ୟ ଆସିଛି ଯାହାର ସାରମର୍ମ ପଢ଼ି ଦାସ୍ ସାହେବ ପର୍ଶୁ ପାଇଁ ତର୍ଜମା କରି ଦେଇଛନ୍ତି ।

ଲେଖାଅଛି :—

ପ୍ରିୟ ମର୍ଦ୍ଦରାଜ ରାୟ,

ଆପଣ ଆମର ତେତିଶତମ ଉଠାଣର ପ୍ରଥମ ପୁରସ୍କାରର ବିଜେତା ହୋଇଥିବାରୁ ଆମେ ଆପଣଙ୍କୁ ଅଭିନନ୍ଦନ ଜଣାଉଛୁ । ଆପଣଙ୍କୁ ଏଠି ଇନ୍‌କମ୍

ଟିକସ ବାଦ୍ ଦେଇ  ଅବଶିଷ୍ଟ ଅର୍ଥ ପାଇଁ ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ଉପରେ ଗୋଟିଏ ଆକାଉଣ୍ଟ ପେୟି ଚେକ୍ ଦିଆଯିବ ।

ଆପଣ ଦୟାକରି ଆସିଲାବେଳେ ଲଟେରୀ ଟିକଟକୁ ସାଙ୍ଗରେ ଆଣିବା ପାଇଁ ଭୁଲିବେ ନାହିଁ ଓ ଆପଣଙ୍କର ଆସିବା ତାରିଖ ଯେତେ ସମ୍ଭବ ଆଗରୁ ଜଣାଇ ପାରିଲେ ଆମେ ଆପଣଙ୍କୁ ସ୍ୱାଗତ କରିବା ପାଇଁ ପ୍ରସ୍ତୁତ ହୋଇ ରହିଥିବୁ ।

ଆପଣ ଭାରତବର୍ଷର କେଉଁ ସହରରେ ଏଆର୍ କଣ୍ଡିସନ୍ଡ୍ ସିନେମା ହଲ୍‌ଟିଏ ପସନ୍ଦ କରିବେ, ସେ କଥା ଜଣାଇବେ । କିନ୍ତୁ ସିନେମା ହଲ୍ ଖରିଦ୍ କରିବା ସମ୍ପର୍କୀୟ ଆବଶ୍ୟକୀୟ ବ୍ୟବସ୍ଥା ଆପଣ କରିସାରିଲେ ଆମେ କେବଳ ତାହାର ମୂଲ୍ୟ ଦେଇଦେବୁ ।

ଆପଣଙ୍କ ପାଇଁ ସର୍ବାଧୁନିକ ମଡେଲ୍‌ର ଆମ୍ବାସାଡ଼ାର୍ କାର୍‌ଟିଏ ମଧ୍ୟ ପ୍ରସ୍ତୁତ କରି ରଖାଯାଇଛି । ରଙ୍ଗ ହଉଚି ଆଲ୍‌କିର୍ଟ ୟେଲୋ । ଆଶାକରେ ସେ ରଙ୍ଗଟି ଆପଣଙ୍କର ପସନ୍ଦ ହେବ ।

କହିବା ବାହୁଲ୍ୟ ଯେ, ଆପଣ ତ୍ରିଭେନ୍ଦ୍ରମ୍‌ରେ ରହିବା ସମୟରେ ଆମର ଆତିଥ୍ୟ ଗ୍ରହଣ କରିବାକୁ କୁଣ୍ଠିତ ହେବେ ନାହିଁ । ଆପଣଙ୍କ ପାଇଁ 'ହୋଟେଲ୍ ଗ୍ରୀନ୍ ଭ୍ୟାଲି'ରେ ଗୋଟିଏ ଦୁଇଶଯ୍ୟା ବିଶିଷ୍ଟ ରୁମ୍ ଓ ଲାଉଞ୍ଜର ବ୍ୟବସ୍ଥା କରାଯାଇଛି ଓ ଆମେ ଆଶା କରୁଚୁ ତ୍ରିଭେନ୍ଦ୍ରମ୍‌ରେ ଆପଣଙ୍କ ସ୍ୱଳ୍ପ ରହଣି ସମୟ ପ୍ରୀତିକର ହେବ ।

ଆପଣଙ୍କର ଅପେକ୍ଷାରେ

ଡାଇରେକ୍ଟର

କେରଳ ଷ୍ଟେଟ୍ ଲଟେରୀଜ୍

ଚିଠିଟି ତର୍ଜମା କରାଗଲା ବେଳେ ମଧ୍ୟ ପର୍ଶୁ ମୁହଁରେ ସେହି ଅପରିବର୍ତ୍ତିତ ଶୂନ୍ୟ ଦୃଷ୍ଟି ।

ଯଥା ସମୟରେ ଦରଜୀ ପୋଷାକସବୁ ଡେଲିଭରୀ ଦେଇଦେଇଛି । ଆସନ୍ତାକାଲି ରାତି ଦଶଟାବେଳେ ଛାଡୁଥିବା ମାଡ୍ରାସ୍ ମେଲ୍‌ରେ ଚାରିଟା ବର୍ଥ  ରିଜର୍ଭ କରାଯାଇଛି । ଏସବୁ ଖବର ପର୍ଶୁକୁ ମଧ୍ୟ ଠିକେ ଠିକେ କହିଦିଆଯାଇଛି । କିନ୍ତୁ ପର୍ଶୁ କେବଳ ଗୋଟିଏ କଥା ଜାଣେ ନାହିଁ । ତା'ହେଲା, କିଏ, କାହିଁକି ଏ ଦରଜୀର ପୋଷାକ ପଇସା ଓ ରେଲ୍ ଟିକଟ ପଇସା ଦଉଚି ।

ସେ ଯାହା ହଉ, ନିର୍ଦ୍ଧାରିତ ସମୟ ପୂର୍ବରୁ ପର୍ଶୁକୁ ପ୍ରସ୍ତୁତ କରାଗଲା । ସେ ଏକ ହାସ୍ୟାସ୍ପଦ ଅବସ୍ଥା । ଭାସ୍କର ରାଓ ଫୁଲ୍‌ପ୍ୟାଣ୍ଟଟାକୁ ଖୋଲି ଧରିଛି ଏବଂ ପଛପଟୁ

ପର୍ଶୁର ଦୁଇ କାନ୍ଧ ଭିତରେ ହାତ ଗଳେଇ ଚକୁଭାଇ ତାକୁ ଟେକିଧରି ତାକୁ ତା'ର ଗୋଡ଼ ଦୁଇଟିକୁ ଫୁଲ୍ ପ୍ୟାଣ୍ଟ ଭିତରେ ଭର୍ତ୍ତି କରିବା ପାଇଁ ବାରମ୍ବାର ଅନୁରୋଧ କରୁଛନ୍ତି । କୋଟ୍ ପିନ୍ଧିଲାବେଳେ ଅବସ୍ଥା ମଧ୍ୟ ତଦ୍ରୂପ୍ । ଗୋଟାଏ ହାତ ପଶିଗଲାଣି, କିନ୍ତୁ ଆର ହାତଟି କୌଣସିମତେ ପଶିପାରୁ ନାହିଁ । ବୈରାଗୀ ଓ ଭାସ୍କର ରାଓ ଦୁହେଁ ପର୍ଶୁର ବାଆଁ ହାତ ମୋଡ଼ି କୋଟ୍‌ର ହାତ ଭିତରେ ଭର୍ତ୍ତି କରିବାକୁ ଗଲାବେଳେ ପର୍ଶୁ ଚିତ୍କାର କରି ଉଠୁଚି–ମରିଗଲି–ମରିଗଲି । ପର୍ଶୁର ସ୍ତ୍ରୀ ବିଳାସୀ ସାମ୍ନାରେ ଠିଆହୋଇ ତାଳିମାରି ହସୁଚି–ଛତିଶ ଲକ୍ଷ ଟଙ୍କା କ'ଣ ଏତେ ସହଜରେ ହାତକୁ ଆସେ ?

ହଁ ଏହା ପୂର୍ବରୁ ଦାସ୍ ସାହେବ, ଭାସ୍କର ରାଓ ଓ ଚକୁଭାଇ ପ୍ରଭୃତିଙ୍କର ଯୌଥ ପରାମର୍ଶରେ ଲଟେରୀ ଟିକଟ ପାଇଁ ଅସାଧାରଣ ସତର୍କତା ଅବଲମ୍ବନ କରାଯାଇଛି । ସେମାନେ ସମସ୍ତେ ସେମାନଙ୍କ ତରଫରୁ ଲଟେରୀ ଟିକଟଟିକୁ ନେଇ ଏତେ ରାସ୍ତା ଯିବାପାଇଁ ନାସ୍ତି କରି ଦେଇଛନ୍ତି । ସେମାନେ କାହିଁକି ଏତେ ବିପଦ ମୁଣ୍ଡ ଉପରକୁ ନେବେ । ଯେତେହେଲେ ପର ଟଙ୍କା, ଦାୟିତ୍ୱ ସେଇ ନିଜେ ନବା ଉଚିତ । ସେଥିପାଇଁ ପର୍ଶୁ ତା'ର କାମିଜ ପିନ୍ଧିବା ପୂର୍ବରୁ, ଛାତି ପକେଟ୍‌ର ପଛପଟେ ଲଟେରୀ ଟିକଟଟିକୁ ରଖି ତା ଉପରେ ଆଉ ଖଣ୍ଡେ କନା ପୂରାପୂରି ସିଲେଇ କରିଦେବା ପାଇଁ ବିଳାସୀକୁ ନିର୍ଦ୍ଦେଶ ଦିଆଯାଇଛି ଓ ସେ ମଧ୍ୟ ସେ ନିର୍ଦ୍ଦେଶ ଯଥାଯଥ ପାଳନ କରିଛି । ଗଲା ! ଥରେ ଯେ ସିଲେଇ ହେଇଗଲା ଯାଇ ଫିଟିବ ତ୍ରିଭେନ୍ଦ୍ରମ୍‌ରେ ।

କୋଟ୍ ପ୍ୟାଣ୍ଟ ପରେ ମଧ୍ୟ ଜୋତା, ମୋଜା ପିନ୍ଧେଇବା ପାଇଁ ସେମାନଙ୍କୁ କମ୍ ଗଳଦ୍‌ଘର୍ମ ହବାକୁ ପଡ଼ିନାହିଁ । ପୋଷାକ ପିନ୍ଧା ସରିବା ପରେ ପର୍ଶୁ ହାତରେ ଖଣ୍ଡେ ଆଇନା ଧରି ତା'ର ଶରୀରର ବିଭିନ୍ନ ଅଂଶ ସବୁ ଧୀରେ ଧୀରେ ପରୀକ୍ଷା କଲା । ପର୍ଶୁକୁ ଏଇ ନବକଳେବର କେମିତି ଦେଖାଯାଉଥିଲା, ସେ ନିଜେ ଜାଣେ; କିନ୍ତୁ ଠିକ୍ ସେଇ ମୁହୂର୍ତ୍ତରେ ମନେ ହେଉଥିଲା ପର୍ଶୁ ମଧ୍ୟ ଜଣେ ରସିକ ବ୍ୟକ୍ତି, ସେ ମଧ୍ୟ ଥଟ୍ଟା, ତାମସା ଓ ବ୍ୟଙ୍ଗୋକ୍ତି ବୁଝିପାରେ । କିନ୍ତୁ ବାହାର ଲୋକଙ୍କ ପାଇଁ ପର୍ଶୁ ଦେଖାଯାଉଥିଲା କିମ୍ଭୁତକିମାକାର । ଯେମିତି ଗୋଟାଏ ଅପେକ୍ଷାକୃତ ସଭ୍ୟ ଓରାଙ୍ଗ୍ ଉଟାଙ୍ଗ୍‌କୁ ସାହେବି ପୋଷାକ ପିନ୍ଧେଇ ଚିଡ଼ିଆଖାନାରେ ପ୍ରଦର୍ଶନୀ କରାଯାଉଛି ।

ଟ୍ରେନ୍ ସମୟ ନିକଟ ହୋଇ ଆସିଲା ଓ ପ୍ରାୟ ଗୋଟିଏ କ୍ଷୁଦ୍ର ଶୋଭାଯାତ୍ରା କରି ପର୍ଶୁ ଓ ତା'ର ଶୁଭାକାଙ୍‌କ୍ଷୀମାନେ ପ୍ଲାଟ୍‌ଫର୍ମକୁ ବାହାରିଲେ । ପୋଷାକ ପିନ୍ଧିବାର ପର୍ବ ଯେ ବହୁ ସମୟ ଲାଗିବ, ତାହା ଆଗରୁ ଅନୁମାନ କରାଯାଉଥିଲା । ତେଣୁ ବ୍ୟବସ୍ଥା କରାଯାଇଥିଲା ଯେ, ପର୍ଶୁ ଓ ଚକୁଭାଇଙ୍କର ଖାଦ୍ୟ ଟିଫିନ୍ କେରିଅର୍

ଯୋଗେ ନିଆଯାଇ କମ୍ପାର୍ଟମେଣ୍ଟ ଭିତରେ ଖିଆଯିବ ? କମ୍ପାର୍ଟମେଣ୍ଟରେ ସମସ୍ତେ ଯଥାରୀତି ଉପବିଷ୍ଟ ହେଲେ ଓ ନିର୍ଦ୍ଦିଷ୍ଟ ସମୟରେ ମାଡ୍ରାସ୍ ମେଲ୍ କୋରେଇ ସହର ଛାଡ଼ି ମାଡ୍ରାସ୍ ଅଭିମୁଖେ ଚାଲିବାକୁ ଆରମ୍ଭ କଲା । କିନ୍ତୁ ପର୍ଶୁରାମ ଭ୍ରମରବର ମର୍ଦ୍ଦରାଜ ରାୟ ଓରଫ୍ ପର୍ଶୁ ଜାଣି ନଥିଲେ ଯେ ସେ ନିୟତି ସହିତ ଏକ ପୂର୍ବ ନିର୍ଦ୍ଧାରିତ ନିଷ୍ଠୁର ସାକ୍ଷାତ୍କାର ରକ୍ଷା କରିବା ପାଇଁ ରମାନା ହଉଛନ୍ତି ।

ଘଟଣାଟା ଜଣାପଡ଼ିଥିଲା ବେଜ୍‌ୱାଡ଼ା ଷ୍ଟେସନ୍‌ରେ ଓ ସେଥିପାଇଁ ଟ୍ରେନ୍ ସେଠାରେ ନିର୍ଦ୍ଧାରିତ ସମୟ ଠାରୁ ବହୁ ବିଳମ୍ବରେ ଛାଡ଼ିଥିଲା । ମୁଁ ଥିଲି ସେ ଘଟଣାର ତଦନ୍ତକାରୀ ଅଫିସର୍ । ମୁଁ ଯେତେବେଳେ ସେ କମ୍ପାର୍ଟମେଣ୍ଟ ଭିତରକୁ ଗଲି, ସେତେବେଳେ ଦେଖିଲି ଯେ ଗୋଟାଏ ତଳ ବର୍ଥରେ ଗୋଟାଏ ଶବ ପଡ଼ି ରହିଚି, ଯାହାକୁ ଅବଶ୍ୟ ପରେ ପର୍ଶୁରାମର ଶବ ବୋଲି ଚିହ୍ନଟ କରାଯାଇଥିଲା । ଶବ ଦେହରେ କୌଣସି ଧସ୍ତାଧସ୍ତି ହବାର କିଛି ହେଲେ ସଙ୍କେତ ନାହିଁ । କେବଳ ଏତିକି ପର୍ଶୁରାମ ପିନ୍ଧିଥିବା କାମିଜ୍‌ର ଛାତି ପକେଟ୍‌ଟିକୁ କୌଣସି ତୀକ୍ଷ୍ଣ ଅସ୍ତ୍ର ଦ୍ୱାରା ନିଖୁଣ ଭାବରେ କାଟି ନିଆଯାଇଚି ।

ଶବଟି ଭିନ୍ନ ସେ କମ୍ପାର୍ଟମେଣ୍ଟରେ ଆଉ କେହି ଉପସ୍ଥିତ ନ ଥିଲେ ବା କୌଣସି ଆସବାବ ପତ୍ରର ଚିହ୍ନବର୍ଣ୍ଣ ପର୍ଯ୍ୟନ୍ତ ନ ଥିଲା । ଶବଟିକୁ କମ୍ପାର୍ଟମେଣ୍ଟରୁ ଓହ୍ଲାଇ ଆଣି ଡାକ୍ତର ମାଇନା ପାଇଁ ପଠେଇ ଥିଲି ଓ ଅଳ୍ପ ସମୟ ପରେ ଜାଣିପାରିଥିଲି ଯେ ଲୋକଟି ଧୂତୁରା ମଞ୍ଜି ଖାଇ ପ୍ରାଣ ହରେଇଛି । ସବୁଠାରୁ ଆଶ୍ଚର୍ଯ୍ୟର କଥା ଲୋକଟିର ପକେଟ୍‌ରେ ଟ୍ରେନ୍ ଟିକଟ୍ ବା ପର୍ସ, ବା କିଛିମାତ୍ର ପଇସା ମଧ ନଥିଲା । ସମ୍ଭବତଃ ସେ ପ୍ରଚୁର ଅର୍ଥ ନେଇ ସଙ୍ଗରେ ଯାଉଥିଲେ ଓ କୌଣସି ସହଯାତ୍ରୀ ତାହା ଜାଣିପାରି ତାଙ୍କର ଖାଦ୍ୟରେ ଧୂତୁରା ମଞ୍ଜି ଦେଇ ତାଙ୍କଠାରୁ ସେ ଅର୍ଥ ଅପହରଣ କରିଛି ।

ଏହି ରହସ୍ୟ ଉଦ୍‌ଘାଟନ କରିବାକୁ ମତେ ଦୀର୍ଘଦିନ ଲାଗିଥିଲା । ପର୍ଶୁରାମର ଶବର ଫଟ ବିଭିନ୍ନ ଥାନାକୁ ପଠେଇ ସିଏ କୋରେଇରେ ରହେ ବୋଲି ଜାଣିପାରି କୋରେଇକୁ ଯାଇଥିଲି । କୋରେଇ ଠାରେ ପର୍ଶୁରାମର ବିଧବା ସ୍ତ୍ରୀ ଠାରୁ ଆମୂଳଚୂଳ ସମସ୍ତ ଘଟଣା ଶୁଣିଥିଲି, ଏବଂ ଏହା ମଧ ଜାଣିଥିଲି ଯେ ପର୍ଶୁରାମର ଛାତି ପକେଟ୍ କାଟି ଯେଉଁ ଲଟେରୀ ଟିକଟ ଅପହରଣ କରାଯାଇଛି, ତାହା ପ୍ରକୃତ ଟିକଟ୍ ନୁହଁ । ତାହା ଅନ୍ୟ ନମ୍ବରର ଗୋଟିଏ ଜାଲ୍ ଟିକଟ୍ ମାତ୍ର । ବିଳାସୀର ପରାମର୍ଶରେ ପ୍ରକୃତ ଟିକଟ୍‌ଟିକୁ ବହୁ ପୂର୍ବରୁ ରେଜିଷ୍ଟ୍ରି ଡାକ ଯୋଗେ କେରଳ ଲଟେରୀର ଚେୟାରମ୍ୟାନ୍‌ଙ୍କ ନିକଟକୁ ପଠାଇ ଦିଆଯାଇଥିଲା । ବିଳାସୀଠାରୁ ରେଜିଷ୍ଟ୍ରି ରସିଦ୍ ଓ କେରଳ ଲଟେରୀର ଚେୟାରମ୍ୟାନ୍‌ଙ୍କର ପ୍ରାପ୍ତି ସ୍ୱୀକୃତି ରସିଦ୍ ଜବତ୍ କରିଥିଲି ।

ସ୍ଥାନୀୟ ଓକିଲ ଦାସ୍ ସାହେବଙ୍କ ଘରକୁ ମଧ୍ୟ ଯାଇଥିଲି । ତାଙ୍କର ଅଫିସ୍ ଘର ତଲାସ କରି ତାଙ୍କ ଡାଏରୀରୁ ଟିକଟ୍ ନମ୍ବର, ପାୱାର୍ ଅଫ୍ ଆଟର୍ଣ୍ଣି ଓ କେରଳ ଲଟେରିଜ୍‌ର କିଛି ମୁଣ୍ଡା ଚେକ୍ ମଧ୍ୟ ଜବତ୍ କରିଥିଲି । କିନ୍ତୁ ପ୍ରଥମ ପୁରସ୍କାର ପାଇଥିବା ମୁଣ୍ଡା ଚେକ୍‌ଟି ତା' ଭିତରେ ନଥିଲା । ମୁଁ ଯା' ମଧ୍ୟ ପ୍ରମାଣ ପାଇଥିଲି ଯେ, ଦାସ୍ ସାହେବ ତାଙ୍କର ଅନେକ ମକଦ୍ଦମା ଥିବା ସତ୍ତ୍ୱେ ଚାରିଦିନ କାଳ କୋରେଇରୁ ଅନୁପସ୍ଥିତ ରହି କାକିନାଡ଼ାର ଗୋଟିଏ ହୋଟେଲ୍‌ରେ ଦୁଇଦିନ ଅବସ୍ଥାନ କରିଥିଲେ । ପ୍ରଶ୍ନ କରିବାରେ ଦାସ୍ ସାହେବ କହିଥିଲେ ଯେ, ସେ କାହିଁକି କାକିନାଡ଼ା ଯାଇଥିଲେ, ସେ କଥାର କୈଫିୟତ୍ ଦବାପାଇଁ ସେ ବାଧ୍ୟ ନୁହନ୍ତି । ଠିକ୍ କଥା ।

ଚକ୍ରଧର ରାୟ ଓରଫ୍ ଚକୁ ଭାଇନାଙ୍କୁ କଲିକତାର ଗୋଟାଏ ସନ୍ତସନ୍ତିଆ କୁଲିବସ୍ତିରେ ଆବିଷ୍କାର କରିଥିଲି । ତାଙ୍କର ଜମାନବନ୍ଦୀ ଏତିକି ଯେ, ସେଦିନ ରାତିରେ ପର୍ଶୁକୁ ମାଡ୍ରାସ୍ ମେଲ୍‌ରେ ବିଦାୟ ଦେଇ କଲିକତା ଫେରି ଆସିଲେ । ସେ ସେ' ବିଷୟରେ ଆଉ କିଛିମାତ୍ର ଜାଣନ୍ତି ନାହିଁ ।

କୋରେଇ ଷ୍ଟେସନ୍‌ରେ ରିଜର୍‌ଭେସନ୍ ଚାର୍ଟରୁ ପ୍ରକାଶ ପାଏ ଯେ, ସେଦିନ ପର୍ଶୁ ଯାଉଥିବା କମ୍ପାର୍ଟମେଣ୍ଟର ଚାରୋଟିଯାକ ବର୍ଥରେ କୋରେଇ ଠାରୁ ମାଡ୍ରାସ୍ ପର୍ଯ୍ୟନ୍ତ ଚାରିଜଣ ଯାତ୍ରୀଙ୍କର ଟିକଟ୍ କିଣାଯାଇଥିଲା । ଜଣକ ନାଆଁ କେବଳ ପର୍ଶୁରାମ ଭ୍ରମରବର ମର୍ଦ୍ଦରାଜ ରାୟ । କିନ୍ତୁ ଅନ୍ୟ ନାଆଁଗୁଡ଼ିକର ଦାସ ସାହେବ, ଚକ୍ରଧର ରାୟ ଓ ଭାସ୍କର ରାଓର ନାଆଁ ସହିତ କୌଣସି ସମ୍ପର୍କ ନାହିଁ ।

ଘଟଣା ଦିନ କମ୍ପାର୍ଟମେଣ୍ଟଟିକୁ ଟ୍ରେନ୍‌ରୁ ବିଚ୍ଛିନ୍ନ କରିଦେଇ କମ୍ପାର୍ଟମେଣ୍ଟର ବିଭିନ୍ନ ଜାଗାରେ ରହିଥିବା ଆଙ୍ଗୁଠି ଦାଗ ଗୁଡ଼ିକର ଅନେକ ଫଟୋ ଉଠେଇଥିଲି ଏବଂ ସେ ଫଟୋଗୁଡ଼ିକ ବିଭିନ୍ନ ଥାନାକୁ ଚିହ୍ନଟ କରିବା ପାଇଁ ପଠେଇଥିଲି । ଯାହା ରିପୋର୍ଟ ଆସିଥିଲା, ସେଥିରୁ ଜଣାଯାଏ ଯେ ବିଭିନ୍ନ ଅପରାଧରେ ବହୁବାର ଜେଲ୍ ଯାଇଥିବା ତିନିଜଣ କୁଖ୍ୟାତ ଅପରାଧୀଙ୍କର ଆଙ୍ଗୁଠି ଛାପ ସହିତ ଏଗୁଡ଼ିକ ମିଳିଯାଉଛି । ମୋର ଭାରୀ ଅବଶୋଷ ହୋଇଥିଲା । ମୁଁ ଜାଣିଥିଲେ ସେଇ କମ୍ପାର୍ଟମେଣ୍ଟଟିର ଦୁଇପଟେ ସଂଲଗ୍ନ ଦୁଇଟି କମ୍ପାର୍ଟମେଣ୍ଟର ଆଙ୍ଗୁଠି ଚିହ୍ନର ଫଟୋ ହୁଏତ ନେଇଥାଆନ୍ତି ଏବଂ ସେଥିରେ ହୁଏତ ଦାସ୍ ସାହେବ, ଚକ୍ରଧର ରାୟ ବା ଭାସ୍କର ରାଓର ଆଙ୍ଗୁଠିର ଛାପ ମିଳିପାରି ଥାଆନ୍ତା ।

ମୁଁ ଯାହା ଚେଷ୍ଟା କରିବାର କରିଛି, ଏପରିକି ସେଦିନର ଖାଦ୍ୟବାହୀ ଆଲୁମିନିୟମ୍ ଟିଫିନ୍ କେରିଅର୍‌ଟିକୁ ଚକ୍ରଧର ରାୟଙ୍କ ଘରୁ ଜବତ୍ କରି ବିଜ୍ଞାସୀ ଦ୍ୱାରା ଚିହ୍ନଟ କରେଇଛି ।

ଭାସ୍କର ରାଓକୁ ତ୍ରିଭେନ୍ଦ୍ରମ୍‌ର ଲଟେରୀ ଅଫିସ୍‌ରେ ତା'ର ଦୁଇ ହଜାର ଟଙ୍କା ଦାବି କରୁଥିବାବେଳେ ମୁଁ ଗିରଫ କରିଛି । ତାକୁ ପୁଲିସ୍ ହାଜତ୍ ଭିତରକୁ ନେଇ ପ୍ରଚୁର ମାଡ଼ ଦେଇଛି । ପ୍ରଚୁର ପ୍ରଲୋଭନ ଦେଖେଇଛି, ରାଜ ସାକ୍ଷୀ କରିବା ପାଇଁ । ମାଡ଼ ଭୟରେ ସବୁ ହଁ କରି ଭାସ୍କର ରାଓ କୋର୍ଟ ଉପରେ ସବୁ ମନା କରିଦେଇଛି । ତା'ର ଓକିଲ ଥିଲେ ଦାସ୍ ସାହେବ । ତଥାପି ଭାସ୍କର ରାଓକୁ ଓ ଚକ୍ରଧର ରାୟକୁ ମୁଦାଲାର କାଠଗଡ଼ାରେ ଭର୍ତ୍ତି କରି ବିଚାର କରେଇଚି । କିନ୍ତୁ ଚକ୍ରଧର ରାୟ ଠାରୁ ଜବତ୍ ହେଇଥିବା ଟିଫିନ୍‌କେରିଅର୍ ପରି ତ ଅନେକ ଟିଫିନ୍ କେରିଅର୍ ବଜାରରେ ମିଳେ । ତାହାହେଲେ ଗୋଟିଏ ଟିଫିନ୍ କେରିଅର୍‌ର ସାକ୍ଷ୍ୟ ଉପରେ ସେମାନେ ଦଣ୍ଡ ପାଇବେ କାହିଁକି ?

ବିଳାସୀ ସହିତ ତଦନ୍ତବେଳେ ମୋର ବହୁବାର ସାକ୍ଷାତକାର ହେଇଛି । ମୁଁ ତାକୁ ବାରମ୍ବାର ପଚାରିଚି ଯେ ଯଦି ସେ ଏଇ ଲୋକମାନଙ୍କୁ ସନ୍ଦେହ କରି ଅସଲ ଟିକଟ୍‌ଟିକୁ ଆଗତୁରା ରେଜିଷ୍ଟ୍ରି କରି ପଠାଇବା କଥା ଭାବିପାରିଲା, ତାହାହେଲେ ସେ ତା'ର ସ୍ୱାମୀକୁ ଏପରି ବିପଜ୍ଜନକ ଲୋକମାନଙ୍କ ସାଙ୍ଗରେ ତ୍ରିଭେନ୍ଦ୍ରମ୍ ପଠାଉଥିଲା କାହିଁକି ?

ବିଳାସୀ ଛେଦା ଶାଢ଼ୀର ଓଢ଼ଣା ଆଉ ଟିକିଏ ତଳକୁ ଟାଣି ଆଣି ଆଡ଼ ହୁଏ । ବାଁ ଗୋଡ଼ର ବୁଢ଼ା ଆଙ୍ଗୁଠିରେ ମାଟିର ଗାର ଟାଣି ମନକୁ ମନ କହିଲା ପରି ଅତି ନିମ୍ନ ସ୍ୱରରେ କହେ, ''ମୁଁ ଭାବିଥିଲି ଏମାନେ ଟିକଟ୍ ଖଣ୍ଡକୁ ଛଡ଼େଇ ନେବେ କି କ'ଣ । ମୁଁ କ'ଣ ଭାବିଥିଲି ଲୋକଟାକୁ ବିଷଦେଇ ମାରିଦେବେ ? ଛତିଶ ଲକ୍ଷ ଟଙ୍କା—କିବା ଟଙ୍କା ।''

କୋରେଇ ସହରର ଲୋକେ ପର୍ଶୁକୁ ବିସ୍ମୃତ ହୋଇ ଯାଇଥିବେଣି କିନ୍ତୁ ସେମାନେ ଏବେ ମଧ୍ୟ କୌତୁହଳ ସହିତ ଲକ୍ଷ୍ୟ କରନ୍ତି ଯେ, ଗୋଟାଏ ମାଟିଆ ଧୂସରା କୁକୁର ପ୍ରତିଦିନ ୧୦ଟା ଠାରୁ ଦୁଇଟା ପର୍ଯ୍ୟନ୍ତ ସ୍କୁଲ୍ ପାଖରେ ଓ ତା'ପରେ ୩ଟା ଠାରୁ ୫ଟା ପର୍ଯ୍ୟନ୍ତ ବସ୍‌ଷ୍ଟାଣ୍ଡରେ ଓ ୬ଟା ଠାରୁ ୭ଟା ପର୍ଯ୍ୟନ୍ତ ସିନେମା ହଲ୍ ପାଖରେ ଅହେତୁକୀ ଭାବରେ ବୁଲି ବୁଲି ପର୍ଶୁର ଘରକୁ ଫେରିଯାଇ ତା'ର ଦାଣ୍ଡଦୁଆରେ କୁଣ୍ଡଳୀ ପକାଇ ଶୁଏ ।



# ହଂସ ସଙ୍ଗୀତ

ରମାପଦ ଚୌଧୁରୀ ତାଙ୍କର ସ୍ୱତନ୍ତ୍ର କକ୍ଷରେ ନିଜକୁ ପ୍ରସ୍ତୁତ କରୁଥିଲେ । ଆଉ ଅଳ୍ପ ସମୟ ପରେ ନିମନ୍ତ୍ରିତ ଅତିଥିମାନେ ଗୋଟି ଗୋଟି ହେଇ ଆସିବାକୁ ଆରମ୍ଭ କରିବେ ଏବଂ ଠିକ୍ ସାତଟା ତିରିଶ ମିନିଟ୍‌ରେ ତାଙ୍କର ସହଧର୍ମିଣୀ ଉମା ଚୌଧୁରୀଙ୍କର ବିବାହର ରୌପ୍ୟ ଜୟନ୍ତୀ ମହା ସମାରୋହରେ ପାଳିତ ହେବ ।

ରମାପଦ ଦର୍ପଣରେ ନିଜକୁ ଲକ୍ଷ୍ୟ କରି ଦେଖୁଥିଲେ—ତାଙ୍କର ଚିବୁକର ବର୍ତ୍ତୁଳତା ତଥାପି ଯଥେଷ୍ଟ ଉଦ୍ଧତ ଅଛି ଏବଂ ତାଙ୍କର ଦୃଷ୍ଟିଭଙ୍ଗୀରେ ଏକ ଚିରନ୍ତନ ନିଷେଧାଜ୍ଞାର ଇଙ୍ଗିତ ଅଛି ଯାହାପାଇଁ ତାଙ୍କୁ ବେଶୀ କଥା କହିବାକୁ ପଡ଼େ ନାହିଁ । ସେ ଥରେ ମାତ୍ର ଅନେଇ ଦେଇ ପ୍ରତିପକ୍ଷକୁ ବୁଝେଇ ଦେଇପାରନ୍ତି ଯେ ସେ ଏ ପ୍ରକାର ଆଚରଣରେ ବା କର୍ମପଛାରେ ନିଜର ସମ୍ମତି ଦେଇପାରୁ ନାହାନ୍ତି ।

ନାକର ଠିକ୍ ବାଁ ପଟକୁ ଗୋଟିଏ କଳାଦାଗ ମଳିନ ପଡ଼ିଆସିଥିଲେ ମଧ୍ୟ ସ୍ପଷ୍ଟ ବୁଝାପଡ଼େ ଯେ ଏହା ଗୋଟାଏ ପୁରୁଣା ବିଷାକ୍ତ ବ୍ରଣର କ୍ଷତ ଚିହ୍ନ । ସବୁଥର ଦର୍ପଣ ସାମ୍ନାରେ ବସିଲେ ରମାପଦଙ୍କର ହାତ ସେଇ ବ୍ରଣ ଦାଗଟା ପାଖକୁ ଆପେ ଆପେ ଚାଲିଯାଏ ।

ମଝିରେ ଗୋଟାଏ ବାଥ୍‌ରୁମ୍‌ର ବ୍ୟବଧାନ ଛାଡ଼ିଦେଲେ ଆର ଘରେ ଉମାର ରହିବା ଘର । ସେ କ'ଣ କରୁଛି ? ଉମା ବୋଧହୁଏ ଚିନ୍ତାକରୁଛି ଆଜିର ଅକେଜନ୍ ପାଇଁ ହାଲ ଡିଜାଇନ୍‌ର ଶାଢ଼ି ପିନ୍ଧିବ ନାଁ ନିଜକୁ ରକ୍ଷଣଶୀଳତାର ଗାମ୍ଭୀର୍ଯ୍ୟରେ ସଜେଇ ପିନ୍ଧିବ ପଚିଶ ବର୍ଷ ତଳର ସେଇ ଜରିକାମ କରା ବୁଟିଦାର୍ ଶାଢ଼ି ।

୧୯୪୪ ମସିହା ନଭେମ୍ବର ୧୧ ତାରିଖରେ ସେଇ ଶାଢ଼ି ପିନ୍ଧିଥିଲା ଉମା ଓ ବିବାହ ଉତ୍ସବରେ ନିମନ୍ତ୍ରିତ ହେଇ ଆସିଥିବା ଜଣେ ବିଦେଶୀ ମହିଳା ବନ୍ଧୁ ଫଟୋ ନେଲାବେଳେ ମନ୍ତବ୍ୟ କରିଥିଲେ– ଭାରତବର୍ଷର ଏଇ ନବବଧୂ ବେଶର ପଟାନ୍ତର ପୃଥିବୀରେ ନାହିଁ– ''ଦେ ଲୁକ୍ ସୋ ସୁଇଟ୍'' । ଆଉ ସେଇ ସୁଇଟ୍ ଉମାକୁ କୋଳାଗ୍ରତ କରି ସେ ଦିନର ମଧ୍ୟରାତ୍ରିରେ ରମାପଦ କହିଥିଲେ– ଉମା, ତମ ଓଠର ରଙ୍ଗର ଏକମାତ୍ର ତୁଳନା ତମର ପାଦର ତଳିପା । ତୁମର ପାଦରେ ପଦ୍ମ ଫୁଟେ ଯାହାର ମଧୁ ମୁଁ ଆହରଣ କରେ ତମ ଓଠରୁ ।

ଉମା ବିସ୍ମୟରେ ରମାପଦଙ୍କୁ ଚାହିଁ ରହି କହିଥିଲା, ତମକୁ ଏତେ ଦିନ ଧରି ଜାଣିଲେ ମଧ ଆଜି ମନେ ହେଉଚି ମୁଁ ଯେମିତି ତମକୁ ନୂଆ କରି ଆବିଷ୍କାର କରୁଛି...ତମେ ଏତେ ରୋମାଣ୍ଟିକ୍ ।

ରମାପଦଙ୍କର ଚିନ୍ତାଧାରାର ଖିଅ ଛିଣ୍ଡିଗଲା ।

ହଲ୍ ଘରେ ପପ୍ ସଙ୍ଗୀତର ଝଙ୍କାର କାନ୍ଥ ଠେଲି ଯେମିତି ଭିତରକୁ ପଶିଆସୁଛି । ଏଇଟା କୋ' ଗୀତର ସୁର ?

''ଚନ୍ଦ୍ର ତମେ ଆସ ।

ମୋ ପାଖରେ ଶୋଇଥିବା ଶ୍ୱେତ ପରୀର ଆଖିରେ ନିଦର ମଦ ଢାଳି ଦେଇଯାଅ ।

ଚନ୍ଦ୍ର—ତୁମକୁ ଦୁହାଇ—ଚନ୍ଦ୍ର ତମେ ଆସ...''

ତାଙ୍କର ଅଜାଣତରେ ରମାପଦ ଗୁଣୁ ଗୁଣୁ କରି ଉଠିଥିଲେ ।

କିନ୍ତୁ ପ୍ରାୟ ସମୟ ହେଲା । ଉମା କ'ଣ କରୁଚି ? ଉମା ବୋଧହୁଏ ତା'ର ବଡ଼ ଝିଅର ଡ୍ରେସିଂ ଟେବୁଲ୍‌ର ଲିପ୍‌ଷ୍ଟିକ୍‌ଟାକୁ ହାତରେ ଧରି ଚିନ୍ତା କରୁଛି, ଓଠରେ ଲିପ୍‌ଷ୍ଟିକ୍‌ର ଗାର ଦେଇ ଏକ ଉଜ୍ଜ୍ୱଳ ରଙ୍ଗ ଆଣିବା ଉଚିତ୍ ହେବ କି ନାଁ ? ଉମା କ'ଣ ତା'ର ଦୁଇଟା ଆୟତ ଆଖିର ଧାରରେ କଜ୍ଜଳର ଗାର ଟାଣିବ ?

ଅତୀତ—ଦୂର ଅତୀତରେ ହଜେଇ ଦେଇ ଆସିଥିବା ଲୁଚକାଳି ଖେଳ କଥା ମନେ ପଡୁଚି ରମାପଦଙ୍କର । କେହି କାହାର ପ୍ରସାଧନ କକ୍ଷକୁ ଯାଇପାରିବେ ନାହିଁ । ହଲ୍ ଘରେ ଉତ୍ସବ ପାଳନ ପାଇଁ ରମାପଦଙ୍କର ବନ୍ଧୁ ଓ ସନ୍ତାନମାନେ କି ଆୟୋଜନ କରୁଛନ୍ତି ତାହା ମଧ ରମାପଦଙ୍କୁ ଅଜଣା । ରମାପଦ ଓ ଉମା ପ୍ରତ୍ୟେକ ନିଜ ନିଜର ଘରେ ନିଜର ଖୁସି ମୁତାବକ ଆଜିର ଅକେଜନ୍ ପାଇଁ ପ୍ରସ୍ତୁତ ହେବେ । ସେଇଠି ପ୍ରଥମଥର ପାଇଁ ରମାପଦ ତାଙ୍କର ପ୍ରାଚୀନ ନବବଧୂକୁ ଆଉ ଥରେ ଆବିଷ୍କାର କରିବେ ।

ଜଳତରଙ୍ଗ ପରି ଘଣ୍ଟାର ଏକ ଉଷ୍ଣ ମଧୁର ଶିଞ୍ଜନ ରମାପଦଙ୍କୁ ଖୁବ୍ ଆସ୍ତେ ଅଥଚ ନିଶ୍ଚିତ ଭାବରେ କହିଗଲା ଯେ ''ଠିକ୍ ସାତଟା ବାଜିଲା—ଭାବୁଚ ବସି କ'ଣ ? ନିଜକୁ ପ୍ରସ୍ତୁତ କର ।'' ତରତରରେ ରମାପଦ ୱାର୍ଡ଼ରୋବ୍‌ଟାକୁ ଖୋଲି ଦେଲେ ଏବଂ ତାଙ୍କ ଆଖି ଆଗରେ ବହୁ ବିଭିନ୍ନ ପ୍ରକାରର ନେକ୍‌ଟାଇର ଏକ ଶୋ'କେସ୍ ମୁହୂର୍ତ୍ତକରେ ଉନ୍ମୁକ୍ତ ହୋଇଗଲା । ପୃଥିବୀର ବିଭିନ୍ନ ପ୍ରାନ୍ତରୁ ଆନୀତ ନେକ୍‌ଟାଇର ଏଇ ସମୁଦ୍ରର ମୁକ୍ତାଟିକୁ ଆହରଣ କରିବା ବେଳେ ରମାପଦଙ୍କର ମନରେ ଏକ ମିଶ୍ର

ଅନୁଭୂତି ଆସେ । ପ୍ରତିଟି ନେକ୍‌ଟାଇ ପଛରେ ଏକ ଦୂରାନ୍ତର ଯାତ୍ରାର ସ୍ମୃତି ଜଡ଼ିତ । ରୂପଜୀବୀ ଗଳିର ନିମନ୍ତ୍ରଣ ଅଧୀର କାମୁକା ନାରୀମାନଙ୍କ ପରି ପ୍ରତ୍ୟେକଟି ନେକ୍‌ଟାଇ ଝୁଲିଝୁଲି ରମାପଦଙ୍କ ହାତର ସ୍ପର୍ଶକୁ ଅପେକ୍ଷା କରିଛନ୍ତି ।

ଆଜିର ନେକ୍‌ଟାଇ ବାଛିବା ରମାପଦଙ୍କ ପକ୍ଷରେ ଏକ ଦୁରୂହ ପରୀକ୍ଷା । ନେକ୍‌ଟାଇ, ମନୁଷ୍ୟର ସମସ୍ତ ପରିଧାନ ସାମଗ୍ରୀ ମଧ୍ୟରେ ସବୁଠାରୁ କ୍ଷୁଦ୍ରତମ । କିନ୍ତୁ ସେଇ ସ୍ୱଳ୍ପ ପରିସର ମଧ୍ୟରେ ରମାପଦଙ୍କୁ ନିଜର ରୁଚି—ଉମାର ପସନ୍ଦ ଓ ଆଜିର ଉତ୍ସବର ଦାବି ମଧ୍ୟରେ ଏକ ସୁନ୍ଦର ସମାଧାନ କରିବାକୁ ହବ ।

କିନ୍ତୁ ଏ କ'ଣ ? ରମାପଦଙ୍କର ହାତଟା ଯେଉଁ ନେକ୍‌ଟାଇଟା ପାଖରେ ଅଟକି ଗଲା ସେଥିରେ ରମାପଦଙ୍କର ମନେ ହେଲା ଯେପରି ତାଙ୍କର ବଂଗ୍ଳୋଟା ଏକ ଭୂମିକମ୍ପର ଆଘାତରେ ଦୋଳାୟିତ ହେଉଛି । ତାଙ୍କର ମୁଣ୍ଡକୁ ଯେପରି ଝଲକାଏ ରକ୍ତ ଉଠି ଆସିଲା । ଏକ ଅସହ୍ୟ ଯନ୍ତ୍ରଣାରେ ରମାପଦ ଛଟପଟ ହେବାକୁ ଲାଗିଲେ । ଯେମିତି କେହି ଗୋଟାଏ ତୀକ୍ଷ୍ଣ ଅସ୍ତ୍ର ଧରି ତାଙ୍କର ଗୋଟାଏ ବହୁ ପୁରାତନ କ୍ଷତକୁ ବାରମ୍ବାର କୋରେଇ ପକଉଚି । ଏଇ ନେକ୍‌ଟାଇଟା ହୁଏତ ତାଙ୍କର ରଖିବା ଉଚିତ ନଥିଲା ।

ପ୍ରାୟ କୋଡ଼ିଏ ବର୍ଷ ତଳେ ରମାପଦ ଯେତେବେଳେ ସରକାରୀ କାମରେ ନାଇଜେରିଆରେ ଦେଢ଼ବର୍ଷ ରହି ଭାରତବର୍ଷକୁ ଫେରିଲେ, ସେତେବେଳେ ସାନ୍ତାକ୍ରୁଜ୍ ବିମାନଘାଟିରେ ତାଙ୍କୁ ପାଛୋଟି ଆଣିବାକୁ ଯାଇଥିଲେ ତାଙ୍କର ବନ୍ଧୁ ମହେଶ ଓ ଉମା ଏବଂ ମହେଶର ଏଇ ନେକ୍‌ଟାଇଟାକୁ ଦେଖି ତାରିଫ୍ କରି ରମାପଦ କହିଥିଲେ, "ଅଦ୍‌ଭୁତ ହେଇଛି ତୋର ଏଇ ନେକ୍‌ଟାଇଟା—ତୋର ରୁଚିକୁ ମୁଁ କିପରି ବଧେଇ ଦେବି ବୁଝିପାରୁ ନାହିଁ ।" ମହେଶ ଆତ୍ମତୃପ୍ତିରେ ସାମାନ୍ୟ ଲାଜେଇ ଯାଇଥିଲା । ମହେଶ ସେତେବେଳେ ଉମାକୁ ଚାହିଁଥିଲା କି ନାହିଁ ରମାପଦଙ୍କର ଖିଆଲ୍ ନାହିଁ । କିନ୍ତୁ ମାତ୍ର ଅଳ୍ପଦିନ ପରେ ରମାପଦ ସେଇ ନେକ୍‌ଟାଇ ଓ ଅନ୍ୟ ବହୁ ସାମଗ୍ରୀ ପାଇଁ ଗୋଟାଏ ବିଲ୍ ପାଇଥିଲେ କଲିକତାର ଏକ ବିଖ୍ୟାତ ଡିପାର୍ଟମେଣ୍ଟାଲ୍ ଷ୍ଟୋର୍‌ରୁ । ବିଲ୍‌ଟା ଆସିଚି ଉମା ନାଁ'ରେ । ଏଇ ସୁନ୍ଦର ଅଦ୍‌ଭୁତ ରୁଚିସମ୍ପନ୍ନ ନେକ୍‌ଟାଇଟାର ଜନ୍ମବୃତ୍ତାନ୍ତ ଜାଣିବାରେ ରମାପଦଙ୍କର ସାମାନ୍ୟ ବିଳମ୍ବ ହୋଇ ନଥିଲା । ଉମା ବୋଧହୁଏ ସେତେବେଳେ ସହଜ ଭଙ୍ଗୀରେ ଗୁଣୁ ଗୁଣୁ ଗୀତ ଗାଇ ବାଥ୍‌ରୁମ୍‌ରୁ ବାହାରି ଆସୁଥିଲା । ରମାପଦ ପଚାରିଥିଲେ, ତମେ କଲିକତା ଯାଇଥିଲ ? ଉମାର ଗୀତ ତା'ର ଓଠରେ ଅଧା ରହି ଯାଇଥିଲା । ସ୍ୱଳ୍ପାବୃତ ଉମା ଥମକି ଠିଆ ହୋଇ ଯାଇଥିଲା ପ୍ରାୟ ଗୋଟାଏ ମିନିଟ୍ ସିନେମାର ଫ୍ରିଜ୍ ପରି । କିନ୍ତୁ ସେଇ ମୁହୂର୍ତ୍ତକ

ପାଇଁ । ତା'ପରେ ଉମା ଏକ ବିପନ୍ନ ନାରୀର ଆତ୍ମରକ୍ଷାର କୌଶଳରେ ଚଞ୍ଚଳ ହେଇ ଉଠିଥିଲା... ହଁ ଯାଇଥିଲି—ତମେ ତ ଜାଣ—ମୁଁ ଲେଖିଥିଲି ଲାଷ୍ଟ ଚିଠିରେ । ଓଃ ! ତମେ ବୋଧେ ସେ ଚିଠିଟା ପାଇନାହଁ ।

ରମାପଦ ନିଶ୍ଚଳ ଭାବରେ ବସି ଚୁରୁଟ୍ ଟାଣୁଥିଲେ । କିନ୍ତୁ ଅସ୍ଥିର, ଅସହିଷ୍ଣୁ, ଗ୍ଲାନି-ଚଞ୍ଚଳ ଉମା ତରତରରେ କହି ଚାଲିଥାଏ—

"ସେଠି ଅକସ୍ମାତ ମହେଶ ସାଙ୍ଗେ ଦେଖାହେଲା—ଓଃ ! ତମେ ତ ଦେଖିଚ ସେଇ ଯେଉଁ ନେକ୍‌ଟାଇଟା—ସେଇଠି ମହେଶ କିଣିଥିଲା, ଆଉ କହିଥିଲା ମୋ ବିଲ୍ ସହିତ ଏକାଠି ବିଲ୍ କରିଦେବାକୁ, ସେ'ଟା ବୋଧହୁଏ ବିଲ୍‌ରେ ଥିବ ? ଇତ୍ୟାଦି ଇତ୍ୟାଦି ।"

ରମାପଦ କିନ୍ତୁ ସେଦିନ ଉମାକୁ ଯନ୍ତ୍ରଣାରେ ଛଟପଟ ହେବାର ଲକ୍ଷ୍ୟ କରି ତାକୁ ମୁକ୍ତିଦେଇ କହିଥିଲେ... ·ଆଜିକାଲି ଚିଠିଗୁଡ଼ା ଅନେକ ହଜୁଛି । ଏନି ଓ୍ୱେ, ମୁଁ ପୁନରାବୃତ୍ତି କରୁଚି ଟାଇ-ଟା ପ୍ରକୃତରେ ଭାରୀ ସୁନ୍ଦର ହେଇଛି ।

ଉମା ଆଉ କିଛି ଜବାବ୍ ଦେଇନାହିଁ କେବଳ ଏକ ନିର୍ଦ୍ଦିଷ୍ଟ ଭଙ୍ଗୀରେ ବେକଟାକୁ ବୁଲେଇ ନେଲାବେଳେ ତାର କେଶର ଲଘୁ ବନ୍ଧନ ଖସିଯାଇ ଅର୍ଦ୍ଧଉନ୍ମୁକ୍ତ ପୃଷ୍ଠ ଦେଶକୁ ଆବୃତ୍ତ କରି ଦେଇଥିଲା । ତା'ର କିଛିଦିନ ପରେ ଠିକ୍ ଜର୍ମାନୀ ଚାଲିଯିବା ପୂର୍ବରୁ ଖଣ୍ଡିଏ ଚିଠି ସହିତ ମହେଶ ଟାଇଟାକୁ ରମାପଦଙ୍କ ପାଖକୁ ପଠେଇ ଦେଇଥିଲେ— "ତତେ ଟାଇଟା ଭଲ ଲାଗିଥିଲା, ସେଥିପାଇଁ ପଠେଇ ଦେଲି"—କେବେ ମୁଁ ଜର୍ମାନୀରୁ ଫେରିବି ବା' କେବେ ଦେଖା ହବ ସେ କଥା ଅନୁମାନ କରିବା ସମ୍ଭବ ନୁହେଁ ।

କିନ୍ତୁ ସେଦିନର ଏଇ କ୍ଷୁଦ୍ର ଘଟଣାରେ ରମାପଦଙ୍କ ମନରେ ସନ୍ଦେହର ଯେଉଁ କୀଟ କାଟିଥିଲା ତାହା ଗତ ବାଇଶି ବର୍ଷ ଧରି କ୍ରମାଗତ ରମାପଦ ଓ ଉମା ଦେବୀଙ୍କର ବିଶ୍ୱାସର ସ୍ତମ୍ଭକୁ କ୍ଷୀଣରୁ କ୍ଷୀଣତର କରି ଆସିଛି । ରମାପଦ କୁଶଳୀ ଅଭିନେତା, ତେଣୁ ସେ ସହରରୁ ଦୂରକୁ ଗଲେ ଚିଠି ଲେଖନ୍ତି, "ଉମା ଡାର୍ଲିଂ—ମୁଁ ସୁଇଜର୍‌ଲ୍ୟାଣ୍ଡ ପରି ପୃଥିବୀ ପ୍ରସିଦ୍ଧ ଟୁରିଷ୍ଟ ଆକର୍ଷଣ ସ୍ଥାନରେ ମଧ୍ୟ ତମର ଅବର୍ତ୍ତମାନରେ ମ୍ରିୟମାଣ ହୋଇ ପଡ଼ିଛି । ମୋର ନିର୍ଦ୍ଧାରିତ ସମୟରୁ ଦି' ଦିନେ ବାତିଲ୍ କରି ଦେଇ ଖୁବ୍ ଶୀଘ୍ର ଫେରି ଯାଉଛି ତମ ସହିତ ମିଳିତ ହେବା ପାଇଁ । ମୋର ଗଭୀର ଚୁମ୍ବନ ଗ୍ରହଣ କରିବ ।" କୌଣସି ପାର୍ଟିକୁ ଗଲାବେଳେ ଉମାଦେବୀଙ୍କୁ ପରୀ ପରି ସଜାନ୍ତି ଆଉ ଫେରିଲା ବେଳେ କୁହନ୍ତି, "ତମେ ଜାଣ ଉମା, ଆଜିର ପାର୍ଟିରେ ତମେ ଥିଲା ମକ୍ଷିରାଣୀ—ସିମ୍ପ୍ଲି ଗ୍ରେସ୍‌ଫୁଲ୍ ।" ସକାଳେ

ବ୍ରେକ୍‌ଫାଷ୍ଟ ଟେବୁଲ୍‌ରେ ବନ୍ଧୁମାନଙ୍କୁ କୁହନ୍ତି—ଉମା ଯେପରି ଭାବରେ ମତେ ଖୁଆଇବାକୁ ଆରମ୍ଭ କରିଚି ସେଥିରେ ମତେ ଖୁବ୍ ଶୀଘ୍ର ଡାଏଟିଂ କରିବାକୁ ପଡ଼ିବ । ଉମା ମଧ ନାଚର ପାର୍ଟନର୍ ପରି ତାଙ୍କର ଗୋଡ଼ ଚଳାନ୍ତି । ନାଁ ଡିଅର୍—ତମେ ଅନେକ ଝଡ଼ି ଗଲଣି—ଯାହା ଖାଉଚେଣି ନାଁ । ପ୍ରାୟ ସନ୍ଧ୍ୟା ହେଇ ଆସିଲାବେଳେ ପ୍ରତିଦିନ ଦେଖାଯାଏ ଲନ୍‌ରେ ଦୁଇଖଣ୍ଡ ଚଉକି ମୁହାଁମୁହିଁ ପଡ଼ିଚି—ଟେବୁଲ୍ ଉପରେ ଚା' କଫିର ସମ୍ଭାର ଆଉ ରମାପଦଙ୍କର ବାହୁଲଗ୍ନା ହେଇ ବସିଛନ୍ତି ଉମାଦେବୀ । ସେମାନଙ୍କର ଡିନର୍ ଖିଆ ହୁଏ ପ୍ରାୟ ଘ୭.୩୦ ମିନିଟ୍‌ରେ ଏବଂ ତା'ପରେ ପରେ ଘରର ବବୁର୍ଚି, ଖାନ୍‌ସାମା ଆଉ ଡ୍ରାଇଭର୍ ବିଦାୟ ନିଅନ୍ତି । ରମାପଦ ତାଙ୍କର ଶୋଇବା ଘରକୁ ଯାଇ ଗିଲାସରେ ହୁଇସ୍କି ଢାଳନ୍ତି—ଚୁରୁଟ୍ ଲଗାନ୍ତି, ଆଉ କୌଣସି ଏକ ମାଗାଜିନ୍‌ର ପୃଷ୍ଠା ଲେଉଟାନ୍ତି—ଆଉ ଉମାଦେବୀ ନାଇଟି ଗାଉନ୍‌ରେ ତାଙ୍କର ଦେହ ଆବୃତ କରନ୍ତି । ତାଙ୍କର ବେଡ୍ ଟେବୁଲ୍‌ରେ ଥିବା ଗୋଟାଏ ସ୍ଲିପିଂ ପିଲ୍‌ର ବୋତଲରୁ ଦୁଇଟା ବଟିକା ଗଳାଧଃକରଣ କରନ୍ତି । ରାତ୍ରି ଶୟନ ପୂର୍ବରୁ ଏଇ କେତେ ଘଣ୍ଟା ଯେ କେହି ଦେଖିଲେ ମନେ କରିବ ଏମାନେ ଗୋଟିଏ ହୋଟେଲ୍‌ରେ ବାସ କରୁଥିବା ଦୁଇଜଣ ଅପରିଚିତ ଯାତ୍ରୀ । ପରସ୍ପରଠାରୁ ବିଚ୍ଛିନ୍ନ ଦୁଇଟି ଦ୍ୱୀପ । ଏମାନଙ୍କ ଭିତରେ ଥିବା ଶେଷ ସେତୁଟିକୁ ସମୁଦ୍ରର ଲୁଣି ପାଣି କେଉଁଦିନୁ ଚାଟି ନେଇ ଯାଇଛି ।

ପ୍ରାୟ ବେଳ ହେଲା, ରମାପଦ ଇଚ୍ଛା କରି ସେଇ ନେକ୍‌ଟାଇଟାକୁ ପିନ୍ଧି ତରତର ହେଇ ହଲ୍‌କୁ ବାହାରିଲେ । ସେଠି ଅନେକ କୋଳାହଳ । ଉମା ଦେବୀଙ୍କର ଆସିବାକୁ ତଥାପି ବିଳମ୍ବ ଅଛି । ହଲ୍‌ରେ ଉଚ୍ଛ୍ୱସିତ ହାସ୍ୟରୋଳ ଭିତରେ କେହି ଜଣେ କହିବାର ଶୁଣାଗଲା, "ମୁଁ ଗୋଟାଏ ବଡ଼ ବାଜି ଜିଣିଗଲି—କହିଥିଲି ନାଁ ମିଃ ଚୌଧୁରୀ ନିଶ୍ଚୟ ଧୈର୍ଯ୍ୟଚ୍ୟୁତ ହେଇ ପାଞ୍ଚ ମିନିଟ୍ ଆଗରୁ ଆସିଯିବେ ।" ତା'ପରେ କରମର୍ଦ୍ଦନ ଓ ଉଚ୍ଛ୍ୱସିତ ଅଭିନନ୍ଦନ । "ହେଇ, ଡେଭିଲ୍ ୟୁ ଲୁକ୍ କିଲିଂ ।" ଜଣେ ମଧ୍ୟବୟସ୍କା ମହିଳା କହିଲେ, "ଏତେ ସିଡକ୍‌ଟିଭ୍ ଲୁକ୍ ଦିଅ ନାହିଁ ଚୌଧୁରୀ... ସ୍ତ୍ରୀ ଲୋକମାନଙ୍କର ଧୈର୍ଯ୍ୟଚ୍ୟୁତି ହେଇପାରେ"... ଉଲ୍ଲାସର କଳରବକୁ ମୁହୂର୍ତ୍ତକ ପାଇଁ ନୀରବ କରିଦେଇ ଆସିଲେ ଉମାଦେବୀ । ଅଦ୍‌ଭୁତ । ଆଖିପତା ଉପରର ଗୋଲାପୀ ପ୍ରଲେପ ମଧ୍ୟ ଲଗେଇବାକୁ ଭୁଲି ନାହାନ୍ତି । କିଏ ଜଣେ କହିଲା, "ମୁଁ ପରିବର୍ତ୍ତିତ ପ୍ରସ୍ତାବ ପେଶ୍ କରୁଚି—କିଏ କହେ ଏଟା ଏମାନଙ୍କର ରୌପ୍ୟ ଜୟନ୍ତୀ—ଆଜି ଏମାନଙ୍କର ବିବାହ ।" କଥାଟାକୁ ଆହୁରି ବିଶ୍ୱାସଯୋଗ୍ୟ କରିବାକୁ କିଏ ଜଣେ ଡଜନେ ହବ ପ୍ଲେଟ୍ ଭାଙ୍ଗି ଚୁରମାର୍ କରିଦେଲା । ଟେବୁଲ୍ ଉପରେ ଖାଦ୍ୟ ସମ୍ଭାରର ଅଭାବ ନାହିଁ । ଅନେକ କେକ୍, ମହମବତୀ, ରଙ୍ଗୀନ୍ ବେଲୁନ୍ ଆଉ ମଦର ଗିଲାସର ଝନତ୍‌କାରରେ ପାର୍ଟି ଶେଷ ହେଲା ବେଳକୁ ରାତି ସାଢ଼େ ଦଶଟା । ଆନନ୍ଦ ପ୍ରକାଶ

କରି ଓ ଏହି ଦିବସର ପୁନରାବୃତ୍ତି କାମନା କରି ପ୍ରତ୍ୟେକ ଅତିଥି ବିଦାୟ ନେଲେ । ଶେଷ ଅତିଥି ବିଦାୟ ନେଇ ସାରିବା ପରେ ଏବେ ବି ବିରାଟ ହଲ୍‌ଟା ଭିତରେ ଖାଲି ଅର୍ଦ୍ଧଭୁକ୍ତ ପ୍ଲେଟ୍‌ର ଅବିଶିଷ୍ଟାଂଶ, ମଦର ବୋତଲ–ଛିଣ୍ଡା ଜରି କାଗଜ ଆଉ ପାଦରେ ଦଳି ହେଇ ଯାଇଥିବା ଫୁଲର ତୋଡ଼ା ସବୁ ଏବଂ ଏଇ ପରିବେଶରେ ପରସ୍ପରକୁ ମୁହୂର୍ତ୍ତକ ପାଇଁ ଚାହିଁ ଠିଆ ହେଇ ରହିଲେ ରମାପଦ ଓ ଉମାଦେବୀ । କେତେବେଳେ ରମାପଦ ତାଙ୍କର ଦୁଇ ହାତ ଉମାଦେବୀଙ୍କ କାନ୍ଧ ଉପରେ ରଖି ସାମାନ୍ୟ ହସି କହିଲେ, ''ଉମା ଡାର୍ଲିଂ, ଆଜିର ଏଇ ଉତ୍ସବ ପରେ ତମକୁ କ'ଣ ଲାଗୁଛି ମୁଁ ଜାଣେନା, କିନ୍ତୁ ମୋର ମନେ ହେଲା ଯେମିତି ସର୍କସର ଏରିନାରୁ ଏଇ ଜୋକରଟିକୁ ବାଦ ଦେଇ ସମସ୍ତେ ବିଦାୟ ନେଇଛନ୍ତି ।'' ଉମାଦେବୀ ତଥାପି ନିରୁତ୍ତର । ଦୁହେଁ ନିଃଶବ୍ଦରେ ହଲ୍ ଘରୁ ବାହାରି ଆସିଲେ ନିଜ ନିଜର ଘର ଭିତରକୁ । ଠିକ୍ ଯେଉଁ ମୁହୂର୍ତ୍ତରେ ରମାପଦ ତାଙ୍କର ପିନ୍ଧା ପୋଷାକ ଓଟାରି ଓଟାରି ଘର ଭିତରେ ଇତସ୍ତତଃ ଫିଙ୍ଗୁଥାନ୍ତି ସେତିକିବେଳେ ଉମାଦେବୀ ତାଙ୍କର ବକ୍ଷ ବନ୍ଧନୀ ମୁକୁଳା କରି ନାଇଟ୍ ଗାଉନ୍ ଭିତରକୁ ପ୍ରବେଶ କରୁଥିଲେ । ଦୁହେଁ ବୋଧହୁଏ ଠିକ୍ ଏକା ସମୟରେ ହୁଇସ୍କି ବୋତଲ ଓ ସ୍ଲିପିଂ ଟାବ୍‌ଲେଟ୍‌ର ବୋତଲର ଠିପି ଖୋଲିଲେ । କୋଳାହଳର ଅବ୍ୟବହିତ ପରେ ପରେ ଯେପରି ଏକ ମୃତ୍ୟୁର ନୀରବତା ଘର ଉପରେ ଓହଳି ରହିଚି । ଉମାଦେବୀ ଝରକା ଦେଇ ବାହାରର ଅଷ୍ଟମୀ ଚନ୍ଦ୍ରକୁ ଦେଖୁଥିଲେ ଏବଂ ତାଙ୍କର ଆଖି ତଳେ ଦୁଇ ବିନ୍ଦୁ ଲୁହର ଶିଶିର ବିନ୍ଦୁ ଲାଗି ରହିଥିଲା ।

ହଠାତ୍ କବାଟ ଖଟ୍ ଖଟ୍ କରି ରମାପଦ ଡାକିଲେ, ଡାର୍ଲିଂ–ଉମା ଡାର୍ଲିଂ ! ଉମାଦେବୀଙ୍କର ଆଖି ଏକ ଆନନ୍ଦର ସମ୍ଭାବନାରେ ମୁହୂର୍ତ୍ତକ ପାଇଁ ଉଜ୍ଜ୍ୱଳ ହେଇ ଉଠିଲା । ସେ ଗାଉନ୍‌ର ହାତରେ ଆଖିଟାକୁ ପୋଛି ନେଇ ତରତରରେ ଦୁଆର ଖୋଲିଲେ ।

ରମାପଦ ଖଣ୍ଡେ ବହି ଉମାଦେବୀଙ୍କ ଆଡ଼କୁ ବଢ଼େଇ ଦଉ ଦଉ କହିଲେ ମୁଁ ତମକୁ ଆଜିକାର ଉପହାର ଦେବାକୁ ଭୁଲି ଯାଇଥିଲି–କ୍ଷମା କରିବ । ରମାପଦ ଫେରିଲେ ଓ ଏକ ନିଷ୍ଠୁର ହତାଶାରେ ବିଡ଼ମ୍ବିତ ହେଇ ଉମାଦେବୀ ଦୁଆର ବନ୍ଦ କଲେ ପୁଣି ଥରେ ।

ଟେବୁଲ୍ ଉପରୁ ଚଷମାଟା ନେଇ ଟେବୁଲ୍ ଲାଇଟ୍ ଆଲୁଅ ତଳେ ଉମାଦେବୀ ବହିର ଶିରୋନାମା ଉପରେ ଆଖି ବୁଲେଇଲେ–ଲେଖା ଅଛି–

''ବିଧବାର ପ୍ରଥମ ସପ୍ତାହର ସାମାଜିକ ଆଚରଣ ସଂପର୍କରେ ନିୟମାବଳୀ ।''



# ଅକାଳ ବୋଧନ

କାଲି ରାତିରେ ଯାହା ଯାହା ଘଟିଗଲା ସେ କଥା ବିନୟ ବାବୁ ଠିକ୍ ଠିକ୍ ମନେ ପକାଇ ପାରୁ ନାହାନ୍ତି । ତାଙ୍କର ଅତି ପରିଚିତ ସହର ସମ୍ବଲପୁର । ଯାହା କିଛି ଘଟିଯାଇଛି ସେ ସବୁ ସମ୍ବଲପୁରର ପରିସର ଭିତରେ ହେଲେ ମଧ୍ୟ ତାହା ବିଚ୍ଛୁରିତ ବିଭିନ୍ନ ପ୍ରାନ୍ତରେ । ବେଙ୍କାର ଘର ପାଖରେ ଟ୍ରାଫିକ୍ ଆଇଲାଣ୍ଡ ଆସିଲା କୁଆଡୁ ଅଥବା ବ୍ଲକ୍ ଘର ପାଖରେ କୁଆଡୁ ଆସିଲା ସ୍ଲମ୍ କ୍ୱାଟର୍ ? ସମ୍ବଲପୁରର ମାନଚିତ୍ରଟା ଯେମିତି କେହି ତିନି ଭାଗରେ ଚିରିଦେଇ ଓଲଟା ଓଲଟି କରିଦେଇଛି, ଯାହା ଫଳରେ ଭୌଗୋଳିକ ପରିସ୍ଥିତିଟା ବଦଳି ଯାଇଛି ବିନୟବାବୁଙ୍କ ମନ ଭିତରେ ।

ତାଙ୍କର ବିଛଣା ଛାଡ଼ିବାର ସମୟ ଅନେକବେଳୁ ଗତ ହୋଇଗଲାଣି ଏବଂ ଝର୍କା ଦେଇ ଭାଦ୍ରର ଖରା ଅନେକ ବାଟ ଘର ଭିତରକୁ ଅନୁପ୍ରବେଶ କରି ଆସିଲାଣି ।

ବିନୟବାବୁ ବିଛଣାରେ ଶୋଇ ଶୋଇ ତଥାପି ଚିନ୍ତା କରୁଛନ୍ତି, ହୁଏ ତ କାଲି ରାତିର ଘଟଣାକୁ ସିଏ କ୍ରମ-ଅନୁଯାୟୀ ସଜାଇ ନେଇ ପାରିବେ ।

ଟେଲିଫୋନ୍ ବାଜି ଉଠିଲା ।

ବିନୟବାବୁଙ୍କର ମାଂସପେଶୀ ସବୁ ଯେମିତି ହଠାତ୍ ଶକ୍ତ ହୋଇଗଲା ଏବଂ ସେ ତାଙ୍କର ଡାହାଣ କାନ ତକିଆ ଉପରେ ମାଡ଼ିଧରି ଆଖି ଖୋଲି ସ୍ଥିର ଚକ୍ଷୁରେ ଚାହିଁ ରହିଲେ କେବଳ । ଯେମିତି ଅସହାୟ ଭାବରେ ଚାହିଁ ରହନ୍ତି ବନ୍ୟଜନ୍ତୁମାନେ କୌଣସି ବିପଦର ଅତି ନିକଟରେ ଅକସ୍ମାତ୍ ପହଞ୍ଚିଗଲେ ।

ଟେଲିଫୋନ୍ ବାଜୁଛି । ପ୍ରଥମ ଦୁଇଟି ରିଙ୍ଗ୍ ଜଲ୍‌ଦି ଜଲ୍‌ଦି ଓ ତାପରେ ସାମାନ୍ୟ ବିରତି । ପୁନରାୟ ସେଇ ରିଙ୍ଗ୍ । ବିନୟବାବୁଙ୍କର ମନେ ହେଉଥିଲା ଯେପରି କୌଣସି ଜରୁରୀ ପରିସ୍ଥିତିରେ ମୁକାବିଲା କରିବାକୁ ସାଇରେନ୍ ବାଜୁଛି ତୁହାକୁ ତୁହା ।

ନାଁ, ଟେଲିଫୋନ୍ ସେ ଧରିବେ ନାହିଁ । ବିନିୟବାବୁ ସିଦ୍ଧାନ୍ତ କଲେ । ଟେଲିଫୋନ୍ ବାଜି ଚାଲିଚି । ରିସିଭର୍ ନ ଉଠେଇଲେ ମଧ୍ୟ ବିନୟବାବୁ ଶୁଣିପାରୁଛନ୍ତି ଆରପଟୁ କିଏ ଜଣେ ଗଳା ଫଟାଇ ଚିତ୍କାର କରୁଚି— ବିନୟବାବୁ ଅଛନ୍ତି ? ବିନୟବାବୁ ! ଅଛନ୍ତି ବିନୟବାବୁ ! ବିନୟବାବୁ... ।

ଯାଉ ! ଟେଲିଫୋନ୍‌ଟା ବାଜି ବାଜି ଫାଟିଯାଉ, ତଥାପି ମଧ୍ଯ ନୁହଁ– ଯେ ପର୍ଯ୍ୟନ୍ତ ବିନୟବାବୁ କାଲି ରାତିର ଘଟଣାସବୁ କ୍ରମିକ ଭାବରେ ନ ସଜେଇଛନ୍ତି ।

ଗତକାଲି ଅନ୍ୟସବୁ ଦିନ ପରି ବିନୟବାବୁଙ୍କ ପାଇଁ ଏକ ସାଧାରଣ ଦିନ ଥିଲା । ସବୁଦିନ ପରି ତାଙ୍କର ଅଫିସ୍‌ର ପ୍ରକୋଷ୍ଠଟି ଥିଲା ପରିଚ୍ଛନ୍ନ ଓ ତାଙ୍କର ଦକ୍ଷିଣ ବାତାୟନ କାଚ ଭିତରେ ସେ ଅନେକେ ଦୂରରେ ଥିବା ନୀଳ ପାହାଡ଼ଟିକୁ ଅନେକ ସମୟ ଧରି ଚାହିଁ ନିଜର ଅତୀତର କିଛି କିଛି ଘଟଣା ରୋମନ୍ଥନ କରିଥିଲେ । କିନ୍ତୁ କାହିଁ ବେଳା କଥା ତ ତାଙ୍କର ମନେ ପଡ଼ି ନଥିଲା ଆଦୌ ! ସେ ସବୁଦିନ ପରି ତାଙ୍କର ନେକ୍‌ଟାଇ ନିଖୁଣ ଭାବରେ ଗଣ୍ଠି ପକାଇଥିଲେ ଓ ତାଙ୍କର କ୍ରେପ୍‌ସୋଲ୍ ଜୋତା ପିନ୍ଧି କୌଣସି ଶବ୍ଦ ନ କରି ଅଫିସ୍ ଭିତରକୁ ଆସିଥିଲେ ଠିକ୍ ଦଶଟା ତିରିଶ ମିନିଟ୍‌ରେ । ତାଙ୍କର ଆସିବାର ସୂଚନା ପାଇ ମ୍ୟାନେଜିଂ ବ୍ରଦର୍ସର ଅଫିସ୍‌ରେ ଧାଡ଼ି ଧାଡ଼ି ହେଇ ବସି ରହିଥିବା ଶତାଧିକ କର୍ମଚାରୀ ଏକା ସାଙ୍ଗରେ ଚଉକି ଛାଡ଼ି ଉଠି ଠିଆ ହୋଇଥିଲେ ।

ବିନୟବାବୁ ମ୍ୟାନେଜିଂ ବ୍ରଦର୍ସର ତରୁଣତମ ଡାଇରେକ୍ଟର । କର୍ମକୁଶଳତା ତାଙ୍କର ସଫଳ ଜୀବନର ଚାବିକାଠି । ସେ ଆସି ତାଙ୍କର ଚଉକିରେ ବସି ପ୍ରଥମ ଗତାନୁଗତିକ କାଗଜପତ୍ର ସବୁ ଦସ୍ତଖତ କରିସାରି ଗୋଟିଏ ଲଙ୍ଗ୍ ଡିଷ୍ଟାନ୍‌ସ କଲ୍ ବୁକ୍ କରିଥିଲେ ଦିଲ୍ଲୀକୁ ଏବଂ ସେହି କଲ୍‌ଟିକୁ ଅପେକ୍ଷା କରି ଚାହିଁ ରହିଥିଲେ ତାଙ୍କର ଦକ୍ଷିଣ ବାତାୟନ ଦେଇ ସେଇ ରହସ୍ୟାବୃତ ନୀଳ ପାହାଡ଼ଟିକୁ ।

ଏତେ ଶୀଘ୍ର ଟେଲିଫୋନ୍ ବାଜିବ ବୋଲି ସେ ଆଶା କରି ନଥିଲେ । ବିନୟବାବୁ ରିସିଭର୍ ଉଠେଇଲେ ଓ କହିଲେ, ବାସ୍ । ତାହା ଟ୍ରଙ୍କକଲ୍ ନୁହଁ । ସେପଟୁ ଗୋଟିଏ ଲଳିତ ନାରୀ କଣ୍ଠ ଭାସି ଆସିଲା ।

''କୁହନ୍ତୁ ମୁଁ କିଏ ?''

ବିନୟବାବୁ ପ୍ରକୃତରେ ହତଭମ୍ଭ ହେଇଗଲେ–ପ୍ରଶ୍ନ କରିବାର ଭଙ୍ଗୀରୁ ମନେହୁଏ, ଭଦ୍ରମହିଳା ଶିକ୍ଷିତା ଓ ରୁଚିସମ୍ପନ୍ନା ।

''ମତେ କ୍ଷମା କରିବେ, ମୁଁ ଠିକ୍ ପ୍ଲେସ୍ କରିପାରୁ ନାହିଁ ।''

''ସେ ଭୁଲ୍ ଆପଣଙ୍କ ନୁହଁ–ସେ ଭୁଲ୍ ସମୟର–ମୋ ସହିତ ଆପଣଙ୍କର ପରିଚୟ ଅନେକ ଦିନର–କିନ୍ତୁ ଏବେ କେତେ ବର୍ଷ ଧରି ଆପଣଙ୍କ ସହିତ ଦେଖାହେଇ ନାହିଁ–ଏଥର କୁହନ୍ତୁ କିଏ ?''

''ଆଚ୍ଛା ! ଆପଣ ଭୁଲ୍ କରୁନାହାନ୍ତି ତ ! ମୁଁ ବିନୟ ଦାସ ।''

''ହଁ, ଆପଣ ବିନୟ ଦାସ, ଯିଏ ଗୋଟାଏ ସମୟରେ ଠିକ୍ କରି ପାରୁ ନଥିଲା ସବିତାକୁ ବିବାହ କରିବ ନାଁ, ବେଳାକୁ ।''

''ଓଃ ! ଏଥର ବୁଝିଲି– କିନ୍ତୁ ହଠାତ୍, ଏଠି କେମିତି ? କେବେ ?''

ସେପଟୁ ତାରସ୍ୱରରେ ଜବାବ୍ ଆସିଲା ।

''ମୁଁ କିଏ ? ସବିତା ନା ବେଳା—ନା ତମର ନୂଆ ବାନ୍ଧବୀ !''

ବିନୟ ଦାସ ସାମାନ୍ୟ ହସି ଜବାବ୍ ଦେଲେ, ''ମୋର ନୂଆ ବାନ୍ଧବୀ ହେଇନାହାନ୍ତି ଏଯାଏଁ; ଆଉ ତମେ ବୋଧହୁଏ ସବିତାର ଖବର ରଖିନାହଁ ବେଳା !''

''କାହିଁକି ? କ'ଣ ହେଲା ସବିତାର ?''

''ସବିତା ବିବାହ କରିବାର ମାତ୍ର ଛ'ମାସ ପରେ ଆତ୍ମହତ୍ୟା କଲା ।''

''ମୁଁ ସତରେ ଦୁଃଖିତ ବିନୟ—ମୁଁ ଜାଣି ନଥିଲି—ତେବେ ଗୋଟାଏ ଖବର ତମକୁ ଦେଇ ରଖେ, ମୁଁ ଆତ୍ମହତ୍ୟା କରିନାହିଁ ।''

ବିନୟ ସହଜ ହବାକୁ ଚେଷ୍ଟା କଲେ ।

''ଛାଡ଼ ସେକଥା ବେଳା ! ତମର କହିବାର ଭଙ୍ଗୀ ଏବେଯାଏ ମଧ୍ୟ ବଦଳି ନାହିଁ—ଆଉ ହଠାତ୍ ମୋ ଠିକଣା ପାଇଲ କେମିତି ?''

ସେପଟୁ ଜବାବ୍ ନାହିଁ—ବେଳା ବୋଧହୁଏ କ'ଣ କହିବ ଚିନ୍ତା କରୁଛି ।

''ବେଳା କ'ଣ ଭାବୁଚ ?''

''ନାଁ—ଏତିକି ବୁଝିପାରିଲ ନାହିଁ ବେଳା ପକ୍ଷରେ ତମର ଠିକଣା ଖୋଜି ପାଇବା କେତେ ସହଜ—ନାରୀ ତା'ର ପ୍ରଥମ ପ୍ରେମ ଭୁଲିପାରେ ନାଁ ।''

''ତମେ କୋଉଠି ଓହ୍ଲେଇଚ ବେଳା ?''

''ହୋଟେଲ୍ ମ୍ୟାରିନାରେ—କାହିଁକି ? ଆସିବ ତମେ ?''

''ଏ କଥା ପଚାରିଲ କାହିଁକି ?''

''ନାଁ—ତମ ପରି ପଦସ୍ଥ କର୍ମଚାରୀମାନଙ୍କ ପାଇଁ ଏ ହୋଟେଲ୍ ଯଥେଷ୍ଟ ଅଭିଜାତସମ୍ପନ୍ନ କି ନା ମୁଁ ଠିକ୍ କରିପାରୁ ନାହିଁ ।''

''ସେସବୁ ବାଜେ କଥା କହି ଲାଭ ନାହିଁ—ମୁଁ ଆସିବି ସନ୍ଧ୍ୟାବେଳକୁ ।''

''ତମେ ନିଶ୍ଚୟ ଆସ—ମୋର ନିମନ୍ତ୍ରଣ ରହିଲା । ତମେ ଜାଣ ମୁଁ ତମ ସହିତ କଥା କହିବାକୁ ଭଲପାଏ । କିନ୍ତୁ ଶେଷ ମୁହୂର୍ତ୍ତରେ ଯେମିତି ସୋଫାର୍ ହାତରେ ଖଣ୍ଡେ

ଚିଠି ଲେଖିଦେଇ ନିଜକୁ ଏକ୍ସକ୍ୟୁଜ୍ କରି ନ ନିଅ ଯେ ତମର ହଠାତ୍ ଗୋଟାଏ ବିରାଟ ଆପଏଣ୍ଟମେଣ୍ଟ ପଡ଼ିଗଲା ଓ ତମେ ଆସିପାରିବା ସମ୍ଭବ ନୁହଁ ।''

ବିନୟ କଥା ବଢ଼ିବାକୁ ନଦେଇ କୁହେ, ''ଆସିବି—ଆଚ୍ଛା ରହିଲି ।''

ପ୍ରାୟ ଏକ ସମୟରେ ଦୁଇଜଣଯାକ ସେମାନଙ୍କର ରିସିଭର୍ ରଖିଦେଲେ ।

ବିନୟ ରିସିଭର୍ ରଖିଦେଇ ତାଙ୍କର ଚିରାଚରିତ ଅଭ୍ୟାସ ଅନୁଯାୟୀ ଦକ୍ଷିଣ ବାତାୟନ ଦେଇ ଦୂରକୁ ଚାହିଁଲେ ଓ ତାଙ୍କର ମନେ ହେଲା, ପାହାଡ଼ଟା ତାଙ୍କୁ ଆହୁରି ଅଧିକ ନୀଳ ଦେଖାଯାଉଛି ।

ବେଲା ! କାହିଁ କେଉଁ ଦୂର ଅତୀତର କଥା—ସେ କ୍ରିକେଟ୍ ପଡ଼ିଆରୁ ଫେରିଲାବେଳେ, ବିଶ୍ୱବିଦ୍ୟାଳୟର ପରୀକ୍ଷାଫଳ ବାହାରିବା ପରେ ନ ହେଲେ ଅଭିନୟ ସାରି ରଙ୍ଗମଞ୍ଚରୁ ଓହ୍ଲେଇଲା ବେଳେ ଯିଏ ଆସି ତା'ର ଦୁଇବାହୁକୁ ଜାବୁଡ଼ି ଧରି ଉଚ୍ଛ୍ୱସିତ ଅଭିନନ୍ଦନ ଜଣାଉଥିଲା, ସେ ହେଉଛି କଲେଜର ଅନ୍ୟତମ, ସୁନ୍ଦରୀ, ଚପଳା ଓ ଛନ୍ଦମୟୀ ଝିଅ ବେଲା ।

କିନ୍ତୁ ସବିତା କେବଳ ନୀରବରେ ଠିଆ ହୋଇ ସପ୍ରଶଂସ ଆଖିରେ ଚାହିଁ ରହୁଥିଲା । ସବିତା ଥିଲା ସମୁଦ୍ର ପରି ଗଭୀର ଓ କୌଣସି କଥା ନକହି ମଧ୍ୟ ସେ ତା'ର ଆଖିରେ ପ୍ରକାଶ କରିପାରୁଥିଲା ଯେ ସେ ମତେ ଅତ୍ୟନ୍ତ ଭଲପାଏ ।

ବିନୟ ଦାସ ଥିଲା କଲେଜର ବହୁ ଛାତ୍ରଙ୍କର ଈର୍ଷାର ପାତ୍ର ।

ବିନୟର ଇଚ୍ଛା ନଥିଲେ ମଧ୍ୟ ତା'କୁ ବିଲାତ ଯିବାକୁ ପଡ଼ିଲା ଉଚ୍ଚଶିକ୍ଷା ପାଇଁ; କାରଣ ବିଲାତ ଯାଇ ଫେରିଆସିବା ଥିଲା ତା'ର ପରିବାରର ଏକ ଅତି ସାଧାରଣ ପରମ୍ପରା ଏବଂ ତାକୁ ପ୍ରତ୍ୟାଖ୍ୟାନ କରିବା ଅର୍ଥ ପରିବାର ବିରୋଧରେ ପ୍ରତ୍ୟକ୍ଷ ବିପ୍ଳବ କରିବା ।

ବେଲା ଓ ସବିତାକୁ ଭାରତବର୍ଷରେ ଛାଡ଼ି ଦେଇ ସେ ବିଲାତ ଯାତ୍ରା କରିଥିଲା ଓ ତା'ର କିଛିଦିନ ପରେ ସବିତା ବିବାହ କରିଥିଲା । କିନ୍ତୁ ବେଲା ଆପ୍ରାଣ ପରିଶ୍ରମ କରି ବିନୟ ସହିତ ଟକ୍କର ଦେବାକୁ ବିଲାତ ଯାଇଥିଲା ଓ ସେ'ଠି ଜଣେ ଲକ୍ଷପତି ବ୍ରୋକର୍‌କୁ ବିବାହ କରି ସେହିଠାରେ ହିଁ ସ୍ଥାବର ହୋଇ ଯାଇଥିଲା । ବେଲାର ବିବାହ-ପାର୍ଟିରେ ବିନୟ ଯୋଗ ଦେଇଥିଲା ଗୋଟାଏ ସୁସଜ୍ଜିତ ଫୁଲର ତୋଡ଼ା ନେଇ । ସେଦିନ ଚର୍ଚ୍ଚର ଲମ୍ବା ଲମ୍ବା ପାହାଚଗୁଡ଼ାକ ଓହ୍ଲେଇ ଆସୁ ଆସୁ ବେଲା ବିନୟର କାନ ପାଖେ ଫିସ୍‌ଫିସ୍ କରି କହିଥିଲା, ''ବିନୟ ! ଏ ବିବାହ କେବଳ ଗୋଟାଏ ରିଭେଞ୍ଜ୍—ପ୍ରତିଶୋଧ ।''

ଟେଲିଫୋନ୍ ବାଜି ଉଠିଲା । ଅପରେଟର୍ ଚିଁ ଚିଁ ହୋଇ ତାର ସ୍ୱରରେ ଚିତ୍କାର କରୁଛି... ଟୁ, ସେଭେନ୍ ସେଭେନ୍, ୟୋର୍ କଲ୍ ଫ୍ରମ୍ ଦିଲ୍ଲୀ.... ବିନୟବାବୁଙ୍କର ସବୁ ଭାବନା ଗୋଳମାଳ ହେଇଗଲା । ସେ ରିସିଭର୍ ଉଠେଇ କହିଲେ, ''ୟେସ୍ ବିନୟ ଦାସ ସ୍ପିକିଂ....'' ସେ'ଦିନ ନିର୍ଦ୍ଧାରିତ ସମୟର କିଛି ସମୟ ପୂର୍ବରୁ ବିନୟ ଅଫିସ୍ ଛାଡ଼ିଥିଲେ ଏବଂ ଏଇ ସାମାନ୍ୟ ବ୍ୟତିକ୍ରମ ମ୍ୟାନେଜିଂ ଡାଇରେକ୍ଟର୍‌ଙ୍କ ଅଫିସ୍‌ର କର୍ମଚାରୀମାନଙ୍କର ଦୃଷ୍ଟି ଏଡ଼ାଇ ଯାଇପାରି ନଥିଲା ।

ମୁଁ ବିନୟ ଦାସ କହୁଚି । ଡାଇରେକ୍ଟର ଫାଇରେକ୍ଟର୍ କିଛି ନୁହଁ । ମୁଁ ଜଣେ ମଣିଷ । ଏଣିକି ଗପଟା ଆଉ ତୃତୀୟ ପୁରୁଷର କହିବା ସମ୍ଭବ ନୁହଁ; କାରଣ ଏହାପରେ ମୁଁ ସମସ୍ତ ସମୟ ଏକାକୀ ଥିଲି—ଏବଂ ସମସ୍ତଟା କେବଳ ଗୋଟାଏ ଅନୁଭୂତି ଯାହା ମୁଁ ଅନୁଭବକୁ ଆଣି ପାରିଛି ।

ବେଳାର ଟେଲିଫୋନ୍ ପାଇବା ପରେ ମୋ'ର ମନେହେଲା ଯେପରି କାର୍ଯ୍ୟସୂଚୀର ମନୋଟନି ଭିତରେ ମୋ'ର ଖୁବ୍ ପାଖ ଦେଇ ବୋହି ଯାଉଥିବା ଗୋଟାଏ ଛୋଟ ଝରଣାକୁ ମୁଁ ଦେଖି ପାରିନାହିଁ ଅନେକ ଦିନ ଧରି—ଆଉ ସେ ଝରଣା ଉପରେ ତରଳ ଲୌହବିନ୍ଦୁ ପରି ସୂର୍ଯ୍ୟକିରଣ ଝରି ପଡୁଛି ଟୋପା ଟୋପା ହେଇ ।

ସେଦିନ ଅଫିସ୍‌ରୁ ଘରକୁ ଫେରିଲା ବେଳେ ମୁଁ ମୋର ମୁଖାଟାକୁ ପିନ୍ଧିବାକୁ ଭୁଲି ଯାଇଥିଲି ଓ ସେଇଥିପାଇଁ ମତେ ସେଦିନ ଯେଉଁମାନେ ଘରକୁ ଫେରିବାର ଦେଖିଥିବେ, ସେମାନେ ଆଶ୍ଚର୍ଯ୍ୟ ହେଇ ଯାଇଥିବେ ଯେ ମୁଁ ମଧ୍ୟ ହୁଇସିଲ୍ ମାରି ମାରି ଫେରିପାରେ ।

ଘରକୁ ଫେରି ମୋର ୱାର୍ଡ୍‌ରୋବ୍ ସାମ୍ନାରେ ଠିଆ ହେଇ ମୁଁ ମୋର ସନ୍ଧ୍ୟା ପୋଷାକର ପାଟର୍ଣ୍ଣ ଅନେକ ସମୟ ଧରି ଚିନ୍ତା କରିଚି ଓ ମ୍ୟାରିନାକୁ ଟେଲିଫୋନ୍ କରି ଦୁଇ ଜଣଙ୍କ ପାଇଁ ଟେବୁଲ୍ ରିଜର୍ଭ କରିଚି ।

କିନ୍ତୁ ଆଜିର ସନ୍ଧ୍ୟାଟାଇ ଡେରି ଡେରି କରି ଆସୁଚି । ମୁଁ ମ୍ୟାରିନା ହୋଟେଲ୍ ପାଖରେ ପହଂଚିଲା ବେଳକୁ ମ୍ୟାରିନା ଆଗନ୍ତୁକ ରାତ୍ର ପାଇଁ ତଥାପି ନିଜକୁ ପ୍ରସ୍ତୁତ କରୁଛି । ଲାଉଞ୍ଜ୍ ଜନଶୂନ୍ୟ । ହଲ୍‌ଘରେ ବ୍ୟାଣ୍ଡ୍ ପାର୍ଟିର ବାଦ୍ୟ ସରଞ୍ଜାମ ସବୁ ପ୍ରସ୍ତୁତ ହେଇ ରଖାଯାଇଛି, କିଏ କେଉଁଠି ବୋତାମ ଟିପିଲେ ଐକ୍ୟତାନରେ ଝଂକୃତ ହେଇ ଉଠିବେ । ବେହେରାମାନେ ପଛରେ ହାତକୁ ହାତ ଛନ୍ଦି ଠିଆ ହେଇ ରହି କାଚ ଆଖିରେ ଚାହିଁ ରହିଛନ୍ତି ।

ହୋଟେଲ୍‌ର ଅନ୍ତେବାସୀମାନଙ୍କର ନେମ୍‌କାର୍ଡ଼ ଉପରେ ଆଖି ବୁଲେଇ ଆଣିଲି । ୧୪ ନମ୍ବର ରୁମ୍‌ରେ ଲେଖାଯାଇଚି କେବଳ ଦୁଇଟି ଅକ୍ଷର ''ବେଳା'' । ଖୁବ୍ ସହଜ

ମନେହେଲା ଏଇ ନାଁ ଲେଖିବାର ପଦ୍ଧତିଟା । କେବଳ "ବେଳା" । ଜାତି, ଗୋତ୍ର, ବୟସ, ପରିବାର କିଛି ଜାଣିବାର ଉପାୟ ନାହିଁ । ଯେମିତି ଗୋଟାଏ କଟିଯାଇଥିବା ଗୁଡ଼ି ହାଲୁକା ପବନରେ ଭାସି ଭାସି ବୁଲୁଚି । ଭବିଷ୍ୟତ୍‌ର ଆଶଙ୍କାରୁ ଓ ଅତୀତର ସଂସ୍କାରରୁ ସଂପୂର୍ଣ୍ଣ ମୁକ୍ତ ।

୧୪ ନମ୍ବର ରୁମ୍‌ରେ ବିଷିଆଙ୍ଗୁଠି ଟିପି ଧୀରେ ଧୀରେ ଶବ୍ଦ କଲି; କିନ୍ତୁ କେହି ଜବାବ୍ ଦବା ପୂର୍ବରୁ ହାତର ଲଘୁ ସ୍ପର୍ଶରେ କବାଟଟା ଖୋଲିଗଲା । ଭିତରକୁ ପଶିଲି । ଘର ଭିତରେ ଏକ ଲଘୁ ସୁଗନ୍ଧ ଖେଳି ବୁଲୁଛି ।

କିନ୍ତୁ ବେଳା କାହିଁ ? ଘରର ଆସବାବ ପତ୍ର ଓ ପରିଧାନର ପରିସ୍ଥିତି ଦେଖିଲେ ମନେହେବ ଖୁବ୍ ଅଳ୍ପ ସମୟ ତଳେ ଏ ଘରେ ଜଣେ କେହି ଉପସ୍ଥିତ ଥିଲା ଓ ମାତ୍ର ବାହାରକୁ ଯାଇଛି ଅଳ୍ପ ସମୟ ପାଇଁ । ଟେବୁଲ୍ ଉପରେ ବେଳାର ଗୋଟାଏ ରଙ୍ଗିନ୍ ଆଲୋକଚିତ୍ର । କିନ୍ତୁ ୟେ' କଣ ବେଳା ? ଏପରି ଫଟୋଗ୍ରାଫ୍ କ'ଣ ବେଳା ତା'ର ନିଜ ଟେବୁଲ୍ ଉପରେ ରଖିବା ସମ୍ଭବ ?

ମିଆମି ବା ସେହିପରି କୌଣସି ସୌଖୀନ୍ ବିଚ୍‌ର ତରଙ୍ଗାୟିତ ବାଲୁକାରାଶି ଉପରେ ଶୋଇ ରହିଛି ବେଳା ଉଲଗ୍ନ ହେଇ । ସଂପୂର୍ଣ୍ଣ ଉଲଗ୍ନ । କେବଳ ଆଖି ଉପରେ କଳା କାଚର ଗଗଲସ୍ ଓ ମୁଣ୍ଡ ଉପରେ ଗୋଟାଏ ଅତିକାୟ ବେତବୁଣା ଟୋପି । ସମୁଦ୍ରର ପାଣି ଉପରେ ମଧ୍ୟାହ୍ନର ଖରା ରଡ଼ନିଆଁ ପରି ଉତୁରି ପଡୁଛି ।

ମୁଁ ପ୍ରାୟ ଚମକି ପଡ଼ିଲି । କିଏ ଯେମିତି ହଠାତ୍ କହିଲା, "ଗୁଡ୍ ଇଭିନିଂ, ବିନୟ ।"

'ଦେଖିଲି, ବାଥ୍‌ରୁମ୍‌ର କବାଟ ଦର ମେଲା କରି ବେଳା ପାଣିରେ ଯୁବୁବୁବୁ ହେଇ ତା'ର ବେକ ତଳର ବେଶ୍ କିଛି ଅନାବୃତ ଅଂଶ ପଦାକୁ ବାହାର କରି ମୋତେ ଚାହିଁ ରହି ହସୁଛି । ମୁଁ ସାମାନ୍ୟ ଅପ୍ରତିଭ ହେଇ ଯାଇଥିଲି ପ୍ରଥମେ—କିନ୍ତୁ କିଛି ମୁହୂର୍ତ୍ତ ପରେ କହିଲି, "ଗୁଡ୍ ଇଭିନିଂ ।" ତା'ପରେ ବେଳା କହିଲା, ଏଆର୍‌କଣ୍ଡିସନ୍‌ଟାକୁ ଚଳେଇ ନିଅ—ମୁଁ ଏଇ ଆସିଲି—ଆଉ ଯଦି ବାଥ୍‌ରୁମ୍ ଭିତରେ ମତେ ଦେଖିବାକୁ ଚାହଁ ତାହାହେଲେ ଆପାତତଃ ସେଇ ଫଟଟାକୁ ଦେଖି ଇମାଜିନ୍ କରିପାର ।"

ଧୀରେ ଧୀରେ ବାଥ୍‌ରୁମ୍‌ର କବାଟ ଭିତରୁ ବନ୍ଦ ହେଇଗଲା ।

ବେଳା ସବୁଦିନ ଥିଲା ଚପଳ ଓ ବୁଦ୍ଧିମତୀ ଏବଂ ତା' ଉପରେ ଉଗ୍ର ପାଶ୍ଚାତ୍ୟ ଆଧୁନିକତାର ଆରୋପ ବେଳାକୁ ପ୍ରାୟ ଗୋଟାଏ ଫ୍ଲର୍ଟ ଗାର୍ଲର ପାଖାପାଖି ନେଇ ଯାଇଚି ।

ରେକର୍ଡ଼ପ୍ଲେୟାର୍ ଉପରେ ଥୁଆ ହେଇଥିବା ଗୋଟାଏ ନାଁ ନଜଣା ରେକର୍ଡ଼କୁ ବଜେଇ ଦେଇ ଖଣ୍ଡେ ମ୍ୟାଗାଜିନ୍ ଉପରେ ଆଖି ବୁଲେଇଲି । ରେକର୍ଡ଼ରେ ଅଦ୍ଭୁତ ଦରଦୀ ସ୍ୱରରେ କିଏ ଗାଉଛି, ''ସେଭ୍ ଦି ଲାଷ୍ଟ ଡ୍ୟାନ୍ସ ଫର୍ ମି ।''

ସେ..ଏ..ଭ୍ 'ଦି' ଲାଷ୍ଟ୍ ଡା...ଆ...ନସ୍ ଫର ମିଇଇ । ବେଳା ବାଥ୍ରୁମ୍ରୁ ଏକାଥରକେ ସାନ୍ଧ୍ୟ ପ୍ରସାଧନ ଶେଷକରି ବାହାରିଲା ଓ ମତେ ଚାହିଁ କହିଲା, ''ଏଇ ଗୀତଟା ଯେତେଥର ମୁଁ ବଜେଇଛି ସବୁବେଳେ ମୁଁ ତମ କଥା ମନେ ପକେଇଛି ବିନୟ ।''

ତାତ୍ପର୍ଯ୍ୟ ବୁଝି ନପାରି କେବଳ ପଚାରିଲା ଆଖିରେ ଚାହିଁ ରହିଲି । ବେଳାର ଆଖି ସାମାନ୍ୟ ଭାବବିହ୍ୱଳ ।

''ସେତକ ତମେ ବୁଝିବ ନାହିଁ ବିନୟ–ସବୁବେଳେ ମୁଁ ଅକାରଣରେ ସ୍ୱପ୍ନ ଦେଖିଚି ତମେ ଆଉ ମୁଁ ରାତ୍ରିର ଶେଷ ନାଚସାରି ନାଚର ଅଗଣାରୁ ହାତ ଧରାଧରି ହେଇ ବାହାରିଯିବା । ଦୂରରୁ କୌଣସି ଘଣ୍ଟା ଆସ୍ତେ ଆସ୍ତେ ବାଜି ସୂଚନା ଦଉଥିବ ରାତ୍ରି ଅଧିକ ହେଇଚି, ଆଉ ତମେ ମତେ ଘରେ ଛାଡ଼ିଦବାର ବାହାନାରେ ଟ୍ୟାକ୍ସିର ପଛ ସିଟ୍‌ରେ ବସି ଆଦର କରିବ, ହାଉ...ୱାଣ୍ଡରଫୁଲ୍ !''

ମୁଁ ଅନ୍ୟମନସ୍କ ହେଇପଡ଼ିଥିଲି କିଛି ସମୟ ପାଇଁ । ବେଳା ଦୁଇଟା ଗିଲାସରେ ହ୍ୱଇସ୍କି ଢାଳୁ ଢାଳୁ କହିଲା, ''କ'ଣ ଏତେ ଭାବୁଚ ବିନୟ ?'' ସୋଡ଼ା ଢାଳିବାକୁ ଯାଇ କହିଲା, ''ଷ୍ଟପ୍ ମି ।''

''ନାଁ–କିଛି ନୁହେଁ''– କିନ୍ତୁ ମୁଁ ପ୍ରକୃତରେ ଭାବୁଥିଲି ସେହି ଲକ୍ଷପତି ସେଆର୍ ବ୍ରୋକର୍‌ର କଥା । ସେ କଥା ଏଇ ସ୍ୱଳ୍ପ ସମୟ ଭିତରେ ବେଳାକୁ ପଚାରିବା ସମ୍ଭବ ନୁହେଁ ।

କଥାର ମୋଡ଼ ଫେରାଇବାକୁ କହିଲି, ''ତମ ସହିତ ଅନେକ ଦିନର ବ୍ୟବଧାନରେ ଏ ଦେଖା ପରେ ତମେ ଏତେ ଅନ୍ତରଙ୍ଗ ଭାବରେ ବ୍ୟବହାର କରିବ ଏକଥା ମୁଁ ଭାବିପାରି ନଥିଲି ସତରେ ।''

ବେଳା କହେ–

''କିନ୍ତୁ ତମର ମନେ ରଖିବା ଉଚିତ୍ ବିନୟ, ବେଳା ସବୁବେଳେ ଲୋକମାନଙ୍କୁ ଆଶ୍ଚର୍ଯ୍ୟ କରିପାରିଛି–ଆଉ ଲେଟେଷ୍ଟ ହଉଛି ମୁଁ ମୋ'ର ଅମିତ ଐଶ୍ୱର୍ଯ୍ୟର ଅଧିକାରୀ ସ୍ୱାମୀଟିକୁ ଡାଇଭୋର୍ସ କରି, ଲିଡୋଲ୍ ରୁମ୍‌ର କ୍ୟାବାରେ ଶୋ' ଦେଇ ମୋର ସ୍ୱାମୀଙ୍କ ଠାରୁ ଅଧିକ ବିଭବଶାଳୀ ହବାର ସମ୍ଭାବନା ଦେଖିପାରୁଛି ।''

ମୁଁ କିଛି ଜବାବ୍ ଦେଲିନାହିଁ ।

ହୁଇସ୍କିର ଗିଲାସ ସୋଡ଼ାର ସିଞ୍ଚନରେ ଫୁଲି ଉଠିଚି ଓ ପୁଣି ନିଃଶେଷ ହେଇଯାଇଚି ।

ଆମେ ଶେଷ କରି ଚାଲିଚୁ ଆମର ଅତୀତ—ଯାହା କିଛି ସମ୍ଭାବ୍ୟ ଓ ପୁଣି ଯାହା କିଛି ଏକାଥରକେ ଉଦ୍ଭଟ । ରାତି କେତେ ହେଲାଣି ସେ କଥା ଖିଆଲ୍ ନାହିଁ । କିନ୍ତୁ କେବଳ ମନେ ପଡୁଚି ଗୋଟାଏ ସମୟରେ ଡିଂ ଡିଂ ହେଇ ଗୋଟିଏ ଘଣ୍ଟା ବାଜି ହୋଟେଲ୍‌ବାସୀ ସମସ୍ତଙ୍କୁ ସତର୍କ କରି ଦେଇଥିଲା ଯେ, ଆଉ ମାତ୍ର ପନ୍ଦର ମିନିଟ୍ ପରେ ବାର୍ ଓ ପରେ ପରେ ଡାଇନିଂ ହଲ୍ ପୂରାପୂରି ବନ୍ଦ କରି ଦିଆଯିବ । ଆମ ଦୁଇଜଣ ସେଥିପ୍ରତି ତିଳେମାତ୍ର ମନଯୋଗୀ ହୋଇନାହୁଁ । କେବଳ ଆଲୋକର ଆତିଶଯ୍ୟ ହେତୁ ଘରର ଆଲୁଅଟାକୁ ଲିଭେଇ ଦେଇ ଗୋଟିଏ ନୀଳ ଟେବୁଲ୍ ଲ୍ୟାମ୍ପର ସ୍ତିମୀତ ଆଲୋକରେ ଆମେ ବସି ଗପ କରୁଛୁ ।

ମୋର ମନେ ଅଛି ଗୋଟାଏ ସମୟରେ ବେଳା ମୋର ହାତର ଆଙ୍ଗୁଠିଗୁଡ଼ିକ ତା'ର ଛୋଟ ପାପୁଲି ଭିତରେ ମୃଦୁ ଚାପି ଧରି କହୁଥିଲା—ଏତେ ବର୍ଷ ଗତ ହୋଇଥିଲେ ମଧ୍ୟ ମୋର କିଛି ପରିବର୍ତ୍ତନ ହୋଇନାହିଁ । ମୋର ଆଙ୍ଗୁଠିର ଆୟତ ଉଜ୍ଜ୍ୱଳ ନଖଗୁଡ଼ିକ ତଥାପି ଯଥେଷ୍ଟ ରୋମାଣ୍ଟିକ୍ । ଏହାର ଉତ୍ତରରେ ମୋର ହାତର ପାପୁଲି ବେଳାର ସୁଗୋଲ ବାହୁ ଉପରେ ସାମାନ୍ୟ ବେପଥୁ ସୃଷ୍ଟି କରିଥିଲା ।

କେତେବେଳେକେ ବେଳା ହଠାତ୍ ଉଠିଯାଇ ଗୋଟିଏ କ'ଣ ଆଣିବାକୁ ଯାଉଥିଲା; କିନ୍ତୁ ବେଳାକୁ ବସିବାକୁ ବାଧ୍ୟ କରିବାର ସୁଯୋଗ ନେଇ ତା'ର ଶାଢ଼ୀରୁ ମୋଞ୍ଚାଏ ଜୋର୍ କରି ଧରି ନେଇଥିଲି ଓ ସେଇ ଶାଢ଼ୀର କକୁନ୍ ଭିତରୁ ରଙ୍ଗୀନ୍ ପ୍ରଜାପତି ପରି ପଦାକୁ ଡେଣା ମେଲାଇ ବାହାରି ଆସିଥିଲା ଯେଉଁ ବେଳା ସେ ପିନ୍ଧିଥିଲା ଖଣ୍ଡେ କଳା ନେଗ୍ଲିଜି ଓ ତା'ର ମୁକୁଳିତ ବ୍ରା' ଉପରେ ସେ ଦୁଇ ହାତ ଛକି ଦେଇ ଈଷତ୍ ଅନ୍ଧକାର ଭିତରକୁ ଘୁଞ୍ଚି ଯାଇ ଠିଆ ହୋଇ ରହିଥିଲା ।

ଟେବୁଲ୍ ଲ୍ୟାମ୍ପଟାକୁ ହଠାତ୍ ବୁଲେଇ ନେଇ ମୁଁ ବେଳାର ପ୍ରାୟ ଉଲଗ୍ନ ଅଥଚ ସୁଗଠିତ ଶରୀରକୁ କ୍ଷଣକ ପାଇଁ ମାତ୍ର ସମୀକ୍ଷା କରିଥିଲି; କିନ୍ତୁ ବିଦ୍ୟୁତ୍ ବେଗରେ ବେଳା ବାଥରୁମ୍ ଭିତରକୁ ପଶିଯିବାକୁ ଚେଷ୍ଟା କରିଥିଲା ।

ଉଦ୍ୟତ ବେଳାକୁ ମୁଁ ଜୋର୍ କରି ଧରିନେଇଥିଲି ।

କିନ୍ତୁ ପୁଣି ଆର ମୁହୂର୍ତ୍ତରେ ବେଳାର ଭୟ ବିହ୍ୱଳିତ ନୀରବ ଚାହାଁଣୀରେ ମୁଁ ମୋର ହାତର ଚାପ ହୁଗୁଳା କରି ଦେଇଥିଲି ।

ହୁଇସ୍କି—ହୁଇସ୍କି—ହୁଇସ୍କି ।

ଏବଂ ମୋର ମନେ ହେଉଥିଲା, ବେଳା ଯେପରି ସେଇ ଘରର ଚାରିକାନ୍ଥ ଭିତରେ ଘୂରି ବୁଲୁଥିଲା ଗୋଟିଏ ଶୁଭ୍ର ଅଥଚ ଭୀତ ମତ୍ସ୍ୟକନ୍ୟା ପରି । ରତ୍ନାକରର ଅତଳ ଗର୍ଭରୁ କୌତୁକ ପାଇଁ ପଦାକୁ ବାହାରି ଆସିଥିବା ଏଇ ମତ୍ସ୍ୟକନ୍ୟା ଯେମିତି କାହାର ଜାଲ ଭିତରେ ଧରା ପଡ଼ିଯାଇଛି । ଆଡ୍‌ଭେନ୍‌ଚର୍ ଭିତରେ ମିଶି ମିଶି ଯାଏ ଯେମିତି ଗୋଟିଏ ଆମୋଦପ୍ରଦ ଆଶଙ୍କା ।

ମୁଁ ଜାଣେନା ମୁଁ ଠିକ୍ କେମିତି ଦେଖାଯାଉଥିଲି । ମୋର ଆଖିରେ ହୁଏତ ଉତ୍କଣ୍ଠା, ଆସକ୍ତି ଓ ସାମାନ୍ୟ ହିଂସ୍ରତା ପ୍ରକାଶ ପାଉଥିଲା । କିନ୍ତୁ ମୁଁ ମୋର ନାଁ, କାଳ ଓ ସ୍ଥିତି ସବୁ କିଛି ବିସ୍ମୃତ ହେଇଥିଲି ।

ବେଳାର ଦିହରେ ଖାଲି ଖଣ୍ଡେ ମାଂସ ରଙ୍ଗର ବ୍ରା' ଯେମିତି ତା'ର ବକ୍ଷୋଜର ଉତ୍ପୀଡନରେ ଅତିଷ୍ଠ ହେଇ ଉଠିଚି ଓ ବେଳା ତା'ର ହାତର ବନ୍ଧନୀରେ ତାକୁ ଅବଗୁଣ୍ଠିତ କରିବାର ନିଷ୍ଫଳ ଚେଷ୍ଟାରେ ବିଡ଼ମ୍ବିତ ହେଉଛି ଥରକୁ ଥର ।

କିନ୍ତୁ ହଠାତ୍ ଏକ କୌତୁକିନୀର କ୍ଷିପ୍ର ଗତିରେ ବେଳା ଗୋଟିଏ ଛୋଟ ଚଢ଼େଇ ପରି ଫୁର୍‌ର କରି ଯାଇ ପଶିଗଲା ବିଛଣା ଉପରେ ପଡ଼ିଥିବା ବେଡ୍‌କଭର୍ ଭିତରେ ଓ ନିଜକୁ ଯଥାସମ୍ଭବ ନିରାପଦ ମନେକରି ଅଳ୍ପ ହସି ମିଟ୍ ମିଟ୍ କରି ଚାହିଁ ରହିଲା କେବଳ ।

କିନ୍ତୁ ଯେତେବେଳେ ବେଳା ବୁଝିପାରିଲା ଯେ ମୋର ହାତର ଆକର୍ଷଣରେ ତା'ର ଶେଷ ଆବରଣଟିର ଦୁର୍ବଳ ଷ୍ଟ୍ରାପ୍‌ଟା ଦୁଇଖଣ୍ଡ ଗୁଳିସୂତା ପରି ଛିଣ୍ଡିଯିବ ଟକ୍ ଟକ୍ ହେଇ, ସେ ପାଟି ନ କରି ତା'ର ହାତର ଭଙ୍ଗୀରେ ଅନେକ ଥର ବୁଝାଇବାକୁ ଚେଷ୍ଟା କଲା ।

''ନାଁ—ବିନୟ—ନାଁ—ନାଁ—ନାଁ'' ।

ବେଳାର ଆଖି ଆସ୍ତେ ଆସ୍ତେ ହୁଇସ୍କିର ନିଶା କାଟି ବିସ୍ଫୁରିତ ହୋଇ ଉଠିଚି ଏକ ଅଦମନୀୟ ଉତ୍କଣ୍ଠାରେ । ଏଇ—ବର୍ତ୍ତମାନ ବୋଧହୁଏ ବେଳା ଚିତ୍କାର କରି ଉଠିବ ।

କିନ୍ତୁ ମୁଁ ସେତେବେଳେ ଆକଣ୍ଠ କାମନାର ଅଗ୍ନିରେ ଜଳୁଚି ଆଞ୍ଜୁଳାଏ ଶୁଖିଲା ଘାସ ପରି ।

ପୁଣି କେତେବେଳେ ମୋର ପାଦ ପାଖକୁ ଲାଗି ଦୁଇ ହାତରେ ତା'ର ମୁହଁ ଢାଙ୍କି ଧରି ଶୋଇ ରହିଚି ଉଲଗ୍ନ ବେଳା ଓ ତା'ର ପିଠିର ମଧ-ରେଖା ସ୍ଖଳିତ ନେଗ୍ଲିଜିର ଉପକଣ୍ଠରେ ପଥ ହରେଇ ବସିଛି । ଧୀରେ ଧୀରେ ବେଳାର କୋମଳ, ଗୌର ପୃଷ୍ଠ

ଦେଶକୁ ମୁଁ ଆଦର କରୁ କରୁ କେତେବେଳେ ଗୋଟାଏ ଝାଙ୍କରେ ବେଳାକୁ ପାର୍ଶ୍ୱ ପରିବର୍ତ୍ତନ କରିବାକୁ ବାଧ କରିଚି । ଅସହାୟ, ନିରାଭରଣା ବେଳା ତା'ର ଦୁଇ ବାହୁରେ ମୋର ଘଣ୍ଟା ଭିଡ଼ି ଧରି ଅନୁନୟର ସ୍ୱରରେ କହିଚି, ବିନୟ ! କ'ଣ କରୁଚ ତମେ ବିନୟ !

ମୁଁ ଜବାବ୍ ଦେଉ ନାହିଁ ।

ମୁଁ କେବଳ ଦେଖୁଚି ବେଳାର ଦୁଇ କାଖର ରହସ୍ୟମୟ କୋଟର ଭିତରୁ ଦୁଇଟି ଶ୍ୱେତ, ଅଧୀର ଶଶକ କ୍ଷିପ୍ର ଗତିରେ ପଳେଇ ଯିବାର ଚେଷ୍ଟା କରୁଛନ୍ତି ଏବଂ ଅଧୋମୁଖୀ ବେଳାର ସମସ୍ତ ମୁଖମଣ୍ଡଳ ତା'ର କୁଞ୍ଚିତ ଚିକୁରରେ ଲୁଚି ଯାଇଛି ।

ଅଧୀର ଆବେଗରେ ବେଳାକୁ ମୋର ସୁଦୃଢ଼ ଆଲିଙ୍ଗନରେ ମୁଁ ପିଷ୍ଟ କରି ଦେଇଚି ଓ ଏହି ସ୍ଥିତାବସ୍ଥାରେ ମୁଁ ଲକ୍ଷ୍ୟ କରିଚି ମୋର କ୍ଷିପ୍ର ନିଶ୍ୱାସରେ ବେଳାର ସାମ୍ନୁ କରା ଚିକୁର ମୃଦୁ ଆନ୍ଦୋଳିତ ହୋଇ ପୁନରାୟ ଯଥା ସ୍ଥାନକୁ ଫେରି ଆସୁଛି ।

ଆସ୍ତେ ଆସ୍ତେ ମୋର ଦୃଷ୍ଟିଶକ୍ତି କ୍ଷୀଣ ହୋଇଆସୁଚି—ମୁଁ ଠିକ୍ ଭାବରେ ଘଟଣାଟା ଦେଖି ପାରୁନାହିଁ; କିନ୍ତୁ ଏତିକି ମାତ୍ର ଉପଲବ୍ଧି କରୁଛି ଯେ ମୋର ପଞ୍ଚ ଇନ୍ଦ୍ରିୟ ଏକାକାର ହୋଇ ଏକ ପଥରେ ଆତ୍ମସନ୍ତୁଷ୍ଟି ପାଇଁ ଉନ୍ମୁଖ ହୋଇ ଉଠିଛନ୍ତି । ଏକ ପ୍ରଚଣ୍ଡ ଆନ୍ଦୋଳନ—ମୁଁ ତ୍ୱକ୍‌ମୟ ।

ତଥାପି ମୋର ବାହୁର ବନ୍ଧନୀ ଯଥେଷ୍ଟ ଶକ୍ତ ଥିଲା ଏବଂ ଏକ ଅନ୍ଧ, ଉଗ୍ର ଲାଳସାର ଆକ୍ରମଣରେ ବେଳାର କୃଶ ତନୁର ମାଂସପେଶୀ ଆସ୍ତେ ଆସ୍ତେ ଶିଥିଳୀତ ହଉଥିଲା ଯେମିତି ଗୋଟାଏ ଆତ୍ମସମର୍ପଣର ଇଙ୍ଗିତରେ । ମୋର ମଝିରେ ମନେ ହେଉଥିଲା ଯେମିତି କିଏ ଜଣେ ତୀକ୍ଷ୍ଣ କଣ୍ଠରେ ଚିତ୍କାର କରିଥିଲା ଓ ତା'ପରେ ସବୁ ନୀରବ । ଶୀତତାପ ନିୟନ୍ତ୍ରଣ ଯନ୍ତ୍ରର ଶବ୍ଦ ଆହୁରି କ୍ଷୀଣ ହେଇ ଆସିଚି । ବୋଧହୁଏ ଯେମିତି ଗୋଟିଏ ଛୋଟ ବିଲେଇ ଆନନ୍ଦର ଆତିଶଯ୍ୟରେ ଘୁମୁରି ଉଠୁଛି କିଛି ମୁହୂର୍ତ୍ତ ପାଇଁ ।

ଏକ ଅତି ନିବିଡ଼, କ୍ଲାନ୍ତ, ଅବସନ୍ନ ଓ ମଧୁର ସ୍ୱପ୍ନରୁ ଯେତେବେଳେ ମୁଁ ବାସ୍ତବକୁ ଫେରିଆସିଲି, ସେତେବେଳେ ବେଳା ଶୋଇ ରହିଥିଲା ଅପରେସନ୍ ଟେବୁଲ୍ ଉପରର ମୂର୍ଚ୍ଛିତା ପେସେଣ୍ଟ ପରି ଏବଂ ତା'ର ପ୍ରସାରିତ ଦୁଇ ଜାନୁ ଦେଖାଯାଉଥିଲା ମାର୍ବଲ୍ ପରି ଶୁଭ୍ର ଓ ନିର୍ଜୀବ । ନୀଳ ଟେବୁଲ୍ ଲ୍ୟାମ୍ପର ଆଲୋକ ମୋର ଆଖି ସାମ୍ନାରେ ଅନେକ ଆତ୍ମକେନ୍ଦ୍ରିକ ଚଳମାନ ବୃତ୍ତ ସୃଷ୍ଟି କରୁଥିଲା ।

କିଏ ବୋଧହୁଏ କବାଟରେ ଠକ୍ ଠକ୍ କରି ଡାକୁଚି ? ଧୀରେ ଧୀରେ ଶବ୍ଦର ମାତ୍ରା ବଢୁଛି କିନ୍ତୁ ମୋର କ'ଣ କରିବା ଉଚିତ୍ ?

ମୁଁ ମୂର୍ଚ୍ଛିତା ବେଳାର ଦିହ ଉପରେ ବେଡ୍ କଭରଟାକୁ ଟାଣି ନେଇ କବାଟ ଖୋଲିଲି ।

ସାମ୍ନାରେ ଜଣେ ସୁଟ୍ ପିନ୍ଧା ଭଦ୍ରଲୋକ ଠିଆ ହେଇଥିଲେ । ମତେ ଦେଖି ସମ୍ଭ୍ରମର ସହିତ କହିଲେ, "ମୁଁ ଏ ହୋଟେଲ୍‌ର ମ୍ୟାନେଜର୍ ।"

ମୁଁ ଜବାବ୍ ଦେଇନାହିଁ । ଗୋଟିଏ ଲକ୍ଷ୍ୟରେ ପୋର୍ଟିକୋର ଗାଡ଼ି ଭିତରକୁ ଆସି ଗାଡ଼ି ଷ୍ଟାର୍ଟ କରିଚି । ରାତ୍ରିର ନୀରବତା ଭଙ୍ଗ କରି ଗାଡ଼ିର ପଙ୍ଖା ବୂଲୁଚି ଘର୍‌ର ଶବ୍ଦରେ ଓ ବେତ୍ରାହତ ଘୋଡ଼ୀ ପରି ମୋର ଗାଡ଼ିଟା ପ୍ରାୟ ଲମ୍ଫ ଦେଇଚି ଆଗକୁ ଯିବାର ଜରୁରୀ ପ୍ରୟୋଜନରେ ।

କଟାକ୍ଷରେ ଦେଖିଲି ସେଇ ସୁଟ୍ ପରିହିତ ହୋଟେଲ୍ ମ୍ୟାନେଜରଟି ଠିଆ ହୋଇ ରହିଥିଲା ହତଭମ୍ଭ ହୋଇ, ଗୋଟିଏ ଶୂନ୍ୟ ପ୍ରେକ୍ଷାଳୟର ଶେଷ ଅତିଥି ପରି !

ମୋର ଗାଡ଼ି ଚାଲିଛି ଆଲୁଅରେ ସହରର ପିଚୁ ରାସ୍ତାକୁ ଦୁଇଭାଗ କରି । ମୁଁ ମୋର ଘରକୁ ଫେରିବାର ଠିକଣା ଜାଣେ ନା–ବର୍ତ୍ତମାନ ମନେ କରିପାରୁ ନାହିଁ । ମୋ' ଆଖି ଆଗରେ ପୁଲିସ୍‌ର ଟ୍ରାଫିକ୍ ଆଇଲାଣ୍ଡ–ରାସ୍ତା କରରେ ପାର୍କ କରା ହୋଇଥିବା ଟ୍ୟାକ୍ସି ଓ ଡ୍ରେନ୍ କରର ଗଛମାନଙ୍କର ଇଟାଘେର ସବୁ ଯେପରି ଏକାକାର ହେଇଯାଉଛି ।

ଇସ୍ ! କି ଅବ୍‌ଷ୍ଟିନେଟ୍ ଏଇ ଟେଲିଫୋନ୍‌ଟା !

ଗୋଟାଏ ସମୟରେ ବିନୟର ଇଚ୍ଛା ହେଲା ସେ ଟେଲିଫୋନ୍ ତାରଟାକୁ ଧରି ଛିଣ୍ଡେଇ ଦବ ଗୋଟାଏ ଝଟ୍‌କାରେ ।

କିନ୍ତୁ ତା'ର ତ କିଛି ମନେ ପଡୁନାହିଁ । ସେ କ'ଣ କାଲି ଗୋଟାଏ ଆକ୍‌ସିଡେଣ୍ଟ କରିଛି ରାସ୍ତାରେ ? ତାହା ହେଲେ ଥାନାର ଅଫିସର୍ ଇନ୍‌ଚାର୍ଯ୍ୟ ହୁଏ ତ ଡାକୁଚି ଓ କହିବ ଯେ କାଲି ରାତିରେ ଆପଣଙ୍କର ଓ.ଆର୍.ୟୁ : ୧୪୫୧ ଗାଡ଼ି ଶକ୍ତ ଆକ୍‌ସିଡେଣ୍ଟ କରି କୁଆଡ଼େ ଅନ୍ତର୍ଦ୍ଧାନ ହେଇଯାଇଚି ।

ହୁଏ ତ ଡାକିପାରୁଥାଏ ମ୍ୟାରିନା ହୋଟେଲର୍ ମ୍ୟାନେଜର୍ । ସେ ହୁଏତ କହିବ ଆପଣ ଜଣେ ପଦସ୍ଥ ବ୍ୟକ୍ତି ହୋଇଥିବାରୁ ମୁଁ କାଲି ରାତିରେ ଆପଣଙ୍କୁ କିଛି କହିବା ଠିକ୍ ମନେ କଲି ନାହିଁ; କିନ୍ତୁ ଆମ୍ଭେମାନେ ଆଜି ପୁଲିସ୍‌ରେ ଖବର ଦବାକୁ ବାଧ ହେଲୁ–ଆଶାକରେ କ୍ଷମା କରିବେ ।

କିମ୍ୱା ଡାକି ପାରୁଥାଏ ଡାଇଭୋର୍ସି, ଲିଡ଼ୋରୁମ୍‌ର ଅନ୍ୟତମ କ୍ୟାବାରେ ଗାର୍ଲ ବେଳା । ସେ ହୁଏତ କହିବ କାଲି ରାତିରେ ମୋ କାଛରେ ଖଞ୍ଜା ଯାଇଥିବା

ଅଟୋମ୍ୟାଟିକ୍ କ୍ୟାମେରାରେ ଅନେକ ଫଟୋ ଉଠିଯାଇଛି ଏବଂ ଆପଣଙ୍କର ମୋତେ ବିବାହ କରିବା ଉଚିତ୍ କିମ୍ବା ଦଶହଜାର ଟଙ୍କାର ଗୋଟିଏ ସେଲ୍‌ଫ୍-ଚେକ୍ ପଠେଇ ଦେଇ ଆପଣ ନିଜକୁ ମୁକ୍ତ କରିପାରନ୍ତି ।

କିନ୍ତୁ ଯଦି ଡାକୁଥାଏ ଇଭିନିଂ ଏକ୍‌ସପ୍ରେସ୍‌ର ସେଇ ଲମ୍ବଗ୍ରୀବ ପ୍ରେସ୍ ରିପ୍ରେଜେଣ୍ଟେଟିଭ୍ ? ସେ ଯଦି ପଚାରେ କ୍ୟାବାରେ ଗାର୍ଲମାନଙ୍କର ମଧ୍ୟମଣି 'ବେଳା' ସହିତ ଆପଣଙ୍କର ପ୍ରଣୟ-କାହାଣୀ ଶତ ମୁଖରେ ପ୍ରଚାରିତ । ଆପଣ ଦୟା କରି ଆପଣଙ୍କର ମତାମତ ବା ବିବାହର ତାରିଖ ଦେଲେ ଉପକୃତ ହେବି ।

ଜିଦ୍‌ଖୋର ଟେଲିଫୋନ୍‌ର କ୍ରିଂ କ୍ରିଂ ନୀରବ ହେଲା ।

କଳା କଫି କପ୍‌ରେ ଓଠ ଦେଇ ଦେଇ ବିନୟ ଦାସ, ନିର୍ଲଜ୍ଜ ସକାଳ, ପୁଲିସ୍, ସମ୍ବାଦପତ୍ର ଓ ବେଳାର ଦୁଶ୍ଚିନ୍ତାରେ ଆତଙ୍କିତ ହୋଇ ଉଠିଲେ ।

ପୁଣି ଥରେ ଟେଲିଫୋନ୍ ବାଜି ଉଠିଲା ।

ଅଭ୍ୟାସ୍‌ବଶତଃ ବିନୟ ରିସିଭର୍ ଉଠେଇ କହିଲେ, ''ଦାସ୍ ସ୍ପିକିଂ'' । ଆରପଟୁ ଭାସିଆସିଲା ତରଳ ପାରଦ ପରି ଗୋଟାଏ ହସର ହିଲ୍ଲୋଳ ।

''କାଲି ରାତିରେ ଆପଣ ନିରାପଦରେ ଘରେ ପହଂଚିଲେ ତ ?''

''ହଁ—ଅନେକ ଧନ୍ୟବାଦ—କିନ୍ତୁ ମୁଁ ପ୍ରକୃତରେ...''

''କ୍ଷମା ମାଗିବାର ପ୍ରୟୋଜନ ନାହିଁ ।''

ବିନୟ କ'ଣ କହିବେ ହଠାତ୍ ଠିକ୍ କରିପାରିଲେ ନାହିଁ ।

ଆରପଟୁ ପ୍ରଶ୍ନ ହେଲା, ''ଆଜି ସନ୍ଧ୍ୟାରେ ଫ୍ରି ଅଛନ୍ତି ତ ?''

''ହଁ ।''

''ଆସିବେ—ମୁଁ ଆପଣଙ୍କ ପାଇଁ ଅପେକ୍ଷା କରିବି ।''



# ପ୍ଲାନଚେଟ୍ ଓ ପରଲୋକ

ସେମାନେ ସମସ୍ତେ ଥିଲେ ପ୍ରାୟ ପ୍ରୌଢ଼ ଏବଂ କେହି କେହି ନିକଟ ବା ଦୂର ଅତୀତରେ ସେମାନଙ୍କର ଯୌବନ ଓ ତତ୍ସୁଲଭ ଚପଳତାକୁ ପଛରେ ପକାଇ ଆସିଥିଲେ । ତଥାପି ସେ'ଦିନ ଏକ ଗ୍ରୀଷ୍ମ ସନ୍ଧ୍ୟାରେ ଲନ୍‌ଟି କୋଳାହଳ ମୁଖର ହୋଇ ଉଠିଥିଲା । ସେମାନେ କିଛି ସମୟ ପାଇଁ ସେମାନଙ୍କର ବୟସର ଗୁରୁତ୍ୱ ଓ ସଂସାରର ଜଞ୍ଜାଳ ସବୁକିଛି ବିସ୍ମୃତ ହୋଇ ପରସ୍ପର ମଧ୍ୟରେ ବାଦାନୁବାଦରେ ରତ ଥିଲେ ଓ ଗୃହସ୍ଥ ରଜନୀକାନ୍ତ ବାବୁ ମଝିରେ ମଝିରେ ଚାହା ଆଣିବାକୁ ଚାକରକୁ ବରାଦ ଦେବାରେ ଲାଗିଥିଲେ ।

ରଜନୀକାନ୍ତ ବାବୁ ତାଙ୍କର ଅଭ୍ୟାସ ଅନୁଯାୟୀ ଖଣ୍ଡିଏ ଆରାମ ଚଉକିରେ ବସିଥିଲେ ଓ ଆଲୋଚନାର ସାମାନ୍ୟ ବିରତି ହେଲେ ଚଉକି ପଛକୁ ସାମାନ୍ୟ ଆଉଜି ପଡ଼ି ତାଙ୍କର ଈଷତ୍ ପୃଥୁଳ ଜାନୁ ଦୁଇଟିକୁ ଆଲୋଚନା ଜନିତ ଉତ୍ତେଜନାର ପ୍ରଶମନ ପାଇଁ ବାରମ୍ବାର ଆନ୍ଦୋଳିତ କରୁଥିଲେ । ଶଶଧର ବାବୁ ଜଣେ ସରକାରୀ କର୍ମଚାରୀ ଓ ତାଙ୍କର ଅବସର ନେବାକୁ ମାତ୍ର ତିନିବର୍ଷ ସମୟ ଅବଶିଷ୍ଟ ଅଛି । କର୍ମକ୍ଷେତ୍ରରେ ସେ ଜଣେ ସିଭିଲ୍ ଇଞ୍ଜିନିୟର୍ ହେଲେ ମଧ୍ୟ ଅଧୁନା ସେ ପରଲୋକ ଜଗତର ଘଟଣା ନେଇ ଆଗ୍ରହୀ ଏବଂ ଆଲୋଚନା ମଝିରେ ସେ କେବଳ ମନଯୋଗ ସହକାରେ ଶୁଣୁଥାଆନ୍ତି ଓ ମଧ୍ୟେ ମଧ୍ୟେ ଆଲୋଚନା ହୃଦୟକୁ ଘେନିଲେ ଦୁଇଥର ବାଃ, ବାଃ, ସ୍ୱଗତ ଉଚ୍ଚାରଣ କରି ହାତ ଦୁଇଟିକୁ ଚଉକୀରେ ହାତ ଉପରେ ସମତାଳରେ ବାଡ଼େଇ ଦିଅନ୍ତି । ଶଶଧର ବାବୁଙ୍କ ମୁହଁକୁ ଦେଖିଲେ ସହଜରେ ଅନୁମାନ କରିବା ସମ୍ଭବ ଯେ, ସେ ଆଲୋଚନାରେ ସବୁ ସମୟରେ ଉଦ୍‌ଗ୍ରୀବ ଓ ଉତ୍କର୍ଣ୍ଣ ।

କିନ୍ତୁ ଆଲୋଚନାର ମଧ୍ୟମଣି ଥିଲେ ଶେଫାଳୀ ଦେବୀ । ଶେଫାଳୀ ଦେବୀ ଚିର କୁମାରୀ । ତାଙ୍କ କାନ ଉପରର ବାଳରେ ସାମାନ୍ୟ ଶ୍ୱେତାଭ ସ୍ପର୍ଶ ଶେଫାଳୀ ଦେବୀଙ୍କୁ ଦେଇଛି ଏକ ମଧ୍ୟ ବୟସଜନିତ କମନୀୟତା । ଉପସ୍ଥିତ ଆସରର ବ୍ୟକ୍ତିମାନଙ୍କ ମଧ୍ୟରୁ ଏକାଧିକ ବ୍ୟକ୍ତି ଥିଲେ ତାଙ୍କର ସହପାଠୀ । ସେ ସମୟରେ ଉଚ୍ଚଶିକ୍ଷା ପାଇଁ ଯାଉଥିବା ସ୍ୱଳ୍ପ କେତେଜଣ ନାରୀମାନଙ୍କ ମଧ୍ୟରେ ଶେଫାଳୀ ଦେବୀ ଥିଲେ ଅନ୍ୟତମ ଓ ଛାତ୍ର ଜୀବନର ବହୁ ଉଚ୍ଛ୍ୱାସ ଓ ଅପ୍ରଶମିତ ଗୋପନ ଇଚ୍ଛା, ଆଜିର ଆଲୋଚନାକୁ ମଧ୍ୟ ମଝିରେ ମଝିରେ ନିୟନ୍ତ୍ରିତ କରୁଛି ।

ନରେଶ ବାବୁ କୁହନ୍ତି, ''ଶେଫାଳୀ ଦେବୀ, ଆପଣଙ୍କର ଏଇ ଚିରକୁମାରୀ ବ୍ରତ ପଛରେ ଅସଲ ରହସ୍ୟଟା କ'ଣ ଥରେ କୁହନ୍ତୁ ।''

ଶେଫାଳୀ ଦେବୀ ସେ ଦିନର ଥାର୍ଡ଼ ଇୟର୍ ଛାତ୍ରୀ ନୁହନ୍ତି । ସେ ଆଜି କଲେଜର ଜଣେ ପୋଖତ ଦର୍ଶନ ଅଧ୍ୟାପିକା । ତେଣୁ ବିନା ସଙ୍କୋଚରେ ଉତ୍ତର ଆସେ, ''ମୋର ତତ୍କାଳୀନ ବନ୍ଧୁମାନେ ବିବାହ କରିସାରିବା ପରେ ମୋର ଆଉ କ'ଣ ଉପାୟ ଥିଲା ।''

ନରେଶ ବାବୁ ଏକ କୃତ୍ରିମ ଦୀର୍ଘଶ୍ୱାସ ତ୍ୟାଗ କରି କୁହନ୍ତି, ''ଆଃ ! ଶେଫାଳୀ ଦେବୀ ସେତେବେଳେ ଯଦି ଘୁଣାକ୍ଷରେ ଆପଣଙ୍କର ଏ ଇଚ୍ଛା ଜାଣି ପାରିଥାନ୍ତି ନାଁ ତାହାହେଲେ....''

ସମବେତ ଶ୍ରୋତୃମଣ୍ଡଳୀ ସମସ୍ୱରରେ ହସି ଉଠନ୍ତି ।

ନରେଶ ବାବୁ କୁହନ୍ତି ''ନେକ୍ସ୍ଟ୍ ବାର୍ଥ''

ଟିପ୍‌ପଣୀ କାଟନ୍ତି ଶେଫାଳୀ ଦେବୀ–

''ଆଉ ନେକ୍ସ୍ଟ୍ ବାର୍ଥ ! ମାତ୍ର ଗୋଟାଏ ତ ଜୀବନ ।''

ସମସ୍ତେ ଚୁପ୍‌ଚାପ୍ । ଯେମିତି କିଛି ଗୋଟାଏ ଅସଙ୍ଗତ କଥା ଘଟିଗଲା ଆସର ଭିତରେ । ଶଶଧର ବାବୁ ଅଧୋମୁଖ । ରଜନୀକାନ୍ତ ବାବୁ ଆରାମ ଚଉକିର ନିରାପଦ ଆଶ୍ରୟ ତ୍ୟାଗ କରି ଉଠି ବସିଲେ ଓ କହିଲେ–

''ଆମମାନଙ୍କର ସେ ଭାଗ୍ୟ କାହିଁ ଶେଫାଳୀ ଦେବୀ ! ଗୋଟାଏ ଜନ୍ମରେ ମୁକ୍ତି ପାଇବା ଅନ୍ତତଃ ଆମମାନଙ୍କ ପକ୍ଷରେ ସମ୍ଭବ ନୁହଁ । କହି ନାହାନ୍ତି ବୁଦ୍ଧଦେବ, କାମନାର ବିନାଶ ନ ହେଲା ପର୍ଯ୍ୟନ୍ତ ବାରମ୍ବାର ଆସିବାକୁ ପଡ଼ିବ ଏଇ ପୃଥିବୀର ଅଗ୍ନିରେ ପୋଡ଼ିବାକୁ ।''

ଚାବୁକ ମାରିଲା ପରି ଶେଫାଳୀ ଦେବୀ କୁହନ୍ତି–

''ବାଜେ କଥା–ସ୍ରେଫ୍ ବାଜେ କଥା । ନିଜ ନିଜର ସୁବିଧା ପାଇଁ ଅନେକ ମହାପୁରୁଷ ଅନେକ ତଥ୍ୟ ଦେଇ ଯାଇଛନ୍ତି, କିନ୍ତୁ କୌଣସି ମୃତ ବ୍ୟକ୍ତି କେବେ ଏ ସଂପର୍କରେ ସାକ୍ଷ୍ୟ ଦବାକୁ ପୃଥିବୀକୁ ଫେରି ଆସିନାହିଁ ।''

''ସେଇଠି ତ ବିଚାରର ଭୁଲ୍'', ଗୋଟାଏ କଣରୁ ଅଦ୍ୟାବଧି ନୀରବ ଥିବା ବିଦ୍ୟାଧର ବାବୁ କହି ଉଠନ୍ତି ।

''କୌଣସି ଦେହ ଫେରିବା ସମ୍ଭବ ନୁହଁ–କେବଳ ବାରମ୍ବାର ଫେରିଆସେ ଅତୃପ୍ତ ଆତ୍ମାଟା ।''

''ଆତ୍ମା ! ସେଟା ପୁଣି କ'ଣ ? ତା'ର ରୂପରେଖ କ'ଣ ? ସେଟା କୋଉଠି ଥାଏ ? ପକେଟ୍‌ରେ ! ଡାକ୍ତରମାନେ ତ ମଣିଷକୁ କାଟି କୁଟି ସେପରି ଏକ ବସ୍ତୁର ସନ୍ଧାନ ପାଇ ନାହାନ୍ତି ଆଜିଯାଏ ।''

ଶେଫାଳୀ ଦେବୀଙ୍କର ଶେଷ କେଇପଦ କଥାରେ ଶ୍ଳେଷର ଆତିଶଯ୍ୟ ଥିଲା । ଆଲୋଚନା ଆଉ ଠିକ୍ ଲଘୁ ସ୍ତରରେ ନ ଥିବାରୁ ପୁଣି ଥରେ ସମସ୍ତେ କିଛି ସମୟ ପାଇଁ ନୀରବ ହେଲେ ।

ଠିକ୍ ଏତିକିବେଳେ ଶଶଧର ବାବୁଙ୍କର କ୍ଷୀଣ ସ୍ୱର ଶୁଣାଗଲା, ''ମୁଁ ଏ ବିଷୟରେ କିଛି ଜାଣେନା । ତେବେ ବିନୟବାବୁ ଏ ବିଷୟରେ ଅନେକ କଥା କୁହନ୍ତି– କ'ଣ ଗୋଟାଏ ସୋସାଇଟିର ସେ ମେମ୍ବର ଥିଲେ ଓ ସେମାନେ କେବଳ ଏଇ ପରଲୋକ, ଆତ୍ମା ପ୍ରଭୃତି ବ୍ୟାପାର ନେଇ ଗବେଷଣା କରନ୍ତି ।''

ନରେଶ୍ ବାବୁ ପଚାରିଲେ, ''କ'ଣ କୁହନ୍ତି ବିନୟ ବାବୁ ?''

ବିନୟ ବାବୁଙ୍କର ଦୃଢ଼ ଧାରଣା ଥିଲା ଯେ, ଆତ୍ମାଟାକୁ ପଞ୍ଚଇନ୍ଦ୍ରିୟ ଦେଇ ଅନୁଭବ କରି ନପାରିଲେ ମଧ୍ୟ ଆତ୍ମା ଅଛି–ଏହାର ଅନେକ ପରୋକ୍ଷ ପ୍ରମାଣ ଅଛି ଏବଂ ମଣିଷର ମର ଦେହର ଅବସାନ ଘଟିଲେ ଅବିନଶ୍ୱର ଆତ୍ମାଟା ଉପରକୁ ଚାଲିଯାଇ ସେଠାରେ ବିଭିନ୍ନ ସ୍ତରରେ ଅବସ୍ଥାନ କରେ ।

ନିଷ୍ଠୁର ନାସ୍ତିକ ଶେଫାଳୀ ଦେବୀ ଅସ୍ୱାଭାବିକ ଭାବରେ ହସି ଉଠିଲେ ଓ ଚଉକି ପଛପଟ ବାଡ଼ା ଉପରେ ତାଙ୍କର ଗ୍ରୀବାକୁ ବାରମ୍ବାର ଆନ୍ଦୋଳିତ କରୁ କରୁ କହିଲେ–

''ଏଟା ଏକାଥରକେ ପ୍ରାଥମିକ ଭୂଗୋଳ । କେଉଁଟା ଉପର କେଉଁଟା ତଳ ? କିଏ କହିଲା ପୃଥିବୀର ଉପରେ ଆକାଶ ଆଉ ସୂର୍ଯ୍ୟ ? ପୃଥିବୀଟା ଗୋଲ୍ ଓ ତା'ର ସବୁ ପଟେ ଆକାଶ । ତଳେ, ଉପରେ, କଡ଼ରେ । ଆତ୍ମାଟା ପୁଣି ହାଇଡ୍ରୋଜେନ୍ ଗ୍ୟାସ୍ ଭର୍ତ୍ତି ବେଲୁନ୍ ପରି ଆକାଶରେ ଉଡେ ! ବାଲିଯାତ୍ରା ପଡ଼ିଆକୁ ଯାତ୍ରାଦିନ ଗଲେ ଦେଖିବେ ଅନେକ ଆତ୍ମା ଆକାଶ ଆଚ୍ଛନ୍ନ କରି ବିଭିନ୍ନ ସ୍ତରରେ ଉଡୁଛନ୍ତି ।''

କିନ୍ତୁ ଶଶଧର ବାବୁ ଛାଡ଼ିବାର ପାତ୍ର ନୁହନ୍ତି । ଶ୍ଳେଷର ଆଘାତରେ ସାମାନ୍ୟ ବିଚଳିତ ନ ହୋଇ ସେ ପୁଣି ଆରମ୍ଭ କରନ୍ତି–

''ନା–ସେମାନେ ପ୍ରକୃତରେ ଅଛନ୍ତି ବିଭିନ୍ନ ସ୍ତରରେ । ସେମାନଙ୍କ ସହିତ କଥା କହି ହୁଏ–ଯୋଗସୂତ୍ର ସ୍ଥାପନ କରିହୁଏ, ଏବଂ ବିନୟ ବାବୁ ତା କରି ପାରିଥିଲେ । ମୁଁ ଶୁଣିଛି ମୃତ ବ୍ୟକ୍ତିର ଫଟୋ ମଧ୍ୟ ନେଇହୁଏ । ଏହା ବହୁବାର ପ୍ରମାଣିତ ।''

ସମବେତ ବ୍ୟକ୍ତିମାନେ ଆସ୍ତେ ଆସ୍ତେ ସେମାନଙ୍କର ବସିବା ଚଉକୀ ସବୁ ସଜାଡ଼ି ନେଲେ ଓ ଶେଫାଳୀ ଦେବୀ ତଥାପି ଅବିଶ୍ୱାସର ଆଖିରେ ଚାହିଁ ରହିଲେ । ଏପ୍ରିଲ୍‌ର ଚତୁର୍ଦ୍ଦଶୀ ଜ୍ୟୋସ୍ନା ଆକାଶର ଗୋଟିଏ ବିନ୍ଦୁରେ ସ୍ଥିର ହୋଇ ଯାଇଥିଲା । ହଠାତ୍ କାହିଁକି ପବନଟା କିଛିକ୍ଷଣ ପାଇଁ ବନ୍ଦ ହୋଇଗଲା । ରଜନୀକାନ୍ତ ବାବୁ ଦୁଇଥର ଗଳା ସଫା କରି ନେଇ ନୀରବ ହେଲେ । ମୁହୂର୍ତ୍ତକ ପାଇଁ ମନେ ହେଲା ଯେପରି କିଛି ଆତ୍ମା ଆକାଶରୁ ଓହ୍ଲେଇ ଆସି ସେମାନଙ୍କର ଚାରିପଟେ ସତର୍କ ପ୍ରହରୀ ପରି ଠିଆ ହୋଇ ଯାଇଛନ୍ତି ।

ନରେଶ୍ ବାବୁ କେତେବେଳେକେ ପଚାରିଲେ–

''କିନ୍ତୁ ବିନୟ ବାବୁଙ୍କର କ'ଣ କିଛି ବ୍ୟକ୍ତିଗତ ଅଭିଜ୍ଞତା ଥିଲା ଏ ବିଷୟରେ– ନାଁ ଖାଲି ଶୁଣା କଥା ?''

''ତାଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଥିଲା ଓ ଏତେ ପ୍ରଚୁର ଥିଲା ଯେ, ତାହା ବିଶ୍ୱାସ କରିବା ସମ୍ଭବ ନୁହେଁ । ସେ' ଏ ସଂପର୍କରେ ବିଶେଷ କଥାବାର୍ତ୍ତା ପ୍ରାୟ କରନ୍ତି ନାହିଁ; କିନ୍ତୁ ଘଟଣା ଚକ୍ରରେ ଆମେ ଦିହେଁ ଆକସ୍ମିକ ଭାବରେ ଏକତ୍ରିତ ହେଇଥିଲୁ ଏବଂ ଠିକ୍ ସେଇ ଯୋଗୁଁ ମୁଁ ତାଙ୍କଠାରୁ ସବୁକଥା ଶୁଣିବାର ସୁଯୋଗ ପାଇଥିଲି ।''

''କୁହନ୍ତୁ ନା ଘଟଣାଟା !''

''ସେ'ଦିନ ଥିଲା ଏପ୍ରିଲ୍ ପଚିଶ୍ ତାରିଖ । ମୁଁ କ୍ୟାମ୍ପ୍ କରୁଥାଏ ଭଦ୍ରକ ସବ୍‌ଡିଭିଜନ୍‌ର ଗୋଟାଏ ମଫସଲ୍‌ର ଇନିସ୍‌ପେକ୍ସନ୍ ବଂଲୋରେ । ତା'ର ଠିକ୍ କିଛିଦିନ ପୂର୍ବରୁ ବନ୍ୟାରେ ଭଦ୍ରକ ସବ୍‌ଡିଭିଜନ୍ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇ ଯାଇଥାଏ । ସେଇଦିନ ରାତିରେ ମଧ୍ୟ ଆରମ୍ଭ ହୋଇଥାଏ ପୁଣି ପ୍ରବଳ ବର୍ଷା । ଟେଲିଫୋନ୍ ବାଜିଲା । ସୁଦୂର କଟକରୁ ଟ୍ରଙ୍କକଲ୍ । କିଏ ଜଣେ ଖୋଜୁଥିଲେ ବିନୟ ଦତ୍ତଙ୍କୁ । ମୁଁ ଏପଟୁ ଜଣେଇଦେଲି ଯେ ବିନୟ ଦତ୍ତ ବୋଲି କେହି ଏ ବଂଲୋରେ ନାହାନ୍ତି । ତା'ପରେ କେବଳ ଉପର ଠାଉରିଆ ଭାବରେ ସେପଟୁ ଜବାବ୍ ଆସିଲା– ''ଦେଖନ୍ତୁ ମୁଁ ତାଙ୍କର ଜଣେ ବନ୍ଧୁ କହୁଥିଲି–ଯଦି ଆପଣ ଥିବା ଭିତରେ ବିନୟବାବୁ ସେଠିକି ଆସନ୍ତି ତାହାହେଲେ ଦୟା କରି ତାଙ୍କୁ ଖବର ଦେଇଦେବେ ଯେ ଆଜି ଡେପୁଟି ମାଜିଷ୍ଟ୍ରେଟ୍ ହିସାବରେ ତାଙ୍କର କନ୍‌ଫରମେସନ୍ ହୋଇଗଲା ।''

ମୁଁ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇଥିଲି । ଭଦ୍ରକର ଏଇ ଅପନ୍ତରା ଆଇ.ବି.କୁ ଏତେବେଳେ ଜଣେ ଅଜ୍ଞାତ ବିନୟ ଦତ୍ତଙ୍କ ପାଖକୁ ଏପରି ଗୋଟାଏ ଅସାଧାରଣ ଖବର ଆସିବାର ହେତୁ ବା କ'ଣ ହୋଇପାରେ ? କିନ୍ତୁ ଅଳ୍ପ କିଛି ସମୟ ପରେ ପରେ ଜଣେ ଭଦ୍ରବ୍ୟକ୍ତି ଆସି ନିଜକୁ ବିନୟ ଦତ୍ତ ବୋଲି ପରିଚୟ ଦେଇ ପାଖ ସୁଇଟ୍‌ରେ

ରହିବାକୁ ଚାହିଁଲେ । ବିନୟ ଦତ୍ତ ନାଁଟା ଚାବୁକ୍ ପରି ବାଜିଲା ମୋ' ମନରେ । ପାଖକୁ ଯାଇ ପଚାରିଲି ଆଜି ତାଙ୍କର ଏଠି ରହିବା ଆଗରୁ ନିର୍ଦ୍ଧାରିତ ଥିଲା କି ନାଁ । ସେ' ଜବାବ୍‌ରେ କହିଲେ ଯେ ତାଙ୍କର କୌଣସି ପ୍ରୋଗ୍ରାମ୍ ନଥିଲା । ସେ' ଏଇ ବର୍ତ୍ତମାନ ଗୋଟାଏ ରିଲିଫ୍ ସେଣ୍ଟର୍‌ରେ ଖାଦ୍ୟଶସ୍ୟ ଦେଇ ଆସି ରାତି ଗୋଟାକର ବିଶ୍ରାମ ପାଇଁ ଏଠିକି ଆସିଛନ୍ତି ।

ଟେଲିଫୋନ୍‌ରେ ତାଙ୍କ ପାଇଁ ଯାହା କିଛି ସମ୍ବାଦ ଥିଲା ସେତକ ଦେଇସାରିବା ପରେ ବିନୟ ବାବୁଙ୍କର ଆଖି ଆନନ୍ଦ ଓ କୃତଜ୍ଞତାରେ ଉଜ୍ଜ୍ୱଳ ହେଇ ଉଠିଲା । ତା'ପରେ ସେ' ଆସ୍ତେ ଦୁଇହାତ ଯୋଡ଼ି ମୁଣ୍ଡରେ ଛୁଁଆଇଲେ ।

ଏଇ ଘଟଣା ସଂପର୍କରେ ମୋ'ର ସାମାନ୍ୟ କୌତୂହଳ ଜାଗ୍ରତ ହେବା ସ୍ୱାଭାବିକ । କିନ୍ତୁ ମୋ'ଠାରୁ ଏ ବିଷୟରେ ଆଲୋଚନା କରିବା ପାଇଁ ବିନୟ ବାବୁ ଆହୁରି ବେଶୀ ଆଗ୍ରହୀ ଥିଲେ ସେ'ଦିନ । ତେଣୁ ସେଦିନ ରାତିରେ ଆମେମାନେ ଅନେକ ସମୟ ପର୍ଯ୍ୟନ୍ତ ଗପ କରିଥିଲୁ ଓ ତା'ପରେ ମଧ୍ୟ କେତେଥର ଏ ସଂପର୍କରେ ଆଲୋଚନା କରିଚୁ ।

ଶଶଧର ବାବୁ ନୀରବ ହେଲେ । ତଥାପି ସମସ୍ତେ ନୀରବ । କେବଳ ଶେଫାଳୀ ଦେବୀ କହିଲେ, ''ଏ ଘଟଣାରୁ କ'ଣ ଯେ ପ୍ରମାଣ ହେଲା ମୁଁ ବୁଝିପାରୁ ନାହିଁ ?''

''ନାଁ, ଠିକ୍ କଥା, ଏଥିରେ ପ୍ରମାଣ ହବାର କିଛି ନାହିଁ । କିନ୍ତୁ ସେ' ଯାହା କହିଲେ....''

''ଆଃ—କୁହନ୍ତୁ ନାଁ'' ନରେଶ୍ ବାବୁ ଅଯଥା ଉତ୍କଣ୍ଠିତ ହୋଇ ପଡ଼ିଥିଲେ ।

''ମୁଁ ମୋ' ଭାଷାରେ ନ କହି ବରଂ ବିନୟ ଦତ୍ତଙ୍କ ନିଜ ଭାଷାର କହିବା ଉଚିତ୍ ହବ । କାରଣ ଅଧିକାଂଶ ସମୟ ହିଁ ମୁଁ କେବଳ ଶ୍ରୋତା ଥିଲି ।''

ରଜନୀକାନ୍ତ ବାବୁ ଆଉ ଟିକିଏ ପରିଷ୍କାର କରି ଦବା ପାଇଁ କହିଲେ, ''ଅର୍ଥାତ୍ ଆପଣ ନିଜେ ବିନୟବାବୁ ହୋଇ ଘଟଣାଟା କହିବେ ପ୍ରଥମ ପୁରୁଷରେ ।''

''ହଁ, ତାହାହେଲେ ବୋଧହୁଏ କଥାଟା ଠିକ୍ ଠିକ୍ କହିହବ ।''

ଆଉ ଥରେ ଶ୍ରୋତାମାନେ ନିଜକୁ ସଜାଡ଼ି ନେଲେ ଓ ଶେଫାଳୀ ଦେବୀ ଜଣେ ସିନିକ୍‌ର ଔଦ୍ଧତ୍ୟ ନେଇ ତାଙ୍କର ହାତ ଦୁଇଟାକୁ ଛାତି ଉପରେ ଛନ୍ଦିଦେଇ ବସିଥିଲେ । ଶଶଧର ବାବୁ ଆରମ୍ଭ କଲେ ।

''ମୁଁ ସେତେବେଳେ କଲେଜ୍‌ରେ ପଢୁଥିଲି । ଗୋପା ମୋର ସହପାଠିନୀ ଥିଲା । ଠିକ୍ ପ୍ରେମ ନ ହେଲେ ବି ଆମ ଭିତରେ ଭବିଷ୍ୟତରେ ବିବାହ ହବାର ଏକ ଯୁକ୍ତ

ଅଙ୍ଗୀକାର ଥିଲା । କିନ୍ତୁ ଘଟଣା ଚକ୍ରରେ ତାହା ସମ୍ଭବ ହେଲା ନାହିଁ । ପରିବାରର ଚାପରେ ଗୋପାକୁ ବିବାହ କରିବାକୁ ପଡ଼ିଥିଲା ଅନ୍ୟ ଜଣକୁ ତା'ର ଇଚ୍ଛା ବିରୋଧରେ; କିନ୍ତୁ ସେ ବିବାହ ପରେ ମଧ୍ୟ ବେଶିଦିନ ବଂଚିପାରିଲା ନାହିଁ । ଗୋପା ମରିଗଲା ବିବାହର ଛ'ମାସ ଭିତରେ କୌଣସି ଏକ ଅଚିହ୍ନା ରୋଗରେ । ସେ' ସମୟରେ ସାମୟିକ ଭାବରେ ସହରରେ ଆତ୍ମହତ୍ୟାର ଗୁଜବ ମଧ୍ୟ ଶୁଣାଯାଇଥିଲା ।

ସେ ଯାହାହେଉ, ପଏଣ୍ଟଟା ସେଠି ନୁହେଁ । ସେଟା କେବଳ ଗୋଟାଏ ସଂକ୍ଷିପ୍ତ ମୁଖବନ୍ଧ ।

ସେଦିନ ଆମ ଘରେ କେତେଜଣ ବନ୍ଧୁଙ୍କର ଆସର ଜମିଥାଏ । ପ୍ଲାନ୍‌ଚେଟ୍ ଶବ୍ଦଟା ସେଦିନ ମୁଁ ପ୍ରଥମ କରି ଶୁଣିଲି । ଏଇ ଅଦ୍‌ଭୂତ ଯନ୍ତ୍ର ଦେଇ କୁଆଡ଼େ ମୃତ ବ୍ୟକ୍ତିମାନଙ୍କ ସହିତ ଯୋଗସୂତ୍ର ସ୍ଥାପନ କରିହୁଏ । ମୋର ସେଥିରେ ଏତେ ଟିକିଏ ବିଶ୍ୱାସ ନ ଥିଲା; କିନ୍ତୁ ବାଧ୍ୟ ହୋଇ ବନ୍ଧୁମାନଙ୍କର ଚାପରେ ମୁଁ ସେଥିରେ ଯୋଗଦେଲି । ତିନିଟା ଗୋଡ଼ଥିବା ଗୋଟାଏ ଗୋଲ୍ ଟେବୁଲ୍ ଏବଂ ତା' ଚାରିପଟେ ଆମେ ବସି ରହିଲୁ ପାଞ୍ଚଜଣ ହାତକୁ ହାତ ଛୁଆଇଁ । ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତି (ପରଲୋକଗତ) ସମ୍ପର୍କରେ ଆମେ ମନଯୋଗ ଦେଇ ଭାବିବାକୁ ଆରମ୍ଭ କଲୁ ଓ ଆଶ୍ଚର୍ଯ୍ୟ ଯେ କିଛି ସମୟ ପରେ ସ୍ଥାବର ଟେବୁଲ୍‌ଟା ହଠାତ୍ ଉପରକୁ ଉଠିବାର ଚେଷ୍ଟାରେ ଆମମାନଙ୍କୁ ଅସ୍ଥିର କରିଦେଲା । ଆମର ମନେ ହେଲା ଯେପରି ଟେବୁଲ୍‌ଟା ଶୂନ୍ୟରେ ଭାସୁଛି ।

ତା'ପରେ ସେଇ ଅଦୃଶ୍ୟ ଶକ୍ତିକୁ ପ୍ରଶ୍ନ କରାଗଲା, ତୁମେ କିପରି ଅଛ ? ଟେବୁଲ୍‌ର ଗୋଡ଼ ବାଡ଼େଇ ସଙ୍କେତ ଆସିଲା, ଭଲ ଅଛି । 'ତମେ ପୃଥିବୀକୁ ଆଉଥରେ ଆସିବାକୁ ଚାହଁ !' ଟେବୁଲ୍ ଅସ୍ଥିର । ମତେ ବୁଝେଇ ଦିଆଗଲା ସ୍ପିରିଟ୍ ଭୀଷଣ ବିରକ୍ତ । ଅତଏବ ଏହା ନାସ୍ତିସୂଚକ ବୋଲି ଧରିବାକୁ ହବ ।

ମୋର ବନ୍ଧୁମାନେ ଚାଲିଗଲେ; କିନ୍ତୁ ସେଦିନର ଘଟଣା ମୋ' ମନରେ ଗୋଟାଏ ନୂଆ ଆଶାର ସଞ୍ଚାର କଲା । ହୁଏତ ସମ୍ଭବ ମୁଁ ଗୋପା ସହିତ କିଛି ଯୋଗସୂତ୍ର ସ୍ଥାପନ କରିପାରିବି ।

ସେ'ଦିନ ସନ୍ଧ୍ୟାରେ ମୁଁ ଏକୁଟିଆ ବସି ରହିଛି ଗୋଲ୍‌ଟେବୁଲ୍ ସାମ୍ନାରେ ଦୁଇ ହାତକୁ ଟେବୁଲ୍ ଉପରେ ଯୋଡ଼ି ଓ ଏକାନ୍ତ ମନରେ ଭାବି ବସିଲି ଗୋପା କଥା, ଟେବୁଲ୍‌ର କୌଣସି ଆନ୍ଦୋଳନ ନାହିଁ; କିନ୍ତୁ ମୁଁ ଅନୁଭବ କଲି ଗୋପା ଯେପରି ଆସି ମୋର ପଛରେ ଠିଆ ହୋଇ ରହିଛି, ଯେମିତି ତା' ନାକର ଧୀର ନିଶ୍ୱାସ ମୋ'ର କାନ୍ଧ ଉପରେ ପଡୁଛି ମଝିରେ ମଝିରେ ।

ମୁଁ ପଚାରିଲି, ଗୋପା କେମିତି ଅଛ ? ଶୂନ୍ୟ ଘରଟା ଭିତରେ ମୋର ନିଜର କଣ୍ଠସ୍ୱର କିପରି ବିଭଙ୍ଗ ଶୁଣାଗଲା; କିନ୍ତୁ ମୁଁ ଶୁଣିପାରିଲି ଗୋପା କହୁଛି–ହଁ ଗୋପା କଥା କହୁଚି । ମୋ'ର କ'ଣ ଗୋପାର କଣ୍ଠସ୍ୱର ବିଷୟରେ ଭ୍ରମ ହୋଇପାରେ ! ଗୋପା କହିଲା– ''ବିଶେଷ ଭଲ ନାହିଁ।''

ମୁଁ ପଚାରିଲି, ''କାହିଁକି କ'ଣ ହେଲା ?''

ଜବାବ୍ ଆସିଲା, ''ସେଟା ତମକୁ ବୁଝେଇବା ସମ୍ଭବ ନୁହେଁ ।''

''ତମକୁ ଭାରି ଦେଖିବାକୁ ଇଛା ହେଉଛି ।''

''ତମେ ସେଠି ଥାଇ, ମୁଁ ଏଠି ଥାଇ ତା' ସମ୍ଭବ ନୁହଁ ।''

''ମୋର ତ ଅଳ୍ପ ଦିନ–ମୁଁ ଯାଉଛି ତମ ପାଖକୁ ।''

''ନାଁ, ତମ ଆଗରୁ ମୁଁ ପୃଥିବୀକୁ ଫେରିଯାଉଚି ।''

''ହଁ ତମ ପାଇଁ ଗୋଟାଏ ଖବର । ତମର ପୋଷ୍ଟରେ ତମର କନ୍‌ଫରମେସନ୍ ହୋଇଯିବ, ତମେ ସେ ସମ୍ବାଦ ପାଇବ ଏଇ ଏପ୍ରିଲ୍ ପଚିଶ ତାରିଖ ଦିନ ।''

''ଆଉ ସେ'ଦିନ ଆମେ ଡାକ ବଙ୍ଗଳାରେ ବସି କଥାବାର୍ତ୍ତା କରୁଥିଲୁ ଏପ୍ରିଲ୍ ପଚିଶ ତାରିଖ ଦିନ । ଏଟା କ'ଣ କୋଏନ୍‌ସିଡେନ୍‌ସ ଶେଫାଳୀ ଦେବୀ ?''

ଶେଫାଳୀ ଦେବୀ ତାଙ୍କର ଚଟିରେ ଲନ୍ ଉପରେ ଗାର କାଟୁଥିଲେ ।

ତା'ର କିଛି ଦିନ ପରେ ପୁଣିଥରେ ବସିଲି ପ୍ଲାନ୍‌ଚେଟ୍ ସାମ୍ନାରେ ।

''ଗୋପା ତମେ ଆସିଚ ?''

''ହୁଁ ।''

''ଖବର କ'ଣ ?''

''ମୁଁ ସେପ୍ଟେମ୍ବର ବେଳକୁ ପୃଥିବୀକୁ ଫେରିଯାଉଛି–କିନ୍ତୁ ଭାରତବର୍ଷକୁ ନୁହଁ, ରୁଷିଆକୁ । ତେବେ ତମ ସହିତ ଦେଖା ହବ କୋଡ଼ିଏ ବର୍ଷ ପରେ, ଭୁବନେଶ୍ୱରରେ ।''

''ତାହାହେଲେ ସେପ୍ଟେମ୍ବର ପରେ ମୋର ପ୍ଲାନ୍‌ଚେଟ୍ ବନ୍ଦ ।''

''ନାଁ–ମୁଁ ଆଉ ଜଣେ ବନ୍ଧୁଙ୍କୁ ପରିଚୟ କରେଇ ଦେବି ତା' ନାଁ ସମୀନା ।''

ଆମର ଯୋଗାଯୋଗ ଛିନ୍ନ ହୋଇ ଯାଇଥିଲା ଅନେକ ଦିନ ଧରି । ସେଦିନ ଅକସ୍ମାତ ବିନୟବାବୁଙ୍କ ସହିତ ମୋର ସାକ୍ଷାତ ହେଲା ଭୁବନେଶ୍ୱର ଗେଷ୍ଟ ହାଉସ୍‌ର ଲାଉଞ୍ଜ୍‌ରେ । ବିନୟବାବୁଙ୍କର ବାଳ ସବୁ ଧଳା ହୋଇଯାଇଛି । ତାଙ୍କର ରିଟାୟାର କରିବାକୁ ଆଉ ମାତ୍ର ଗୋଟାଏ ବର୍ଷ ଅଛି । ସେ ଅଧୁନା ଭୁବନେଶ୍ୱରର ଡାଇରେକ୍ଟର ଅଫ୍ ଟୁରିଜିମ୍ । ବିନୟବାବୁ କହିଲେ, ''ଆଜି ସେଇ ଚରମ ଦିନ ଉପସ୍ଥିତ । ଆଜି ମୁଁ

ଏଆର୍ ପୋର୍ଟ ଯାଉଛି ଗୋଟାଏ ରସିଆନ୍ ଟିମ୍‌କୁ ସ୍ୱାଗତ କରିବାକୁ । ସେଥିରେ ଚାରିଜଣ ପୁଅ ଓ ଜଣେ ମାତ୍ର ଝିଅ । ମନେ ଅଛି ଶଶଧର ବାବୁ କୋଡ଼ିଏ ବର୍ଷ ତଳର କଥା ? ସେଇ ବର୍ଷ ସେପ୍ଟେମ୍ବରରେ ତା'ର ପୃଥିବୀରେ ଜନ୍ମ ନବାର କଥା ।''

ମୁଁ ହତବାକ୍ ହୋଇ ଯାଇଥିଲି ।

ଶଶଧର କହି ଚାଲିଛନ୍ତି ।

''ମୁଁ ନିର୍ଦ୍ଦିଷ୍ଟ ସମୟରେ ଏଆର୍ ପୋର୍ଟରେ ପହଂଚିଲି ଓ ପ୍ଲେନ୍‌ର ସିଡ଼ି ଧରି ସେମାନେ ଓହ୍ଲେଇ ଆସିଲେ ଜଣକ ପରେ ଜଣେ । ଝିଅଟିର ନାଁ ତାନିଆ । ମୁଁ ତାନିଆର ମୁହଁ ଭିତରେ ଗୋପାର ମୁହଁ ଖୋଜୁଥିଲି । କିନ୍ତୁ ତାନିଆ, ତାନିଆ, ଗୋପା ଗୋପା ।''

ସେମାନଙ୍କୁ ନେଇ ମତେ ଓଡ଼ିଶାର ଅନେକ ଜାଗା ବୁଲିବାକୁ ପଡ଼ିଲା । ତାନିଆ ସହିତ ସାମାନ୍ୟ ଘନିଷ୍ଠତା ହେଲା ମଧ୍ୟ ।

ଦିନେ ଅନ୍ୟମାନଙ୍କ ଅନୁପସ୍ଥିତିରେ ମୁଁ ତାନିଆକୁ ପଚାରିଲି–

''ଆଚ୍ଛା ତାନିଆ, ତମେ ଗୋପା ବୋଲି ଗୋଟିଏ ଝିଅକୁ ଜାଣ ?''

''ନାଁ''

ମୁଁ ଆଘାତ ପାଇଲି, ତଥାପି ପଚାରିଲି, ''ତମେ ବିନୟକୁ ଜାଣ ?''

''ନାଁ''

''ତମେ ଅନେକଥର ବିନୟ ସହିତ କଥା କହିଚ ?''

ଦୋଭାଷୀ ସ୍ପଷ୍ଟ ଅନୁବାଦ କଲା ''କେଉଁ ବିନୟ ? କେବେ କହିଲି ?''

''ତମେ ପୃଥିବୀରେ ଜନ୍ମ ହେବା ପୂର୍ବରୁ ଯେତେବେଳେ ସେଠି ଥିଲ ?''

ମୁଁ ଡାହାଣ ହାତର ବୃଦ୍ଧାଙ୍ଗୁଷ୍ଠିରେ ଆକାଶକୁ ଦେଖେଇବାକୁ ପ୍ରୟାସ କରୁଥିଲି ।

ତାନିଆ ହସି ହସି ଗଡ଼ିଗଲା ।

ଦୋଭାଷୀ ବୁଝେଇ ଦେଲା ''ଜନ୍ମ ହବା ପୂର୍ବରୁ କ'ଣ କେହି କେବେ କଥାବାର୍ତ୍ତା କରେ ?''

ମୁଁ ହତଭମ୍ବ ହୋଇ କେବଳ ତାନିଆର ସୁନୀଳ ଆଖିକୁ ଚାହିଁ ରହିଥିଲି ଏବଂ ମୁଁ ଯେ' କାହିଁକି ଏପରି ତାକୁ ଚାହିଁ ରହିଥିଲି ସେ' କଥା ତାନିଆ ମୋତେ ଚାହିଁ ରହି କଳନା କରିବାକୁ ଚେଷ୍ଟା କରୁଥିଲା ।

ସେମାନଙ୍କର ଗଳ୍ପର ଆସର ଶେଷ ହେଲା ବେଳକୁ ଚତୁର୍ଦ୍ଦଶୀର ଜ୍ୟୋତ୍ସ୍ନା ଆକାଶରେ ଅଭିମାନରେ ଝୁଲି ରହିଥିଲା ।

●●

# ଜଉଘର

ବିଦେଶରେ ବହୁଦିନ ରହି ସାରିବା ପରେ ଯେତେବେଳେ ମୋ'ର ଦେଶ କଥା ମନେ ପଡ଼ିଲା, ମୁଁ ମନେ ମନେ ମୋ'ର ଦେଶରେ ରହିବା ସମୟର ଘଟଣା ସବୁ ମନେ ପକାଇବାକୁ ଚେଷ୍ଟା କଲି । କିନ୍ତୁ ଦେଖିଲି, ମୋ'ର ତରୁଣ ଦିନର ଅନେକ କୌତୂହଳପୂର୍ଣ୍ଣ ଘଟଣାସବୁ ମୁଁ ଭୁଲିଯାଇଛି ସମ୍ପୂର୍ଣ୍ଣ ଭାବରେ । ଏପରିକି ମୋର ନିଜ ସହରର ମାନଚିତ୍ର ମଧ୍ଯ ମୋ' ନିକଟରେ ଅସ୍ପଷ୍ଟ ହୋଇଆସିଲାଣି ।

ହାମ୍‌ବୁର୍ଗ ସହରରେ କେଉଁଦିନ ଠିକ୍ କେତେ ଘଣ୍ଟା ସମୟରେ ମତେ ଅବସର ନେବାକୁ ପଡ଼ିବ, ସେ'କଥା ସୁନିର୍ଦ୍ଧାରିତ ଏବଂ ତାହାର ବ୍ୟତିକ୍ରମ କଦାପି ସମ୍ଭବ ନୁହେଁ । କାରଣ ଏହି ଅବସରର ଦିନଟିକୁ ବା ଘଣ୍ଟାଟିକୁ ନିର୍ଦ୍ଦିଷ୍ଟ କରିବା ପଛରେ ସେମାନଙ୍କର ଯଥେଷ୍ଟ ଯୁକ୍ତି ଅଛି । ମୋର କାର୍ଯ୍ୟ ସଂକ୍ରାନ୍ତରେ ସଂଖ୍ୟାଧିକ କୁକୁଡ଼ା ଫାର୍ମ ତଦାରଖ କଲାବେଳେ ମୁଁ ଦେଖିଛି ସେମାନେ କୁକୁଡ଼ା ଛୁଆଗୁଡ଼ିକୁ ମନୁଷ୍ୟ ଶିଶୁଠାରୁ ଅଧିକ ଯତ୍ନର ସହିତ ଲାଳନ ପାଳନ କରନ୍ତି ଏବଂ ନିର୍ଦ୍ଦିଷ୍ଟ ଦିନଟି ଆସିଗଲେ ହଜାର ହଜାର ସଂଖ୍ୟାର କୁକୁଡ଼ାମାନଙ୍କୁ ମାରି ଶୀତଳ ଭଣ୍ଡାରକୁ ପଠେଇ ଦିଅନ୍ତି । କିନ୍ତୁ ସେହି ଦିନଟିକୁ କିପରି ନିର୍ଦ୍ଧାରିତ କରାଯାଏ ବୋଲି ମୁଁ ପ୍ରଶ୍ନ କରିଥିଲି ଏବଂ ଜାଣିଲି ଯେ, ତାହା ''ଷ୍ଟାଟିଷ୍ଟିକ୍ସ'' ନାମକ ଏକ ବିଜ୍ଞାନ ଦ୍ୱାରା କଳନା କରାଯାଏ । ସେହି ବିଜ୍ଞାନଟି କୁହେ ଯେ, ତିନି ଶହ ତେଷଠି ଦିନ ପର୍ଯ୍ୟନ୍ତ କୁକୁଡ଼ାକୁ ଏକ ୟୁନିଟ୍ ଖାଦ୍ୟ ଦେଲେ ତା' ଦେହରେ ଏକ ପଏଣ୍ଟ ବାର ୟୁନିଟ୍ ମାଂସ ବୃଦ୍ଧି ହୁଏ ଏବଂ ଠିକ୍ ଗୋଟାଏ ଦିନ ଅତିକ୍ରମ କରିଗଲେ ଏକ ୟୁନିଟ୍ ଖାଦ୍ୟ ମାତ୍ର ପଏଣ୍ଟ ପଞ୍ଚାଅଶି ୟୁନିଟ୍ ମାଂସ ବୃଦ୍ଧିକରେ । ସୁତାରାଂ କ୍ଷତି । ଘୋର କ୍ଷତି । ପଏଣ୍ଟ୍ ସତେଇଶ ୟୁନିଟ୍ ଗୁଣିତକ ଏକଲକ୍ଷ ବା' ସମଗ୍ର ଦେଶର ପଚିଶି କୋଟି କୁକୁଡ଼ା । ତେଣୁ ଦେଶର ତିନିଶତ ତେଷଠି ଦିନ ବୟସ୍କ ସମସ୍ତ କୁକୁଡ଼ା ସେଦିନ ମରିବାକୁ ବାଧ୍ୟ ।

ଠିକ୍ ସେହି ଷ୍ଟାଟିଷ୍ଟିକ୍ସ ବିଜ୍ଞାନ ମଧ୍ୟ ମୋର ଅବସର ନବାର ଦିନଟିକୁ ନିର୍ଦ୍ଧାରିତ କରିଚି । ଆଉ ଠିକ୍ ଆଠମାସ ତେରଦିନ ଛଅ ଘଣ୍ଟା ପରେ ମୋର କାର୍ଯ୍ୟଦକ୍ଷତା ଏକ ୟୁନିଟ୍ ଖାଦ୍ୟ ବିନିମୟରେ ହବ ପଏଣ୍ଟ ପଞ୍ଚାଅଶି ୟୁନିଟ୍ । ସୁତରାଂ ଅବସର । ମୋର ଛୋଟ ବାଲ୍‌କନିଟିରେ ବସି ମୁଁ ଏଇକଥା ଚିନ୍ତା କରୁଥିଲି । ସନ୍ଧ୍ୟା ପ୍ରାୟ ଆସନ୍ନ ଓ

ହାମ୍‌ବୁର୍ଗ ସହର ତାହାର ବହିର୍ବାସ ଉନ୍ମୁକ୍ତ କରିସାରି ବିକିନି ପରିହିତା ଗୋଟିଏ ପ୍ରୌଢ଼ା ନାରୀ ପରି ଅପେକ୍ଷା କରି ରହିଛି ।

ଜେନି ତା'ର ଚିରାଚରିତ ରୀତିରେ ଲଘୁ ପଦଚାରଣା କରି ପାଖ ଚଉକିରେ ଆସି ବସିଲା । ଜେନି ମୋର ସ୍ତ୍ରୀ । ମୁଁ ଅନ୍ୟମନସ୍କ ହୋଇ ମୋର ଓକ୍ ପାଇପ୍‌ରେ ଟବାକୋ ଭର୍ତ୍ତି କଲି ।

ଆଜି ଶନିବାରର ସନ୍ଧ୍ୟା, ତେଣୁ ଘରେ ଖାଇବାର କୌଣସି ଆୟୋଜନ ନ ରହିବାର କଥା ଏବଂ ମୁଁ ଗୋଟିଏ ଭଲକରି ଇସ୍ତ୍ରୀକରା ସୁଟ୍ ପିନ୍ଧି ଜେନିକୁ ସାଙ୍ଗରେ ନେଇ ଗ୍ୟାରେଜ୍‌ରୁ ଗାଡ଼ି କାଢ଼ି, ସହରର ଉପକଣ୍ଠରେ କୌଣସି ପରମ୍ପରାମୁକ୍ତ ହୋଟେଲ୍‌ରେ ଖାଇ ଟିକିଏ ଡେରି କରି ଘରକୁ ଫେରିବା ଉଚିତ୍ । ପ୍ରତି ଶନିବାର ଜେନି ଦୁଇଟା ବ୍ରାଣ୍ଡି ଅଧିକା ଖାଏ । ହାମ୍‌ବୁର୍ଗ ପ୍ରୌଢ଼ାର ଅନ୍ୟତମ ଶନିବାରୀ ବିଳାସ !

ମୁଁ ହଠାତ୍ କହିଲି, ''ଜେନି, ଆଜି ବାହାରକୁ ନ ଗଲେ କେମିତି ହୁଅନ୍ତା—ଫର ଏ ଚେଞ୍ଜ୍ ?''

ଜେନି ସାମାନ୍ୟ ଆଶ୍ଚର୍ଯ୍ୟ ହେଲେ ମଧ୍ୟ କହିଲା,

''କାହିଁକି ? ତମର ଦିହ କ'ଣ ଭଲ ଲାଗୁ ନାହିଁ ?''

''ନାଁ, ଦିହ ନୁହଁ, ମନଟା ।''

''କିନ୍ତୁ ହଠାତ୍ ?''

ମୁଁ କିଛି ଜବାବ୍ ଦେଲି ନାହିଁ । କାରଣ ମୁଁ ଯାହା କହିଥାଆନ୍ତି ସେଥିରେ ଜେନିର ଆଗ୍ରହ ହବ କି ନାଁ ମୁଁ ସେ ବିଷୟରେ ସନ୍ଦିହାନ ଥିଲି ।

ଜେନି ଉଠି ଚାଲିଗଲା । ଅଭିମାନରେ ନୁହଁ । ସେ ତଦାରଖ୍ କରିବାକୁ ଯାଇଥିଲା ଯେ, ଫ୍ରିଜ୍‌ରେ ଗଚ୍ଛିତ ଥିବା ଖାଦ୍ୟ ଆମ ଦୁଇଜଣଙ୍କର ରାତ୍ରି ଭୋଜନ ପାଇଁ ଯଥେଷ୍ଟ ହବ କି ନାହିଁ ।

ମୁଁ ଅନ୍ୟମନସ୍କ ଭାବରେ ହାମ୍‌ବୁର୍ଗର ଆକାଶକୁ ଚାହିଁ ରହିଚି ଏବଂ ସେଇ ଶୂନ୍ୟ ଆକାଶ ଭିତରୁ ଯେଉଁ ମାନଚିତ୍ର ମୋ' ଆଖି ଆଗରେ ଭାସି ଉଠିଲା ତାହା ସପ୍ତମ ଶ୍ରେଣୀରେ ମୋ'ରି ଅନଭ୍ୟସ୍ତ ହାତଅଙ୍କା ମୋରି ଦେଶର ମାନଚିତ୍ର । କଲିକତାର ଦନ୍ତୁରିତ ଉପକୂଳ ଓ ଗୁଜୁରାଟକୁ ମୁଁ ଠିକ୍ ଭାବରେ ଆଙ୍କିପାରେ ନାହିଁ । ଅନଭ୍ୟସ୍ତ ଶିଶୁ ହାତର ଅଙ୍କା ଭାରତବର୍ଷର ମାନଚିତ୍ର ! କିନ୍ତୁ ମୁଁ ଆଙ୍କିପାରେ ନାହିଁ ବୋଲି ସୁନ୍ଦରବନର ମହାବଳ ବାଘ ତା'ର ରଙ୍ଗ ହଜେଇ ନାହିଁ ବା ସିନ୍ଧୁ ବା ଗଙ୍ଗୋତ୍ରୀ ତାଙ୍କର

କରୁଣା-ବାରି ସେଚନ କରିବାରେ କାର୍ପଣ୍ୟ କରିନାହାନ୍ତି । ମୁହୂର୍ତ୍ତକ ପାଇଁ ମୁଁ ସତରେ ମୋର ଦେଶର ଅବର୍ତ୍ତମାନରେ ମିୟମ୍ରାଣ ହୋଇ ପଡ଼ିଲି । ଦରଭୁଲା ସଂଗୀତ ପରି ପୁରାତନ ଦିନର ସ୍ମୃତି ବାରମ୍ବାର ମତେ ଅତିଷ୍ଠ କରିବାକୁ ଲାଗିଲା ।

ମୁଁ ମୋର ବାଲ୍ୟସାଥୀମାନଙ୍କର ନାଁ ମନେ ପକେଇବାକୁ ଚେଷ୍ଟା କଲି; କିନ୍ତୁ ହାୟ ! ନାଁ ତ ଦୂରର କଥା କାହାର ଚେହେରା ମଧ୍ୟ ମୁଁ ମନେକରି ପାରିଲି ନାହିଁ, ଯେଉଁମାନଙ୍କର ନାଁ ମୋ'ର ମନେ ପଡ଼ିଲା ସେମାନଙ୍କର ବ୍ୟକ୍ତିତ୍ୱ ବିଷୟରେ ମୋର କୌଣସି ସ୍ମୃତି ଅବଶିଷ୍ଟ ନାହିଁ । ସବୁଗୁଡ଼ାକ କେବଳ ସମ୍ବାଦପତ୍ରରେ ପ୍ରକାଶିତ ନାଁ । କିଏ ଖେଳାଳି ହିସାବରେ ବା କୃତୀ ଛାତ୍ର ହିସାବରେ ପ୍ରସିଦ୍ଧି ଅର୍ଜନ କରିଛି ଏବଂ କିଏ ମଧ୍ୟ କହିପାରିବ ସେମାନଙ୍କର ଠିକଣା ?

ଘର ଭିତରଟା ଅପେକ୍ଷାକୃତ ଚୁପ୍‌ଚାପ୍ ।

ଜେନି ବୋଧହୁଏ ରାତ୍ରି ଭୋଜନର ଆୟୋଜନ କରିସାରି ତା'ର ସିଗାରେଟ୍ ହୋଲ୍‌ଡର୍‌ରେ ସିଗାରେଟ୍ ଧରେଇ ଟିଭି ଦେଖୁଚି ।

କିନ୍ତୁ ମୁଁ ଅନେକ ଦିନ ତଳେ ହଜେଇ ଆସିଥିବା ଗୁଡ଼ାଏ ମୁହଁ ଭିତରେ ଖୋଜୁଚି ଗୋଟାଏ ମୁହଁ, ଯାହାକୁ ହୁଏତ ମୁଁ ଦିନେ ଜାଣିଥିଲି । ଫୋକସ୍‌ର ଅନେକ ବାହାରକୁ ଚାଲିଯାଇଥିବା ଯେଉଁ ମୁହଁଟି ଆସ୍ତେ ଆସ୍ତେ ମୋ ଆଖି ଆଗରେ ସ୍ପଷ୍ଟ ହେଇ ଆସିଲା, ସ୍କୁଲ୍‌ର ଦଶମ ଶ୍ରେଣୀରେ ସେ' ଥିଲା ମୋର ସହପାଠୀ ଏବଂ ସେ ଠିକ୍ ମୋରି ବାଁ ପଟେ ତା'ର ଡେସ୍କ ଉପରେ ଗୋଟିଏ କାଳିଘଡ଼ି ଓ କଲମ ଧରି ନିୟମିତ ଭାବରେ ବସୁଥିଲା । ଫାଉଣ୍ଟେନ୍ ପେନ୍‌ର ବହୁଳ ପ୍ରଚଳନ ସତ୍ତ୍ୱେ ମଧ୍ୟ ସେ ଥିଲା ଏକ ବ୍ୟତିକ୍ରମ ।

ପର୍ଶୁର ବ୍ୟକ୍ତିତ୍ୱ ଥିଲା ଏକାଧାରରେ ବୈଶିଷ୍ଟ୍ୟହୀନ ଓ ଆମୋଦପ୍ରଦ । ଗୋଟିଏ ନାତିଦୀର୍ଘ ଈଷତ୍ ପୃଥୁଳ ଶରୀରର ବର୍ତ୍ତୁଳ ପଶ୍ଚାତ୍‌ଦେଶ ତା'ର ଶରୀରର ଗତିକୁ କିଛିଟା ମନ୍ଥର କରିବା ସଂଗେ ସଂଗେ ତା'ର ବେଢ଼ଙ୍ଗିଆ ମୁହଁ ଉପରେ ଦୁଇଟି ବଡ଼ ବଡ଼ ଗୋଲ୍ ଗୋଲ୍ ଆଖି ତା'ର ନିଷ୍କପଟ ହୃଦୟର ଇଙ୍ଗିତ ଦେଉଥିଲା ।

ସହପାଠୀମାନେ ତାକୁ ଡାକୁଥିଲେ ପର୍ଶୁ, ପର୍ଶୁଆ ଓ ପୁଣି ବେଳେବେଳେ ବାବୁ ପର୍ଶୁରାମ । କିନ୍ତୁ ପର୍ଶୁ ନିର୍ବିକାର । ଦୁଇଟି ଢଳ ଢଳ ଆଖିରେ ଥରେ ଚାହିଁଦେଇ ଟିକିଏ ହସିଦିଏ । ତା'ର ଚଉଡ଼ା ଚଉଡ଼ା ଓଠ ଦୁଇଟିର ଫାଙ୍କରେ ବଡ଼ ବଡ଼ ଦାନ୍ତଗୁଡ଼ିକ ସ୍ପଷ୍ଟ ଦେଖିହୁଏ ସେତେବେଳେ । ବେଳେବେଳେ ଥଟ୍ଟାର ମାତ୍ରା ଅତ୍ୟନ୍ତ ଅଧିକ ହେଲେ କେବଳ ସେ ହସିଦେଇ କୁହେ ''ଆରେ ! ସବୁବେଳେ ଗୋଟାଏ ଥଟ୍ଟା କ'ଣ ?''

ପର୍ଶୁର ଖବର ତାରି ଗାଁର ଲୋକମାନେ ଆଜି ରଖିଥିବେ କି ନାହିଁ ସନ୍ଦେହ । କିନ୍ତୁ ମୁଁ ଯେତେବେଳେ ମୋର ଗାଁ ଛାଡ଼ି ବିଦେଶ ଯାତ୍ରା କରିଥିଲି, ସେତେବେଳେ ଷ୍ଟେସନ୍‌ରେ ମୋର ଅନେକ ଶୁଭାକାଙ୍‌କ୍ଷୀମାନଙ୍କ ଗହଣରେ ମୁଁ ପର୍ଶୁକୁ ମଧ୍ୟ ଦେଖିଥିଲି । ଲୋକମାନଙ୍କ ମେଳରେ ଭିଡ଼ ଠେଲି ପର୍ଶୁ ମଧ୍ୟ ମତେ ଚାହୁଁଥିଲା । ସେ ଚାହୁଁଥିଲା ଯେମିତି ମୁଁ ଗୋଟାଏ ରକେଟ୍ ପରି ତାରି ପୃଥିବୀର ଗୋଟାଏ ଅଜଣା ଗ୍ରହକୁ ଯାତ୍ରା କରୁଛି ଓ ସେ ହେଉଛି ଜଣେ ଗ୍ରାମ୍ୟ 'ନେଟିଭ୍' ପର୍ଯ୍ୟବେକ୍ଷକ । କିନ୍ତୁ ସେତେବେଳେ ମଧ୍ୟ ତା'ର ମୁହଁ ଦେଖାଯାଉଥିଲା କରୁଣ । ପରିସ୍ଥିତିଟାକୁ ଠିକ୍ ଠିକ୍ ହୃଦୟଙ୍ଗମ କରି ନ ପାରୁଥିବା ଫଳରେ ତା'ର ଦୁଇଟା ଓଠ ସାମାନ୍ୟ ମେଲା ହେଇଯାଇ ତା'ର ବଡ଼ ବଡ଼ ଦାନ୍ତଗୁଡ଼ାକ ଚିକ୍ ଚିକ୍ କରୁଥିଲା । ତା'ର ଦୁଇଟି ଗୋଲ୍ ଗୋଲ୍ ଆଖିରେ କୌଣସି ଭାବର ପ୍ରତିବିମ୍ବ ନାହିଁ । ଆଖି ଦୁଇଟା ସ୍ଥିର ରହିଛି ଦୁଇଟି କଳା କାଚର ମାର୍ବଲ ପରି । ମୁହୂର୍ତ୍ତକ ମଧ୍ୟରେ ସେ ଦିନର ସେଇ ପୁରାତନ ସଜଳ, କରୁଣ ଅଥଚ ହତଭମ୍ବ ମୁହଁଟି ବହୁବାର ଏନ୍‌ଲାର୍ଜଡ୍ ହୋଇ ମୋ ଆଗରେ ଭାସିଗଲା ।

ଭାରତବର୍ଷ—ସମଗ୍ର ଭାରତର ଭୂଖଣ୍ଡଟାକୁ ମୁଁ ଆଖିଆଗରେ ଦେଖିପାରୁଛି ଓ ଯେପରି ଅଭିମାନ କରି ତା'ରି ମଝିରେ ମୋ' ଆଡ଼କୁ ସାରା ପୃଥିବୀ ଆଡ଼କୁ ପିଠିକରି ଠିଆ ହୋଇ ରହିଚି ପର୍ଶୁ ତା'ର ବେଢ଼ଙ୍ଗିଆ ଦେହର ଗଠନ ନେଇ । ଗୋଟିଏ ସଲିଟାରି ଫିଗର୍ ।

ସେଦିନ ଖାଇବା ଟେବୁଲ୍ ଉପରେ ଜେନି ସୁପ୍ ଚାଖୁ ଚାଖୁ ପଚାରିଥିଲା ମୁଁ କାହିଁକି ଗୋଟାଏ ଶନିବାରରେ ହଠାତ୍ ''ଏକ୍ସକ୍ଲୁସିଭ୍'' ହେଇଗଲି ବୋଲି । ମୁଁ କଥାରେ କଥାରେ କହିଥିଲି, ମୋର ମୋ ନିଜ ଦେଶ ମନେ ପଡୁଚି ।

ଏତେଦିନ ବିଦେଶରେ ରହିବା ପରେ ମଧ୍ୟ ମୁଁ ମୋ ଦେଶ ବିଷୟରେ ଜେନି ସହିତ ବିଶେଷ କିଛି କଥାବାର୍ତ୍ତା କରିନାହିଁ । କିଛି ଲାଭ ନାହିଁ । କାରଣ ଯେତେଦିନ ମୁଁ କାର୍ଯ୍ୟର ଶୃଙ୍ଖଳାରେ ଆବଦ୍ଧ ଦେଶ ପାଇଁ ହାହାକାର କରିବା ଏକାନ୍ତ ଅବାନ୍ତର । ନିୟତିର ଇଙ୍ଗିତରେ ମୁଁ ହାମ୍‌ବୁର୍ଗ ସହର ସହିତ ଗୁନ୍ଥା ହୋଇଯାଇଛି ।

ଜେନିକୁ ଆଉ ବିଶେଷ କିଛି କହି ଲାଭ ନାହିଁ । କାରଣ ମୋ ପାଇଁ ଭାରତବର୍ଷର ଆକର୍ଷଣ ତା ପକ୍ଷରେ ବୁଝିବା ସମ୍ଭବ ନୁହଁ । ଆଉ ତା'ଛଡ଼ା ମୁଁ ମଧ୍ୟ ଯଥେଷ୍ଟ ଯୁକ୍ତିଯୁକ୍ତ ଭାବରେ ପ୍ରମାଣ କରିପାରିବି ନାହିଁ, କେଉଁ କାରଣରୁ ଭାରତବର୍ଷ ଏବଂ ସେଥିରେ ପୁଣି ମୋର କ୍ଷୁଦ୍ର ସହର ହାମବୁର୍ଗ ସହର ଠାରୁ କାହିଁକି କାହାକୁ ଭଲ ଲାଗିବ । ଯେମିତି ମୁଁ ବୁଝେଇ ପାରିବି ନାହିଁ କାହିଁକି ମା'ର କୋଳ ଓ ବାପାଙ୍କର ହାତ ପାପୁଲି ଏତେ ଉଷ୍ମ—ଏତେ ନିରାପଦ ।

ସେଦିନ ରାତିରେ ଶୋଇବାକୁ ଅନେକ ବିଳମ୍ବ ହେଲା ଯଦିଓ ଜେନି ଚିରାଚରିତ ରୀତିରେ ଶୋଇ ପଡ଼ିଥିଲା ତା'ର ନିର୍ଦ୍ଦିଷ୍ଟ ସମୟରେ ।

ମୋର ଗାଁ—ଗାଁ ନୁହଁ ବା ସହର ନୁହଁ । ନିକଟତମ ରେଳ ଷ୍ଟେସନ୍ ସେଠାକୁ ଆଠ ମାଇଲ । ସହରର ଉପକଣ୍ଠରେ ଆମ ଘର ଓ ସେଇଠି କଟିଚି ମୋର ଶୈଶବ ଓ କୈଶୋରର ଚପଳ-ମଧୁର ଦିନଗୁଡ଼ିକ । ଗୋଟାଏ ଖୋଲା ପଡ଼ିଆ, ପ୍ରାୟ ଆଠ ଏକର ହବ । କାହିଁ କେଉଁ ମାନ୍ଧାତା ଅମଳରୁ ଜେଜେବାପାଙ୍କୁ ଜାଗିରୀ ମିଳିଥିଲା । ସେଇ ଥିଲା ଆମର ଏକମାତ୍ର ସମ୍ପତ୍ତି; କିନ୍ତୁ ଅର୍ଥାଭାବରୁ ସେଇ ବିସ୍ତୀର୍ଣ୍ଣ ପ୍ରାନ୍ତରର ଯଥାଯଥ ଉପଯୋଗ କରାଯାଇ ପାରି ନାହିଁ । ସେଇ ପଡ଼ିଆରେ ଯେତେବେଳେ ଭାଦ୍ରର ଖରାପଡ଼େ ମନେହୁଏ ଯେମିତି ଆକାଶରୁ କିଏ ତରଳ ସୁବର୍ଣ୍ଣ ଢାଳୁଚି । ଗୋଟାଏ ପଟେ ଚିର ଶ୍ୟାମଳ ଧ୍ୟାନଗମ୍ଭୀର ବରୁଣେଇ ପାହାଡ଼, ଆଉ ତା'ର ଢେଉଢେଉକା ଦିହରେ ଏଇଠି ଖରା ଏଇଠି ଛାଇ । ଆଷାଢ଼ର ପ୍ରଥମ ବର୍ଷା ସହିତ ପଡ଼ିଆଯାକ ମିନି-ଛତା ପରି ଫୁଟିଯାଏ ଅସଂଖ୍ୟ ବାଲିଛତୁ ଆଉ ଲାଲ୍ ଟକ୍ ଟକ୍ ଆପ୍ରନ୍ ପିନ୍ଧି ପଟୁଆରରେ ବାହାରନ୍ତି ସାଧବବୋହୂ ।

ମୁଁ ହାମ୍‌ବୁର୍ଗରେ ସାଧବବୋହୂ ଦେଖିନାହିଁ କେବେ । ଇଚ୍ଛା ହେଲା ଜେନିକୁ ଉଠେଇ ପଚାରନ୍ତି ସେ କେବେ ଦେଖିଚି କି ନାହିଁ, ସେ ନିଶ୍ଚୟ ଦେଖି ନାହିଁ । କିନ୍ତୁ ତାକୁ କେମିତି ମୁଁ ବୁଝେଇବି ? ସେ ନାଁ ବୁଝିବ 'ସାଧବ' ନା ବୁଝିବ 'ବୋହୂ' । ଶେଷରେ ହୁଏତ ସେ କହିପାରେ ''ତମେମାନେ ସତରେ ଅତ୍ୟନ୍ତ ସେଣ୍ଟିମେଣ୍ଟାଲ୍ । ଗୋଟାଏ 'ରେଡ୍ ଇନ୍‌ସେକ୍ଟ'କୁ ନେଇ ତମେ ରାତି ଅନିଦ୍ରା ରହି ତମର ସ୍ୱାସ୍ଥ୍ୟ ନଷ୍ଟ କରୁଚ !''

କାନ୍ଥ ଘଣ୍ଟାରେ ଗୋଟାଏ ବାଜିଲା । କିନ୍ତୁ ମତେ ନିଦ ଲାଗିବାର ସୂଚନା ମଧ୍ୟ ନାହିଁ ।

ମୋର କୈଶୋରର ସ୍ମୃତି ସବୁ ତୁହାକୁତୁହା ଉତୁରି ପଡୁଚି । କାହାର ଯାଦୁ ସ୍ପର୍ଶରେ ଯେମିତି ଏତେଦିନର ଗୋଟାଏ ବନ୍ଦ ଇଲାକା ମୋ ପାଇଁ ଖୋଲିଯାଇଚି ଆଜି ।

ସେଇ ପଡ଼ିଆକୁ ଲାଗି ଆମର ସାମାନ୍ୟ କିଛି ଧାନଜମି । ଅନେକ ଶ୍ରାବଣ ଅପରାହ୍ନରେ ମୁଁ ସେଇ ନିଶ୍ଚୁପ ପଡ଼ିଆର ସୀମାରେ ବସିରହିଚି ଏକୁଟିଆ ଆଉ ଗୋଟାଏ କିଆରୀରୁ ଆଉ ଗୋଟାଏ ଖାଲ କିଆରୀକୁ ପାଣି ଗଡୁଚି ଅବିରାମ । ସେଇ ପାଣି ଗଡ଼ିବାର ଏକଟଣା ସଙ୍ଗୀତକୁ ଅନୁକରଣ କରିବାକୁ ଆଜିଯାଏ ପୃଥିବୀରେ କୌଣସି ବାଦ୍ୟଯନ୍ତ୍ର ଆବିଷ୍କାର କରାଯାଇ ନାହିଁ, ଏକଥା ମୁଁ ବାଜିମାରି କହିପାରେ ।

ବିଚିତ୍ରବର୍ଣ୍ଣା ସେଇ ପ୍ରାନ୍ତର । ବୈଶାଖର ଧୂ ଧୂ ଖରାରେ ସଂସାର ତ୍ୟାଗୀ, ଜଟାଜୁଟ ସନ୍ନ୍ୟାସୀର ପରିଧାନ, ବର୍ଷାରେ ଏକ ନୀଳ ନୀଳ କାର୍ପେଟ୍‌ରେ ସାଧବ ବୋହୂର ଲାଲ୍ ଲାଲ୍ ବୁଟି, ଶୀତରେ କ୍ରମନିମ୍ନଗାମୀ ଧୂସର କୁହୁଡ଼ିର କାମିଜ୍ ।

ସେଇ ପଡ଼ିଆର ଅଳ୍ପ ଦୂରରେ ମୋର ପୈତୃକ ଛୋଟଘର, ଦାରିଦ୍ର୍ୟର କଷାଘାତରେ କେଉଁଦିନୁ ମିଶି ଯାଇଥିଲା ମାଟିରେ । କୈଶୋରରେ ସେଇ ପଡ଼ିଆରେ ଠିଆହୋଇ ବହୁବାର ଶପଥ କରିଚି, ସ୍ୱୀକାରୋକ୍ତି କରିଚି ଆଉ ମୋର ଏଇମାତ୍ର ଆରମ୍ଭ କରୁଥିବା ଜୀବନର ଅଙ୍କ କଷିଚି ବାରମ୍ବାର । ସ୍ୱପ୍ନ ଦେଖିଚି ଅନେକ ।

ଗୋଟାଏ କଣରେ ହବ ଗୋଟିଏ ଛୋଟ ବଂଲୋ ଟାଇପ୍ ଘର ଆଉ ସାରା ପଡ଼ିଆଟା ହବ ଫଳ ଆଉ ଫୁଲର ବଗିଚା । ମଝିରେ ମଝିରେ ରହିବ ମହୁମାଛିଙ୍କର କାଠବାକ୍ସର କଲୋନି । ମୋର ଘରର ପୂର୍ବପଟେ ଗୋଟାଏ ତାରଜାଲି ଘରେ ରହିବେ ଅନେକ ଚଢ଼େଇ । ସୂର୍ଯ୍ୟର ପ୍ରଥମ କିରଣ ଆସିଲେ ସେମାନେ ଆସ୍ତେ ଆସ୍ତେ ପର ଝାଡ଼ି ନିଦଭାଙ୍ଗି ଉଠିବେ ଓ ସେମାନଙ୍କର କଣ୍ଠର ଜଳତରଙ୍ଗ ବଜେଇ କହିବେ "ପ୍ରଭାତ ଆଗତ—ଉଠ ।" ବିଛଣାରେ ତଥାପି ଅଳସରେ ଶୋଇ ଶୋଇ ଶୁଣିହବ ଧାନକ୍ଷେତରେ ବିଲରୁ ବିଲକୁ ପାଣି ଗଡୁଚି । କାଲି ରାତିରେ ବୋଧହୁଏ ଶୋଇଥିଲା ବେଳେ ଖୁବ୍ ଅସରାଏ ବର୍ଷା ହେଇଯାଇଚି । ଟିକିଏ ଦୂରରେ କୁକୁଡ଼ା ଘର ଭିତରେ ଗଞ୍ଜାମାନେ ଡାକୁଥିବେ ତାଙ୍କର ସରୁ ସରୁ ଲମ୍ବା ବେକର ବର୍ଣ୍ଣିଳ କେଶର ସବୁ ଫୁଲେଇଦେଇ । ତାଙ୍କର ଚୂଳ ସବୁ ସକାଳର ଖରାରେ ଜଳୁଥିବ ଜଉର ତିଆରି ଚୂଳପରି । ଆହୁରି ଦୂରର ମା'ର ସ୍ତନ ପାଇଁ ଅଧୈର୍ଯ୍ୟ ହୋଇ ଉଠିଥିବା ବାଛୁରୀମାନେ ଚିତ୍କାର କରୁଥିବେ ଓ ମା'ମାନେ ପାକୁଳି କରୁ କରୁ ଧୀର କଣ୍ଠରେ ଜବାବ୍ ଦେଉଥିବେ; ଦୁଗ୍ଧବତୀ ସ୍ତନର ବେଦନାରେ ।

ମତେ ସେଇଠିକି ଫେରିଯିବାକୁ ପଡ଼ିବ । ଅବସର ନବା ପରେ ହାମ୍‌ବୁର୍ଗ ସହରରେ ରହିବା ସମ୍ଭବ ନୁହଁ । ଏଠି କଳରୁ ପାଣି, କଳରୁ ଖାଇବା, କଳରେ ମଣିଷର କଥା ଏବଂ ମଣିଷମାନେ ସବୁ ଅଟୋମାଟନ୍ । ରୋବଟ୍ ।

ହାମ୍‌ବୁର୍ଗ ସହରରେ କାମ କରାଯାଇ ପାରେ; କିନ୍ତୁ ଜୀବନ ଧାରଣ କରିବା ସମ୍ଭବ ନୁହଁ—ନାଁ—ନାଁ—ଅସମ୍ଭବ ।

ହଠାତ୍ ମନେହେଲା, ମୋର ଯେପରି ନିଶ୍ୱାସ ବନ୍ଦ ହେଇ ଆସୁଚି । ନିଦ ଭାଙ୍ଗିଗଲା । ଦେଖିଲି ଇଲେକ୍‌ଟ୍ରିକ୍ ଫେଲ୍ କରିଥିବାରୁ ଏଆର୍‌କଣ୍ଡିସନର୍ ବୋଧହୁଏ ଚାଲିନାହିଁ ଅନେକବେଳ ଧରି । ତରତରରେ ଏକମାତ୍ର ଝର୍କା ଖୋଲିଦେଲି କିଛି ତାଜା ପବନ ପାଇଁ । ରାତି କେତେ ହେଲାଣି ଜାଣିବା ସମ୍ଭବ ନୁହଁ ।

ହାମ୍‌ବୁର୍ଗର ଧୂସର ଆକାଶରେ ଜହ୍ନ ଦେଖାଯାଉଚି ଗୋଟାଏ ଡିଫିଉଜଡ୍ ଅଗ୍ନି କନ୍ଦୁକ ପରି । ଜେନି ତଥାପି ଶୋଇଚି ।

ସକାଳୁ ଉଠି ମୋର ପ୍ରଥମ କାମ ହେଲା ପର୍ଣ୍ଣୁ ପାଖକୁ ଚିଠି ଲେଖିବା । ଗୋଟାଏ ଚାନ୍ସ ନେଲେ କ୍ଷତି କ'ଣ ? ତେଣୁ ଚିଠି ଲେଖିଲି ଓ ସେ ଚିଠିର ସାରାଂଶ ହେଲା ଯେ, ମୁଁ ମୋର ଅବସର ନବା ପରେ ଭାରତବର୍ଷ ଫେରିଯିବାକୁ ଚାହୁଁଚି । ତମ ନାଁ ଛାଡ଼ିଦେଲେ ମୋର ସମସାମୟିକ ସାଥୀମାନଙ୍କର କାହାରି ନାଁ ମନେ ନ ପଡ଼ିବାରୁ ମୁଁ ଏ ଚିଠି ଲେଖୁଚି ଓ ଏ ଚିଠି ତୁମକୁ ଏଇ ଠିକଣାରେ ମିଳିବ କି ନାହିଁ ମୁଁ ନିଜେ ମଧ୍ୟ ସନ୍ଦିହାନ ଓ ଯଦି ତମେ ଏ ଚିଠି ପାଅ ତା'ହେଲେ ଏହା ସହିତ ଥିବା ଠିକଣା ଲେଖା ଲଫାପାରେ ମୁଁ ଜବାବ୍ ପାଇଲେ ତମ ସହିତ ପତ୍ରାଳାପ କରିବି ଓ ତମେ ମୋର ବାଲ୍ୟସାଥୀ ଥିବା ଦୃଷ୍ଟିରୁ ତମେ ମତେ ସେଠି କିଛି ସାହାଯ୍ୟ କରିବ ବୋଲି ମୁଁ ଆଶା କରିପାରେ କି ? କୌଣସି କାଳ ବିଳମ୍ବ ନ ହେଇ ପର୍ଣ୍ଣୁଠାରୁ ଯାହା ଉତ୍ତର ଆସିଲା ତା'ର ସାରାଂଶ ହେଲା—

ପ୍ରିୟ ବନ୍ଧୁ,

ତମେ ଚନ୍ଦ୍ର ପରି, ମୁଁ ବାମନ—ତମେ ଯେ ମତେ ମନେ ରଖିଥିବ ଏକଥା ମୋର ଆଶାତୀତ । ତମେ କ'ଣ କରୁଛ ମୁଁ ଜାଣେନା ତେବେ ଏତିକି ଜାଣେ ଯେ, ତମେ ଉଚ୍ଚ ରାଜକାର୍ଯ୍ୟରେ ନିଯୁକ୍ତି ପାଇଛ । ତମର ହତଭାଗା ବନ୍ଧୁ ଯେଉଁଠାରେ ଥିଲା ସେହିଠାରେ ଅଛି । ଗୃହର ଚାଷାଦି କାର୍ଯ୍ୟ ତଦାରଖ କରିବା ସଂଗେ ସଂଗେ ଅବସର ସମୟରେ କୋର୍ଟର ଷ୍ଟାମ୍ପ୍ ଇତ୍ୟାଦି ବିକ୍ରୟ କରି କିଛି ଅର୍ଜନ କରୁଅଛି । ତମଠାରୁ ଚିଠିପାଇ ମୁଁ ଯେ କେତେ ଆନନ୍ଦିତ ତାହା ପ୍ରକାଶ କରିପାରୁ ନାହିଁ । ଆସନ୍ତା ଚିଠିରେ ଅଧୀନ ଆଦେଶକୁ ଅପେକ୍ଷା କରି ରହିଲା ।

ଚିଠିର ସାରାଂଶ ଦେବାର ଉଦ୍ଦେଶ୍ୟ ଏଇ ଯେ, ଏହିତକ ଭାବ ପର୍ଣ୍ଣୁ ଚାରି ପୃଷ୍ଠାର ଗୋଟିଏ ଦୀର୍ଘ କବିତା ସାହାଯ୍ୟରେ ବ୍ୟକ୍ତ କରିଥିଲା ।

ଚିଠି ଜେନିକୁ ଦେଖେଇ ବୁଝେଇଦେଲି କବିତାରେ ଜବାବ୍ ଆସିଚି ବୋଲି । ଜେନି ଖୁସିରେ ନାଚିଲା ଏକାଥରକେ ଓ ! ୟୁ ହାଭ୍ ଏ ପୋଏଟ୍ ଆଜ୍ ୟୋର୍ ଫ୍ରେଣ୍ଡ ! ହାଉ ନାଇସ୍ ।

ଆମର ରିଟାୟାର୍ଡ ଜୀବନ ଭାରତବର୍ଷରେ ରହିବା ସିଦ୍ଧାନ୍ତ ସେଇଦିନ ହୋଇଗଲା । କାରଣ ଅନ୍ତତଃ ଜଣେ ପୋଏଟ୍ ଫ୍ରେଣ୍ଡ ଆମର ପ୍ରତିବେଶୀ ହେଇ ରହିବ । ପର୍ଣ୍ଣୁକୁ କବିତାରେ ଚିଠି ଲେଖିଥିବା ପାଇଁ ମନେ ମନେ ଅସଂଖ୍ୟ ଧନ୍ୟବାଦ ଜଣେଇଲି ।

ଜେନି ହାମ୍‌ବୁର୍ଗ ସହରର ଝିଅ । ସେମାନେ ଥରେ ମନ ସ୍ଥିର କରି ସାରିଲେ ଆଉ ପଛକୁ ଫେରିବାର ପ୍ରଶ୍ନ ଉଠେ ନାହିଁ ।

ଘରର ପ୍ଲାନ୍ ତିଆରି କରାଗଲା, ମୋର ପିତୃପୁରୁଷ ପ୍ରାପ୍ତ ସେଇ ପଡ଼ିଆକୁ ଭିତ୍ତିକରି । ଆଠ ଏକରର ଖୋଲା ଜମିର ଉତ୍ତରାଧିକାରୀ ହିସାବରେ ବନ୍ଧୁମାନେ ମତେ ବଧେଇ ଜଣେଇଲେ, "ଓ, ୟୁ ଆର୍ ଏ କିଙ୍ଗ୍ !"

ଇତି ମଧ୍ୟରେ ପର୍ଶୁ ପାଖକୁ ମୁଁ ଘର ତିଆରି କରିବା କଥା ଲେଖିସାରିଚି ଓ ତାହାର ନିର୍ଭର ପ୍ରତିଶ୍ରୁତି ମଧ ମୁଁ ପାଇସାରିଚି ଏବଂ ଫେରନ୍ତା ଡାକରେ ଅତିଶୀଘ୍ର ଜଣେ ଦକ୍ଷ ଇଞ୍ଜିନିୟର୍ ଯୋଗାଡ଼ କରିବା କଥା ମଧ ଜଣେଇ ଦିଆସରିଚି ।

ଘରର ପ୍ଲାନ୍ ତିଆରି ସରିବା ପରେ ହାମ୍‌ବୁର୍ଗର ଏଷ୍ଟିମେଟ୍ ସହିତ ଭାରତବର୍ଷର ଏଷ୍ଟିମେଟ୍ ତୁଳନା କରି ଦେଖାଯାଇଛି ଯେ, ଭାରତବର୍ଷର ଏଷ୍ଟିମେଟ୍ ଅନୁଯାୟୀ ଘରର ତିଆରି ଖର୍ଚ୍ଚ ଅନ୍ତତଃ ପନ୍ଦର ହଜାର ଟଙ୍କା କମ୍ ପଡ଼ିବ । ଅବଶ୍ୟ ଘର ତିଆରିର ଅନେକ ଉପକରଣ, ଯେଉଁଗୁଡ଼ିକ ଫିନିସିଂ ଷ୍ଟେଜ୍‌ରେ ଆବଶ୍ୟକ ସେଗୁଡ଼ିକ ମତେ ଗଲାବେଳେ ସାଙ୍ଗରେ ନେଇଯିବାକୁ ହେବ ।

ନିୟମିତ ଭାବରେ ପର୍ଶୁଠାରୁ ଘର ତିଆରି ସମ୍ବାଦ ମିଳୁଚି ଓ ଯେତେ ଶୀଘ୍ର ସମ୍ଭବ ଘର ତିଆରି ଶେଷ କରିବା ପାଇଁ ତାଗିଦା ଚିଠି ମଧ ଯାଉଚି । ମଝିରେ ମଝିରେ ଛୋଟ ଛୋଟ ବରାଦ ମଧ କରାଯାଉଚି, ଯାହା ଜେନିର ସଉକ୍ ।

ପୂର୍ବ ବାରଣ୍ଡାରେ ଜାଲି ଦିଆହୋଇ ଚଢ଼େଇଘର ତିଆରି ହେଲା କି ନାହିଁ ? ଝର୍କା କାଚର ରଙ୍ଗ, କାନ୍ଥର ରଙ୍ଗ, ଡ୍ରଇଂରୁମ୍‌ର ଖୁଣ୍ଟିନାଣ୍ଟି ଛୋଟ ଛୋଟ କଥାସବୁ । ସିଆଡୁ ମଧ ପାଲଟା ଜବାବ୍ ଆସୁଚି କାମ ଚାଲିଚି—ଧାନ କଟା ସମୟ ପାଇଁ କାମ ଧିମେଇ ଯାଇଚି—ଭଲ ମୋଜାଏକ୍ ମିସ୍ତ୍ରୀ ମିଳୁନାହାନ୍ତି । ଏଥର ଲାଇଟିଂ ଜିନିଷପତ୍ର ଇତ୍ୟାଦି ପଠାଇବାର ସମୟ ହୋଇଗଲା ଇତ୍ୟାଦି... ।

ପ୍ରତ୍ୟହ ସନ୍ଧ୍ୟାରେ ମୁଁ ଆଉ ଜେନି ସାମ୍ନାସାମ୍ନି ବସୁ ଓ ସାମ୍ନା ଟେବୁଲ୍ ଉପରେ ତା' ସରଞ୍ଜାମ ପରିବର୍ତ୍ତରେ ମେଲାହୋଇ ପଡ଼ିଥାଏ ଘରର ପ୍ଲାନ୍ । କିଛିଟା ଆଲୋଚନା ହୁଏ । ଜେନି ଉଠିଯାଏ ତା'ର ଅଧା ସରିଥିବା ବହି ପଢ଼ିବାକୁ ଆଉ ଆଲୁଅ ଲିଭେଇ ଦେଇ ମୁଁ ଇଜି ଚେୟାର୍‌ରେ ଆଉଜିପଡ଼ି ଶୂନ୍ୟକୁ ଅନାଇ ରହେ ।

ଆସ୍ତେ ଆସ୍ତେ ସମଗ୍ର ଆକାଶକୁ ଅଧିକାର କରି ଭାସିଉଠେ ମୋର ପୈତୃକ ଜମିଜାଗା ଓ ତା'ର ଗୋଟିଏ କୋଣରେ ମୋର ଛୋଟ ଘର । ତା'ପରେ ମୋର ବାଲ୍ୟସାଥୀ ପର୍ଶୁ—ପର୍ଶୁ କେଉଁଠି ରହୁଚି ? ସେ ବିଷୟରେ ତ ଦିନେହେଲେ ଚିନ୍ତା କରାଯାଇ ନାହିଁ ।

ସେଇଦିନ ହିଁ ଜେନି ସହିତ କଥାବାର୍ତ୍ତା ହେଇ ଠିକଣା କରାଗଲା ଆମର ଜମିରୁ କିଛି ଅଂଶ ପର୍ଶୁକୁ ଦିଆଯିବ ଏବଂ ତା' ଉପରେ ତା'ପାଇଁ ଗୋଟିଏ ଛୋଟ ଘର ଆମର ପଇସାରେ କରି ଦିଆଯିବ । ଆମ ପାଇଁ ଏତେ କଷ୍ଟ ସ୍ୱୀକାର କରିଥିବାରୁ ଆମ ତରଫରୁ କିଛି ଉପହାର ସ୍ୱରୂପ ।

ତା' ଆରଦିନ ନିରୂପିତ ସ୍ଥାନଟିକୁ ଚିହ୍ନିତ କରି ଗୋଟିଏ ଛୋଟ ଘରର ପ୍ଲାନ୍ ପର୍ଶୁ ପାଖକୁ ପଠାଇ ଦିଆଗଲା । ଅତ୍ୟନ୍ତ ସମୀହ କରି ଚିଠି ଲେଖା ଯାଇଥିଲା । ଯେପରି ପର୍ଶୁ ଅପମାନିତ ବୋଧ ନକରେ ଆମର ଏଇ ସାମାନ୍ୟ ଉପହାର ଗ୍ରହଣ କରିବାକୁ ।

ଏଥର ଚିଠିର ଜବାବ୍ ଆସିଲା ପୁଣି ଗୀତରେ ।

ତମେ ମୋର ପ୍ରକୃତ ବନ୍ଧୁ । ଜୀବନ ଯୁଦ୍ଧରେ ମୁଁ ପୂରାପୂରି ହାରି ଯାଇଛି ଏବଂ ମୁଁ ଅପଦାର୍ଥ, ମୋର ଭିଟାମାଟି ମଧ ରକ୍ଷାକରି ନ ପାରି ବାସହୀନ ହୋଇ ମୋର ସ୍ତ୍ରୀ ଓ ତିନୋଟି ବାଲୁତ ସନ୍ତାନକୁ ନେଇ ବିଭିନ୍ନ ଜାଗାରେ ଘର ଭଡ଼ା କରି ରହୁଚି । ତମର ଏ ଦାନ ମୋର ଯେ କି ଉପକାରରେ ଆସିବ ତାହା ପ୍ରକାଶ କରିପାରୁ ନାହିଁ । ମୋର କୃତଜ୍ଞତା ଗ୍ରହଣ କରିବ ଓ ତମର ସାହେବ୍ ସ୍ତ୍ରୀକୁ ଇଂରାଜୀ ତର୍ଜମା କରି ବୁଝେଇଦେବ ।

ଚିଠିଟି ଏକାଧାରରେ ହାସ୍ୟକର ଓ କରୁଣ ।

ମୋର ଅବସର ନବାର ଦିନ ମାତ୍ର ଗୋଟାଏ ମାସ ରହିଲା । ଘରର ସବୁ କାମ ପ୍ରାୟ ସରିଆସିଲାଣି । ଜେନି ମାତ୍ର ଗତକାଲି ମାର୍କେଟ୍‌କୁ ଯାଇ ଗୋଟିଏ କଟ୍‌ଗ୍ଲାସ୍‌ର ''ଚାଇମ୍'' କିଣି ଆଣିଚି । ଭାରି ସୁନ୍ଦର ଦେଖାଯାଉଚି କଟ୍‌ଗ୍ଲାସ୍‌ର ଅନେକ ଛୋଟ ଛୋଟ ଫଳକ । ସାମାନ୍ୟ ପବନରେ ସେଗୁଡ଼ିକ ପରସ୍ପରକୁ ଆଘାତ କରି ଏକ ମଧୁର ସିଞ୍ଜନୀ ସୃଷ୍ଟି କରନ୍ତି ଯେପରି କିଏ ଜଣେ ଆନମନା ହେଇ ଜଳତରଙ୍ଗ ବଜଉଚି ।

ହସି ହସି ଜେନିକୁ କହିଲି ଯେ, ଭାରତବର୍ଷରେ ଏ ଯନ୍ତ୍ରର ଆବଶ୍ୟକତା ପଡ଼େ ନାହିଁ ।

''ତମେମାନେ କ'ଣ ମ୍ୟୁଜିକ୍ ଭଲ ପାଅ ନାହିଁ ?'' ଜେନି ଆଶ୍ଚର୍ଯ୍ୟ ହେଇ ପଚାରିଲା ।

''ମୁଁ ତାନ୍‌ସେନ୍‌ର ଦେଶରୁ ଆସିଚି, ତେଣୁ ମ୍ୟୁଜିକ୍ ବିଷୟରେ ମତେ ବେଶୀ କିଛି ନ କହିଲେ ଚଳିବ ।''

ଜେନି କଥାର ମର୍ମ ବୁଝି ନ ପାରି ତଥାପି ଅପେକ୍ଷା କରି ରହିଲା ।

ନାଁ, ମୁଁ କ'ଣ କହୁଥିଲି କି ମୋ ଦେଶ ଟ୍ରପିକ୍ ରେ ସେଠି ଝରଣା ଠାରୁ ଆରମ୍ଭ କରି ପକ୍ଷୀର କଣ୍ଠରେ ମ୍ୟୁଜିକ୍ ତମେମାନେ ତ ଚୁଡ଼ି ଓ ନୂପୁର ପିନ୍ଧ ନାହିଁ, ସେଥିପାଇଁ ତମର ଏ କୃତ୍ରିମ ସଙ୍ଗୀତର ତିଆରି ।

ଚୁଡ଼ି ?

ହଁ ବାଙ୍ଗ୍‌ଲସ୍ !

ଆମ ଦେଶର ମା', ଭଉଣୀ ବା ସ୍ତ୍ରୀମାନେ ଖାଇବାକୁ ଦେଲାବେଳେ ସେମାନଙ୍କର ହାତର ଚୁଡ଼ିଧ୍ୱନି ସୁନ୍ଦର ଶୁଣାଯାଏ । ଆଃ ! ମା' ତା'ର ପାପୁଲିରେ ଥାପୁଡ଼ିଥାପୁଡ଼ି ଶୁଆଇ ଦେଲାବେଳେ କି ନିଝୁମ୍ ନିଦ ଲାଗିଆସେ ! କି ତୃପ୍ତି !

ଧୀରେ ଧୀରେ ଆମର ବସି ଗଳ୍ପ କରିବାର ସମୟ କମି ଆସୁଚି କାରଣ ଅନେକ ଜିନିଷ ପ୍ୟାକିଂ କରି ଜାହାଜରେ ଆଗରୁ ପଠେଇ ଦବାକୁ ପଡ଼ିବ । ହାମବୁର୍ଗ ସହର ସହିତ ଏତେଦିନର ହିସାବ ନିକାଶ ମଧ୍ୟ କରିବାକୁ ପଡ଼ିବ । ଯାହାର ଯେତେବେଳେ ଯାହା ମନେ ପଡୁଚି ସେ ସବୁ ଗୋଟାଏ ନୋଟ୍ ଖାତାରେ ଟିପିଦିଆ ହଉଚି ଓ କାମ ସରିବା ପରେ ଡାହାଣପଟେ ଗୋଟାଏ ଜବରଦସ୍ତ ଟିକ୍‌ମାର୍କ । କଣ ଗୋଟାଏ କଥା ଲେଖିବାକୁ ନୋଟ୍‌ବୁକ୍‌ଟା ଟାଣି ଆଣିଲାବେଳକୁ ଦେଖିଲି ଲେଖା ହେଇଚି ''ଗିଫ୍ଟ ଫର୍ ଇଣ୍ଡିଆନ୍ ପୋଏଟ୍ ଫ୍ରେଣ୍ଡ ଆଣ୍ଡ କୋ'' ଜେନିର ହାତଲେଖା ।

ଯାହା ମୁଁ ଭୁଲି ଯାଇଥିଲି ଜେନି ତାହା ସ୍ମରଣ କରେଇ ଦେଇଥିବାରୁ ମନେ ମନେ ତା' ପ୍ରତି କୃତଜ୍ଞତା ପ୍ରକାଶ କଲି ।

କିନ୍ତୁ କ'ଣ ନବାଟା ଠିକ୍ ହବ ସେକଥା ଆଦୌ ଠିକଣା କରି ହେଲା ନାହିଁ । ଚିଠିରେ ପଚାରି ପଠେଇଲେ ହୁଏତ ପର୍ଣ୍ଣୁ ଖରାପ ଭାବିପାରେ । ମୋର ସମସ୍ତ ଦ୍ୱିଧାକୁ ପରାସ୍ତ କରି ଜେନି ବଜାରରୁ ଦୁଇଟା ଉପହାର ନେଇ ଫେରିଲା ଯାହାର ପ୍ରତିବାଦ କରିବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ ।

ଲନ୍‌ରେ ପାଣି ପକାଇବା ପାଇଁ ଗୋଟାଏ ଇଲେକ୍‌ଟ୍ରିକ୍ ଗ୍ୟାଜେଟ୍ ଓ ଗୋଟିଏ ଛୋଟ ଟେପ୍ ରେକର୍ଡ଼ର । ଜେନିର ଯୁକ୍ତିଥିଲା ଯେ, ମୋ'ର ପୋଏଟ୍ ଫ୍ରେଣ୍ଡ ଲନ୍‌ରେ ବସି ଯେଉଁ କବିତା ଗାଇଯିବ ତାହା ବିନାଶ୍ରମରେ ଟେପ୍ ରେକର୍ଡ଼ର୍‌ରେ ରେକର୍ଡିଂ ହେଇଯିବ । ଏଣ୍ଡ କୋ' ଅର୍ଥାତ୍ ସ୍ତ୍ରୀ ଓ ପରିବାର ପାଇଁ କ'ଣ ଆସିଚି ସେ ବିଷୟରେ ଆଲୋଚନା କରାଯାଇ ନାହିଁ ।

ଯିବାର ଦିନ ଆହୁରି ପାଖେଇ ଆସିଚି । ଜିନିଷପତ୍ର ସବୁ ଜାହାଜକୁ ପଠେଇ ଦିଆଗଲାଣି । କେବଳ ଟି.ଭି., ରେକର୍ଡ଼ର, ୱାସିଂ ମେସିନ୍ ଓ ଦୈନନ୍ଦିନ ବ୍ୟବହାର ହେଉଥିବା କେତେଟା ଜିନିଷ ବିକ୍ରି ହେଇଗଲେ ଜଞ୍ଜାଳ ଯାଏ । କିନ୍ତୁ ଆଉ ମାତ୍ର ଏକ

ସପ୍ତାହ ଥିଲେ ମଧ୍ୟ ପର୍ଣ୍ଣୁଠାରୁ କୌଣସି ଚିଠି ନ ଆସୁଥିବାରୁ ଆମେମାନେ ସାମାନ୍ୟ ଚିନ୍ତିତ ହେଇ ପଡ଼ିଥିଲୁ । ଏପରିକି ଶେଷ ମୁହୂର୍ତ୍ତରେ ଆମର କେବଲ୍‌ର ଜବାବ୍ ଆସିପାରି ନାହିଁ ।

କିନ୍ତୁ ପର୍ଣ୍ଣୁର ପ୍ରାୟ କୋଡ଼ିଏ ଦିନ ତଳର ଶେଷ ଚିଠିରେ ଯଥେଷ୍ଟ ସାନ୍ତ୍ୱନା ବାଣୀ ଥିଲା । ଘରର କାମ ପ୍ରାୟ ଶେଷ ହୋଇ ଆସିଲାଣି । ଏପରିକି ଆମ ଦତ୍ତ ଜାଗାରେ ପର୍ଣ୍ଣୁର ନିଜ ଘର ମଧ୍ୟ ଇତି ମଧ୍ୟରେ ସରିଗଲାଣି । ଆମ ଘରର କେବଳ କେତେଟା ଫିନିସିଂ ଟଚ୍ ବାକି ଅଛି । ଅନୁନୟ କରି ଲେଖାଯାଇଛି ଯେ, ସେ କିଛି ଦିନ ର୍ୟୁମାଟିଜିମ୍ ବା ତତ୍ତୁଲ୍ୟ କିଛି ରୋଗରେ ଆକ୍ରାନ୍ତ ହୋଇ ପଡ଼ିବାରୁ ଘର ତିଆରି ନିର୍ଦ୍ଧାରିତ ସମୟ ଠାରୁ କିଛି ବିଳମ୍ବ ହୋଇଯାଇଛି ଓ ସେଥିପାଇଁ ମଧ୍ୟ ସେ ଆଶା କରୁଚି ଆମେମାନେ ତାକୁ କ୍ଷମା କରିବୁ ବୋଲି ।

ହାମ୍‌ବୁର୍ଗ ସହରରେ ଆମର ଶେଷରାତ୍ରି ବହୁ ବନ୍ଧୁଙ୍କ ସମାରୋହରେ ଓ ଉଚ୍ଛ୍ୱସିତ ଉଶୃଙ୍ଖଳା ପାର୍ଟି ମାଧ୍ୟମରେ ସମାପ୍ତ ହେଲା ।

କାଲି ସକାଳ ୯ଟା ୧୮ ମିନିଟ୍‌ରେ ଆମେ ଧରିବୁ ବୋଇଂ ସାତଶହ ସତଚାଳିଶ ।

ଭୁବନେଶ୍ୱର ଏଆର୍ ପୋର୍ଟରେ ଆମର ଜାହାଜ ରାତି ନଅଟା ,କୋଡ଼ିଏ ମିନିଟ୍‌ରେ ପହ୍ୟଞ୍ଚିଲା । ଆମେମାନେ ବେଶ୍ କ୍ଳାନ୍ତ ହୋଇ ପଡ଼ିଥିଲୁ । କିନ୍ତୁ ଆମର ଘରେ ପହଞ୍ଚିବାର ନିଶାରେ ଆମେ ସେଇ ରାତିରେ ଟାକ୍ସି ଧରିଲୁ । ଆମ ଘର ସେଠୁ ମାତ୍ର ପଇଁତିରିଶ ମିନିଟ୍‌ର ରାସ୍ତା ।

ଆମ ଜାଗାର ସାମ୍ନା ଫାଟକ ପାଖେ ଗାଡ଼ି ପହଞ୍ଚିଲା ବେଳକୁ ତଥାପି ଅନେକ ରାତି ଅବଶିଷ୍ଟ ଥିଲା । ଗାଡ଼ିର ଆଲୁଅରେ ଆମେ ଘରର ଯେତିକି ଅଂଶ ଦେଖିଲୁ ବେଶ୍ ସୁଦୃଶ୍ୟ ମନେହେଲା । ଘର ସାମ୍ନାର ପୋର୍ଟିକୋ ଓ ତାକୁ ଲାଗି ଗୋଟିଏ ବୃତ୍ତାକାର ଲନ୍ । ଟାକ୍‌ସିକୁ ବିଦା କରିସାରି ଘର ବାରଣ୍ଡାର ସବୁଯାକ ସୁଇଚ୍ ଏକାଥରକେ ମାରିଦେଲା ଜେନି, ଘର ଦେଖିବାର ଉତ୍କଣ୍ଠାରେ । କିନ୍ତୁ କୌଣସି ଆଲୋକ ନାହିଁ । ଚାରିପଟକୁ ଚାହିଁ ଠିକଣା କଲୁ ବୋଧହୁଏ ଇଲେକ୍‌ଟ୍ରିକ୍ ଫେଲ୍ ମାରିଚି । ଚତୁର୍ଦ୍ଦିଗ ଅନ୍ଧକାର ଏବଂ ମଝିରେ ମଝିରେ ପାଖ ବିଲରୁ ଦଳେ ଝିଙ୍କାରୀ ବା ବେଙ୍ଗ ବୋବେଇ ଉଠୁଛନ୍ତି । ପୂରାପୂରି ଭୌତିକ ପରିବେଶ ।

ମୁଁ ଚିତ୍କାର କରି ଡାକିଲି ''କିଏ ଅଛ ?''

ମୋର କଣ୍ଠସ୍ୱର ପାଖର ତୋଟା ବିଲମାଳ ଡେଇଁ ପହଁରିଗଲା ଅନେକ ଦୂରକୁ ଏବଂ ପ୍ରାୟ ସାଙ୍ଗେ ସାଙ୍ଗେ ପାଖ କେଉଁ ପାହାଡ଼ରୁ ପ୍ରତିଧ୍ୱନି ଫେରି ଆସିଲା ''କିଏ ଅଛ–ଅ–ଅ ?'' ଜେନି ମୋର ହାତଟାକୁ ସାମାନ୍ୟ ଜୋର୍‌ରେ ଚାପି ଧରିଲା ।

"ସମଥିଙ୍ଗ୍ ରଙ୍ଗ୍ ।"

"ନଥିଂ ରଙ୍ଗ୍" ସାହସ ଦବାକୁ ମୁଁ କହିଲି । କେବଳ ଆଲୁଅ ନ ଥିବାରୁ ଏମିତି ମନେ ହେଉଚି ।

ଅନେକ ଦୂରରେ ଗୋଟାଏ ଆଲୁଅ ଦେଖାଗଲା ପରି ମନେ ହେଲା । ପ୍ରଥମେ ମୁଁ ଭାବିଥିଲି ଆଲୁଅ ଆଡ଼କୁ ଯିବି ବୋଲି; କିନ୍ତୁ ମୋର ହଠାତ୍ ମନେ ପଡ଼ିଗଲା ଆମ ଘର ପାଖରେ ମଶାଣି, ହୁଏତ ସେଇ ଆଲୁଅଟା ଚିତାର ଆଲୁଅ । ଜେନିକୁ ନେଇ ସେଠିକି ଯିବାକୁ ସାହସ ସଂଗ୍ରହ କରିପାରିଲି ନାହିଁ ।

ପୁଣି ଥରେ ଡାକିଲି ଖୁବ୍ ବଡ଼ ପାଟିରେ "କିଏ ଅଛ ?" କିଛି ସମୟ ପରେ ପୁଣି ଥରେ ଆମର ନିର୍ଜ୍ଜନତାକୁ ଉପହାସ କରି ଫେରି ଆସିଲା ସେଇ ନିଷ୍ଫଳ ପ୍ରତିଧ୍ୱନି, "କି..ଏ...ଏ...ଅ...ଛ...ଅ...ଅ ।" ରାତି ସରି ସରି ଆସୁଛି ।

ଆକାଶର ପୃଷ୍ଠଭୂମିରେ ଆମ ଘର ପାଖର ଗୋଟାଏ ଥୁଣ୍ଟା ଗଛର ଡାଳ ସବୁ ଦେଖି ହଉଚି ଏବଂ ଦେଖି ହଉଚି ଆମ ଘରର ଚୌହଦି ! ଆମ ବିସ୍ତୀର୍ଣ୍ଣ ପ୍ରାନ୍ତରର ଶେଷ ସୀମାରେ ଗୋଟିଏ ଛୋଟ ଚାଳଘର ଆଡ଼କୁ ମୁଁ ଓ ଜେନି ଧୀରେ ଧୀରେ ଚାଲିବାକୁ ଆରମ୍ଭ କଲୁ । ତଥାପି ସେ ଚିତାର ଆଲୁଅଟା ଦିକ୍ ଦିକ୍ ହେଉ ଜଳୁଛି ।

ଜେନି ପଚାରିଲା "ବନ୍ ଫାୟାର୍ ?"

ମୁଁ ଗମ୍ଭୀର ହେଇ କହିଲି, 'ନାଁ' ।

ଚାଳଘର ପାଖରେ ପହଂଚିଲାବେଳକୁ ଶୁଣାଗଲା ଜଣେ ନାରୀର କରୁଣ ବିଳାପ । କୋହ ଚାପି ଚାପି ଯେପରି କିଏ ଜଣେ କାନ୍ଦୁଛି । ଛୋଟ ଗୋଟିଏ ଚାଳଘର ଏବଂ ତା'ର ପିଢ଼ା ଉପରେ କଖାରୁ ଗଛଟିଏ ଡଙ୍କେଇ ଆସୁଚି । ସୂର୍ଯ୍ୟ ଉଠୁଚି ଚକ୍ରବାଳରେ ଖଣ୍ଡେ ଗୋଲାକାର ରଡ଼ ନିଆଁପରି ।

ଘର ପାଖରେ ଦୁଇଜଣ ଲୋକ ଫୁଙ୍ଗୁଳା ଦିହରେ ଠିଆହୋଇ ରହିଥିଲେ । ପଚାରିଲି, "ପର୍ଶୁରାମ ବାବୁଙ୍କ ଚିହ୍ନିଛନ୍ତି ?" ସେମାନେ ମୁଣ୍ଡ ତଳକୁ ପୋତି ନିରୁତ୍ତର ହେଲେ । କିନ୍ତୁ ଘର ଭିତରୁ ଜଣେ ନାରୀ ହା' ହା' କରି ଉଚ୍ଚ ସ୍ୱରରେ କାନ୍ଦି ଉଠିଲା ତୁହାଇ ତୁହାଇ ।

ଜେନି ତା'ର ବାଁ ହାତର ଦୁଇଟା ଆଙ୍ଗୁଠିରେ ମୋର ଅଣ୍ଟାର ବେଲ୍ଟଟାକୁ ଟାଣି ଧରିଥାଏ ଜୋର୍‌ରେ ।

ଆଉଥରେ ପଚାରିଲି, ପର୍ଶୁରାମ ବାବୁଙ୍କୁ ଜାଣନ୍ତି ଆପଣମାନେ ? ମୁଣ୍ଡ ତଥାପି ତଳକୁ ପୋତି ଜଣେ କହିଲା– "ହଁ, ଏଇଟା ତାଙ୍କ ଘର–ସେ ଗତକାଲି ସନ୍ଧ୍ୟା ୮ଟା ବେଳେ ମରିଗଲେ ।"

ଜେନିକୁ ହଠାତ୍ ଖବରଟା ଦବା ପାଇଁ ଭରସି ପାରିଲି ନାହିଁ । ବାଁ'ରେଇ ଦେଇ କହିଲି, ''ଚାଲ ଫେରିବା ।''

ପର୍ଶୁରାମ ମରିଯିବା ପରେ ମଧ ସୂର୍ଯ୍ୟଦେବତା ଆକାଶକୁ ଦୁଇ ଭାଗ କରି ଉଠି ଚାଲିଛନ୍ତି ଉପରକୁ–ଉପରକୁ । ଜେନି ଅସ୍ଥିର ହେଇ ମତେ ତୁହାକୁତୁହା ପ୍ରଶ୍ନ କରିଚାଲିଛି । ''ତମର ପୋଏଟ୍ ଫ୍ରେଣ୍ଡ କାହାନ୍ତି ?''

ମୁଁ ଦେଖୁଚି ଆମ ଘରର ବାଲ୍‌କନିରେ ସୁନେଲୀ ରଙ୍ଗର ଖରା ଲିପିହେଇ ଯାଇଛି ।

''ଯେଉଁ ସ୍ଲମ୍ କ୍ୱାଟର୍‌କୁ ଯାଇଥିଲେ ସେଠି କିଏ ରହେ ?''

ମୁଁ ଦେଖୁଚି ଘରର ପୂର୍ବପଟ ବାରଣ୍ଡାରେ ଜାଲି ଘେରାହେଇ ଚଢ଼େଇମାନେ କିଚିରିମିଚିରି କରି ଖେଳୁଛନ୍ତି ।

''ତମେ କହୁଥିଲ ନାଁ ଭାରତର ନାରୀମାନେ ବାଙ୍ଗ୍‌ଲ୍‌ସ ବ୍ୟବହାର କରନ୍ତି ବୋଲି । କିନ୍ତୁ ସେଇ ଆତୁରା ନାରୀର ମଣିବନ୍ଧ ତ ଆମ ଦେଶର ନାରୀମାନଙ୍କ ପରି ଶୂନ୍ୟ ?''

ମୁଁ ଦେଖୁଥିଲି ମହୁମାଛିମାନେ ଭେଳାଭେଳା ହେଇ ବୁଲୁଛନ୍ତି । ମୁଁ ଗୋଟାଏ ଚଉକିରେ ବସିପଡ଼ି କହିଲି– ''ୟୋର୍ ପୋଏଟ୍ ଇଜ୍ ଡେଡ୍ ।''

''ଓଃ ! ନୋ । ଇଟ୍ କାଣ୍ଟ୍ ବି ଟ୍ରୁ ।''

''ଇଟ୍ ଇଜ୍ ଟ୍ରୁ''– ଦେଖ ସେଠି ତମର ପୋଏଟ୍‌ର ଚିତାଗ୍ନି ଜଳୁଚି । ସେଇ ହତଭାଗ୍ୟ ନାରୀ ପୋଏଟ୍‌ର ସ୍ତ୍ରୀ ।

ମୁହୂର୍ତ୍ତକ ପାଇଁ ଜେନିର ମୁହଁ ଅସ୍ୱାଭାବିକ ଭାବରେ ବିକୃତ ହେଇଗଲା ।

ମୁଁ ବୁଝେଇବାକୁ କହିଲି, ''ସେଇଥିପାଇଁ ସ୍ଲମ୍ ଡ୍ୱେଲର୍ ପୋଏଟ୍‌ର ସ୍ତ୍ରୀ ହାତରେ ବାଙ୍ଗ୍‌ଲ୍‌ସ୍ ନାହିଁ'' ।

ଜେନିର ମୁହଁକୁ ଦେଖି ବୁଝିଲି ଯେ, ସେ ଜାଣିପାରୁ ନାହିଁ ପୋଏଟ୍‌ର ମୃତ୍ୟୁ ସହିତ ତା'ର ସ୍ତ୍ରୀର ଚୁଡ଼ି ନଥିବା ହାତର ସମ୍ପର୍କ କ'ଣ ? କେବଳ ଅନ୍ୟମନସ୍କ ଭାବରେ କହିଲା, ''ମୁଁ କିନ୍ତୁ ପୋଏଟ୍ ଫ୍ରେଣ୍ଡର ସ୍ତ୍ରୀ ପାଇଁ କଣ୍ଟିନେଣ୍ଟାଲ୍ ଷ୍ଟୋର୍ସରୁ ଅନେକ ବାଙ୍ଗ୍‌ଲ୍‌ସ୍ ଆଣିଥିଲି ।''

ସାମ୍ନା ଲନ୍‌ରେ ଗୋଟାଏ ଲାଲ୍ ଗୋଲାପର କଢ଼ି ତା'ର କୈଶୋର ଅତିକ୍ରମ କରିବାକୁ ଅତିଷ୍ଠ ହୋଇ ଉଠୁଥିଲା ।



# ସେଇ ଲୋକଟା

ପ୍ରାୟ ପ୍ରତିଦିନ ସେ, ଆସି ଠିଆ ହୁଏ । ଆଜି ବି ସେ ଆସି ଠିଆ ହେଇଚି । ଛାତି ଉପରେ ଛକି ହୋଇଯାଇଚି ଦି'ଟା ଲଙ୍ଗଳା ହାତ । ଦିହରେ ଖଣ୍ଡେ ସାଣ୍ଡୋ ଗେଞ୍ଜି, ଗୋରା ଚକା ମୁହଁ ଉପରେ ମୋଟା ଫ୍ରେମ୍‌ର ଚଷମା । ଶୀତଦିନ ସକାଳୁ ଦିହରେ ଚାଖଣ୍ଡେ ବହଳର କମ୍ବଳ ଚାପି ଚିକ୍ ଚିକ୍ ଖରାକୁ ବାହାରି ପଡ଼ିଲେ ଉଚ୍ଚା ପାଚେରୀ ଡେଇଁ ଦେଖାଯାଏ କେତେଗୁଡ଼ାଏ ଲଙ୍ଗଳା ଗଛ, ଯେଉଁଠି ବସିଥାଏ ବଣି ଚଢ଼େଇଙ୍କ ସଭା– ଆଉ ଦୁଇତାଲା କୋଠାର ଏଇ ବାଲ୍‌କନି । ସେଇ ଲୋକଟା ଠିଆ ହୋଇଚି । ଏତେ ବଡ଼ ଶୀତଟାରେ ବି ପ୍ରାୟ ଖାଲି ଦିହ ! ରହି ରହି ସିଗାରେଟ୍ ପିଉଚି, ଆଉ ଧୂଆଁ ଗୁଡ଼ା ଚିକ୍ ଚିକ୍ କରୁଚି ଖରାରେ ।

ପୁଣି ଜଣେ କିଏ ଚା' ଆଣି ଦେଲା । ରହି ରହି ଚା' ପିଇ ପିଇ ପୁଣି ଆଉଜି ପଡୁଚି ବାଲ୍‌କନି କାଛରେ ।

କିଛି ସମୟ ନିରୀକ୍ଷଣ କଲେ ଆବିଷ୍କାର କରିବା ସମ୍ଭବ ଯେ; ସେଇ ଜାଗାରୁ ରହି ଲକ୍ଷ୍ୟ କରିହୁଏ କଟକ ସହର ରାସ୍ତାରେ ସେପ୍ଟେମ୍ବର ମାସର ଲୋକ ଗହଳି । ଏତେ ସକାଳୁ ଅଛ କେତେଜଣ ଲୋକଙ୍କର ଯିବା ଆସିବା, ଚା' ଦୋକାନର ଗହଳି ଭିତରୁ ମୋଡ଼ି ମୋଡ଼ି ହୋଇ କଞ୍ଚା କୋଇଲାର ଅଳସ ବହଳ ଧୂଆଁ, ମୁଣ୍ଡରେ ବଡ଼ ବଡ଼ ଠେକା ଭିଡ଼ା କୁଜା କୁଜା କଚୁଆନ୍ ଗୁଡ଼ାଙ୍କର ଘୋଡ଼ା ଦାନା ତିଆରି... ଆଉ ହୁଏତ ଏଠି ସେଠି କିଏ ପାନ-ଦୋକାନ କତା ଦଉଡ଼ିରୁ ବିଡ଼ି ଧରାଉଚି ।

ଲୋକଟା ଶେଷଥର ପାଇଁ ସିଗାରେଟ୍‌ଟାକୁ ଟାଣିନେଇ ଫୋପାଡ଼ିଦେଲା ତଳକୁ । ପାଟି ଭିତରୁ ଭକ୍ ଭକ୍ କରି ବାହାରୁଚି ନେଳି ବହଳ ଧୂଆଁ–ପୁଣି କାଛରେ ଆଉଜି ପଡ଼ି ତଳକୁ ଅନେଇ ରହିଲା ଏକ ଦୃଷ୍ଟିରେ । କ'ଣ ଲକ୍ଷ୍ୟ କରୁଚି ଏଇ ଲୋକଟା ? ଆଛା, କ'ଣ କିଛି କାମ ନାହିଁ ଏ ଲୋକଟାର ? ଚା' ଜଳଖିଆ ତ ସରିଲା, ତା'ପରେ ? ଏଇ ପାଚେରୀ ଆରପଟେ ପୃଥିବୀଟା ଏତେ ବଡ଼, ଏତେ ବ୍ୟସ୍ତ ଚଞ୍ଚଳ, ଏତେ ଆମୋଦପ୍ରମୋଦ, ଅଥଚ ଏଇ ଲୋକଟା–କେବଳ ଗୋଟାଏ ଘାଣୁ ଗେଣ୍ଡାପରି ହାତଗୋଡ଼ ଗୋଟେଇ ନେଇ ବାଲ୍‌କନିରୁ ଚାହିଁରହେ ।

ବାବୁ ଚା'– ସୀତାରାମ ହାତରେ ଚା' କପ୍ ଧରି ଡାକିଲା । ଓଃ ! କି ଆରାମ, ଏ ଖରାରେ ବସି ବସି ଅଳସରେ ଚା' ପିଇବି; କିନ୍ତୁ ତଥାପି କେଜାଣି କାହିଁକି

ଅସନ୍ତୋଷ ରହିଯାଏ । ଏଇ କପେ ଚା' ପାଇଁ ମତେ ଭାବିବାକୁ ହୁଏ ନାହିଁ—ମତେ ପଇସା ଦେବାକୁ ହୁଏ ନାହିଁ । ନିଜର ମଧ ଏତେଟିକେ ପରିଶ୍ରମ ନାହିଁ ଏଥିରେ । ତେବେ ବି ମନେହୁଏ, ଏଇ ଶୀତଦିନ ସକାଳେ ଛିଣ୍ଡା ଲୁଙ୍ଗିପ୍ୟାଣ୍ଟ ପିନ୍ଧି ଦିହରେ ଖଣ୍ଡେ ସ୍ୱେଟର୍ ଗଳେଇ ଦେଇ ସାଇକେଲ୍ ଚଳେଇଲେ ଖୁବ୍ ମଜା ଲାଗନ୍ତା । କାଲୁଆ ପବନ କାଟି କାଟି ଶେଷରେ ଯାଇ ହାଜର୍—ଅମଡ଼ା ଗଳି ଭିତରର ସେଇ ତାଟିଦିଆ ଚା' ଦୋକାନରେ ।

''ମୂର୍ତ୍ତି କପେ ଚା' ଦିଅ ।''

ମୂର୍ତ୍ତି ହଠାତ୍ ଗୋଟାଏ ଜୁହାର ଉଞ୍ଚେଇ ଦେଇ ଗପ ଯୋଡ଼ିଦବ... ଏକେ ଚିନି କଣ୍ଟ୍ରୋଲ୍, ତା'ପରେ ତା'ରି ସିଝା ଚା'ଗୁଡ଼ାଏ ନେଇ ଗୋଲାପ ଗଛ ମୂଳରେ ଦେଲେ କୁଆଡ଼େ ଛଟାଙ୍କିଏ ଓଜନର ଗୋଲାପ ଫୁଲ ଆମଦାନୀ କରାଯାଇପାରେ, ଇତ୍ୟାଦି ।

ତା'ପରେ ଗୁଣ୍ଡ ଲିପ୍‌ଟନ୍ ଚା'ରେ କପେ ଚା' । ପାଖ ପାନ ଦୋକାନରୁ ଖଣ୍ଡେ ସିଗାରେଟ୍—ପୁଣି ବାବା ସାଇକେଲ୍‌ରେ ଉଠ । ଖରା ଖୁବ୍ ଟାଣ ହେଇ ଆସିଲାଣି । କଟକ ସହରର ରାସ୍ତା ଉପରେ ସାଇକେଲ୍, ତେଲ ଦିଆ ହେଇ ନାହିଁ କେଉଁ କାଳରୁ—କେଁ-କେଁ-କେଁ । ସୀତାରାମ ଆସି ପଚାରିଲା, ''ଆଉ ଚା' ଆଣିବି'' ?

ହାତ ହଲେଇ ସଙ୍କେତ ଦେଲି— ନାଁ । ପୁଣି ସେଇ ଲୋକଟା ଆସିଲାଣି ।

ଖୁବ୍ ସୁନ୍ଦର ଦେଖାଯାଉଚି ଲୋକଟା । ସ୍ୱାସ୍ଥ୍ୟର କୁବେର !! ଦିହରେ ଖଣ୍ଡେ ଧଳା ପଞ୍ଜାବୀ—ତା' ଉପରେ ଖଣ୍ଡେ ଦାମି ସାଲ୍ । ବାବୁ କୁଆଡ଼େ ବାହାରିଛନ୍ତି ହଠାତ୍ କ'ଣ ମନେକରି ଚାଲିଗଲେ ଘର ଭିତରକୁ ଆଉ ଦର୍ଶନ ନାହିଁ— ଗଲା....ଯାଃ ।

ନିଜର ପରିମିତ ସ୍ଥାନ ଆଉ ଅପର୍ଯ୍ୟାପ୍ତ ସମୟ ଭିତରେ ଦିନର ପ୍ରତ୍ୟେକଟି କାର୍ଯ୍ୟନିର୍ଘଣ୍ଟ ସରି ସରି ଆସେ । ତା'ପରେ ସନ୍ଧ୍ୟା ।

ଆଖି ଆଗରେ ପଚାଶ ଗଜ ଲମ୍ୱା ଆଉ ପଚାଶ ଗଜ ଚଉଡ଼ାର ପ୍ରଶସ୍ତ ଖୋଲା ଜାଗା । ନେଳି ନେଳି ଘାସ ଭିତରେ ଚନ୍ଦା ମୁଣ୍ଡ ପରି ଠାଏ ନୁଖୁରା ଟାଙ୍ଗୀ ।

କିଛି ଦୂରରେ ଗୋଟାଏ ମୋଟା ପଣସ ଗଛ—ବାସ୍ ସରିଲା । ତା'ରି ଭିତରେ ବୁଲିବାକୁ ହୁଏ ସବୁବେଳେ । ଉପାୟ ନାହିଁ । ଦଉଡ଼, ଡିଆଁ, ଚାଲ ବା ମଧ୍ୟଯୁଗୀୟ କବି ପରି ନେଳି ଘାସ ଉପରେ ଶୋଇରହି କଳ୍ପନା କର—ଯାହା କର, ସେଇ ପଚାଶ ଗଜ ଲମ୍ୱା ଆଉ ପଚାଶ ଗଜ ଚଉଡ଼ାର ବିସ୍ତୀର୍ଣ୍ଣ ପ୍ରାନ୍ତରର ସୀମା ଭିତରେ । ପୁଣି ସେଇ ଲୋକଟା ଆସି ଠିଆ ହେଲାଣି । ଏଥର ଦେହରେ ଖଣ୍ଡେ ଓଭର୍‌କୋଟ୍—କାଳିଆ ଲମ୍ୱା ଓଭର୍‌କୋଟ୍‌ର ଖଣ୍ଡା ଖୋଳ ଭିତରୁ ସେଇ ଗୋରା ଚକା ମୁହଁ ଆଉ ଚଷମା । କିଛିକ୍ଷଣ ପରେ ତାଙ୍କ ପାଖରେ ଆସି ଠିଆ ହେଲେ ଜଣେ ତରୁଣୀ ।

ଦୁହେଁ ଲକ୍ଷ୍ୟ କରୁଛନ୍ତି । କେତେବେଳେ ଆମକୁ ବା' କେତେବେଳେ ରାସ୍ତାକୁ ।

ଏମାନେ ବୋଧହୁଏ ସ୍ୱାମୀ, ସ୍ତ୍ରୀ—ଅତି ନିଃସଙ୍କୋଚରେ ପରସ୍ପର ପାଖରେ ଠିଆହୋଇ ଉପଭୋଗ କରୁଛନ୍ତି ଏଇ କ୍ରମ ଘନାୟିତ ସନ୍ଧ୍ୟାକୁ । ଖରା ମଉଳି ଆସୁଚି ଆସ୍ତେ ଆସ୍ତେ ।

ଏଇ—ହଠାତ୍ ସେଇ ଲୋକଟି ଆମ ଆଡ଼ିକୁ ଆଙ୍ଗୁଠି ବଢ଼ାଇ କ'ଣ ଦେଖେଇଦେଲା । ଦୁହେଁ ଚାହିଁଛନ୍ତି ନିର୍ନିମେଷ ନୟନରେ ।

ପାଚିରୀ ଏପଟେ ବା କ'ଣ ଦର୍ଶନୀୟ ଜିନିଷ ଅଛି ? କଏଦୀମାନେ ଫାଇଲ୍ ବାନ୍ଧି ବାସନ-କୁସନ ଧରି ଠିଆ ହୋଇଛନ୍ତି—ଘଣ୍ଟା ହୋଇ ଗଲାଣି, ବର୍ତ୍ତମାନ ଖାଇବାକୁ ଦିଆଯିବ ।

ପ୍ରତିଦିନ ଦେଖି ଦେଖି ଗୋଟାଏ କେମିତି ଅଭ୍ୟାସ ହୋଇ ଗଲାଣି । ନିହାତି ସ୍ୱାଭାବିକ କଥା, ବୈଚିତ୍ର୍ୟ ଏତେ ଟିକେ ନାହିଁ ।

କେବଳ ବୈଚିତ୍ର୍ୟ ଅଛି ଯଦି ସେଇ କୋଠା ଉପରେ ଠିଆ ହୋଇ ଅନାଯାଏ । ସତରେ ଖୁବ୍ ଆନନ୍ଦ ଲାଗୁଥିବ ନିଶ୍ଚୟ । ଯେମିତି କଏଦୀମାନେ ଅନ୍ୟ ଗୋଟାଏ ଗ୍ରହର ଲୋକ । ମାରାତ୍ମକ, ପୂରାପୂରି ସମାଜବିରୋଧୀ, କିନ୍ତୁ କେବଳ ଏଇମାନେ ଏଇ ବିରାଟ ପାଚିରୀ ଭିତରେ ଅଛନ୍ତି ବୋଲି, ସେଥିପାଇଁ ଏମାନଙ୍କୁ ଟିକେ ଶାନ୍ତିରେ ଚାହିଁହୁଏ, ନହେଲେ.....

ଭିତରେ ସେମାନଙ୍କ ପାଇଁ ଯେତିକି ବିଚିତ୍ର ବାହାର ଆମ ପାଇଁ ସେତିକି ସୁନ୍ଦର । ପାଚିରୀ ଡେଇଁ ଚାହିଁଲେ ଚାରିଆଡ଼େ ଡେଙ୍ଗା ଡେଙ୍ଗା ଗଛ, ଆଉ ଉଚ୍ଚା ଉଚ୍ଚା କୋଠାର ତୂଳୀ; କିନ୍ତୁ ଏଇ ଯେ ଛୋଟ ବାଲ୍‌କନି, ଆଉ ଏଇ ଦି'ଜଣ ମଣିଷ—ଯେମିତି ବାହାର ସହିତ ଗୋଟାଏ ଯୋଗସୂତ୍ର । ଗୋଟାଏ କାହିଁକି, ଏକମାତ୍ର କହିଲେ ଠିକ୍ ହେବ ।

ଦିନେ ଦିନେ ସକାଳୁ ଲୋକଟା ଗୋଟିଏ ଖବରକାଗଜ ଆଣି ସେଇଠି ଠିଆ ହେଇ ହେଇ ପଢ଼େ । ଏତେ ବେଶୀ ଈର୍ଷା ହୁଏ ଲୋକଟା ଉପରେ । ମୋର ଖବରକାଗଜ ଆସେ; କିନ୍ତୁ ସେଥିରେ ଖାଲି ଜଳା ଆଉ ଜଳା । ମନରେ ଖୁବ୍ ରାଗ ହୁଏ ।

ଯଦି ପଚାରିବ ''ଯେ କ'ଣ ?''

ଉତ୍ତର ମିଳିବ ''ଯାଞ୍ଚ ହୋଇଗଲା, ସେନ୍‌ସର୍ଡ଼ ।''

ଦିନସାରା ଏଇ ମୁହୂର୍ତ୍ତଟାକୁ କେବଳ ଅପେକ୍ଷା କରାଯାଇଥାଏ । ଖବରକାଗଜ ଆସିଲେ ବାହାର ପୃଥିବୀର କିଛି ଖବର ମିଳିବ । ଖବରକାଗଜ ଆସେ ଠିକ୍ ଆଉ ଖବର ମିଳେ—ଛେନା !

ଅଥଚ ସେଇ ଲୋକଟା ଏଇ ପାଚିରୀ ଆରପଟେ ପଢୁଛି ଗୋଟାଏ ପୂରା ଖବରକାଗଜ । ଏତେ ଟିକେ ବି କଟାଇ ନାହିଁ ସେଥିରୁ । ଭୀଷଣ ଈର୍ଷା ଆସେ ।

ଆସ୍ତେ ଆସ୍ତେ ସେଇ ଲୋକଟା କେମିତି ପୁରୁଣା ହେଇ ଆସିଲାଣି । ଆଉ ଲୋକଟାକୁ ଲକ୍ଷ୍ୟ କରିବାକୁ ମନ ହୁଏନାହିଁ—କେବଳ ଈର୍ଷା ହୁଏ । ଲୋକଟାର ନାନାଦି ପ୍ରକାର ବ୍ୟବସାୟ । ଦିନେ ଦିନେ ଦେଖାଯାଏ ବନ୍ଧୁକ ନଳୀ ସଫା କରୁଚି ତ—ଦିନେ ଦିନେ ବେହେଲାର ତାର ମୋଡ଼ି ଠିକ୍ କରୁଛି । ତଥାପି ସେଇ ଲୋକଟାର ସେଇ କଦର୍ଯ୍ୟ ଅଭ୍ୟାସ—ପ୍ରତିଦିନ ବାଲ୍‌କନି କାଛକୁ ଆଉଜି ଧରି ଲକ୍ଷ୍ୟ କରେ ତଳକୁ— ।

ଲୋକଟା ପ୍ରାୟ ରୋଜିନା ଚା' ଖାଏ । ଥରେ କେବେ କେବେ ଦୁଇଥର ବା ତିନିଥର । ଆଜିକାଲି ଚା' ଖାଇବାର ଦେଖିଲେ ମନହୁଏ ଟେକାମାରି ତା ହାତରୁ ଚା' କପ୍ ତଳକୁ ଖସେଇଦେବାକୁ । ମନହୁଏ ତା'ର ପୂରା ଖବରକାଗଜଟାକୁ ଟେକାମାରି କଣା କରିଦବାକୁ । ଓଃ ! ଥରେ ଯଦି ତା' ଚଷମାକୁ ଗୋଟାଏ ଗୋଡ଼ି ଲାଖ କରାଯାଇ ପାରନ୍ତା ! କି ମଜା ହୁଅନ୍ତା । ଯଦି ଆଖି ଉପରେ ଆଘାତ ଆସନ୍ତା, ତା'ହେଲେ ତ ଆହୁରି ଚମତ୍କାର ।

ଏଇ ପାଚିରୀ ଭିତରେ ଜୀବନର ପରିସର ଯେତିକି ସଙ୍କୁଚିତ—ବୈଚିତ୍ର୍ୟର କାର୍ପଣ ସେତିକି ବେଶୀ । ବେଳେ ବେଳେ ସମୟର ପ୍ରାଚୁର୍ଯ୍ୟ ଅସହ୍ୟ ହୋଇଉଠେ । ସବୁ ନିର୍ଭର କରେ ମନର ଅବସ୍ଥା ଉପରେ ।

ଅନେକ ଦିନ ପରେ ।

ସେଇ ଲୋକଟା ଆଉ କାହିଁକି ଆଜିକାଲି ଦେଖାଯାଏ ନାହିଁ । ସକାଳ ସନ୍ଧ୍ୟା ପ୍ରାୟ ଘରର କବାଟ ବନ୍ଦରହେ । କେହି ହେଲେ ବି ଜଣେ ବାହାରକୁ ଆସେ ନାହିଁ । ଆଜିକାଲି କିପରି ଲୋକଟାର ଅଭାବ ଆସ୍ତେ ଆସ୍ତେ ଅନୁଭବ କରିହେଲାଣି । ହୁଏତ କିଛି ଦେହ ଖରାପ ଅଛି । ଯା' ବି ତ ହେଇପାରେ, ଭଦ୍ରଲୋକ ଘର ଛାଡ଼ି ଅନ୍ୟଆଡ଼େ ଚାଲିଗଲେ ।

ଏଇ ଶେଷ କଥାଟାକୁ ବିଶେଷ ଭଲ ଭାବରେ ଗ୍ରହଣ କରି ହୁଏ ନାହିଁ । ସେଇ ଅଜ୍ଞାତ ଲୋକଟାର ଅଭାବ କେମିତି ମନଟାକୁ ଖରାପ କରିଦିଏ । ସେଇ ଲୋକଟା—ଯେତେ ଈର୍ଷା ହେଉନା କାହିଁକି ତା ପ୍ରତି, ସେ ଯେ ବାହାର ପୃଥିବୀର ଗୋଟାଏ ସଂକେତ, ମୁକ୍ତ ଜୀବନର ଗୋଟାଏ ପ୍ରତୀକ, ଏକଥା ଅସ୍ୱୀକାର କରି ହୁଏ ନାହିଁ । ମନେ ମନେ ଭାବେ; ହୁଏତ ଲୋକଟା କିଛି କାମରେ କିଛି ଦିନ ପାଇଁ କଟକ ବାହାରକୁ ଯାଇଛି ।

ପୁଣି ଚାଲିଗଲା । କିଛିଦିନ ।

କାହିଁ ? ତଥାପି ଦୁଆର ବନ୍ଦ ।

ହୁଏତ ଲୋକଟା ଘର ଛାଡ଼ି ଚାଲିଗଲା । ଏକାଥରକେ ।

ପୁଣି ଦିନେ ସକାଳୁ କିଏ ଗୋଟିଏ ସ୍ତ୍ରୀଲୋକ ଠିଆ ହୋଇଛି ବାଲ୍‌କନି ଧାରକୁ ଆଉଜି—କାଖରେ ଛୋଟ ଶିଶୁଟିଏ । କିଛି ସମୟ ନିରୀକ୍ଷଣ କରି ସ୍ପଷ୍ଟ ବୁଝାଗଲା ଏଇ ସ୍ତ୍ରୀ ଲୋକ ନିଶ୍ଚୟ ଅନ୍ୟ କୌଣସି ପରିବାରର । ଆସ୍ତେ ଆସ୍ତେ ସେଇ ବାଲ୍‌କନି ଧାରରେ ଅନେକ ଅଚିହ୍ନା ମୁହଁ ଦେଖାଗଲା ।

ନାଁ, ଭଦ୍ରଲୋକ ନିଶ୍ଚୟ ସେ' ଘରଛାଡ଼ି ଚାଲିଗଲେ ।

ବାଲ୍‌କନିରେ ସକାଳର ସେଇ ଚିକ୍ ଚିକ୍ ଖରା—ସନ୍ଧ୍ୟାର ସେଇ ଧୂସର ରଙ୍ଗ— ଅଥଚ ସେ ଲୋକ ଆଉ ଚା' କପ୍ ହାତରେ ଧରି ଅନେଇ ରହେ ନାହିଁ । ଈର୍ଷା କେମିତି କଟି ଆସିଲାଣି ମନରୁ । ମନରେ ଆସେ, ସେ ଲୋକଟାହେଲେ ଫେରି ଆସନ୍ତା । ସେଇ ଲୋକଟାର ଚଷମା ଦିଆ ଆଖି ଦେଇ ମୁଁ ଯେମିତି ଦେଖି ପାରୁଥିଲି—କଟକ ସହର ରାସ୍ତାର ସକାଳ, ଆଉ ସନ୍ଧ୍ୟା—ପଟୁଆର—ରିକ୍ସା—ଘୋଡ଼ାଗାଡ଼ି—ସବୁକିଛି । ବେଳେବେଳେ ସେଇ ଲୋକଟା ସାଙ୍ଗରେ ମଧ ବୁଲି ଯାଇ ହୁଏ କଟକ ସହର ରାସ୍ତାରେ ।

କେତେବେଳୁ ସୀତାରାମ ଆସି ଚା' ଦେଇ ଚେତେଇ ଦେଇଗଲା— ବାବୁ ଚା' ।



# ଶେଷ ଆବିଷ୍କାର

ମଧୁପୁର ଷ୍ଟେସନ୍‌ର ଷ୍ଟେସନ୍‌ମାଷ୍ଟର୍ ଭାବରେ ରହିବା ଶିବଶେଖର ସରକାରଙ୍କର ମାତ୍ର ଦୁଇମାସ ହେଇଛି । ଭାରତବର୍ଷର ଅନ୍ୟ ଯେକୌଣସି ଛୋଟ ଷ୍ଟେସନ୍ ପରି ମଧୁପୁର ଷ୍ଟେସନ୍ ମଧ ଗୋଟାଏ ବିସ୍ତୀର୍ଣ୍ଣ ଖୋଲା ପ୍ରାନ୍ତର ଭିତରେ ଉପରକୁ ମୁଣ୍ଡ ଟେକିଛି ଛୋଟ ଟାପୁଟିଏ ପରି । ମଧୁପରୁ ଷ୍ଟେସନ୍‌ଟି ଆଖପାଖର ଦଶ ବାର ଖଣ୍ଡ ଗାଁର ଚାହିଦା ପୂରଣ କରେ । ପାଖ ପାଖ ଗାଁ ଦାଣ୍ଡରୁ ଠିଆ ହୋଇ ଦେଖିଲେ ଷ୍ଟେସନ୍‌ର ଆଲୁମିନିୟମ୍ ପେଣ୍ଟ ଦିଆ ଧଳା ଧଳା ବାଡ଼ ସବୁ ଖରାରେ ଚିକ୍ ଚିକ୍ ଦେଖାଯାଏ । ଯିବା ଆସିବା ଟ୍ରେନ୍‌ର ଧୂଆଁ ମଧ ଦେଖାଯାଏ ଆହୁରି ଦୂରରୁ । ଗାଡ଼ି ଯିବା ଆସିବା କାଳାବେଳେ ଗାଁର ଲଙ୍ଗଳା ପିଲା ସବୁ ଦୌଡ଼ାଦୌଡ଼ି ହୋଇ ପଦାକୁ ବାହାରି ଆସି ଗାଡ଼ିକୁ ଚିହ୍ନଟ କରିବା ପାଇଁ ଯୁକ୍ତିତର୍କ ଆରମ୍ଭ କରି ଦିଅନ୍ତି । ଗାଡ଼ିର ହୁଇସିଲ୍ ଦୂରରେ ମିଳେଇ ଗଲେ ପିଲାମାନଙ୍କର ମେଳା ମଧ ମଉଳି ଯାଏ ।

ଦିନ ଭିତରେ ମାତ୍ର ଦୁଇଥର ଦୁଇ ତିନି ମିନିଟ୍ ପାଇଁ ଷ୍ଟେସନ୍‌ଟିରେ ସାମାନ୍ୟ କୋଳାହଳ ଶୁଣାଯାଏ । ଗୋଟିଏ ଅପ୍ ଓ ଗୋଟିଏ ଡାଉନ୍ ପାସେଞ୍ଜର୍ ଟ୍ରେନ୍ ଆସି ଠିଆ ହୁଅନ୍ତି ମାତ୍ର ଦୁଇ ତିନି ମିନିଟ୍ ପାଇଁ । ସେଇ ସମୟ ଭିତରେ ଚାରି ପାଞ୍ଚଜଣ ଯାତ୍ରୀ ଏପଟ ସେପଟ ଦୌଡ଼ାଦୌଡ଼ି ହୁଅନ୍ତି—ବୁକିଂ ଅଫିସ୍ ଭିତରେ ଟିକଟ୍ କାଟିବାରେ ଠକ୍ ଠକ୍ ଶବ୍ଦ ଶୁଭେ ଆଉ କଦବା କ୍ୱଚିତ୍ ଖଣ୍ଡେ ରିକ୍ସାର ଘଣ୍ଟି ମଧ ଶୁଣାଯାଏ । ଏଇ ସମୟତକ ବାଦ୍ ଦେଲେ ବାକୀଟା ସମୟ ଷ୍ଟେସନ୍‌ଟା ପ୍ରାୟ ନୀରବ ନିସ୍ତବ୍ଧ ହେଇ ପଡ଼ି ରହିଥାଏ । କେବେ କେମିତି ଶିବଶେଖର ତାଙ୍କର ନାଏଗ୍ରା ଚପଲକୁ ଘୋଷାରି ଘୋଷାରି ଚାଲିବାର ଶବ୍ଦ ଶୁଣାଯାଏ । ନହେଲେ କେବେ କେବେ ତେଲଙ୍ଗା ପଏଣ୍ଟସ୍ ମ୍ୟାନ୍‌ଟା ପାଟି କରି କାହାକୁ କ'ଣ କହୁଥାଏ । କ୍ଷୁଦ୍ରାଦପିକ୍ଷୁଦ୍ର ପାନ ଦୋକାନୀଟିଏ ପାନ ବାକ୍ସ ବନ୍ଦ କରୁଥାଏ କି ଖୋଲୁଥାଏ । ଚାହା ଦୋକାନିଟିଏ ହୁଏତ କୋଇଲା ଚୁଲୀରେ ଆଞ୍ଚ ଧରାଉଥାଏ ।

ଅନେକ ରାତିରେ– ପ୍ରାୟ ରାତି ଗୋଟାଏ ଠାରୁ ଦୁଇଟା ଭିତରେ ଆଉ ଏକ ନାଟକୀୟ ଘଟଣା ନୀରବରେ ଘଟିଯାଏ ଯାହାକୁ ଦେଖିବାକୁ ଶିବଶେଖର ସରକାର ଓ ପଏଣ୍ଟସ୍‌ମ୍ୟାନଟି ଭିନ୍ନ ଆଉ କେହି ତୃତୀୟ ବ୍ୟକ୍ତି ନଥାଏ । ପ୍ରାୟ ସେଇ ସମୟ

ଭିତରେ ଷ୍ଟେସନ୍‌ର ଛାତି କମ୍ପାଇ ଅପ୍ ଓ ଡାଉନ୍ ମେଲ୍ ଟ୍ରେନ୍ ଦୁଇ ବିପରୀତ ଦିଗକୁ ତୀର ବେଗରେ ଛୁଟି ଯାଆନ୍ତି । ସେମାନେ ଏକ ସ୍ୱତନ୍ତ୍ର ଗୋଷ୍ଠୀ—ସେମାନେ ଏଇ କ୍ଷୁଦ୍ର ମଧୁପୁର ଷ୍ଟେସନ୍‌ର ସ୍ୱଳ୍ପ ବେତନଭୋଗୀ ଷ୍ଟେସନ୍‌ମାଷ୍ଟର୍‌ର ଅକ୍ତିଆର୍‌ର ବାହାରେ । କେବଳ ତାରରେ ଶିବଶେଖର ସମ୍ବାଦ ପାଆନ୍ତି ଅପ୍‌ମେଲ୍ ଆସିଲା ତା'ର ସମସ୍ତ ବନ୍ଦୋବସ୍ତ କର । ତା'ପରେ ସିଗ୍‌ନାଲ୍‌ର ଲାଲ୍ ଆଲୋକ ସଙ୍କେତ ନୀଳ ହୁଏ—ଟିଣ୍ ଟିଣ୍ କରି ଗୋଟାଏ ଘଣ୍ଟି ବାଜି ଉଠେ ଆଉ ପଏଣ୍ଟସ୍‌ମ୍ୟାନ୍‌ଟି ଲାଇନ୍ କ୍ଲିଅର୍ ଲୌହ କନ୍ଦୁକକୁ ଗୋଟିଏ ଗୋଳେଇ ବେତରେ ବାନ୍ଧି ନିଆଁହୁଳା ଧରି ଲାଇନ୍ ପାଖରେ ଠିଆ ହୋଇ ରୁହେ । ମେଲ୍ ଟ୍ରେନ୍‌ଟା ଦୁଇ ତିନିଟା ଆର୍ତ୍ତ ଚିତ୍କାର କରି ମାଡ଼ିଆସେ ଆଉ ଇଞ୍ଜିନ୍‌ର ଲୁହା ଦାଡ଼ ଧରି ଝୁଙ୍କି ପଡ଼ିଥିବା ଗୋଟାଏ ହାତ ପଏଣ୍ଟସ୍‌ମ୍ୟାନ୍ ହାତରୁ ଗୋଳେଇ ବେତଟାକୁ ଆଖି ପିଛୁଳାକେ ନେଇଯାଇ ଅନ୍ତର୍ଦ୍ଧ୍ୟାନ ହେଇଯାଏ । ମେଲ୍ ଟ୍ରେନ୍‌ଟା ଯେ ଏଇ ଟିକକ କଥା ପାଇଁ, ମଧୁପୁର ଷ୍ଟେସନ୍‌କୁ ଦୃକ୍‌ପାତ କରେ ସେଥିପାଇଁ ଷ୍ଟେସନ୍ ଯେପରି ତା'ପାଖରେ କୃତକୃତ୍ୟ ହୁଏ ଓ ପଏଣ୍ଟସ୍‌ମ୍ୟାନ୍ ଏପରିକି ଶିବଶେଖର ପର୍ଯ୍ୟନ୍ତ ନିଜକୁ ସର୍ବଭାରତୀୟ ରେଳପଥର ଜଣେ ଜଣେ ଦାୟିତ୍ୱପୂର୍ଣ୍ଣ କର୍ମଚାରୀ ବୋଲି ମନେ କରନ୍ତି ।

ପ୍ରତିଦିନ ଏଇ ଘଟଣାର ପୁନରାବୃତ୍ତି ହୁଏ ।

ଶିବଶେଖର ସରକାର ବହୁବର୍ଷ ଧରି ଚାକିରି କଲେଣି । ଜୀବନ ଭିତରେ ତାଙ୍କୁ ବହୁଥର' ବଡ଼ ଷ୍ଟେସନ୍‌ର ଚାର୍ଜ ନବାକୁ ଡାକରା ଆସିଲାଣି; କିନ୍ତୁ ଶିବଶେଖର ସବୁବେଳେ ଯିବାକୁ ନାରାଜ୍ । ଆଜିକୁ ଦଶବର୍ଷ ତଳେ ଶିବଶେଖରଙ୍କର ସ୍ତ୍ରୀ କ୍ୟାନ୍ସର୍ ରୋଗରେ ମରିଯିବା ପରେ ଶିବଶେଖରଙ୍କୁ ଆଉଥରେ ବିବାହ କରିବାକୁ କେହି ରାଜି କରେଇ ପାରିନାହାନ୍ତି । ବିବାହ କଥା ପଡ଼ିଲେ ସେ ଏକ ଉଦାସୀନ ପ୍ରଶାନ୍ତ କଣ୍ଠରେ କୁହନ୍ତି, "ପିଲାପିଲି ତ ନାହାନ୍ତି ଆଉ ଥରେ ବିବାହ କରି କାହିଁକି ଆଉ ସେ' ଜଞ୍ଜାଳକୁ ଯିବି ?"

ସେ'ଇ ସମୟ ଠାରୁ ମଫସଲ୍ ଷ୍ଟେସନ୍‌ର ଷ୍ଟେସନ୍‌ମାଷ୍ଟର୍ ପାଇଁ ନିର୍ଦ୍ଧାରିତ ସେଇ ଛୋଟ ବଖରାଟି ଶିବଶେଖରଙ୍କର ଘର କହିଲେ ଚଳେ । ପଏଣ୍ଟସ୍‌ମ୍ୟାନ୍‌ଟି କ'ଣ ଦିଟା ହେଲେ ରୋଷେଇ କରିଦିଏ ଆଉ ଷ୍ଟେସନ୍ ଘର ଭିତରେ ପଡ଼ିଥିବା ବଡ଼ ସିନ୍ଦୁକଟା ଉପରେ ଖଣ୍ଡେ ମସିଣା ଆଉ ତକିଆରେ ତାଙ୍କର ଶଯ୍ୟା ପ୍ରସ୍ତୁତ ହୁଏ । ଏଇ ଜୀବନ ସହିତ ସେ ଏତେ ବେଶୀ ଅଭ୍ୟସ୍ତ ହେଇଗଲେଣି ଯେ ସେ' ଅନ୍ୟ କେଉଁ ବଡ଼ ଷ୍ଟେସନ୍‌ର ଜଞ୍ଜାଳ ନବାକୁ ପ୍ରସ୍ତୁତ ନୁହନ୍ତି ବା' ଅଧିକା ଅର୍ଥ ଉପାର୍ଜନ କରିବାର ଲୋଭ ମଧ ନାହିଁ । ସକାଳ ସଞ୍ଜେ ଷ୍ଟେସନ୍‌ର ହକର୍ ପାଖରୁ କପେ କପେ ଚା' ମିଳିଯାଏ,

ଅପେକ୍ଷା କରୁଥିବା ଯାତ୍ରୀମାନଙ୍କ ସାଙ୍ଗରେ ଅକାଳେ ସକାଳେ ନିର୍ବାଚନ ରାଜନୀତି ଗପ ଢମେ ଆଉ ଏକଟଣା ବିରକ୍ତିକର ଦି'ପହରଟା ଖବରକାଗଜ ନ ହେଲେ, ପୁରୁଣା, ଛିଣ୍ଡା ମାସିକ ପତ୍ରିକା ଉପରେ ଆଖି ବୁଲେଇ ନଉ ନଉ କେବେ କେବେ ଆଖି ମଧ ଲାଗିଯାଏ ।

ସେଇଟା ଥିଲା ଡିସେମ୍ବର ମାସ । ଡାଉନ୍ ପ୍ୟାସେଞ୍ଜର୍ ଗାଡ଼ି ଷ୍ଟେସନ୍ ଛାଡ଼ିଲାବେଳକୁ ପ୍ରାୟ ବେଳ ବୁଡ଼ିଗଲାଣି । ପ୍ୟାସେଞ୍ଜର୍ ଷ୍ଟେସନ୍ ଛାଡ଼ିବା ପରେ ପରେ ଶିବଶେଖର ତାଙ୍କର ରାତ୍ରି ଭୋଜନ ଶେଷ କରି ନେଇ ବଡ଼ ସିନ୍ଧୁକଟା ଉପରେ ଶୋଇ ରହି ଘରର ଛାତଟାକୁ ଏକ ଅହେତୁକୀ ଦୃଷ୍ଟିରେ ଚାହିଁ ରହିଛନ୍ତି । ରାତି ଗୋଟାଏ ନ ବାଜିବା ପର୍ଯ୍ୟନ୍ତ ତାଙ୍କର ହାତରେ କିଛି କାମ ନାହିଁ । ଏହିପରି ପଡ଼ିରହି ଶିବଶେଖରଙ୍କୁ ନିଦ ଲାଗିଯାଇଛି ଅନେକ ବେଳୁ । ନିଦ ଲାଗିଯିବାରେ ମଧ କୌଣସି ଅସୁବିଧା ନାହିଁ, କାରଣ ମେଲ୍ ଟ୍ରେନ୍ ଆସିବା ସମୟ ହେଲେ ପଏଣ୍ଟସ୍‌ମ୍ୟାନ୍ ତାଙ୍କୁ ଠିକ୍ ସମୟରେ ଉଠେଇ ଦବ—କିଛି ନ ହେଲେ ଟେଲିଫୋନ୍‌ର କ୍ରିଂ କ୍ରିଂ ଶବ୍ଦ ତ ରହିଛି ।

କବାଟରେ ଠକ୍ ଠକ୍ ଶବ୍ଦ ଶୁଣି ଶିବଶେଖରଙ୍କ ନିଦ ଭାଙ୍ଗିଲା । ଶିବଶେଖର କବାଟ ଖୋଲିଲାକ୍ଷଣି ଦମ୍‌କାଏ ଥଣ୍ଡା ପବନ ଭିତରକୁ ପଶି ଆସି ଶିବଶେଖରଙ୍କର ସମସ୍ତ ଦେହଟାକୁ ଯେପରି ଅସାଡ଼ କରିଦେଲା—ଆଉ ତା ସହିତ ଖୁବ୍ ତରତରରେ ଓ ଅପ୍ରତ୍ୟାଶିତ ଭାବରେ ପଶିଆସିଲେ ଜଣେ ନାରୀ । ସିର୍ ସିର୍ ଥଣ୍ଡା ପବନରୁ ରକ୍ଷା ପାଇବା ପାଇଁ ଆଗନ୍ତୁକାଙ୍କୁ କିଛି ପ୍ରଶ୍ନ କରିବା ପୂର୍ବରୁ କବାଟଟାକୁ ପୁଣି ଥରେ ବନ୍ଦ କରି ଆଣିଥିଲେ ଶିବଶେଖର । ଭଦ୍ରମହିଳା ଦେହରୁ ସ୍କାର୍ଫଟାକୁ ସାମାନ୍ୟ ହୁଗୁଳା କରି ଖଣ୍ଡେ ଚଉକି ଉପରେ ବସିବାର ଉପକ୍ରମ କରୁ କରୁ ଶିବଶେଖର ଘଣ୍ଟାଟାକୁ ଚାହିଁଲେ—ଗୋଟାଏ ବାଜିବାକୁ ମାତ୍ର ପନ୍ଦର ମିନିଟ୍ ବାକି । ଆଉ ଅଧଘଣ୍ଟାଏ ପରେ ମେଲ୍ ଟ୍ରେନ୍ ଆସିବ । ଭଦ୍ରମହିଳାଙ୍କୁ ଏପରି ନିଶ୍ଚିନ୍ତ ଭାବରେ ବସିଯିବାର ଦେଖି ଶିବଶେଖର ସ୍ୱାଭାବିକ ଭାବରେ ଭାବିଲେ ଯେ ବାହାରର ଶୀତରୁ ରକ୍ଷା ପାଇବାକୁ ବୋଧହୁଏ ସେ ଘର ଭିତରକୁ ପଶି ଆସିଛନ୍ତି ।

କେଇ ମୁହୂର୍ତ୍ତ ସମ୍ପୂର୍ଣ୍ଣ ନୀରବତା ଭିତରେ କଟିଗଲା । ଶିବଶେଖର କିଛି ସମୟ ଧରି ଏଇ ଆଗନ୍ତୁକାଙ୍କର ଆକସ୍ମିକ ଆବିର୍ଭାବଟାକୁ ମନେ ମନେ ତଉଲେଇ ନଉଥିଲେ । ଭଦ୍ରମହିଳାଙ୍କର ବୟସ ଖୁବ୍ ଜୋର୍ ବାଇଶ ବା ତେଇଶ ହବ ଏବଂ ସେ ଦେଖିବାକୁ ଅସାମାନ୍ୟା ସୁନ୍ଦରୀ । କିନ୍ତୁ କେଜାଣି କାହିଁକି, ଶିବଶେଖରଙ୍କୁ କିପରି ଅସ୍ୱସ୍ତିକର ମନେହେଲା । ସେ' ତାଙ୍କର ଏତେ ବର୍ଷର ଚାକିରି ଭିତରେ ଥରକ ପାଇଁ

ହେଲେ, କୌଣସି ଷ୍ଟେସନ୍‌ରେ ରାତ୍ରିର ଏ ସମୟରେ ଏପରି ଜଣେ ଆଗନ୍ତୁକାଙ୍କୁ ପ୍ରତ୍ୟକ୍ଷ କରି ନାହାନ୍ତି । ରାତ୍ରିର ଏ ପ୍ରହରରେ ମଧ୍ୟ ଏଇ ସୁନ୍ଦରୀ ଯୁବତୀଙ୍କ ସହିତ କେହି ଜଣେ ସହଯାତ୍ରୀ ନାହାନ୍ତି ?

ଭଦ୍ରମହିଳା ହିଁ ପ୍ରଥମେ ପ୍ରଶ୍ନ କଲେ, ''ମେଲ୍ ଟ୍ରେନ୍ ଆସିବାର ସମୟ କେତେ ?''

''ଗୋଟାଏ ପନ୍ଦର'' —ଶିବଶେଖର ସଂକ୍ଷେପରେ ଜବାବ୍ ଦେଲେ ।

ତା'ପରେ ଆଉ କିଛି ପ୍ରଶ୍ନ ନାହିଁ । ଭଦ୍ରମହିଳା ବେଶ୍ ସମାହିତ ଭାବରେ ବସି ରହିଲେ, ଯେପରି ତାଙ୍କର ସବୁ ସମସ୍ୟାର ସମାଧାନ ହେଇଯାଇଛି । କିନ୍ତୁ ଶିବଶେଖରଙ୍କର ଅସ୍ୱସ୍ତି ବଢ଼ିବାକୁ ଲାଗିଲା । ସେ' ଟିକିଏ ଇତସ୍ତତଃ ହୋଇ କହିଲେ, ''କିନ୍ତୁ ମେଲ୍ ତ ଏଠି...''

''ରହେ ନାହିଁ—ଏୟା କହୁଛନ୍ତି ତ ?'' ଆଗନ୍ତୁକା ସାମାନ୍ୟ ବିରକ୍ତ ମିଶା ସ୍ୱରରେ ବାକ୍ୟଟି ପୂରଣ କଲେ ତତ୍‌କ୍ଷଣାତ୍ ।

''ଆଜ୍ଞା—ଏଠି କେବଳ ପ୍ୟାସେଞ୍ଜର୍ ଟ୍ରେନ୍ ରୁହେ ।''

ତା'ପରେ ପୁଣି ଥରେ ସେଇ ଅସହ୍ୟ ନୀରବତା । ଶିବଶେଖର ଆଗନ୍ତୁକାଙ୍କର ଆସିବାର କାରଣ ସଂପର୍କରେ ଆକାଶ ପାତାଳ ଭାବିବାକୁ ଆରମ୍ଭ କରିଛନ୍ତି । କିନ୍ତୁ କୌଣସି କାରଣ ଖୋଜି ପାଇବାକୁ ସେ ସମ୍ପୂର୍ଣ୍ଣ ଅସମର୍ଥ ।

ଭଦ୍ରମହିଳାଙ୍କୁ ଦେଖିଲେ ମନେହୁଏ ସେ ଶିକ୍ଷିତା ଏବଂ କୌଣସି ଉଚ୍ଚ ମଧ୍ୟବିତ୍ତ ଘରର ସନ୍ତାନ ପରି । କିନ୍ତୁ ଏତେ ରାତିରେ ଏଇ କ୍ଷୁଦ୍ର ମଧୁପରୁ ଷ୍ଟେସନ୍‌କୁ ଏଇ ଭଦ୍ରମହିଳା କାହିଁକି ବା' ଆସିଲେ ଓ କିପରି ବା ଆସିଲେ ତାହା ଶିବଶେଖରଙ୍କ ପକ୍ଷରେ ଏକ ଦୁଃସାଧ୍ୟ ରହସ୍ୟ ପରି ଆସି ଠିଆ ହେଲା । ହଠାତ୍ ଶିବଶେଖରଙ୍କର ମନ ଭିତରେ ଗୋଟାଏ ଧାରଣା ଧୀରେ ଧୀରେ ସଞ୍ଚାରିତ ହେଲା—ଭଦ୍ରମହିଳା ପାଗଳ ନୁହନ୍ତି ତ ? ଏପରି ବହୁ ଶିକ୍ଷିତା ପାଗଳ ବି କେବେ କେମିତି ଆଖିରେ ପଡ଼ନ୍ତି ଯେଉଁମାନଙ୍କର ବେଶଭୂଷା ଚାଲିଚଳଣ ବା' କଥାବାର୍ତ୍ତା ଦେଖି ଆଦୌ ଠଉରେଇ ପାରିବା ସମ୍ଭବପର ନୁହଁ ।

ଭଦ୍ରମହିଳାଙ୍କର ପ୍ରଶ୍ନରେ ଶିବଶେଖର ପ୍ରକୃତିସ୍ଥ ହେଲେ ।

''ଦେଖନ୍ତୁ ଷ୍ଟେସନ୍ ମାଷ୍ଟରବାବୁ, ମୁଁ ଆପଣଙ୍କ ପାଖରେ ଗୋଟିଏ ସାହାଯ୍ୟ ଭିକ୍ଷା କରିବାକୁ ଆସିଛି ?''

''କୁହନ୍ତୁ, ମୁଁ ଆପଣଙ୍କ ପାଇଁ କ'ଣ କରିପାରେ ?'' ବିନୟୀ ଶିବଶେଖର ଉତ୍ତର ଦେଲେ ।

''ମୁଁ ଖୁବ୍ ଗୋଟିଏ ଜରୁରୀ କାମରେ ଆସିଛି – ମତେ ଆଜି ଏଇ ମେଲ୍ ଟ୍ରେନ୍‌ରେ ଯିବାକୁ ପଡ଼ିବ ।''

ଶିବଶେଖର ଗୋଟାଏ ଶୁଷ୍କ ହସ ହସି କହିଲେ—

''ଦେଖନ୍ତୁ—ତା' କ'ଣ କେବେ ସମ୍ଭବ ହୋଇପାରେ ?''

''ହଁ ସମ୍ଭବ—ଆପଣ ଯଦି ଇଚ୍ଛା କରନ୍ତି ସମ୍ଭବ ।''

ଭଦ୍ରମହିଳାଙ୍କର କଣ୍ଠସ୍ୱର କୁହେ ସେ' ବେଶ୍ ଦୃଢ଼ ଓ ନିଶ୍ଚିତ ।

ଶିବଶେଖର କେବଳ ପଚାରିଲା·ଆଖିରେ ଚାହିଁ ରହିଲେ ।

''ସିଗ୍‌ନାଲ୍‌ର ନୀଳ ଆଲୋକଟାକୁ ଲାଲ୍ କରିବା ତ ଆପଣଙ୍କ ହାତର କଥା ।''

ଏକ ବିଷର୍ଣ୍ଣ ହସ ହସିଲେ ଶିବଶେଖର ।

''ଦେଖନ୍ତୁ ଆପଣ ଭୁଲ୍ ବୁଝୁଛନ୍ତି—ମୁଁ ନିୟମର ଚାକର—ନିୟମର ବାହାରେ ନୀଳ ସଙ୍କେତ ଯଦି ଲାଲ୍ ହୁଏ ତାହା ହେଲେ ମୋର ଚାକିରିରୁ ବାହାରିଯିବା ରାସ୍ତାରେ ନୀଳ ସଙ୍କେତ ଜଳିଯିବ ।'' ଶେଷ କେଇପଦ କଥାରେ ସାମାନ୍ୟ ଅନିଚ୍ଛାକୃତ ଶ୍ଳେଷ ଥିଲା ଶିବଶେଖରଙ୍କର । ଭଦ୍ରମହିଳାଙ୍କୁ ପାଗଳ ବୋଲି ଭାବିବାର ପରିସ୍ଥିତି ଆଉ ନଥିଲା, ସେ' ଭାବୁଥିଲେ ଯେପରି ଏଇ ମଧ୍ୟରାତ୍ରିର ବାୟୁମଣ୍ଡଳ ଧୀରେ ଧୀରେ କୌଣସି ଗଭୀର ଷଡ଼ଯନ୍ତ୍ର ବା' ରହସ୍ୟ ଆଡ଼କୁ ଗତି କରି ଚାଲିଛି ।

ତା'ପରେ କିନ୍ତୁ ଭଦ୍ରମହିଳା ହଠାତ୍ କିଛି ସମୟ ପାଇଁ ନୀରବ ହେଇଗଲେ । ଆଗନ୍ତୁକାଙ୍କର ମୁହଁର ଦୀପ୍ତି ଯେପରି ହଠାତ୍ କୌଣସି ଏକ କରୁଣ ବେଦନାରେ ଦ୍ରବୀଭୂତ ହେଇ ଆସିଲା । ଆଗନ୍ତୁକା ପୁଣି କହିବାକୁ ଆରମ୍ଭ କଲେ । ତାଙ୍କର କଣ୍ଠସ୍ୱରରେ ଫୁଟି ଉଠୁଥିଲା ଏକ ଅଦ୍ଭୁତ କରୁଣ କାକୁତି, ଯେପରି ସେ' କୌଣସି ଏକ ବିସ୍ମରଣର ଅମୁହାଁ କବର ଭିତରୁ କଥା କହୁଛନ୍ତି ।

''ଦେଖନ୍ତୁ ମାଷ୍ଟର୍‌ବାବୁ, ମୁଁ ମୋର ଜଣେ ଅନ୍ତରଙ୍ଗ ବାନ୍ଧବୀଙ୍କୁ ସାହାଯ୍ୟ କରିବାକୁ ଆସିଛି ।''

''କିନ୍ତୁ ଠିକ୍ ଏଇ ଷ୍ଟେସନ୍‌ରୁ ମେଲ୍ ଧରିଲେ ଆପଣ ଯେ' କିପରି ସାହାଯ୍ୟ କରିପାରିବେ, ମୁଁ ଠିକ୍ ବୁଝିପାରୁ ନାହିଁ ?'' ଶିବଶେଖର ଯଥେଷ୍ଟ ସମ୍ଭ୍ରମର ସହିତ ପ୍ରଶ୍ନ କଲେ ।

''ହଁ—କେବଳ ଏଇ ଷ୍ଟେସନ୍‌ରୁ ଓ ଆଜିର ମେଲ୍ ଧରିଲେ ମୁଁ ସାହାଯ୍ୟ କରି ପାରିବି । ଏଇ ମେଲ୍‌ରେ ଜଣେ ଲୋକ ମୋର ବାନ୍ଧବୀଙ୍କର ସଦ୍ୟଜାତ ଶିଶୁକୁ ନେଇ ଯାଉଛି କୌଣସି ଏକ ଅଜ୍ଞାତ ଅନାଥାଶ୍ରମକୁ । କିନ୍ତୁ କାହିଁକି ? ମନେ ହେଉଥିଲା ଯେପରି ସେ' ସ୍ୱଗତୋକ୍ତି କରୁଛନ୍ତି—ହେଲା ଅବା ମୋର ବାନ୍ଧବୀ ସାମାଜିକ ନିୟମ ଅନୁସାରେ ବିବାହ କରି ନ୍‌ଥିଲେ—ସ୍ୱୀକାର କରାଯାଉ ସେ' ଶିଶୁ ଆମର ପ୍ରଚଳିତ ସମାଜର ଆଇନ୍‌ରେ ଅବୈଧ ଶିଶୁ । କିନ୍ତୁ ମାଷ୍ଟରବାବୁ ଶେଷ ପର୍ଯ୍ୟନ୍ତ ସନ୍ତାନ ତ ସନ୍ତାନ । ତା'ର ଜଣେ ଜନ୍ମଦାତ୍ରୀ ଜନନୀ ଅଛି ଏ'ଟା ତ ସତ୍ୟ । ଗୋଟାଏ ମେରୁଦଣ୍ଡହୀନ ଭୀରୁ ପିତା ହୁଏତ ସେ ଶିଶୁର ପିତୃତ୍ୱକୁ ଅସ୍ୱୀକାର କରିପାରେ; କିନ୍ତୁ ଜନନୀ ତ ତା ଅସ୍ୱୀକାର କରିବା ସମ୍ଭବ ନୁହଁ ।''

ଶିବଶେଖର କେବଳ ସ୍ଥାଣୁ ହୋଇ ଶୁଣି ଯାଉଥିଲେ—ସେ' ଯେପରି ଶୁଣୁଛନ୍ତି କୌଣସି ଏକ ପ୍ରେମ ଉପନ୍ୟାସର ଅନ୍ତିମ ଅଧ୍ୟାୟ ।

ସେ' କହିଚାଲିଥିଲେ,— ''ଆଉ ସେଇ ତଥାକଥିତ ଭୀରୁ ପିତା ସେଇ ସଦ୍ୟଜାତ ଶିଶୁଟିକୁ ଜଣେ ମିସନାରୀକୁ ସମର୍ପଣ କରିଦେଇ ତା'କୁ ଏଇ ମେଲ୍ ଟ୍ରେନ୍ ଧରେଇ ଦେଇଛି ବିଳାସପୁର ଜଙ୍କ୍‌ସନ୍‌ରେ । ମୋର, ନାଁ, ନାଁ, ଭୁଲ୍ କହିଲି ମୋ'ର ବାନ୍ଧବୀଙ୍କର ପ୍ରସୂତି ଶଯ୍ୟାରେ ଚେତନା ଆସିଲାବେଳକୁ ଅନେକ ଡେରି ହୋଇଯାଇଛି । ମେଲ୍ ଛାଡ଼ିବା ପୂର୍ବରୁ ବିଳାସପୁର ପହଞ୍ଚିବା ଆଉ ତାଙ୍କ ପକ୍ଷରେ ସମ୍ଭବ ହେଲାନାହିଁ..., ମାଷ୍ଟର ବାବୁ ଟିକିଏ ଦୟା କରନ୍ତୁ ନା.... ଏଇ ମେଲ୍‌ଟା ଏଇଠି ମତେ ଧରେଇ ଦେଇ ପାରିଲେ ମୁଁ ସେଇ ଶିଶୁଟିକୁ ନିଶ୍ଚୟ ଫେରେଇ ଆଣିପାରିବି । କାହିଁ ବିଳାସପୁର ଆଉ କାହିଁ ମଧୁପୁର ! —ଆଉ ତା' ଛଡ଼ା ତାଙ୍କର ବାନ୍ଧବୀ ଯଦି ବିଳାସପୁର ପହଞ୍ଚି ପାରିଲେ ନାହିଁ, ତାହା ହେଲେ ଏଇ ଭଦ୍ରମହିଳା ବା' ମଧୁପୁର ପହଞ୍ଚିଲେ କେମିତି ? ଶିବଶେଖରଙ୍କର ସମସ୍ତ ଭାବନା ଯେପରି ଗୋଟାଏ ଅଦୁଆ ସୂତାର ବଣ୍ଡଲ୍ ପରି ଗଣ୍ଡଗୋଳ ହେଇ ଯାଉଥାଏ ।

ଗାଡ଼ିର ଘଣ୍ଟି ଶବ୍ଦରେ ଶିବଶେଖର ଚମକି ପଡ଼ି ଘଣ୍ଟାକୁ ଚାହିଁଲେ, ଗୋଟାଏ ବାର ମିନିଟ୍—ମେଲ୍ ଟ୍ରେନ୍‌ର ଶବ୍ଦ ଶୁଣାଯାଉଛି କେନାଲ୍ ପୋଲ ଉପରେ । ଆଉ ମାତ୍ର ତିନିମିନିଟ୍ ସମୟ ପରେ ମେଲ୍ ଆଖିପିଛୁଳାକେ ଆସି ଉଭେଇ ଯିବ, ଆଉ ଶିବଶେଖର ମଧ ଏକ ଅପ୍ରୀତିକର ଓ ଅଶ୍ୱସ୍ତିକର ପରିସ୍ଥିତିରୁ ରକ୍ଷା ପାଇଯିବେ ।

ଘରୁ ବାହାରିବା ପୂର୍ବରୁ ଭଦ୍ରମହିଳାଙ୍କୁ ଆଉ କିଛି କହିବାର ପ୍ରୟୋଜନ ନଥିଲା । ଟ୍ରେନ୍ ଆସିବାର ଜରୁରୀ ପରିସ୍ଥିତି ହେତୁ ଶିଷ୍ଟାଚାର ଜନିତ କିଛି ଗୋଟାଏ କହିବାର କଥାରୁ ମୁକ୍ତି ପାଇ ତୁରନ୍ତ ଘରର କବାଟ ଖୋଲି ବାହାରକୁ ଆସିଲେ ଶିବଶେଖର ।

ସିଗ୍‌ନାଲ୍ ପୋଷ୍ଟରେ ପାରମ୍ପରିକ ନୀଳ ଆଲୋକ ଜଳୁଛି ଆଉ ନିଆଁ ହୁଳା ଧରି ପଏଣ୍ଟସ୍‌ମ୍ୟାନ୍ ତା'ର ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆ ହେଇଛି । ସବୁ ଠିକ୍ ଅଛି । ସେଇ ବାଙ୍କ ପାଖରେ ମେଲ୍‌ର ଲାଇଟ୍ ଦେଖା ଗଲାଣି ଗୋଟାଏ କୃତ୍ରିମ ଚନ୍ଦ୍ର ପରି । ତୀବ୍ର ଆଲୋକରେ ବାତାବରଣର କୁହୁଡ଼ି ସବୁ ଧୀରେ ଧୀରେ ମିଳେଇ ଯାଉଛନ୍ତି ।

ହଠାତ୍ ଚମକି ପଡ଼ିଲେ ଶିବଶେଖର ।

ଠିକ୍ ଏତିକିବେଳେ ଶିବଶେଖର ଦେଖିଲେ ତାଙ୍କରି ପାଖକୁ ଲାଗି ଠିଆ ହେଇ ରହିଛନ୍ତି ସେଇ ଆଗନ୍ତୁକା ଆଉ ସେ' ଖୁବ୍ ବଡ଼ ପାଟିରେ ହସୁଛନ୍ତି । ସେ' ହସ ଏକ ବିକଟ ତାଚ୍ଛଲ୍ୟର ହସ । ସେ' ତାଚ୍ଛଲ୍ୟ ଯେପରି ଶିବଶେଖର ଓ ତାଙ୍କର ରେଲବାଇ ଆଇନ୍ ପାଇଁ ଉଦ୍ଦିଷ୍ଟ ।

''ଦେଖନ୍ତୁ ଷ୍ଟେସନ୍ ମାଷ୍ଟରବାବୁ, ଆପଣ ବି ସବୁ ଷ୍ଟେସନ୍ ମାଷ୍ଟର୍‌ଙ୍କ ପରି ଅବୁଝା ହେଲେ—କିନ୍ତୁ ଆଜି ଆଉ ମୁଁ ଆପଣ ବା ଆପଣଙ୍କର ରେଲୱେ ଆଇନ୍‌ର ଦୟା ଉପରେ ନିର୍ଭର କରିବାକୁ ଚାହେଁ ନା । ଆଜିକି ଦଶବର୍ଷ ତଳେ ମୁଁ ଥରେ କେତେ ନେହୁରା ହେଇଥିଲି—କେତେ କାନ୍ଦି କାନ୍ଦି ମୁଣ୍ଡ ପିଟିଥିଲି ଏଇ ଆପଣଙ୍କର ସେଇ ଷ୍ଟେସନ୍ ଘର ଭିତରେ—ଆଉ ଶେଷକୁ ଏଇ ଲାଇନ୍ ଉପରେ ଦୌଡ଼ି ଦୌଡ଼ି ସେ'ଦିନ ଅନେକ ଚିତ୍କାର କରିଥିଲି ''ଗାଡ଼ି ରଖ— ଗାଡ଼ି ବନ୍ଦ କର—ମୁଁ ଯିବି—ମୁଁ ଯିବି.... କିନ୍ତୁ ମେଲ୍ ଟ୍ରେନ୍ ସେ' କଥା ତ ବୁଝେନା—ସେ' ଠିକ୍ ଚାଲିଗଲା ମୋର ଅଣ୍ଟା ଉପର ଦେଇ... ।''

କିନ୍ତୁ ଆଜି ? ଭଦ୍ରମହିଳା—କେବଳ ତାଙ୍କର ଡାହାଣ ହାତର ବୃଦ୍ଧାଙ୍ଗୁଷ୍ଠିଟିକୁ ଉପରକୁ ଉତ୍ତୋଳିତ କରି ଏକ ବେପରୱା ଭାବର ମୁଦ୍ରା ପ୍ରକାଶ କଲେ ।

ଶିବଶେଖର ମୁହୂର୍ତ୍ତିକ ପାଇଁ ଦେଖିଲେ ଆଗନ୍ତୁକା କଥା କହି କହି ତାଙ୍କର ମୁହଁରେ ଅନେକ ରକ୍ତ ଜମିଯାଇଛି, ଆଉ ସେ' ଠିଆ ହୋଇଛନ୍ତି ଏକ ଦାନବୀର ଭୀମ ପ୍ରତିଜ୍ଞା ନେଇ । ଆଉ ଠିକ୍ ଶିବଶେଖରଙ୍କର ଦୁଇ ଆଖି ସାମ୍ନାରେ ଆଗନ୍ତୁକାର ଦୁଇ ହାତ ପ୍ରସାରିତ ହେବାକୁ ଆରମ୍ଭ କରିଛି ଶୂନ୍ୟ ଆକାଶ ଭିତରକୁ । ଏହା କ'ଣ ସମ୍ଭବ ? ମଣିଷର ଦୁଇଟା ହାତ କ'ଣ ଯାଇପାରେ ଏତେ ଉପରକୁ ? ଶିବଶେଖର ଚାହିଁ ରହିଛନ୍ତି ହତବାକ୍ ହୋଇ ଆଉ ତାଙ୍କରି ଆଗରେ ଏକ ନିଶ୍ଚିତ ପ୍ରତିଜ୍ଞାରେ ଉଠି ଚାଲିଛି ଆଗନ୍ତୁକାଙ୍କର ଦୁଇଟା ହାତ ଚାଳିଶ ଫୁଟ୍ ଉଚ୍ଚରେ ଥିବା ସିଗ୍‌ନାଲ୍ ପୋଷ୍ଟ ଉପରକୁ । ତା'ପରେ ସେଇ ଦୁଇଟା ଅମାନୁଷିକ ଦୀର୍ଘ ବିରାଟ ହାତର ଗୋଟାଏ ଧକ୍‌କାରେ ସିଗ୍‌ନାଲ୍‌ଟା ଉଠିଗଲା ଉପରକୁ, ଆଉ ଆଲୋକର ନୀଳ ସଙ୍କେତ ଲାଲ୍ ହୋଇଗଲା ତଡ଼ିତ୍ ବେଗରେ । ଶିବଶେଖର ବିସ୍ମୟରେ ଓ ଆତଙ୍କରେ ତାଙ୍କର ଦୃଷ୍ଟି

ଫେରେଇ ଆଣିଲେ ଆଗନ୍ତୁକାଙ୍କ ଉପରକୁ । କିନ୍ତୁ କାହାନ୍ତି ଆଗନ୍ତୁକା ? ତାଙ୍କ ଆଗରେ ଯେପରି ଠିଆ ହେଇ ରହିଛି ଗୋଟାଏ କାଚର ମଣିଷ—ମଣିଷ ତ ନୁହଁ ଖାଲି ଗୋଟାଏ ଫ୍ରେମ୍—ଗୋଟାଏ କିଛି ଆକୃତି ଯାହା ଭିତର ଦେଇ ଆରପଟର ସବୁ କିଛି ସ୍ପଷ୍ଟ ଦେଖିହୁଏ ।

ଶିବଶେଖର ସମ୍ପୂର୍ଣ୍ଣ ଚଳତ୍ ଶକ୍ତିହୀନ । ତାଙ୍କରି ଆଖି ସାମ୍ନାରେ ଆର୍ତ୍ତ ଚିତ୍କାର କରି ମେଲ୍ ଟ୍ରେନ୍‌ଟା ଘୁଷୁରି ଘୁଷୁରି ଆସି ଠିଆ ହେଲା ଗୋଟାଏ ଭଗ୍ନ ଜାନୁ ଦୈତ୍ୟ ପରି । ଯେପରି ସେ ତା'ର ଏଇ ବ୍ୟାହତ ଯାତ୍ରାରେ ଅସମ୍ଭବ ବିରକ୍ତ । ତା'ର ଚିମ୍‌ନି ଦେଇ ଗୁଡ଼ାଏ କଳା କଳା ହୁଗୁଳା ଧୂଆଁ ଆକାଶ ଆଡ଼କୁ ଲମ୍ଫ ଦେଇ ଉଠିଲା ।

ମାତ୍ର ଅଧମିନିଟିଏ ସମୟ । ତା'ପରେ ପୁଣି ଥରେ ଲାଲ୍ ଆଲୋକ ନୀଳ ହେଲା, ଆଉ ମେଲ୍ ଟ୍ରେନ୍ ସଶବ୍ଦରେ ନିଶ୍ୱାସ ମାରି ଚାଲିବାକୁ ଆରମ୍ଭ କଲା । ପ୍ରଥମେ ଧୀରେ ଧୀରେ ଓ ତା'ପରେ ତା'ର ସ୍ୱାଭାବିକ ଗତିରେ ।

ଠିକ୍ ସେଇ ଜାଗାରେ ସ୍ଥାଣୁ ହୋଇ ଠିଆ ହେଇ ରହିଛନ୍ତି ଶିବଶେଖର । ମେଲ୍ ଟ୍ରେନ୍‌ର ଗାର୍ଡ଼ଭ୍ୟାନ୍‌ର ପଛରେ ଥିବା ଲାଲ୍ ଆଲୋକ ଅଦୃଶ୍ୟ ହେଇ ଗଲାଣି, ଆଉ ଅଦୃଶ୍ୟ ମଧ ହେଇଗଲାଣି ସେଇ ରହସ୍ୟମୟୀ ଆଗନ୍ତୁକା । ଆଉ ଥରେ ତାଙ୍କର କଳ୍ପନାରେ ସେ' ଆଗନ୍ତୁକା ଠିଆ ହେଇଥିବା ଜାଗାରୁ ସିଗ୍‌ନାଲ୍ ପୋଷ୍ଟକୁ ଆଖି ପହଁରେଇ ନେଲେ—ନା, ସେ ଦୁଇଟା ଅବିଶ୍ୱାସ୍ୟ ହାତ ମଧ ଆଉ ଦେଖା ଯାଉନାହିଁ ।

କେତେବେଳେକେ ପଏଣ୍ଟସ୍‌ମ୍ୟାନ୍‌ର ଡାକରେ ଶିବଶେଖରଙ୍କର ଚୈତନ୍ୟ ଫେରିଲା । ଶିବଶେଖରଙ୍କର ଏ ଅବସ୍ଥା ଦେଖି ପଏଣ୍ଟସ୍‌ମ୍ୟାନ୍‌ଟି କ୍ଷମା ମାଗିବା ଭଙ୍ଗିରେ କହିଲା– ''ମୋର ଭୁଲ୍ ହୋଇଯାଇଛି ଆଜ୍ଞା,—ଡିସେମ୍ବର ପନ୍ଦର ତାରିଖ— ମୋର ଆପଣଙ୍କୁ ଆଗରୁ ସାବଧାନ କରିଦବାର ଥିଲା । ଆଜିକି ଆଠ ନଅ ବର୍ଷ ଧରି ପ୍ରତି ଡିସେମ୍ବର ପନ୍ଦର ତାରିଖ ଦିନ ସେଇ ମାଇକିନିଆଟା ଆସି ମେଲ୍ ଟ୍ରେନ୍ ଅଟକାଇବାକୁ ଜିଦ୍ କରେ ଆଉ ସବୁଥର ତା' ମନକୁ ସିଗ୍‌ନାଲ୍ ଉପରକୁ ଉଠିଯାଇ ମେଲ୍ ଟ୍ରେନ୍‌କୁ ରହିବାକୁ ପଡ଼େ ଏଇଠି ।''

''ତୁ କ'ଣ ସେ ସ୍ତ୍ରୀ ଲୋକକୁ ଦେଖିଚୁ ?'' ଶିବଶେଖର ପଚାରିଲେ ।

''ଫି ବର୍ଷ ବାବୁ ଫି ବର୍ଷ—ଗୋରୀ ହେଇ ବାଇଶ ତେଇଶ ବର୍ଷର ମାଇକିନିଆଟାଏ ତ ?'' ପଏଣ୍ଟସ୍‌ମ୍ୟାନ୍ ଅତି ସାଧାରଣ ଭାବରେ କହିଲା ।

ଶିବଶେଖରଙ୍କ ଆଗରେ ସମସ୍ତ କଥା ସୂର୍ଯ୍ୟାଲୋକ ପରି ସ୍ପଷ୍ଟ ହୋଇଗଲା । ଅନେକ ସମୟ ଧରି ଶିବଶେଖର ନିଶ୍ଚଳ ହେଇ ତାଙ୍କର ଚଉକୀରେ ବସି ରହି

ଗୋଟାଏ ଫାଙ୍କା ଦୃଷ୍ଟିରେ ପ୍ଲାଟଫର୍ମଟାକୁ ଚାହିଁ ରହିଥିଲେ । ସେ ବୋଧହୁଏ ଦେଖୁଥିଲେ ଜଣେ ଅଶରୀରୀ ସନ୍ତାନବତ୍ସଳା ଜନନୀ ମେଲ୍ ଟ୍ରେନ୍‌ର ଡବା ପରେ ଡବା ଡେଇଁ ଚାଲିଛି ତା'ର ସନ୍ତାନକୁ ଖୋଜିବାର ଅସ୍ଥିର ଉତ୍ତେଜନାରେ । ତା'ର କାମ ଆହୁରି ଅନେକ ବାକୀ । ସେ' କୃତ ସଂକଳ୍ପ, ସେ' ତାର ସନ୍ତାନକୁ ଆବିଷ୍କାର କରିବ ହିଁ କରିବ, ହୁଏତ ଅନ୍ୟ ଏକ କେଉଁ ଗ୍ରହରେ । ସେ' ଖୋଜି ଚାଲିଛି । ତା'ର କାମ ଅନେକ ବାକୀ ଅଛି । ସେ' ତାର ସନ୍ତାନକୁ ଦିନେ ନା ଦିନେ ହୁଏତ ଆବିଷ୍କାର କରିବ ।

କେତେବେଳେକେ ପଏଣ୍ଟସ୍‌ମ୍ୟାନ୍ ଆସି କହିଲା, ''ବାବୁ, ଶୋଇବେ ଯାଆନ୍ତୁ, ସେଗୁଡ଼ାକ ଆଉ ମୁଣ୍ଡରେ ପୂରାନ୍ତୁ ନାହିଁ—ସେଇଟା ଏଇ ଲାଇନ୍ ଉପରେ ଦିଗର ହେଇ କଟି ଯାଇଥିଲା, ଆଜିକି ଦଶ କି ଏଗାର ବର୍ଷ ହବ ।''

ଶିବଶେଖର ପଚାରିଲେ, ''କ'ଣ ଆତ୍ମହତ୍ୟା ?''

''ଆତ୍ମହତ୍ୟା ନୁହିଁ ତ ଆଉ କ'ଣ ? ମେଲ୍ ଆସୁଚି ଆଉ ଲାଇନ୍ ଉପରେ ଆଲୁଅକୁ ମୁହିଁ କରି ଠିଆ ହେଇ ସିଏ କ'ଣ ଗୁଡ଼ାଏ ଚିତ୍କାର କରି ଚାଲିଛି—ଖାଲି କ'ଣ ମୁଁ, ସମସ୍ତେ ଦେଖୁଛନ୍ତି ।''

ଶିବଶେଖର ପଏଣ୍ଟସ୍‌ମ୍ୟାନ୍ ମୁହଁକୁ ଚାହିଁ ରହିଥିଲେ କେବଳ ।



# ଜନ ଓ ଜନତା

ବେଶ୍ ରାତି ହୋଇଗଲାଣି । ବାଲେଶ୍ୱରରୁ ଗାଡ଼ି ନେଇ ଫେରୁଥିଲି । କିନ୍ତୁ ଭଦ୍ରକ ପହଞ୍ଚିବାର ଅଳ୍ପ ରାସ୍ତା ପୂର୍ବରୁ ଗୋଟାଏ ପୋଲ ତିଆରି ହେବା ପାଇଁ ରାସ୍ତାଟିକୁ ମଝିରୁ କାଟି ଦିଆଯାଇଛି ଏବଂ ଗାଡ଼ି ସବୁ ଯିବା ଆସିବା କରିବା ପାଇଁ ଗୋଟିଏ ଡାଇଭରସନ୍ ରାସ୍ତା ତିଆରି କରାଯାଇଛି । ସେ ଜାଗାରେ ପହଞ୍ଚିବା ପୂର୍ବରୁ ପ୍ରାୟ ଦଶଟି ଗାଡ଼ି ପଛକୁ ପଛ ଲାଗି ଅଟକି ରହିଛି । ଅଗତ୍ୟା ଗାଡ଼ି ବନ୍ଦ କରି ଅପେକ୍ଷା କଲି । କିନ୍ତୁ ପନ୍ଦର ମିନିଟ୍ ଖଣ୍ଡେ ଅପେକ୍ଷା କରିସାରିବା ପରେ ଯାହା ସାଧାରଣତଃ ହୋଇଥାଏ ଗାଡ଼ିରେ ଅପେକ୍ଷା କରିବା ପାଇଁ ଆଉ ଧୈର୍ଯ୍ୟ ରହିଲା ନାହିଁ । ରାତି ଅନେକ ହେଲାଣି । ପିଲାମାନେ ସମସ୍ତେ ଗାଡ଼ିର ପଛ ସିଟ୍‌ରେ ଘୁମେଇ ପଡ଼ିଲେଣି ଅନେକ ବେଳୁ । ମୁଁ ସେମାନଙ୍କୁ ଗାଡ଼ିରେ ଛାଡ଼ି ଅଟକବନ୍ଦୀ ହେବାର କାରଣ ଅନୁସନ୍ଧାନ କରିବାକୁ ଆଗକୁ ଗଲି ।

ସନ୍ଧ୍ୟାବେଳୁ ଝିପି ଝିପି ବର୍ଷା ଲାଗି ରହିଛି କିନ୍ତୁ ମାତ୍ର ପାଞ୍ଚ ଦଶ ମିନିଟ୍ ହେଲା ବର୍ଷା ଟିକିଏ ଛାଡ଼ିଯାଇଛି । ରାସ୍ତା କଟା ହୋଇଥିବା ସ୍ଥାନରେ ପହଞ୍ଚି ଯିବା ପରେ କାରଣ ଦିବାଲୋକ ପରି ସ୍ପଷ୍ଟ ହୋଇ ଉଠିଲା । ଗୋଟିଏ ମର୍ସିଡିଜ୍ ହେଭି ଟ୍ରକ୍ ଡାଇଭରସନ୍ ରାସ୍ତା ମଝିରେ ଅଟକି ଯାଇଛି ଓ ଉଠାଣି ଉଠିବାର ନିଷ୍ଫଳ ଆକ୍ରୋଶରେ ଗର୍ଜ୍ଜନ କରି ଉଠୁଛି ବାରମ୍ବାର । ଥରକୁ ଥର ଚକ ନରମ ମାଟିରେ ଦବି ଯାଉଛି ଆହୁରି ତଳକୁ ଓ ଉପରକୁ ଉଠିବାର ଆଶା କ୍ଷୀଣରୁ କ୍ଷୀଣତର ହେଇ ଯାଉଛି । ଟ୍ରକ୍‌ଟିରେ ପର୍ବତ ଆକାରରେ ମାଲ୍ ବୋଝେଇ ହେଇଛି ଏବଂ ତା' ଉପରେ ଗୋଟିଏ ପ୍ରକାଣ୍ଡ ଟାର୍ପୁଲିନ୍ ଘୋଡ଼େଇ ଦିଆଯିବାରୁ ଦେଖାଯାଉଛି ଗୋଟାଏ ହାତୀ ପରି । ମାଲ୍‌ଗୁଡ଼ିକର ଉଚ୍ଚତା ଟ୍ରକର୍ ଡ୍ରାଇଭର୍ କ୍ୟାବିନ୍ ଉପରକୁ ପ୍ରାୟ ଛଅ ଫୁଟ୍ ଉପରକୁ ଉଠିଛି । ବୋଝେଇ ଟ୍ରକ୍, ଡାଇଭରସନ୍‌ର ନରମ ଚିକିଟା ମାଟି ଭିତରେ ଧସି ଯାଇଛି । ଚକ ଯେତିକି ଜୋର୍‌ରେ ବୁଲୁଚି ଚକ ଦବି ଯାଉଛି ଆହୁରି ତଳକୁ ତଳକୁ ।

ଏହି ଟ୍ରକ୍‌ଟିର ଏପରି ଏକ ପରିସ୍ଥିତିରୁ ଉଦ୍ଧାର ପାଇବାର ଚେଷ୍ଟା ନିଶ୍ଚୟ ଅନେକ ସମୟ ଧରି ଚାଲିବଣି । କାରଣ ଇତି ମଧ୍ୟରେ ରାସ୍ତାର ଅପର ପଟରେ ଅନ୍ୟୂନ ଚାଳିଶ ଖଣ୍ଡ ଦ୍ରୁତଗାମୀ ଗାଡ଼ି ଚଳତ୍‌ଶକ୍ତିହୀନ ଅବସ୍ଥାରେ ପଡ଼ି ରହି ସେହି ଦୁର୍ଭାଗା

ଟ୍ରକ୍‌ଟିକୁ ସହାନୁଭୂତି ଦେଖାଇବା ଦୂରେ ଥାଉ ତାକୁ ଅଭିଶାପ ଦେଉଛନ୍ତି । ପାଖ ଗାଁର ପ୍ରାୟ ଚାଳିଶ ଜଣ ଲୋକ ମଧ୍ୟ ଲୁଙ୍ଗି ଗାମୁଛା ପିନ୍ଧି ଏପରି ଏକ ଦୁର୍ଭାଗ୍ୟଜନକ ଅଥଚ ଚକ୍ଷୁରୋଚକ ନାଟକ ଦେଖିବା ପାଇଁ ରାସ୍ତା ଉପରେ ଆସର ଜମେଇ ସାରିଲେଣି । ଟ୍ରକ୍‌ର ସାମ୍‌ନା ଆଲୁଅର ପ୍ରଖର ଦ୍ୟୁତିରେ ଆରପଟର ପ୍ରତୀକ୍ଷମାଣ ଗାଡ଼ିଗୁଡ଼ିକ ସ୍ପଷ୍ଟ ଦେଖି ହଉଛି । ଗର୍ଜ୍ଜନ କରି ଟ୍ରକ୍ ବାରମ୍ବାର ଆଗକୁ ଧସେଇ ଯାଉଛି, ପୁଣି ପର ମୁହୂର୍ତ୍ତରେ ଖସଡ଼ା ମାଟି ଭିତରେ ଚକ ପଶିଯାଉଥିବାରୁ ଏକ ଆହତ ବାଘୁଣୀ ପରି ଆର୍ତ୍ତନାଦ କରି ତା'ର ଆଗ ଗୋଡ଼ ଗୋଟେଇ ଆଣି ସ୍ଥାଣୁ ପରି ପଡ଼ି ରହୁଛି । ମୁଁ ସ୍ପଷ୍ଟ ବୁଝିପାରିଲି ଯେ, ଏ ଟ୍ରକ୍ ତା'ର ନିଜ ଶକ୍ତିରେ ଉଠିବା ଆଉ ସମ୍ଭବପର ନୁହଁ । ଏକଥା ଯେ କେବଳ ମୁଁ ବୁଝି ପାରୁଥିଲି ତା ନୁହଁ ମୋ ପରି ଯେତେ ଯେତେ ଅଭିଜ୍ଞ ଡ୍ରାଇଭର୍‌ମାନେ ସେଠି ଥିବେ ସେମାନେ ମଧ୍ୟ ବୁଝିପାରୁଥିବେ ।

ଏଇଥର ମନେ ହେଲା ଯେପରି ଟ୍ରକ୍‌ଟି ଶେଷ ଚେଷ୍ଟା କରୁଛି । ଗାଡ଼ି ଚାଲିବାର ଠିକ୍ ଅବ୍ୟବହିତ ପୂର୍ବରୁ ଏକ ବିକଟ ଗର୍ଜ୍ଜନ ସେଇ ନିସ୍ତବ୍ଧ ରାତିରେ ଅନେକ ଦୂରକୁ ଶୁଣାଯାଉଥିବ । ତା'ପରେ ଭୀମ ବିକ୍ରମରେ ଟ୍ରକ୍‌ର ଆଗ ଚକ କୁଦା ମାରୁଛି ଆଗକୁ କିନ୍ତୁ ହାୟ ଦୁଇଟି ପଛ ଚକ ଟ୍ରକ୍‌ର ସମସ୍ତ ଚେଷ୍ଟାକୁ ଯେପରି ଉପହାସ କରି ଫୁଟେ ଗହୀର କାଦୁଅ ଭିତରେ ତୀର ବେଗରେ ବୁଲି ଚାଲିଛି ତା'ର ନିଜର ପରିଧି ଚାରିପଟେ । ଟ୍ରକ୍‌ର ଗର୍ଜ୍ଜନ ପ୍ରତି ମୁହୂର୍ତ୍ତରେ ବଢ଼ିଚାଲିଛି । ଇଞ୍ଜିନ୍ ଭିତରୁ ପ୍ରଚଣ୍ଡ ଧୂଆଁ ବାହାରି ସେ' ସମସ୍ତ ସ୍ଥାନଟିକୁ ଧୂମାୟିତ କରି ସାରିଲାଣି ଏବଂ ତା'ପରେ ହଠାତ୍ ସମସ୍ତ ଶବ୍ଦ ତରଙ୍ଗ ଯେପରି ହଠାତ୍ ବନ୍ଦ ହୋଇଗଲା । ଚତୁର୍ଦ୍ଦିଗରେ ଏକ ଅଖଣ୍ଡ ନୀରବତା । ତା'ରି ଭିତରୁ କିଏ ଜଣେ ହଠାତ୍ ଚିତ୍କାର କରି ଉଠିଲା । ''ଗଲା, ଗଲା କ୍ଲଚ୍ ପ୍ଲେଟ୍‌ଟା ଜଳିଗଲା'' ଏବଂ ଯେପରି ତାରି କଥାକୁ ସମର୍ଥନ ଜଣେଇ ଇଞ୍ଜିନ୍ ଭିତରୁ ପ୍ରଖର ଧୂମ୍ର ସ୍ରୋତ ଟ୍ରକ୍‌ଟିକୁ କିଛି ସମୟ ପାଇଁ ପ୍ରାୟ ଆଚ୍ଛନ୍ନ କରିଦେଲା ।

ଦେଖଣାହାରୀଙ୍କ ଭିତରେ ହତାଶାର ଏକ ମୃଦୁ ଗୁଞ୍ଜରଣ ଖେଳିଗଲା । ନାଟକର ନାୟକ ତା'ର ଶେଷ ଓ ସର୍ବସ୍ୱ ସମ୍ବଳ ଦେଇ ବାଜି ଲଗେଇଥିବା ଘୋଡ଼ା ଯେମିତି ଜିତିବାର ଠିକ୍ ଅବ୍ୟବହିତ ପୂର୍ବରୁ ଝୁଣ୍ଟି ଯାଇ ତଳେ ପଡ଼ିଗଲା । ଅପେକ୍ଷା କରୁଥିବା ଗାଡ଼ିଗୁଡ଼ିକର ଅଧିକାରୀମାନେ ଆସ୍ତେ ଆସ୍ତେ ମନ୍ଥର ଗତିରେ ପଛକୁ ଫେରିଲେ । ମୁଁ ମଧ୍ୟ ଫେରିଲି । ଆଉ ନୁହଁ । ଗାଡ଼ିର ଆରୋହୀମାନଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ ସକାଳ ପର୍ଯ୍ୟନ୍ତ ସେଠି ଅପେକ୍ଷା କରିବାକୁ । ବର୍ଷାଦିନେ ଏ ଦେଶର ରାସ୍ତାରେ, ବିଶେଷ କରି ନୂଆ ମାଟି ପଡ଼ିଥିବା ଡାଇଭର୍‌ସନ୍ ରୋଡ଼ରେ କାହାର ବା ଗାଡ଼ି ଥରେ ଅଧେ ଚକ ଦବିଯାଇ ଅଟକି ଯାଇନାହିଁ ?''

ମୋ' ଗାଡ଼ିରେ ସମସ୍ତେ ନିଶ୍ଚିନ୍ତରେ ନିଦ୍ରା ଯାଇଛନ୍ତି । ସେମାନଙ୍କୁ ଉଠେଇ ଏ ପ୍ରକାରର ଏକ ଦୁଃସମ୍ବାଦ ଦବା ମୁଁ ଉଚିତ୍ ମନେ କଲି ନାହିଁ । ମୋ' ଗାଡ଼ିଠାରୁ ପୋଲ ଓ ପୋଲଠାରୁ ଗାଡ଼ି ପର୍ଯ୍ୟନ୍ତ ମୁଁ କେବଳ ବୁଲୁଚି ଏକ ଘୋର ଅନିଶ୍ଚିତତା ମଧ୍ୟରେ । ଜଣେ ବିଦେଶିନୀ ପଚାରୁଛି ତାଙ୍କ ଭାଷାରେ, "ଆଶା କରାଯାଉ କାଲି ସକାଳୁ କପେ ଚା' ଅନ୍ତତଃ ମିଳିବ ?" ଅନ୍ୟ ଏକ ସ୍ଥାନରେ, "ଆଚ୍ଛା, ଏଠି ପାଖରେ କୋଉଠି କିଛି ଖାଇବାକୁ ମିଳିବ ?" ଟ୍ରକ୍‌ର ଷ୍ଟିଅରିଂ ଉପରେ ହାତଦେଇ ଜଣେ ଭଦ୍ରଲୋକ ଅଧା ଘୁମେଇ ପଡ଼ି କହୁଛନ୍ତି କାହାକୁ, "ଟାର୍ପୁଲିନ୍‌ଟା ପଦାକୁ ଆଣ ସିରିଆ ! ଶୋଇପଡ଼ିବା ହେଲେ ।" "ଆଉ କିଛି ବାଟରେ ସାମ୍ନାରେ ଗୋଟିଏ ଛୋଟ ଫିଆଟ୍ ଗାଡ଼ି ଭିତରେ ବସିଥିବା ଯୁବକ ସିଗାରେଟ୍ ଲଗାଇ ପଚାରୁଛନ୍ତି, ଆମେ ବୋଧହୁଏ ସେତେବେଳେ ଦାର୍ଜିଲିଂରେ ଥିଲେ ?" ସମୟ ଏମାନଙ୍କ ପାଇଁ ଅଖଣ୍ଡ । ଅପେକ୍ଷା କରିବାର ଅବସରରେ ନବବିବାହିତ ଦମ୍ପତି ସେମାନଙ୍କର ସୁଖର ଦିନଗୁଡ଼ିକ ରୋମନ୍ଥନ କରିବାରେ ବ୍ୟସ୍ତ । ଆଉ ଜଣେ ଧୈର୍ଯ୍ୟର ଶେଷ ସୀମାରେ ପହଞ୍ଚି କହୁଛନ୍ତି, "ଏ ଟ୍ରକ୍‌ବାଲାଗୁଡ଼ାକୁ ପ୍ରସିକ୍ୟୁସନ୍ କରାଯିବା ଉଚିତ୍ ଆଉ ହାଜତ୍‌ରେ ପୂରେଇ ବେତ ମାରିବା ଉଚିତ୍ । କ'ଣ ଭାବୁଛନ୍ତି ଏମାନେ ?"

କିନ୍ତୁ ମୁଁ ଭାବୁଥିଲି ଯେ ସେମାନେ ସମସ୍ତେ ଅନ୍ଧ ହେଇ ଯାଇଛନ୍ତି ଗୋଟାଏ-ଦିଗ ପ୍ରତି । ସେଟା ହେଉଛି କଣ୍ଟ୍ରାକ୍ଟରର୍ ଦିଗଟା । ନିୟମ କହୁଚି ରାସ୍ତା କାଟିଲେ ଗୋଟାଏ ଭଲ ଧରଣର ଡାଇଭର୍‌ସନ୍ ରାସ୍ତା ଦିଆଯିବ, ଯାହା ଏ ରାସ୍ତାର ଦୈନନ୍ଦିନ ଯାନବାହନର ଓଜନ ବହନ କରିପାରିବ ଓ ସେପରି ଏକ ଡାଇଭର୍‌ସନ୍ ରାସ୍ତାକୁ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର୍ ପାଶ୍ କରିବା ପରେ ରାସ୍ତା କାଟିବାକୁ ଅନୁମତି ଦିଆଯିବ । ଭାବୁ ଭାବୁ ମୁଁ ପୁଣି ଥରେ ପୋଲ୍ ପାଖରେ ପହଞ୍ଚି ଗଲିଣି । ଏଥର ଅନ୍ୟ ଏକ ଦୃଶ୍ୟ ।

ସାମ୍ନାପଟୁ ଅନ୍ୟ ଏକ ଟ୍ରକ୍ ଆଗେଇ ଆସି ଏ ଟ୍ରକ୍‌ଟି ପାଖରେ ଠିଆ ହେଲାଣି ଏବଂ ଦୁର୍ଘଟଣାଗ୍ରସ୍ତ ଟ୍ରକ୍‌ଟିର ଡ୍ରାଇଭର୍ ତଳକୁ ଓହ୍ଲେଇ ଆସି ଦୁଇଟି ଟ୍ରକ୍‌କୁ ଖଣ୍ଡେ ତାର ଦଉଡ଼ି ଦ୍ୱାରା ବାନ୍ଧିବାକୁ ଯତ୍ପୋରନାସ୍ତି ଚେଷ୍ଟା କରୁଛି । ଡ୍ରାଇଭର୍‌ଟି ପଞ୍ଜାବୀ, ଶିଖ୍ । ବୟସ ପାଖାପାଖି ଚାଳିଶ ହେବ । ଦୁଇଟା ଟ୍ରକ୍‌ର ଆଖି ଝଲସା ଉଜ୍ଜ୍ୱଳ ଆଲୋକର ସାମ୍ନାରେ ସେ ଆଣ୍ଠୁ ମାଡ଼ି ବସି ତାର ଦଉଡ଼ିରେ ଗୋଟିଏ ମଜ୍‌ବୁତ୍ ଗଣ୍ଠି ପକାଇବାକୁ ଚେଷ୍ଟା କରିବା ଫଳରେ ତା'ର ଅର୍ଦ୍ଧ ଉଲଗ୍ନ ହାତର ମାଂସପେଶୀ ଗୁଡ଼ାକ ଫୁଲି ଉଠୁଛନ୍ତି, ପୁଣି କେତେବେଳେ ନରମି ଯାଉଛନ୍ତି ଏବଂ ସେଇ ଲୋକଟାକୁ ଏକ ଫ୍ରି ପ୍ରେକ୍ଷାଳୟର ଅନ୍ୟୁନ ଦୁଇ ଶହ ଆଖି ନିର୍ନିମେଷ ଆଖିରେ ଚାହିଁ ରହିଛନ୍ତି ।

ଦେଖାଯାଉ ଏଥର ଘୋଡ଼ାଦୌଡ଼ରେ ତା'ର ଘୋଡ଼ା ଜିତୁଛି ନା ନାହିଁ ? ଦୁଇଟା ଟ୍ରକ୍ ମଝିରେ ଆଣ୍ଠୁ ମାଡ଼ି ବସିପଡ଼ି (ଲୋକଟାର ନାଁ କ'ଣ ହେବା ଉଚିତ୍ ? ଧରିନିଆଯାଉ ଦର୍ଶନ ସିଂ) ତାର ଏକ ଟଣା ବିରତିହୀନ ନାଟକର ଏକକ ଅଭିନୟ କରି ଚାଲିଛି ନିଷ୍ଠାପର ଭାବରେ । ଚିବୁକ ତଳକୁ ଲମ୍ବି ଆସିଥିବା ବିପର୍ଯ୍ୟସ୍ତ ଦାଢ଼ିଗୁଡ଼ିକ ଅତ୍ୟନ୍ତ ବିଶୃଙ୍ଖଳ ଭାବରେ ଗଛର ଚେର ପରି ଚତୁର୍ଦ୍ଦିଗକୁ କାୟା ବିସ୍ତାର କରିଛନ୍ତି । ସେଥିରୁ କିଛି ଅଂଶ କହରା ପଡ଼ିଯାଇ ଖଣ୍ଡେ ଖଣ୍ଡେ ତମ୍ବାର ତାର ପରି ଚକ୍ ଚକ୍ କରୁଛନ୍ତି । କିନ୍ତୁ ସର୍ଦ୍ଦାରଜୀର ମୁହଁ ଉପରୁ ତାର ସ୍ୱାଭାବିକ ଔଜ୍ଜଲ୍ୟ ଲୋପ ପାଇଛି । ରାସ୍ତାର ଦୁଇ ପଟେରେ ଏତେଗୁଡ଼ାଏ ଗାଡ଼ିକୁ ଅଟକାଇ ରଖିଥିବାର ଅପରାଧରେ ତା'ର ବିବେକ ଯେପରି ତାକୁ ଥରକୁ ଥର ଭର୍ତ୍ସନା କରି ଚାଲିଛି ।

ୟା' ଭିତରେ ଜଣେ ସୁଟ୍ ଟାଇ ପିନ୍ଧା ସାହେବ ବାବୁ ଆସି ଦର୍ଶକମଣ୍ଡଳୀ ଭିତରେ ଠିଆ ହେଲେଣି । ଚେହେରା, ପୋଷାକ ସବୁଥିରେ ଜଣେ ଉଚ୍ଚପଦସ୍ଥ ଅଫିସରଙ୍କ ସଙ୍କେତ ସୁସ୍ପଷ୍ଟ । ସେ ବୋଧହୁଏ ହାଲ୍ ଆସି ଗାଡ଼ିର ଲମ୍ବା ଧାଡ଼ିର ଶେଷ ଭାଗରେ ଗାଡ଼ି ରଖି ଘଟଣା ବୁଝିବାକୁ ସେଠାରେ ଆସି ପହଞ୍ଚିଛନ୍ତି । ତାଙ୍କ ମୁହଁରେ ବିରକ୍ତି ସୁସ୍ପଷ୍ଟ । ସେ ବୋଧହୁଏ ଯାଉଛନ୍ତି ଏକ ପ୍ରାଣମୂର୍ଚ୍ଛା ଟୁର୍‌ରେ । ମାସର ଶେଷ ସପ୍ତାହ ପ୍ରାୟ ହେଇଗଲା । ରାତି ବିକାଳି ଗାଡ଼ି ନ ଚାଲିଲେ ମାସ ଶେଷରେ ଟୁର୍ ପ୍ରାପ୍ୟରେ ହୁଏତ ଭଙ୍ଗା ପଡ଼ିଯାଇ ପାରେ । ରାଜ କାର୍ଯ୍ୟରେ, ଦେଶର ଜନତା ଜନାର୍ଦ୍ଦନଙ୍କର ହିତ ଉଦ୍ଦେଶ୍ୟରେ ନିଜର ସୁଖ-ନିଦ୍ରାକୁ ଜଳାଞ୍ଜଳି ଦେଇ ସଫର୍ କରୁଥିବା ଭଦ୍ରବ୍ୟକ୍ତି ଯେ, ଅତି ମାତ୍ରାରେ ବିରକ୍ତ ହୋଇଉଠିବେ ଏଥିରେ ଆଶ୍ଚର୍ଯ୍ୟ ହବାର କ'ଣ ଅଛି ?

ଅନ୍ୟ ଟ୍ରକ୍‌ଟି ଏଥର ଟାଣିବାକୁ ଉଦ୍ୟତ ହେଲାଣି । ଦର୍ଶନ ସିଂ ତା'ର କାର୍ଯ୍ୟ ସାରି ପ୍ରଥମଥର କୌତୂହଳ ବିନୋଦନ ପାଇଁ ଠିଆ ହୋଇ ରହିଥିବା ଦର୍ଶକ ମଣ୍ଡଳୀଙ୍କୁ ଉଦ୍‌ବୋଧନ ଦେଲା । ତା'ର ଦୁଇ ହାତ ଊର୍ଦ୍ଧ୍ୱକୁ ପ୍ରସାରିତ କରି, ସେ କେବଳ କହୁଛି, ''ଆପ୍ ଲୋଗ୍ ଥୋଡ଼ା ମଦଦ୍ କିଜିୟେ–ଦଶ ଆଦ୍‌ମି ହାତ୍ ଲଗାନେ ସେ ଗାଡ଼ି ଆସାନ ସେ ନିକଲ୍ ଜାଏଗା ।'' ଦର୍ଶକ ମଣ୍ଡଳୀ ଭିତରୁ ଆଗକୁ ଠିଆ ହୋଇଥିବା ଲୋକମାନେ ପଛକୁ ଫେରିଲେ । ଜନତା ନିରୁତ୍ତର । ଝିପି ଝିପି ବର୍ଷା ହଉଛି । ଦର୍ଶନ ସିଂ ତଥାପି ଡାକୁଛି–''ହମ୍ ପରଦେଶୀ ଆଦ୍‌ମି ହେ–ଆପ ଲୋଗ୍ ଥୋଡ଼ା ମଦଦ୍ କିଜିଏ, ନେହିଁ ତୋ ରସି ଟୁଟ୍ ଯା ସକ୍‌ତା ହୈ, ଖୋଦା ଆପ୍‌କା... ।'' ଦର୍ଶନ ସିଂର କଣ୍ଠ ହଠାତ୍ ଯେମିତି ଫାଟିଯାଇ ବେସୁରା ଶୁଣାଗଲା । ଜନତା ତଥାପି ନିରୁତ୍ତର, ତଥାପି ପଶ୍ଚାଦ୍‌ଗାମୀ । ନିରୁପାୟ ଦର୍ଶନ ସିଂ ଟ୍ରକ୍ ଉପରକୁ ଉଠି ଡ୍ରାଇଭର୍

ସିଟ୍‌ରେ ବସିଲା । ଚୁପ୍‌ଚାପ୍ ନିଜକୁ ନିଜେ କହିଲା "ଖୋଦା ବଚାଏ" । ଦର୍ଶନ ସିଂର ସଙ୍କେତ ପାଇ ଆର ଟ୍ରକ୍‌ଟି ଟାଣିବାକୁ ଆରମ୍ଭ କଲା । ଟ୍ରକ୍‌ଟା ସତକୁ ସତ ଉପରକୁ ଉଠୁଚି ଇଞ୍ଚେ ଇଞ୍ଚେ କରି । କିନ୍ତୁ ଅସଲ ଉଠାଣିଟା ବାକି ରହିଚି । ଭୀମ ଗର୍ଜନ କରି ଟ୍ରକ୍ ଟାଣୁଚି ଆଉ ପଙ୍ଗୁ ଟ୍ରକ୍‌ଟା ଗୋଟିଏ ବାଧ୍ୟ ବଣ ହାତୀ ପରି ଆଗକୁ ଉଠୁଚି—ଏଇ ଉଠାଣି ଉଠିଲା । ଠିକ୍ ଏଇ ମୁହୂର୍ତ୍ତରେ ଟ୍ରକ୍‌ଟା ସ୍ଥିର ହୋଇଗଲା, ମୁହୂର୍ତ୍ତକ ପାଇଁ । ଏଇ ଶେଷଥର ଆଉ ମାତ୍ର ଦୁଇ ଫୁଟ । ଆହୁରି ଗର୍ଜନ କରି ଉଠିଲା ଟ୍ରକ୍‌ର ଇଞ୍ଜିନ୍ କିନ୍ତୁ ଗୋଟିଏ ବିରାଟ ଶବ୍ଦ କରି ବନ୍ଧା ହୋଇଥିବା ତାର ଖଣ୍ଡକ ଆଖି ପିଛୁଳାକେ ଛିଣ୍ଡେଇ ଦେଇ ଟ୍ରକ୍‌ଟା ଆଉଥରେ ଫେରିଆସିଲା ତା'ର ପୁରାତନ ଆଶ୍ରୟ ସ୍ଥଳୀକୁ । ତାର ଦ୍ୱାରା ଟାଣି ଉଠେଇବାର ଶେଷ ଆଶା ପବନରେ ମିଳେଇ ଗଲା । ପୁଣି ଥରେ ଦ୍ୱିତୀୟ ଅଙ୍କର ସମାପ୍ତିରେ ଜନତାର ମୃଦୁ ଗୁଞ୍ଜରଣ । କିଏ କିଏ ଫେରିବାକୁ ପଛକୁ ଘୁଞ୍ଚିଲେ—ଆଉ ହବ ନାହିଁ ।

ଦର୍ଶନ ସିଂ, ଡ୍ରାଇଭର କ୍ୟାବିନ୍ ଭିତରେ ହାଲ୍ ଛାଡ଼ି ଦେଇ ବସିଗଲା, ତା' ପୁଣି କେଇ ମୁହୂର୍ତ୍ତ ପାଇଁ । ତା'ପରେ ପରେ ପୁଣି ଥରେ ଓହ୍ଲେଇ ଆସି ଆର ସର୍ଦ୍ଦାରଜୀ ସହିତ ଛିଣ୍ଡି ଯାଇଥିବା ତାରଟାକୁ ହାତରେ ଏପଟ ସେପଟ କରି ପରୀକ୍ଷା କରିବାକୁ ଲାଗିଲା ।

ସାହେବ ପୋଷାକ ପିନ୍ଧା ବାବୁଜଣକ ଚୁପ୍ ଚାପ୍ ପାଖର ଜଣେ ଲୋକକୁ କହିଲେ, "ପୁଲିସ୍ ଡାକ" । ଜିପ୍ ଛୁଟିଲା ପୁଲିସ୍ ଆଣିବାକୁ । ସେ ଜଣେ ବଡ଼ ଅଫିସର ହେବେ ବୋଧହୁଏ ।

ସମବେତ ଜନତା ଭିତରେ ବହୁ ମତ ଉଠୁଚି ଓ ପୁଣି ତା'ର ପ୍ରତିକୂଳ ମତରେ ତାହା ବୁଦ୍‌ବୁଦ୍ ପରି ମିଳେଇ ଯାଉଚି । କିଏ ଜଣେ କହିଲା, ଟ୍ରକ୍‌ଟାର ବୋଝଗୁଡ଼ାକୁ ତଳକୁ ଖସେଇ ଦିଅ । ତାହା ହେଲେ ଟ୍ରକ୍‌ଟା ଉଠିଯିବ । ଆଉ ଦଳେ ସମର୍ଥନ କଲେ, ହଁ ହଁ ଟ୍ରକର ମାଲ୍ ଖଲାସ କର ଉଠିଯିବ । କିନ୍ତୁ କିଏ କରିବ ଦେଢ଼ ଶହ ପେଟି ମାଲ ଖଲାସ ? କିଏ ତାକୁ ସଜେଇବ ବା କିଏ ପୁଣି ଥରେ ଉପରକୁ ଉଠେଇବ । ଜନତାର ହୁକୁମ ହେଲା ଦର୍ଶନ ସିଂକୁ—ଏଇସେ ନେହି ହୋଗା, ମାଲ୍ ଉତାର ଦିଜିଏ । —ଏଥର ଦର୍ଶନ ସିଂର ପାଲଟା ଜବାବ୍ ଆସିଲା, "ବାବୁଜୀ, ୟେ ତୋ ଅକେଲା କର୍ ନେହିଁ ସକୁଙ୍ଗା—ହମ୍ ତୋ ବହୁତ୍ ସମ୍‌ଝାୟା ଦଶ ଆଦ୍‌ମି ହାତ୍ ଲଗାନେ ସେ ଉସି ବଖତ୍ ଗାଡ଼ି ଉପର ଆଯାତା...." । ଦର୍ଶନ ସିଂ ଦୁଇଟା ଟ୍ରକ୍‌ର ହେଡ୍ ଲାଇଟ୍ ସାମ୍ନାରେ ଠିଆ ହୋଇ ମନେ ହେଉଥାଏ ଯେପରି ସେ ଏକ ରଙ୍ଗମଞ୍ଚରେ ଏକାକୀ ଅଭିନୟ କରି ଚାଲିଛି ଓ ପ୍ରେକ୍ଷାଳୟର ନିରାପଦ ଅନ୍ଧକାର ଓ ଦୂରତ୍ୱ ଭିତରେ ବସି ଅଗଣିତ ଦର୍ଶକ ନାୟକର ଚରମ ଅସହାୟ ଭାବଟିକୁ ରୋମନ୍ଥନ କରି ଆନନ୍ଦ ପାଉଛନ୍ତି ।

ଦର୍ଶନ ସିଂର ଶେଷ କେଇ ପଦ କଥା ଥିଲା କୌତୂହଳି ଜନତା ପାଇଁ ଏକ ଅସହାୟ ଓ ଚରମ ଆକ୍ଷେପ ।

କ୍ରୁଦ୍ଧ ଓ ଆହତ ସ୍ୱରରେ ଜନତା ଏକ ସମଷ୍ଟିଗତ ହୁକୁମ ଜାରି କଲା । ''ଏତେ ଲୋକଙ୍କୁ ଅପନ୍ତରାରେ ପକେଇ ରଖି ଗୋଟେ ନାଟ ଲାଗିଛି । ହଟାଅ ମାଲ୍ ସବୁ.... ।'' ଜଣେ ଦୁଇଜଣ ଉଚ୍ଚ ରାସ୍ତାର ବ୍ୟାଲ୍‌କନି ସିଟ୍ ଛାଡ଼ି ତଳକୁ ଓହ୍ଲେଇବାକୁ ବସିଲେ ମାଲ୍ ତଳକୁ ଖସେଇବା ପାଇଁ । ସାହେବ୍ ପୋଷାକ ପିନ୍ଧା ବାବୁ ତାର ସ୍ୱରରେ ଚିତ୍କାର କଲେ—''ହଟାଓ ସବ୍ ମାଲ୍, ଅଭି ପୁଲିସ୍ ଆନେସେ ସବ୍ ଠିକ୍ ହୋ ଯାଏଗା—'' ଜଣକ ପରେ ଜଣେ ଲୋକ ଓହ୍ଲେଇ ଚାଲିଛନ୍ତି ତଳକୁ ଆଉ ଦର୍ଶନ ସିଂ ଦୁଇ ହାତ ବିସ୍ତାର କରି ସେମାନଙ୍କୁ ଓଗାଳି ରଖିବାର ନିଷ୍ଫଳ ଚେଷ୍ଟାରେ ବିଡ଼ମ୍ବିତ ହେଉଛି ମାତ୍ର । କଣ୍ଠରେ ତା'ର ମିନତି ଓ କାରୁଣ୍ୟ ମିଶି ଏକ ଅଦ୍ଭୁତ ବେସୁରା ସ୍ୱର ଫୁଟିଚି । ''ବାବୁ—ଦଶଜଣ କୁଲି ଲାଗି ୟା'କୁ ସବୁ ଉପରକୁ ଉଠେଇଛନ୍ତି । ଏଠି ସବୁ ମାଲ୍ ପକେଇ ଦେଲେ ଆଉ ଥରେ ଉପରକୁ ଉଠି ପାରିବ ନାହିଁ—ମୁଁ କ'ଣ କରିବି ? ମୁଁ ପଇସା ଦବାକୁ ରାଜି ଅଛି—କେହି ହେଲେ ରାଜି ହଉ ମାଲ୍ ଉତାରି ସାରି ଆଉ ଥରେ ଉପରକୁ ଉଠାଇ ଦବ ।''

ଲୋକ ତଳକୁ ଓହ୍ଲେଇ ଆସୁଛନ୍ତି, ପୁଣି କେହି କେହି ଟ୍ରକ୍‌ର ରସି ଧରି ଉପରକୁ ଉଠି ଗଲେଣି ତ ଆଉ କିଏ କିଏ ଅଧା ରାସ୍ତାରେ । ହଠାତ୍ ତା' ଭିତରୁ କିଏ କହିଲା, ''ଶଳା ଓଡ଼ିଆମାନଙ୍କୁ କୁଲି ପାଇଚି ନାହିଁ—ଆମେ କୁଆଡ଼େ ପଇସା ନେଇ ୟା'ର ମାଲ୍ ଉତାରିବୁ ଆଉ ପୁଣି ଥାକ ଥାକ କରି ସଜେଇ ଦବୁ ।'' ଜାତିପ୍ରୀତିରେ ଉଦ୍‌ବୁଦ୍ଧ ଲୋକମାନେ ଆହୁରି ଗହଳିଆ ହେଇ ଟ୍ରକ୍ ଧାରକୁ ଧସି ଆସୁଛନ୍ତି । ଲୋକମାନଙ୍କର ଭିଡ଼ ଉପରେ ଦର୍ଶନ ସିଂର ମଇଳା ପଗଡ଼ିର ଚୂଳ ଦେଖାଯାଉଛି ଗୋଟିଏ ବୁଡ଼ି ଯାଉଥିବା ଜାହାଜର ମାସ୍ତୁଲ ପରି । ଲୋକେ ଓହ୍ଲେଇ ଚାଲିଛନ୍ତି । କିଏ ପୁଣି ଜଣେ ଚିତ୍କାର କରି କହିଲା, ''ୟା' ଭିତରେ ଅଫିମ ଚାଲାଣ ହଉଛି ନହେଲେ ମାଲ ଉତାରିବାକୁ ଏତେ ଆପତ୍ତି କାହିଁକି ?'' କିଏ କହିଲା ସୁନା, କିଏ କହିଲା ଚାଉଳ—କିଏ କହିଲା ଏଇମାନେ ରାସ୍ତା ଉପରେ ମଣିଷକୁ ପୋକ ମାଛି ପରି ମାଡ଼ି ଦଳି ଦେଇ ଯାଉଛନ୍ତି—ଆଉ କିଏ କହିଲା, ଶଳା ଦେଶୀ ମଦ ପକେଇ ଦେଇ ଏମାନଙ୍କୁ ଆଉ ମଣିଷ ଦେଖାଯାଉ ନାହାନ୍ତି ।

ଏକ ବହୁ ମସ୍ତକ ବିଶିଷ୍ଟ ଜନତା ଶତଜିହ୍ୱା ବିସ୍ତାର କରି ସେମାନଙ୍କର ଅକାଟ୍ୟ ରାୟ ଦେଇ ଚାଲିଛନ୍ତି । ଏ ବିଚାରରେ ପ୍ରତିପକ୍ଷୀ ଜବାବ ସୁଆଲ କରି ପାରିବ ନାହିଁ, ବା' ଏହି ଏକତରଫା ରାୟର ଆପିଲ୍ ମଧ ନାହିଁ ।

ଟ୍ରକ୍‌ର ଟାର୍ପୁଲିନ୍ ଇତି ମଧ୍ୟରେ ଫୋପଡ଼ା ସରିଲାଣି ତଳକୁ । ତା' ଉପରେ ପ୍ରାୟ ତିରିଶ ଜଣ ଲୋକ ଚଢ଼ି ଡାବଲ୍‌ର ପେଟିଗୁଡ଼ାକ ତଳକୁ ଫିଙ୍ଗୁଛନ୍ତି ଧୂମ୍‌ଧାମ୍ ଭୁଷ୍‌ଭାଷ୍ । ପ୍ରାୟ ତିନି ସେକେଣ୍ଡ ଅନ୍ତରାୟରେ ତାଳ ଦେଲା ପରି ଗୋଟାଏ ଗୋଟାଏ ଡାବଲ୍ ତଳକୁ ପଡୁଛି ଆଉ ଚୌଚିର ହୋଇ ଫାଟିଯାଇ ତା' ଭିତରୁ ବାହାରି ପଡୁଛି ଗୁଡ଼ାଏ ଔଷଧ ଶିଶି । ଦର୍ଶନ ସିଂର ପତ୍ତା ନାହିଁ । ମାତ୍ର ୧୫ ମିନିଟ୍ ସମୟ ଭିତରେ ଟ୍ରକ୍‌ର ସବୁଗୁଡ଼ାକ ପେଟି ଖସେଇ ଦିଆଗଲା, ପୋଲ ତଳର କାଦୁଅର ହ୍ରଦ ଭିତରକୁ । କେହି ଭାଙ୍ଗିଚି ତ କେହି ପରା ପଶି ଯାଇଚି କାଦୁଅ ଭିତରେ । ପୋଲ ତଳର କର୍ଦ୍ଦମାକ୍ତ ଖାଲଟା ଖାଲି ଡାବଲ୍ ଆଉ ଭଙ୍ଗା ଶିଶିରେ ପୂର୍ଣ୍ଣ ହୋଇ ଆସିଲାଣି ପ୍ରାୟ ।

ସେଇ ସୁଟ୍ ପିନ୍ଧା ଭଦ୍ରଲୋକ ଜଣକ ମଧ୍ୟ ଠିଆ ହୋଇ ରହି କରିତକର୍ମ୍ମା ଜନତାର ଉତ୍ସାହ ସହିତ ତାଳ ଦେଇ ବାରମ୍ବାର ସିଗାରେଟ୍‌ଟାକୁ ତୁହାକୁ ତୁହା ଟାଣି ଚାଲିଲେ । ତାଙ୍କ ମୁହଁ ଉପରୁ ବିରକ୍ତି ଭାବଟା କଟିଯାଇ ଆତ୍ମସନ୍ତୋଷ ଓ ଆଶ୍ୱସ୍ତିର ପ୍ରଲେପରେ ମୁହଁର ମାଂସପେଶୀ ସବୁ ନରମ ଓ ମୋଲାଏମ୍ ଦେଖା ଯାଉଥିଲା ।

ଜନତାର ଉତ୍ସାହ ତଥାପି କମି ନାହିଁ । ଟ୍ରକ୍ ଏକାଥରକେ ଖାଲି । ସମସ୍ତେ ଓହ୍ଲେଇ ଆସି ଟ୍ରକ୍‌ଟାକୁ ଆଖି ପିଛୁଳାକେ ଉଠାଣି ପାର କରି ଦେଇ ଆଣି ଠିଆ କରିଦେଲେ ପିଚୁ ରାସ୍ତା ଉପରେ । ତା'ପରେ ଜନତା ସନ୍ତୁଷ୍ଟ । ଆହା ! ଆମ୍ଭେମାନେ ନ ଥିଲେ ଆଜି ଏତେ ଲୋକ ସେମାନଙ୍କର ପିଲା କବିଲା ନେଇ କି ହଇରାଣ ହୋଇ ନ ଥାନ୍ତେ ? ପୁଲିସ୍ ଆହୁରି ପହଞ୍ଚି ପାରିନାହିଁ । ତଥାପି କଣ୍ଡାକ୍ଟର୍‌ର ହାତ ସଫେଇ କଥା ଚିନ୍ତା କରାଯାଇ ପାରିନାହିଁ । ଟ୍ରକ ଉଠୁ ନ ଉଠୁଣୁ ଅପେକ୍ଷା କରିଥିବା ଗାଡ଼ି ସବୁ ଆଲୁଅ ଜଳେଇ, ହର୍ଣ୍ଣ ଦେଇ ଏକ ଶୃଙ୍ଖଳିତ ସୈନିକ ଶ୍ରେଣୀ ପରି ପରସ୍ପରକୁ ଅତିକ୍ରମ କରି ଦୃଷ୍ଟିସୀମା ବାହାରକୁ ଚାଲିଗଲେ ମାତ୍ର ପାଞ୍ଚ ମିନିଟ୍ ସମୟ ଭିତରେ । ଦୀର୍ଘ ତିନି ଘଣ୍ଟା ଧରି ଚାଲିଥିବା ନାଟକର ଯବନିକା ପଡ଼ିଲା । ଦର୍ଶକମାନେ ମଉଳି ଗଲେ ରାଜପଥର କରରେ ଖାଲି ଠିଆ ହେଇ ରହିଲା ଗୋଟାଏ ଶୂନ୍ୟଗର୍ଭା ଟ୍ରକ୍ ଆଉ ଡାଇଭର୍‌ସନ୍ କରକୁ ଗୁଡ଼ାଏ ଭଙ୍ଗାରୁଜା ଡାବଲ୍ ଓ ସେମାନଙ୍କର ଅନ୍ତବୁଜୁଳି ଫଟେଇ ବାହାରି ଆସିଥିବା ଅନେକ ଅନେକ ଔଷଧ ବୋତଲ ସବୁ । କଦବା କ୍ୱଚିତ୍ ଯାଇଥିବା ଗାଡ଼ିର ଆଲୁଅରେ ସେଇ ଧ୍ୱଂସସ୍ତୂପ ମଝିରେ ମଝିରେ ଯେମିତି ଖଟେଇ ହଉଛି ଦର୍ଶନ ସିଂକୁ ।

ରାସ୍ତାର ଏକ ଅପେକ୍ଷାକୃତ ଅନ୍ଧକାରମୟ ସ୍ଥାନରେ ଠିଆ ହୋଇ ରହି ଦର୍ଶନ ସିଂ ତା'ର ଜୀବନ-ନାଟକର ଏକ ଚରମ ମୁହୂର୍ତ୍ତକୁ ନିବିଷ୍ଟ ଚିତ୍ତରେ ଅନୁଭବ କରୁଥିଲା ।

ଟ୍ରକ୍ ଉପରୁ ସମସ୍ତ ଡାବଲ ଡଙ୍କକୁ ଖସି ଭାଙ୍ଗି ଚୁର୍‌ମାର୍ ହୋଇ ସାରିବା ପରେ ଦର୍ଶନ ସିଂର ମୁହଁଟା ସେଇ ଅନ୍ଧାର ଭିତରେ ବି କେମିତି ବିକୃତ ହୋଇଗଲା ଆଉ ତା' ପାଟିରୁ ଗୋଟାଏ କ'ଣ ଅଶ୍ଳୀଳ ଗାଳି ଉଚ୍ଚାରିତ ନ ହୋଇ ବାହାରି ଆସିଲା—ଆହୁରି ଖୋଜ ତା' ଭିତରୁ ଅଫିମ, ଚାଉଳ ଆଉ ସୁନା ବାହାରିବ ।

ରାସ୍ତାଟା ୟା' ଭିତରେ ପୂରାପୂରି ନିଶୂନ ହୋଇ ଗଲାଣି । ଦର୍ଶନ ସିଂ କ୍ଳାନ୍ତ ପାଦ ଦୁଇଟାକୁ ଟାଣି ଟାଣି ତା'ର ଟ୍ରକ୍ ପାଖରେ ପହଞ୍ଚି ଟ୍ରକ୍‌ର ଦିହ ଉପରେ ତା'ର ପାପୁଲିଟାକୁ ପରମ ଆଦରରେ ବୁଲେଇ ନେଲା ଥରେ । ଦର୍ଶନ ସିଂ ଜାଣେ ଯେ ଜୀବନରେ ସେ' ଟ୍ରକ୍‌ର ବକେୟା ଥିବା ଅଠେଇଶ ହଜାର କିସ୍ତି ଟଙ୍କା ସୁଝି ପାରିବ ନାହିଁ କି ଔଷଧ ଚାଲାଣ କରୁଥିବା ବଣିକର ବହୁ ସହସ୍ର ଟଙ୍କାର କ୍ଷତି ପୂରଣ କରି ପାରିବ ନାହିଁ । ତା'ର ଆଖି ଆଗରେ ଟ୍ରକ୍‌ର ମାଲିକ ଟ୍ରକ୍‌ଟାକୁ ଜବତ୍ କରି ନେବ ଆଉ ଦର୍ଶନ ସିଂକୁ ବୋଧହୁଏ ଜୀବନର ଅବଶିଷ୍ଟାଂଶ ଖଟିବାକୁ ପଡ଼ିବ କାହାର କ୍ରୀତଦାସ ହୋଇ । ଆଉ କାହାର ଟ୍ରକ୍ ଡ୍ରାଇଭର୍ ହେଇ ।

ଡ୍ରାଇଭର୍ କେବିନ୍ ଉପରେ ଯାଇ ବସିଲା ଦର୍ଶନ ସିଂ । ରାତ୍ରି ଶେଷର ଚନ୍ଦ୍ର ଏକ ଜରିର କାଗଜ ଫୁଲ ପରି ପଶ୍ଚିମ ଆକାଶରେ ଏବେ ମଧ ଝୁଲି ରହିଛି । ରାତି ଆହୁରି ଚୁପ୍‌ଚାପ୍ ହୋଇଗଲାଣି । ସେଇ କୁହୁଡ଼ିଆ ଜ୍ୟୋତ୍ସ୍ନା ଭିତରେ ଦର୍ଶନ ସିଂର ମନ ପହଁରିଗଲା ତା'ର ଗାଁର ଗହମ କ୍ଷେତକୁ । ତା'ର ଝୋପ୍‌ଡ଼ୀ ଭିତରେ ଦଉଡ଼ିଆ ଖଟିଆର ଅଦ୍ଧ ବାହାରକୁ ବାହାରି ଆସିଥିବା ତା'ର ମା'ର ଶେତା ପାଦ ଦୁଇଟି । ତା'ର ସ୍ତ୍ରୀ ବୋଧହୁଏ ନିଦ ନିଦ ଆଖିରେ ତା'ର ହାତ ଦୁଇଟିକୁ ଉପରକୁ ଟେକି ତନ୍ଦ୍ରା କଟେଇବାର ଚେଷ୍ଟା କରୁଥିବ । ଆଉ ତା'ର ତିନି ବର୍ଷର ଶିଶୁକନ୍ୟା (ଯାହାର ମୁହଁ ସେ' ଏବେ ବି ଦେଖି ନାହିଁ) ତା'ର ମା'ର ସ୍ତନକୁ ଆକର୍ଷଣ କରୁଥିବ । ଦର୍ଶନ ସିଂ ଭାବୁ ଭାବୁ ଅନ୍ୟମନସ୍କ ହେଇ ଟ୍ରକ୍‌ର ଓଜନିଆ ହାତୁଡ଼ିଟାକୁ ଧରି ତା'ର ମାଂସଳ ବାହୁ ଉପରେ ବାରମ୍ବାର ପିଟୁଥିଲା । ତା'ର ଖିଆଲ୍ ନାହିଁ କେତେବେଳେ ହାତର ଗୋଟିଏ ଯାଗା ଫାଟିଯାଇ ରକ୍ତ ଝରୁଛି । ଆଉ ଦର୍ଶନ ସିଂର ଆଖିର ଲୁଣି ଲୁହ ଲୁଣିଆ ରକ୍ତ ସହ ମିଶି ଏକାକାର ହେଇ ଯାଉଅଛି । ଦର୍ଶନ ସିଂ ଆଜି କାନ୍ଦୁଛି ଅନେକ ଦିନ ପରେ ।

ପୂର୍ବ ଆକାଶ ପଟେ ସୂର୍ଯ୍ୟର ରଥ ତୀର ବେଗରେ ଛୁଟି ଆସୁଚି ଆଗକୁ ଆଗକୁ ।



# ସମ୍ବାଦପତ୍ରର ଉପେକ୍ଷିତ ନାୟକ

ଶ୍ରୀଯୁକ୍ତ ଯଦୁନାଥ ପାଲଟାସିଂ ଯେ ସ୍ୱାଧୀନଚେତା ଥିଲେ ଏକଥା ତାଙ୍କର ଶତ୍ରୁ ମଧ୍ୟ ସ୍ୱୀକାର କରିବ । ସେକ୍ରେଟେରୀଏଟ୍ ପ୍ରକୋଷ୍ଠ ଭିତରେ ଅନ୍ୟାନ୍ୟ ବହୁ ସହକର୍ମୀମାନଙ୍କ ସହିତ ତାଙ୍କର ଆସନ ନିର୍ଦ୍ଧାରିତ ହୋଇଥିଲେ ମଧ୍ୟ ତାଙ୍କର କର୍ତ୍ତବ୍ୟନିଷ୍ଠା, ନେତାସୁଲଭ ଗାମ୍ଭୀର୍ଯ୍ୟ, ଦେଶ ଓ ଜନତା ସମ୍ପର୍କରେ ନିର୍ଭୀକ ଘୋଷଣା, ତାଙ୍କର ସହକର୍ମୀ ଓ ବନ୍ଧୁ ମହଲରେ ତାଙ୍କୁ ଏକ ବିଶେଷ ପ୍ରତିଷ୍ଠା ଦେଇ ପାରିଥିଲା । ତାଙ୍କର ପାରିବାରିକ ଜୀବନରେ ସେ ଅପେକ୍ଷାକୃତ ସୁଖୀ ଥିଲେ । ତାଙ୍କର ସହଧର୍ମିଣୀ ଗୋଟିଏ ପରେ ଗୋଟିଏ ଏହିପରି ଚାରୋଟି ପୁତ୍ର ସନ୍ତାନ ତାଙ୍କୁ ଉପହାର ଦେଇଥିଲେ ମଧ୍ୟ, ସ୍ୱାମୀଙ୍କ ପ୍ରତି ତାଙ୍କର କର୍ତ୍ତବ୍ୟ ପାଳନରେ କେବେହେଲେ କୁଣ୍ଠିତା ନ ଥିଲେ ।

ସେକ୍ରେଟେରୀଏଟ୍‌ରେ ପ୍ରବେଶ କରିବା ପୂର୍ବରୁ ଯଦୁନାଥ ତାଙ୍କର ଗାଁ ସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ତିହିଡ଼ି ଗ୍ରାମରେ ଆବାଳବୃଦ୍ଧ ବନିତା ଅତ୍ୟନ୍ତ ସମ୍ଭ୍ରମର ସହିତ ତାଙ୍କ ସହିତ ବ୍ୟବହାର କରୁଥିଲେ । କାରଣ ସେ ଥିଲେ ତାଙ୍କ ଗ୍ରାମର ସର୍ବପ୍ରଥମ ଗ୍ରାଜୁଏଟ୍, ନିମ୍ନ ମଧ୍ୟବିତ୍ତ ବଂଶଜ, ଦାରିଦ୍ର୍ୟ କଷାଘାତ ଜର୍ଜ୍ଜରିତ ଯଦୁନାଥ ଯେ ତାଙ୍କର ସ୍ୱୀୟ ଅଧ୍ୟବସାୟ ଓ ପ୍ରତିଭା ଜରିଆରେ ଦିନେ ତାଙ୍କ ଗ୍ରାମର ତଥା ସେ ଅଞ୍ଚଳର ମୁଖ ଉଜ୍ଜ୍ୱଳ କରିବେ, ଏକଥା ସେମାନଙ୍କର ସ୍ୱପ୍ନର ଅତୀତ ଥିଲା ।

ତାଙ୍କର ଶିକ୍ଷକ ଜୀବନରେ ସେ ଜଣେ ଆଦର୍ଶ ଶିକ୍ଷକ ଥିଲେ । ଛାତ୍ରମାନଙ୍କୁ ନିୟମିତ ବ୍ୟାୟାମ କରିବା, ଶୃଙ୍ଖଳିତ ଓ ସଂଯମୀ ଜୀବନଯାପନ କରିବା ପାଇଁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ, ତାଙ୍କର ପଠନ ପ୍ରଣାଳୀ ଓ ଲିଖନ ଅଭ୍ୟାସ ପ୍ରତି ମଧ୍ୟ ସତର୍କ ଦୃଷ୍ଟି ରଖୁଥିଲେ । କିନ୍ତୁ ତିହିଡ଼ି ଗ୍ରାମ ସୀମା ମଧ୍ୟରେ ବର୍ଦ୍ଧିତ ଯଦୁନାଥଙ୍କର ଅଭିଜ୍ଞତା ଓ ଦୃଷ୍ଟିଭଙ୍ଗୀ ଶିକ୍ଷା ପଦ୍ଧତିରେ ନିତ୍ୟଘଟିତ ବୈପ୍ଲବିକ ପରିବର୍ତ୍ତନ ପ୍ରତି ସଚେତନ ନଥିଲା ।

କିନ୍ତୁ ଅକସ୍ମାତ୍ ଦିନକର ଗୋଟିଏ କ୍ଷୁଦ୍ର ଘଟଣାରେ ଯଦୁନାଥଙ୍କର ଜୀବନ ସ୍ରୋତ ଗୋଟାଏ ମୋଡ଼ ଭାଙ୍ଗିଗଲା । ସେଦିନ ତତ୍‌କାଳୀନ ସ୍କୁଲ ଇନ୍‌ସପେକ୍ଟର ତ୍ରିପାଠୀ ସାହେବ ସ୍କୁଲ ପରିଦର୍ଶନ କରିବାକୁ ଆସିଥାଆନ୍ତି । ତ୍ରିପାଠୀ ସାହେବଙ୍କ ଘର

ବାଲେଶ୍ୱରରେ ହୋଇଥିଲେ ମଧ୍ୟ ସେ ନିକଟରେ ବିଲାତରୁ ଉଚ୍ଚ ଶିକ୍ଷା ପାଇ ଫେରିଥିବାରୁ ତାଙ୍କୁ ସମସ୍ତେ ତ୍ରିପାଠୀ ସାହେବ ବୋଲି ଡାକନ୍ତି । ସେ ଦିନର ଅନ୍ୟାନ୍ୟ କାର୍ଯ୍ୟକ୍ରମ ଭିତରେ ସ୍କୁଲ ତରଫରୁ ପରିଦର୍ଶନ ଉଦ୍ଦେଶ୍ୟରେ ଯଦୁନାଥଙ୍କୁ ନବମ ଶ୍ରେଣୀରେ ଇଂରାଜୀ ପଢ଼ାଇବାର ଦାୟିତ୍ୱ ଦିଆଯାଇଥାଏ ।

ଯଦୁନାଥ ବାବୁଙ୍କର ଇଂରାଜୀ ଓ ବିଶେଷ କରି ଇଂରାଜୀ ବ୍ୟାକରଣ ଉପରେ ଦଖଲ ପାଇଁ ପ୍ରତିଷ୍ଠା କେବଳ ତାଙ୍କ ସ୍କୁଲରେ ନୁହଁ ଆଖ ପାଖର ସ୍କୁଲରେ ମଧ୍ୟ ସୁପ୍ରଚାରିତ । ନିର୍ଦ୍ଧାରିତ ସମୟରେ ସେ ଦିନର ପାଠ୍ୟକ୍ରମ ଆରମ୍ଭ ହେଲା ଓ ପୂର୍ବସୂଚୀ ଅନୁଯାୟୀ ହେଡ଼ମାଷ୍ଟରଙ୍କ ଗହଣରେ ତ୍ରିପାଠୀ ସାହେବ ନବମ ଶ୍ରେଣୀକୁ ପ୍ରବେଶ କଲେ । ଆଶ୍ଚର୍ଯ୍ୟର ବିଷୟ ଯେ ତ୍ରିପାଠୀ ସାହେବ ବସିଲେ ଶ୍ରେଣୀର ସର୍ବଶେଷ ବେଞ୍ଚ ଉପରେ ଯେପରି ସେ ମଧ୍ୟ ଏ ଶ୍ରେଣୀର ଜଣେ ଛାତ୍ର । ବିଲାତ ଫେରନ୍ତା ତ୍ରିପାଠୀ ସାହେବଙ୍କର ଏତାଦୃଶ ଆକସ୍ମିକ ବ୍ୟବହାରରେ ଯଦୁନାଥ ତାଙ୍କର ସାଧାରଣ ଶିକ୍ଷକସୁଲଭ ଭାରସାମ୍ୟ କିଛି ପରିମାଣରେ ହରାଇ ବସିଥିଲେ । କ୍ଲାସ୍‌ରେ ପଢ଼ଉ ପଢ଼ଉ ନିଜର ଅଜାଣତରେ 'ହୁକ୍‌ୱାର୍ମ'ର ଓଡ଼ିଆ ତର୍ଜମା କରି ଜୁଳୁଜୁଳିଆ ପୋକ ବୋଲି କହି ପକାଇଥିଲେ । ତାଙ୍କର ନିଜର ମୁଖ ନିଃସୃତ ଶବ୍ଦ ତାଙ୍କର କର୍ଣ୍ଣ କୁହରରେ ପ୍ରବେଶ କଲାବେଳକୁ ସମୟ ଅନେକ ଆଗର ହୋଇଯାଇଥିଲା । 'କ୍ଲାସରେ ଛାତ୍ରମାନେ ନୀରବରେ ବସି ରହିଛନ୍ତି ଏବଂ ହେଡ଼ମାଷ୍ଟରଙ୍କ ମୁହଁ ପଥର ପରି କଠିନ ଦେଖାଯାଉଛି । ତା'ରି ଅବ୍ୟବହିତ ପରେ ତ୍ରିପାଠୀ ସାହେବ ମଧ୍ୟ କ୍ଲାସରୁମ୍ ପରିତ୍ୟାଗ କରିଥିଲେ । ପରିଦର୍ଶନ ରିପୋର୍ଟରେ ଅନ୍ୟାନ୍ୟ ମନ୍ତବ୍ୟ ମଧ୍ୟରେ ଲେଖାଥିଲା ଯେ, ଇଂରାଜୀ ଶିକ୍ଷକଙ୍କର ପରିବର୍ତ୍ତନ ଅବଶ୍ୟ କରିବାକୁ ହେବ । ତା' ପରଦିନଠାରୁ ଅନିଚ୍ଛା ସତ୍ତ୍ୱେ ଯଦୁନାଥ ଇଂରାଜୀ ପଢ଼ାଇବାରୁ ବଞ୍ଚିତ ହେଲେ ଏବଂ ଏ ସମ୍ବାଦ ବିଦ୍ୟୁତ ବେଗରେ ସମଗ୍ର ଅଞ୍ଚଳରେ ପ୍ରଚାରିତ ହୋଇଯାଇଥିଲା ।

ସେଦିନ ସନ୍ଧ୍ୟାରେ ଯଦୁନାଥ ତାଙ୍କ ସ୍ତ୍ରୀଙ୍କ ପାଖରେ ବସି ଏକ ଅବୁଝା ଶିଶୁ ପରି ବିଳାପ କରିଥିଲେ ଆହତ ଆତ୍ମ ଅଭିମାନରେ । କିନ୍ତୁ ପରେ ପରେ ତାଙ୍କ ପାଖରୁ ଇଂରାଜୀ ପଠନ ଅପସାରିତ ହୋଇଥିବା ହେତୁ ସେ ଶିକ୍ଷକ ପଦରୁ ଇସ୍ତଫା ଦେବେ ବିଷୟରେ ମଧ୍ୟ ସ୍ଥିର ସଂକଳ୍ପ ହୋଇଥିଲେ । ବିନା ଆଡ଼ମ୍ବରରେ ବିନା ପ୍ରତିବାଦରେ ତାଙ୍କର ଇସ୍ତଫା ଗୃହୀତ ହୋଇଯାଇଥିଲା ତା' ପରଦିନ । ସ୍କୁଲର ସମବେତ ଛାତ୍ର ଓ ଶିକ୍ଷକମାନେ ତାଙ୍କୁ ବିଦାୟ ସମ୍ବର୍ଦ୍ଧନା ଜଣାଇଲା ବେଳେ ସେ କଥା ପ୍ରସଙ୍ଗରେ ଚାକିରୀ ଜୀବନର ଦୈନ୍ୟ ଓ କାରୁଣ୍ୟ କଥା ବର୍ଣ୍ଣନା କରି ଭବିଷ୍ୟତରେ ଏକ ସ୍ୱାଧୀନ ଜୀବନ ଯାପନର ସଙ୍କଳ୍ପ କଥା ମଧ୍ୟ କହି ପକାଇଥିଲେ । ଶିକ୍ଷାୟତନର ଅନ୍ତେବାସୀଙ୍କୁ

ବାଦ୍‌ଦେଲେ ମଧ୍ୟ ତିହିଡ଼ି ଗ୍ରାମର ସାଧାରଣ ଅଧିବାସୀମାନେ ସେଦିନ ସ୍ୱାଧୀନଚେତା ଯଦୁନାଥଙ୍କୁ ଆନ୍ତରିକ ବଧେର ଜଣାଇଥିଲେ ।

ଯତ୍‌ସାମାନ୍ୟ ବକେୟା ଦରମା ଓ ପ୍ରୋଭିଡ଼େଣ୍ଟ୍ ଫଣ୍ଡର ଟଙ୍କା ଚାହଁ ଚାହୁଁ ଯଦୁନାଥଙ୍କର ଅଭାବଗ୍ରସ୍ତ ପରିବାର ଗର୍ଭରେ ଲୀନ ହୋଇଗଲା । ଅଥଚ ଏକ ସ୍ୱାଧୀନ ଜୀବନ ଯାପନର ମୂଳଦୁଆ ଏ ପର୍ଯ୍ୟନ୍ତ ପତ୍ତନ ହୋଇପାରି ନାହିଁ । ଅଗତ୍ୟା ଯଦୁନାଥ ସେକ୍ରେଟେରୀଏଟ୍‌ର ୟୁ.ଡି. କିରାଣୀ ଚାକିରି ଗ୍ରହଣ କରିବାକୁ ବାଧ୍ୟ ହେଲେ ଓ ଭବିଷ୍ୟତରେ ଆଇନଜୀବୀ ହେବାର ଲକ୍ଷ୍ୟ ରଖି ଘରୋଇ ଭାବରେ ଓକିଲାତି ପଢ଼ିବାକୁ ଆରମ୍ଭ କଲେ । ତାଙ୍କର ମେଧାବୀ ଛାତ୍ର ଜୀବନ ଓ ଶିକ୍ଷକତାର ସୁଦୀର୍ଘ ଅଭିଜ୍ଞତା ଫଳରେ ସେ ଯେ ଅକ୍ଳେଶରେ ଆଇନ ପରୀକ୍ଷା ପାଶ୍ କରିଯାଇ ପାରିବେ ଏଥିରେ ତାଙ୍କର ତିଳେ ମଧ୍ୟ ସନ୍ଦେହ ନଥିଲା ।

ସେକ୍ରେଟେରୀଏଟ୍ ଅନ୍ୟ ଏକ ଜଗତ୍ । ସେଠି ମୋଟା ଦରମା ପାଉଥିବା ସେକ୍ରେଟାରୀଙ୍କ ଠାରୁ ଆରମ୍ଭ କରି ଦରିଦ୍ର ପିଅନ ପର୍ଯ୍ୟନ୍ତ ସମସ୍ତଙ୍କର ଏକତ୍ର ସମାବେଶ । କିନ୍ତୁ ଆତ୍ମାଭିମାନୀ ଯଦୁନାଥ ସେ ପରିବେଶ ଭିତରେ ଅସ୍ୱସ୍ତି ଅନୁଭବ କରିବାକୁ ଆରମ୍ଭ କଲେ । ଯେପରି ସେଇ ବିରାଟ କୋଠାଟା ଭିତରେ ତାଙ୍କର ଶ୍ୱାସରୁଦ୍ଧ ହୋଇ ଯାଉଛି । ତାଙ୍କର ସହକର୍ମୀମାନେ ଯେପରି ଭାବରେ ନିତ୍ୟନୈମିତ୍ତିକ ଜୀବନ ଯାତ୍ରାକୁ ଗ୍ରହଣକରି ନେଇଛନ୍ତି ତା' ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ତାଙ୍କର ମନେହେଲା ଯେପରି ତାଙ୍କ ଗ୍ରାମରେ ସବୁ ଲୋକ ଧାଡ଼ିବାନ୍ଧି ଶୋଭାଯାତ୍ରା କରି ତାଙ୍କ ପାଖକୁ ଆସି ପଚାରୁଛନ୍ତି, "କିହୋ ! ଯଦୁବାବୁ, ଏଇ ସ୍ୱାଧୀନ ଜୀବନଯାପନ କଲ ?" କିନ୍ତୁ ଆଇନ୍ ପାଶ୍ ନ କଲା ପର୍ଯ୍ୟନ୍ତ ତାଙ୍କୁ ଏ ଉପହାସ ସହି ନ ନେଇ ଉପାୟ ନାହିଁ ?

ସେକ୍ରେଟେରୀଏଟ୍ ଛୁଟି ହେଲେ ତାଙ୍କରି ଆଖି ଆଗରେ ଅସୁମାରୀ ମଟର ଗାଡ଼ି ପେଁ ପାଁ କରି କୁଆଡ଼େ ଅଦୃଶ୍ୟ ହୋଇଯାଏ ଏବଂ ଯଦୁନାଥ ତାଙ୍କରି ଚିର ସହଚର ଛତାଟିଏ ଧରି ଚାଲୁ ଚାଲୁ ପିଚୁ ରାସ୍ତା କରରେ ଥମ୍‌କି ଠିଆ ହୋଇ ଯାଆନ୍ତି । ଏମାନେ ଆସିଥିଲେ କୁଆଡ଼େ, ଆଉ ଗଲେ କୁଆଡ଼େ ? ଏଇ ବିରାଟ କୋଠାରେ ପ୍ରତିଦିନ ଯେତିକି ଶବ୍ଦ ଲେଖାଯାଏ ବା ଟାଇପ୍ କରାଯାଏ, ସେଥିପାଇଁ ଏମାନଙ୍କର ଅବଦାନ କେତେ ସ୍ୱଳ୍ପ । କିନ୍ତୁ ତଥାପି ଏମାନେ ମେଧାବୀ, ସଂଯମୀ, ଆବାଲ୍ୟ ଶୃଙ୍ଖଳିତ ଯଦୁନାଥର ଲେଖା ଉପରେ କଲମ ଚଳାନ୍ତି ଓ ସିଦ୍ଧାନ୍ତକୁ ଭ୍ରମାତ୍ମକ ବୋଲି ପ୍ରତ୍ୟାଖ୍ୟାନ କରନ୍ତି । ଆଜି ପର୍ଯ୍ୟନ୍ତ ତିହିଡ଼ି ଗ୍ରାମରେ ବା ସ୍କୁଲରେ ଯଦୁନାଥଙ୍କ ସିଦ୍ଧାନ୍ତକୁ ପରିବର୍ତ୍ତନ କରିବା ସାହସ ନ ଥିଲା କାହାର ।

''ଶାଳା; ସବୁ ଶାଳା ଚୋର୍ । ସମସ୍ତେ ବିଲାତ୍ ଫେରନ୍ତା ତ୍ରିପାଠୀର ବଂଶଧର । ଏ ଦେଶ ଏଇମାନଙ୍କ ଯୋଗୁଁ ଜାହାନ୍ନାମକୁ ଯିବ । ଶଳେ ! ଏକୋଇଶି ବର୍ଷ ହେଲା ଗାଡ଼ି ଚଢ଼ି, ଶୀତ-ତାପ-ନିୟନ୍ତ୍ରିତ ଘରେ ବସି ଏ ଦେଶ ପାଇଁ କ'ଣ କରିଚ ? ଚୋପ୍‌ପା ।''

ଯଦୁନାଥ ଉପର ପାଟି ଦାନ୍ତରେ ତଳ ଓଠକୁ ଚାପି ଧରି ଆଗକୁ ପାଦ ବଢ଼ାନ୍ତି । ଆଉ ଟିକିଏ ଡେରି କଲେ ହାଟ ପଡ଼ିଯିବ । ହାଟରୁ ସବୁଦିନ ପରି କିଛି ପରିବା ଓ କିଛି ଚୁନା ମାଛ ଧରି ଯଦୁନାଥ ଘରକୁ ଫେରନ୍ତି । କିନ୍ତୁ ସେଦିନ ଫେରି ଯାଉଯାଉ ତାଙ୍କର ପାଦ ହଠାତ୍ ଅଟକିଗଲା । କିଏ ଜଣେ ଧାତବ କଣ୍ଠରେ ତୁହାକୁ ତୁହା ଡାକୁଛି ।

''କିଏ ଜାଣେ ଭାଗ୍ୟରେ ଥିଲେ ଲକ୍ଷ୍ୟପତି ! ଆଉ ମାତ୍ର ସାତ ଦିନ ପରେ ରାଜସ୍ଥାନ ଲଟେରୀର ପ୍ରଥମ ଡ୍ର । ପ୍ରଥମ ପୁରସ୍କାର ତିନିଲକ୍ଷ ଟଙ୍କା ଓ ଗୋଟିଏ ଆମ୍ୱାସାଡ଼ର ଗାଡ଼ି ।''

ଯଦୁନାଥଙ୍କର ପୁରୁଷକାର ମୁହୂର୍ତ୍ତକ ପାଇଁ ସ୍ଖଳିତ ହୋଇ ଭାଗ୍ୟଦେବୀଙ୍କ ଚରଣ ତଳେ ସାଷ୍ଟାଙ୍ଗ ପ୍ରଣିପାତ କଲା । କିଏ ଜାଣେ ? ଜୀବନର ମଧ୍ୟାହ୍ନରେ ଏଇ ଅହେତୁକ ଆତ୍ମସମର୍ପଣ ଯଦୁନାଥଙ୍କୁ ଶତ ବୃଶ୍ଚିକ ଦଂଶନର ଜ୍ୱାଳା ଦେଲେ ମଧ୍ୟ ଯଦୁନାଥ ବାଧ୍ୟ ଛାତ୍ର ପରି ଗୋଟିଏ ଟଙ୍କା ବଢ଼େଇ ଦେଇ ଗୋଟିଏ ଲଟେରୀ ଟିକଟ୍ ମାଗି ବସିଲେ । ଲଟେରୀ ଟିକଟଟିକୁ ଗ୍ରହଣ କଲାବେଳେ ଯଦୁନାଥ ଜଣେ ଅପରାଧୀ ପରି ଚାରିଆଡ଼କୁ ଚାହିଁନେଲେ ଥରେ । କେହି ଦେଖୁ ନାହିଁ ତ ଏ ନିର୍ଲ୍ଲଜ ଆତ୍ମସମର୍ପଣ ?

ସନ୍ଧ୍ୟା ଅନେକବେଳୁ ଉତ୍ତୀର୍ଣ୍ଣ ହୋଇ ଯାଇଥିଲା । ଘରେ ପହଞ୍ଚୁ ନ ପହଞ୍ଚୁଣୁ ଗୃହିଣୀ କପଟ କ୍ରୋଧ କରି ପ୍ରକାଶ କଲେ ଯେ ପିଲାମାନେ କେତେବେଳୁ ଦରଖିଆ ହୋଇ ଶୋଇ ପଡ଼ିଲେଣି । କିନ୍ତୁ ଯଦୁନାଥଙ୍କର ଆଜି ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ସେ ତାଙ୍କର ଅଭ୍ୟାସ-ସିଦ୍ଧ ପଦ୍ଧତିରେ ଅଫିସ୍ ଲୁଗାପଟା ଛାଡ଼ି ଖଣ୍ଡିଏ ଲୁଙ୍ଗି ପିନ୍ଧି ଓଠରେ ଗୋଟିଏ ସ୍ମିତ ହସ ଟାଣି ଗୃହିଣୀଙ୍କୁ କହିଲେ, ''ଆଜି ଟିକିଏ ଦିହଟା କେମିତି ଲାଗୁଛି—ପଟି ଟିକିଏ ବାଟି ଦିଅନ୍ତନି ?''

ଗୃହିଣୀ ଆଚମ୍ବିତ ହୋଇ କିଛି ସମୟ ଠିଆହୋଇ ରହି କହିଲେ, ''କ'ଣ ହେଇଛି ତମର ଆଜି ?'' ''ନାହିଁ କିଛି ନାହିଁ, ଖାଲି ଦିହଟା କିମିତି କିମିତି ଲାଗୁଛି ।''

ଗୃହିଣୀ ସାମାନ୍ୟ ହସିଦେଇ ପାଚକ ପ୍ରସ୍ତୁତ ପାଇଁ ଆଗେଇ ଗଲେ । ଚାଲିଗଲା ବେଳେ ଗୃହିଣୀଙ୍କର ଚାଲି ଓ ମୁଖର ଭଙ୍ଗୀ ତାଙ୍କର ବୟସ ଅନ୍ୟୂନ୍ୟ ଦଶବର୍ଷ କ୍ଷୁଣ୍ଣ କରି ଦେଇଥିଲା ।

ଏଠାରେ ପ୍ରକାଶ କରିବା ପ୍ରୟୋଜନ ଯେ ଶ୍ରୀଯଦୁନାଥ ଯେ କୌଣସି ପ୍ରକାର ନିଶାଦ୍ରବ୍ୟର ଘୋର ବିରୋଧୀ ଏବଂ ନିଶା ସମ୍ପର୍କରେ ଯେତେବେଳେ ସେ ଛାତ୍ରମାନଙ୍କ ଗହଣରେ ବା ଗ୍ରାମ୍ୟ ସଭାରେ ବକ୍ତୃତା କରନ୍ତି, ସେତେବେଳେ ତାଙ୍କର କଠୋର ମୁଖମଣ୍ଡଳ ନିଃସୃତ ନିଷ୍ଠୁର ଶବ୍ଦ ପ୍ରୟୋଗ ଶୁଣିଲେ ଯେ କେହି ମନେ କରିବା ସ୍ୱାଭାବିକ ଯେ ସ୍ୱୟଂ ଭଗବାନ ଯଦୁନାଥ ଅବତାରରେ ଅବତୀର୍ଣ୍ଣ ହୋଇ ଦୁଷ୍କୃତମାନଙ୍କୁ ନିଶା ନାମକ ନର୍କରୁ ଉଦ୍ଧାର କରିବାକୁ ବଦ୍ଧପରିକର । କିନ୍ତୁ କଦବା କ୍ୱଚିତ୍ ଯଦୁନାଥ ପୁରୀ ଜିଲ୍ଲା ସଂକ୍ରମିତ ଭାଙ୍ଗ ନାମକ ନିଶା ଯେ ସେବନ କରନ୍ତି ତାହା ଏକ ଦାମ୍ପତ୍ୟର ଗୋପ୍ୟ ବ୍ୟାପାର । ଏହି ଗୋପନ ସତ୍ୟକୁ ଭିତ୍ତିକରି ତାଙ୍କର ଚରିତ୍ର ଉପରେ ଆକ୍ଷେପ କରିବା ନିନ୍ଦୁକମାନଙ୍କର କାର୍ଯ୍ୟ ।

ସେଦିନ ଶନିବାର ଏବଂ ଯଦୁନାଥ ରାତି ଆଠଟାବେଳକୁ ସେହି ଦେବ ଦୁର୍ଲଭ ବହୁ-ପେଷିତ ଈଷତ୍ ନୀଳ ଗଞ୍ଜିକା-ପଲ୍ଲବ ଭକ୍ଷଣ କରିସାରି ଗୃହିଣୀଙ୍କୁ କିଛି ଖଳି ରୁଟି, ଡାଲମା ଓ ମିଷ୍ଟାନ୍ନର ବରାଦ ଦେଇ ସାରିଥିଲେ । ସମସ୍ତ ଆୟୋଜନ ସମାପନାନ୍ତେ ଗଳିତଘର୍ମ, କ୍ଳାନ୍ତ ଗୃହିଣୀ, ଯେତେବେଳେ ଯଦୁନାଥଙ୍କ ପାଖକୁ ଆସିଲେ ସେତେବେଳକୁ ସନ୍ତାନବର୍ଗ ସୁପ୍ତ ଓ ଦାଣ୍ଡ ଦୁଆର ସାମ୍ନାରେ ନାରିକେଳ ବୃକ୍ଷ ଚୂଡ଼ାରେ ଏକାଦଶୀର ଜ୍ୟୋତ୍ସ୍ନା ଉଦ୍‌ଭାସିତ ।

ଯଦୁନାଥ ମୁହୂର୍ତ୍ତକ ପାଇଁ ତାଙ୍କର ଦାରିଦ୍ର୍ୟ, ଚାକିରି ଓ ସ୍ୱାଧୀନ ଜୀବନ ଯାପନର କଣ୍ଟକାକୀର୍ଣ୍ଣ ପଥ—ବିସ୍ମରଣ ହୋଇ ଗୃହିଣୀଙ୍କ ହାତ ଧରି ପାଖକୁ ଟାଣିନେଇ କହିଲେ, "ରାଧା, ତମେ ନଥିଲେ ମୋର ଏ ଜନ୍ମ ବ୍ୟର୍ଥ ହୋଇ ଥାଆନ୍ତା ।"

ରାଧା ଅଧୋମୁଖ ହେଲେ ଓ ସାଧ୍ୟମତେ ତାଙ୍କର ବାହୁରୁ ଯଦୁନାଥଙ୍କର ବଜ୍ରମୁଷ୍ଟି ଅପସାରଣ କରିବାର ନିଷ୍ଫଳ ପ୍ରୟାସ କରୁ କରୁ କହିଲେ, ତମର ବୟସ ବଢୁଛି ନା କମୁଛି କହିଲ ?

କିନ୍ତୁ ଯଦୁନାଥଙ୍କର ମସ୍ତିଷ୍କର ନିୟୁତ କଳ୍ପନାକୋଷ ସେ ଦିନ ପକ୍ଷୀରାଜ ଘୋଡ଼ା ପରି ପକ୍ଷ ମେଲିଥିଲା ।

ବାରଣ୍ଡାରେ ଖଣ୍ଡେ ଶୀତଳ ପଟି ଉପରେ ଯଦୁନାଥ ଊର୍ଦ୍ଧ୍ୱମୁଖ ହୋଇ ଶୋଇ ରହିଥିଲେ ଓ ଗୃହିଣୀ ତାଙ୍କର ଗୋଡ଼ ଉପରେ ହାତରଖି ମୃଦୁଚାପ ଦେଉଥିଲେ । ନାରୀ ସ୍ୱାଧୀନତାର ସମର୍ଥକ ତଥା ସ୍ତ୍ରୀମାନଙ୍କ ଉପରେ ସ୍ୱାମୀମାନଙ୍କର କର୍ତ୍ତୃତ୍ୱ ଜାହିର୍ କରିବା ପ୍ରଥା ବିରୁଦ୍ଧରେ ଅନ୍ୟତମ ପ୍ରବକ୍ତା ଯଦୁନାଥ ତାଙ୍କର ଘରୋଇ ଜୀବନରେ ଯେ ଉପରୋକ୍ତ ବିଳାସଟିକୁ ଉପଭୋଗ କରନ୍ତି, ଏ କଥା କହିବା ବାହୁଲ୍ୟ ।

ଆକାଶରେ ଚନ୍ଦ୍ର ଖଣ୍ଡେ କଳା ବଉଦ ଭିତରୁ ବାହାରି ଆସିବା ପାଇଁ ପ୍ରବଳ ଉଦ୍ୟମ କରୁଥିଲା । ଦାରିଦ୍ର୍ୟର ସଁବାଳୁଆ ଖୋସା ଭିତରୁ ବାହାରି ଆସି ପ୍ରଜାପତି ପରି ଚିତ୍ରିତ ଡେଣା ମେଲେଇ ଉଡ଼ିବୁଲିବାର ପ୍ରବଳ ଆକାଂକ୍ଷା-ପୀଡ଼ିତ ଯଦୁନାଥଙ୍କର ଆଜୀବନ ସଂଗ୍ରାମ ପାଇଁ ଆଜିର ଚନ୍ଦ୍ର ଥିଲା ପ୍ରତୀକ ସ୍ୱରୂପ । ଆଉ ଅଳ୍ପଦିନ ପରେ ସେ ଆଇନ୍‌ର ଡିଗ୍ରୀ ଧରି ବାହାରି ଆସିବେ ସେକ୍ରେଟେରୀଏଟ୍‌ର କୁତ୍ସିତ ପରିବେଶ ଭିତରୁ । ଓକିଲାତି ଆରମ୍ଭ କରିବା ସଙ୍ଗେ ସଙ୍ଗେ ସେ ଭବିଷ୍ୟତର ରାଜନୈତିକ ଜୀବନ ପାଇଁ ମୂଳଦୁଆ ପକାଇବାକୁ ଆରମ୍ଭ କରିଦେବେ ଏବଂ ଓକିଲାତି ବ୍ୟବସାୟର ପ୍ରଥମ ଧକ୍‌କା କାଟି ଯେତେବେଳେ ସେ ସାମାନ୍ୟ ସ୍ୱଚ୍ଛଳ ଅବସ୍ଥାକୁ ଆସିଥିବେ ସେତେବେଳେ ଆଦ୍ୟ ମୌସୁମୀ ସେବିତ ମଟାଳ ବିଲମାଟି ପରି ତାଙ୍କର ନିର୍ବାଚନ ମଣ୍ଡଳୀ ପ୍ରସ୍ତୁତ ହୋଇ ରହିଥିବ ତାଙ୍କୁ ସ୍ୱାଗତ କରିବା ପାଇଁ ।

ନଡ଼ିଆ ଗଛର ମଥାନ ଉପରେ ଜହ୍ନ ଦୌଡ଼ିଚି ଘଣ୍ଟାକୁ ପଇଁତିରିଶ କିଲୋମିଟର ବେଗରେ । ହାଲୁକା ପବନରେ ଗୃହିଣୀଙ୍କର ଉତ୍ତରୀୟ ସାମାନ୍ୟ ଆନ୍ଦୋଳିତ ହେଉଛି ଏବଂ ଅର୍ଦ୍ଧନିମିଳିତ ନେତ୍ରେ ଯଦୁନାଥ ଅସାଡ଼ ହୋଇ ପଡ଼ିରହି କଳ୍ପନାର ଜାଲ ବୁଣି ଚାହିଁଛନ୍ତି । ଆଃ ! ତା ସାଙ୍ଗକୁ ଯଦି ଅକସ୍ମାତ୍ ମିଳିଯାଏ ରାଜସ୍ଥାନ ଲଟେରୀ ! ତାହାହେଲେ ଓକିଲାତି ଓ ରାଜନୈତିକ ଜୀବନରେ ଆଉ ତାଙ୍କୁ ଧରେ କିଏ ? ନିଜର ଖାଦ୍ୟ, ସହଧର୍ମିଣୀ ଓ ଜହ୍ନ ସବୁକୁ ଭୁଲିଯାଇ ଯଦୁନାଥ କେତେବେଳୁ କ୍ଳାନ୍ତ ହୋଇ ଶୋଇ ଯାଇଥିଲେ ।

କିନ୍ତୁ ଯଦୁନାଥ କେବଳ ଚିନ୍ତା କରୁଥିଲେ ତା' ନୁହେଁ, ସେ ସତକୁ ସତ ଭବିଷ୍ୟତର ସମସ୍ତ କାର୍ଯ୍ୟପନ୍ଥା ଯୋଜନାବଦ୍ଧ ଭାବରେ କରିବା ପାଇଁ ଉଦ୍ୟତ ହୋଇ ଉଠିଲେ । ଆଇନ୍ ପରୀକ୍ଷାର ଫଳ ତ ଯଥା ସମୟରେ ବାହାରିବ, କିନ୍ତୁ ଇତି ମଧ୍ୟରେ ତାଙ୍କର ଭବିଷ୍ୟତ କର୍ମସ୍ଥଳୀରେ ତାଙ୍କର ନାମର ପ୍ରସାର ପାଇଁ ତାଙ୍କୁ ଖୁବ୍ ତୁରନ୍ତ ଯୋଜନା କରିବାକୁ ପଡ଼ିବ ଏବଂ ଏ ଯୋଜନାର ପ୍ରଥମ କାର୍ଯ୍ୟସୂଚୀ ହେଲା ଖବରକାଗଜ ସ୍ତମ୍ଭରେ ନିଜର ନାଁକୁ ବାରମ୍ବାର ପ୍ରକାଶ କରି ନିଜକୁ ନିର୍ବାଚନ ମଣ୍ଡଳୀରେ ପରିଚିତ କରାଇବା ।

ସେ ଅତୀତରେ ତାଙ୍କର ଗ୍ରାମର ପରିସର ଭିତରେ ପୋଖରୀରୁ ଦଳ ସଫା କରିବା ଠାରୁ ଆରମ୍ଭ କରି ଅସ୍ପୃଶ୍ୟତା ନିବାରଣ ପର୍ଯ୍ୟନ୍ତ ନାନା ସମାଜସେବୀ କାର୍ଯ୍ୟକ୍ରମରେ ଭାଗ ନେଇଛନ୍ତି, କିନ୍ତୁ ତଥାପି ତାଙ୍କର ନାଁ ସାମ୍ବାଦିକମାନେ ପ୍ରକାଶ କରିବା ପାଇଁ ପ୍ରୟୋଜନୀୟ ମନେ କରି ନାହାନ୍ତି । ସ୍କୁଲର ପୁରସ୍କାର ବିତରଣୀ ଉତ୍ସବ ବା କ୍ରୀଡ଼ା ପ୍ରତିଯୋଗିତାରେ ରାଜନୈତିକ ଲୋକମାନଙ୍କ ନାଁ ବାହାରିଥାଏ ସିନା, କିନ୍ତୁ ଏ ସମସ୍ତ ଆୟୋଜନର ମୁଖ୍ୟ ପରିଚାଳକ ଯଦୁନାଥଙ୍କ ନାଁ ବାହାରି ନାହିଁ କସ୍ମିନ୍

କାଳେ । ଅଥଚ ଗାଁର ଅର୍ଦ୍ଧଶିକ୍ଷିତ ସରପଞ୍ଚଙ୍କ ନାଁ ଅନେକ ସମୟରେ ସମ୍ବାଦପତ୍ର ମଣ୍ଡନ କରିଥାଏ । ଯଦୁନାଥ ତାଙ୍କ ଗ୍ରାମର ସ୍ଥାନୀୟ ଅସୁବିଧା ଯଥା–ପାଣି ଅଭାବରୁ ଧାନ ଗଛ ମରିବା ଉପରେ, ଗ୍ରାମ୍ୟ ପୋଖରୀଟିରେ ମତ୍ସ୍ୟ ଉନ୍ନୟନ ଯୋଜନା ପ୍ରଭୃତି ଲେଖି ଦୀର୍ଘ ବିବୃତିମାନ ସମ୍ବାଦପତ୍ରମାନଙ୍କୁ ପଠାଇ ପଠାଇ ନିରୁତ୍ସାହିତ ହେଲେ ସିନା କିନ୍ତୁ ଥରେ ହେଲେ ସମ୍ବାଦପତ୍ରର କୃପାଦୃଷ୍ଟି ପଡ଼ିଲା ନାହିଁ । ମଧ୍ୟେ ମଧ୍ୟେ ତାଙ୍କ ନାଁ ସହିତ ସାମୂହିକ ଭାବରେ ଅନ୍ୟମାନଙ୍କ ନାଁ ଯୋଡ଼ି ମଧ୍ୟ ସେ ବିବୃତି ଛପାଇବାରେ ସମର୍ଥ ହୋଇ ନପାରି ଶେଷରେ ଉପସଂହାରରେ ଉପନୀତ ହୋଇଛନ୍ତି ଯେ ସମ୍ବାଦପତ୍ର, ସମ୍ପାଦକ ଓ ସାମ୍ବାଦିକମାନଙ୍କର ଏକ ଗଭୀର ଷଡ଼ଯନ୍ତ୍ର ଫଳରେ ତାଙ୍କର ନାଁକୁ ସମ୍ବାଦପତ୍ରରୁ ବାଦ୍ ଦିଆଯାଇଛି ।

ବନ୍ଧୁ ମହଲରେ ଯଦୁନାଥ କହିବାର ଶୁଣାଯାଏ, ‘‘ଅର୍ଥ ! ଅର୍ଥ ! ମୋର ଯଦି ସାମାନ୍ୟ ସ୍ୱଚ୍ଛଳ ଅବସ୍ଥା ଥାଆନ୍ତା ତାହାହେଲେ ମୁଁ ନିଜେ ଖବରକାଗଜ କାଢ଼ି ଏ ଦେଶରେ ସାମ୍ବାଦିକତାର ଏକ ନୂତନ ମାନ ନିର୍ଦ୍ଧାରିତ କରିପାରନ୍ତି ।’’ ଏହି କଥା କହୁଥିବା ସମୟରେ ତାଙ୍କର ସମ୍ପାଦକତ୍ୱରେ ପ୍ରକାଶ ପାଇଥିବା ସ୍ୱୟଂ ମୁଦ୍ରିତ ସର୍ବପ୍ରଥମ ଓ ସର୍ବଶେଷ ମାସିକ ପତ୍ରିକାଟିକୁ ହାତରେ ମୋଡ଼ି ଧରି ଏକ ଗୁରୁଜନ ସୁଲଭ ଭଙ୍ଗୀରେ ତାଙ୍କର ବାଁ ପାପୁଲି ଉପରେ ବାରମ୍ବାର ଆଘାତ କରୁଥାଆନ୍ତି । ‘‘ସମ୍ବାଦପତ୍ର କୁହ ମାସିକ ପତ୍ରିକା କୁହ ସମସ୍ତେ ଏକା ନାଉର ମଙ୍ଗି !’’ ଉତ୍କର୍ଣ୍ଣ ଶ୍ରୋତାମଣ୍ଡଳୀ ଆଗରେ ପତ୍ରିକାଟିକୁ ଖୋଲି ଧରି କୁହନ୍ତି ‘‘ମୋର ଏଇ ଗଳ୍ପ ମାସିକ ପତ୍ରିକାମାନେ ବାରମ୍ବାର ପ୍ରତ୍ୟାଖ୍ୟାନ କରିଛନ୍ତି ।’’

ଯଦୁନାଥ ଗତାନୁଗତିକ ଭାବରେ ସେକ୍ରେଟେରୀଏଟ୍ ଯାଇଥାଆନ୍ତି ଓ ଆସୁଥାଆନ୍ତି ସତ; କିନ୍ତୁ ଆଇନ୍ ପରୀକ୍ଷାର ଫଳାଫଳ ପାଇଁ ଓ ଖବର କାଗଜରେ ନାଁ ପ୍ରକାଶର ବ୍ୟର୍ଥତା ପାଇଁ ତାଙ୍କର ମନ ଯୁଗପଦ୍ ଆନନ୍ଦ ଓ ନିରାଶା ଭିତରେ ଦୋଳାୟିତ ହେଉଥାଏ ।

ଯେଉଁଦିନ ଆଇନ୍ ପରୀକ୍ଷାର ଫଳାଫଳ ପ୍ରକାଶ ପାଇଲା ସେଦିନ ଯଦୁନାଥ ସମ୍ବାଦପତ୍ର ସ୍ତମ୍ଭରେ ତାଙ୍କର ନାଁ ଦେଖି ଏକ ସ୍ୱାଧୀନ ଜୀବନର ନୂତନ ସ୍ୱାଦ ଅନୁଭବ କରି ଉଲ୍ଲସିତ ହୋଇ ଉଠିଲେ । ଆଉ ବିଳମ୍ବ କରିବା ଉଚିତ ନୁହେଁ, ଯଥାସମ୍ଭବ ଶୀଘ୍ର ଇସ୍ତଫାପତ୍ର ଦାଖଲ କରି ସେକ୍ରେଟେରୀଏଟ୍‌ର ଏହି ଦାସ ନଗରୀରୁ ମୁକ୍ତି ପାଇଲେ ରକ୍ଷା । ଯଦି ସେ କେବେ ସେକ୍ରେଟେରୀଏଟ୍‌କୁ ଭବିଷ୍ୟତରେ ଫେରନ୍ତି, ତାହାହେଲେ ସେ ଫେରିବେ ସେଇ ଶୀତତାପ ନିୟନ୍ତ୍ରିତ ନିଷିଦ୍ଧ କୋଠରୀ ଭିତରକୁ–ଯେଉଁଠି ମନ୍ତ୍ରୀମାନେ ଏ ଦେଶର ଭାଗ୍ୟ ନିୟନ୍ତ୍ରଣ କରନ୍ତି ।

ତରତରରେ ଇସ୍ତଫାପତ୍ର ଖଣ୍ଡିକ ଲେଖିଦେଇ ଯଦୁନାଥ ସିଧା ବାହାରି ପଡ଼ିଲେ ଡେପୁଟି ସେକ୍ରେଟେରୀ ନୀଳାଦ୍ରି ବିହାରୀ ଦାସଙ୍କ ପ୍ରକୋଷ୍ଠ ଭିତରକୁ । ଏକ ଦୃପ୍ତ ଭଙ୍ଗୀରେ କବାଟ ଖୋଲିଦେଇ ଯଦୁନାଥ ଭିତରକୁ ପଶିଗଲା ବେଳକୁ ନୀଳାଦ୍ରି ଭୂଷଣ ଖଣ୍ଡିଏ ଫାଇଲ ଉପରେ ମନୋନିବେଶ କରିଥିଲେ । ପ୍ରତିଟି ମୁହୂର୍ତ୍ତ ଯଦୁନାଥଙ୍କୁ ଗୋଟିଏ ଗୋଟିଏ ଯୁଗ ପରି ଲାଗୁଥାଏ କିନ୍ତୁ ନୀଳାଦ୍ରି ଭୂଷଣଙ୍କର ସ୍ଥିର ଆଖି ଫାଇଲ ଉପରେ ଗତି କରୁଥାଏ ବାଁ ପଟୁ ଡାହାଣକୁ । ଯଦୁନାଥ ଦୃଷ୍ଟି ଆକର୍ଷଣ କରିବାକୁ ଥରେ ଦୁଇଥର ଖଣ୍ଡି କାଶ ଦେଇଥିଲେ ମଧ୍ୟ ତାହାର କୌଣସି ଫଳ ହୋଇ ନଥିଲା ।

କିନ୍ତୁ ସଦ୍ୟପ୍ରାପ୍ତ ନୂତନ ସ୍ୱାଧୀନତାର ସ୍ୱାଦ ଯଦୁନାଥଙ୍କର ସ୍ନାୟୁ ଦେଇ ମସ୍ତିଷ୍କକୁ ଧାବମାନ ହେଉଛି ଏବଂ ତାଙ୍କର ଉତ୍ତେଜିତ ମସ୍ତିଷ୍କ କୋଷରୁ କିଏ ଜଣେ ଫିସ୍ ଫିସ୍ କରି କହିଲା, ''ଯଦୁନାଥ ପାଲଟା ସିଂ ! ତମେ ନାଁ କେବେ କେବେ ସିଂହ ପାଲଟି ପାର, କାହିଁ ତମର ସେ ଶକ୍ତି ? ତମେ ଚିରଦିନ କେବଳ ଯଦୁନାଥ ରହିଯିବ ।''

ଠିକ୍ ଏହି ସମୟରେ ନୀଳାଦ୍ରିବାବୁ ଫାଇଲଟାକୁ ବାଁ ହାତରେ ଧରି ତଳକୁ ଫିଙ୍ଗିଦେଲେ ଏବଂ ବୋର୍ଡ଼ ଫାଇଲଟା ମସୃଣ ସିମେଣ୍ଟ ଚଟାଣ ଉପରେ ଯେଉଁ ଶବ୍ଦ ସୃଷ୍ଟି କଲା ତାହା ଯଦୁନାଥଙ୍କୁ ମନେହେଲା ଯେପରି ସମଗ୍ର ଅମଲାତନ୍ତ୍ର ତାଙ୍କର ଗାଲରେ ଏକ ଶକ୍ତ ଚପେଟାଘାତ କଲା ।

ଯଦୁନାଥଙ୍କ ବେକ ପାଖରେ ହଠାତ୍ ସିଂହର କେଶର ପରି ଅସଂଖ୍ୟ ଅଦୃଶ୍ୟ କେଶର ଫୁଲି ଉଠିଲା ଏବଂ ନାସାପୁଟରେ ଖରନିଶ୍ୱାସ ପ୍ରବାହିତ ହେବାକୁ ଆରମ୍ଭ କଲା । ସେ ଯେତେବେଳେ ନୀଳାଦ୍ରି ଭୂଷଣଙ୍କର ଟେବୁଲ ଉପରେ ଏକ ବଜ୍ରମୁଷ୍ଟି ଆଘାତ କଲେ ତା'ର ପ୍ରଚଣ୍ଡ ଶବ୍ଦକୁ ସେ ନିଜକୁ ନିଜେ ମଧ୍ୟ ବିଶ୍ୱାସ କରିପାରିଲେ ନାହିଁ ।

ଏଇ ଆକସ୍ମିକ ବିସ୍ଫୋରଣରେ ନୀଳାଦ୍ରି ଭୂଷଣବାବୁ ପ୍ରାୟ ଚଉକିରୁ ଓଲଟି ପଡୁ ପଡୁ ରହିଗଲେ ଏବଂ ଆଗକୁ ଲକ୍ଷ୍ୟକରି ଦେଖିଲେ ଯେ ତାଙ୍କ ଟେବୁଲ ସେପଟେ ଗୋଟିଏ ଖର୍ବକାୟ ବ୍ୟକ୍ତି ଏକ ମୂର୍ତ୍ତିମନ୍ତ ସ୍ପର୍ଦ୍ଧା ପରି ଠିଆ ହୋଇ ରହିଚି । ଅଥଚ ନୀଳାଦ୍ରିବାବୁଙ୍କ ପରି କଡ଼ା ମିଜାଜ୍‌ର ହାକିମଙ୍କର ଏପରି ଅବସ୍ଥା ଦେଖି ଯଦୁନାଥଙ୍କୁ କେଜାଣି କାହିଁକି ହସ ମାଡ଼ିଲା । ସେ ହସଟାକୁ ଚାପିନବାକୁ ଯାଇ ବନ୍ଧୁତାର ସ୍ୱରରେ ସମ୍ଭାଷଣ କରି କହିଲେ, ''ମୁଁ ଏଠି ଆସି ଅନେକବେଳୁ ଠିଆ ହେଲିଣି ଯେ ।''

ନୀଳାଦ୍ରି ଭୂଷଣଙ୍କ କବାଟ ଖୋଲି ଜଣେ ସମ୍ବାଦପତ୍ର ରିପୋର୍ଟର ପଶି ଆସିଲେ । ଯଦୁନାଥ ତାଙ୍କୁ ଚିହ୍ନନ୍ତି ଏବଂ ତାଙ୍କର ପ୍ରବେଶ ଫଳରେ ଯଦୁନାଥ ଆହୁରି ଉତ୍ସାହିତ ହୋଇ କହିଲେ, ''ଆପଣଙ୍କର ଏଇ ବ୍ୟୁରୋକ୍ରାଟିକ୍ ମନୋଭାବ ହେତୁ ଏ ଦେଶରେ

କିଛି କାମକରି ହେଉ ନାହିଁ । ନୀଳାଦ୍ରିବାବୁ ତଥାପି ନୀରବ ରହି ଯଦୁନାଥଙ୍କର ମସ୍ତିଷ୍କ ଠିକ୍ ଅଛି କି ନାହିଁ ଠଉରେଇବାକୁ ଚେଷ୍ଟା କରୁଥିଲେ ଏବଂ କେତେବେଳେକେ କହିଲେ, ଆପଣଙ୍କର ମୁଣ୍ଡ ଠିକ୍ ଅଛି ତ ଯଦୁବାବୁ ?''

ଯଦୁବାବୁଙ୍କ ହାତକୁ ଯେମିତି ସ୍ୱର୍ଗର ଚାନ୍ଦ ଆସିଲା । -

''ମୋର ମୁଣ୍ଡ ଠିକ୍ ନାହିଁ—ଆମର ମୁଣ୍ଡ ଠିକ୍ ନାହିଁ । ତାହାହେଲେ ଏ ସେକ୍ରେଟେରୀଏଟ୍‌ଟା ଚଳୁଚି କେମିତି ? (ଇତିମଧ୍ୟରେ ପାଟିତୁଣ୍ଡ ଶୁଣି କେତେଜଣ ଅମଲା ମଧ୍ୟ ଘର ଭିତରକୁ ପଶି ଆସିଲେଣି) ସେମାନଙ୍କୁ ସାକ୍ଷୀ କରି ଦ୍ୱିଗୁଣ ଉତ୍ସାହରେ କହିଚାଲିଛନ୍ତି ଯଦୁନାଥ—

ଦେଖ ହୋ ! ଏଗାରଟାରେ ଆସି ଗୋଟାଏ ବେଳେ ଯିବେ ଲଞ୍ଚ୍ ଖାଇ ପୁଣି ତିନିଟାବେଳକୁ ଆସି ଯାଙ୍କର ଚା' ଖାଇବାବେଳ ହୋଇଯିବ ଚାରିଟାବେଳକୁ ଅଥଚ ଆମର କୁଆଡ଼େ ମୁଣ୍ଡ ଠିକ୍ ନାହିଁ । କ'ଣ ନିଜକୁ ଭାବିଛନ୍ତି ଏଇ ଆଇ.ଏ.ଏସ୍. ଅଫିସରମାନେ !

ଜହର୍‌ଲାଲ୍....ଜହର୍‌ଲାଲ୍ ଯାଙ୍କୁ ଏ ସୁବିଧା ନ ଦିଏ କି ଏମାନେ ନବାବି ନ ଦେଖାନ୍ତି ।

ଯଦୁନାଥ ଆଶା କରିଥିଲେ ଉପସ୍ଥିତ ଅମଲାବୃନ୍ଦ ତାଙ୍କର ଉତ୍ତପ୍ତ ବକ୍ତୃତାରେ ଏକତ୍ରିତ ହୋଇ ତାଙ୍କୁ ନେତା କରିବେ ଓ ସେକ୍ରେଟେରୀଏଟ୍‌ରେ ଚାଲିବ ମାଇଲି ମାଇଲି ଧରି ଲମ୍ୱା ଅମଲା ଶୋଭାଯାତ୍ରା ଏବଂ କଲମ ଛାଡ଼ କରି ସେମାନେ ସିଧା ଚାଲିବେ ବସ୍ ଷ୍ଟାଣ୍ଡର ଖୋଲା ମଇଦାନକୁ—ଯେଉଁଠାରେ ମାଇକ୍ ଯୋଗେ ଯଦୁନାଥ ତାଙ୍କର ଅବଶିଷ୍ଟ ବକ୍ତବ୍ୟ ସମାପ୍ତ କରିବେ । କିନ୍ତୁ ଫଳ ହେଲା ଦୁଇଜଣ ଅମଲା ଯଦୁନାଥଙ୍କ ଦୁଇ ହାତକୁ ଧରି ଘର ବାହାରକୁ ନେଇଯିବାର ଉପକ୍ରମ କଲେ । ସେତେବେଳେ ମଧ୍ୟ ଯଦୁନାଥ ଅମଲାମାନଙ୍କ ବିରୁଦ୍ଧରେ ଅଭିସମ୍ପାତ ବର୍ଷଣ କରିବାକୁ ଛାଡ଼ି ନ ଥିଲେ । ତା'ପରେ ଅବଶ୍ୟ ତାଙ୍କୁ ଆମ୍ବୁଲାନ୍‌ସ ଯୋଗେ ଡାକ୍ତରଖାନାକୁ ନିଆଯାଇ ତା'ର କିଛି ଘଣ୍ଟା ପରେ ଡିସ୍‌ଚାର୍ଜ କରି ଦିଆଯାଇଥିଲା । ଡାକ୍ତରଙ୍କ ପରାମର୍ଶ ଅନୁଯାୟୀ ତାଙ୍କୁ କେବଳ ପାନେ ବ୍ରୋମାଇଡ୍ ମିକ୍‌ସଚର ଖାଇବାକୁ ଦିଆଗଲା ।

ଡାକ୍ତରଖାନା ଫାଟକ ପାଖେ ପହଞ୍ଚି ଯଦୁନାଥ ଦେଖିଲେ ଯେ ତାଙ୍କ ଚାରିପଟେ କେହି ଜଣେ ହେଲେ ସହକର୍ମୀ ନାହିଁ । ତେଣୁ ସେ ଏକୁଟିଆ ଚାଲି ଚାଲି ଘରକୁ ଫେରୁ ଫେରୁ ଭାବୁଥିଲେ, ଯାହାହେଉ ସେକ୍ରେଟେରୀଏଟ୍ ଛାଡ଼ିବାର ଫିନିସିଂ ଟଚ୍‌ଟା ଖୁବ୍ ନାଟକୀୟ ହେଲା । କାଲିର ସମ୍ବାଦପତ୍ର ଜରିଆରେ ସମସ୍ତେ ଜାଣିବେ ଯେ ଜଣେ

ସ୍ୱାଧୀନ ଚେତା ଅମଲା ଅଫିସର୍‌ଗୋଷ୍ଠୀ ବିରୁଦ୍ଧରେ ପ୍ରତିବାଦ କରି ଇସ୍ତଫା ଦେଲା । ଲୋକେ ଜାଣନ୍ତୁ, ଲୋକଙ୍କର ସାହସ ବଢୁ ।

ଘରେ ପହଞ୍ଚି ଯଦୁନାଥ ଅପେକ୍ଷାକୃତ ସହଜ ଶୋଇ ପଡ଼ିଲେ ଓ ସେକ୍ରେଟେରୀଏଟ୍ ଘଟିତ ବ୍ୟାପାରକୁ ଉପଯୁକ୍ତ ସମୟ ଦେଖି ସହଧର୍ମିଣୀଙ୍କୁ କହିବାକୁ ମୁଲତବୀ ରଖିଲେ ।

ସକାଳୁ ଯଦୁନାଥ କପେ ଚା' ଖାଇ ବାରଣ୍ଡାରେ ପଇଁତରା ମାରୁଥିଲେ । ତାଙ୍କର ମନେ ହେଉଥାଏ ଯେପରି ସେଦିନ ଖବରକାଗଜବାଲା ଆସିବାକୁ ଅନେକ ଡେରି କରୁଚି । ଖବରକାଗଜବାଲା ଆସି ପହଞ୍ଚୁ ନ ପହଞ୍ଚୁଣୁ ଉତ୍କଣ୍ଠିତ ଯଦୁନାଥ ତିନିଖଣ୍ଡ ଯାକ ଓଡ଼ିଆ ଖବରକାଗଜ କିଣି ନେଇ ବିଛଣା ଉପରେ ବସିପଡ଼ି ଚଷମା ଲଗେଇ ଦେଇ କାଗଜ ଖୋଲୁ ଖୋଲୁ ଡାକଦେଲେ, ''ହଇଓ ଖଣ୍ଡେ ପାନ ଦେବ ?''

ପ୍ରଥମେ ଯଦୁନାଥ ମାତୃଭୂମିଟା ଖୋଲି ବସିଲେ । ସ୍ତମ୍ଭ ଗୁଡ଼ିକ ଉପରେ ଟିକିଏ ଦୃଷ୍ଟି ନିକ୍ଷେପ କରି ଖୋଜୁ ଖୋଜୁ ସମ୍ବାଦଟାକୁ ଶେଷ ପୃଷ୍ଠାରେ ଠାବ କଲେ ।

ଲେଖାଅଛି—

''ସେକ୍ରେଟେରୀଏଟ୍‌ରେ ଉତ୍ତେଜନା''

[ନିଜ ପ୍ରତିନିଧିଙ୍କ ଠାରୁ]

ଆଜି ପ୍ରାୟ ଦିନ ଦୁଇଟାବେଳେ ଶ୍ରମ ବିଭାଗ ଡେପୁଟି ସେକ୍ରେଟେରୀ ଶ୍ରୀ ନୀଳାଦ୍ରିଭୂଷଣ ହରିଚନ୍ଦନ ଆଇ.ଏ.ଏସ୍.ଙ୍କର ଦପ୍ତର ଭିତରେ ପଶି ଜଣେ ବିଭାଗୀୟ ଅମଲା ଅବାନ୍ତର ପାଟିତୁଣ୍ଡ ଆରମ୍ଭ କରିବା ଫଳରେ ଅନ୍ୟାନ୍ୟ ଅମଲାମାନେ ତାଙ୍କୁ ଟାଣି ଆଣି ଅବସ୍ଥା ଆୟତ୍ତାଧୀନ କରିଥିଲେ । ପରେ ପରେ ଉକ୍ତ ଅମଲାଙ୍କୁ ଆମ୍ବୁଲାନ୍‌ସ ଯୋଗେ ଡାକ୍ତର ମାଇନା ପାଇଁ ପଠାଯାଇଥିଲା । ତାଙ୍କର ଚାଲିଚଳନ ଆଗରୁ ଟିକିଏ ଅସ୍ୱାଭାବିକ ଥିବା ପ୍ରକାଶ ।

ଯଦୁନାଥ କାଗଜଟାକୁ ବିରକ୍ତିରେ ଫିଙ୍ଗି ଦଉ ଦଉ କହିଲେ, ''ଦଲାଲ୍—ସବୁ କାଗଜ ଦଲାଲ୍, ଏ ପ୍ରକାର ସ୍ୱାଧୀନ ମନୋବୃତ୍ତି ସେମାନଙ୍କର ମନରେ ମଧ୍ୟ ଆତଙ୍କ ସୃଷ୍ଟି କଲାଣି....ହ୍ୟାପ ସମ୍ବାଦପତ୍ର !''

ତତ୍‌ପରେ ସମାଜ ଓ ପ୍ରଜାତନ୍ତ୍ରରେ ଅନେକ ସମୟ ଧରି ଯଦୁନାଥ ମନୋନିବେଶ କଲେ । ସ୍ତ୍ରୀ କହିଲେ, ''ପାନ ଧରି ଅଧଘଣ୍ଟାଏ ହେଲା ଠିଆ ହେଲିଣି, ନିଅ, ମୋର ସିଆଡ଼େ କାମ ଅଛି ।''

ଯଦୁନାଥ ଖିଙ୍କାରି ଉଠି କହିଲେ—

''ତମର କ'ଣ ଆଖି ନାହିଁ ମୁଁ ପରା କାଗଜ ପଢୁଚି—ଥୋଇ ଦେଇ ଯିବାକୁ ବୁଦ୍ଧି ଦିଶୁନି ।''

ପୁଣିଥରେ ସ୍ତମ୍ଭ ପରେ ସ୍ତମ୍ଭ ଦେଖି ଚାଲିଲେ । କେତେବେଳେ ହତାଶାର ସ୍ୱରରେ କହିଲେ ନା....ସବୁ କାଗଜ ଆଇ.ଏ.ଏସ୍.ଙ୍କ ବୁକୁଚାବୁହା । ଘର ଭିତରୁ ଗୃହିଣୀଙ୍କର ଅନୁନାସିକ ସ୍ୱର ଶୁଭୁଥିଲା–

''ମଲା ଯା'ଙ୍କର ନାକ ଅଗରେ ରାଗ । କାଗଜ ପଢୁ ପଢୁ କ'ଣ ପାନ ଖଣ୍ଡେ ନେଇ ହବ ନାଇଁ । କାଗଜରେ ତ ଘର ଭର୍ତ୍ତି ହେଇଗଲାଣି... ।''

ଯଦୁନାଥ କେବଳ ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗକଲେ ।



# ରକ୍ତକଇଁ

ତ୍ରୈଲୋକ୍ୟର ହଠାତ୍ ନିଦ ଭାଙ୍ଗିଗଲା ।

ଭାଦ୍ର ମାସର ପାଣିଖରା ଆଖି ଜଳକା କରିଦେଉଛି । ଦୁଇ ହାତର ପାପୁଲିରେ ଆଖି ଦୁଇଟାକୁ ଘୋଡ଼େଇ ନେଲା ସେ । ଆଙ୍ଗୁଠିର ଫାଙ୍କ ଦେଇ ଅଳ୍ପ ବାହାରକୁ ଚାହିଁ, ସେ ପରିବେଶଟାକୁ ହୃଦୟଙ୍ଗମ କରିବାକୁ ଚେଷ୍ଟା କରୁଥିଲା । ସେଇ ଖଣ୍ଡିତ ଦୃଷ୍ଟିରେ ସେ ଜାଗାଟାକୁ ମୋଟେଇ ଚିହ୍ନିପାରୁ ନ ଥିଲା । ସେମିତି ଶୋଇ ରହି ସେ ଗତ ରାତିର କଥାଗୁଡ଼ାକୁ ସ୍ମରଣ କରିବା ପାଇଁ ଆପ୍ରାଣ ଚେଷ୍ଟା କରୁଥିଲା । କିନ୍ତୁ ନାଃ ! କିଛି ହେଲେ ମନେକରି ପାରୁନାହିଁ । ଦେଶୀ ମହୁଲୀ ମଦ ତା'ର ମୁଣ୍ଡଟାକୁ ପୂରାପୂରି ଜାମ୍ କରିଦେଇଛି । ଏପରି କି ମୁଣ୍ଡ ଟେକିବା ମଧ୍ୟ ସମ୍ଭବ ନୁହେଁ । ଯଦି ତାକୁ ନିତାନ୍ତ ଉଠିବାକୁ ପଡ଼ିବ, ତାହାହେଲେ ବେକର ପଛପଟେ ଦୁଇ ହାତର ଆଙ୍ଗୁଠି ଛନ୍ଦି ଗୋଟାଏ ଝଟ୍କାରେ ତା'ର ଦେହକୁ ଏକାଥରକେ ଅଣ୍ଟା ପାଖରୁ ବଙ୍କେଇ ଉଠିବାକୁ ପଡ଼ିବ । କିନ୍ତୁ ଏତେ ପ୍ରକାର କସରତ୍ କରିବାକୁ ତା'ର ଆଦୌ ସ୍ପୃହା ନ ଥିଲା । ଚାରିପଟେ ଅନେକ ଲୋକଙ୍କର କୋଳାହଳ । ସେ କୋଳାହଳକୁ ଘୃଣା କରେ । କିନ୍ତୁ ପ୍ରତିଦିନ ସକାଳେ ଏଇ ପାହାନ୍ତିଆ ନିଦ ବେଳେ, ଯାହା ଠିକ୍ ଲାଗେନା କି ଛାଡ଼େନା,- ତା' ନିଜ ଘରେ ମଧ୍ୟ ଏଇ କୋଳାହଳ ହୁଏ । ତା'ର ଡାହାଣ ବାହୁ ଉପରେ ମୁଣ୍ଡ ରଖି ଆଖି ବୁଜି ସେ ଘରର ପ୍ରତ୍ୟେକଟି ଶବ୍ଦକୁ ଠଉରେଇ ଠଉରେଇ ଚାଲିଥାଏ । ଏଇ, ମିତ୍ରା ଷ୍ଟୋଭ୍ ଧରଉଛି ଏବଂ ଷ୍ଟୋଭ୍‌ର ୱାସର୍‌ଟା ଅନେକ ଦିନର ପୁରୁଣା ହେଇଯାଇଥିବା ଫଳରେ ପମ୍ପଟା ଠାଇ ଠାଇ ହେଇ ଷ୍ଟୋଭ୍ ଦିହରେ ପିଚି ହେଉଛି, ଆଉ ଟିକିଏ ପରେ ମିତ୍ରା ଅନୁନାସିକ ସ୍ୱରରେ ନାଲିସ ଆରମ୍ଭ କରିବ, ''ମାଆ, ଏ ୱାସର ଆଉ ଚଳିବ ନାହିଁ—କେତେଥର ଭାଇକି କହିଲିଣି ଗୋଟାଏ ୱାସର୍ କିଣି ଆଣିବାକୁ, ସିଏ କାହିଁକି ଟିକିଏ ମୋ କଥାକୁ କେଆର୍ କରନ୍ତା ।'' ଦୁଇ ତିନି ସେକେଣ୍ଡ ନୀରବତା ପରେ ମାଆ କହିବେ, ''ତା'ର ଯାଉଚି କେତେ ଆସୁଚି କେତେ । ସକାଳୁ ଦି' କପ୍ ଚା' ହେଇଗଲେ ତା' କାମ ଛିଣ୍ଡିଗଲା, ଅନ୍ୟମାନଙ୍କ ପାଇଁ ତା' ମୁଣ୍ଡ ବଥେଇବ କାହିଁକି ?'' ତା'ପରେ କିଛି ସମୟ ଖୁବ୍ ଚୁପ୍ ଚାପ୍, ଯେପରି ନିର୍ଜନ ହିମ ଶୀତଳ ତୁନ୍ଦ୍ରା ଅଞ୍ଚଳରେ ଅବିରତ ତୁଷାରପାତ ହଉଚି, ଅଥଚ ଶବ୍ଦ ନାହିଁ । ତା'ପରେ ବାପା କାଶିବେ ଆଉ ଡାକିବେ, ''ହଇଓ ଶୁଣୁଚ, ନକୁଳ ବାବୁ ପେସ୍କାରଙ୍କ

ପୂଅ ବର୍ଣ୍ଣ କମ୍ପାନୀରେ ଚାକିରି ପାଇଗଲା ।'' ପୁଣି ନୀରବତା ଓ ତୁଷାରପାତ । ସୀତୁ, ଧୂନା, ମୀନା ଉଠିଲେଣି । ସେମାନେ ଖାଲି ମୂଷା ଛୁଆ ପରି ଖଟର ଉପରକୁ, ତଳକୁ ହଉଛନ୍ତି । କି ଖିଲ୍ ଖିଲ୍ ହସ !

ତଥାପି ଆଖି ବନ୍ଦ କରି ତ୍ରୈଲୋକ୍ୟ ଦାନ୍ତରେ ଓଠ କାମୁଡ଼ି ଧରି ମନେ ମନେ ଉଚ୍ଚାରଣ କରେ, 'ଷ୍ଟୁପିଡ୍' । କଅଣ ପାଇଁ ହସୁଚ, କଲେଇ ଛାଡ଼ି ଯାଇଥିବା ଏନାମେଲ୍ ବାଟିରେ ଅଧ ଅଧ ବାଟିଏ ନାଲି ଚା'–ଏଇଥିପାଇଁ ଏଡ଼େ ହସ ? ତ୍ରୈଲୋକ୍ୟ କର ମୋଡ଼େ । ଇସ୍ ! ଗୋଟିଏ କିଏ ମୂତି ଦେଇ ବିଛଣାକୁ ପୂରା ଓଦା କରି ଦେଇଛି । କେତେଦିନ ଆଉ ଏଇ ସନ୍ତସନ୍ତିଆ ଅନ୍ଧାରୁଆ ଘର ଭିତରେ ତାକୁ ଜୀବନ କଟାଇବାକୁ ପଡ଼ିବ ? ଷ୍ଟୋଭ୍‌ଟା ପ୍ରଚଣ୍ଡ ଗର୍ଜ୍ଜନ କରି କେଟ୍‌ଲିକୁ ଉତ୍ତପ୍ତ କରୁଛି । ଗାଆଁ ହାଟକଡ଼ର ଟୁଙ୍ଗି ଚାହା ଦୋକାନର ଚାହା କେଟ୍‌ଲି ପରି ଏଇ କେଟ୍‌ଲିଟିରେ ବି ମଇଳା ବୋଳ ବସି ଚର୍ବି ଜମି ଗଲାଣି । ମିତ୍ରାର ପୁଣି ସେଇ ଅନୁନାସିକ ସ୍ୱର, ''ଏଇ ଉଠ, ଚା' ନେ–, ଥଣ୍ଡା ହେଇଯିବ ।

ଯାଉ ଥଣ୍ଡା ହେଇ । ଗୁଣ୍ଡ ଚା'ର ନାଲିଚିଆ ନାଲିଚିଆ କଷା ପାଣି ପାଇଁ ନିଦଟା ଭାଙ୍ଗିବ କିଏ ? ଏଇ ନିଦଟକ ତ ସବୁ । ନିଦ ଭିତରେ ସବୁ ଯନ୍ତ୍ରଣାର ଅବସାନ ହୁଏ । କେଇଟୋପା ପାଣି ଆସି ଉପରେ ପଡ଼ିଲା, ଧୁତ୍‌ତେରୀ । କେତେଥର କହିଚି ପାନିଆଟାକୁ ସେମିତି ଛାଟିବୁ ନାହିଁ ବୋଲି । ଯେତେ ଜାନୁଆର୍ ସମସ୍ତେ ଏଇ ଘରେ । ପୁଣି ସେଇ ନୀରବତା । ତ୍ରୈଲୋକ୍ୟଯେତେ ଖେଙ୍କିକରି କଥା କହିଲେ ବି କାହାର ପ୍ରତିବାଦ କରିବାର ସାହସ ନାହିଁ । ସାହସ ନାହିଁ ଓ ଦୈହିକ ସାମର୍ଥ୍ୟ ବୋଧହୁଏ ନାହିଁ । ସେଇ ନୀରବତା, ସେଇ ତୁଷାରପାତ । କେତେବେଳେକେ ଦୟା ହୁଏ ତ୍ରୈଲୋକ୍ୟର, ମିତ୍ରା ବି କଅଣ କରିବ ଆଉ ? ବାର ଫୁଟରେ ବାର ଫୁଟର ଦୁଇତାଲା ଉପରେ ଖଣ୍ଡିଏ ଘର । ତା' ଭିତରେ ଦି' ଦି'ଟା ତକ୍ତପୋଷ, ବାପାଙ୍କର ତେଲ ଚିକିଟା କନା ଆରାମଚୌକି, ଖଟ ତଳଯାକ ରଙ୍ଗଛଡ଼ା; କଳଙ୍କ ଲଗା ଟିଣ ଟ୍ରଙ୍କ୍ ସୁଟ୍‌କେଶର ଜଞ୍ଜାଳ, ଖଣ୍ଡିଏ କାଠ ସେଲ୍‌ଫ ଭିତରେ ଚା' ସରଞ୍ଜାମ, ବାସନ-କୁସନ, ବାପାଙ୍କର ମହାଭାରତ, ରାମାୟଣ, ମାଆର ଲକ୍ଷ୍ମୀପୁରାଣ ଏମିତି ଆଉକେତେ କଅଣ । ସେଲ୍‌ଫ ଉପରେ ଚାରିଖଣ୍ଡ ଫଟ, ଚନ୍ଦନ ଆଉ ସିନ୍ଦୂରରେ ପୋତି ହେଇ ପଡ଼ିଲାଣି । ସେଠି କିଏ କିଏ ଥିଲେ, ତ୍ରୈଲୋକ୍ୟ ଠିକ୍ ମନେ କରି ପାରୁ ନାହିଁ । କିନ୍ତୁ ସେଇ ପିଲାଦିନୁ ଗଣେଶ ଫଟଟା ମନେ ଅଛି । ଭାରି ଇଣ୍ଟରେଷ୍ଟିଙ୍ଗ୍ ଗଡ୍ । ଏକ ଖର୍ବକାୟ, ପୃଥୁଳୋଦର ମଣିଷର ହାତୀ ମୁଣ୍ଡ । ପିଲାଦିନେ ତା'ର ଛୋଟ ଛୋଟ ଶିଶୁ ପାପୁଲି ଦୁଇଟିକୁ ଏକତ୍ରିତ କରି ଅତ୍ୟନ୍ତ ମନଯୋଗ ସହକାରେ ସେ ବୋଲୁଥିଲା, ନମୋଃ ଗଣେଶ ବିଘ୍ନେଶ....ଉଁ ଉଁ ଆଉ ମନେ ପଡୁ ନାହିଁ । ବହୁତ ବିଦ୍ୟା, ଅନେକ ସିଦ୍ଧି, ସିଦ୍ଧିଦାତା

ଦାନ କଲେ । ଗଲା ଇଣ୍ଟରମିଡ଼ିଏଟ୍ ପରୀକ୍ଷାରେ ମାସ୍ କପି କରାଯିବ ବୋଲି ସଙ୍କଳ୍ପ କରାଯାଇଥିଲା, କିନ୍ତୁ ଶଃ-ଡାଇସ୍‌ଚାନ୍‌ସେଲର୍ ସେ ସୁଯୋଗ ଦେଲା କୁଆଡୁ ?

ବାହାରେ ଚମଡ଼ା ଯୋତାର ମଚ୍ ମଚ୍ ଶବ୍ଦ ଶୁଣାଯାଉଛି । ଗୋଟିଏ ଲୁହାର କବାଟ ଶବ୍ଦ କରି ଖୋଲୁଛିଆଉ ବନ୍ଦ ହଉଚି । ପୁଣି ଥରେ ଭାବିଲା ତ୍ରୈଲୋକ୍ୟ, କି ଜାଗା ଏଇଟା ? ଯୋ' ଜାଗା ହେଲେ ବି ଯାଏ କେତେ ଆସେ କେତେ । କୋ' କଚିରୀ ବରଖାସ୍ତ ହେଇଯାଉଚି ? ସେଇ ଗଣିଆ ଦୋକାନରେ ଭାଲୁ, ଲଡୁ, ବିଷ୍ଣୁ, ଏଇସବୁ ଆସି ଆଡ୍‌ଡ଼ା ଜମେଇଥିବେ । ଅଧ ଅଧ କପେ ଚା' ଖଣ୍ଡେ ବିଡ଼ିକୁ ଦି' ଦି' ପୁଳା କରି ତିନିଜଣ ଟାଣୁଥିବେ ଆଉ ଖବର କାଗଜରେ ବିଜ୍ଞାପନ ନୋଟିସ୍ ଖୋଜା । ପୁଣି ଥରେ ଦୁଇ ହାତର କୁଣ୍ଡଳୀ ଭିତରେ ମୁଣ୍ଡ ଗୁଞ୍ଜି ଦେଇ ତ୍ରୈଲୋକ୍ୟ ନିକଟ ଅତୀତକୁ ରୋମନ୍ଥନ କରିବାକୁ ଲାଗିଲା ।

ଏଇ ବାର ଫୁଟରେ ବାର ଫୁଟ ଘର ଭିତରେ ସାତଜଣ ଲୋକଙ୍କର ସଂସାର ବଢ଼ିବାକୁ ଲାଗିଲା । ପିଲାମାନେ ବଡ଼ ହେଲେ । ଗୁଣ୍ଡ ଚାହାର ପ୍ୟାକେଟ୍ ତିନିରୁ ପାଞ୍ଚ ଦରକାର ପଡ଼ିଲାଣି । ତା' ଗୋଡ଼ ଦୁଇଟା ତା' ଅଜାଣତରେ ଖଟର ବାଡ଼ାକୁ ଅତିକ୍ରମ କରିଗଲାଣି । କିନ୍ତୁ ବାପା ମାଆ ଯେମିତି ଥିଲେ ସେମିତି ଅଛନ୍ତି । ବୁଢ଼ା ହେଇଯିବାଟା ବୋଧହୁଏ ଗୋଟାଏ ସ୍ଥିତାବସ୍ଥା । ଯେମିତି ଗପରେ କୁହାଯାଏ ବୁଢ଼ା ରାଜା ମରିଗଲେ, ଯେପରି ବୁଢ଼ା ରାଜାଙ୍କର ମରିବା ବ୍ୟତୀତ ଆଉ କିଛି କାମ ନଥିଲା । କିନ୍ତୁ ମିତ୍ରାକୁ ଗେଲ କରିବାର ବୟସ ଅନେକ ଦିନୁ ଅତିକ୍ରମ କରିଗଲାଣି । ତା'ର ଛାତିରେ ଯଥେଷ୍ଟ ମାଂସ ବୃଦ୍ଧି ପାଇଲାଣି । ସିଏ କଅଣ କଅଣ ସବୁ କରେ ? ଦାନ୍ତରେ ଶାଢ଼ୀ କାମୁଡ଼ି ଧରି ଲୁଗା ବଦଳାଏ, ପିଠି ପଟେ ଦି'ଟା ଦଉଡ଼ିରେ ଶକ୍ତ କରି ଗଣ୍ଠି ପକାଏ, ମାଆକୁ କହେ ସାୟା ଚିରି ଗଲାଣି । କିଛି କିଛି ସ୍ନୋ' ପାଉଡ଼ର୍ ଲଗାଏ ଆଉ ଦି' ଫୁଟିଆ ପଲସ୍ତରା ଛଡ଼ା ଇଟା କାନ୍ଥିନୀ ବାଲ୍‌କନି ଉପରେ ଠିଆହୋଇ ଅନାଏ । ଗୋଟାଏ ବେଆଡ଼ିଆ ଟିଉସନ୍ ମାଷ୍ଟର୍ ଗୀତ ଶିଖଉଥିଲା କିଛି ଦିନ । ଓଃ ! ସେ ଦଦରା ହାର୍‌ମୋନିଅମ୍‌ଟାରେ କି ପେଁ ପେଁ ଶବ୍ଦ । ଦିନେ ସନ୍ଧ୍ୟାବେଳେ ବାପା ସେ ମାଷ୍ଟ୍ରଟାକୁ ଗାଳିଦେଇ ବିଦା କରିଦେଲେ । ସେଇଦିନୁ ଆମ ଘରେ ଗାନ୍ଧର୍ବ ବିଦ୍ୟା ଶିକ୍ଷା ସ୍ଥଗିତ ରହିଛି । ଗୋଟାଏ ଜଞ୍ଜାଳ ଗଲା ।

ତା' ପାଖରେ ଏକା ଖଟରେ ଶୋଇବାକୁ ମିତ୍ରା ଦ୍ୱିଧା କରୁଛି, କିନ୍ତୁ କଅଣ ବା ଉପାୟ ଅଛି ? ବାର ଫୁଟ୍‌ରେ ବାର ଫୁଟ୍ ଘର । ତା' ଭିତରେ ଖୁଣ୍ଟ ପରି ଗୋଟାଏ ବୁଢ଼ା, ଗୋଟାଏ ବୁଢ଼ୀ ଓ ପାଞ୍ଚ ପାଞ୍ଚଟା ପିଲା ବଢୁଛନ୍ତି, ବୟସରେ, ମାଂସରେ ଓ ମନରେ । ତେଣୁ ତା' ପାଖରେ ମିତ୍ରାକୁ ଶୋଇବାକୁ ପଡ଼ିବ । ଲଜ୍ଜା, ସଙ୍କୋଚ, ଦ୍ୱିଧା

ଅନେକଟା ଅଭ୍ୟାସଗତ । ଥରେ କଟିଗଲେ ଯାଏ ।ମିତ୍ରାର ତା' ମଧ୍ଧ କଟିଗଲାଣି । ଅନାୟାସରେ ପିଠି ମଝିକି ହାତ ବଙ୍କେଇ ଆଙ୍ଗୁଠିରେ ବ୍ରା'ର ଷ୍ଟ୍ରପ୍ ମୁକୁଳା କରୁଚି, ସାୟା ବଦଳଉଛି, ଛୋଟ ପିଲାମାନଙ୍କୁ ଧମକ ଦେଇ କହୁଚି, "ଏଇ....ସମସ୍ତେ ଲାଇନ୍ କରି କାନ୍ଥ ଆଡ଼କୁ ମୁହଁ କରି ଠିଆ ହୁଅ । ମୁହଁ ବୁଲେଇଲେ ଏକ ଚଟକଣା ମାରିବି ।" ଅନେକ ସମୟରେ ଘର ଭିତରେ ବିନା ସାୟାରେ ବୁଲାଚଲା କରେ । ଝରକା ପାଖରେ ଠିଆ ହେଲେ ଦିହର ପରିଧି ପ୍ରାୟ ଆଖିରେ ପଡ଼େ । ମିତ୍ରାର ସେ ସବୁକୁ ଆଉ ପରବାୟ ନାହିଁ । ଧୀରେ ଧୀରେ ଆମେ ଏତେ ଗୁଡ଼ାଏ ଜୀବନ୍ତ ମଣିଷ ମିତ୍ରା ପାଇଁ, ଘରର ଆସବାବ ପତ୍ର ପରି ମୂକ, ଅନ୍ଧ ଓ ସ୍ଥାଣୁ ହେଇଗଲୁଣି ।

ମିତ୍ରା ଯା' ଭିତରେ ବେଶ୍ ସ୍ୱାଧୀନ ହେଇଗଲାଣି । ଇଚ୍ଛା ଅନୁସାରେ ଘରୁ ବାହାରକୁ ଯାଉଚି, ଆଉ ସମୟ ଅସମୟରେ ଘରକୁ ମଧ୍ଧ ଫେରୁଛି । ଆଉ ବାପା ବା' ମାଆଙ୍କର ଲୌକିକ ଅନୁମତି ଟିକକ ନବା ମଧ୍ଧ ତା'ର ପ୍ରୟୋଜନ ପଡ଼େ ନା । ଏପରିକି ବାପା, ମାଆ ମିତ୍ରା ସହିତ ସମୀହ କରି କଥାବାର୍ତ୍ତା ଓ ବ୍ୟବହାର କରୁଛନ୍ତି । ଏବେ ଆଉ ମିତ୍ରା ଚା' କରେନା, ନିଜର ପ୍ରସାଧନ କରୁ କରୁ ମାଆକୁ କୁହେ, "ମାଆ, ଟିକେ ଚା' କରି ଦେ' ନା", ଆଉ ମାଆ ବି ହୁତୁ ବୁତୁ ହେଇ ଷ୍ଟୋଭ୍ ଧରାଏ, ପମ୍ପ ମାରିବାକୁ ଇଞ୍ଜିନ୍‌ର ପିଷ୍ଟନ୍ ପରି ଜଲ୍‌ଦି ଜଲ୍‌ଦି ହାତ ଚଲାଏ । ଷ୍ଟୋଭ୍ ଗର୍ଜନ କରେ ଆଉ ଆଲୁମିନିୟମ୍‌ର ପାତ୍ର ଉପରେ ମାଟିଆ ମାଟିଆ ଚାହା ପାଣି ତୁହାକୁ ତୁହା ଉତୁରି ଆସେ । ସେଇ ଉତୁରି ଆସୁଥିବା ଚାହାକୁ ମାଆ ବିସ୍ଫାରିତ ଆଖିରେ ଖାଲି ଚାହିଁ ରହେ । କାହିଁକି କେଜାଣି, ମାଆ ଠିକ୍ ସେଇ ସମୟରେ ଅନ୍ୟମନସ୍କ ହେଇପଡ଼େ । ଆଉ ଚାହା ଝଲ୍‌କାଏ ଉତୁରି ପଡ଼ି ତାତିଲା ଷ୍ଟୋଭ୍‌ଟା ଚେଁ ଚାଁ ଶବ୍ଦ କରେ । ମାଆ କିଛି କହେନା, ଯେପରି ତା'ର ଅନ୍ୟମନସ୍କ ହବା ଉଚିତ୍— ଯେପରି ସେ ଜାଣିଶୁଣି ଅନ୍ୟମନସ୍କ ହେଇଚି । ଯେପରି ଅନ୍ୟମନସ୍କ ନ ହେଇ ତା'ର ଉପାୟ ନାହିଁ । ତା'ର ସଂସାର ଚଳେଇବାର ସମସ୍ତ ଉତ୍ସାହ ଓ ଉଦ୍ୟମ ଯେପରି ସ୍ତିମିତ ହେଇଯାଇଛି ଓ ତାକୁ ଘେରିଯାଇଛି କିପରି ଗୋଟାଏ ସର୍ବଗ୍ରାସୀ ନିଶ୍ଚେଷ୍ଟତା, ଉପାୟହୀନତା ଓ ସର୍ବୋପରି ଏକ ଅସହାୟତା ।

ମିତ୍ରା ଆଜିକାଲି ଆଉ କୁଣ୍ଠିତ ଅନୁନାସିକ ସ୍ୱରରେ ଅଭିଯୋଗ କରେ ନାହିଁ । ତା'ର ବୋଧହୁଏ ଅଭିଯୋଗ କରିବା ପାଇଁ ଆଉ ବିଶେଷ କିଛି ନାହଁ । ଏବେ ତା'ର ପ୍ରସାଧନ ସାମଗ୍ରୀର ସଂଖ୍ୟା ବେଶ୍ ପର୍ଯ୍ୟାପ୍ତ । କିଛି ଭଲ ଭଲ ଶାଢ଼ୀ ମିତ୍ରାକୁ ପିନ୍ଧିବାର ଦେଖାଯାଏ । କିନ୍ତୁ ଏ ସବୁ ପ୍ରସାଧନ ସାମଗ୍ରୀ, ଏ ସବୁ ଶାଢ଼ୀ ମିତ୍ରା ଆଣେ କୁଆଡୁ ? ହଁ, ତା'ର ମନ ଇଚ୍ଛା ବାହାରକୁ ବୁଲା ବୁଲି ଯେତେ କରି ଗଲେ ମଧ୍ଧ, ନିୟମିତ ଭାବରେ ସନ୍ଧ୍ୟାବେଳେ ପ୍ରାୟ ଦୁଇ ତିନି ଘଣ୍ଟା ପର୍ଯ୍ୟନ୍ତ ବାହାରେ ଥାଏ ।

ଥରେ ମିତ୍ରାର ଅନୁପସ୍ଥିତିରେ ସେ' ମାଆକୁ ପଚାରି ବସିଥିଲା, ''ଆଚ୍ଛା ମାଆ, ମିତ୍ରା କୋ'ଠି କାମ ପାଉଛି ?'' ମାଆ ଅସ୍ପଷ୍ଟ ସ୍ୱରରେ ଚିଡ଼୍ ଚିଡ଼୍ ହେଇ ଜବାବ୍ ଦେଇଥିଲେ ଯେ ସେ ଠିକ୍ କାମଟା କଅଣ ଜାଣନ୍ତି ନାହିଁ, ଅଥଚ ମିତ୍ରା ବେଳେ ବେଳେ ଆସି କୁହେ, ଖୁବ୍ ଖାଟେଣି ପଡୁଛି । ଇଏ ତ ଅତି ବିଚିତ୍ର କଥା । ମିତ୍ରା କାମ ପାଇଲା, ଲକ୍ଷ୍ମୀଙ୍କ ପାଖରେ ଭୋଗ ହେଲା ନାହିଁ, ଶଙ୍ଖ ଫୁଙ୍କା ହେଲା ନାହିଁ, ବାପା ମାଆଙ୍କ ପାଖରେ ମୁଣ୍ଡିଆ ମାରିଲା ନାହିଁ, ଅଥଚ କାମ ମିଳିଗଲା ? ତା'ପରେ ସନ୍ଧ୍ୟାବେଳେ କୋ' ଦପ୍ତର ଖୋଲା ଥାଏ ? ହେଇଥିବ । ଏଇ ତ ଅଜବ ସହର । ଦୋକାନ, ସିନେମା, ରେଷ୍ଟୋରାଁ, ଷ୍ଟେସନ, ଏଆର୍‌ପୋର୍ଟ; କେତେ କଅଣ । ତେବେ ମଜା କଥାଟା ହଉଚି, ଏ ପର୍ଯ୍ୟନ୍ତ ତାକୁ କିନ୍ତୁ ଖଣ୍ଡେ କାମ ମିଳିପାରିଲା ନାହିଁ ।

ସେ ଯେ କାମ ପାଇଁ ଚେଷ୍ଟା ନ କରିଛି, ତାହା ନୁହେଁ । ବିଡ଼ା ବିଡ଼ା ଖବରକାଗଜ ଧରି ଦୁଆରେ ଦୁଆରେ କମିଶନ୍ ପାଇ ହକିଂ କରିବାକୁ ଚେଷ୍ଟା କରିଛି । ଅତି ସ୍ୱଳ୍ପ ରୋଜଗାର ହେଲେ ମଧ୍ୟ, ତା'ର ଚା' ଆଉ ଚାର୍‌ମିନାର୍ ସିଗାରେଟ୍ ଖର୍ଚ୍ଚ ଚଳିଯାଉଥିଲା । ମଝିରେ ମଝିରେ ପିଲାମାନଙ୍କ ପାଇଁ ପୂଜା ପାର୍ବଣରେ ସନ୍ଦେଶ ପ୍ୟାକେଟ୍ ଯେ ନ ଆଣିଛି, ତା' ନୁହେଁ । ଗୋଟାଏ ମାଟି ଘଡ଼ିରେ ବେଶ୍ କିଛି ରେଜା ପଇସା ମଧ୍ୟ ଜମେଇ ଥିଲା । କିନ୍ତୁ ଦିନେ ହଠାତ୍ ଦେଖେ ନଅ ନମ୍ବର ଘରେ ତାଲା ପଡ଼ିଛି । ଆଜି,—କାଲି,—ପଅରଦିନ, ପୂରା ଗୋଟାଏ ସପ୍ତାହ । ଖବର ନେଇ ବୁଝେ ଯେ ନଅ ନମ୍ବରର ବାବୁ ସହର ଛାଡ଼ି ଚାଲିଯାଇଛନ୍ତି । ତାଙ୍କର ଖୁବ୍ ଦିଲ୍‌ଦାର୍ ଖର୍ଚ୍ଚ ଥିଲା, ଗାଡ଼ି ଥିଲା, ଆଲ୍‌ସେସିଆନ୍ କୁକୁର ଥିଲା, କିନ୍ତୁ ସିଏ ଯେ ହଠାତ୍ ଗୋଟାଏ ଖବରକାଗଜ ହକର୍‌ର ଏକାନବେ ଟଙ୍କା ବାକୀ ରଖି ସହର ଛାଡ଼ି ଚାଲିଯିବେ, ଏକଥା କିଏ ଭାବିଥିଲା ? ତା'ପରେ କାଗଜର ଏଜେଣ୍ଟ ଆଉ କାଗଜ ଦବାକୁ ମନା କରିଦେଲା । ତା'ପରେ ସେ' ଦୁଇ ହାତର ଆଙ୍ଗୁଠି ପାଟି ଭିତରେ ପୂରେଇ ସିଟି ମାରି ଶିଖିଲା । ଖଣ୍ଡେ କଳା ଭେଲ୍‌ଭେଟ୍ କନାର ଟୋପି ମୁଣ୍ଡ ଉପର ତେରଛା କରି ପିନ୍ଧି ଶିଖିଲା । ଚା' ଦୋକାନରେ ସକାଳୁ ଖବର କାଗଜରୁ କୋ' ହଲରେ କୋ' ସିନେମା ଆସୁଛି, ତା'ର ଚିକିନିଖି ହିସାବ ରଖିଲା । କିନ୍ତୁ କାମଟା ବଡ଼ କଷ୍ଟ । ସକାଳୁ କପେ ଚା' ଖାଇ, ସିନେମା ହଲ୍ ପାଖରେ ଲାଇନ୍ ଦବାକୁ ପଡ଼ିବ । କେତେ ବା ପୁଞ୍ଜି । ସେଥିରେ ଏକାସାଙ୍ଗରେ ପାଞ୍ଚଖଣ୍ଡ ଠାରୁ ବେଶି ଟିକଟ୍ କିଣିବା ସମ୍ଭବ ହୁଏ ନାହିଁ । ପାଞ୍ଚଖଣ୍ଡ ଟିକଟ୍ ବ୍ଲାକ୍ କଲେ ହୁଏତ ସାତଟା ଟଙ୍କା ମିଳିବ । କିନ୍ତୁ ସେ ଟିକଟ୍ ବିକ୍ରି ହେଲାବେଳକୁ ସନ୍ଧ୍ୟା ପାଞ୍ଚଟା । ସେକେଣ୍ଡ ସୋ' ପାଇଁ ଟିକଟ୍ ବ୍ଲାକ୍ ହୁଏ ଖୁବ୍ କମ୍ । ଟିକଟ୍ ବ୍ଲାକ୍ କରୁ କରୁ ଯଦି ପୁଲିସ ହାତରେ ପଡ଼ିଗଲ, ତାହାହେଲେ ଏକାଥରକେ କୋଡ଼ିଏ ପଚିଶି ଟଙ୍କା ଘୁସ୍ ଦବାକୁ ପଡ଼େ, ନ ହେଲେ ହାଜତ । ଆଜିକାଲି ସାଧା

ପୋଷାକରେ ଏତେ ପୁଲିସ୍ ବୁଲନ୍ତି ଯେ କିଏ ପୁଲିସ୍, କିଏ ଭଦ୍ରଲୋକ ଜାଣିବା ମୁସ୍କିଲ୍ । ଏ ବ୍ୟବସାୟରେ ମଧ୍ୟ ତୀବ୍ର ପ୍ରତିଯୋଗୀତା । ଯେଉଁମାନେ ଖୁବ୍ କରିତ୍କର୍ମା ସେମାନେ ସେକେଣ୍ଡ ସୋ' ପରେ ସେଇ ସିନେମା ହଲ୍ ବାରଣ୍ଡାରେ ଇ ଶୋଇପଡ଼ନ୍ତି । ତେଣୁ ତାକୁ ସେ ବ୍ୟବସାୟ ମଧ୍ୟ କିଛିଦିନ ପରେ ଛାଡ଼ିବାକୁ ପଡ଼ିଲା ।

ରେଲ୍‌ୱେ ଷ୍ଟେସନ୍‌ରେ ଧାରଣା ଦେଇଛି । ବଡ଼ବାବୁଙ୍କ ସାଙ୍ଗରେ କଥାବାର୍ତ୍ତା ହେଇଯାଇଛି । ଗଳିପଶି ବାବୁମାନଙ୍କ ପାଇଁ ଖଣ୍ଡେ ରିଜରଭେସନ୍ ଟିକଟ୍ ଆଣିଦେଲେ ଦି'ଟଙ୍କା । ବଡ଼ବାବୁଙ୍କର ଟଙ୍କାଏ, ତା'ର ଟଙ୍କାଏ । କିନ୍ତୁ ସେଠି ବି ସେଇ ପ୍ରତିଯୋଗିତା । ବଡ଼ବାବୁଙ୍କ ତଳେ ତା'ରି ପରି ପଚାଶ ଜଣ ଲୋକ । ସେଠି ବି ସାଧା ପୋଷାକରେ ପୁଲିସ୍ । ସେଠି ବି ପାସେଞ୍ଜର୍‌ମାନଙ୍କ ସହିତ ଖୋଲାଖୋଲି କଥାବାର୍ତ୍ତା ନିଷିଦ୍ଧ । ସେଠି ବି ସେଇ ଘୁସ୍ ।

ଟ୍ୟାକ୍‌ସି ହୁଏତ ଚଳାଇବା ଶିଖି ହୋଇଥାଆନ୍ତା । କିନ୍ତୁ ଶିଖେଇବ କିଏ ? ନିଜର ପୁଅ, ପୁତୁରା, ଭଣଜାକୁ ନ ଶିଖେଇ ତାକୁ କିଏ କାହିଁକି ଶିଖେଇବ ? ତା' ଛଡ଼ା ଟ୍ୟାକ୍‌ସିର ସଂଖ୍ୟା ଆଉ ବଢ଼ିବ ନାହିଁ ବୋଲି ସରକାର ଘୋଷଣା କରିଦେଲେ । ଶହେ ଟ୍ୟାକ୍‌ସିକୁ ଅଢ଼େଇଶହ ଟ୍ୟାକ୍‌ସି ଡ୍ରାଇଭର୍ ।

ସିଏ ଚେଷ୍ଟା କରିଛି ଓ କରୁଛି ମଧ୍ୟ । ତେବେ ହଁ, ପୁଅ ପିଲାଙ୍କ ଅପେକ୍ଷା ଝିଅମାନଙ୍କୁ ଚାକିରି ମିଳିବା ସହଜ । ସେଦିନ ମିତ୍ରା ସନ୍ଧ୍ୟାର ଅବ୍ୟବହିତ ପର୍ବରୁ ଶାଢ଼ୀ ବଦଳଉଥିଲା । ସେ କୌତୂହଳ ଦମନ କରି ନ ପାରି ପଚାରିଥିଲା, ମିତ୍ରା, ମୁଁ ଶୁଣିଲି, ତୁ କାମ ପାଇଛୁ, କୋ'ଠି ? କିଛି ମିନିଟ୍ ଧରି ମିତ୍ରା କିଛି ଜବାବ୍ ଦେଲା ନାହିଁ, ଯେମିତି ସେ' କଥାଟାକୁ ମୋଟେ ଶୁଣିପାରି ନାହିଁ । ବାପା ସେଇ କନା ଆରାମ୍ ଚୌକିରେ ବସିଥିଲେ । ଯେମିତି ପ୍ରାୟ ସବୁଦିନ ବସିଥାନ୍ତି, କିନ୍ତୁ ସେଇ ମଳିନ ଆଲୋକରେ ମଧ୍ୟ ମନେ ହେଲା, ଯେପରି ବାପାଙ୍କର ମୁହଁର ରେଖା ସବୁ କଠିନ ହେଇଗଲା । ମାଆ ବାପାଙ୍କ ଗୋଡ଼ ତଳେ ବସିଥିଲେ । କେହି କିଛି କହୁ ନାହାନ୍ତି । ସେଇ ଅଖଣ୍ଡ ନୀରବତା ଭିତରେ ତୁଷାରପାତ ଚାଲିଛି । ବୋଧହୁଏ କିଛି ଗୋଟାଏ କଅଣ କରିବା ଦରକାର, ମାଆ ଅକାରଣରେ ଷ୍ଟୋଭ୍‌ଟାକୁ ଦୁଇଥର ଏପଟ ସେପଟ ଘୁଞ୍ଚା ଘୁଞ୍ଚି କରି କଅଣ ଗୋଟାଏ ଖୋଜିଲା ପରି ହେଲା । ଷ୍ଟୋଭ୍‌ର ଲୁହା ପାଦଦାନୀ ଘରର ବନ୍ଧୁର ଚଟାଣ ଉପରେ ଘଷି ହେଇ ଏକ ବିକୃତ ଶବ୍ଦ ସୃଷ୍ଟି କଲା । ସିଲଟ୍ ଉପରେ ଲୁହା କଣ୍ଟାରେ ଗାର କାଟିଲେ ଯେପରି ଶବ୍ଦ ହୁଏ ।

ସେ କିନ୍ତୁ ଚୁପ୍ ରହି ପାରିଲା ନାହିଁ, ତାକୁ ଜାଣିବାକୁ ଇ ହବ । ଘରେ ଗୋଟାଏ ମଇଳା ବଲ୍‌ବର ଆଲୁଅ ଟିମ୍ ଟିମ୍ ହୋଇ ଜଳୁଛି । ଆଉ ସେ ଆଲୁଅ ପୁଣି ଛାଣି

ହୋଇ ଆସୁଛି ଗୋଟିଏ ଅଳଙ୍କୁର ଜାଲ ଭିତରେ । ପାରଦ ଛଡ଼ା ଦର୍ପଣର ଅତି ପାଖକୁ ମୁହଁ ନେଇ ଅତ୍ୟନ୍ତ ମନଯୋଗ ସହକାରେ ମିତ୍ରା ଗୋଟିଏ ଶସ୍ତା ଆଇ ବ୍ରୋ' ପେନ୍‌ସିଲ୍ ଦେଇ ତା'ର ଭୁରୁ ତିଆରି କରୁଛି । ସେ ପୁଣି ଥରେ ପଚାରିଲା, ''ଗୋଟାଏ କଥା ପଚାରିଲେ ତା'ର କଅଣ ଜବାବ୍ ନାହିଁ ?'' ଏଇ ବାକ୍ୟଟା ସେଇ ପରିବେଶ ଭିତରେ ଗୋଟିଏ ଛୋଟ ବିସ୍ଫୋରଣ ପରି ମନେ ହେଲା । ମିତ୍ରା ଜବାବ୍ ଦେଲା ଏଥର, ''ଏସିଆନ୍ କାର୍ପେଟ୍ ।'' ଉତ୍ତରଟି ଯଥା ସମ୍ଭବ ସଂକ୍ଷିପ୍ତ ଓ ଋକ୍ଷ । ଆଉ କୌଣସି ପ୍ରଶ୍ନ ପଚାରିବା ପୂର୍ବରୁ ମିତ୍ରା ଶାଢ଼ୀର ଅଞ୍ଚଳଟାକୁ କାନ୍ଧ ଉପରେ ଜୋର୍‌ରେ ଛାଟିଦେଇ ସଂକୀର୍ଣ୍ଣ ସିଡ଼ି ବାଟ ଦେଇ ଡଗ ଡଗ ହୋଇ ଓହ୍ଲେଇ ଯାଇଥିଲା । ଘର ଭିତରେ କିଚି ମୁହୂର୍ତ୍ତ ପାଇଁ ଗୋଟାଏ ଶସ୍ତା ଅତରର ବାସନା ଚକାଭଉଁରୀ ଖେଳି ପର ମୁହୂର୍ତ୍ତରେ ଉଭେଇ ଯାଇଥିଲା । ତଳକୁ ଚାହିଁ ସେ ଦେଖିଲା ଧୁନା, ମାନା ଆଁ କରି ଉପରକୁ ଚାହିଁ ରହିଛନ୍ତି । କଥାଟାକୁ ସହଜ କରିନବା ପାଇଁ ସେ କହିଲା, ''ବାଃ, ଅପା ଚାକିରି ପାଇଛି, ତମକୁ ସବୁ ମିଠା ଖାଇବାକୁ ଦବ ।'' ତଥାପି ମଧ କେହି କିଛି କଥା କହିଲେ ନାହିଁ । ସେଇ ନୀରବ ତୁଷାରପାତରୁ ମୁକ୍ତି ପାଇବା ପାଇଁ ସିଡ଼ି ଦେଇ ସେ ମଧ ତଳକୁ ଓହ୍ଲେଇ ଯାଇଥିଲା ।

ଆଉ ଦିନକର କଥା । ସେଇ ଚଟାଣ ଉପରେ ମୁହଁମାଡ଼ି ଶୋଇ ରହି ତ୍ରୈଲୋକ୍ୟର ପୁରୁଣା କଥା ସବୁ ଟିକିନିଖି କରି ଘାଣ୍ଟି ଏକ ପୂତିଗନ୍ଧପୂର୍ଣ୍ଣ କର୍ଦ୍ଦମାକ୍ତ ଆତ୍ମଗ୍ଲାନିକୁ ତା' ଦେହରେ ବାରମ୍ବାର ବୋଳି ହବାକୁ ଭଲ ଲାଗୁଥିଲା । ହଁ, ଆଉ ଦିନକର କଥା। ଖରାଦିନ ସନ୍ଧ୍ୟାରେ ମଇଦାନ ପାଖରେ ଘୂରି ବୁଲିବା ଅନେକ ବେକାରଙ୍କ ପାଇଁ ଏକମାତ୍ର ବିଳାସ । ସେ ବି ଘୂରି ବୁଲୁଥିଲା ସେଦିନ ଲକ୍ଷ୍ୟହୀନ ଭାବରେ । ଟ୍ରାମ୍ ସବୁ ଯାଉଚି, ଆସୁଚି, ଗୁପ୍‌ଚୁପ୍ ବାଲାର ଡାଲା ଉପରେ କନା ସଳିତା ବିହୁଡ଼ି ଜଳୁଚି । କେହି କେହି ଲୋକ ଅନ୍ୟମନସ୍କ ଭାବରେ ଏକ ସ୍ଥିର ବିନ୍ଦୁକୁ ଲକ୍ଷ୍ୟ କରି ଠିଆ ହୋଇଛନ୍ତି । ଘୋଡ଼ାଗାଡ଼ି ପାଖରେ ମେଞ୍ଚାଏ ଶୁଖିଲା ଘାସକୁ ଘୋଡ଼ାଟିଏ ପାକୁଳି କରୁ କରୁ ତୃପ୍ତିରେ ତା'ର ଆଖି ପତା ବନ୍ଦ ହୋଇ ଆସୁଚି । କିଏ ଦଉଡ଼ି ଦଉଡ଼ି ଟ୍ରାମ୍‌ରେ ଝୁଲି ପଡୁଚି, ପୁଣି କିଏ ଅନେକ ପୁଟୁଳି ଆଉ ବ୍ୟାଗ୍ ଧରି ଲଣ୍ଡଭଣ୍ଡ ହୋଇ ଚାଲିଛି । ଦି'ଟା ନୁଖୁରା, ମଇଳା ପିଲା ସେଇ ଭିଡ଼ ଭିତରେ ଦାନ୍ତ ଦେଖେଇ ଗୋଡ଼ିଆ ଗୋଡ଼ି ଖେଳୁଛନ୍ତି । ପେଟ୍ରୋମାକ୍ସ ଲାଇଟ୍‌ର ଉଜ୍ଜ୍ୱଳ ଆଲୋକ ତଳେ ମାଂସ ଚପ୍, ପ୍ରନ୍ କଟ୍‌ଲେଟ୍ ଆଉ ଅଣ୍ଡା ଆମ୍‌ଲେଟ୍‌ର ପସରା ବସିଛି । ଲୋକେ ଖାଉଛନ୍ତି, ପତର ଫୋପାଡୁଛନ୍ତି, ହାତ ଧୋଉଛନ୍ତି । ରୁମାଲରେ ମୁହଁ ପୋଛି ପକେଟ୍‌ରୁ ପଇସା କାଢୁଛନ୍ତି । ପୁଣିଥରେ ଉତ୍ତପ୍ତ ତାଓ୍ୱା ଉପରେ ଫେଣ୍ଟା ଅଣ୍ଡା ଅଜାଡ଼ା ହୋଇ ଚେଁ କରି ଶବ୍ଦ ହୋଇ ଟିକିଏ ଧୂଆଁ ଉଠି ମିଳେଇ ଯାଉଚି । ପାଖରେ ଦି'ଟା

ବୁଲା କୁକୁର ଅନବରତ ଉପରକୁ ନାକ ଟେକି ଧରି ସୁସ୍ୱାଦୁ ଖାଦ୍ୟର ଗନ୍ଧ ଯତ୍‌ପରୋନାସ୍ତି ଆଘ୍ରାଣ କରି ନଉଛନ୍ତି । ଆଶା, ବିଶ୍ୱାସ, କ୍ଷୁଧା, ହତାଶା, ସବୁ କିଛି ମିଶାମିଶି ହେଇ ଏକ ଅଦ୍ଭୁତ ଭାବ ସେଇ କୁକୁର ଦି'ଟାଙ୍କର ଆଖିରେ ଫୁଟି ଉଠିଛି । ଗୋଟାଏ ଜାଗାରେ ଠିଆ ହେଇ ହେଇ ମଇଦାନ ଉପରର ଏଇ ସାନ୍ଧ୍ୟକାଳୀନ ନାଟକ ସେ ଉପଭୋଗ କରୁଥିଲା । ଆଉ ଦଶ ପନ୍ଦର ହାତ ଆଗେଇ ଗଲେ ଚଉରଙ୍ଗୀ ସାମ୍ନାର ସେଇ ବିରାଟ ପଡ଼ିଆଟା ଏକାଥରକେ ଅନ୍ଧାର । ପୁରୁଷ, ସ୍ତ୍ରୀ କେହି କେହି ଏକୁଟିଆ ବା କେହି କେହି ବାହୁ ସଂଲଗ୍ନ ହୋଇ ବସି ଥାଆନ୍ତି । ସେଠି ମଧ୍ୟ ବେଳେ ବେଳେ ଉଚ୍ଚାଙ୍ଗ ନାଟକ ଅଭିନୀତ ହୁଏ । ହଠାତ୍ ଅଚାନକ ତୀବ୍ର ସ୍ପଟ୍‌ଲାଇଟ୍ ପକେଇ ଚାରିପଟୁ ମାଡ଼ିଆସେ ପୁଲିସ୍‌ର ଜିପ୍ । ପୁଲିସ୍‌ର ଲୋକମାନେ ଟର୍ଚ୍ଚ ଧରି ଦଉଡ଼ନ୍ତି । ଆଉ ତାଙ୍କ ଆଗେ ଆଗେ ଦଉଡ଼ନ୍ତି ଅନେକ ସ୍ତ୍ରୀଲୋକ ଏକ ନିରାପଦ ଆଶ୍ରୟସ୍ଥଳୀର ସନ୍ଧାନରେ ।

ତ୍ରୈଲୋକ୍ୟର ମନେ ହେଲା କିଛି ଗୁପ୍‌ଚୁପ୍ ଖାଇଲେ ଚଳନ୍ତା । ବଡ଼ ବଡ଼ ବୋଝ ଗୁଡ଼ାକ ଉପରେ ଗୋଲ୍ ଗୋଲ୍ ଗୁପ୍‌ଚୁପ୍ ସବୁ ଯେମିତି ସଜେଇ କରି ରଖା ହେଇଥାଏ, ତାକୁ ଦେଖିଲେ କାହାର ଲୋଭ ନ ହବ ? ଦି' ଜଣ ମଧ୍ୟବୟସ୍କ ଲୋକ ଓ ସେମାନଙ୍କ ସହିତ ତିନୋଟି କିଶୋର ହାତରେ ପତରର ଠୁଙ୍ଗା ଧରି ଗୁପ୍‌ଚୁପ୍ ଖାଇବାରେ ବ୍ୟସ୍ତ ଥିଲେ । ସେମାନଙ୍କର ଖାଇବା ସରିବା ପର୍ଯ୍ୟନ୍ତ ସେ ସେଠି ଅନ୍ୟମନସ୍କ ଭାବରେ ଅପେକ୍ଷା କରୁଥିଲା । ତାରି ପାଖ ଦେଇ ଗୋଟାଏ ଟ୍ରାମ୍ ମନ୍ଥର ଗତିରେ ବେସୁରା ଧାତବ ସଙ୍ଗୀତ ସୃଷ୍ଟି କରି ଚାଲିଗଲା । ଠିକ୍ ଟ୍ରାମ୍‌ର ଆରପଟେ କିଏ ଠିଆ ହେଇଚି ? ମିତ୍ରା । ନା—ମିତ୍ରା କାହିଁକି ହବ ? କିନ୍ତୁ ଝିଅଟି ସାମାନ୍ୟ ମୁହଁ ବୁଲେଇଦବା ପରେ ତା'ର ସନ୍ଦେହ ନ ଥିଲା ଯେ ସେଇ ଝିଅଟି, ମିତ୍ରା । ତା'ପରେ ସେ ଅତି ସନ୍ତର୍ପଣରେ ମିତ୍ରା ପାଖରେ ପହଞ୍ଚି ଯାଇଥିଲା । ମିତ୍ରା ତାକୁ ଦେଖିବ ସାପ ଦେଖିଲା ପରି ହଠାତ୍ ଚମକି ପଡ଼ି ତା'ର ଛାତିରେ ଦୁଇ ତିନିଥର ଛେପ ପକେଇ ଦେଇଥିଲା ।

—"ତୁ ଏଠି ? ଏଠି କ'ଣ କରୁଛୁ ?"

—"ନା, ମାନେ....ଟ୍ରାମ୍‌କୁ ଅପେକ୍ଷା କରୁଥିଲି ।"

—"ଟ୍ରାମ୍ ?ଆମ ଘରବାଟେ ଟ୍ରାମ୍‌ଲାଇନ୍ ଯାଇଛି ନା କଅଣ ?"

—"ନାଇଁ, ମାନେ...ମୁଁ ଜଣେ ସାଙ୍ଗ ଘରକୁ ଯିବି ।"

—ତ୍ରୈଲୋକ୍ୟର ଦୃଷ୍ଟି ଓ ସ୍ୱର ସାମାନ୍ୟ ହିଂସ୍ର ହୋଇ ଉଠିଥିଲା ।

—"ଏଇଟା କଅଣ ଟ୍ରାମ୍ ପାଇଁ ଅପେକ୍ଷା କରିବା ଜାଗା ?"

ମିତ୍ରା କିଛି ଉତ୍ତର ନ ଦେଇ କେବଳ ତା'ର ତର୍ଜନୀ ଉତ୍ତୋଳିତ କରି ସାମ୍ନାର ଚଉରଙ୍ଗୀ ମାର୍କେଟ ଆଡ଼କୁ ଇଙ୍ଗିତ କରିଥିଲା । ସେଇ ଦିଗକୁ ତ୍ରୈଲୋକ୍ୟ ସେଦିନ ଚାହିଁ ରହି ତା' ଭିତରୁ ଅସଲ ରହସ୍ୟଟା ଜାଣିବାକୁ ଚେଷ୍ଟା କରିଥିଲା । ତ୍ରୈଲୋକ୍ୟ ଦେଖିଲା ତା'ର ଆଖି ସାମ୍ନାରେ ଏକ ଅତି ଉଜ୍ଜ୍ୱଳ ନିଅନ୍ ଅକ୍ଷରର ସଙ୍କେତରେ ବଡ଼ ବଡ଼ ଅକ୍ଷରରେ ଲେଖାଅଛି, ''ଏସିଆନ୍ କାର୍ପେଟ'' । ସେ ଆଉ କିଛି କଥା ନ କହି ବେଶ୍ ସନ୍ଦିଗ୍ଧ ମନରେ ପଦଚାରଣା କରି କରି ପୁଣି ଥରେ ମଇଦାନର ଲୋକ-ଅରଣ୍ୟ ଭିତରେ ମିଶି ଯାଇଥିଲା । କିନ୍ତୁ ତଥାପି ସେ ମନେ ମନେ ଏଇ 'ଏସିଆନ କାର୍ପେଟ୍' ପରି ଏକ ବିରାଟ ବିଜ୍‌ନେସ୍ ହାଉସ୍ ସହିତ ମିତ୍ରାର ଯୋଗାଯୋଗ କଳ୍ପନାଇ କରିପାରୁ ନଥିଲା ।

ସେଦିନ ମଇଦାନର ଗୋଟାଏ ଲ୍ୟାମ୍ପପୋଷ୍ଟକୁ ଆଉଜି ରହି ଅନେକ ସମୟ ଧରି ଚିନ୍ତା କରିଥିଲା ତ୍ରୈଲୋକ୍ୟ । 'ଏସିଆନ କାର୍ପେଟ୍'– ସେଠି ମିତ୍ରା କଅଣ କରେ ? ସାହେବ କମ୍ପାନୀ, ଦାମୀ ଦାମୀ ପର୍‌ସିଆନ୍ କାର୍ପେଟ୍, ଶୀତତାପ ନିୟନ୍ତ୍ରିତ ସୋ' ହାଉସ, ଆଉ ବୋଉ ବଜାରର କେଉଁ ଅନ୍ଧାରୁଆ, ଅମୁହାଁ ଗଳିର ରଙ୍ଗଛଡ଼ା, ଶ୍ରୀହୀନ ଫ୍ଲାଟ୍‌ର ଅର୍ଦ୍ଧ-ଶିକ୍ଷିତା ମିତ୍ରା । ମିତ୍ରା ସେଲ୍‌ସ ଗାର୍ଲ ହେଇ ପାରେନା । ମିତ୍ରା ବଜାର ସଉଦା ଆସିବା ପରେ ଆଙ୍ଗୁଠିର ପବ ଗଣି ଗଣି ପଇସା ହିସାବ କରେ । ତେଣୁ ହିସାବ ରଖିବା ତା' ପକ୍ଷରେ ସମ୍ଭବ ନୁହଁ–ଆଉ ତା'ଛଡ଼ା ସେସବୁ କମ୍ପାନୀରେ ତ କାଲ୍‌କୁଲେଟର୍ ଦେଇ ହିସାବ କରାଯାଏ । ତା'ହେଲେ ମିତ୍ରା କଅଣ ମଡ଼େଲ୍ ? ହଁ, କେବେ କେବେ ଦାମୀ ପତ୍ର ପତ୍ରିକାର ପୃଷ୍ଠା ଓଲଟେଇଲେ କାର୍ପେଟ୍‌ର ବିଜ୍ଞାପନ ସବୁ ଆଖିରେ ପଡ଼େ । ଆର୍ଟ ପେପର୍, ତା' ଉପରେ ରଙ୍ଗବେରଙ୍ଗର କାର୍ପେଟ୍, ଆଉ ତା' ଉପରେ ଝିଅଟିଏ କେତେବେଳେ ଆଣ୍ଠୁକୁ ଗୋଟେଇ ନେଇ ବସି ରହିଥାଏ, ନ ହେଲେ ଶୋଇ ରହିଥାଏ ଏକ ଅର୍ଦ୍ଧଉଲଗ୍ନ ଭଙ୍ଗୀରେ । ବେଶ୍ ଯୌନ-କ୍ଷୁଧା ଉଦ୍ରେକକାରୀ । ଆହୁରି ମଧ୍ୟ ସେ ଦେଖିଛି, ଏଆର୍ ଇଣ୍ଡିଆ ବିମାନ କର୍ତ୍ତୃପକ୍ଷଙ୍କର ବହୁଳ ପ୍ରଚାରିତ ବିଜ୍ଞାପନ । ଖଣ୍ଡେ ନାଲି ପର୍ସିଆନ୍ ଗାଲିଚା ଉପରେ ଏଆର୍ ଇଣ୍ଡିଆର୍ ବେପରୁଆ, ନିଶମୋଡ଼ା ମହାରାଜା, ତା'ର ପଗଡ଼ିକୁ ସାମାନ୍ୟ ଝୁଙ୍କେଇ ଦେଇ ବିମାନଯାତ୍ରୀମାନଙ୍କୁ ନିମନ୍ତ୍ରଣ କରୁଛି କେତେବେଳେ ରୋମ୍, କେତେବେଳେ ଜାପାନ୍, ନ ହେଲେ କେତେବେଳେ କଷ୍ଟମ ଫ୍ରି ହଙ୍ଗ୍‌କଙ୍ଗ୍ ଫ୍ରି ପୋର୍ଟକୁ । ଭାରୀ ଚମତ୍କାର ହେଇଥିବ ସେ ଦେଶ ସବୁ । ପିଲାଦିନେ ଉଚ୍ଚ ଆକାଂକ୍ଷା ରଖିବା ପାଇଁ ତ୍ରୈଲୋକ୍ୟକୁ ଉପଦେଶ ଦିଆଯାଇଥିଲା । ତ୍ରୈଲୋକ୍ୟ ବି ଉଚ୍ଚାକାଂକ୍ଷା କରିଥିଲା, କିନ୍ତୁ ବୋଉ ବଜାରର ଆଠ ନମ୍ବର ଗଳିର ଅଧିବାସୀ ମାଷ୍ଟର୍ ତ୍ରୈଲୋକ୍ୟ ଚୌଧୁରୀଙ୍କ ଉଚ୍ଚ ଆକାଂକ୍ଷା ଆଉ କେତେ ହେଇପାରେ ଭାଇ ! ତ୍ରୈଲୋକ୍ୟର ଆଖି ଲୁହରେ

ଜକେଇ ଆସିଥିଲା, ସେ ଅର୍ଥହୀନ ଭାବରେ ଆଲୋକମାଳିନୀ କଲିକତା ସହରକୁ ଚାହିଁ ରହିଥିଲା । କଲିକତା ନଗରୀର ବହୁ ବିଚିତ୍ର, ବର୍ଣ୍ଣିଳ, ଉଚ୍ଛୃଙ୍ଖଳ, ଆମୋଦ ପ୍ରମୋଦର ସ୍ରୋତ ଭିତରେ ତ୍ରୈଲୋକ୍ୟର ସ୍ଥାନ ନାହିଁ । ତ୍ରୈଲୋକ୍ୟ କାହିଁକି, ତା'ର ବାପା, ମାଆ, ଭାଇ, ଭଉଣୀ କାହାରି ସ୍ଥାନ ନାହିଁ । ଅବାଞ୍ଛିତ, ନିଷ୍ଠୁର ଦାରିଦ୍ର୍ୟ ସେମାନଙ୍କୁ ଏଇ ଜୀବନ ଯାତ୍ରାରୁ ଚିର ବଞ୍ଚିତ କରିଛି । ସେ ମିତ୍ରାର କଥା ସମ୍ପୂର୍ଣ୍ଣ ଭୁଲି ଯାଇଥିଲା । ମିତ୍ରା କିଏ ? ମିତ୍ରା ଅଗଣିତ ମିତ୍ରାଙ୍କ ଭିତରେ ମାତ୍ର ଗୋଟିଏ ଇଉନିଟି । ଦାରିଦ୍ର୍ୟ ଲାଞ୍ଛିତ ଏକ ବିରାଟ ନାରୀତ୍ୱର ଏକ ସାମାନ୍ୟ ଭଗ୍ନାଂଶ ।

ଗୋଟାଏ କଙ୍କାଳସାର ଘୋଡ଼ା ଉପରେ ବୋଧହୁଏ କର୍‌ଓ୍ୟାନ୍ ସପାଙ୍ଗ୍ କରି ଚାବୁକ୍ ମାରିଲା । ସେଇ ଶବ୍ଦରେ ତ୍ରୈଲୋକ୍ୟର ସମ୍ବିତ ଫେରିଆସିଲା । ରାତି ଅନେକ ହେଇ ଯାଇଥିଲା । ତ୍ରୈଲୋକ୍ୟ ଆଗରେ ତା'ର ଘରର ଗୋଟିଏ ଚିତ୍ର ଭାସି ଉଠିଲା । ବାପା କାଶୁଥିବେ, ମାଆ ଛାଇ ନିଦରେ ଶୋଇଥିବେ, ପିଲାମାନେ ଅଚେତ୍ ହେଇ ଶୋଇଥିବେ । ତାକୁ ପୁଣି ଥରେ ଯାଇ ସେଇ ହତଭାଗ୍ୟ ନିଦ୍ରିତ ପରିବାରର ନିଦ୍ରାରେ ବ୍ୟାଘାତ ଜନ୍ମେଇବାକୁ ପଡ଼ିବ । କିନ୍ତୁ ଏ ସବୁ ସତ୍ତ୍ୱେ ମଧ୍ୟ ତ୍ରୈଲୋକ୍ୟ ତା'ର କ୍ଲାନ୍ତ, ଅନିଚ୍ଛୁକ ଗୋଡ଼ ଦୁଇଟାକୁ ଟାଣି ଟାଣି ଘରଆଡ଼କୁ ଚାଲିବାକୁ ବାଧ୍ୟ ହୋଇଥିଲା ।

ନା, ଆଉ ଶୋଇ ରହିବା ସମ୍ଭବ ନୁହେଁ । ଖରା ଓ କୋଳାହଳ ଦୁଇଟାଯାକ ତୀବ୍ର ହେଲାଣି । ଗୋଟାଏ ଝାଙ୍କରେ ଉଠି ପଡ଼ିଲା ତ୍ରୈଲୋକ୍ୟ । ନିଜକୁ ପୁଲିସର ହାଜତ୍ ମଧ୍ୟରେ ଆବିଷ୍କାର କରି ସେ ନିଜେ ବେଶ୍ ବିସ୍ମିତ ହେଇ ପଡ଼ିଥିଲା କିନ୍ତୁ ପର ମୁହୂର୍ତ୍ତରେ ତା'ର ବିସ୍ମୟ ଭାବଟା କଟି ଯାଇଥିଲା ମଧ୍ୟ । ସେ ତ ମନେ କରିପାରୁ ନାହିଁ କିଛି । କିନ୍ତୁ ଦେଶୀ ମଦର ଆଡ୍‌ଡ଼ାରେ ଅନେକ କିଛି କଥା ଘଟିଥିବା ସମ୍ଭବ । ସେଇ ଛୋଟ ଘରଟା ଭିତରେ ଆଉ ମଧ୍ୟ ଦଶ ପନ୍ଦର ଜଣ ଲୋକ ଅଛନ୍ତି । ତା' ଭିତରୁ ଜଣେ କିଏ ଦୁଇ ପାଟିଯାକ ଦାନ୍ତ ମେଲା କରି ପଚାରିଲା, ''ବାବୁ, ତମକୁ ନୂଆ ଦେଖୁଚି, କୋ'ଠୁ ଆଇଲ ?'' ତ୍ରୈଲୋକ୍ୟ କହିଲା, ''ମୋର କିଛି ସ୍ମରଣ ନାହିଁ ।'' ସମସ୍ତେ ଏକାସାଙ୍ଗରେ ହୋ' ହୋ' କରି ହସି ଉଠିଲେ । ସେଇ କୋଠରୀଟା ଯେପରି ଭାଙ୍ଗିପଡ଼ିବ । ତା' ଭିତରୁ ଆଉ ଜଣେ କହିଲା, ''ବାବୁଙ୍କୁ ଟିକେ ସିଧାସିଧି ପଚାର, ବେଶ୍ୟା ଗଳିରୁ, ଜୁଆ ଆଡ୍‌ଡ଼ାରୁ ନା ମଦ ଭାଟିରୁ ?''

ତ୍ରୈଲୋକ୍ୟ କିଛି ଉତ୍ତର ନ ଦେଇ ସେଇ ଲୋକଟାର ବେକରେ ଝୁଲୁଥିବା ଗୋଟାଏ ପିତଳ ତାବିଜ୍‌କୁ ନିର୍ନିମେଷ ନୟନରେ ଚାହିଁ ରହିଥିଲା । ହଠାତ୍ ଯେପରି ତ୍ରୈଲୋକ୍ୟର ଆଖି ଆଗରେ ଗତକାଲିର ସମସ୍ତ ଘଟଣା ଉଦ୍ଭାସିତ ହୋଇ ଉଠିଲା ।

କଅଣ ବା ତା'ର ଦରକାର୍ ଥିଲା ମିତ୍ରା ସହିତ ମୁକାବିଲା କରିବାକୁ ଯେ ତା'ର 'ଏସିଆନ୍ କାର୍ପେଟ'ରେ କାମ କରିବା କଥା ମିଥ୍ୟା ? ଯାହା ସେ ନିଜେ ଓ

ପରିବାରର ସମସ୍ତେ ଉପଲବ୍ଧ କରିପାରୁଛନ୍ତି, ଯାହା ଅବଶ୍ୟମ୍ଭାବୀ, ସେଇ କୁତ୍ସିତ, ଘୃଣ୍ୟ ସତ୍ୟକୁ କାହିଁକି ସେ ମିତ୍ରା ମୁହଁରେ ଉଚ୍ଚାରିତ କରାଇବାକୁ ଚାହୁଁଥିଲା ? ଯେତେବେଳେ ସେ ସିଧାସିଧି ମିତ୍ରାକୁ ପ୍ରଶ୍ନ କରେ ଯେ ଏ ଦରିଦ୍ରର ସଂସାରକୁ ଏତେ ପ୍ରସାଧନ ସାମଗ୍ରୀ ଆସୁଛି କୁଆଡୁ, ସେତେବେଳେ ମିତ୍ରା, ବାପା, ମାଆ ସମସ୍ତେ ନୀରବ ରହିଥିଲେ । ସେଦିନ ନିସ୍ତବ୍ଧ, ତୁନ୍ଦ୍ରା ଅଞ୍ଚଳରେ ତୁଷାରର ଝଡ଼ ଉଠିଥିଲା । କିନ୍ତୁ ନା, ଦିନେ ଯା'ର ମୁକାବିଲା କରିବାକୁ ପଡ଼ିବ । ମିତ୍ରାର ବାଳକୁ ବାଆଁ ହାତରେ ଧରି ରାଗରେ ଅନ୍ଧ ହେଇଯାଇ ସେ ଦି'ଟା ଜବରଦସ୍ତ ଚଟକଣା ମାରିଥିଲା । ଆହତ ଫଣିନୀ ପରି ମିତ୍ରା ବୁଲିପଡ଼ି ସିଧା ତା' ମୁହଁକୁ ଅନେଇ ରହିଥିଲା । ତା'ର ଆଖି ଦୁଇଟା ଜଳୁଥିଲା ରଡ଼ ନିଆଁ ପରି ।

—''ମତେ ମାରିଲୁ ତୁ ? କାହିଁକି ? ଜୀବନରେ ଦି' ପଇସା ରୋଜଗାର କରିବାର କ୍ଷମତା ତୋ'ର ନାହିଁ, ଅଥଚ ଭଉଣୀ ଉପରେ ଏତେ ଶାସନ କାହିଁକି ?''

ମାଆ ମିତ୍ରାକୁ ବାଧା ଦବାକୁ ଚେଷ୍ଟା କରୁଥିଲେ, କିନ୍ତୁ ମିତ୍ରା ଯେ ବାଧା ଶୁଣିବା ଅବସ୍ଥାରେ ନ ଥିଲା—''ମୋର ଶାଢ଼ୀ ଉପରେ, ମୋର ସ୍ନୋ ପାଉଡ଼ର ଉପରେ ଖାଲି ନଜର୍ ?—ଗତ ବର୍ଷକ ଭିତରେ ତୋର ଯେତିକି ପ୍ୟାଣ୍ଟ ସାର୍ଟ କରାହେଇଚି, କାହା ପଇସାରେ ହେଇଚି ? ତୁ କଅଣ ଆଜି ଜାଣିଲୁ ଯେ ବାପା ମାଆଙ୍କର ଗୋଟାଏ ପଇସା ରୋଜଗାର କରିବାର କ୍ଷମତା ନାହିଁ ?''

ସେଦିନ ବୋଧହୁଏ ମିତ୍ରାର ଧୈର୍ଯ୍ୟର ବନ୍ଧ ଭାଙ୍ଗିଯାଇଥିଲା । ଅଗ୍ନ୍ୟୁତ୍ପାତ ପରି ମିତ୍ରାର ମୁହଁରୁ ଅବିରତ ବାହାରି ଚାଲିଥିଲା ଅଶ୍ରାବ୍ୟ, କର୍କଶ ଆତ୍ମଗ୍ଳାନିପୂର୍ଣ୍ଣ ବାକ୍ୟର ଲାଭା । ତ୍ରୈଲୋକ୍ୟ ଜଣେ ଅପରାଧୀ ପରି ମୁଣ୍ଡ ତଳକୁ କରି ଏକ ବିଡ଼ମ୍ବିତ ପୌରୁଷର ଦଂଶନରେ ଛଟ୍‌ପଟ୍ ହଉଥିଲା କେବଳ ।

ବଂଶର ଏକମାତ୍ର ଗୌରବର ସନ୍ତକ ଥିଲା ପିତାମହୀଙ୍କର ଗୋଟିଏ ସ୍ୱର୍ଣ୍ଣ ମଙ୍ଗଳସୂତ୍ର । ତା'ର ଆକୃତିଟା ଅନେକ ପରିମାଣରେ ଥିଲା ଏଇ ହାଜତ ଭିତରର ଲୋକ ପିନ୍ଧିଥିବା ପିତଳ ତାବିଜ୍‌ର ଆକାର ପରି । ସେଇଦିନ ସନ୍ଧ୍ୟାରେ ସେଇ ମଙ୍ଗଳସୂତ୍ରକୁ ହସ୍ତଗତ କରି ତ୍ରୈଲୋକ୍ୟ ଘରୁ ବାହାରି ଯାଇଥିଲା ଏକ ଅନିଶ୍ଚିତର ସନ୍ଧାନରେ । ସେଇ ମଙ୍ଗଳସୂତ୍ରର ବିନିମୟରେ ତ୍ରୈଲୋକ୍ୟ ମାତ୍ର ଅଢ଼େଇ ଶହ ଟଙ୍କା ଯୋଗାଡ଼ କରି ପାରିଥିଲା । କିନ୍ତୁ ଟଙ୍କାକୁ ନେଇ କଅଣ କରାଯାଏ । ସେଦିନ ଥିଲା ଶନିବାର, ରେସ୍‌ର ବଜାର । ଶହ ଶହ ଟ୍ୟାକ୍‌ସି ଛୁଟିଛି ରେସକୋସ୍ ଆଡ଼କୁ । ତ୍ରୈଲୋକ୍ୟ ଶୁଣିଚି ଏଇ ରେସ୍‌କୋସ୍‌ରେ ରାସ୍ତାର ଭିକାରୀମାନେ କୋଟିପତି ହେଇ ଯାଇଛନ୍ତି । ସେ ନ ହବ କାହିଁକି ?

ତ୍ରୈଲୋକ୍ୟ ରେସ୍‌କୋର୍ସର ଅର୍ଗଳି ଡେଇଁ ଭିତରକୁ ଗଲା । ସେ ଏକ ଭିନ୍ନ ଜଗତ । କିନ୍ତୁ ସେ ତ ଅନଭିଜ୍ଞ । ସେ କିପରି ଜାଣିବ କେଉଁ ଘୋଡ଼ାରଖୁରାରେ ତା' ଘରକୁ ଲକ୍ଷ୍ମୀ ଆସିବେ ପ୍ରସନ୍ନା ହେଇ ? ଦଳେ ଲୋକ କଥାବାର୍ତ୍ତା କରୁଛନ୍ତି, ଆଜି ଷ୍ଟେଟ୍‌ସ୍‌ମ୍ୟାନ୍‌ରେ ବାହାରିଛି 'ଗେ ଲର୍ଡ଼' ଜିତିବ, ଆଉ ଷ୍ଟେଟ୍‌ସ୍‌ମ୍ୟାନ୍‌ର ରେସ୍‌ର କଲମ୍ ଯିଏ ଲେଖେ, ସେ ବେଶ୍ ପୋଖତ୍ ଲୋକ । ଆଉ ଦଳେ ରେସ୍ ବହି ଓଲଟଉଛନ୍ତି, ବଡ଼ ବଡ଼ ଅକ୍ଷରରେ ଲେଖା ଅଛି 'ଗେ ଲର୍ଡ଼', ସେମାନେ କହୁଛନ୍ତି ଆଜି ଗେ' ଲର୍ଡ଼ର ଦିନ । ଜଣେ କିଏ ବାଜିମାରି କହୁଚି, ଆରେ କୋଡ଼ିଏ ବର୍ଷ ରେସ୍ ଖେଳିଲିଣି । ଗେ' ଲର୍ଡ଼ ନ ଆସିଲେ ମୋ ବାପ ନାଆଁ– । ବୁକିଂମାନଙ୍କ ପାଖରେ ମହୁମାଛି ପରି ଦଳ ଦଳ ରେସ୍ ଖେଳାଳୀ ଟିକଟ୍ କିଣୁଛନ୍ତି । ଝାଙ୍କେ ଝାଙ୍କେ ଆସି ଉପରେ ଉପରେ ପଡୁଛନ୍ତି; ଆଉ କହୁଛନ୍ତି ଗେ' ଲର୍ଡ଼, ଗେ' ଲର୍ଡ଼ । ଆଜି ସାରା ପଡ଼ିଆର ରାଜା ଗେ' ଲର୍ଡ଼ ।

ଏଇ ସୁଯୋଗ । ତ୍ରୈଲୋକ୍ୟ ଏକାଥରକେ ଦୁଇଶହ ଟଙ୍କା ଦେଇ ଚାରିଟା ଟିକଟ୍ କିଣିଲା ଗେ' ଲର୍ଡ଼ ଉପରେ । ଆଃ ! ଗେ' ଲର୍ଡ଼ ଜିତିଲେ କାହିଁ ଦୁଇଶହ, କାହିଁ ଚାରି ହଜାର ! ପୁଣି କିଣିଦେବି ମାଆର ମଙ୍ଗଳସୂତ୍ର । ମିତ୍ରା ପାଇଁ ଶାଢ଼ୀ ବି କିଣିବି ।

ସେ'ଟା ଥିଲା ତୃତୀୟ ରେସ୍ । ଘୋଡ଼ାମାନେ ଲାଇନ୍ କରି ଠିଆ ହେଇଗଲେଣି । କିଏ ଜଣେ କହୁଚି, ''ଆଜି ଗେ' ଲର୍ଡ଼ର ନାକଟା ଗୋଟିଏ ସଜଡ଼ପରି ଓଦା ଥିଲା ।'' ଆଉ ଜଣେ କହୁଚି, ''ଆରେ ଗେ' ଲର୍ଡ଼ ବମ୍ବେ ଆଉ ବାଙ୍ଗାଲୋର୍‌ରେ କେତେ ନାଆଁକରା ଘୋଡ଼ାକୁ କାଦ୍ କରିଦେଇ ଆସିଛି ।'' ଟଙ୍ଗ୍ କରି ଘଣ୍ଟା ବାଜିଲା । ତ୍ରୈଲୋକ୍ୟ ଭାବୁଥାଏ, ତା' ଭିତରେ ଆଉ ଚାରିହଜାର ଟଙ୍କା ଭିତରେ ଆଉ ମାତ୍ର ସାଢ଼େ ଚାରି ମିନିଟ୍ ସମୟର ତଫାତ୍ । ଗେ' ଲର୍ଡ଼ ବି ଛୁଟିଛି ସମସ୍ତଙ୍କ ଆଗରେ । ଜଣେ କିଏ ଦେଖେଇ ଦଉଚି, ''ହେଇ...ସେଇ ଆଠ ନମ୍ବର ଘୋଡ଼ା, ଜକିର ନେଳିଆ ଜ୍ୟାକେଟ୍ ଆଉ ହଳଦିଆ ଟୋପି ।'' ଗେ' ଲଡ଼ ଆଖି ପିଛୁଳାକେ ଆଗକୁ ଆଗକୁ ଧସି ଆସୁଛି । କାହିଁ ଦଶଫୁଟ ପଛରେ ଆଉସବୁ ଘୋଡ଼ା । ପଡ଼ିଆଟା ସାରା ହଇଚଇ, ସମସ୍ତଙ୍କ ମୁହଁରେ ସେଇ ଗୋଟିଏ ଧ୍ୱନି । ଗେ' ଲର୍ଡ଼–ଆରେ ଗେ' ଲର୍ଡ଼ । ପଡ଼ିଆର ଶେଷ ମୋଡ଼ । ଆଉ ଦି' ଶହ କି ତିନି ଶହ ଗଜ । ଗେ' ଲର୍ଡ଼ ତଥାପି ଆଗୁଆ ଆଗୁଆ ଚାଲିଛି । କିନ୍ତୁ ଏ କଅଣ ? ପଛରେ ଗୋଟିଏ ଘୋଡ଼ା ଜୋର୍‌ରେ ଝପଟି ଆସୁଛି କାହିଁକି ? ଜକି ତା' ଉପରେ ବସି ନିର୍ଘାତ୍ ଚାବୁକ୍ ପିଟି ଚାଲିଛି । ଇସ୍ ! ଏଇ ତ ଲାଗି ଆସିଲା । ପଡ଼ିଆ ଓଲଟି ଗଲା । କିଏ ତଣ୍ଟି ଫଟେଇ ଚିତ୍କାର କଲା, 'ମାଇଁ ବୟ' ! 'ମାଇଁ ବୟ' । ଇସ୍ ! ତ୍ରୈଲୋକ୍ୟ ଆଉ ଚାହିଁ ପାରୁନାହିଁ । ଆଉ ଦେଢ଼ ସେକେଣ୍ଡର କଥା । ଚାହୁଁ ଚାହୁଁ ଦୁଇଟାଯାକ ଘୋଡ଼ା ପ୍ରାୟ ଏକା ସାଙ୍ଗରେ

ଫ୍ଲାଗ୍‌ପୋଷ୍ଟ ପାରି ହେଇଗଲେ । ଜନତା ଉପରକୁ ଚାହିଁଲା । ଫଟୋ ଫିନିସ୍ । ଫଟୋ ଯିବ ଜଜ୍‌ମାନଙ୍କ ପାଖକୁ, ସେମାନେ ଫଟ ଦେଖି ଘୋଷଣା କରିବେ ଆଗ 'ଗେ ଲର୍ଡ୍' ଡେଇଁଚି ନା ମାଇଁ ବୟ । ପଡ଼ିଆରେ ହଲ୍‌ଚଲ୍ ନାହିଁ, ସମସ୍ତେ ଉର୍ଦ୍ଧ୍ୱମୁଖୀ ହେଇ ନୀରବରେ ଭିକ୍‌ଟରୀ ପୋଷ୍ଟ୍‌କୁ ଅନେଇ ରହିଛନ୍ତି । ଏତେ ଗଣ୍ଡଗୋଳ ଏତେ ପାଟିତୁଣ୍ଡ ହଠାତ୍ କେମିତି ଏକାଥରକେ ସ୍ତବ୍ଧ ହୋଇଗଲା ? ଏ ମଧ ସେଇ ତୁନ୍ଦ୍ରା ପ୍ରଦେଶର ସ୍ତବ୍ଧତା, ଏଠି ମଧ ସେଇ ତୁଷାରପାତ ।

ହଠାତ୍ ଜନତା ଚିତ୍କାର କରି ଉଠିଲା, 'ମାଇଁ ବୟ, ମାଇଁ ବୟ' । ହାରିଗଲା ଘୋଡ଼ାର ମଧମଣି ଗେ' ଲର୍ଡ୍, ଆଉ ତା' ସାଙ୍ଗେ ସାଙ୍ଗେ ହାତଛଡ଼ା ହୋଇଗଲା ତ୍ରୈଲୋକ୍ୟର ପିତାମହୀଙ୍କର ସ୍ୱର୍ଣ୍ଣ ମଙ୍ଗଳସୂତ୍ର । ତ୍ରୈଲୋକ୍ୟର ମନେ ହେଲା ମୁହୂର୍ତ୍ତକ ପାଇଁ ତା' ଗୋଡ଼ତଳୁ ସବୁ ମାଟି ଅପସରି ଯାଉଛି । ତା'ରି ଆଖି ଆଗରେ ଦି' ଚିରିଚା ଛୋଟ ଛୋଟ ତାରା ଜଳିଲେ, ଲିଭିଲେ, ଜଳିଲେ, ଲିଭିଲେ । ରେସ୍‌କୋସରୁ ଫେରୁଥିବା ଲକ୍ଷ ଲକ୍ଷ ଜନତା ସହିତ ତ୍ରୈଲୋକ୍ୟ ବି ପାଦ ଘୋଷାରି ଚାଲିଲା । ସନ୍ଧ୍ୟା ହେଇ ଆସୁଚି, ଗୋଟିଏ ଛୋଟ ସାଇନ୍‌ବୋର୍ଡ୍ ଦେଖି ତ୍ରୈଲୋକ୍ୟ ଏକ ଦେଶୀ ମଦ ଦୋକାନର ସନ୍ଧାନ ପାଇଲା । ସେ ପ୍ରକୃତରେ କ୍ଳାନ୍ତ । ମଦ ତା'ର ଶୀତଳ ସ୍ନାୟୁକୁ କିଛିଟା ଉତପ୍ତ କରିବା ସମ୍ଭବ । ମଦ ପାଇଁ ତା' ପାଖରେ ପ୍ରଚୁର ଟଙ୍କା ଅଛି । ପର୍‌ବାୟ କଅଣ ? ସେଇଠି ବସି ବସି କେତେ ଗ୍ଲାସ୍ ମଦ ସେ ଖାଇଚି, ସେ ନିଜେଇ ଜାଣେ ନା । ସେ କଅଣ କରିଚି ତା' ବି ଜାଣେ ନା । ସେ କେବଳ ଆଜି ସକାଳୁ ନିଜକୁ ଏଇ ମାତ୍ର ହାଜତରେ ଆବିଷ୍କାର କରିଛି ।

ଆହୁରି କୋଳାହଳ ବଢ଼ିଲା । କନେଷ୍ଟବଲ୍‌ମାନେ ଚମଡ଼ାର କମ୍‌ରପେଟି ବାନ୍ଧିଲେ । ହାତରେ ଦଉଡ଼ି ଆଉ ହାତକଡ଼ି ସଜେଇ ନେଲେ । ସେମାନଙ୍କୁ ସେଇ ଲୁହା ତାର ଘେରା ଜେଲ୍ ଭ୍ୟାନ୍ ଭିତରେ ପଶିଯିବାକୁ ପଡ଼ିବ ଆଲିପୁର କୋର୍ଟକୁ । ହୁ କେଅରସ୍ ? ଆଲିପୁର କି ଯାଦବପୁର, କଲିକତା କି ଜବ୍‌ବଲପୁର । ରାସ୍ତାର ଭାରି ଟ୍ରାଫିକ୍ କଟେଇ ଜେଲ୍ ଭ୍ୟାନ୍ ଚାଲିଛି । ହଠାତ୍ ତ୍ରୈଲୋକ୍ୟର ମନେ ହେଲା, ତାକୁ କଅଣ ବାପା, ମାଆ, ମିତ୍ରା, ସୀତୁ, ଧୁନା, ମୀନା ଖୋଜୁଥିବେ ? କୋ'ଟା ଭଲ ? ଏଇ ଜେଲ୍‌ଭ୍ୟାନ୍ ନା ତା' ଘରର ସନ୍ତସନ୍ତିଆ ଚଟାଣ ? ଜେଲ୍ ଭ୍ୟାନ୍ କୋର୍ଟ୍ ନିକଟରେ ପହଞ୍ଚି ଯାଉଥିଲା ଓ ତ୍ରୈଲୋକ୍ୟ ତା'ର ସହବନ୍ଦୀମାନଙ୍କ ସହିତ ଧାଡ଼ିବାନ୍ଧି କୋର୍ଟ୍‌ର ପାହାଚ ଚଢୁଥିଲା । ଏଠି ଏତେ ସ୍ତ୍ରୀଲୋକ କାହିଁକି ? ଗୋଟାଏ ଜାଲିଘେରା ଘର ଭିତରେ ପ୍ରାୟ ତିରିଶି ଜଣ ହବ ସ୍ତ୍ରୀଲୋକ । ସହବନ୍ଦୀମାନଙ୍କ ଭିତରୁ କେହି କେହି ହସୁଚି, କିଏ ସିଟି ମାରୁଚି । ପୁଣି କିଏ ଅଶ୍ଳୀଳ ମନ୍ତବ୍ୟ କରୁଚି । କିନ୍ତୁ ଏମାନେ ଏଠି କାହିଁକି ? ହଠାତ୍ ତ୍ରୈଲୋକ୍ୟର ଜିଭ ଶୁଖିଗଲା । ସେ ଚିତ୍କାର କରି ଡାକିବାକୁ

ଯାଉଥିଲା, ମିତ୍ରା...। କିନ୍ତୁ ଡାକି ପାରିଲା ନାହିଁ । କିନ୍ତୁ ମିତ୍ରା ତ୍ରୈଲୋକ୍ୟକୁ ଠିକ୍ ଦେଖିଛି । ଜାଲି ଏପଟ ଆଉ ସେପଟ । କଅଣ ବା ଲାଭ ସଙ୍କୋଚ କରି ।

ତ୍ରୈଲୋକ୍ୟ ତା' ପାଖରେ ଚାଲୁଥିବା କନ୍‌ଷ୍ଟେବଲ୍‌ଟିକୁ ଏ ସ୍ତ୍ରୀଲୋକମାନଙ୍କର ଏଠିକି ଆସିବାର କାରଣ ପଚାରିଲା । କନ୍‌ଷ୍ଟେବଲ୍‌ଟି ଟିକେ ହସିଲା, କହିଲା "ତୁମେ ବୋଧେ ନୂଆ–କିଓ, ପ୍ରତିଦିନ ଏଠିକି ଏଇ ବେଶ୍ୟାଗୁଡ଼ାକ ମଇଦାନ ଭିତରୁ ଧରାହୋଇ ଡର୍ଜନ ଡର୍ଜନ୍ ହେଇ ଆସନ୍ତି ।" ତ୍ରୈଲୋକ୍ୟର ଭାବିବାର ଶକ୍ତି ଲୋପ ପାଇଥିଲା ।

ତ୍ରୈଲୋକ୍ୟ ଗୋଟାଏ କାଛକୁ ଆଉଜି ରହି ଜାଲି ଘେର ଭିତରର ସେଇ ସ୍ତ୍ରୀଲୋକମାନଙ୍କୁ ଅନେଇ ରହିଥିଲା । ସେମାନଙ୍କର ମୁହଁ ଉପରୁ ଚୂନ ପଲସ୍ତରା ଖସିଲାପରି ଛେଲା ଛେଲା ହେଇ ପ୍ରସାଧନ ଖସି ଆସିଛି । ସେମାନଙ୍କର ବି କିଛି ସଙ୍କୋଚ ନାହିଁ, କିଛି ଲଜ୍ଜା ନାହିଁ । ଏ'ଟା ଯେପରି ସେମାନଙ୍କର ଗୋଟିଏ ସାଧାରଣ ପରିଣତି । ଏଇ ଚାହିଁ ରହିବା ଭିତରେ ତ୍ରୈଲୋକ୍ୟର ଆଖି ଦୁଇ ଚାରିଥର ମିତ୍ରାର ଆଖି ସହିତ ମିଶିଛି; କିନ୍ତୁ କେହି ଆତ୍ମଗୋପନ କରିବା ପାଇଁ ବା ଆଖି ଫେରେଇ ନବା ପାଇଁ ସାମାନ୍ୟତମ ଛଳନା ମଧ୍ୟ କରିନାହାନ୍ତି ।

କେତେବେଳେ ମିତ୍ରା ହାତଠାରି ତ୍ରୈଲୋକ୍ୟକୁ ପାଖକୁ ଡାକିଲା । ତ୍ରୈଲୋକ୍ୟ ଅନୁନୟ କରି କନ୍‌ଷ୍ଟେବଲ୍‌ର ଅନୁମତି ମାଗିଲାବେଳେ ସହବନ୍ଦୀମାନେ ଉପହାସ କରି ଉଠିଲେ, "ଆରେ ଦି'ଚିଡ଼ିଆଯାକ ଏକାଠି ପଡ଼ିଯାଇଛନ୍ତି ।" ଏ ମନ୍ତବ୍ୟକୁ ତ୍ରୈଲୋକ୍ୟ ତିଳେମାତ୍ର ଭ୍ରୂକ୍ଷେପ ନ କରି ମିତ୍ରା ପାଖରେ ଯାଇ ପହଞ୍ଚିଲା । ମଝିରେ କେବଳ ଗୋଟାଏ ଲୁହାର ଜାଲିବାଡ଼ । ମିତ୍ରା ସେଇ ଜାଲି ଭିତରେ ଗୋଟିଏ ଆଙ୍ଗୁଠି ଗଳେଇ ତ୍ରୈଲୋକ୍ୟ ହାତକୁ ସ୍ପର୍ଶ କଲା । ଦୁଇଜଣଯାକ ନୀରବ । ଦୁଇଜଣଙ୍କର ଚକ୍ଷୁ ବାଷ୍ପାକୁଳ । ଏଠି ବି, ସେଇ ତୁନ୍ଦ୍ରା ପ୍ରଦେଶ । ଏଠି ବି ସେଇ ତୁଷାରପାତ ।

କେତେବେଳେ ଗଳା ପରିଷ୍କାର କରି ମିତ୍ରା କହିଲା, "ଭାଇ ! ଆମର ପିଲାଦିନଟା ଭାରି ସୁନ୍ଦର ଥିଲା, ନାଇଁ ?" ତ୍ରୈଲୋକ୍ୟ କିଛି ଜବାବ୍ ଦେଲା ନାହିଁ । ଗୋଟାଏ ଦିଗକୁ ଅନେଇ ରହି ଆଖିରୁ ଲୁହ ପୋଛିଲା । ଆଉ ମୁଣ୍ଡ ଟୁଙ୍ଗାରି ହିଁ ଭରିଲା । ହଠାତ୍ ତ୍ରୈଲୋକ୍ୟ କହିଲା, "ଦେଖ୍ ଦେଖ୍ ମିତ୍ରା, ସେଠି ଗୋଟାଏ କି ସୁନ୍ଦର ରକ୍ତ କଇଁ ଫୁଟିଛି ।" ମିତ୍ରା ସେ ଆଡ଼କୁ ଚାହିଁଲା ।

କଚେରୀ ହତା ପାଖକୁ ଲାଗି ଗୋଟାଏ ବିରାଟ ପୁଷ୍କରିଣୀର ବିସ୍ତୃତ ଜଳରାଶି ସୂର୍ଯ୍ୟସ୍ନାନ କରୁଥିଲେ ଏବଂ ତା' ଉପରକୁ ମୁଣ୍ଡ ଟେକିଥିଲା ଗୋଟାଏ କଇଁଫୁଲ ପୃଥିବୀର ରକ୍ତ ତାରକା ପରି ।

ତ୍ରୈଲୋକ୍ୟ ଆଉ ଟିକିଏ ଅନୁଧ୍ୟାନ କରି ଦେଖିଲା ସେଇ କଇଁଫୁଲ ଉପରେ ଗୁଣ୍ଡ ଗୁଣ୍ଡ ଶୁଭ୍ର ତୁଷାର ତଥାପି ଝରୁଛି ।

# ଋତୁଚକ୍ର

ତା' ନାଁ ଯେ ପ୍ରକୃତରେ କଅଣ ସେକଥା କେହି ଜାଣି ନଥିଲେ, କିନ୍ତୁ ତାକୁ ଡକା ଯାଉଥିଲା ଯୁଆଙ୍ଗ । ଏଇ ଯୁଆଙ୍ଗ ନାଁଟା ଯେମିତି ତା' ପାଇଁ ଖୁବ୍ ଉପଯୁକ୍ତ ନାଁ ଥିଲା । ତା'ର ଚିକ୍‌କଣ କଳା ଦିହ, ବଳିଲା ବଳିଲା ମାଂସପେଶୀ ଆଉ ବଡ଼ ବଡ଼ ନିରୀହ ଆଖି ଯେମିତି ଏଇ ଯୁଆଙ୍ଗ ନାଁ ସହିତ ଠିକ୍ ମିଶି ଯାଉଥିଲା ।

ଆଜିକାଲି କଥା ଅବଶ୍ୟ ଅଲଗା । କାରଣ ଯୁଆଙ୍ଗ କଟକ ମାଲଗୋଦାମକୁ ବାହାରି ଆସିଲାଣି । କୋରାପୁଟ୍‌ର ଡୁଙ୍ଗି ଗାଁ ତଳେ ଯେଉଁ ପଡ଼ିଆ ସେଠିକି ସକାଳୁ ହଳ ବଳଦ ଧରି ଯୁଆଙ୍ଗ ବାହାରିଯାଏ । ଘରେ ତା'ର ବାପା ବସି ପିକା ଟାଣୁଥାଏ, ଆଉ ବାରିପଟର ଶଳପ ଗଛକୁ ଅନେଇ ବସିଥାଏ । ଶଳପ ଗଛରେ ଆଟିକା ବସିଛି । ସନ୍ଧ୍ୟା ବେଳକୁ ଶଳପ ମଦ ଶିରା ଶିରାରେ ଭେଦିଯିବ ଆଉ ଦାଣ୍ଡରେ ଯୁଆନ୍ ପୁଅ ଝିଅମାନେ ଧାଡ଼ି ବାନ୍ଧି ହାତରେ ହାତ ଛନ୍ଦି ନାଚିବେ । ସେ ଲହରା ଗୀତ ଆଉ ନାଚ ଯେମିତି ଅସରନ୍ତି । ତା'ର ସମୟ ନାହିଁ, ଗୋଡ଼ ହାତ ଥକି ପଡ଼ିଲେ ସେ ନାଚର ଶେଷ ।

କିନ୍ତୁ ଯୁଆଙ୍ଗର ଦିନେ ନିଜର ଜମି ହବ ସେକଥା ଯୁଆଙ୍ଗ କାହିଁକି ଯୁଆଙ୍ଗ ବାପ ଜେଜେ ବି ସେକଥା କେବେହେଲେ କଳ୍ପନା କରିପାରି ନଥିଲେ । ଯୁଆଙ୍ଗର ଡୁଙ୍ଗି ଗାଁରେ ମାତ୍ର ଆଠ ଦଶ ଘର ଲୋକ ଆଉ ସେଇ ପଲ୍ଲୀ ଗାଁଟିକୁ ଘେରି ମାଇଲ୍ ମାଇଲ୍ ଖୋଲା ପଡ଼ିଆ ଆଉ ସେ ପଡ଼ିଆକୁ ଚାରିପଟେ ନିବୁଜ୍ କରି ଚିପି ଧରିଚି ଆବୁଆବୁକା ଅନେକ ପାହାଡ଼ । ଯେମିତି ଏଇ ପାହାଡ଼ଗୁଡ଼ାକ ଚାରିପଟୁ ନିବୁଜ୍ କରି ଚିପି ଧରି ନ ଥିଲେ ଖୋଲା ପଡ଼ିଆଗୁଡ଼ାକ କୁଆଡ଼େ ନା କୁଆଡ଼େ ପଳେଇ ଯାଆନ୍ତା !

ଖାଲି ଯୁଆଙ୍ଗ କାହିଁକି, ଡୁଙ୍ଗି ଗାଁରେ କାହାର ଜମି ନ ଥିଲା । ଜମି ତ ଲୋକମାନଙ୍କର ହୁଏ ନା । ଜମି ହୁଏ ସାହୁକାରର ନ ହେଲେ ବଳକା ଜମି ସରକାରଙ୍କର । ଯୁଆଙ୍ଗର ବାପ ଅଜାଙ୍କର ବେଉସା ଥିଲା ଜଙ୍ଗଲରୁ କାଠ କାଟି ଭାର ଭାର କରି ଘରଂକୁ ବୋହି ଆଣିବା । ଖଣ୍ଡେ ଖଣ୍ଡେ କଉପୁନି ପିନ୍ଧି ଲୋକଗୁଡ଼ାକ ଧାଡ଼ି ବାନ୍ଧି ଚାଲୁଥାଆନ୍ତି । ଚାଲିବାର ତାଳ ସାଙ୍ଗରେ ତାଳ ପକେଇ କାନ୍ଧର ବାହୁଙ୍ଗା ନକ୍ ନକ୍ ହଉଥାଏ କାଠର ବୋଝରେ । ସନ୍ଧ୍ୟା ନଇଁ ଆସିଲେ ତାଙ୍କ ପଲ୍ଲୀରେ ଧୂଆଁ ଉଠେ

ଉପରକୁ । କିଏ କନ୍ଧ, କିଏ ମଟକା ନ ହେଲେ କିଏ କାଙ୍କଡ଼ ରାନ୍ଧୁଚି । ଆଚ୍ଛା କରି ଶଳପ ପିଆ ହୁଏ ଆଉ ତା' ପରେ ଗୀତ ନାଚ । ସିଏ ଅସରନ୍ତି । ବାର୍‌ହା ପାହାଡ଼ ଖୋଲରେ ତାଙ୍କର ପଲ୍ଲୀ ଗାଁ । ସକାଳୁ ସେଇ ପାହାଡ଼ ଉପରେ ସୂର୍ଯ୍ୟ ଦେବତା ଉଠନ୍ତି । ଗାଁର ସବୁ ଲୋକ ସୂର୍ଯ୍ୟଙ୍କୁ ଜୁହାର ହୁଅନ୍ତି, ମାତା ବସୁମତୀକୁ ହାତରେ ଛୁଇଁ ମୁଣ୍ଡରେ ଲଗାନ୍ତି । ସେମାନଙ୍କର ସଂସାର ଅଳ୍ପ, କେତେଟା କଥା ନେଇ ଗଢ଼ା । ସୂର୍ଯ୍ୟ, ମାତା ବସୁମତୀ, ପାହାଡ଼ ଆଉ ବୃକ୍ଷ । ସମସ୍ତେ ଦେବତା,ତେଣୁ ସମସ୍ତେ ଖୁସି ହୁଅନ୍ତି, ନ ହେଲେ ରାଗି ବି ଯାଆନ୍ତି । ତେଣୁ ଡୁଙ୍ଗି ଗାଁର ଲୋକମାନେ ଏମାନଙ୍କୁ ଖୁବ୍ ସମୀହ କରି ଚଳନ୍ତି । ଗଛ ପରି ଏଇ ଗାଁର ଲୋକମାନେ ଜନ୍ମ ହୁଅନ୍ତି, ବଡ଼ ହୁଅନ୍ତି, ଡେଙ୍ଗା ହୁଅନ୍ତି । ଆଉ ତା'ପରେ ଧୀରେ ଧୀରେ ବଳ ଭାଙ୍ଗିଯାଏ, ଆଉ କୋ' ଦିନ କାହିଁକି କେହି କେହି ମରିଯାଆନ୍ତି । ଲୋକମାନେ ତ ସେମିତି ମରନ୍ତି ନାହିଁ, ମରନ୍ତି ଦେବତାର କ୍ରୋଧରୁ, ମରନ୍ତି କିଛି ନା କିଛି ପାପ କରିଲାରୁ ।

କିନ୍ତୁ ଯୁଆଙ୍ଗ ତ କିଛି ପାପ କରି ନଥିଲା । ସେ ଥିଲା ନିଷ୍ପାପ ଶିଶୁ । ସେଦିନ ତାକୁ କେତେ ବୟସ ହେଇଥିଲା ତା'ର ଜାଣିବାର ଯୁ' ନଥିଲା । ଯେଉଁମାନେ ବୟସର ହିସାବ ରଖନ୍ତି ବା କରିପାରନ୍ତି ସେମାନେ ଦେଖିଥିଲେ ହୁଏତ କହିଥାଆନ୍ତେ ନ' କି ଦଶବର୍ଷ ହବ । ଯୁଆଙ୍ଗ ଜାଣେନା ଯେ ସେଦିନ ଗୋଟାଏ କ'ଣ ପରବ ଥିଲା ଆଉ ଯୁଆଙ୍ଗର ବାପା ଶଳପ ଖାଇସାରି ପିଢ଼ାରେ ନିଆଁ ଧରଉଥିଲା । ଆଉ ଠିକ୍ ସେତିକିବେଳେ ସହରରୁ ସାହୁକାର ଆସି ତା' ଆଗରେ କେମିତି ଠିଆ ହେଇଗଲା । ସେଦିନ ତା' ବାପା ଦୁଇ ହାତ ମୁଣ୍ଡରେ ଠେକେଇ ଜୁହାର ହେଇଥିଲା, ଯେମିତି ସେ ଜୁହାର କରେ ଦେବତାମାନଙ୍କୁ । ସାହୁକାର କିଛି କହିବା ପୂର୍ବରୁ ସେ କହିଥିଲା ଯେ ପୁଷୁ ପରବ ଆଗରୁ ସେ ତା'ର ଟଙ୍କା ସୁଧ କଳନ୍ତର ସହିତେ ସବୁ ଛିଣ୍ଡେଇ ଦବ; କିନ୍ତୁ ସାହୁକାର ସେଦିନ ଖୁବ୍ କଟାକ୍ଷ କରିଥିଲା, କେଡ଼େ କେଡ଼େ କଥାମାନ କହିଥିଲା । ଯୁଆଙ୍ଗ ବାପାର ମୁଣ୍ଡକୁ ଖୁବ୍ ନିଶା ଚଢ଼ି ଯାଇଥିଲା, କେତେବେଳେ କଅଣ କରି ପକେଇବ ପରି ଅବସ୍ଥା । ସାହୁକାର ହିସାବ କରି କହିଥିଲା ଯେ ପନ୍ଦର ଟଙ୍କା ସୁଧ କଳନ୍ତର ମିଶେଇ ହେଲା ସତୁରୀ ପାଞ୍ଚ ଟଙ୍କା । ଆଉ ଯଦି ସିଏ ଟଙ୍କା ନ ଦେଇ ପାରୁଚି ତାହାହେଲେ ତା ପୁଅକୁ ଦେଇଦଉ ଗୋତୀ ଲାଗି ଟଙ୍କା ଶୁଝା ପଡ଼ିଯିବ । ଯୁଆଙ୍ଗର ମନେ ନାହିଁ, ମନେ ନ ଥିବା କଥା ମଧ୍ୟ । ଯୁଆଙ୍ଗ ବୋଧହୁଏ ବାପ ପାଖରେ ହେଁସ ଘୋଡ଼ି ହୋଇ ବସି ନିର୍ବୋଧ ଆଖିରେ ଜୁଳୁଜୁଳୁ କରି ଚାହିଁ ରହିଥିଲା କେବଳ । ବାପ ଧଡ଼ାସ୍‌କିନି ହେଁସଟାକୁ ଯୁଆଙ୍ଗ ଉପରୁ କାଢ଼ିଦେଇ ଯୁଆଙ୍ଗକୁ ପେଲି ଦେଇଥିଲା ସାହୁକାର ପାଖକୁ, ଯୁଆଙ୍ଗ ପଡ଼ି ଯାଉ ଯାଉ ଅଟକି ଯାଇଥିଲା । ବାପର ଏତେଟିକେ ମାୟା ହେଇନାହିଁ ସେ ଯେମିତି ସାହୁକାରକୁ ଟଙ୍କା ବାବଦକୁ ଦେଇ ଦଉଛି ଗୋଟାଏ

ଛେଳି କି ଘୁଷୁରୀ କି କୁକୁଡ଼ା । ବାସ୍ ସେତିକି, ଆଉ କଥାବାର୍ତ୍ତା ନାହିଁ । ସାହୁକାର ଚାଲିଲା ଆଉ ତା' ପଛେ ପଛେ ଚାଲିଲା ଯୁଆଙ୍ଗ ପୋଷା ମେଣ୍ଢା ଛୁଆ ପରି ।

ସେ ନ ଯାଆନ୍ତା କେମିତି ? ବାପର ଋଣ ପୁଅ ପରିଶୋଧ କରିବା କଥା କି ନା ସେ ଜଟିଳ ହିସାବ ଯୁଆଙ୍ଗକୁ ଜଣାନାହିଁ । ତେବେ ଏତିକି ତାକୁ ଜଣା ଯେ ବାପ କଥା ଦେଇଛି ସାହୁକାରକୁ । ତେଣୁ ସାହୁକାର ପଛେ ପଛେ ଯିବା ତା'ର ଧର୍ମ । ତା' ଗାଁରେ କେହି ମିଛ କହେ ନାହଁ, ଅଧରମ କରେ ନାହିଁ । ସେଥିପାଇଁ ତ ତା'ରି ନିଜ ବାପା ତା'ର ଗୋସେଇଁ ବାପକୁ କାଣ୍ଡଶର ମାରି, ମାରି ଦେଇଥିଲା ଆଉ ସାତ ବରଷ ଜିଅଲ୍ ଖଟି ଫେରିଛି ।

ସେ ଘଟଣା ସହରିଆ ଲୋକଙ୍କ ଆଖିରେ ଥିଲା ଅତ୍ୟନ୍ତ ସାଧାରଣ; କିନ୍ତୁ ସେମାନଙ୍କ ପାଇଁ ଥିଲା ଗୁରୁତର ଅପରାଧ । ବାପ ପୁଅ ଭିତରେ ଘୁଷୁରୀ, ଛେଳି, କଂସା ଏପରିକି ଶଳପ ଗଛ ପର୍ଯ୍ୟନ୍ତ.ଭାଗ ବଣ୍ଟରା ସରିଥିଲା । ଭାଗବଣ୍ଟରା ଆଉ କ'ଣ ମୁହେଁ ମୁହେଁ କଥା—ଏଇଟା ମୋର ଏଇଟା ତୋ'ର । ତା'ର ବାପ ଶଳପ ଗଛରେ ଆଟିକା ବସେଇଥିଲା, କିନ୍ତୁ ତା'ର ପର ତିନିଦିନ ଧରି ନଟାରୁ ଫେରିଲାବେଳକୁ ଆଟିକା ଖାଲି । ନଟାକୁ ଯିବାର ବାହାନା କରି ସେଦିନ ବାପା ତା'ର ଛପିଗଲା । ଦେଖିଲା ତା'ର ଗୋସେଇଁ ବାପା ଶଳପ ଗଛରେ ଚଢୁଚି । ଯୁଆଙ୍ଗ ବାପା ଆସି ଶଳପ ଗଛ ତଳେ ଠିଆ ହେଇ ବାପକୁ କହିଲା, ''ପିଇ, ପିଇଯା, ଯାହା ପିଇବୁ ଆଜି ଦିନକ ପାଇଁ ।'' ତା'ପରେ କାଣ୍ଡଶର ଧରି ନାଛି ଦେଲା, କାଣ୍ଡଟା ଯାଇ ବାଜିଲା ବାପ ପିଠିର ମଝି ଭାଙ୍ଗ ପାଖରେ, ଆଉ ସେମିତି କାଣ୍ଡଲଗା ହେଇ ବାପ ଖସିପଡ଼ିଲା ତଳକୁ । ଥରେ କଥା ହେଇ ଯାଇଛି ଏ ଗଛ ତୋର—ଏ ଗଛ ମୋର, ଫେର୍ କଥାର ଖିଲାପ କ'ଣ ?

ଯୋ କାରଣ ପାଇଁ ତା'ର ବାପ ତା'ର ଗୋସେଇଁ ବାପାକୁ ମାରିଥିଲା ଠିକ୍ ସେଇ କାରଣରୁ ଆଜି ଯୁଆଙ୍ଗ ତା'ର କୁଡ଼ିଆ, ତା'ର କୁକୁଡ଼ା ଛୁଆ, ଆଉ ତା'ର ପାହାଡ଼ ଝରଣା ସବୁ ପଛକୁ ପକେଇ ଦେଇ ସାହୁକାର ପଛେ ପଛେ ବାଧ ମେଷଶାବକ ପରି ଡଗ ଡଗ ପାହୁଣ୍ଡ ପକେଇ ଚାଲୁଥିଲା । ସେ କୁଆଡ଼େ ଯାଉଥିଲା ସେ ଜାଣେନା । କେବଳ ଏତିକି ଜାଣେ ସେ ସୂରୁଜ ଦେବତା ଯୁଆଡୁ ଉଅଁନ୍ତି, ସେ ଚାଲୁଥିଲା ତା'ର ବିପରୀତ ଦିଗକୁ । କିଛି ବାଟ ଯାଇ ପଛକୁ ଫେରି ଚାହିଁଲା ଯୁଆଙ୍ଗ । ତା'ର କୁଡ଼ିଆ ଆଉ ଦିଶୁ ନଥିଲା; କିନ୍ତୁ ବାର୍‌ହା ପାହାଡ଼ର ମେଣ୍ଢା ମୁଣ୍ଡିଆ ନାସି ତଥାପି ଦେଖାଯାଉଥିଲା ।

ଯୁଆଙ୍ଗର ଏସବୁ କଥା ଠିକ୍ ଠିକ୍ ଭାବରେ ମନେନାହିଁ, ତେବେ ଗୋଟାଏ ଘସରା ପଇସା ପରି ଏଇ ବିକଳ ସ୍ମୃତି ମଝିରେ ମଝିରେ ତା' ପାଖକୁ ଲେଉଟି ଆସେ ।

ଗାଆଁ ଛାଡ଼ିବା ଦିନଠାରୁ ଯୁଆଙ୍ଗ ଗାଆଁଟାକୁ ଇଚ୍ଛା କରି ଭୁଲିବାକୁ ଚେଷ୍ଟା କରୁଥିଲା । କାରଣ ସିଏ ତ ଆଉ ତା' ଗାଆଁର ନୁହଁ, ସିଏ ଏକ ସମ୍ପତ୍ତି, ଯିଏ ହସ୍ତାନ୍ତରିତ ହୋଇଯାଇଛି । ତା'ପରେ ଯୁଆଙ୍ଗ ଗାଆଁ, ଗାଆଁରୁ ବଡ଼ ଗାଆଁ, ପୁଣି ବଡ଼ ଗାଆଁରୁ ସହରକୁ ଚାଲିଛି । ତା'ର ଚାଲିବାର ଯେପରି ଶେଷ ନାହିଁ । ତା'ର ଏଇ ଯାତ୍ରା ଭିତରେ ସବୁଠାରୁ ବଡ଼ ବିସ୍ମୟ, ଯାହା ତା'ର ମନେଅଛି ତାହା ହେଲା ରେଳ ଇଞ୍ଜିନ୍ । ଏଡ଼େ ବଡ଼ ଗୋଟାଏ କଳାଭୁଷୁଣ୍ଡା ଗୋଟାଏ ଲୌହ ଦାନବ ଧୂଆଁ ଫୁତ୍କାର କରି ମାଡ଼ିଆସେ; କିନ୍ତୁ କୋ'ଠୁ ବା ଆସେ, କୁଆଡ଼େ ବା ଯାଏ, ସେକଥା ସେ ଜାଣେନା ଏବଂ ତା'ର ଜାଣି ମଧ ଲାଭ ନାହିଁ ।

ତା'ର ନିଜର ବୟସ ବି ଯୁଆଙ୍ଗ ଜାଣେନା । ମାଆ କୁକୁର ତା'ର ଛୁଆମାନଙ୍କୁ ଗଣି ନ ପାରିଲା ପରି ସେ ଗଣିପାରେନା; କିନ୍ତୁ ଚାଉଳ, ବିରି, କୋଳଥ ବସ୍ତାସବୁ ଗୋଟାଏ ଝାଙ୍କରେ ଉଠେଇ ନେଇ ଗୋଦାମ ଭିତରକୁ ଫୋପାଡ଼ି ଦେଇପାରେ । ଇଏ ଗୋଟାଏ ଅଦ୍ଭୁତ ଜାଗା । ଖାଲି ବସ୍ତା, ଖାଇବାର ରସଦ; କିନ୍ତୁ ଖାଇବାର ଜିନିଷ ବସ୍ତାରେ ରଖାଯାଏ କାହିଁକି ? ଦିନେ ଦିନେ ବୈଶାଖର ଝାଞ୍ଜିରେ ଝାଳ ପୋଛି, ଥକ୍କା ମାରି ଯୁଆଙ୍ଗ ବସିଗଲେ ଯୁଆଙ୍ଗର ଆଖିପତା ଲାଗିଯାଏ, ଆଉ ତା'ପରେ ସେ ଦେଖେ ଗୋଟାଏ ବିରାଟ ଖୋଲା ପଡ଼ିଆ, ଅନେକ ଉଞ୍ଚ ଉଞ୍ଚ ପାହାଡ଼, କେତେ ରକମର ଗଛ, ଆଉ ସେ ଗଛରେ ଅନେକ ହର୍‌ରଙ୍ଗୀ ଚଢ଼େଇ ବସି ମନ ଖୁସିରେ ଗୀତ ଗାଉଛନ୍ତି । ପୁଣି ଡାକ ପଡ଼େ । ଆହୁରି ଛଅଟା ଶଗଡ଼ ଗୋଦାମ ଆଗରେ ଖୋଲା ହେଇଗଲାଣି । ପୁଣି ସେଇ କୋଳଥ ବିରିର ଝୋଟ ମିଶା ଗନ୍ଧ, ଅନ୍ଧାରୁଆ ଅନ୍ଧାରୁଆ ଗୁମଟି ଘର, ଥାକ ଥାକ ରେଜା ପଇସାର ଝମ୍‌ଝମ୍ ଶବ୍ଦ, ଯେମିତି ଗୋଟାଏ ବହପିଆ ମାଇକିନିଆ ପାଉଁଜି ଲଗେଇ ଚାଲିଯାଉଛି । ଏଇ ଖରାରେ କେତେବେଳେ କେମିତି ତା'ର ଶଳପ ଗଛର ରସ ମନେ ପଡ଼ିଯାଏ । ମୁନ୍ଦିଏ ପିଇଦେଲେ ତାତୁଣିଆ ଦି'ପହରଟା କଟିଯାଆନ୍ତା ପରା !

ଏଠି ସନ୍ଧ୍ୟା ହୁଏନା । ନଇଁ ଆସୁଥିବା ଆଲୁଅରେ ପାହାଡ଼ ଆଉ ଗଛ ସବୁ ଧୀରେ ଧୀରେ ଅସ୍ପଷ୍ଟ ହୋଇଯାଆନ୍ତି ନାହିଁ । କୁଡ଼ିଆ ଭିତରେ ଦିକି ଦିକି ହେଇ ନିଆଁ ଜଳେନା କି କୁଡ଼ିଆ ଉପରେ ନେଳି ଧୂଆଁର ଛୋଟ ଧାରଟିଏ ଆକାଶରେ ମିଳେଇ ଯାଏନା । ଏଠି ହୁଏତ ଅନେକ ଡେରିରେ ରାତି ଆସେ । ଆଉ ସେ ରାତି ଖାଲି ଶୋଇବା ପାଇଁ, ଜହ୍ନ ଆଲୁଅରେ ଟିର୍ଲାର ଅଣ୍ଟାରେ ହାତ ଗୁଡ଼େଇ ନାଚିବା ପାଇଁ ନୁହେଁ, ଶଳପ ପାଇଁ ନୁହେଁ, ମହୁଲ ପାଇଁ ନୁହେଁ—ଏ ରାତିର ବିଶ୍ରାମ କେବଳ କାଲି ଖାଲି ଅଣନିଶ୍ୱାସୀ ହେଇ ଧାଇଁବା ପାଇଁ ।

ଯୁଆଙ୍ଗର ସମୟର ମାପ ନାହିଁ । ସେ ନିଜେ ଜାଣେନା ତା'ର କେତେ ବର୍ଷ ବଞ୍ଚିବା ଉଚିତ । ନିଜର ବାହା ଉପରେ ମୁଣ୍ଡ ରଖି ଶୋଇବା ଆଗରୁ ତା'ର ବେଳେ ବେଳେ ତିର୍ଲାମାନଙ୍କ କଥା ମନେ ପଡ଼େ; କିନ୍ତୁ ସିଏ ତ ଏକ ହସ୍ତାନ୍ତରିତ ସମ୍ପତ୍ତି, ତିର୍ଲାମାନଙ୍କ କଥା ତା'ର ମନେ ପଡୁଛି କାହିଁକି ?

ହଳ ଫିଟେଇ ଯେତେବେଳେ ଯୁଆଙ୍ଗ ଖାଇବା ପାଇଁ ତା'ର ଭାରିଜାକୁ ଅପେକ୍ଷା କରି ବସିଥାଏ, ସେତେବେଳେ କଟକ ସହରର ଏଇ ଶେଷ ଦିନ ସ୍ମୃତିଟି ତା' ଆଖି ଆଗରେ ଭାସିଯାଏ ।

ଗୋଦାମ ଭିତରୁ ବାହାରି ଆସି ଦେଖେ ତ ଜଣେ ବୁଢ଼ା ଲୋକ ତା'କୁ ଅନେଇ ଠିଆ ହେଇଚି । ସେ ଚିହ୍ନିପାରି ନଥିଲା, ସେଇ ବୁଢ଼ା ତା' ଗାଆଁର ଦୁର୍ବୋଧ ଭାଷାରେ ଯାହା ପଚାରିଥିଲା, ତାହା ହେଲା "ତୁ.ମୋର ପୁଅ ନା—ଯୁଆଙ୍ଗ ?" ଯୁଆଙ୍ଗ ବାପକୁ କୁଣ୍ଢେଇ ଧରି ଅକାରଣରେ କାନ୍ଦିଥିଲା ଏବଂ ଆହୁରି କାନ୍ଦିଥିଲା, ଯେତେବେଳେ ସେ ଶୁଣିଥିଲା, ତା'ର ବାପାର ଜମି ହେଇଚି, ସେମାନେ ଚାଷ କରିବେ ।

ଯୁଆଙ୍ଗ କାନ୍ଦୁଥିଲା ଆଉ ହସୁଥିଲା । ଯୁଆଙ୍ଗର ବେଢ଼ଙ୍ଗିଆ ମୁହଁରେ ଯୁଗପତ ହର୍ଷ-ବିଷାଦର ରେଖାଗୁଡ଼ିକ ଦ୍ରୁତ ପରିବର୍ତ୍ତନ କରୁଥିଲା ଏବଂ ଯୁଆଙ୍ଗର ବାପ ତାକୁ ନିର୍ବୋଧ ପରି ଚାହିଁ ରହି ବୁଝିପାରୁ ନଥିଲା, ସେ କାହିଁକି ବା କାନ୍ଦୁଚି, ପୁଣି ସେ କାହିଁକି ବା ହସୁଚି ।



# ହଳେ ଜୋତା କିଣିବାର ପ୍ରତ୍ୟକ୍ଷ ବିବରଣୀ

ପ୍ରତିଦିନ ପରି ସେଦିନ ମଧ୍ୟ ସୁଧାଂଶୁ ଠିକ୍ ଆଠଟା ପନ୍ଦର ମିନିଟ୍‌ରେ ଆସି ଦୋକାନରେ ପହଞ୍ଚିଲା । ସେ ଜାଣେ ଯେ ଦୋକାନରେ ପଶିବା ମାତ୍ରେ ବାଁ ପଟର କାଛରେ ଥାକ ମରା ହେଇ ଥୁଆ ହୋଇଥିବା କତିପୟ ମୁନିଆଁ ମୁନିଆଁ ଜୋତା ତାକୁ ପ୍ରଥମେ ସ୍ୱାଗତ କରିବେ । ସେଥିରେ ସେ ଧୀରେ ଧୀରେ ଅଭ୍ୟସ୍ତ ହେଇଗଲାଣି । ପ୍ରଥମେ ପ୍ରଥମେ ତା'ର ମନେ ହେଉଥିଲା ଯେମିତି କେତେଗୁଡ଼ାଏ ବର୍ଚ୍ଛା, ନ ହେଲେ ରାଇଫଲ୍‌ର ସଙ୍ଗୀନ୍‌ମୁନ ତା' ଆଡ଼କୁ କିଏ ମୁହାଁଇ ଦେଇଛି । ନୂଆ ପାଲିସ୍ କରା ଜୋତାସବୁ ସତରେ ସଙ୍ଗୀନ୍ ମୁନ ପରି ଚକ୍ ଚକ୍ କରନ୍ତି । ତା' ଉପରେ ଜୋତା ଦୋକାନର ପୂର୍ବପଟ ବାର୍‌ଣ୍ଡାରେ ଆସି ପଡୁଥିବା ସକାଳୁଆ ଖରାର ଆଭା ଝଲ୍ ମଲ୍ କରିଉଠେ । ପୌଷର ଖରା ଯେପରି ତା'ର କଅଁଳିଆ ଜିଭ ବିସ୍ତାର କରି ଜୋତାର ପାଲିସ୍ ଚମଡ଼ାକୁ ଏକ ପରମ ତୃପ୍ତିରେ ଚାଟୁଚି ଆଉ ଚାଟୁଚି ।

ଖୁବ୍ ସକାଳୁ ଖରିଦ୍‌ଦାର ବେଶି ଆସନ୍ତି ନାହିଁ । ସାମ୍ନା ଚାହା ଦୋକାନରେ ଯେଉଁମାନେ ଖରାକୁ ପିଠି ଦେଖେଇ ବାମ୍ଫଉଠା ଚା' କପ୍‌ରେ ଓଠ ଲଗାଉଛନ୍ତି ସେମାନେ କେଉଁ ଦୁଃଖରେ ଜୋତା ଦୋକାନର ଚାରିକାଛ ଭିତରେ ଅବରୁଦ୍ଧ ହେବାକୁ ପସନ୍ଦ କରିବେ; ଅଥବା ସେଇ ଯେଉଁ ଔଷଧ ବା ପ୍ରସାଧାନ-ସାମଗ୍ରୀର ଏଜେଣ୍ଟଟି ବେକ ତଳେ କଡ଼ା ଟାଇଇ ନଟ୍ ଆଣ୍ଠି ଗୋଟାଏ ଗୋଡ଼ ସୁ ସାଇନ୍ ପିଲା ବାକ୍‌ସ ଉପରେ ରଖିଚି ପାଲିସ୍ କରାଇବା ପାଇଁ, ତା'ର ମଧ୍ୟ ବେଳ କାଇଁ ଦୋକାନ ଭିତରକୁ ଆସିବାକୁ !

ରାଜଧାନୀ ରାସ୍ତା ଉପରେ ପ୍ରତିଦିନର ସକାଳ ଆଠଟା ପନ୍ଦର ମିନିଟ୍ ଏକାଧାରରେ ବ୍ୟସ୍ତ, ଚଞ୍ଚଳ ଓ ତନ୍ଦ୍ରାଚ୍ଛନ୍ନ ।

ଜୋତାର ରଙ୍ଗ ବାକ୍‌ସଗୁଡ଼ାକ ଉପରୁ ଧୂଳି ଝାଡୁ ଝାଡୁ ସୁଧାଂଶୁ ଆଉ ଥରେ ସେଇ ମୁନିଆ ଜୋତାଗୁଡ଼ାକ ଆଡ଼କୁ ଆଖି ପକାଇଲା । ଏବେ ସେଗୁଡ଼ାକ ତା' ପାଇଁ ଏକ ନୂଆ ଭାବମୂର୍ତ୍ତି ଧାରଣ କଲେଣି । ରୋମ୍ ବା ପ୍ୟାରିସ୍‌ର କୌଣସି ସୁଇମିଂ ପୁଲ୍‌ର ଧାରରେ ଲମ୍ଭୋଦ୍ୟୋତା ବହୁ ସ୍ଫୀତବକ୍ଷା ତରୁଣୀଙ୍କର ପୀନ ପୟୋଧର ପରି । ସାମାନ୍ୟ ଅଶ୍ଳୀଳ; କିନ୍ତୁ ଠିକ୍ ଦୃଷ୍ଟିକଟୁ ନୁହଁ ।

ଆହୁରି ଅନେକ କାମ ବାକୀ ପଡ଼ିଚି । ପ୍ରଥମେ ଦୋକାନକୁ ଆସି କେଉଁ ସମୟରେ କ'ଣ କ'ଣ କରିବାକୁ ହେବ ତା'ର ଏକ ତାଲିକା ତିଆରି କରାଯାଇଛି । ମୋଟା ମୋଟା ଦରମା ପାଇ କମ୍ପାନୀର ମନସ୍ତତ୍ତ୍ୱବିତ୍‌ମାନେ ସେ ତାଲିକା ତିଆରି କରିଛନ୍ତି । ତାହା ବହୁ ଅଭିଜ୍ଞତାସିଦ୍ଧ । ଦିନ ୧୨ଟା ବେଳେ ମାଟିଆ ଓ ପାଉଁଶିଆ ରଙ୍ଗର ଜୋତାସବୁ ଆଖିସାମ୍ନାକୁ ଆଣି କଳା ଜୋତାର ଧାଡ଼ିକୁ ପଛ ଧାଡ଼ିକୁ ଠେଲି ଦବାକୁ ହବ । ଛୋଟ ପିଲା ଯଦି ନାଲି ରଙ୍ଗର ଜୋତା କିଣେ, ତାହାହେଲେ ତାକୁ ହଳଦିଆ ରଙ୍ଗର ବେଲୁନ୍ ଉପହାର ଦବାକୁ ହବ । କୌଣସି ଗ୍ରାହକ ଆସିଲେ (ବୟସ ଓ ଚେହେରା ନିର୍ବିଶେଷରେ) ପ୍ରଥମେ ହସିବାକୁ ହେବ—ଯେପରି ତମେ ଅତ୍ୟନ୍ତ ଆପ୍ୟାୟିତ ହେଇଛ ଓ ତା' ପରେ ନମସ୍କାର କରି ଚଉକିରେ ବସିବାକୁ ଇଙ୍ଗିତ ଦେବ ଓ ତାଙ୍କର ପୁରୁଣା ଜୋତାହଳକ ଉପରେ ମନୋନିବେଶ କରି ଜୋତାର ବୟସ, ସାଇଜ୍ ଓ ଖରିଦ୍‌ଦାରର ଆର୍ଥିକ ସ୍ୱଚ୍ଛଳତା ସମ୍ପର୍କରେ ଏକ ''ପ୍ରାୟ—ଠିକ୍'' ଅନ୍ଦାଜ୍ କରିବାକୁ ପଡ଼ିବ ଓ ତା' ପରେ ପରେ ବାଁ ଆଣ୍ଠୁ ମାଡ଼ି ଦୁଇ ହାତରେ....

ସୁଧାଂଶୁ ସାମାନ୍ୟ ଅନ୍ୟମନସ୍କ ହୋଇ ପଡ଼ିଥିଲା । ସେ ହଠାତ୍ ଆବିଷ୍କାର କଲା ଯେ ଜଣେ ଭଦ୍ରମହିଳା ତାଙ୍କର ଗୋଟିଏ ଗୋଡ଼ ଫୁଟ୍‌ରେଷ୍ଟ ଉପରେ ରଖି ସୁଧାଂଶୁକୁ କିଛି ସମୟ ଧରି ଲକ୍ଷ୍ୟ କରୁଛନ୍ତି । ବାଇଶିବର୍ଷର ସୁଧାଂଶୁ ସାମାନ୍ୟ ଆତ୍ମସଚେତନ ହେଇପଡ଼ିଲା । ସବୁ ଠିକ୍ ଅଛି । ତା'ର ଧଳା ଜିନ୍ ପ୍ୟାଣ୍ଟରେ ଟିକିଏ ହେଲେ ଦାଗ ଲାଗିନାହିଁ । ଧଳା ହାଫ୍‌ସାର୍ଟର ବନ୍ଧନୀ ଭିତରୁ ଦୁଇଟି ରୌଦ୍ର-ତାମ୍ର ହାତ ବାହାରି ଆସିଚି ତଳକୁ । ପୁରୁଣା ସେଲସ୍‌ମ୍ୟାନ୍‌ର ଭଙ୍ଗୀରେ ବାଁ ଆଣ୍ଠୁ କାର୍ପେଟ୍ ଉପରେ ପକେଇ ସେ ତତ୍‌କ୍ଷଣାତ୍ ନଇଁପଡ଼ିଲା ଏବଂ ତା'ର ଦୁଇ ହାତର ବନ୍ଧନୀ ଭିତରେ ଭଦ୍ରମହିଳାଙ୍କର ଗୋଡ଼ଟିକୁ ଧରି ଜୋତାର ଷ୍ଟ୍ରାପ ଖୋଲିଲା ବେଳକୁ ତା'ର ମନେହେଲା ଯେ ସେ ଆଜି ତା'ର ମୁଷ୍ଟିର ଆଲିଙ୍ଗନ ଭିତରେ ଗୋଟିଏ ଦୁର୍ଲଭ ଚିତ୍ରପିତୁଳା ପାଇଛି—ଯାହାର ରଙ୍ଗ ସହିତ ପୃଥିବୀର କୌଣସି ଜିନିଷର ରଙ୍ଗକୁ ତୁଳନା କରାଯାଇ ପାରେନା ।

ଜୋତାର ସାମ୍ନା ଫ୍ଲାପ୍ ଅତିକ୍ରମ କରି ସାମାନ୍ୟ ବାହାରି ଆସିଛି ପାଦର ଆଙ୍ଗୁଠିଗୁଡ଼ିକ ଏବଂ ସେଇ ପରିମିତ ସ୍ଥାନ ଭିତରେ ମଧ ପ୍ରତ୍ୟେକଟି ଆଙ୍ଗୁଳିର ସ୍ୱାତନ୍ତ୍ର୍ୟ ଅତ୍ୟନ୍ତ ସୁସ୍ପଷ୍ଟ ।

ପାଞ୍ଚଟି ଚମ୍ପାକଢ଼ି ଯେପରି କେଉଁ ନିପୁଣ ମାଳାକାର ପାଖ ପାଖ ସଜେଇ ରଖିଛି; କିନ୍ତୁ ଚମ୍ପା କହିଲେ ଠିକ୍ ରଙ୍ଗର ଧାରଣା କରାଯାଏନା । ଚମ୍ପା ଆଉ ଗୋଲାପର ଏକ ମଧୁର ସମ୍ମିଶ୍ରଣ । ପ୍ରତ୍ୟେକଟି ଆଙ୍ଗୁଠି ଉପରେ ମସୃଣ ନଖଗୁଡ଼ିକ ମନେହଉଚି ପ୍ଲାଷ୍ଟିକ୍‌ର କୃତ୍ରିମ ନଖପରି । ବୁଢ଼ା ଆଙ୍ଗୁଠିରେ ନଖଟିକୁ ଲକ୍ଷ୍ୟ କରି

ସୁଧାଂଶୁ ଦେଖିଲା ଦୋକାନ ଉପରେ ବୁଲୁଥିବା ସିଲିଂଫ୍ୟାନ୍‌ଟି ନିଖୁଣ ଭାବରେ ପ୍ରତିବିମ୍ବିତ ହେଉଛି । ସୁଧାଂଶୁ ଚମକି ପଡ଼ିଲା । ତା'ର ମନେହେଲା ଯେପରି ସେ ଅନେକ ସମୟ ଧରି ଜୋତର ଷ୍ଟ୍ରାପ୍ ଖୋଲୁଚି ଅଥଚ ବକଲିସ୍‌ଟି ପର୍ଯ୍ୟନ୍ତ ସେ ଏ ଯାଏଁ ଖୋଲି ପାରି ନାହିଁ । ଚାରିଆଡ଼କୁ ଥରେ ଆଖି ପକାଇଦେଲା ସୁଧାଂଶୁ । ଦୋକାନର ମ୍ୟାନେଜର ଟେବୁଲ ଉପରେ ନଇଁପଡ଼ି କ'ଣ ହିସାବ କରୁଛନ୍ତି ବୋଧହୁଏ । ବିଶ୍ୱସ୍ତ ସିଲିଂ ଫ୍ୟାନ୍‌ଟିର ମୃଦୁ ଗୁଞ୍ଜରଣ କରି ବୁଲି ଚାଲିଚି ଓ ସେଇ ସୁନ୍ଦର ଅତୁଳନୀୟ ପାଦଟିର ଅଧିକାରିଣୀ ପାଦଟିକୁ ତା'ର ତତ୍ତ୍ୱାବଧାନରେ ଛାଡ଼ିଦେଇ ଡେକ୍ ଚେଆର୍ ଉପରେ ଆଉଜିପଡ଼ି ନିଜକୁ ଅତ୍ୟନ୍ତ ନିରାପଦ ମନେ କରୁଛନ୍ତି । ତାଙ୍କର ଦୁଇଟି ଲମ୍ବା ଲମ୍ବା ଆଖିରେ ବିସ୍ମୟ କୌତୂହଳ; ବିରକ୍ତି ବା ଅଶ୍ୱସ୍ତିସୂଚକ କୌଣସି ଭାବ ନାହିଁ । କେବଳ କିଛି କଳ୍ପନା ଓ ସାମାନ୍ୟ କ୍ଳାନ୍ତ ଦୁଇଟି ଆଖିକୁ ଆଚ୍ଛନ୍ନ କରି ରଖିଚି ।

ସୁଧାଂଶୁ ଆଉଥରେ ତା'ର ଅସମାପ୍ତ କାର୍ଯ୍ୟରେ ମନୋନିବେଶ କଲା, କୌଣସିମତେ ଜୋତାର ଅତ୍ୟାଚାରରୁ ଗୋଡ଼ଟିକୁ ମୁକ୍ତ କଲା ସୁଧାଂଶୁ; କିନ୍ତୁ ସୁଧାଂଶୁ କ'ଣ ଜାଣିଥିଲା ଯେ ଜୋତା ତଳେ ଗୋଟିଏ ଏଡ଼େ କୋମଳ ଆରକ୍ତ ତଳିପାଦ ତାକୁ ଅପେକ୍ଷା କରି ରହିଚି ? ସାଇଜ ମାପିବାର ବାହାନାରେ ତଳିପାଦଟିକୁ ଆସ୍ତେ ଉଠାଇ ସୁଧାଂଶୁ ଆଖି ସାମ୍ନାରେ ରଖିଲା । ମନେ ମନେ ସେ ଭାବୁଥିଲା ହାତର ରେଖାପରି ପାଦତଳେ ରେଖା ନଥାଏ କାହିଁକି ? ଆଉ ସେ ଯଦି ପାଦର ରେଖା ପଢ଼ିପାରୁ ଥାଆନ୍ତା ତାହା ହେଲେ ହୁଏତ ତାକୁ ଏଇ ସୁନ୍ଦର ପାଦର ଅଧିକାରିଣୀଙ୍କ ସମ୍ପର୍କରେ ଅନେକ ସମ୍ବାଦ ମିଳିପାରି ଥାଆନ୍ତା ।

ସମୟ ଅନ୍ଦାଜ କରିବାର ଅବସ୍ଥାରେ ସୁଧାଂଶୁ ନାହିଁ । ତା' ପାଇଁ ସମୟର ପେଣ୍ଡୁଲମ୍ ଯେପରି ଅକସ୍ମାତ୍ ସ୍ଥିର ହୋଇ ଯାଇଛି କିଛି ସମୟ ପାଇଁ; କିନ୍ତୁ ସେ ନିଜେ ବୁଝିପାରୁଚି ଯେ ବର୍ତ୍ତମାନ ତା'ର ପଚାରିବା ଉଚିତ୍ କି ପ୍ରକାରର ପାଦୁକା ସେ ଚାହାନ୍ତି, ଜୋତା, ଚଟି ନା ସାଣ୍ଡାଲ ? ହାଇହିଲ୍ ଜୋତା ସେ କ'ଣ ପସନ୍ଦ କରିବେ ? କି ରଙ୍ଗ, କଳା, ଡାର୍କଟାନ୍ ନାଁ ଅକ୍ସବ୍ଲଡ଼ ? ଯଦି ଇନ୍‌ଡୋର୍‌ସ୍ଲିପର୍ ତାହାହେଲେ ତ ସମସ୍ୟା ଆହୁରି ଜଟିଳ—ଆପଣଙ୍କ କାର୍ପେଟ୍‌ର ରଙ୍ଗ କ'ଣ ?—କିନ୍ତୁ ତଥାପି ସୁଧାଂଶୁ ନିର୍ବାକ । ତଥାପି ତା'ର ଆଖିସାମ୍ନାରେ ଗୋଡ଼ର ଆରକ୍ତ ପାପୁଲି ପାଞ୍ଚଟି ଚମ୍ପାକଢ଼ି ଧରି ତାକୁ ବାରମ୍ବାର ଇସାରା କରୁଚି । ଗୋଡ଼ର ବଳାଗଣ୍ଠି ପାଖରୁ ଧରି ସୁଧାଂଶୁ ଆଉଥରେ ପାଦଟିକୁ ପର୍ଯ୍ୟବେକ୍ଷଣ କଲା । ଏ ପାଦରେ ପୃଥିବୀର ଯେ କୌଣସି ଦାମି ଜୋତା ବା ଚଟି ଅପେକ୍ଷା ଦୁଇଟି ଅଳତାର ଗାର ସୁନ୍ଦର ମାନିବ; କିନ୍ତୁ ପାଦ ଦୁଇଟିରେ କଳ୍ପନାର ଅଳତାଗାର ଲଗେଇଦେଇ ଶୀହରଣ କରି ଉଠିଲା ସୁଧାଂଶୁ । ଏ

କ'ଣ ? ଏ ତ ମନେ ହେଉଚି ଯେପରି ଦୁଇଟି ନିରପରାଧ ପାଦକୁ ସଦ୍ୟ ହତ୍ୟା କରାଯାଉଛି ଏବଂ ତା'ର ହୃତ୍‌ପିଣ୍ଡରୁ ତଥାପି ରକ୍ତସ୍ରାବ ବହି ଚାଲିଛି । ଅଖଣ୍ଡ ଶୁଭ୍ର ଏକ ବରଫ ଉପରେ ଯେପରି ହତ୍ୟା କରାଯାଇଛି ଦୁଇଟି ଯମଜ ଏସ୍କିମୋ ଶିଶୁଙ୍କୁ ।

ସେଲ୍‌ସ୍‌ମ୍ୟାନ୍ ସୁଧାଂଶୁ ବାଇଶି ବର୍ଷର ସୁଧାଂଶୁକୁ ଚେତେଇ ଦେଲା ଯେ ଏ'ଟା କଳ୍ପନା ବିଳାସର ସ୍ଥାନ ନୁହଁ । ବହୁ ବିଳମ୍ବ ହୋଇ ଗଲାଣି । ବର୍ତ୍ତମାନ ହୁଏତ ତରୁଣୀଟି କହିପାରନ୍ତି ''ଷ୍ଟୁପିଡ୍'' ! କିମ୍ବା ହୁଏତ ରସିକତା କରି କହିପାରନ୍ତି ''ଯଦି ଅବିଶ୍ୱାସ ହେଉଛି–ଆପଣ ମୋର ପାଦ ଦୁଇଟିକୁ ରଖନ୍ତୁ, ମୁଁ କାଲି ଆସି ଜୋତା ନେଇ ଯିବି ।'' କିନ୍ତୁ ସୁଧାଂଶୁ ଏ ପର୍ଯ୍ୟନ୍ତ ଗୋଟିଏ ହେଲେ ପ୍ରଶ୍ନ ପଚାରି ପାରି ନାହିଁ । ଅତଏବ କି ପ୍ରକାରର ଜୋତା ସେ ଆଣିବ ତା'ର ତିଳେହେଲେ ଧାରଣା ସେ ସମ୍ପର୍କରେ ନାହିଁ । ଅଥଚ ପ୍ରାଥମିକ ପ୍ରଶ୍ନଗୁଡ଼ିକ ପଚାରିବା ପାଇଁ ଆଶାତୀତ ବିଳମ୍ବ ହୋଇଯିବା ଫଳରେ ବର୍ତ୍ତମାନ ହୁଏତ ସେଗୁଡ଼ିକ ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ ମନେହେବ । ଅନୋନ୍ୟପାୟ ହୋଇ ସୁଧାଂଶୁ ଦୁଇଟି ସୁନେଲୀ ଷ୍ଟ୍ରପ୍‌ଥିବା ଚଟି ହଳେ କାଢ଼ିଆଣି ପାଦରେ ପିନ୍ଧେଇବାକୁ ଅକ୍ଲାନ୍ତ ପରିଶ୍ରମ କରୁଚି । ଚଟି ପିନ୍ଧାଇବାର କ୍ରମରେ ସୁଧାଂଶୁ ଆବିଷ୍କାର କଲା ଯେ ଏଇ ଦୁଇଟି ବାଧ ପାଦକୁ ଅନାୟାସରେ ଯେ କୌଣସି ଜୋତା ବା ଚଟି ଭିତରେ ଦୁଇଟି ଡନ୍‌ଲୋପ ପିଲୋର ପିଣ୍ଡୁଳା ପରି ଭର୍ତ୍ତିକରି ଦିଆଯାଇପାରେ ।

ଚଟି ଦୁଇଟି ପିନ୍ଧାଇ ସାରି ସୁଧାଂଶୁ ପ୍ରଥମ ଥର ପାଇଁ ତରୁଣୀଙ୍କ ମୁହଁକୁ ସ୍ୱୀକୃତି ପାଇଁ ଚାହିଁ ରହିଲା; କିନ୍ତୁ ତରୁଣୀଟି ସ୍ମିତ ହସ ହସି କେବଳ କହିଲେ, ''ଦେଖନ୍ତୁ, ମୁଁ ସୁନେଲି ରଙ୍ଗ ମୋଟେ ପସନ୍ଦ କରେ ନାହିଁ ।'' ଟିକିଏ ମଧ ନିରାଶ ହେଲା ନାହିଁ ସୁଧାଂଶୁ । ସେ ଦ୍ୱିଗୁଣ ଉତ୍ସାହରେ ଅନ୍ୟ ପ୍ରକାରର ଚଟି ଆଣିବାକୁ ଗଲା । ସୁଯୋଗ ଯେତେବେଳେ ଭଗବାନ ଦିଅନ୍ତି ସେତେବେଳେ ଦୁଇହାତ ପୂର୍ଣ୍ଣକରି ଦିଅନ୍ତି । ଯେତେ ସମୟ ଲାଗୁ, ଯେତେ ପରିଶ୍ରମ ପଡୁ ଆଜି ସେ ତରୁଣୀଙ୍କ ପାଇଁ ଜୋତା ନିଶ୍ଚୟ ଦବ ।

କିନ୍ତୁ ଏଥରକ ଜୋତା ମାନୁ ମାପୁ ଆଉଥରେ ସୁଧାଂଶୁର କଳ୍ପନାର ବୁଢ଼ିଆଣୀ ଜାଲ ମେଲିଲା । ପାଦଟି ବଳାଗଣ୍ଠି ପାଖରେ ଶେଷ ନ ହେଉଣୁ ମୋଡ଼ ବାଙ୍କ ଏକ ଫୁଲଦାନୀ ଆକୃତିରେ ଉପରକୁ ଗତି କରିଚି ଆଣ୍ଠୁ ପର୍ଯ୍ୟନ୍ତ । ଦେଖିଲେ ମନେହୁଏ ଯେପରି ଆଇସ୍‌କ୍ରିମ୍‌ର ଗୋଟାଏ ଅତିକାୟ ବ୍ଲକ୍ ଥୁଆ ହୋଇଛି ଗୋଟିଏ ପାଦର ନାତିବିସ୍ତୃତ ପ୍ଲେଟ ଉପରେ । ଘନ ଦୁଧ ରଙ୍ଗର ଚମଡ଼ା ଭିତର ଦେଇ ସ୍ପଷ୍ଟ ଦେଖି ହେଉଛି ଯେ ଦୁଇଟି ଇଷତ୍ ନୀଳ ଶିରା (ଦୁଇଟି ବିଷଧର ସରୀସୃପ ପରି) ପରସ୍ପରକୁ ବାରମ୍ବାର ଅତିକ୍ରମ କରି ଉର୍ଦ୍ଧ୍ୱମୁଖୀ । ଯେମିତି ଜଣେ ଆର୍ଟିଷ୍ଟ

ଫୁଲଦାନୀଟିକୁ ଆହୁରି ଆକର୍ଷଣୀୟ କରିବାକୁ ନେଳୀରଙ୍ଗର ତୁଳୀ ଚଳେଇ ନେଇଛି ଦୁଇଥର । ଦେହର ଶିରା ସମ୍ପର୍କରେ ଏକ ଅପ୍ରୀତିକର ଅଭିଜ୍ଞତା ଅଛି ସୁଧାଂଶୁର । ଶିରା ସହିତ ଡାକ୍ତର, ରବର ଟ୍ୟୁବ୍, ନର୍ସ ଓ ଇଣ୍ଟ୍ରାଭେନସ୍ ଇଞ୍ଜେକ୍‌ସନ୍‌ର ଏକ କୁତ୍ସିତ ମାନସିକ ସହଯୋଗ ରହିଚି, କାରଣ ଅନେକ ଆତ୍ମୀୟଙ୍କର ରୋଗଶଯ୍ୟାରେ ତାକୁ ଡାକ୍ତରଙ୍କ ସଙ୍ଗେ ସହଯୋଗ କରିବାକୁ ହୋଇଛି ଏଇ ନୀଳ ଶିରାଗୁଡ଼ିକ ଆବିଷ୍କାର କରିବାକୁ । ତା'ପରେ ମୁନିଆଁ ନିଡ୍ରିଲ୍‌ରେ ଗୋଟାଏ ପ୍ରିକ୍ ଆଉ ସିରିଞ୍ଜ ସାମାନ୍ୟ ଟାଣି ଆଣିଲା ବେଳକୁ ଗାଢ଼ ଲାଲ ରକ୍ତର ଝଲକାଏ; କିନ୍ତୁ କାହିଁ ଏଇ ଦୀର୍ଘ ବାଇଶ ବର୍ଷର ଅଭିଜ୍ଞତା ଭିତରେ ତା'ର ଥରକ ପାଇଁ ମଧ ମନେ ହେଇ ନଥିଲା ଯେ ଏଇ ପ୍ରତାରକ ଶିରାଗୁଡ଼ିକ ଏକ ଫୁଲଦାନୀର ଅଳଙ୍କାର ମଧ ହେବା ସମ୍ଭବ ।

ଆଉ କେତେଜଣ ଖରିଦଦାର ମଧ ଆସି ପହଞ୍ଚିଗଲେଣି ଇତି ମଧ୍ୟରେ । ଚିର ସ୍ଥିତପ୍ରଜ୍ଞ ମ୍ୟାନେଜର ବିଚଳିତ ହୋଇ ପଡ଼ିଲେଣି ଏଇ ଆଗନ୍ତୁକମାନଙ୍କର ସେବାରେ; କିନ୍ତୁ ସୁଧାଂଶୁର ସର୍ବପ୍ରଥମ ଜୋତା ସେଲ୍ କରିବାର ଉପକ୍ରମ ମାତ୍ର ଆରମ୍ଭ ହେଉଚି । ଏଇ ସମୟ ଭିତରେ କେତେ ହଳ ଜୋତା ଆଣି ସେଇ ପାଦ ସହିତ ମାପିଚି ତା'ର ହିସାବ ସେ ନିଜେଇ ଜାଣେନା । ଠିକ୍ ଏଇ ଅବସ୍ଥାରେ ସୁଧାଂଶୁ ଏକ ନିଶ୍ଚିତ କଣ୍ଠସ୍ୱର ଶୁଣି ପାରିଲା । ''ଦେଖନ୍ତୁ ମୁଁ ଜୋତା ନବାକୁ ଠିକ୍ ଆସି ନଥିଲି; ଆସିଥିଲି ପିଲାଙ୍କ ପାଇଁ ଗୋଟାଏ ଖେଳନା ନବାକୁ । ଜୋତା ହୁଏତ ନେଇଥାଆନ୍ତି କିନ୍ତୁ ଦେଖିଲେ ତ କୌଣସି ଗୋଟିଏ ଜୋତା ଉପରେ ମୋର ରୁଚି ଓ ପାଦର ମାପ ଏକମତ ହୋଇପାରିଲେ ନାହିଁ ଆପଣଙ୍କ ନେକ୍ସ୍ଟ ଷ୍ଟକ୍ ଆସିଲେ ଆସିବି ।''

ଏଇ କେତେପଦ କଥାରେ ସୁଧାଂଶୁର ଏକ ବହୁଦୀର୍ଘ ରୋମାଞ୍ଚକର ଅନୁଭୂତିର ଶେଷ ହୋଇଗଲା ସବୁଦିନ ପାଇଁ । ହାୟ ! କେବେ ଆସିବ ଶାରଦୀୟ ଉତ୍ସବ ପାଇଁ ନୂଆ ଷ୍ଟକ୍ ଆଉ କେବେ ମନେରଖି ଆସିବେ ଆଜିକାର ଏଇ ଗ୍ରାହିକା ଅତିଥି ! ରାସ୍ତା କରର ଲକ୍ଷ କୋଟି ଅକାମୀ ପଥର ଭିତରୁ ଯେପରି ସ୍ୱର୍ଣମଣି ଆବିଷ୍କାର କରାଯାଏନା, ଠିକ୍ ସେମିତି ଏ ଫେରିଯିବା ଦୁଇଟି ପାଦ ମନୁଷ୍ୟର ସଂକ୍ଷିପ୍ତ ଜୀବନକାଳ ଭିତରେ ଆଉଥରେ ଫେରେନା ।

ଭଦ୍ରମହିଳା ଉଠି ଠିଆହେଲେ ଏବଂ ସୁଧାଂଶୁକୁ ଆଶ୍ଚର୍ଯ୍ୟ କରି ଦେଇ ସେଇ ଦୁଇଟି ନରମ ପାଦ ଭଦ୍ରମହିଳାଙ୍କର ଶରୀରର ସମସ୍ତ ଓଜନ ସହ୍ୟ କରି ମଧ ଅତୁଟ ରହିଲା । ଜୋତା ଦୋକାନ ବାରଣ୍ଡାରେ ପଡ଼ିଥିବା ତେର୍ଚ୍ଛା ଖରା ଅଳ୍ପ ପ୍ରଖର ହେଲାଣି । ସୁଧାଂଶୁର ଏତେବେଳେ କ'ଣ କହିବା ଉଚିତ୍ ? ସେଲ୍‌ସମ୍ୟାନ୍‌ର ''ନୋ-ହାଉ'' ନିଶ୍ଚିତ ଭାବରେ କହିବ ଯେ, ତମେ ନମସ୍କାର କରି କହିବ, ମୁଁ ଖୁବ୍ ଦୁଃଖିତ

ଆପଣଙ୍କର ମନମୁତାବକ ଜୋତା ଦେଇ ପାରିଲି ନାହିଁ । ଏଇ ମାସେ ଭିତରେ ଆମର ନୂଆ ଷ୍ଟକ୍ ଆସିଯାଉଚି ଇତ୍ୟାଦି...

କିନ୍ତୁ ସୁଧାଂଶୁ କହିଲା ଅନ୍ୟପ୍ରକାର ''ଆପଣ ସତରେ କ'ଣ ଆଉ ଥରେ ଆସିବେ ?'' ଜୋତା ଦୋକାନର ଚାରିକାନ୍ଥ ଭିତରେ କଥାଟା ଏତେବେଶୀ ବେଖାପ୍ ଶୁଣାଗଲା ଯେ ନିଜେ ସୁଧାଂଶୁ ମଧ୍ୟ ଆତଙ୍କିତ ହୋଇପଡ଼ିଲା, କିନ୍ତୁ ଭଦ୍ରମହିଳାଙ୍କର ମୁହଁରେ ବିରକ୍ତିର ଲେଶ ମଧ୍ୟ ନାହିଁ । ଓଠରେ ସେହି ଚିରନ୍ତନ ସ୍ମିତଟିକୁ ଅକ୍ଷତ ରଖି କହିଲେ, ''ଜୋତା ତ ମତେ ମଝିରେ ମଝିରେ କିଣିବାକୁ ପଡ଼ିବ—ନ ଆସିବି କାହିଁକି ?''

ଭଦ୍ରମହିଳା ଚାଲିଗଲେ; କିନ୍ତୁ ଯା ଭିତରେ ଯେ ତାଙ୍କର କଣ୍ଢେଇ କିଣିବାର କଥାଟା ଊହ୍ୟ ରହିଗଲା ଏ କଥା ଭଦ୍ରମହିଳାଙ୍କର ବା ସୁଧାଂଶୁର କାହାର ମନେ ନାହିଁ । ସୁଧାଂଶୁ କେବଳ ତଳେ ପରା ହେଇଥିବା କାର୍ପେଟକୁ ଚାହିଁ ରହିଲା କିଛିକ୍ଷଣ, ହୁଏତ କୌଣସି ଯାଦୁ ପ୍ରଭାବରେ ଏଇ କାର୍ପେଟ ଉପରେ ଦୁଇଟି ପାଦଚିହ୍ନ ରହିଯାଇ ଥାଇପାରେ ।

ଏଇ ଘଟଣା ପରେ ସେଦିନ ଜୋତା ଦୋକାନରେ ଘଟିଥିବା ଆହୁରି ଅନେକ ଘଟଣାର କୌଣସି ବିଶେଷତ୍ୱ ବା ପ୍ରାଧାନ୍ୟ ନାହିଁ । ତେଣୁ ଉଲ୍ଲେଖଯୋଗ୍ୟ ନୁହେଁ ।

ତା' ପରଦିନ ସକାଳ ଆଜି; କିନ୍ତୁ ମୁନିଆଁ ଜୋତାର ଶୋଭାଯାତ୍ରା ଆଡ଼କୁ ଲକ୍ଷ୍ୟ ନ କରି ମୁଁ ପ୍ରଥମେ ଆଖି ପକେଇଲି କାର୍ପେଟ୍ ଉପରେ । (ଗୋଟାଏ କଥା ଏଇଠି ସ୍ପଷ୍ଟ କରିଦେବା ଉଚିତ୍ ଯେ ମୋର ନାଁ ହେଉଛି ସୁଧାଂଶୁ) ନେଳୀ ନାଲି ରଙ୍ଗକରା ଝୋଟର ସତା ସବୁ ଏକ ଅକଳ୍ପନୀୟ ଶୃଙ୍ଖଳା ଭିତରେ ସେଇ ଏକା ପ୍ୟାଟର୍ଣ୍ଣକୁ ବାରମ୍ବାର ନିର୍ଭୁଲ୍ ଭାବରେ ଅନୁକରଣ କରି ଚାଲିଛନ୍ତି । ଦୋକାନର ଏକପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ସେଇ ଏକା ପାର୍ଟନର କ୍ଲାନ୍ତିକର ପୁନରାବୃତ୍ତି; କିନ୍ତୁ କାହିଁ ? କାଲିର ଯେଉଁ ଦୁଇଟି ପାଦ ଯାରି ଉପରେ ଚମ୍ପାକଳି ଫୁଟାଉଥିଲା ତା'ର କିଛି ହେଲେ ଅବଶିଷ୍ଟାଂଶ ନାହିଁ ।

ଦୋକାନର ମ୍ୟାନେଜର୍ ଆଜି ଟିକିଏ ସକାଳୁ ସକାଳୁ ଆସିଛନ୍ତି ଏବଂ ସେ ପ୍ରଥମେ ଆସି ମତେ ଖଣ୍ଡେ କାଗଜ ଆଗେଇ ଦେଲେ, ଯେଉଁଥିରେ ଲେଖାଅଛି—

''ତମେ ସୁଧାଂଶୁ ହାଜରା ଗତ କାଲି ଏକ ଅଶୋଭନୀୟ ପରିସ୍ଥିତି ସୃଷ୍ଟି କରି ଜୋତା ଦୋକାନର ସୁନାମକୁ ବିପନ୍ନ କରିଚ । କାଲି ସକାଳ ୮ଟା ୧୫ ମିନିଟ୍‌ରେ ଆସିଥିବା ଭଦ୍ରମହିଳାଙ୍କ ପାଦକୁଧରି ତୁମେ ବହୁକ୍ଷଣ ପର୍ଯ୍ୟନ୍ତ ଏକ ଅଶ୍ଳୀଳ ଭଙ୍ଗୀରେ ପର୍ଯ୍ୟବେକ୍ଷଣ କରୁଥିଲ ଏବଂ ଭଦ୍ରମହିଳାଙ୍କର ବହୁ ପ୍ରଶ୍ନର ଜବାବ୍ ନ ଦେଇ ତମକୁ ସେ ପିଲାଙ୍କର ଖେଳଣା ପାଇଁ କହୁଥିବା ବେଳେ ତମେ ବାରମ୍ବାର ବିଭିନ୍ନ ଜୋତା

ଆଣି ତାଙ୍କର ପାଦ ସହିତ ସାମିଲ କରୁଥିଲ । ତମର ଏତାଦୃଶ ବ୍ୟବହାର ଫଳରେ ଦୋକାନର ସୁନାମ ଓ ବିକ୍ରି ଉଭୟେ କ୍ଷତିଗ୍ରସ୍ତ ହେବାର ସମ୍ଭାବନା ଅଛି–ତେଣୁ ତୁମକୁ ଜଣାଇ ଦିଆଯାଉଅଛି ଯେ ତମେ ଏ ପତ୍ରପାଠ କରି ତମର ଦରମା ବାବଦ୍ ବକେୟା ଟଙ୍କା ନେଇ ଦୋକାନରୁ ଅବ୍ୟାହତି ନିଅ । ତମକୁ ଏତଦ୍ୱାରା ନିଷେଧ କରାଯାଉଛି ଯେ ତମେ ଏହା ପରେ ଆଉ ଦୋକାନରେ କାର୍ଯ୍ୟ କରିପାରିବ ନାହିଁ ।''

ଏ ପ୍ରକାରର ଚିଠି ଅନ୍ୟ ସମୟରେ ପାଇଥିଲେ ମୋର ଯାହା ପ୍ରତିକ୍ରିୟା ହେଇ ଥାଆନ୍ତା ତାହା ନ ହେବାର କାରଣ ତଥାପି ସେଇ ଦୁଇଟି ସୁନ୍ଦର ପାଦ ମୋର ମସ୍ତିଷ୍କକୁ ସମ୍ପୂର୍ଣ୍ଣ ଭାବରେ ଆଚ୍ଛନ୍ନ କରି ରଖିଥିଲା ଏବଂ ଯେହେତୁ ଏହା ଏକ ସିନେମାର ଗଳ୍ପ ନୁହଁ ତେଣୁ ଅସମ୍ଭବ ସମ୍ଭବ ହେବା ସମ୍ଭବ ନୁହଁ । ଅର୍ଥାତ୍ ସେ' ପୁଣି ଥରେ ଆଜି ଫେରି ଆସି ମୋର ଭାଗ୍ୟ ବିପର୍ଯ୍ୟୟରେ ସମଦୁଃଖୀ ହେଇ ହେଡ୍ ଅଫିସକୁ ଲେଖିବେ ନାହିଁ ଯେ ''ସୁଧାଂଶୁ ନାମକ ସେଲ୍ସମ୍ୟାନ୍ ମୋ ସହିତ କିଛି ଖରାପ ବ୍ୟବହାର କରି ନାହିଁ ଓ ମ୍ୟାନେଜର ତାକୁ ଚାକିରିରୁ ବରଖାସ୍ତ କରିବା ଅତ୍ୟନ୍ତ ଗର୍ହିତ । ସେ' ହଠାତ୍ ଆସି ନିଜର ଛଦ୍ମ ପରିଚୟ ଖୋଲି ପ୍ରକାଶ କରିବେ ନାହିଁ ଯେ ସେ ଏ କମ୍ପାନୀର ଜଣେ ପ୍ରତିଭାଶାଳୀ ଡିରେକ୍ଟରଙ୍କର ଏକମାତ୍ର କନ୍ୟା ଓ ତେଣୁ କ୍ଷୁଦ୍ରାପି କ୍ଷୁଦ୍ର ମ୍ୟାନେଜର୍ ମତେ ଦୋକାନରୁ କାଢ଼ି ଦେଇ ପାରିବେ ନାହିଁ, ବା' ହଠାତ୍ ମୁଁ ସେ ତରୁଣୀଙ୍କର ବାହୁରେ ବାହୁଛନ୍ଦି ଗୀତ ଗାଇ ଗାଇ ରାସ୍ତାରେ ଜୋତା ପାଲିସ୍ କରି ପଇସା ରୋଜଗାର କରିପାରିବ ନାହିଁ ।''

ଏହା କୌଣସି ସହରର ଏକ ପ୍ରତିଷ୍ଠିତ ଜୋତା ଦୋକାନର ଏକ ନିର୍ଦ୍ଦିଷ୍ଟ ଦିନର ପ୍ରତ୍ୟକ୍ଷ ବିବରଣୀ । ମୁଁ ନିଜ ସହିତ ନିଜେ ସାଲିସ୍ କରିନେଲି । ଗତକାଲିର ସମସ୍ତ ଘଟଣା ବୋଧହୁଏ ଥିଲା ଏକ ମଧୁର ସ୍ୱପ୍ନ ଏବଂ ସେଇ ସ୍ୱପ୍ନକୁ ଅନେକ ଦାମ୍ ଦେଇ ମତେ କିଣିବାକୁ ପଡ଼ିଲା । ବୋଧହୁଏ ତରୁଣୀଟି କାଲି ଆସିଥିଲେ ବିଧି ପ୍ରେରିତ ହୋଇ ବା ହୋଇପାରେ କାଲି କୌଣସି ତରୁଣୀ ଆସି ନାହାନ୍ତି ଆଦୌ–ଏବଂ ଯଦିବା ଆସିଥାନ୍ତି ତାହାହେଲେ ତାଙ୍କର ଏପରି ସୁନ୍ଦର ପାଦ ନଥିଲା ଯାହା ପାଇଁ ଗୋଟିଏ ନିମ୍ନମଧ୍ୟବିତ୍ତ ପରିବାରର ଏକମାତ୍ର ପୁତ୍ରସନ୍ତାନର ବହୁ ଆୟାସଲବ୍ଧ ଚାକିରିଟିକୁ ଜଳାଞ୍ଜଳି ଦେଇହୁଏ ।

ମୋ ମୁଣ୍ଡ ଭିତରେ ବହୁ ସମ୍ଭବ-ଅସମ୍ଭବ ତଥ୍ୟ ଓ ଘଟଣା ଜାଲ ବାନ୍ଧିବାକୁ ଆରମ୍ଭ କଲେଣି ଏବଂ ସେଇ ଜାଲ ଭିତରେ ହେମନ୍ତ ସକାଳର ଶିଶିରବିନ୍ଦୁ ପରି ତଥାପି ଝୁଲୁଚି ଗୋଟାଏ ଉଜ୍ଜ୍ୱଳ ସ୍ୱପ୍ନ–ଦୁଇଟିନରମ, ସୁନ୍ଦର ଶୁଭ୍ରପାଦ ।

ଚାକିରି, ମ୍ୟାନେଜର୍ ଓ ଜୋତା ଦୋକାନ ସମସ୍ତଙ୍କୁ ପଛରେ ପକାଇ ମୁଁ ରାସ୍ତା ଉପରକୁ ପାଦ ବଢ଼ାଇଲି ।

# କାପାଳିକ

ଦିନ ଓ ସମୟ ପୂର୍ବ ନିର୍ଦ୍ଧାରିତ ଥିଲା । ଏବଂ ସେମାନେ ଯଥାସମୟରେ, ଲତାଗୁଳ୍ମର ଆତିଶଯ୍ୟରେ ପ୍ରାୟ ଆଚ୍ଛାଦିତ ହୋଇ ପଡ଼ିଥିବା ସେଇ ପୁରାତନ ଜୀର୍ଣ୍ଣ ବଂଗ୍ଳୋ ଭିତରକୁ ଜଣ ଜଣ କରି ପ୍ରବେଶ କଲେ । ପ୍ରବେଶ କରୁଥିବା ବ୍ୟକ୍ତିମାନଙ୍କର ଜୋତାର ଶବ୍ଦରେ ବଂଗ୍ଳୋଟିର ଜୀର୍ଣ୍ଣ ଶରୀରରେ ଯେପରି ବେପଥୁ ସଞ୍ଚାରିତ ହେଉଥାଏ । ବହୁଦିନ ପରେ ସେଠାକୁ ଯେପରି ଫେରିଥିଲା ମନୁଷ୍ୟ ମାନଙ୍କର କୋଳାହଳ ।

ବଂଗ୍ଳୋଟିର ଟାଇଲ୍ ଛାତ ଯେପରି ସାମ୍ନାରେ ଚେକାମାଡ଼ି ଠିଆହୋଇ ରହିଥିବା କୃଷ୍ଣଚୂଡ଼ା ଗଛକୁ ବିସ୍ମୟରେ ପଚାରୁଥାଏ, ମହାଭାଗ ! କେତେ କାଳପରେ ଏତେଗୁଡ଼ିଏ ସମ୍ମାନିତ ବ୍ୟକ୍ତିଙ୍କର ଏକତ୍ର ଉପସ୍ଥିତି ଆମମାନଙ୍କୁ କୃତାର୍ଥ କଲା ? କିନ୍ତୁ କାହିଁ କେଉଁ ମାନ୍ଧାତା ଅମଳରୁ ଫାଟକ ପାଖରେ ପଡ଼ି ରହିଥିବା ସ୍ଫୀତୋଦର, ରୋଡ୍ ରୋଲରଟିଏ ପୂର୍ବପରି ଚୁପ୍‌ଚାପ୍ ପଡ଼ି ରହିଥିଲା । ତା'ର ବିଶେଷ ପୁଲକିତ ହୋଇ ଉଠିବାର କୌଣସି କାରଣ ନଥିଲା । ଏଇ ପ୍ରାଚୀନ ବୟସରେ ସିଏ ବହୁ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କ ସାନ୍ନିଧ ଲାଭ କରିଛନ୍ତି ଓ କାହିଁ କେତେକାଳୁ ସରକାରୀ ଖାତାପତ୍ରରୁ ତାଙ୍କ ନାଁ ବାତିଲ କରି ଦିଆଯାଇଥିବାରୁ ସେ ନିଜକୁ ଏ ଦେଶର ଅନ୍ୟତମ ସ୍ୱାଧୀନ ନାଗରିକ ମନେକରନ୍ତି, ଯାହାଙ୍କର ସ୍ଥିତି ଅଛି ଅଥଚ ଦାୟିତ୍ୱ ନାହିଁ ।

ସେମାନେ ସମସ୍ତେ ଏକା ସହରର ଲୋକ, ବା କାଳକ୍ରମେ ଏକା ସହରରେ ଅଧୁନା ରହୁଛନ୍ତି । ନିଜ ନିଜର କ୍ଷେତ୍ରରେ ସେମାନେ ସମସ୍ତେ ଅଳ୍ପ ଅଧିକେ ଲବ୍ଧ ପ୍ରତିଷ୍ଠ ଏବଂ ସେଇ ହେତୁ ଆଜିର ଅବସରପ୍ରାପ୍ତ ଜୀବନରେ ମଧ୍ୟ ସେମାନେ ନାଗରିକମାନଙ୍କର ସପ୍ରଶଂସ ଦୃଷ୍ଟି ଆକର୍ଷଣ କରିଥାନ୍ତି ।

ସେମାନେ ସମସ୍ତେ ପରସ୍ପରଙ୍କର ଠିକ୍ ସହପାଠୀ ନଥିଲେ ମଧ୍ୟ ସମସାମୟିକ ଥିଲେ । ବର୍ଷେ ବା ଦୁଇବର୍ଷ ବ୍ୟବଧାନରେ ସେମାନେ ସମସ୍ତେ ଛାତ୍ର ଜୀବନ ଅତିକ୍ରମ କରି ସଂସାର କ୍ଷେତ୍ରରେ ପ୍ରବେଶ କରିଛନ୍ତି ଏବଂ ଶତାବ୍ଦୀର ଏକ ଚତୁର୍ଥାଂଶରୁ ଉର୍ଦ୍ଧ୍ୱକାଳ ନିରବଧି ସଂସାର-ଧର୍ମ ପାଳନ କରି, ଏକ ଦାୟିତ୍ୱ ମୁକ୍ତ, ଲଘୁ ଜୀବନ ଯାପନ କରିବାର ପ୍ରଲୋଭନ ହେତୁ ସ୍ୱ କର୍ତ୍ତବ୍ୟ କ୍ଷେତ୍ରରୁ କେହି ବାଧ୍ୟ ହୋଇ ଅଥବା

କେହି ସ୍ୱଇଚ୍ଛାରେ ଅବସର ଗ୍ରହଣ କରିଛନ୍ତି । ଏଇ ଛୋଟ ସହରଟିରେ ତେଣୁ ଏହି ସମବୟସ୍କ ଲୋକମାନଙ୍କର ବହୁ ସମୟରେ ଏକତ୍ର ହୋଇ ଗଳ୍ପ ବା' ସେଇପରି କିଛି ଲଘୁ ଆଲୋଚନା କରି ସମୟ ଅତିବାହିତ କରିବା ପ୍ରାୟ ଅପରିହାର୍ଯ୍ୟ ହୋଇ ପଡ଼ିଥାଏ ।

ଘଟଣା ଦିନଟିର ପ୍ରାୟ ଛଅମାସ ପୂର୍ବରୁ ସେମାନେ ଏକ କ୍ଲବ୍ ଘରେ ଏକତ୍ରିତ ହୋଇଥିଲେ । ଉଦ୍ଦେଶ୍ୟ ଥିଲା କିଛି ଲଘୁସଂଗୀତ, କିଛି ତାସଖେଳ ଓ କିଛି ପାନଭୋଜନରେ ଆପ୍ୟାୟିତ ହୋଇ ଦିନଟିକୁ ଆନନ୍ଦରେ କଟେଇ ଘରକୁ ଫେରି ଆସିବା ।

କିନ୍ତୁ ଏକତ୍ରିତ ହବାର ମାତ୍ର ଅଳ୍ପ ସମୟ ପରେ ସେମାନେ ନିଜ ନିଜର ଅତୀତକୁ ରୋମନ୍ଥନ କରି ସେମାନଙ୍କର ଏଇ ସୁପରିପକ୍ୱ ବୟସରେ ଯୌବନର ଏକ ମିଥ୍ୟା ଆଭରଣ ଆରୋପ କରିବାର ବ୍ୟର୍ଥ ପ୍ରୟାସରେ ଜଡ଼ିତ ହେଇ ପଡ଼ିଲେ ।

ମିଃ ପାନିକର ହଠାତ୍ ପାଟିକରି କହି ଉଠିଲେ, ''ବୁଝିଲ ଘନଶ୍ୟାମ ବାବୁ ସେ ଗାଲୁ ଗଳ୍ପ ଗୁଡ଼ାକ କୌଣସି ଅନୂଢ଼ା ଗ୍ରାମ୍ୟ କୁମାରୀକୁ ଶୁଣେଇଲେ ସେ ବିଶ୍ୱାସ କରିବ ।'' ମିଃ ପାନିକର ଥିଲେ ଜଣେ ସ୍ପଷ୍ଟବାଦୀ ବେପରୁଆ ସାମ୍ବାଦିକ । ସାମ୍ବାଦିକ ଜୀବନ କାଳ ଭିତରେ ତାଙ୍କର ସ୍ପଷ୍ଟବାଦୀତା ପାଇଁ ସେ ଏକାଧିକବାର ଅଦାଲତରେ ହାଜର ହେଇ ଜେଲଦଣ୍ଡ ଓ ଅର୍ଥ ଦଣ୍ଡରେ ଦଣ୍ଡିତ ହେଇଛନ୍ତି । ପୁଣି ସ୍ୱାଧିକାର ଭଙ୍ଗ ଅଭିଯୋଗରେ ସେ ବିଧାନସଭା ଦ୍ୱାରା ତଲବ୍ ହୋଇ ସେଠାରେ ଭର୍ତ୍ସିତ ହୋଇଛନ୍ତି । ତେଣୁ ଜଣେ ଅବସର ପ୍ରାପ୍ତ ଜିଲ୍ଲା ଜଜ୍‌କୁ ଏ ପ୍ରକାରର ଶ୍ଳେଷୋକ୍ତି କରିବାରେ ତାଙ୍କୁ ସାମାନ୍ୟତମ ଆୟାସ ସ୍ୱୀକାର କରିବାକୁ ପଡ଼ି ନଥିଲା । କଥାଟକ କହି ସାରି ମିଃ ପାନିକର ପାଇପ୍‌ରୁ କାରଖାନାର ଚିମ୍‌ନୀପରି ଧୂମ ଉଦ୍‌ଗୀରଣ କରି ଟେବୁଲ୍ ଉପରେ ପ୍ରସାରିତ ତାଙ୍କର ଦୁଇଟି ଗୋଡ଼କୁ ମୃଦୁ ମୃଦୁ ସଞ୍ଚାଳିତ କଲେ ।

ଘନଶ୍ୟାମ ବାବୁ ବିଚାରପତିର ଦୀର୍ଘ ଅଭିଜ୍ଞତା ନେଇ ବହୁ ବିବରଣୀ ଓ ତଥ୍ୟ କାଠଗଡ଼ା ଭିତରୁ ଓ କାଠଗଡ଼ା ବାହାରେ ଶୁଣିଛନ୍ତି । ଏହି ଆର୍ଯ୍ୟ ଭୂମିର ଏକ ଗୌରବମୟ ଅତୀତ, ଯାହାକି ମୁନି-ଋଷିମାନଙ୍କର ପବିତ୍ର ଓଁକାର ନାଦ ଓ ଅକଥ୍ୟ କୃଚ୍ଛ୍ର ସାଧନ ଭିତରେ ଋଦ୍ଧିମନ୍ତ, ସେ ସମ୍ପର୍କରେ ଘନଶ୍ୟାମ ବାବୁ ଓରଫ ଜଜ୍ ସାହେବ ସ୍ଥିର ନିଶ୍ଚିତ । ତାଙ୍କର କାର୍ଯ୍ୟ ଭିତରେ ସେ ବହୁ ଜଟିଳ ମକଦ୍ଦମାର ରାୟ ଦେବାକୁ ଯାଇପାଟିର ଦୁଇ ଜାବ ଭିତରେ କଲମ କାମୁଡ଼ି ଅସ୍ଥିର ପଦଚାରଣ କରିଛନ୍ତି । ଏହା କ'ଣ ସମ୍ଭବ ? କୌଣସି ଏକ ଗ୍ରାମ୍ୟ ତାନ୍ତ୍ରିକର ଦେବୀ ବୋଧନରେ ଏକ ଅସର୍ଯ୍ୟଂପଶ୍ୟା ଅବିବାହିତା ଗ୍ରାମ୍ୟ କୁମାରୀ ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ଗ୍ରାମ ଦାଣ୍ଡରେ

ନାଚିବା କଅଣ ସମ୍ଭବ ? ପୁଣି ଏହା ବି କଅଣ ସମ୍ଭବ ଯେ ତାହାର ପ୍ରତିନିଦାନରେ ପୁଣି ସେ ସ୍ୱାଭାବିକ ଅବସ୍ଥାକୁ ଫେରିଆସିବ ? ବିଂଶ ଶତାବ୍ଦୀରେ ମଧ୍ୟ କ'ଣ ଏ ଦେଶର ତନ୍ତ୍ର-ସାଧନା ଏହିପରି ଅକ୍ଷତ ଅବସ୍ଥାରେ ରହିଛି ?

ପ୍ରଚକ୍ଷୁଟିକୁ ନାସାଗ୍ରରେ ଆବଦ୍ଧ କରି ଯବକ୍ଷାଚ ପରି ତା'ର ମୋଟା ମୋଟା ଲେନ୍‌ସ ଭିତର ଦେଇ ଜଜ୍ ସାହେବ ଏକ ସ୍ଥିର ଶୀତଳ ଦୃଷ୍ଟିରେ ମିଃ ପାନିକରଙ୍କୁ କିଛି ସମୟ ପାଇଁ ଚାହିଁ ରହିଲେ ଏବଂ ତା'ପରେ କହିଲେ, ''ପାନିକର ! ଭାରତବର୍ଷରେ ତନ୍ତ୍ରବିଦ୍ୟା ସାଧନର ସେ ଗୌରବୋଜ୍ଜ୍ୱଳ ଦିନ ଆଜି ଆଉ ନାହିଁ, କିନ୍ତୁ ତଥାପି ଯାହା କିଛି ଅବଶିଷ୍ଟ ଅଛି, ତମେ ତାହାର ପରୀକ୍ଷା ନବାକୁ ପ୍ରସ୍ତୁତ ତ ?''

ଅବଶିଷ୍ଟ ଶ୍ରୋତା ଜଣେ ଆଇନଜୀବୀ, ଜଣେ ସିଭିଲ୍ ସର୍ଜନ ଓ ଜଣେ ଡାଇରେକ୍ଟର ଥରେ ମିଃ ପାନିକରଙ୍କୁ ଓ ଥରେ ଜଜ୍ ସାହେବଙ୍କୁ ଚାହିଁଲେ, ଖେଳ ଜମିଛି । ସିଭିଲ ସର୍ଜନ ମହାଶୟ ତାଙ୍କର ମୁଖମଣ୍ଡଳରୁ ଅବଶିଷ୍ଟ କିଛି ଦାନ୍ତ ବିକଶିତ କରି ଏକ ନାରୀସୁଲଭ କଣ୍ଠରେ ଘୋଷଣା କଲେ, ''ଠିକ୍ କଥା, ଯଦି କିଛି ପ୍ରତ୍ୟକ୍ଷ ପ୍ରମାଣ ମିଳେ, ତାହାହେଲେ ତା'ର ବନ୍ଦୋବସ୍ତ କରାଯିବା ଉଚିତ୍।''

ମିଃ ପାନିକର ପାଇପ୍‌ଟାକୁ ତଥାପି ଦାନ୍ତ ଭିତରେ ରଖି ଇଂରାଜୀ କହିବା ଭଙ୍ଗୀରେ ଓଡ଼ିଆ ଶବ୍ଦଗୁଡ଼ିକ ଅର୍ଦ୍ଧଚର୍ବିତ କରି କହିଲେ, ମୁଁ ପ୍ରସ୍ତୁତ ଅଛି । ଛଅମାସ ସମୟ ଦେଲି । ସେଇ ପୁରାତନ ବଂଲୋର ଅପେକ୍ଷାକୃତ ନିର୍ଜନ ପରିସ୍ଥିତି ଭିତରେ ଏ ପରୀକ୍ଷା କରାଯିବ । ସେହି ଦିନର ଖାଦ୍ୟପେୟ ଓ ଅନ୍ୟାନ୍ୟ ସବୁ ଖର୍ଚ୍ଚର ଦାୟିତ୍ୱ ରହିବ ତା'ରି ଉପରେ ଯିଏ ହାରିଯିବ ।

ଆଜି ସେଇ ନିର୍ଦ୍ଧାରିତ ଦିନଟି ଉପସ୍ଥିତ । ଏକ ନିର୍ଜ୍ଜନ ପରିବେଶ ଭିତରୁ କେଉଁଠି କିପରି ଗୋଟାଏ ଦୁଇଟା ଉଲ୍ଲୁକ, ଡେଣାର ନୀରବ କମ୍ପନରେ ଗୁଳ୍ମର ବୃକ୍ଷଶାଖାକୁ ସ୍ଥାନାନ୍ତରିତ ହେଲେ । ପରିସ୍ଥିତିକୁ ସ୍ୱାଗତ କଲାପରି କେଉଁ ଦିଗରୁ ଦୁଇଟି ଶବ୍ଦ ଭାସିଆସିଲା ହୁଟ୍ ହୁଟ୍ । ଗାଡ଼ିର ଦରଜା ଖୋଲି ବାହାରି ଆସିଲେ ମିଃ ପାନିକର୍ । ସେ ଯେତେବେଳେ ଘର ଭିତରକୁ ପ୍ରବେଶ କଲେ, ସେତେବେଳକୁ ନିର୍ଦ୍ଧାରିତ ଅତିଥିମାନେ ନୀରବରେ ସମାବିଷ୍ଟ । କେବଳ ମିଷ୍ଟର ପାନିକର୍‌ଙ୍କୁ ଯାହା ଅପେକ୍ଷା କରାଯାଇଥିଲା ।

ଚଟାଣ ଉପରେ ବିଭିନ୍ନ ରଙ୍ଗର ମୁରୁଜ ଦେଇ ବହୁ ଦୁର୍ବୋଧ ତାନ୍ତ୍ରିକ ମୁଦ୍ରା ଅଙ୍କିତ ହୋଇଛି । ମାଟିପାତ୍ର, ଆମ୍ରଡ଼ାଳ, ମନ୍ଦାରଫୁଲ, ଅକ୍ଷତ ଓ ଦୁର୍ବାଦଳ ପ୍ରଭୃତି ବହୁ ବିଭିନ୍ନ ସମୀଧର ଇତସ୍ତତଃ ସ୍ଥିତି ଏକ ତାନ୍ତ୍ରିକ ଓ ଭୌତିକ ବାତାବରଣ ସୃଷ୍ଟି କରିଛି, ଏବଂ ସର୍ବୋପରି ପୂଜାସ୍ଥଳୀର ପୁରୋଭାଗରେ ଉପବିଷ୍ଟ ହୋଇ ଏକ କୃଷ୍ଣକାୟ,

ଉପବୀତଧାରୀ ମଧ୍ୟବୟସ୍କ ବ୍ୟକ୍ତିଙ୍କର ଅପସୃୟମାନ କେଶ ପ୍ରଶସ୍ତ ଲଲାଟରେ ଚନ୍ଦନ ସିନ୍ଦୂର ମିଶ୍ରିତ ଏକ ତ୍ରିଶୂଳର ଚିତ୍ରପଟ, ଏକ ପେଟ୍ରୋମାକ୍ସ ଆଲୁଅର ଦୀପ୍ତିରେ ଉଦ୍‌ଭାସିତ ହୋଇ ପରିବେଶକୁ ଏକାନ୍ତ ରହସ୍ୟମୟ କରି ତୋଳିଛି ।

ନୀରବତା ପ୍ରଥମେ ଭଙ୍ଗକଲେ ଜଜ୍‌ସାହେବ, ''ଏକ ତାନ୍ତ୍ରିକ ପରୀକ୍ଷା ପାଇଁ ସର୍ବନିମ୍ନ ବିଶ୍ୱାସର ପ୍ରୟୋଜନ, ଯାହା ତମଠାରେ ମିଃ ପାନିକର୍ ଏକାନ୍ତ ଅଭାବ, ତେଣୁ ତମ ବଦଳରେ ମୁଁ ପରୀକ୍ଷା ଦବାକୁ ମନସ୍ଥ କରିଛି । ତମେ ରାଜି ?''

—''ମୋଷ୍ଟ୍ ୱେଲ୍‌କମ୍''—କହିଲେ ମିଃ ପାନିକର ''କିନ୍ତୁ ପରୀକ୍ଷାଟା କ'ଣ ?''

''ପରୀକ୍ଷାଟା ହେଲା ଅତି ସାଧାରଣ, ଅଥଚ ବିସ୍ମୟକର, କିନ୍ତୁ କ୍ଷତିକାରକ ନୁହେଁ । ଅର୍ଥାତ୍ ଆପଣଙ୍କ ସମ୍ମୁଖରେ ଥିବା କାଷ୍ଠ ଫଳକଟି ମନ୍ତ୍ର ଦ୍ୱାରା ମୋର ପଶ୍ଚାତ୍ ଦେଶରେ ସଂଯୁକ୍ତ ହେବ—ଆପଣ ଅବଶ୍ୟ ନିଜେ ଟାଣି ଦେଖିପାରନ୍ତି ।''

''ଟିକିଏ ବେଶୀ ବଳପ୍ରୟୋଗ କରି ଟାଣିଲେ କିଛି ଅସୁବିଧା ନାହିଁ ତ ?'' ପଚାରିଲେ ପାନିକର୍ ।

ଜଜ୍‌ସାହେବ ଜଣେ ହିଦେନ୍‌କୁ ଚାହିଁବା ପରି ପାରିକର୍‌ଙ୍କୁ କହିଲେ, ''ଏଟା ଯାଦୁ କି ହାତସଫେଇ ନୁହଁ, ପାନିକର୍, ଏହା ମନ୍ତ୍ର ସଂଯୁକ୍ତ । ପୃଥିବୀର କୌଣସି ଶକ୍ତି ତାକୁ ବିଚ୍ଛିନ୍ନ କରିବା ସମ୍ଭବ ନୁହଁ ।''

କଥା ସେତିକିରେ ରହିଲା ।

ଥରେ ତାନ୍ତ୍ରିକର ମୁହଁ ଉପରେ ଓ ଥରେ ଜଜ୍ ସାହେବଙ୍କ ମୁହଁ ଉପରେ ଅତି କ୍ଷିପ୍ର ଦୃଷ୍ଟି ବିନିମୟ କରି ମିଃ ପାନିକର୍ କହିଲେ, ''ବଟ୍ କ୍ୟାନ୍ ଆଇ ସ୍ମୋକ୍ ?''

ତାନ୍ତ୍ରିକଟି ବିପରୀତ ଦିଗକୁ ମୁଖକରି ଏକ ମନ୍ତ୍ର ଉଚ୍ଚାରଣ କରିବା ଭଙ୍ଗରେ କହିଲେ, ''ଦେବୀଙ୍କର ପୂଜା କରିବାକୁ ପଞ୍ଚମାକାର ସାଧନ କରାଯାଏ । ଏଥିରେ କିଛି ବିଦେଶୀ ଜଦ୍ଦାର ଧୂଆଁ କ୍ଷତି କରିବା ସମ୍ଭବ ନୁହେଁ । ଆପଣ ଖାଇ ପାରନ୍ତି ସ୍ୱଚ୍ଛନ୍ଦରେ ।''

କଥା ସରୁ ନ ସରୁଣୁ ମିଃ ପାନିକର୍‌ଙ୍କ ହାତରେ ଦିଆସିଲି କାଠିଟା ତତ୍‌କ୍ଷଣାତ୍ ଜଳି ଉଠିଲା । ମନେହେଲା ଯେପରି ସେଇ ଜୀର୍ଣ୍ଣ ବଙ୍ଗ୍‌ଲୋର ମେରୁଦଣ୍ଡ ଦେଇ କିଏ ଗୋଟାଏ ତୀକ୍ଷ୍ଣ ଲୌହ ଶଳାକାରେ ଗାର ଟାଣିଦେଲା ଏବଂ ତଦ୍ଦଣ୍ଡେ ଏକ ଭୀତିପ୍ରଦ ପରିବେଶ ତିଆରି ହେଲା । ସେତେବେଳେ ସିଭିଲ୍ ସର୍ଜନ ସାହେବ ତାଙ୍କର ନାରୀସୁଲଭ କଣ୍ଠରେ ପ୍ରସ୍ତାବ ଦେଲେ, ''ଏଥର ଆରମ୍ଭ ହେଉ'' ଅନ୍ୟ ତିନିଜଣ ଆଗନ୍ତୁକ ନୀରବରେ ସ୍ୱ ସ୍ୱ ସ୍ୱଳ୍ପ ଶୁକ୍ଳ କେଶ ଭିତରେ ଅଙ୍ଗୁଷ୍ଠି ଚାଳନା କଲେ, ଯେପରି

ସେମାନଙ୍କର କେଶଗୁଚ୍ଛ ଭିତରେ ଅଦୃଶ୍ୟ ପିପିଲିକାମାନେ ଶୋଭାଯାତ୍ରାରେ ବାହାରିଛନ୍ତି ।

ଘନଶ୍ୟାମବାବୁ ଓରଫ ଜଜ୍‌ସାହେବ ଉଠି ଠିଆ ହେଲେ ଏକ ବିଶ୍ୱାସର ସ୍ତମ୍ଭ ପରି ଏବଂ ଧୀରେ ଧୀରେ ପୂଜାସ୍ଥଳୀ ଆଗରେ ଥିବା କାଷ୍ଠଫଳକ ଉପରେ ନିଜର ଈଷତ୍ ପୃଥୁଳ ଶରୀରକୁ ଅବନମିତ କରି ପଦ୍ମାସନରେ ଉପବିଷ୍ଟ ହେଲେ ।

ପେଟ୍ରୋମାକ୍‌ସ ଲାଇଟ୍ ଥରେ ଦୁଇଥର ଧପ୍ ଧପ୍‌ହେଇ ମାଙ୍କଡ଼ ପରି ଖେଙ୍କାରି ଉଠିଲା ।

ଉପବୀତଧାରୀ ତାନ୍ତ୍ରିକ ଦୁର୍ବୋଧ ମନ୍ତ୍ର ଉଚ୍ଚାରଣ କରୁ କରୁ ପୂଜାସ୍ଥଳୀ ଉପରେ ତିଳତଣ୍ଡୁଳ ନିକ୍ଷେପ କରିବାକୁ ଆରମ୍ଭ କଲା । ସାମାନ୍ୟ ପବନରେ ଏକ ଜବାପୁଷ୍ପ ଆନ୍ଦୋଳିତ ହୋଇ ଜଜ୍‌ସାହେବଙ୍କର କୋଳ ଉପରେ ନିକ୍ଷେପିତ ହୁଅନ୍ତେ ତାନ୍ତ୍ରିକର କଣ୍ଠନଳୀ ଭେଦ କରି ଏକ ଯନ୍ତ୍ରଣା କବଳିତ ପଶୁର ଆର୍ତ୍ତ ଚିତ୍କାର ପରି ନିର୍ଗତ ହେଲା; ''ମାଆ...ମାଆ...ମାଆ...'' ଏବଂ ସେଥି ସଙ୍ଗେ ସଙ୍ଗେ ଦୁଇବାହୁକୁ ଭୂମିରେ ପ୍ରସାରିତ କରି ତାନ୍ତ୍ରିକ ସାଷ୍ଟାଙ୍ଗ ପ୍ରଣିପାତ କଲା ।

ଝଲକାଏ ପବନରେ ପେଟ୍ରୋମାକ୍‌ସ ଆଲୁଅ ଆଉ ଦୁଇ ତିନିଥର ନାଚି ଉଠି ସଂପୂର୍ଣ୍ଣ ନିର୍ବାପିତ ହେଲା ।

ସୂଚୀଭେଦ୍ୟ ଅନ୍ଧକାରର କମ୍ବଳ ଘୋଡ଼ି ହେଇ ଅତିଥିମାନେ ସ୍ୱ ସ୍ୱ ସ୍ଥାନରେ ଏକ ମିନିଟ୍ ଜଡ଼ ପାଲଟିଗଲେ ।

ବତାସର ବେଗ ବଢ଼ିଲା । ବଙ୍ଗ୍‌ଲୋର ଚାରିପଟେ ସହସ୍ର ସହସ୍ର ପକ୍ଷୀଙ୍କର ଡେଣା ଝାଡ଼ିବାର ଶବ୍ଦ । କୃଷ୍ଣଚୂଡ଼ା ଗଛଟାକୁ ଝଡ଼ ତା'ର ସହସ୍ର ବାହୁରେ ଦୋଳାୟିତ କରୁଚି । ଝଡ଼ର ବେଗରେ ମନେ ହେଉଛି ଯେପରି ସେଇ ଜରାଜୀର୍ଣ୍ଣ ବଙ୍ଗ୍‌ଲୋଟା କେଉଁ ମୁହୂର୍ତ୍ତରେ ସମସ୍ତଙ୍କ ଉପରେ ଅଜାଡ଼ି ହେଇ ପଡ଼ିବ । ଘନ ଘନ ବିଦ୍ୟୁତ୍ ଆକାଶକୁ ସହସା ଦୁଇଭାଗ କରୁଛି । ବିଦ୍ୟୁତ୍‌ର ଏକ ଝଲକରେ ଦେଖାଗଲା ଜଜ୍‌ସାହେବ ନିର୍ଦ୍ଧାରିତ ସ୍ଥାନରେ ବସି ରହିଛନ୍ତି ଏବଂ ତାଙ୍କର ମୁଖମଣ୍ଡଳକୁ ହଠାତ୍ ଝଲକାଏ ରକ୍ତ ଆସିଯାଇଚି । ସେ ଏକ ଅସହାୟ ଶିଶୁ ପରି ଚିତ୍କାର କରୁଛନ୍ତି, ''ଉଠିପାରୁ ନାହିଁ, ମୁଁ ଉଠିପାରୁ ନାହିଁ ।'' ବାରମ୍ବାର ସେଇ ଏକା କଥାର ପୁନରାବୃତ୍ତି—ମୁଁ ଉଠିପାରୁ ନାହିଁ—ମୁଁ ଉଠିପାରୁ ନାହିଁ ।

ସମସ୍ୱରରେ ମିଃ ପାନିକରଙ୍କ ଛଡ଼ା ସମସ୍ତେ ଚିତ୍କାର କଲେ—''ହେଲା, ହେଲା, ଏଥର ଓଲଟ ମନ୍ତ୍ର ପଢ଼ ।''

ଅବିରାମ ଚାଲିଛି ବିଦ୍ୟୁତ୍‌ର ଝଲକ । ବିଚରା ତାନ୍ତ୍ରିକ ତା'ର ଦୁଇ କାଷ୍ଠ ପାଦୁକାକୁ ଦୁଇ ହାତରେ ଯୋଡ଼ିଧରି ଅଶ୍ରୁଆକୁଳ କଣ୍ଠରେ କହୁଚି, ''ମୁଁ ଅବରୋହଣ ମନ୍ତ୍ର ଭୁଲିଯାଇଚି ଆଜ୍ଞା । ମୁଁ ନିରୂପାୟ, ମୋର ଯାହା ଶାସ୍ତିବିଧାନ କରିବେ କରନ୍ତୁ ।''

ମିଃ ପାନିକର ଗୋଟାଏ ବାହାଧରି ଜଜ୍ ସାହେବଙ୍କୁ ଟାଣୁ ଟାଣୁ ତାଙ୍କ ପାଟିରୁ ବାହାରି ପଡ଼ିଲା, ''ଇଉ ସିମ୍ପଲ୍ ଟନ୍'' । ଜଜ୍‌ସାହେବ ସଂଜ୍ଞାହୀନ ହେଇ ସେଇଠାରେ ଟଳି ପଡ଼ିଥିଲେ ।

ସର୍ବନାଶ ! ସମବେତ ଜନତା ମୁହୂର୍ତ୍ତକ ପାଇଁ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲା । ଏ କିଛି ପିଲାଖେଳ ନୁହେଁ । ସେଇ ଅନ୍ଧାର ଭିତରେ ପ୍ରାୟ ସମସ୍ତେ ଜଜ୍‌ସାହେବଙ୍କ ସ୍ୱାସ୍ଥ୍ୟର ଅବସ୍ଥା ପାଇଁ ଅତିମାତ୍ରାରେ ବ୍ୟଗ୍ର ହୋଇ ଉଠିଲେ । ସିଭିଲ୍ ସର୍ଜନ ସାହେବ, ନାଡ଼ୀ ପରୀକ୍ଷା କରି କହିଲେ, ଚିନ୍ତାର କାରଣ ନାହିଁ । ପଲ୍‌ସ ରେଟ୍ ସାମାନ୍ୟ ହାଇ ଅଛି ।

ସେଇ ଝଡ଼ ଭିତରେ ଡାକ୍ତର ଆଣିବା ପାଇଁ ଯେତେବେଳେ ମିଃ ପାନିକର ଗାଡ଼ିରେ ଷ୍ଟାର୍ଟ ଦେଇଥିଲେ, ସେତେବେଳେ ସେ ଜଜ୍‌ସାହେବ ଉପବେଶନ କରିଥିବା କାଷ୍ଠ ଫଳକଟିକୁ ସାଙ୍ଗରେ ନେଇଯିବା ପାଇଁ ଭୁଲି ନଥିଲେ । ଉପସ୍ଥିତ ବ୍ୟକ୍ତିମାନେ ବୁଝିପାରି ନଥିଲେ ଯେ କାଷ୍ଠ ଫଳକର ଅପସାରଣ ଜଜ୍‌ଙ୍କର ଭୂପତିତ ହବାର ଅନ୍ୟ କାରଣ ମାତ୍ର ।



# ଅନ୍ଧ ଗଳି

ସନ୍ଧ୍ୟା ହବାକୁ ତଥାପି କିଛି ସମୟ ଥିଲା । ଠିକ୍ ସେତିକିବେଳେ କ୍ଷିତୀଶ କୁଇଲନ୍ ରେଲ୍ ଷ୍ଟେସନ୍‌ରେ ଓହ୍ଲାଇଗଲା । ଛୋଟ ଗୋଟିଏ ଷ୍ଟେସନ୍ । ସେଠି ଜଣେ ଟିକଟ୍ କଲେକ୍ଟର ଦୁଇଜଣ ରେଳ ଖଲାସୀଙ୍କୁ ଛାଡ଼ିଦେଲେ ବିଶେଷ ଲୋକବାକ କେହି ନାହାନ୍ତି । ଓହ୍ଲାଇବା ଓ ଗାଡ଼ି ଧରିବା ଯାତ୍ରୀ ସଂଖ୍ୟା ଅନେକ କମ୍ । କ୍ଷିତୀଶର ଘର ରେଳ ଷ୍ଟେସନ ଠାରୁ ପ୍ରାୟ ଦେଢ଼ମାଇଲ ଦୂରରେ; କିନ୍ତୁ ତଥାପି ଓହ୍ଲାଇ ସାରିବା ପରେ ପରେ କ୍ଷିତୀଶ ସେଇ ଛୋଟ ଷ୍ଟେସନର ପ୍ଲାଟଫର୍ମରେ ଅନ୍ୟମନସ୍କ ଭାବରେ ବୁଲିବାକୁ ଲାଗିଲା ।

ଟ୍ରେନ୍ ପ୍ଲାଟ୍‌ଫର୍ମ ଛାଡ଼ିଲା । ଟ୍ରେନ୍ ଥିବା ଅବସ୍ଥାରେ ଯାହାକିଛି ସାମାନ୍ୟ କୋଳାହଳ ସେତକ ମଧ ସମ୍ପୂର୍ଣ୍ଣ ନୀରବ ହୋଇଗଲା । ଟିକଟ୍ କଲେକ୍ଟରଟି ମଧ କ୍ଲାନ୍ତ ପଦକ୍ଷେପରେ ନିଜର ନିର୍ଦ୍ଧାରିତ ସ୍ଥାନରୁ ଘର ଭିତରକୁ ଚାଲିଗଲେ ଓ ଗୋଟାଏ ବନ୍ଦ ତାବଲ ଉପରେ ବସି ଦୁଇଜଣ ଖଲାସୀ ଦିନର କ୍ଲାନ୍ତି ମେଣ୍ଟେଇ ନବାକୁ ବିଡ଼ିରେ ନିଆଁ ଧରେଇଲେ ।

ଏଇ ଷ୍ଟେସନ୍ କ୍ଷିତୀଶର ବହୁଦିନର । ସେ' ପ୍ରଥମଥର ପାଇଁ ଯେତେବେଳେ ତା'ର ଗାଁ ଛାଡ଼ି ସୁଦୂର କଲିକତାକୁ ପାଠ ପଢ଼ିବାକୁ ବାହାରେ, ସେତେବେଳେ ତା'ର ବାପା ମା' ଓ ଗାଁର ଅନେକ ଲୋକ ଏଇ ଷ୍ଟେସନକୁ ଆସିଥିଲେ ତା'କୁ ବାଟେଇ ଦବା ପାଇଁ । ଗାଡ଼ି ଦୂରକୁ ଦୂରକୁ ଗଲାବେଳେ ତା'ର ଆଖି ଧୀରେ ଧୀରେ ସମସ୍ତଙ୍କ ଉପରୁ ଆସି ବାପାଙ୍କ ଉପରେ ଓ ଶେଷରେ ମାଆଙ୍କ ମୁହଁ ଉପରେ ସ୍ଥିର ହୋଇ ଯାଇଥିଲା । ମା'ଙ୍କର ଆଖିପତା ତଳେ ଟୋପାଏ ଲୁହ ସକାଳର ଖରାରେ ଶୁଭ୍ର ମୁକ୍ତା ବିନ୍ଦୁ ପରି ଦେଖା ଯାଉଥିଲା ।

ଆଉ ଦେଖି ହଉ ନାହିଁ । ସମସ୍ତେ ଲିଭିଗଲେ ଏବଂ ଅନେକ ଗଛ ଓ ତଳର ମାଟି ବିଦ୍ୟୁତ୍ ବେଗରେ କ୍ଷିତୀଶକୁ ଅତିକ୍ରମ କରିବାକୁ ଲାଗିଲେ । ତାକୁ ଅବଶ୍ୟ କିଛି ସମୟ ପାଇଁ ଖୁବ୍ ନିଃସଙ୍ଗ ଓ ଅସହାୟ ବୋଧ ହୋଇଥିଲା; କିନ୍ତୁ ପରମୂହୂର୍ତ୍ତରେ କର୍ତ୍ତବ୍ୟନିଷ୍ଠତା ଓ ଆତ୍ମବିଶ୍ୱାସରେ ତା'ର ମୁହଁର ରେଖାସବୁ କଠୋର ହୋଇ ଉଠିଥିଲା । ସେ ଏକ ନିମ୍ନ ମଧ୍ୟବିତ୍ତ ପରିବାରର ପ୍ରଥମ ସନ୍ତାନ ଏବଂ ତାହାର

ତପସ୍ୟା ଓ ସାଧନା ଉପରେ ତା'ର ପରିବାରର ଭବିଷ୍ୟତ ଏକାନ୍ତ ଭାବରେ ନିର୍ଭରଶୀଳ । କଲିକତା କ୍ଷିତୀଶ ଦେଖିଚି କେବଳ ମାନଚିତ୍ରରେ । ସେଇ କଲିକତା– ମହାନଗରୀ କଲିକତା ସହିତ କ୍ଷିତୀଶକୁ ଏକ ଯୁଦ୍ଧ କରିବାକୁ ହେବ ଦୀର୍ଘ ଛ' ବର୍ଷ !

ପ୍ଲାଟଫର୍ମର ଆଲୁଅ ସବୁ ମଇଳା ଦେଖାଯାଉଚି ଏବଂ ଖଲାସୀମାନେ ଆସନ୍ନ ଶୀତ ପାଇଁ ନିଜକୁ ଯଥାସାଧ୍ୟ ସଙ୍କୁଚିତ କରି ଲୁଗା ଘୋଡ଼ି ହୋଇ ନିଜକୁ ପ୍ରସ୍ତୁତ କରି ନେଲେଣି । ଆଉ କେତେ ସମୟ କ୍ଷିତୀଶ ଅନିଶ୍ଚିତ ଭାବରେ ଘୂରି ବୁଲିବ ? ତା'ର ପ୍ରଚଣ୍ଡ ଅନିଚ୍ଛା ସତ୍ତ୍ୱେ ମଧ୍ୟ ତାକୁ ତା'ର ଗାଁକୁ ଯିବାକୁ ପଡ଼ିବ ଏବଂ ଏପରି ଅପ୍ରତ୍ୟାଶିତ ଭାବରେ ଗାଁକୁ ଆସିବାର ଗୋଟାଏ ନା ଗୋଟାଏ କିଛି କୈଫିୟତ ଦବାକୁ ପଡ଼ିବ । କ୍ଷିତୀଶ ପ୍ଲାଟଫର୍ମ ଛାଡ଼ି ଗାଁକୁ ଯାଇଥିବା ଚଲା ରାସ୍ତାରେ ଚାଲିବାକୁ ଆରମ୍ଭ କଲା ।

ସତରେ କ୍ଷିତୀଶକୁ ଭାରି ଭଲ ଲାଗୁଚି ତା'ର ଗାଁର ନରମ ମାଟିରେ ପାଦ ଗଣି ଗଣି ଚାଲିବାକୁ । ତା'ର ଆଖି ସାମ୍ନାରେ ସେ ସ୍ପଷ୍ଟ ଦେଖି ପାରୁଚି ପ୍ରତିଦିନ ପରି ସନ୍ଧ୍ୟାରେ ତା' ବାପା ଘରବାରଣ୍ଡା ଉପରେ ଖଣ୍ଡେ ଦଉଡ଼ିଆ ଖଟ ପକେଇ ଶୂନ୍ୟକୁ ଚାହିଁ ବସିରହିଛନ୍ତି । ନା, ତା' ପକ୍ଷରେ କୌଣସିମତେ ଯାଇ ତା'ର ବାପା ବା ମା'ଙ୍କୁ ଦେଖା କରିବା ସମ୍ଭବ ନୁହଁ । ତାକୁ ତ କିଛି ନା କିଛି ଜବାବ୍ ଦବାକୁ ପଡ଼ିବ । ରାସ୍ତା ମଝିରେ ମୁହୂର୍ତ୍ତକ ପାଇଁ ସ୍ଥାଣୁ ପରି ଠିଆ ହେଇ ରହିଲା କ୍ଷିତୀଶ । ସେ ଫେରି ବା ଯିବ କେଉଁଠିକି ? ଅନ୍ୟ କେଉଁଠିକି ଯାଇ ହୁଏତ ସିଏ ଆତ୍ମଗୋପନ କରିପାରନ୍ତା; କିନ୍ତୁ ତାହାହେଲେ ତ ତାକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ତା'ର ବାପା ମା'ଙ୍କୁ ମିଛ କହିବାକୁ ପଡ଼ିବ । ନା, ବରଂ ଏଇ ପ୍ରଥମ ଧକ୍‌କାରେ ହିଁ ସେମାନଙ୍କର ଆଶା ଧୂଳିସାତ୍ ହୋଇଯିବା ଉଚିତ୍ ।

ଆଗକୁ ପୁଣି ଥରେ ପାଦ ବଢ଼େଇଲା କ୍ଷିତୀଶ ।

ଶୀତୁଳିଆ ଅନ୍ଧାର ଭିତରେ ଆଗକୁ ଆଗକୁ ଚାଲିଚି କ୍ଷିତୀଶ । ଏଇ, ସେଇ ତାଳଗଛଟା ପାଖ ହୋଇଗଲାଣି । ତା'ର ପିଲାଦିନର ଅନେକ ଅପରାହ୍ନରେ କ୍ଷିତୀଶ ଏଇ ତାଳଗଛର ଛାଇଟାକୁ ପାଦରେ ଗଣି ଗଣି ମାପେ ଆଉ ପ୍ରତ୍ୟେକ ଥର ସେଟା ହୁଏ ଏକତିରିଶ ପାହୁଣ୍ଡ । ତାଳଗଛ ମୂଳରୁ ଏକଦମ ତାଳଗଛ ମଥାନର ମଧ୍ୟବିନ୍ଦୁ ପର୍ଯ୍ୟନ୍ତ । ବେଳେ ବେଳେ ମାପ ଭୁଲ ହୋଇଯାଏ । କେତେବେଳେ ତିରିଶ ନ ହେଲେ କେତେବେଳେ ଏକତିରିଶ । ଆରେ ! ତାଳଗଛଟା କ'ଣ ଦିନକ ଭିତରେ ପାହୁଣ୍ଡେ ଉଚ୍ଚ ହୋଇଗଲା; ନା ମାପ ଭୁଲ ହୋଇଗଲା । ପୁଣି ଥରେ ଆରମ୍ଭ ହୁଏ ସରଜମିନ ମାପ । ସେଇ ମାପଟା ହିଁ ଧୀରେ ଧୀରେ କ୍ଷିତୀଶର ପାଠପଢ଼ା, ବିଦ୍ୟାଭାସ, ପିତୃଭକ୍ତି

ଓ ଆକାଙ୍‌କ୍ଷାର ଏକ ଚିରନ୍ତନ ମାପକାଠି ହୋଇଯାଇଥିଲା । ତା'ର ମାପ ଭୁଲ ହୋଇ ପାରେନାଁ । ମାପରେ ସାମାନ୍ୟ ଭୁଲ୍ ଯେପରି ତା'ର ଚରିତ୍ରର ଗୋଟାଏ ବିରାଟ ବିଚ୍ୟୁତି ।

କଲିକତା ବିଶ୍ୱବିଦ୍ୟାଳୟ ହତାରେ ଗୋଟାଏ ତାଳଗଛ ଅନ୍ତତଃ ଥିବା ଉଚିତ୍ ଥିଲା । ତାହାହେଲେ ତା'ର ବୋଧହୁଏ ଏ ବିପର୍ଯ୍ୟୟ ହେଇନଥାନ୍ତା । ବର୍ତ୍ତମାନ ଯଦି ତାଳଗଛର ଛାଇ ଥାଆନ୍ତା, ତାହାହେଲେ କ୍ଷିତୀଶ ସେମିତି ପାଦ ଗଣି ଗଣି ମାପିଯାଆନ୍ତା; କିନ୍ତୁ କ୍ଷିତୀଶ ଜାଣେ ତାହା ଆଉ ଏକତିରିଶ ପାହୁଣ୍ଡ ହବ ନାହିଁ । ଯା' ଭିତରେ କ୍ଷିତୀଶର ଗୋଡ଼ର ବୁଢ଼ା ଆଙ୍ଗୁଠି ମୋଟା ହେଇଚି, ପାଦର ତଳିପା ଆହୁରି ଲମ୍ବା ହେଇଚି ଆଉ ଅନେକ ବଡ଼ ହେଇଯାଇଛି ତା'ର ପାହୁଣ୍ଡର ମାପ । ତେଣୁ ସେବକାର ଏକତିରିଶ ପାହୁଣ୍ଡ ଆଜି ହୁଏତ ହେଇପାରେ ଚବିଶ ପାହୁଣ୍ଡ । ଇସ୍ ! ସାତ ପାହୁଣ୍ଡର ବିରାଟ ବିଚ୍ୟୁତି !

ଅନେକ ସମୟ ଧରି ତାଳଗଛକୁ ଆଉଜି ରହି କ୍ଷିତୀଶ ତା'ର ଶୈଶବକୁ ରୋମନ୍ଥନ କରୁଚି । ବେଶ୍ ରାତି ହେଲାଣି । ଆଉ ଖୁବ୍ ଅଳ୍ପ ବାଟ । ଗାଁଟା ତା'ର କୁହୁଡ଼ି ଆଉ ଧୂଆଁରେ ଫାକାଶିଆ ଦେଖାଯାଉଥିବ । ଭାରି ଭଲ ହୋଇଛି, ଏତେବେଳେ ଗାଁର ଲୋକମାନେ କ୍ଷିତୀଶକୁ ହଠାତ୍ ଠଉରାଇ ପାରିବେ ନାହିଁ, ନଇଲେ ତା' ଘରେ ଗାଁଟାଯାକ ଲୋକଙ୍କର ଭିଡ଼ ଜମି ଯାଇଥାଆନ୍ତା ।

ଗାଁ ମୁଣ୍ଡରେ କିଛି ସମୟ ଅଟକି ରହି କିଛି ସାହସ ସଞ୍ଚୟ କରିବା ପରେ କ୍ଷିତୀଶ ଗାଁ ଭିତରକୁ ପଶିଲା । ଅନ୍ଧାରିଆ ଗାଁ ଦାଣ୍ଡରେ ଗୋଟାଏ ଅଶରୀରୀର ଛାଇ ପରି ଡେଙ୍ଗା ପତଳା କ୍ଷିତୀଶ ଆଗକୁ ଚାଲିଛି । ଦାଣ୍ଡରେ ଗୋଟାଏ ଦୁଇଟା ଶଗଡ଼ର ଅସ୍ପଷ୍ଟ ଆକୃତି ଆଉ ବନ୍ଧା ହୋଇଥିବା ବଳଦମାନଙ୍କର ଫଁ ଫଁ ନିଃଶ୍ୱାସ । ତା' ଘର ଦୁଆର ମୁହଁରେ ପହଞ୍ଚୁ ପହଞ୍ଚୁ କ୍ଷିତୀଶର ବାପା ଡାକି ଉଠିଲେ ''କିଏ'' ? କ୍ଷିତୀଶର ଛାତି ଭିତରୁ ଝଲକାଏ ରକ୍ତ ଯେପରି ଖସିଗଲା । କ୍ଷିତୀଶ ଜବାବ୍ ଦେଲା ''ମୁଁ–କ୍ଷିତୀଶ ।'' ବାପାଙ୍କର ଯେପରି ବିଶ୍ୱାସ ହେଲା ନାହିଁ । ଆଉ ଥରେ ଡାକିଲେ ''କିଏ'' । କ୍ଷିତୀଶ ଏଥର ଆଉ କିଛି ଜବାବ୍ ନ ଦେଇ ବାପାଙ୍କ ପାଖକୁ ଲାଗିଯାଇ ପାଦଧୂଳି ନେଲା । ବାପା ମୁହୂର୍ତ୍ତକରେ ଧରିନେଲେ କ୍ଷିତୀଶର ବାହା ଦୁଇଟାକୁ । କ୍ଷିତୀଶ ସ୍ପଷ୍ଟ ଅନୁଭବ କରିପାରୁଛି ଯେ ତା'ର ବାପାଙ୍କ ହାତ ଦୁଇଟା ଏକ ଅଜଣା ଉତ୍ତେଜନାରେ କମ୍ପି ଉଠୁଛି । କ୍ଷିତୀଶର ବାପା ଗୋଟାଏ କ'ଣ ପାଟି କରି ଉଠିଲେ ଏବଂ ତା'ପରେ ପରେ ଘର ଭିତରୁ ବାହାରି ଆସିଲେ କ୍ଷିତୀଶର ମା' ଗୋଟିଏ ଭାଇ ଓ ଦୁଇ ଭଉଣୀ । ସମସଙ୍କ ଆଖିରେ କେବଳ ବିସ୍ମୟ । ନିମ୍ନ ମଧ୍ୟବିତ୍ତ ପରିବାରର ବଡ଼ପୁଅ ବିନା କାରଣରେ ସୁଦୂର କଲିକତାରୁ ଘରକୁ ଫେରିଆସି ପାରେ ନା । ତା'ର ସେ ସମ୍ବଳ

ନାହିଁ । ତେଣୁ ଆସିବାର ସମସ୍ତ ଖର୍ଚ୍ଚକୁ ସମତୁଲ ହେବା ପରି କୌଣସି ଜରୁରୀ କାରଣ ମଧ୍ୟ ଥିବା ଉଚିତ୍ ।

ନିଜର ଅତି ଆପଣାର ପ୍ରିୟଜନମାନଙ୍କ ଭିତରେ କ୍ଷିତୀଶ ଠିଆ ହୋଇ ରହିଛି ଗୋଟାଏ ଅପରାଧୀ ପରି । କେତେବେଳେକେ ଅବସ୍ଥାଟାକୁ ସହଜ କରି ନେବାକୁ କ୍ଷିତୀଶ କହିଲା, "ଆରେ ! ତମେମାନେ ସବୁ ମୋ ମୁହଁକୁ ଅନେଇ ଏମିତି ଠିଆ ହୋଇରହିଲ କାହିଁକି ? ଚାଲ ଘର ଭିତରକୁ ଚାଲ । ମୋର କିଛି ହେଇ ନାହିଁ । ମୋର ଦେହପା' ସବୁ ଭଲ ଅଛି । ଚାଲ ଭିତରକୁ ଚାଲ । ସବୁ କହୁଚି ।" ଏତକ ଏକା ନିଶ୍ୱାସରେ କହିଦେଇ କ୍ଷିତୀଶ ଘର ଭିତରକୁ ଚାଲିଲା ଓ ସମସ୍ତେ ଧୀର ପଦକ୍ଷେପରେ କ୍ଷିତୀଶର ଅନୁସରଣ କଲେ । କାହାରି ମୁହଁରେ ପଦେ ହେଲେ କଥା ନାହିଁ; କିନ୍ତୁ ଏକ ଅହେତୁକୀ ଆଶଙ୍କାରେ ମା'ଙ୍କ ଆଖିତଳର ସେଇ ମୁକ୍ତା ବିନ୍ଦୁଟି କ୍ଷିତୀଶର ତୀକ୍ଷ୍ଣ ନଜରକୁ ଏଡ଼ାଇ ପାରି ନଥିଲା ।

ସେଦିନ ରାତିରେ ଏବଂ ତା'ର ଅନେକ ଦିନ ପର୍ଯ୍ୟନ୍ତ କ୍ଷିତୀଶ ତା' ପରିବାରକୁ ତା'ର ଆକସ୍ମିକ ଆବିର୍ଭାବର କୌଣସି ସନ୍ତୋଷଜନକ ଉତ୍ତର ଦେଇ ପାରି ନଥିଲା । ଖାଲି କହିଥିଲା—କଲେଜରେ ଷ୍ଟ୍ରାଇକ୍ ଚାଲିଛି, ତେଣୁ ସେଠି ମିଛଟାରେ ବସି ବସି ଟଙ୍କା ଖର୍ଚ୍ଚ କରିବା ଅପେକ୍ଷା ଘରକୁ ଚାଲିଆସି ନିରୋଳାରେ ପଢ଼ାପଢ଼ି କରିବା ଭଲ, କିନ୍ତୁ ପରିବାରର ସମସ୍ତେ ଜାଣିଥିଲେ ଯେ କ୍ଷିତୀଶ ପ୍ରକୃତ କଥା କହୁ ନାହିଁ। ତଥାପି ଗାଁ ଲୋକମାନଙ୍କର କୌତୂହଳ ଦମନ କରିବା ପାଇଁ କ୍ଷିତୀଶର ପରିବାର ଏହି ଆପାତ-ସତ୍ୟଟିକୁ ସତ୍ୟ ବୋଲି ଗ୍ରହଣ କରିନେଇଥିଲେ ଓ ତାହା ହିଁ ଥିଲା ଗ୍ରାମ୍ୟ ଜନତା ପାଇଁ କ୍ଷିତୀଶର ଆକସ୍ମିକ ପ୍ରତ୍ୟାବର୍ତ୍ତନର ଏକମାତ୍ର ଇସ୍ତାହାର ।

ଆସିଲାବେଳେ କ୍ଷିତୀଷ ହାତରେ ଖଣ୍ଡେ ଛୋଟ ବ୍ୟାଗ୍‌ରେ କେତେଖଣ୍ଡ ବହି ଥିଲା ସତ୍ୟ; କିନ୍ତୁ ତାହା ଯେ ଜଣେ ପୋଷ୍ଟ ଗ୍ରାଜୁଏଟ୍ ଛାତ୍ର ପକ୍ଷରେ ପର୍ଯ୍ୟାପ୍ତ ହୋଇ ନପାରେ ଏକଥା ସମସ୍ତେ ଉପଲବ୍ଧି କରୁଥିଲେ; କିନ୍ତୁ ପ୍ରକୃତ କାରଣଟିକୁ କେହି ଭରସି କରି କ୍ଷିତୀଶକୁ ପଚାରି ପାରୁ ନଥିଲେ । କ୍ଷିତୀଶର ମା' ଥରେ ଦୁଇଥର କଥାଟାକୁ ଉତ୍‌ଥାପନ କରିଛନ୍ତି; କିନ୍ତୁ କ୍ଷିତୀଶ ହଠାତ୍ ଅନ୍ୟମନସ୍କ ହୋଇପଡ଼େ କିମ୍ବା କଥାଟାକୁ ଏଡ଼େଇ ଯିବା ପାଇଁ କିଛି ଗୋଟାଏ ଆଳ ଧରି ଚାଲିଯାଏ । କ୍ଷିତୀଶ ମନରେ କଷ୍ଟ ଦବା ଭୟରେ ଆଉ ସେ କଥା କେହି ଉତ୍‌ଥାପନ କରି ନାହାନ୍ତି; କିନ୍ତୁ କ୍ଷିତୀଶ ଆସିବା ଦିନ ଠାରୁ ସମଗ୍ର ପରିବାର ଉପରେ ଯେ ସନ୍ଦେହ ଓ ଉଦ୍‌ବେଗର ଗୋଟାଏ ଛାଇ ଢାଙ୍କି ରହିଛି, ସେ କଥା କ୍ଷିତୀଶ ଅତି ସ୍ପଷ୍ଟ ଭାବରେ ଅନୁଭବ କରିପାରେ; କିନ୍ତୁ କ୍ଷିତୀଶର କ'ଣ ୟା' ଭିନ୍ନ ଆଉ କିଛି ଉପାୟ ଥିଲା ?

ପ୍ରଥମେ ପ୍ରଥମେ କିଛିଦିନ କ୍ଷିତୀଶ କେମିତି ଅନ୍ୟମନସ୍କ ଓ ଉଦାସୀନ ରହୁଥିଲା, କିନ୍ତୁ କିଛିଦିନ ପରେ କ୍ଷିତୀଶର ଏଇ ଐକାନ୍ତିକ ଜୀବନ ଯାପନ ନିଜ ପାଇଁ ଦୁର୍ବିସହ ହୋଇ ଉଠିଲାଣି । ଗାଁରେ ପାଠପଢ଼ା ଲୋକ ବିଶେଷ କେହି ନାହାନ୍ତି ତେଣୁ ସେମାନଙ୍କ ସହିତ କୌଣସି ଆଲୋଚନା ମଧ୍ୟ ଅଚଳ । ଦି' ପହରେ ଖାଇପିଇ ସାରି କ୍ଷିତୀଶ ଯାଏ ଷ୍ଟେସନକୁ । ସେଠି ତା'କୁ ପ୍ରାୟ ନିୟମିତ ଭାବରେ ଖବରକାଗଜ ମିଳିଯାଏ, କିନ୍ତୁ ଦୁଇଟା ଖବରକାଗଜ ପଢ଼ିବା ତ ମାତ୍ର ଘଣ୍ଟାକର ବ୍ୟାପାର । ବାକୀତକ ସମୟ ଷ୍ଟେସନରେ ଏପଟ ସେପଟ ହୋଇ ଘରକୁ ଫେରିଆସେ ସନ୍ଧ୍ୟା ପୂର୍ବରୁ । ସନ୍ଧ୍ୟାଟା କ୍ଷିତୀଶ ପାଇଁ ଅତ୍ୟନ୍ତ କ୍ଲାନ୍ତିକର ଓ ଦୁର୍ବିସହ । ତା'ର ଦେହ ଚାରିପଟେ ଗାଁର ଶୀତଳ ଅନ୍ଧକାର ଓ ମନ ଭିତରେ ଅନେକ ଦିନର ଜମାଟବନ୍ଧା ସ୍ମୃତି । ଘର ଭିତରେ ଲଣ୍ଠନ ଧରି ମା' ଭାଇ ଭଉଣୀମାନେ ଯିବା ଆସିବା କରନ୍ତି ଆଉ ସେଇ ମଳିନ ଲଣ୍ଠନ ଆଲୁଅରେ ସେମାନଙ୍କର ଶୀର୍ଣ୍ଣ ଦେହର ଲମ୍ବା ଲମ୍ବା ଛାଇର ଛନ୍ଦାଛନ୍ଦି କ୍ଷିତୀଶକୁ ବେଳେ ବେଳେ ଏକ ପ୍ରେତପୁରୀର ନୃତ୍ୟ ପରି ମନେହୁଏ ।

ସେ' ଦିନ ସକାଳେ କ୍ଷିତୀଶ ଷ୍ଟେସନକୁ ଯିବା ବାଟରେ ପହଞ୍ଚିଲା ସେଇ, ତାଳଗଛ ପାଖରେ । ତାଳଗଛର ଛାଇ ପଡ଼ିଚି ଲମ୍ବା ହେଇ ଏବଂ କ୍ଷିତୀଶ ସେଇ ଛାଇକୁ ଆଉ ଥରେ ମାପିବାର ଶିଶୁସୁଲଭ କୌତୂହଳ ସମ୍ବରଣ କରିପାରିଲା ନାହିଁ । କ୍ଷିତୀଶ ଛାଇ ଉପରେ ପାହୁଣ୍ଡ ଗଣିବାକୁ ଆରମ୍ଭ କଲା—ଏକ୍ ଦୁଇ—ତିନ୍...'ଅଠର—ଉଣେଇଶ...ସତେଇଶ ଅଣତିରିଶ...ଏକତିରିଶ । ଆଶ୍ଚର୍ଯ୍ୟ ! ଅସମ୍ଭବ ! ପୁଣି ଥରେ ସେଇ ଛାଇ ଉପରେ ଦୋହରା ପାହୁଣ୍ଡ ଗଣିଲା କ୍ଷିତୀଶ, ଠିକ୍ ଏକତିରିଶ; କିନ୍ତୁ କ୍ଷିତୀଶ ଏକ ଅତି ସହଜ ଭୌଗୋଳିକ ତଥ୍ୟ ସମ୍ପୂର୍ଣ୍ଣ ବିସ୍ମୃତ ହୋଇ ଯାଇଥିଲା । ସେ ପିଲାଦିନେ ଗଣୁଥିଲା ଦିନ ୧୧ଟା ବେଳେ; କିନ୍ତୁ ଆଜିର ଗଣିବାର ସମୟ ଥିଲା ସକାଳ ୮ଟା । ସେ' ହୁଏତ ନିଜର ଅଜ୍ଞାତସାରରେ ଏଇ ଭ୍ରମଟିର ସୁଯୋଗ ନେଇ ତା'ର ପୁରାତନ ମୂଲ୍ୟବୋଧର ପ୍ରତୀକଟିକୁ ନିର୍ଭୁଲ ରଖିବାକୁ ଚେଷ୍ଟା କରୁଥିଲା ।

ଆଉ ଦିନେ ଅପରାହ୍ନରେ କ୍ଷିତୀଶ ତା'ର ଅଭ୍ୟାସ ଅନୁଯାୟୀ ଷ୍ଟେସନ ଯାଇଥିଲା ଓ ସମ୍ବାଦ ମିଳିଲା ଯେ ସେଦିନର ଡାଉନ ଟ୍ରେନ୍ ବାଟରେ ଆକ୍ସିଡେଣ୍ଟ ହୋଇ ଯାଇଥିବାରୁ ଆସି ପହଞ୍ଚି ପାରିବ ନାହିଁ । ତା'ର ଆଖି ଆଗରେ ହଠାତ୍ ଭାସି ଉଠିଲା ସେଇ ଟ୍ରେନ୍‌ର ଅସହାୟ ନିରପରାଧ ଯାତ୍ରୀମାନଙ୍କର ବିକଳ ଦୃଶ୍ୟ । ଟ୍ରେନ୍‌ର ଡବାଗୁଡ଼ାକ ଗୋଟାକ ଭିତରକୁ ଆଉ ଗୋଟାଏ ଟେଲିସ୍କୋପ କରି ଯାଇଥିବ ଆଉ ଲାଇନ୍ କରର ଗେଟି ଉପରେ ପଡ଼ିଥିବ ଅନେକ ମଣିଷର ଶବ; କିନ୍ତୁ ସେମାନେ ତ ମରିଗଲେ । ବାକୀ ଯେଉଁମାନେ ଗୋଟାଏ ହାତ କି ଗୋଟାଏ ଗୋଡ଼ କଟିଯାଇ ଯାନ୍ତ୍ରଣାରେ ଆର୍ତ୍ତଚିତ୍କାର କରୁଥିବେ, ସେମାନେ ବୋଧହୁଏ ଆଶୁ ମୃତ୍ୟୁକୁ ଅନ୍ତରର ସହିତ ନିମନ୍ତ୍ରଣ କରୁଥିବେ ।

ଷ୍ଟେସନର ଗୋଟାଏ ଇଜି ଚେୟାର ଉପରେ ଶୋଇ ରହି ଏକଥାଚିନ୍ତା କଲା ବେଳକୁ ସାମାନ୍ୟ ଭାବପ୍ରବଣ ହେଇ ଉଠିଲା କ୍ଷିତୀଶ; କିନ୍ତୁ କ୍ଷିତୀଶ ତ ଭାବପ୍ରବଣ ହବାର କଥା ନୁହଁ ! ଦିନ ଦିନ ଧରି ତାକୁ ସେଥିପାଇଁ ତାଲିମ ନବାକୁ ପଡ଼ିଚି । ତା'ର କ୍ଷୁଦ୍ର ମସ୍ତିଷ୍କିଟିକୁ ବହୁବାର ବିଶୋଧନ କରାଯାଇଛି, ଯେପରି ସେଥିରେ ଦୟା, କ୍ଷମା, ଭାବପ୍ରବଣତାର କ୍ଷୁଦ୍ରତମ ଅଙ୍କୁର ମଧ୍ୟ ଜୀବନ ଧାରଣ କରି ନପାରେ । ଦୁର୍ଘଟଣାରେ ବିକଳାଙ୍ଗ ହୋଇଥିବା ବହୁ ଅନାମିକା ଲୋକମାନଙ୍କର ଦୁଃଖରେ ଏଇ ସାମାନ୍ୟ ସହାନୁଭୂତିଟିକକ ମଧ୍ୟ ଆଶ୍ଚର୍ଯ୍ୟ କରିଦେଲା କ୍ଷିତୀଶକୁ । ତା'ର ଯେପରି ମନେହେଲା ଗୋଟାଏ ବିରାଟ ମରୁଭୂମିର ଗୋଟାଏ କ'ଣରେ ଗୋଟାଏ ଶ୍ୟାମଳ ଦୁର୍ବାଦଳ ସେଇ ପ୍ରକାଣ୍ଡ ଦୁର୍ବାର ମରୁଭୂମିକୁ ହାତଠାରି ଅଟ୍ଟହାସ କରୁଚି ।

ମାତ୍ର ତିନିବର୍ଷ ତଳର କଥା, ସେଦିନ କ୍ଷିତୀଶ ହାଜରା ପାର୍କ ଗଳିମୁଣ୍ଡରେ ତା'ର ମେସ୍ ଭିତରେ ଶୋଇ ରହିଥିଲା । ତା'ର ନିଦ ଭାଙ୍ଗିଲା ବେଳକୁ ତା' ସାମ୍ନାରେ ଜଣେ ମଧ୍ୟବୟସ୍କ ଲୋକ ସ୍ଥିର ହେଇ ବସି ରହିଛନ୍ତି । ତା'ପରେ ସେ ତାଙ୍କର ପରିଚୟ ଅବଶ୍ୟ ଦେଲେ; କିନ୍ତୁ ତାହା ଜଣେ ବ୍ୟକ୍ତିର ପରିଚୟ ପାଇଁ ଯଥେଷ୍ଟ ନୁହଁ । କ୍ଷିତୀଶକୁ ଅନୁରୋଧ କରାଯାଇଥିଲା ସେଦିନ ସନ୍ଧ୍ୟାରେ କୌଣସି ଏକ ସ୍ଥାନରେ ଉପସ୍ଥିତ ରହିବାକୁ । କଥାଟା ଅନୁରୋଧର ଭଙ୍ଗିରେ କୁହାଯାଇଥିଲା; କିନ୍ତୁ ତା' ଭିତରେ ଆଦେଶର ଏକ ପ୍ରଚ୍ଛନ୍ନ ଇଙ୍ଗିତ ଅତି ସୁସ୍ପଷ୍ଟ ଥିଲା । କ୍ଷିତୀଶ ମଧ୍ୟ ନିର୍ଦ୍ଧାରିତ ସ୍ଥାନରେ ପହଞ୍ଚିଲା । ତା'ପରେଯାହା ଘଟିଥିଲା ସେ କଥା ଭାବିଲେ ଏବେ ମଧ୍ୟ କ୍ଷିତୀଶର ସମସ୍ତ ଶରୀର ରୋମାଞ୍ଚିତ ହୋଇ ଉଠେ ।

ଦୋମହଲାର ଗୋଟାଏ ଛୋଟ କୋଠରୀ ଭିତରେ କ୍ଷିତୀଶର ସମବୟସ୍କ ଯୁବକ ପାଞ୍ଚଜଣ ବସି ରହିଥିଲେ ଓ ତାଙ୍କ ସାମ୍ନାରେ ବସି ରହିଥିଲେ ଜଣେ ମଧ୍ୟବୟସ୍କ ଭଦ୍ରଲୋକ । ଭଦ୍ରଲୋକଙ୍କର ନାଁ କ୍ଷିତୀଶ ଜାଣେ ନାହିଁ । ଏବେ ସୁଦ୍ଧା ନୁହେଁ; କିନ୍ତୁ ତାଙ୍କୁ ସମସ୍ତେ ଡାକୁଥିଲେ 'ଲାମା' ବୋଲି । ପଛରେ କ୍ଷିତୀଶ ବୁଝିଲା ଯେ ସେଟା ତାଙ୍କର ଗୁପ୍ତ ବା କୋଡ୍ ନାଁ; କାହାରି ମୁହଁରେ କଥା ନାହିଁ । ଅଳ୍ପ ସମୟ ପରେ ଜଣେ ତରୁଣୀ ଟ୍ରେ'ରେ ଛଅ କପ୍ ଚା' ଧରି ପଶି ଆସିଲେ ଓ ସମସ୍ତଙ୍କ ସାମ୍ନାରେ ଟ୍ରେ'ଟି ରଖିଦେଇ ସେହିପରି ନୀରବରେ ଫେରିଗଲେ । ଲାମା ଏଥର କଥା ଆରମ୍ଭ କଲେ । ତାଙ୍କର କଣ୍ଠ ଅତି ସ୍ପଷ୍ଟ ଓ ସେଥିରେ ବେଶ୍ ଆଭିଜାତ୍ୟର ବ୍ୟଞ୍ଜନା ମଧ୍ୟ ଥିଲା ।

''ମୁଁ ତମକୁ ଅନେକଦିନୁ ଜାଣେ । ତମ ନାଁ କ୍ଷିତୀଶ, ତମେ ଖୁବ୍ ଭଲ ଛାତ୍ର । ଏଇ ମେସ୍‌ରେ ରହିବା ପୂର୍ବରୁ ତମେ ରହୁଥିଲ ମୌଲାଲୀରେ—''ପଥହରା'' ମେସ୍‌ରେ ଇତ୍ୟାଦି ଇତ୍ୟାଦି । କ୍ଷିତୀଶ କେବଳ ମନ୍ତ୍ରମୁଗ୍ଧ ପରି ଶୁଣୁଥିଲା । ଏଇ ଲାମା

ଯେ କଲିକତାରେ ତା'ର ଦୁଇବର୍ଷର ଗତିବିଧି ସବୁକିଛି ଜାଣେ ଏଥିରେ ତା'ର ତିଳେ ମଧ୍ୟ ସନ୍ଦେହର ଅବକାଶ ରହିଲା ନାହିଁ ।

ପାଞ୍ଚମିନିଟ୍ ଧରି ଗୋଟିଏ କ୍ଷୁଦ୍ର ସ୍ୱୟଂସମ୍ପୂର୍ଣ୍ଣ ମୁଖବନ୍ଧ ଦେଇସାରିବା ପରେ ଲାମା କହିଲେ "ଆମମାନଙ୍କ ପକ୍ଷରେ ତମର ସାହାଯ୍ୟ ଏକାନ୍ତ ପ୍ରୟୋଜନୀୟ ହୋଇ ପଡ଼ିଚି, ତେଣୁ ତମକୁ ଏଠାକୁ ଡାକି କହିବା ଛଡ଼ା ଆମର ଆଉ ଉପାୟ ନଥିଲା ।"

ଘରଟାରେ ପଙ୍ଖା ନାହିଁ, କ୍ଷିତୀଶର ମୁହଁରେ ବିନ୍ଦୁ ବିନ୍ଦୁ ଝାଳ ଜମିଗଲାଣି । ରୁମାଲ କାଢ଼ି କ୍ଷିତୀଶ ମୁହଁ ପୋଛିଲା ଓ ଅତ୍ୟନ୍ତ ଉତ୍କଣ୍ଠାର ସହ ସେହି ପ୍ରହେଳିକାପୂର୍ଣ୍ଣ "ଅନୁରୋଧ" ବା ନିର୍ଦ୍ଦେଶଟିକୁ ଅପେକ୍ଷା କରି ରହିଲା ।

ଘର ଭିତରର ଆବ୍‌ହାଓ୍ୱା ବିଶେଷ ସ୍ୱାସ୍ଥ୍ୟକର ନୁହଁ । ଦୁଇଖଣ୍ଡ ତାରରୁ ଓହଳି ରହିଥିବା ଗୋଟିଏ ଚାଳିଶ ପାଓ୍ୱାରର ବଲ୍‌ବ ଉପରେ ଅନେକ ଦିନର ମଇଳା ଜମିଯାଇ ଘରଟା ଗୋଟାଏ ବିବର୍ଣ୍ଣ ଆଲୋକରେ ସ୍ୱଚ୍ଛ ଆଲୋକିତ । ଘରର ଛାତ ଦେଖିଲେ ମନେହୁଏ ଅନେକ ଦିନର ପୁରୁଣା ଘର ଏବଂ କଡ଼ି ବରଗାର ଫାଙ୍କରେ ବୁଢ଼ୀଆଣୀ ଜାଲ ମଧ୍ୟ ବହୁଦିନୁ ଝଡ଼ା ଯାଇନାହିଁ । 'ଲାମା'ର ମୁହଁ ଯଥେଷ୍ଟ ସ୍ପଷ୍ଟଭାବରେ ଦେଖି ହେଉ ନାହିଁ ଏବଂ କ୍ଷିତୀଶ ଆସିବାର ପ୍ରାୟ ଅଧଘଣ୍ଟାଏ ସମୟ ଭିତରେ ସେଠି ବସି ରହିଥିବା ତା'ର ସମବୟସ୍କମାନେ ପଦେହେଲେ କଥା କହିନାହାନ୍ତି । ସ୍ପଷ୍ଟ ବୁଝିହୁଏ ସେମାନଙ୍କର ନୀରବତା ଅନ୍ୟମନସ୍କତା ବା ଉଦାସୀନତା ହେତୁ ନୁହଁ, ତାହା ଏକ କଠୋର ଶୃଙ୍ଖଳା ଦ୍ୱାରା ନିୟନ୍ତ୍ରିତ ।

ଲାମା ଆରମ୍ଭ କଲେ :

ଏମାନେ ହଉଛନ୍ତି ତମରିପରି ବିଭିନ୍ନ କଲେଜର ଛାତ୍ର—କିନ୍ତୁ ଏମାନେ ଦେଶପାଇଁ ସେମାନଙ୍କର ଜୀବନ ଉତ୍ସର୍ଗ କରି ଦେଇଛନ୍ତି—ଦେଖ—ଆମ ଦେଶ—ଏଇ ବିରାଟ ମହାନ୍ ଭାରତବର୍ଷ । ତମେ କ୍ଷିତୀଶ, କେବେ ଦେଶର ଚେହେରା ଦେଖିବାକୁ ଚେଷ୍ଟା କରିଛ ? ଲାମା ଆତ୍ମସନ୍ତୋଷର ହସ ହସିଲେ । ତମେ ଭାବୁଚ ତମେ ଦେଖିଚ ବୋଲି; କିନ୍ତୁ ଭୁଲ୍ । ତମେ ଦେଶର ଯେଉଁ ମାନଚିତ୍ର ଦେଖିଚ, ସେ'ଟା ଦେଶର ଦେହର ଛବି; କିନ୍ତୁ ତମକୁ ଦେଶର ମୁହଁ ଦେଖିବାକୁ ହବ । ଦେଶର ଆତ୍ମା....!

ଲାମାଙ୍କର କଣ୍ଠ ସ୍ୱର ଥିଲା ଅନୁଚ୍ଚ ଅଥଚ ସ୍ପଷ୍ଟ । ଠିକ୍ ସେହି ଅନୁପାତରେ ତାଙ୍କର ହସ ଉଚ୍ଛଳ; କିନ୍ତୁ ସଂଯତ ।

କେତେ ସମୟ ଅତିକ୍ରମ କରିଗଲାଣି କ୍ଷିତୀଶର ମନେ ନାହିଁ ।

ଲାମା ପୁଣି ଆରମ୍ଭ କଲେ :

ଆମର ଅପରେସନ୍ ପାଇଁ ତମର ମେସ୍ ଘରଟା ଖୁବ୍ ପ୍ରଶସ୍ତ ଆଉ ସୁବିଧା ମଧ—କାରଣ—କାରଣ...କ୍ଷଣକ ପାଇଁ ଲାମା ନୀରବ ହୋଇଯାଇ କ'ଣ ଭାବି ପୁଣି ଆରମ୍ଭ କଲେ :

କଥାଟା ଏବେ କହି ରଖେ—ଦିନେ ନା ଦିନେ ତମକୁ କହିବାକୁ ପଡ଼ିବ । ତମର ଦକ୍ଷିଣପଟ ଝର୍କାରେ କାଠରେଲିଂ ଲାଗିଚି, ଯାହାକୁ ଅନାୟାସରେ ବାହାର କରି ଦିଆଯାଇପାରେ, ଆଉ ତା'ପରେ କାହାର ଘର ତମେ କେବେ ଖବର ରଖିଛ ?

କ୍ଷିତୀଶ ଗୋଟିଏ ଅତ୍ୟାଚାରିତ ପଶୁପରି କେବଳ ମୁଣ୍ଡ ହଲେଇ ଜଣାଇଦେଲା ସେ ଜାଣେନା ।

ଲାମା କ'ଣ କହି ଆସୁଥିଲେ; କିନ୍ତୁ ପାଖ ଘରୁ ଗୋଟାଏ ବିରାଟ ବିସ୍ଫୋରଣରେ ତାଙ୍କର କଥା ଅନୁଚ୍ଚାରିତ ରହିଗଲା । କ୍ଷିତୀଶର ଅନୁଭୂତି ଭିତରେଏପରି ଏକ ପ୍ରଚଣ୍ଡ ଶବ୍ଦ ସେ ଏତେ ନିକଟରେ କେବେ ଶୁଣି ନଥିଲା । ସେଇ ଶବ୍ଦର ଧକ୍କାରେ ମନେହେଲାଯେପରି ସେଇ ଜରାଜୀର୍ଣ୍ଣ ଘରଟା ଟକୁରା ଟୁକୁରା ହେଇ ତଳେ ଖସି ପଡ଼ିବ ।

ଇଲେକ୍ଟ୍ରିକ୍ ସକ୍ ଲାଗିଲା ପରି କ୍ଷିତୀଶର ସମବୟସ୍କ ବନ୍ଧୁମାନେ ପଛ ଘର ଭିତରକୁ ଦଉଡ଼ିଗଲେ । ଶବ୍ଦର ପ୍ରତିଧ୍ୱନି ନୀରବ ହବା ପରେ ସେ ଘରୁ ଗୋଟାଏ ଗଁ ଗଁ ଶବ୍ଦ ଶୁଣାଯାଉଛି । ତା'ର ଅଳ୍ପ ସମୟ ପରେ ସେମାନେ ଟେକି ଟେକି ଯେଉଁ ମଣିଷଟିକୁ ପଦାକୁ ଆଣିଲେ ତା'ର ଦେହଟା ଅଛି ସତ୍ୟ, କିନ୍ତୁ ମୁହଁଟାକୁ ଚାହିଁବାର ଜୁ ନାହିଁ । ଲୋକଟାର ମୁହଁର ବାଁପଟ ଆଖିଠାରୁ ଓଠ ପର୍ଯ୍ୟନ୍ତ ସମସ୍ତଟା ଓଲାରି ହେଇ ଆସି ତା'ର କାନ୍ଧ ଉପରେ ଯେମିତି ଥୁଆ ହେଇଚି । ସେଇ ତରୁଣୀଟି ଆଖି ଉପରେ ହାତ ଢାଙ୍କି ଠିଆ ହେଇଛନ୍ତି; କିନ୍ତୁ ଲାମା ବସି ରହିଛନ୍ତି ନିର୍ଲିପ୍ତ ଭାବରେ । ଲୋକଟାକୁ ଥରେ ଦେଖିନେଇ ଲାମା କହିଲେ,

ବ୍ୟସ୍ତ ହବାର କାରଣ ନାହିଁ—ପାଞ୍ଚମିନିଟ୍ ଭିତରେ ପୁଲିସ୍ ଆସିଯିବ—ଆମ ସମସ୍ତଙ୍କୁ ଚାଲିଯିବାକୁ ହେବ । ଆଉ 'ଡୁମା' ପାଇଁ ବ୍ୟସ୍ତ ହବାର କାରଣ ନାହିଁ । ପୁଲିସ୍ ଆସିବା ମାତ୍ରେ ଆମ୍ବୁଲାନ୍ସ ଦେଇ ତାକୁ ଡାକ୍ତରଖାନା ନେଇଯିବ । ତାକୁ ଚିକିତ୍ସା କରି ଭଲ କଲେ ସିନା ତାକୁ ନେଇ ବୁର୍ଜୁଆ ବିଚାରାଳୟରେ ହାତକଡ଼ି ପିନ୍ଧେଇ ଠିଆ କରେଇବେ । ସମସ୍ତେ ନିର୍ବାକ୍ । କ୍ଷିତୀଶ ଭୟ ଓ ଉତ୍ତେଜନାରେ କମ୍ପିବାକୁ ଆରମ୍ଭ କରିଚି । ଲାମା ମୁହୂର୍ତ୍ତକ ପାଇଁ କ୍ଷିତୀଶ କାନ୍ଧ ଉପରେ ହାତ ରଖି କହିଲେ, "କିଛି ବ୍ୟସ୍ତ ହେବ ନାହିଁ—ଦେଶର ଚେହେରା ଦେଖିବାକୁ ହେଲେ ଅନେକ ଚେହେରା ନଷ୍ଟ କରିବାକୁ ପଡ଼ିବ ।"

ତା'ପରେ ଆକ୍ଷିପିଛୁଳାକେ କ୍ଷିତୀଶ ଓ ଅନ୍ୟମାନେ ଅନ୍ଧାର ଭିତରେ ମିଳେଇ ଯାଇଥିଲେ ।

କ୍ଷିତୀଶ ମେସ୍‌କୁ ଫେରିଆସି ସେଦିନ ବିଛଣାରେ ପଡ଼ି ରହିଥିଲା ଅନେକ ସମୟ ଧରି । ଆଖିରେ ନିଦ ଆସିଲା ବେଳକୁ କ୍ଷିତୀଶର ମନ ଆତ୍ମଗ୍ଲାନିରେ ଯଥେଷ୍ଟ କ୍ଷୁର୍ଣ୍ଣ ହେଇ ଆସିଥିଲା, ସେ ଦେଶର ଚେହେରା ଦେଖିନାହିଁ ବୋଲି । କ୍ଷିତୀଶ ସକାଳୁ କିନ୍ତୁ ଉଠିଥିଲା ଦେଶର ଚେହେରା ଦେଖିବାର ଦୁର୍ବାର ଶପଥ ନେଇ ।

କ୍ଷିତୀଶର ଜୀବନ ସେହିଦିନଠାରୁ ଗୋଟାଏ ନୂଆ ମୋଡ଼ ଭାଙ୍ଗି ଚାଲିଚି ।

କଲେଜରେ ଧର୍ମଘଟ ହେଉଛି ତା'ର ପ୍ରଥମ ଅଭିଯାନ । ଧର୍ମଘଟ ପାଇଁ ମଧ ଗୋଟିଏ ବେଶ୍ ଭଲ ରକମର କାରଣ ମହଜୁଦ୍ ଅଛି । ସେଇ ପ୍ରଥମ ଧର୍ମଘଟ ହୋଇଥିଲା 'ଟ୍ରାମ୍ ଭଡ଼ା' ବୃଦ୍ଧି ଫଳରେ । ଏ ଦେଶର ଲକ୍ଷ ଲକ୍ଷ ଲୋକ ଖାଇବାକୁ ପାଉନାହାନ୍ତି ଏବଂ ସେମାନଙ୍କ ଉପରେ ଆଉ ଗୋଟାଏ ପଇସାର ଜୁଲୁମ୍ ଗୋଟାଏ ପଥରର ବୋଝ ପରି । ଛାତ୍ର ରାଜନୀତି ଠାରୁ ଅଲଗା ରହିବା ସମ୍ଭବ ନୁହଁ । ସେ ମଧ ଦେଶର ନାଗରିକ । ଧର୍ମଘଟ ହେଇଛି ଏବଂ ପୁଲିସ ଆସି ଅନ୍ୟମାନଙ୍କ ସହିତ କ୍ଷିତୀଶଙ୍କୁ ଗିରଫ କରି ନେଇଛି । ପୁଲିସ ଷ୍ଟେସନରେ କ୍ଷିତୀଶକୁ ଓ ତା'ର ସାଥୀମାନଙ୍କୁ ମାଡ଼ ହେଇଛି ବୁଟ୍ ଜୋତାରେ ଏବଂ କ୍ଷିତୀଶ ଫେରି ଆସିଛି ପୁଲିସ୍ ଉପରେ ପ୍ରତିଶୋଧର ଶପଥ ନେଇ । ଧର୍ମଘଟ, ଧର୍ମଘଟ ଆଉ ଧର୍ମଘଟ ବାତ୍ୟାରେ କଲିକତା ସହର ଅସ୍ଥିର ହେଇ ଉଠିଛି । ଗୋଟାଏ ବର୍ଷଧରି କୌଣସି କଲେଜରେ ପରୀକ୍ଷା ହବା ସମ୍ଭବପର ହେଇ ପାରିନାହିଁ ।

ପ୍ରତିଟି ଧର୍ମଘଟରେ କ୍ଷିତୀଶ ପୁଲିସ ସହିତ ସାମ୍ନାସାମ୍ନି ମୁକାବିଲା କରିଚି । କେତେବେଳେ ହାରିଚି ନ ହେଲେ କେବେ ବା ଜିତିଚି । ସାମୟିକ ଭାବରେ ହାତଲେଖା, ଲିଥୋକରା ପ୍ରଚାରପତ୍ର ସବୁ କ୍ଷିତୀଶର ହସ୍ତଗତ ହୋଇଚି ଓ ତାକୁ ମନଯୋଗ ସହକାରେ ସେ ଅଧ୍ୟୟନ କରିଛି ଏବଂ କ୍ଷିତୀଶ ପ୍ରଥମ କରି ଚିତ୍ର ଆଙ୍କିବା ଶିଖିବାକୁ ଆରମ୍ଭ କରିଛି । ଗୋଟାଏ ନିର୍ଦ୍ଦିଷ୍ଟ ଚିତ୍ର । ତା'ର ଜନନାୟକର ଚିତ୍ର । କ୍ଷିତୀଶକୁ ସେଥିପାଇଁ ତାଲିମ ମଧ କରା ଯାଇଛି ଯଥାଯଥ ଭାବରେ । ବେଶୀ କିଛି ଦରକାର ନାହିଁ, ଖାଲି ଦୁଇ ତିନିଟା ଫିଚର୍ । ଗୋଟାଏ ଗୋଲ୍ ମୁହଁ । ସେଥିରେ ଛୋଟ ଛୋଟ ଦୁଇଟା ଆଖି ଓ ମୁଣ୍ଡ ଉପରେ ପଛକୁ ଆଉଁଡ଼ା ହୋଇଥିବା ବାଳର ଦୁଇ ଚାରିଟା ଲାଇନ ହେଇଗଲା । କ୍ଷିତୀଶ ନିଜେ ଆଶ୍ଚର୍ଯ୍ୟ ହେଇଚି କିପରି ସେ ମାତ୍ର ଦିନ କେଇଟାରେ ଜଣେ ନିଖୁଣ କାର୍ଟୁନିଷ୍ଟ ହେଇଯାଇ ପାରିଚି ।

ଯେ' ହେଲା କଲିକତାରେ କ୍ଷିତୀଶର ଦୀର୍ଘ ଦୁଇ ବର୍ଷର ଇତିହାସ ।

କିନ୍ତୁ ଏ ସମସ୍ତ ସତ୍ତ୍ୱେ ସହରର ଜୀବନ-ଯାତ୍ରା ପୂର୍ବପରି ଅବ୍ୟାହତ ରହିଚି । ହଠାତ୍ କୌଣସି ଜାଗାରେ ବିସ୍ଫୋରଣ ହବା ବା ପୁଲିସ ସହିତ ଜନତାର ଖଣ୍ଡଯୁଦ୍ଧ ହବା ସହରର ନିତ୍ୟ ନୈମିତ୍ତିକ କାର୍ଯ୍ୟସୂଚୀର ଅନ୍ତର୍ଗତ ହୋଇଗଲାଣି; କିନ୍ତୁ ତଥାପି ଜିନିଷପତ୍ରର ମୂଲ୍ୟ କମିନାହିଁ-ପୁଲିସ ଥାନା ନିଶ୍ଚିହ୍ନ ହୋଇନାହିଁ । ସରକାର ପଙ୍ଗୁ ହୋଇଯାଇ ନାହିଁ ।

ସବୁଦିନ ପରି ସେଦିନ ମଧ୍ୟ ଥିଲା ଅକ୍ଟୋବରର ଗୋଟିଏ ସୁନ୍ଦର ସକାଳ ଏବଂ କ୍ଷିତୀଶ କଲେଜ ଯାଇଥିଲା । କଲେଜ ତଳେ ଅନେକ ଛାତ୍ରଙ୍କର ଭିଡ଼ ଜମିଚି । ଗୋଟାଏ କିଛି ଘଟିଗଲା ବୋଲି କ୍ଷିତୀଶ ଭିଡ଼ ଠେଲି ପଶି ଯାହା ଦେଖିଲା ତାହା ସେ ବିଶ୍ୱାସ କରି ପାରିଲା ନାହିଁ । ସେଇ ଲୋକମାନଙ୍କର ଭିଡ଼ ଭିତରେ ଜଣେ କିଏ ପଡ଼ି ରହିଚି ରକ୍ତାକ୍ତ ଅବସ୍ଥାରେ । ଦେଖିଲେ ଜଣାଯାଏ ସେ ମୃତ, କାରଣ ତା'ର ଖପୁରିଟା ଛେଚି ହେଇଯାଇ ଭିତରର ଦହିଗୁଡ଼ାକ ବାହାରକୁ ଛିଟିକି ପଡ଼ିଛି । ସମସ୍ତେ ନୀରବ ହୋଇ ଠିଆ ହୋଇଛନ୍ତି । କାହା ମୁହଁରେ କଥା ନାହିଁ । ଦଳେ ପିଲା କହୁଛନ୍ତି କଲେଜର ତିନିତାଲା କୋଠା ଉପରୁ ଅସାବଧାନ ଅବସ୍ଥାରେ ହୁଏତ ପଡ଼ିଯାଇଛି, ଆଉଦଳେ କହୁଛନ୍ତି - ଏଟା ଦଲାଲମାନଙ୍କର ପ୍ରଚାର, ତାକୁ ବାଲକନି ଉପରୁ ଠେଲି ଦିଆଯାଇଚି । କିନ୍ତୁ ସେ ପିଲାଟି କିଏ ? ଚିହ୍ନିବା ମଧ୍ୟ ସମ୍ଭବ ନୁହଁ ।

ପୋଲିସ୍ ଆସିଚି ଓ ଶବକୁ ବ୍ୟବଚ୍ଛେଦ କରିବାକୁ ପଠାଯାଇଛି । ଧୀରେ ଧୀରେ ଛାତ୍ରମହଲରେ ପରସ୍ପର ଆଲୋଚନା ଭିତରେ ଛାତ୍ରଟିର ପରିଚୟ ମିଳିଛି ଓ ଏ କଥା ମଧ୍ୟ ପ୍ରକାଶ ପାଇଛି ଯେ ଗତ ଧର୍ମଘଟବେଳେ ଛାତ୍ରଟି ଧର୍ମଘଟ ବିରୋଧ କରି ପରୀକ୍ଷା ହଲ୍‌କୁ ଯାଇ ପରୀକ୍ଷା ଦେଇଥିଲା ଓ ସେ' କୁଆଡ଼େ ପୁଲିସର ଗୁପ୍ତଚର ।

କ୍ଷିତୀଶ କଲେଜରୁ ତା'ର ମେସ୍‌କୁ ଫେରି ଆସିଛି ।

ତା'ରି ଘର ଭିତରେ ତା'ର ସେଇ ସମବୟସ୍କ ବନ୍ଧୁମାନଙ୍କର ମନ୍ତ୍ରଣା ଚାଲିଚି । ସେମାନଙ୍କର ୪ର୍ଥ ଅଭିଯାନ ଆଜି ସଫଳ ହେଇଚି; କିନ୍ତୁ ସେ ସଫଳତାର ରୂପରେଖ କ୍ଷିତୀଶ ପାଇଁ ବୁଝିବାକୁ ତଥାପି ବାକି ରହିଯାଇଛି ।

ସେ'ଦିନ କ୍ଷିତୀଶ ଓ ତା'ର ବନ୍ଧୁମାନଙ୍କ ପାଇଁ ଆଉ ଏକ ନିର୍ଦ୍ଦେଶ ଅପେକ୍ଷା କରି ରହିଥିଲା । ସେମାନଙ୍କୁ କଲିକତା ନିକଟବର୍ତ୍ତୀ ଗୋଟିଏ ଗ୍ରାମାଞ୍ଚଳକୁ ଯିବାକୁ ପଡ଼ିବ । କାଳ ବିଳମ୍ବ ନ କରି ସେମାନେ ବାହାରି ପଡ଼ିଥିଲେ ପାଦରେ ଚାଲି ଚାଲି ।

ତା'ରି ନିଜ ଗାଁର ଛୋଟ ରେଳ ଷ୍ଟେସନରେ ଆରାମ ଚଉକିରେ ଶୋଇ ରହି କ୍ଷିତୀଶ ଦିବାସ୍ୱପ୍ନ ଦେଖୁଥିଲା । ଯେମିତି ତା'ର ଆଖି ଆଗରେ କଲିକତାରେ ଗତ ଦୁଇ ବର୍ଷର ଚଳଚ୍ଚିତ୍ର କିଏ ଖୋଲି ଧରିଚି ।

ସେ' ଗାଁର ନାଁ ମନେ ନାହିଁ କ୍ଷିତୀଶର ଆଜି । ତେବେ ଏତିକି ମନେ ଅଛି ସେ ଗାଁ ତା'ର ଏଇ ଛୋଟ ଗାଁ ପରି ଥିଲା ଯଥେଷ୍ଟ ଗ୍ରାମ୍ୟ, ସରଳ ଓ ଅନାବିଳ । ଗାଙ୍ଗେୟ ଉପତ୍ୟକାର ଉର୍ବର ଜମିର ସ୍ତନପୁଷ୍ଟ ସେଇ ଗାଁର ଜୀବନଯାତ୍ରା ତଥାପି ଥିଲା ନିରୁଦ୍‌ବିଘ୍ନ, ଅଳସ ମନ୍ଥର । କ୍ଷିତୀଶ ଓ ତା'ର ବନ୍ଧୁମାନେ ଗାଁରେ ପହଞ୍ଚିଲାବେଳକୁ ଗାଁ ଦାଣ୍ଡରେ ଧୂଳିରେ ସୂର୍ଯ୍ୟର ଅସ୍ତରାଗର ସ୍ପର୍ଶ ଏକ ଅନିର୍ବଚନୀୟ, ଅପୂର୍ବ ଶୋଭା ଧାରଣ କରିଥିଲା ।

କିନ୍ତୁ କ୍ଷିତୀଶ ସେଇ ଗାଁ ଛାଡ଼ିଲା ବେଳକୁ ରାତି ଅନେକ ହେଇ ଯାଇଥିଲା ଏବଂ ଖଳା ବାରିରେ ଜମା ହୋଇ ରହିଥିବା ସ୍ତୂପ ସ୍ତୂପ କଳେଇଗଦା ଉପରେ ଅଗ୍ନିର ଲାଲ୍ ଲକ୍ ଲକ୍ ଜିଭ ଏକ ପରମ ତୃପ୍ତିରେ ପହଁରି ଯାଉଥିଲା । କ୍ଷିତୀଶର ଚିନ୍ତା କରିବାର ଶକ୍ତି ସମ୍ପୂର୍ଣ୍ଣ ଲୋପ ପାଇ ଯାଇଥିଲା । କ୍ଷିତୀଶ କେବଳ ଚାହିଁ ରହିଥିଲା ଏକ ଭାବଲେଶଶୂନ୍ୟ ଆଖିରେ ଯେମିତି ଶିକାରୀର ଫ୍ଲଡ୍‌ଲାଇଟ୍‌କୁ ଚାହିଁ ରହେ ଗୋଟାଏ ଅନଭ୍ୟସ୍ତ ବନ୍ୟଜନ୍ତୁ ।

କ୍ଷିତୀଶ କିନ୍ତୁ ପ୍ରଥମ ଧର ପାଇଁ ପ୍ରଶ୍ନ କରିଥିଲା । ସେଇ ଥିଲା ତା'ର ଏକମାତ୍ର ଓ ଚରମ ଅପରାଧ ।

ତା'କୁ ବୁଝେଇ ଦିଆଯାଇଥିଲା ଅତି ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଭାବରେ ।

ବହୁ ପ୍ରଶ୍ନ କରିବା ଗୋଟାଏ ଶିଶୁସୁଲଭ ଅଭ୍ୟାସ । ପରିଣତ ବୟସରେ ପ୍ରଶ୍ନ କରାଯାଏ ନାହିଁ । ଆମର ଜନନାୟକ ଆମ ପାଇଁ ପଥ ପ୍ରସ୍ତୁତ କରି ରଖିଛନ୍ତି, ତାକୁ ଆଉ ଥରେ କଷ୍ଟକରି ପରୀକ୍ଷା କରିବା ଅର୍ଥ ପ୍ରତି-ବିପ୍ଳବ । ଅନେକ ଜିନିଷ ଗ୍ରହଣ କରିନବାକୁ ପଡ଼େ, ଯେମିତି ଆଜିକାର ବିଜ୍ଞାନ ଛାତ୍ରକୁ ନିଉଟନଙ୍କ ପରି ଆତଗଛ ମୂଳେ ବସି ରହିବାକୁ ପଡ଼େନାହିଁ - ମାଧ୍ୟାକର୍ଷଣ ଶକ୍ତିର ଦଉକୁ ତା'କୁ ଗ୍ରହଣ କରିନବାକୁ ହିଁ ହୁଏ ।

କ୍ଷିତୀଶର ଉତ୍ସାହ ଅନେକ କମି ଆସିଚି; କିନ୍ତୁ ତା'ର କୋଠରୀ ଭିତରେ ତା'ର ବନ୍ଧୁମାନଙ୍କର ଆଡ୍‌ଡା କମିବାର ସୂଚନାଇ ମିଳେନା । କ୍ଷିତୀଶ ଆଶ୍ଚର୍ଯ୍ୟ ହୋଇ ଭାବୁଛି ଏମାନଙ୍କ ପାଖରେ ଏତେ ଅର୍ଥ ଆସେ କେଉଁଠାରୁ ? ଏମାନେ କେଉଁଠାରୁ ପାଆନ୍ତି ବନ୍ଧୁକ ଓ ଗୁଳିଗୁଳା ? କିନ୍ତୁ ସେ ତେ ପ୍ରଶ୍ନ କରିପାରିବ ନାହିଁ ।

ଆଉ ଦିନକର ଘଟଣା । ସମୀର ତା'ର ଘର ଭିତରକୁ ପଶି ଆସିଲା, ସାଙ୍ଗରେ ଗୋଟିଏ ନଅଦଶବର୍ଷର ପିଲାକୁ ଧରି । ପିଲାଟି ଦେଖିବାକୁ ଖୁବ୍ ସୁନ୍ଦର; କିନ୍ତୁ କିଛି ଗୋଟାଏ ଅନାଗତ ଆଶଙ୍କାରେ ପିଲାଟିର ଆଖି ଦୁଇଟି ହେଇ ଉଠିଥିଲା ଭୟାତୁର । ସମୀର ପିଲାଟିକୁ ଖଟ ଉପରେ ବସିବାକୁ ଆଦେଶ କଲା । ପିଲାଟି ଯନ୍ତ୍ରଚାଳିତ ପରି

ବସି ରହି ଏକ ଭୟାର୍ତ୍ତ କଣ୍ଠରେ ପଚାରିଲା, ''ମତେ ଏଠିକି ଆଣିଲ କାହିଁକି ? ମୁଁ ଘରକୁ କେତେବେଳେ ଫେରିବି ?'' ସମୀର ହସିଲା ସାମାନ୍ୟ, କିଛି ଜବାବ ଦେଲା ନାହିଁ । ସେ ସେତେବେଳେ ଗୋଟାଏ ଚିଠି ଲେଖିବାରେ ବ୍ୟସ୍ତ ଥିଲା । ଚିଠିଟା ଲେଖି ସାରି ସମୀର ଚିଠିଟାକୁ କ୍ଷିତୀଶକୁ ବଢ଼ାଇ ଦେଇ କହିଲା, ''ପଢ଼ କ୍ଷିତୀଶ, ତମେ ସବୁ ବୁଝି ପାରିବ ।''

ଚିଠିଟିରେ ଲେଖାଥିଲା–

ମାନନୀୟେଷୁ !

ଆପଣଙ୍କର ପୁଅକୁ ଖୋଜି ବ୍ୟସ୍ତ ହେବେ ନାହିଁ । ସେ ଆମମାନଙ୍କ ପାଖରେ ବେଶ୍ ନିରାପଦରେ ଅଛି । ଏହା ପୂର୍ବରୁ ଅନେକ ପୁଅ ହଜି ଯାଇଛନ୍ତି, ସେମାନଙ୍କର ବାପ ମା'ମାନେ ଫେରି ପାଇ ପାରି ନାହାନ୍ତି । କିନ୍ତୁ ଆପଣଙ୍କର ପ୍ରଚୁର ଟଙ୍କା ଅଛି, ତେଣୁ ଆପଣ କାଲି ସନ୍ଧ୍ୟା ଛ'ଟାରେ ନିର୍ଦ୍ଦିଷ୍ଟ ସ୍ଥାନରେ ପଚାଶ ହଜାର ଟଙ୍କା ଜମା କଲେ ଆପଣଙ୍କର ପୁଅକୁ ଅକ୍ଷତ ଅବସ୍ଥାରେ ଫେରି ପାଇବେ । ମନେ ରଖନ୍ତୁ, ଟଙ୍କାଟା ଯେପରି ଜାଲ୍ ହୋଇ ନ ଥାଏ; କାରଣ ଆମେ ଜାଣୁ ଆପଣ କିଛି ଜାଲ୍ ନୋଟ କାରବାର କରନ୍ତି । ଆଉ ଗୋଟାଏ ମଧ୍ୟ ସୁବିଧା ଅଛି । ଯେଉଁ କଳା ଟଙ୍କାକୁ ଆପଣ ଇନ୍‌କମ ଟ୍ୟାକ୍‌ସ ଆକ୍ଷିକୁ ଫାଙ୍କି ଦେଇ ଧରି ବୁଲୁଛନ୍ତି ତା'ର ମଧ୍ୟ ଗୋଟାଏ କିନାରା ହେଇଗଲା ।

ନିର୍ଦ୍ଦିଷ୍ଟ ସ୍ଥାନଟି ହେଲା ... ଇତ୍ୟାଦି ଇତ୍ୟାଦି ...

ଚିଠିଟି ଲେଖା ସରିବା ପରେ ତା' ଉପରେ ଗୋଟିଏ ଲାଲ ଚତୁଷ୍କୋଣର ରବରଷ୍ଟାମ୍ପର ଛାପ ଦିଆଗଲା ।

କିନ୍ତୁ କ୍ଷିତୀଶର ଏଥିରେ କ'ଣ କରିବାର ଅଛି ? ସେ ଚିଠିଟି ପଢ଼ି ସାରିବା ପରେ ସମୀର ତା' ହାତରୁ ଚିଠିଟି ନେଇ ଯାଇ କହିଲା, ''ମୁଁ ଚାଲିଲି, ଆଉ ଏଇ ପିଲାଟିର ଭାର ତମ ଉପରେ । ଯଦି ଅବଶ୍ୟ ତା'ର ବାପା ଟଙ୍କାତକ ସୁବିଧାରେ ଦେଇ ଦିଅନ୍ତି ତାହାହେଲେ ସେ ଖୁବ୍ ଶୀଘ୍ର ଚାଲିଯିବ - କିନ୍ତୁ ଯଦି ଡେରି କରନ୍ତି ବା ପୁଲିସ୍‌ରେ ଖବର ଦେବାକୁ ଚେଷ୍ଟା କରନ୍ତି ତାହାହେଲେ ଅବଶ୍ୟ ଭିନ୍ନ କଥା ।''

ତା'ପରେ ସମୀର କ୍ଷିତୀଶର କାନ ପାଖକୁ ମୁହଁ ଲଗେଇ ଆଣି ଫିସ୍ ଫିସ୍ କରି କହିଲା :

''ଦେଖ୍, ଏମିତି କେସ୍ ତୁ ଆଗରୁ କେବେ ହାଣ୍ଡଲ୍ କରିନାହୁଁ, ସାବଧାନ - ବେଳେ ବେଳେ ଏମାନେ ଖୁବ୍ ନିର୍ବୋଧର ଅଭିନୟ କରନ୍ତି କିନ୍ତୁ ଟିକିଏ ସୁଯୋଗ

ପାଇଲେ ପଳେଇଯାନ୍ତି - ଖୁବ୍ ସତର୍କ ରହିବାକୁ ପଡ଼ିବ - ଆଉ ମନେରଖ ଯଦି ପାଟି କରିବାକୁ ଚେଷ୍ଟାକରେ ତାହା ହେଲେ ଗୋଟାଏ ଲୁଙ୍ଗି ବା' କିଛି ଗୋଟାଏ ଦେଇ ତା'ର ପାଟିଟାକୁ ବାନ୍ଧିଦବୁ ଓ ତା'ର ହାତ ଗୋଡ଼ ବାନ୍ଧି ପକେଇ ଦବୁ ଏଇ ଦଉଡ଼ିଆ ଖଟିଆଟା ଉପରେ । ମୁଁ ଗଲି । ଆଶା କରେ ଖୁବ୍ ଶୀଘ୍ର ଫେରି ଆସି ପାରିବି ।''

ସମୀର ଝଡ଼ ପରି ଘରୁ ବାହାରିଗଲା । ସମୀର ଚାଲିଯିବା ପରେ ଘର ଭିତରେ କ୍ଷିତୀଶ ଓ ସେଇ କିଶୋରଟି । ସେତେବେଳକୁ ସନ୍ଧ୍ୟା ସାତଟା ବାଜିବ ଏବଂ ହାଜରା ପାର୍କ କରର ଟ୍ରାଫିକ୍ ତଥାପି ନୀରବ ହୋଇନାହିଁ । ବାହାରକୁ ପ୍ରକାଶ ନ କଲେ ମଧ୍ୟ କ୍ଷିତୀଶ ଯଥେଷ୍ଟ ଅସ୍ୱସ୍ତିକର ଅନୁଭବ କରିବାକୁ ଆରମ୍ଭ କରିଚି । ଶେଷକୁ ଏପରି ଗୋଟାଏ ପରିସ୍ଥିତିର ମୁକାବିଲା ତାକୁ କରିବାକୁ ପଡ଼ିବ ଏକଥା ସେ' ଘୁଣାକ୍ଷରେ ସୁଦ୍ଧା କଳ୍ପନା କରିପାରି ନ ଥିଲା । ତା'ର ହଠାତ୍ ମନେ ପଡ଼ିଗଲା ରାତିର ଖାଦ୍ୟ କଥା - ନିଜର ନୁହଁ - ସେଇ କିଶୋରଟିର । କିଏ ଜାଣେ କେତେବେଳେ ସେ' ଖାଇଥିଲା ? କିନ୍ତୁ କ୍ଷିତୀଶ ବାହାରକୁ ଯିବ କିପରି ? ପାଖରେ ଏପରି କେହି ନାହିଁ, ଯାହାକୁ ଦେଇ କିଛି ଖାଦ୍ୟ ମଗେଇ ଆଣି ହବ ।

କ୍ଷିତୀଶ କେତେବେଳେକେ ପିଲାଟିକୁ ପଚାରିଲା, ''ତମକୁ ଭୋକ ହେଲାଣି ?'' କିଶୋରଟି ତା'ର ଦୁଇ ଆଣ୍ଠୁ ଉପରୁ ମୁଣ୍ଡ ଉଠେଇ କହିଲା,''ହଁ-ଭାରି ଭୋକ'' । କ୍ଷିତୀଶ ତା'ପରେ ତାଲାଟାକୁ ଧରି ବାହାରକୁ ଯାଉ ଯାଉ କହିଲା, ''ମୁଁ ବର୍ତ୍ତମାନ ଫେରିଆସୁଚି ଦୁଇ ମିନିଟ୍ ଭିତରେ-କିନ୍ତୁ ତମକୁ ବାହାରୁ ତାଲା ଦେଇ ଯିବି-ଆଉ ଦେଖ, ଯଦି ଏଇ ସମୟ ଭିତରେ ତମେ ପାଟି କର, ତାହା ହେଲେ ଅବସ୍ଥା ଅତ୍ୟନ୍ତ ସାଙ୍ଘାତିକ ହବ-ଖବର୍ଦାର !''

ବାହାରୁ ତାଲା ପକେଇ ନେଇ କ୍ଷିତୀଶ ପାଖ ଦୋକାନରୁ କିଛି ଲୁଚି ଆଉ ଆଳୁଦମ ଧରି ଫେରି ଆସିଲା ଦୁଇମିନିଟ୍ ଭିତରେ ଆଉ ପତର ସହିତ ସେତକ ପିଲାଟି ପାଖରେ ଥୋଇ ଦେଇ କହିଲା-

''ନିଅ ଖାଇନିଅ - ପାଖରେ ଆଉ କିଛି ମିଳିଲା ନାହିଁ ।'' ପିଲାଟି ଥରେ ମୁହଁ ଉଠେଇ କ୍ଷିତୀଶକୁ ଚାହିଁଲା ଆଉ କହିଲା, ''ତମେ ଖାଇବ ନାହିଁ ?''

ନା, ତମେ ଖାଇନିଅ, ମୁଁ ବାହାରକୁ ଯାଇ ଖାଇନେବି ।''

''କିନ୍ତୁ ମତେ ଏଠି ଏକୁଟିଆ ଛାଡ଼ି ତମେ ତ ବାହାରକୁ ଯାଇପାରିବ ନାହିଁ !''

ସତେ ତ ! କ୍ଷିତୀଶର ଏ କଥା ଆଦୌ ଖିଆଲ ନ ଥିଲା ।

କ୍ଷିତୀଶ ପଚାରିଲା, ''ତମ ନାଁ କ'ଣ ?''

ମୋ’ ନାଁ - ମୋ ନାଁ ରମାବଲ୍ଲଭ - ଘରେ ଡାକନ୍ତି ଖୋକା - ଆଉ ଦାଦୁ ଡାକେ...

‘‘କହ ଦାଦୁ କ’ଣ ବୋଲି ଡାକେ’’ କ୍ଷିତୀଶ ପଚାରିଲା ।

ଦାଦୁ ଡାକନ୍ତି, ‘‘ଶାଖା ମୃଗ’’, ଫିକ୍ କିନା ହସିଦେଲା ଖୋକା ।

ଶାଖାମୃଗ ? ସେ ପୁଣି କ’ଣ ?

ଆପଣ ଶାଖାମୃଗର ମାନେ ଜାଣନ୍ତି ନାହିଁ ! ମାଙ୍କଡ଼-ବାନ୍ଦର । ସିଏ ଗଛ ଶାଖାରେ ଚାଲେନା । ଓଃ ! ହାଃ ହାଃ ହାଃ - କ୍ଷିତୀଶ ତା’ର ଅଜାଣତରେ ବଡ଼ପାଟିରେ ହସି ଉଠିଲା ।

ଆଚ୍ଛା ଖୋକା, ତମେ ବର୍ତ୍ତମାନ ଖାଇନିଅ ।

ନା ।

ଏଇନା ପରା କହୁଥିଲ ତମକୁ ଭୋକ ହଉଚି - ଭୋକ ।

: ହଁ, ତ ମତେ ଭୋକ ହଉଚି - କିନ୍ତୁ ତମେ ନ ଖାଇଲେ ମୁଁ ଖାଇବି କେମିତି । ଡାଡ଼ି କହନ୍ତି ଏକୁଟିଆ ଖାଇବା ଉଚିତ୍ ନୁହଁ - ତମେ ଖାଇଲେ ମୁଁ ଖାଇବି ।

କ୍ଷିତୀଶ ଆଉ ତର୍କ ନ କରି ଖଣ୍ଡେ ଲୁଚିରେ ଆଳୁଦମ୍ ଦେଇ ପାଟିକୁ ନେଲା ଓ ତା’ର ପରେ ପରେ ଖୋକା ଖାଇବାକୁ ଆରମ୍ଭ କଲା, ଯେମିତି ସେ’ ଖାଇବାକୁ ପାଇନାହିଁ ଅନେକଦିନ୍ ଧରି ।

ରାତି ପ୍ରାୟ ଦଶଟା ବାଜିବ । କ୍ଷିତୀଶକୁ ମଧ ଖୁବ୍ କ୍ଳାନ୍ତ ମନେ ହଉଚି । ଆଜିର ଏ କାଳ ରାତ୍ରିଟା କଟିଗଲେ ଯାଏ । କ୍ଷିତୀଶ ଘରେ ଖଣ୍ଡେ ମାତ୍ର ଦଉଡ଼ିଆ ଖଟ । କେମିତି ବିଛଣା କରାଯିବ ଏଇ କଥା ଭାବି କ୍ଷିତୀଶ ସାମାନ୍ୟ ଇତଃସ୍ତତ ହେଲାବେଳେ ଖୋକା କହିଲା-

‘‘ଏଇ ତଳେ କିଛି ଗୋଟାଏ ପକେଇଦେଲେ ମୁଁ ଶୋଇଯିବି । ଆମ ଘରକୁ ବେଶୀ ଲୋକବାକ ଆସିଲେ ଆମେ ଅନେକ ସମୟରେ ତଳେ ଶୋଇପଡୁ । ଆପଣ ଖଟ ଉପରେ ଶୁଅନ୍ତୁ ।

କ୍ଷିତୀଶ କହିଲା, ‘‘ଉହୁଁ ଖୋକା - ତମେ ବୟସରେ ଛୋଟ, ତମର ଉପରେ ଶୋଇବା ଉଚିତ୍, ନ ହେଲେ ତମକୁ ହୁଏତ ଥଣ୍ଡା ଧରିପାରେ - ମୁଁ ତଳେ ଶୋଇଗଲେ ଚଳିବ ।’’

ଖୋକା ଆଶ୍ଚର୍ଯ୍ୟ ହୋଇ କ୍ଷିତୀଶକୁ ଚାହିଁ କହିଲା - ‘‘ଇସ ବଡ଼ ଲୋକମାନେ ପାଖରେ ଥିଲେ କ’ଣ ପିଲାମାନେ ଉପରେ ଶୁଅନ୍ତି ?’’

କ୍ଷିତୀଶ ଅନ୍ତରେ ସମାଧାନ କରିଦେଲା, ଠିକ୍ ଅଛି ଖୋକା, ଆମେ ଦୁଇଜଣଯାକ ତଳେ ଶୋଇ ପଡ଼ିବା, ତାହାହେଲେ ଆଉ ଯୁକ୍ତିତର୍କ କରିବାର କାରଣ ନାହିଁ ।''

ଖୋକା ତଥାପି ଆଶ୍ଚର୍ଯ୍ୟ ଆଖିରେ ଚାହିଁ ରହିଲା ।

''ଦୁଇଜଣଯାକ ତଳେ ଶୋଇବା - ଅଥଚ ଗୋଟାଏ ଖଟ ଖାଲି ପଡ଼ି ରହିବ - ଓଃ, ବୁଝିଲି - ତମେ ପରା ମତେ ଜଗି ରହିଛ, ସେଥିପାଇଁ ମୋ ପାଖରେ ଶୋଇବାକୁ କହୁଚ ।''

କ୍ଷିତୀଶର କିଛି ଜବାବ ଦବାର ନ ଥିଲା ।

ବିଛଣା ପାରି ସାରି ଦୁହେଁ ଲଗାଲଗି ହେଇ ଶୋଇପଡ଼ିଲେ ତଳେ ।

''ମୁଁ ତମକୁ କ'ଣ ବୋଲି ଡାକିବି ?''

''ଉଁ-ହୁଁ - କ୍ଷିତୀଶ ଡାକିଲେ ଚଳିବ ।''

''ବଡ଼ ଲୋକମାନଙ୍କର ନାଁ ଧରି କ'ଣ ଡକାଯାଏ ?''

''ତାହାହେଲେ ଦାଦା ବୋଲି ଡାକିଲେ ଚଳିବ !''

''ଆଚ୍ଛା ଦାଦା - ଗୋଟିଏ କଥା ପଚାରିବି ?''

''ହୁଁ, ପଚାର ।''

''ମୋର ଡାଡ଼ି ବୋଧହୁଏ ତମକୁ କହିଛନ୍ତି ମତେ ଆଣି ଏଠି ରଖିବାକୁ ନା ? ଏଇଟା କ'ଣ ହଷ୍ଟେଲ ? କିଛି ଦୁଷ୍ଟାମି କଲେ ଡାଡ଼ି ସବୁବେଳେ କହନ୍ତି ହଷ୍ଟେଲକୁ ପଠେଇ ଦବାକୁ ।''

କ୍ଷିତୀଶର ତଣ୍ଟି ପାଖରେ ଗୋଟାଏ କ'ଣ ଅଟକି ଗଲା । ସେ ବାଷ୍ପରୁଦ୍ଧ କଣ୍ଠରେ ଖାଲି କହିଲା, ''ଖୋକା ଶୋଇପଡ଼ ରାତି ଅନେକ ହେଲାଣି ।''

''ମତେ ନିଦ ମାଡୁ ନାହିଁ ।''

''କାହିଁକି - କ'ଣ କିଛି ଭାବୁଛୁ ?''

''ନା - ମୋର ଦାଦୁ ଶୋଇଲାବେଳେ ମତେ ଗପ କହି ଶୁଆଇ ପକାଏ - ଆଚ୍ଛା ତମେ ଗପ ଜାଣ ?''

''ନା ।''

''କିନ୍ତୁ ସବୁ ବଡ଼ ଲୋକମାନେ ତ ଗପ ଜାଣନ୍ତି - ତମେ ଜାଣ ନାହିଁ କାହିଁକି ? ତମର କ'ଣ ଦାଦୁ ନଥିଲା ?''

"ଖୋକା ଶୋଇପଡ଼ ।"

"ଦାଦା—ମତେ ତମେ ମିଛ କହୁଛ—ମତେ ଗୋଟାଏ ଗପ କୁହ ।"

"ନା, ମୁଁ ଜାଣେନା—ସତରେ ଜାଣେନା—ତୁ' ଏତେ ଗପ ଶୁଣିଛୁ ମତେ ଗୋଟାଏ ଗପ କହନା ।"

"ତମେ ଗପ ଶୁଣିବ—ହାଃ ହାଃ... ବଡ଼ ଲୋକମାନେ କ'ଣ ଗପ ଶୁଣନ୍ତି ?"

"ହଁ—କାହିଁକି ନୁହଁ—ମୁଁ ଶୁଣିବି ।"

"ଘରେ ଯେତେବେଳେ ମୁଁ ଗପ କହିବାକୁ ଆରମ୍ଭ କରେ ଡାଡ଼ି, ମାମ୍ମି ସମସ୍ତେ କହନ୍ତି—ଖୋକା ବକ୍ ବକ୍ କର୍‌ନା, ଶୋଇପଡ଼—ତମେ ଯଦି ଶୁଣିବ ମୁଁ କହିବି ।"

"ହଁ, ଶୁଣିବି କହ ।"

ଖୋକା ବିଛଣା ଉପରେ ହଠାତ୍ ଉଠି ବସିଲା ଏବଂ ପ୍ରଥମରୁ ସର୍ତ୍ତ କରିନେଲା ଯେପରି ତା'ର ଗପ ସରିବା ପୂର୍ବରୁ କ୍ଷିତୀଶ ଶୋଇ ନ ପଡ଼େ ଏବଂ କ୍ଷିତୀଶ ସେଥିରେ ବିନା ସର୍ତ୍ତରେ ରାଜି ହେଲା ।

ତା'ପରେ ଆରମ୍ଭ ହେଲା ଖୋକାର ଗପ କହିବା ।

ମୋ'ରି ପରି ଅନେକ ଦିନ ତଳେ ଗୋଟିଏ ଖୋକା ଥିଲା । ତା'ର ଗୋଟିଏ ଝିଅ ଖେଳସାଥି ଥିଲା । କ୍ଷିତୀଶ ଟିକିଏ ମଜା କରିବାକୁ ପଚାରିଲା :

"ଝିଅ ସାଥି ଥିଲା କାହିଁକି ? ପୁଅ ସାଥି ଥିଲେ କ'ଣ ଅସୁବିଧା ହୋଇଥାନ୍ତା ।"

ଖୋକା ସାମାନ୍ୟ ବିରକ୍ତ ହେଲା—ଆଃ, ଶୁଣନା କଥାଟା—ଗପରେ ଯାହା ଅଛି ନାଁ—ମୁଁ କ'ଣ ଇଚ୍ଛା କଲେ ତାକୁ ବଦଳେଇ ଦେଇ ପାରିବି ?"

ହଁ, ତା'ର ଜଣେ ଝିଅ ସାଥି ଥିଲା । ସେମାନେ ପରସ୍ପରକୁ ଖୁବ୍ ଭଲ ପାଉଥିଲେ । ଦିନେ ପୁଅଟି ଝିଅକୁ କହିଲା ମୁଁ ତତେ ବାହା ହେବି ।

କ୍ଷିତୀଶ ପଚାରେ, "ବାହାହବା କ'ଣ ?"

ଖୋକା କହେ, "ବାହାହବା ମାନେ—ଏଇ—ଯେମିତି ମୋ'ର ବାପା ଆଉ ମାଆ ବାହା ହେଇଛନ୍ତି—ତମେ ଗପଟା ଶୁଣନା"—

"ଆଚ୍ଛା, ଆଚ୍ଛା, କହ ।"

"କିନ୍ତୁ ପୁଅର କଥାରେ ଝିଅ ରାଜି ହେଲା ନାହିଁ । ଝିଅ କହିଲା ମୁଁ ବାହାହେଲେ ରାଣୀ ପରି ରହିବି; କିନ୍ତୁ ତୋ'ର ମା'ଟା ବଡ଼ ବଦ୍‌ରାଗୀ— ସେ ବଞ୍ଚିଥିଲା ପର୍ଯ୍ୟନ୍ତ ମୁଁ ବାହାହେବି ନାହିଁ । ତା'ପରେ ପୁଅଟିର ଅନେକ ମନ କଷ୍ଟ ହେଲା ଆଉ ସେ'

ଅନେକ କାନ୍ଦିଲା । ଝିଅଟି ତା'ପରେ ପୁଅଟିକୁ ଅନେକ ବୁଝାଇଲା ଆଉ ତା'ପାଇଁ ଫୁଲ ଆଣିଦେଲା । ଶେଷରେ ସେମାନଙ୍କର କଥା ହେଲା ପୁଅଟିର ମା' ମରିଗଲେ ସେମାନେ ପରସ୍ପରକୁ ବାହା ହେବେ; କିନ୍ତୁ ପୁଅଟିର ମା' ମରିବାକୁ ଅନେକ ଡେରି ହେଲା ଆଉ ଝିଅର ବାପ ମା'ମାନେ ତାକୁ ଅନ୍ୟ ଜାଗାରେ ବିବାହ ଦବାକୁ ଠିକଣା କଲେ ।

''ଦାଦା ଶୁଣୁଚ ନା ଶୋଇ ପଡ଼ିଲ ?''

''ଶୁଣୁଚି କହ ।''

ତା'ପରେ ସେ ପୁଅଟି କ'ଣ କଲା ନା, ଦିନେ ରାତିରେ ଗୋଟାଏ ଛୁରୀ ଧରି ତା'ର ମା'କୁ ମାରିଦେଲା; କିନ୍ତୁ ମା'କୁ ମାରିଲା ସିନା, ଏ କଥା ସେ ଝିଅ ବିଶ୍ୱାସ କରିବ କେମିତି ? ସେଥିପାଇଁ ମା'ର କଲିଜାଟାକୁ କାଟି ନେଇ ପୁଅ ଦୌଡ଼ିଲା ସେଇ ଝିଅ ପାଖକୁ ।

ଝିଅ ଘରକୁ ଯିବା ବାଟରେ ଗୋଟାଏ ବିରାଟ ଜଙ୍ଗଲ ପଡ଼େ । ଜଙ୍ଗଲ ଭିତରଟା ଏକେବାରେ ଅନ୍ଧାର । ମୁହଁକୁ ମୁହଁ ଦିଶେ ନାହିଁ । ଜଙ୍ଗଲଟାରେ ବି ଅନେକ ଗଛ । ପୁଅଟି ଅଣନିଃଶ୍ୱାସୀ ହେଇ ଦୌଡୁଚି ।

''ଦୌଡୁଚି କାହିଁକି ? କ୍ଷିତୀଶ ପଚାରେ ।

''ଆରେ ତମେ ବୋଧହୁଏ ମଝିରେ ଶୋଇ ପଡ଼ିଥିଲ । ସେଣେ ପରା ଝିଅର ବାହାଘର ବନ୍ଦୋବସ୍ତ ସରିଛି—କାଳେ ବାହାଘର ସରି ଯାଇଥିବ ସେଥିପାଇଁ ଦୌଡୁଚି ।''

''ଆଉ ଥରେ ବାହା ହବ ।'' କ୍ଷିତୀଶ ରସିକତା କରେ ।

''ସେ କଥା ମୁଁ କହି ପାରିବି ନାହିଁ—ମୋର ବାପା, ଦାଦୁ ସମସ୍ତେ ତ ଥରେ ବାହା ହେଇଛନ୍ତି ।''

''ଆଚ୍ଛା କହ ତା'ପରେ କଣ ହେଲା ।''

''ତା' ପରେ ? ତା'ପରେ ସେ ପୁଅଟା ଦୁଇ ହାତରେ ମା'ର କଲିଜାଟା ଧରି ଦୌଡୁ ଦୌଡୁ ଗୋଟାଏ ବରଗଛ ଶିଅରେ ଝୁଣ୍ଟିପଡ଼ି ତଳେ ପଡିଗଲା ଆଉ ମା'ର କଲିଜାଟା ମଧ୍ୟ ତା' ହାତରୁ ତଳେ ଖସି ପଡ଼ିଲା । ଆଚ୍ଛା ଦାଦା, କଲିଜାରେ କ'ଣ ଜୀବନ ଥାଏ ?''

''ହଁ, ବେଳେ ବେଳେ ଥାଏ''—କ୍ଷିତୀଶ କୁହେ ।

''ବାସ୍ ! ସେ କଳିଜାରେ ବି ଜୀବନ ଥିଲା । ହଠାତ୍ ତା'ର ମା'ର କଳିଜା କହିଲା, 'ଖୋକା ! ତୁ ତ ଯେ ପଡ଼ିଗଲୁ ତୋର ଗୋଡ଼ କ'ଣ ଖଣ୍ଡିଆ ହୋଇଗଲା' ?'' କ୍ଷିତୀଶ ନୀରବ । ଦାଦା, ତମେ କ'ଣ ଶୋଇ ପଡ଼ିଲ ?

''ନାରେ ନା, ମୁଁ ଶୁଣୁଚି—କଳିଜା କହିଲା—ଖୋକା ତୋ'ର ଗୋଡ଼ କ'ଣ ଖଣ୍ଡିଆ ହୋଇଗଲା''—କ୍ଷିତୀଶର କଣ୍ଠ ବାଷ୍ପରୁଦ୍ଧ ।

''ବାସ୍ ସେତିକି । ତା'ପରେ ପୁଅଟି ମା'ର କଳିଜାକୁ ଧରି ଅନେକ କାନ୍ଦିଲା—ତା'ପରେ ଦାଦୁ କହନ୍ତି, ସେ' କୁଆଡ଼େ କଳିଜାକୁ ଧରି ଫେରି ଆସିଲା ତା' ମା' ପାଖକୁ; କିନ୍ତୁ ସେତେବେଳକୁ ତା'ର ମା' ମରି ଯାଇଚି ।''

କ୍ଷିତୀଶ ଆଉ କିଛି ଜବାବ୍ ଦେଇ ନାହିଁ ।

ଖୋକା ଦୁଇଟା ହାଇମାରି ପୁଣି ଥରେ ଜାକିଜୁକି ହୋଇ କମ୍ବଳ ତଳେ ଶୋଇ ପଡ଼ିଲା ।

ଅନେକ ରାତି ହେଲାଣି । ଥାନାର ଘଣ୍ଟାରେ ଠନ୍ ଠନ୍ ହେଇ ଦୁଇଟା ବାଜିଲା; କିନ୍ତୁ କ୍ଷିତୀଶର ଆଖିରେ ନିଦ ନାହିଁ । କ୍ଷିତୀଶ ବିଛଣା ଛାଡ଼ି ଉଠି ଠିଆହେଲା ଆଉ ସେଇ ସଂକୀର୍ଣ୍ଣ କୋଠରୀଟି ଭିତରେ ଏପଟ ସେପଟ ବୁଲିବାକୁ ଲାଗିଲା ଏକ ଅସ୍ଥିର ଯନ୍ତ୍ରଣାରେ, କିନ୍ତୁ ତଥାପି ସମୀର ଫେରିଲା ନାହିଁ । ସମୀର କହିଯାଇଚି ସେ ଟଙ୍କା ନେଇ ଫେରିବ । ତା'ର ଟଙ୍କାର ଅନେକ ପ୍ରୟୋଜନ । କେତେ ରାତିରେ ସେଦିନ କ୍ଷିତୀଶ ଶୋଇଚି ସେ' କଥା ସେ' ନିଜେଇ ଜାଣେନା । କ୍ଷିତୀଶର ନିଦ ଭାଙ୍ଗିଲା ବେଳକୁ ଘର ଭିତରକୁ ପଟା ପଟା ଖରା ପଶି ଆସିଲାଣି ଓ ଖୋକା କାନ୍ଥରେ ଟଙ୍ଗା ହେଇଥିବା ଗୋଟିଏ ଛବିକୁ ନିବିଷ୍ଟ ଆଖିରେ ଚାହିଁ ରହିଚି ।

କ୍ଷିତୀଶ ନିଦ ମଳମଳ ଆଖିରେ ଖୋକାକୁ ଚାହିଁରହିଲା କିଛି ସମୟ । ତା'ର ମୁହୂର୍ତ୍ତକ ପାଇଁ ମନେହେଲା ସେ ଗୋଟିଏ ସୁନ୍ଦର ଖେଳନାକୁ ଚାହିଁ ରହିଚି, ଯିଏ ଇଚ୍ଛା କଲେ କଥା ମଧ କହିପାରେ; କିନ୍ତୁ ଖୋକାର ମୁହଁଟା ସାମାନ୍ୟ ଆରକ୍ତ ଦେଖାଯାଉଚି ।

''ଖୋକା କେମିତି ଲାଗୁଛି ?''

''ବେଶ୍ ଭଲ । ଏ ଛବିଟା ମତେ ଭାରୀ ଭଲ ଲାଗୁଚି ।''

କ୍ଷିତୀଶ ଛବିଟିକୁ ଚାହିଁଲା । ଅତି ମାମୁଲି ଗୋଟାଏ ମ୍ୟାଗାଜିନ୍‌ର ଛବି ।

ଗୋଟାଏ ଚାଇନା ଡ୍ରାଗନ୍ ଗୋଟାଏ ଠେକୁଆକୁ କବଳିତ କରି ରଖିଛି ଏବଂ ଯନ୍ତ୍ରଣାର ଆତିଶଯ୍ୟରେ ମନେ ହଉଛି ଯେପରି ଠେକୁଆର ନିରୀହ ଆଖି ଦୁଇଟା ପଦାକୁ ଛିଟ୍‌କି ପଡ଼ିବ ।

କ'ଣ ଭାବି କ୍ଷିତୀଶ ଖୋକାର କପାଳରେ ହାତ ଦେଇ ଚମକି ଉଠିଲା । ଦେହଟାରେ ତାତି ଭରି ରହିଚି । ମୁହୂର୍ତ୍ତକ ପାଇଁ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲା କ୍ଷିତୀଶ । ଏକୁଟିଆ ଲୋକ, ସେଥିରେ ପୁଣି ଏଇ ଶିଶୁଟିର ଅସୁସ୍ଥ ଶରୀର । ତା'କୁଇ ତ ସେବାଶୁଶ୍ରୂଷା କରିବାକୁ ପଡ଼ିବ । ପିଲାଟାର ବଞ୍ଚି ରହିବା ସମୀର ପାଇଁ ଏକାନ୍ତ ପ୍ରୟୋଜନ । କାରଣ ତା'ର ଟଙ୍କା ଦରକାର । ଖୋକାକୁ ପୁଣି ଥରେ ବିଛଣାରେ ଶୁଆଇ ଦେଇ ତା' ଉପରେ କମ୍ବଳଟାକୁ ଟାଣି ଆଣିଲା କ୍ଷିତୀଶ ।

ଡାକ୍ତର ପାଖକୁ ଖୋକାକୁ ନବା ସମ୍ଭବ ନୁହଁ, ତେଣୁ ଜଣାଥିବା ପ୍ରାଥମିକ ଚିକିତ୍ସା କ୍ଷିତୀଶ ଆରମ୍ଭ କରିଦେଲା । ବଜାରକୁ ଯାଇ ଗୋଟାଏ ବାର୍ଲିଡବା କିଣି ଆଣି କ୍ଷିତୀଶ ଷ୍ଟୋଭ ଲଗାଇଲା ଏବଂ ବାର୍ଲିଡବା ଉପରେ ଲେଖା ହୋଇଥିବା ଅନୁଶାସନ ଅନୁଯାୟୀ ବାର୍ଲି ତିଆରି କରିବାରେ ଲାଗିଲା । ପ୍ରାୟ ଅଧାଅଧି ପ୍ରସ୍ତୁତ ହୋଇସାରିବା ପରେ ହଠାତ୍ ଖୋକା କହିଲା, ''ତମର କ'ଣ ଦିହ ଖରାପ—ବାର୍ଲି କାହିଁକି କରୁଛ ?''

ନା ନା, ମୋ' ଦେହ ଖରାପ ନୁହଁ—ତତେ ଟିକିଏ ସାମାନ୍ୟ ଜର ହେଇଛି ।

ଉହୁଁ—ଖୋକା କହିଲା'—ମୁଁ ବାର୍ଲି ଖାଏ ନାହିଁ ।

ପାଉଁରୁଟି ?

ନା ।

କମଳା ?

ନା ।

''କିନ୍ତୁ ଖୋକା ସମସ୍ତେ ବାର୍ଲି ଖାଆନ୍ତି—ଦେହ ଭଲ ହୋଇଯିବ ।'' ଖୋକା ଟିକିଏ ହସିଲା, ''ତମେ ତ ମତେ ଜଗିଚ ମୋ'ର ଦେହ ଭଲ ହବା ସାଙ୍ଗେ ତମର କ'ଣ ଅଛି ।''

ଖୋକା, ବାର୍ଲିଟା ଖାଇନେ ।

କହିଲି ପରା ମୁଁ ବାର୍ଲି ଖାଏନା—ହଉ, ପରେ ଭୋକ ହେଲେ ଖାଇବି ।

କ୍ଷିତୀଶ ବ୍ୟସ୍ତ ହୋଇ ଉଠିଲା । ଏପରି ଏକ ପରିସ୍ଥିତିରେ ସେ ବା କ'ଣ କରିବ ଠିକ୍ କରି ପାରିଲା ନାହିଁ ଏବଂ ମନେ ମନେ ଷ୍ଟୁପିଡ୍ ସମୀର ଉଦ୍ଦେଶ୍ୟରେ ଅଭିଶମ୍ପାତ ବର୍ଷଣ କରିବାକୁ ଲାଗିଲା ।

ଖୋକା କିଛି ସମୟ ପାଇଁ ସ୍ଥିର ଦୃଷ୍ଟିରେ ଘରର କଡ଼ି ବରଗାଗୁଡ଼ିକୁ ଚାହିଁ ରହିଲା ଏବଂ କିଛି ସମୟ ପରେ ପୁଣି ଥରେ ଆଖି ବନ୍ଦକରି ଶୋଇ ପଡ଼ିଲା । ଠିକ୍ ତା' ପରେ ପରେ ପାଖ ଦୋକାନରୁ କପେ ଚା' ଖୁରୀରେ ଧରି ଆଣି ଫେରିଆସିଲା

କ୍ଷିତୀଶ ଖୋକା ପାଖକୁ । ଏପର୍ଯ୍ୟନ୍ତ ଅନ୍ତତଃ କେହି ଜଣେ କଥାବାର୍ତ୍ତା କରିବାକୁ ଥିଲା କିନ୍ତୁ ବର୍ତ୍ତମାନ ଖୋକା ଶୋଇପଡ଼ିବା ପରେ ହଠାତ୍ କ୍ଷିତୀଶ ନିଃସଙ୍ଗ ହୋଇ ପଡ଼ିଲା ।

ଦିନ ବାରଟା ବାଜିଲା, ତଥାପି ସମୀର ଫେରେନା । କ୍ଷିତୀଶ ବସି ବସି ଗୋଟାଏ କ'ଣ ପୁରୁଣା ପତ୍ରିକାର ପତ୍ର ଓଲଟାଉ ଥିଲା । ହଠାତ୍ ଶୁଣିପାରିଲା ଖୋକା ବିଳିବିଳେଇ ଉଠିଲା । କ'ଣ କହୁଚି ସ୍ପଷ୍ଟ ବୁଝି ହୁଏନା । ପାଖକୁ ଯାଇ ଆଉଥରେ ଖୋକାର କପାଳ ଉପରେ ହାତ ଦେଲା । ଓଃ ! ତାତିରେ ଦେହ ଖଇଫୁଟୁଚି । କେତେ ଜ୍ୱର ହବ ପାଖରେ ଥର୍ମାମିଟର ନାହିଁ । ତେବେ ସେ' ଅନୁମାନ କଲା ପ୍ରାୟ ୧୦୪ ବା ୧୦୫ ଡିଗ୍ରୀ । ଗୋଟାଏ ବାଲ୍‌ଟିରେ ପାଣି ଆଣି ଖୋକାର ମୁଣ୍ଡ ଉପରେ ପାଣି ପଟି ଦବାକୁ ଆରମ୍ଭ କଲା କ୍ଷିତୀଶ ।

କିନ୍ତୁ ଥର୍ମାମିଟରେ ନ ଥିବାରୁ ଜ୍ୱର କମୁଚି କି ବଢୁଚି ଜାଣିବାର ଉପାୟ ନାହିଁ କ୍ଷିତୀଶର । ନାକ ପାଖରେ ନିଃଶ୍ୱାସରେ ତଥାପି କ୍ଷିତୀଶର ହାତ ପୋଡ଼ି ଯାଉଚି । କେତେବେଳ ଧରି ସେ' ପାଣିପଟି ଦେଉଚି ସେ କଥା ଖିଆଲ ନାହିଁ କ୍ଷିତୀଶର ।

ବାହାରେ ଖରା ନଇଁ ଆସିଲାଣି । କ୍ଷିତୀଶକୁ ଖୁବ୍ ଭୋକ କଲାଣି । ବାହାରକୁ ଯାଇ ଦି'ଖଣ୍ଡ ପାଉଁରୁଟି ଆଉ କପେ ଚା ଖାଇ କାଳ ବିଳମ୍ବ ନ କରି ଫେରି ଆସିଲା; କିନ୍ତୁ ଫେରି ଆସିଲା ବେଳକୁ କ୍ଷିତୀଶ ଯାହା ଦେଖିଲା ସେଥିରେ ଆଶ୍ଚର୍ଯ୍ୟ ହବା ଅପେକ୍ଷା ଆତଙ୍କିତ ହୋଇ ଉଠିଲା ଆହୁରି ବେଶୀ । ଖୋକା କମ୍ବଳଟାକୁ ଫୋପାଡ଼ି ଦେଇ ବିଛଣା ଉପରେ ବସି ରହି ହସୁଚି । କ୍ଷିତୀଶକୁ ଦେଖିଲା ମାତ୍ରେ କହିଲା :

''ତମେ କଣ ଫୋନ୍ କରିବାକୁ ଯାଇଥିଲ ଦାଦା ?''

''ଫୋନ୍ କରିବାକୁ ? କେଉଁଠିକି ?''

''ଆମର ଫୋନ୍‌କୁ—ଟୁ ଥ୍ରୀ ସେଭେନ ଏଇଟ୍ ଏଇଟ୍ ।''

''ନାଁ ମୁଁ ତ ଫୋନ୍ କରି ନାହିଁ ।'' କ୍ଷିତୀଶ କହେ ।

''କିନ୍ତୁ ମତେ ବାପା କହିଥିଲେ ଅସୁବିଧା ହେଲେ ଫୋନ୍ କରିବାକୁ ।''

''କେତେବେଳେ ?''

''ଏଇନା, ତୁମେ ଯେତେବେଳେ ବାହାରକୁ ଯାଇଥିଲ ।''

''କିନ୍ତୁ ଏ ଘରେ ତ ଫୋନ୍ ନାହିଁ ।''

''ନା, ଫୋନ୍‌ରେ ନୁହଁ—ବାପା ନିଜେ ଆସିଥିଲେ—ଏଇ ଝରକାବାଟେ କହିଦେଇ ଚାଲିଗଲେ ।''

କ୍ଷିତୀଶ ବୁଝିପାରିଲା ଏଟା ଖୋକାର ଜ୍ୱରଜନିତ ପ୍ରଳାପ । ଡିଲିରିୟମ !

ରାତି ହୋଇଗଲାଣି—ଅଥଚ ସମୀରର ଫେରିବାର କୌଣସି ସମ୍ବାଦ ନାହିଁ । ଏପଟେ ଖୋକାର ଡିଲିରିୟମ ଆରମ୍ଭ ହେଇଚି ଏବଂ ତା'ର ଡାକ୍ତର ଡାକିବାର ମଧ୍ୟ ଉପାୟ ନାହିଁ । କ୍ଷିତୀଶ ସତରେ ଆତଙ୍କିତ ହୋଇ ପଡ଼ିଲା । ସେ ଏପରି ଅକାରଣରେ, ଅତ୍ୟନ୍ତ ଅସହାୟ ଭାବରେ ଏଇ କିଶୋରଟିକୁ ଯନ୍ତ୍ରଣା ଦେଇ ପାରିବ ନାହିଁ । ତା' ପାଖରେ କେହି ନାହିଁ । ଲାମା ନାହିଁ—ଡୁମା ନାହିଁ କି ସମୀର ନାହିଁ ।

କାସାବିଆଙ୍କା ପରି କାପ୍ତାନର ଆଦେଶ ମାନି ଏକ ଜ୍ୱଳନ୍ତ ଜାହାଜ ଭିତରେ ଛିଡ଼ା ହୋଇ ସେ ଏଇ ନିରପରାଧ, ସୁକୁମାର କିଶୋରଟିକୁ ମାରିବାକୁ ଦେଇ ପାରିବ ନାହିଁ । ସେ ମରିଗଲେ ଆପତ୍ତି ନ ଥିଲା; କିନ୍ତୁ ଖୋକା ?

ହଠାତ୍ କ୍ଷିତୀଶର ଆଖି ଉପରୁ ଦୁଇବର୍ଷ ଧରି ବୁଣା ହେଇଥିବା ସଂଘ ଅନୁରକ୍ତିର ବୁଢ଼ୀଆଣୀ ଜାଲ କୁଆଡ଼େ ଉଭାନ୍ ହୋଇଗଲା । ତା'କୁ ଗୋଟାଏ କିଛି କରିବାକୁ ପଡ଼ିବ । ବର୍ତ୍ତମାନ ! Now ! Now ! ତା'ର ମସ୍ତିଷ୍କକୁ ଝଲକାଏ ରକ୍ତ ଚହଲି ଯାଇଥିଲା ।

ତଥାପି ନିଜକୁ ସଂଯତ ରଖି ସେ ପଚାରିଲା :

''ଖୋକା ତମର ଫୋନ୍ ନମ୍ବର କେତେ ?''

ପୁଣି ଥରେ ସେଇ ବୀଣାଜୀଣା ସ୍ୱର, ''ଟୁ ଥ୍ରୀ ସେଭେନ୍ ଏଇଟ୍ 'ଏଇଟ୍'' । ସ୍ୱରଟା ଶେଷଆଡ଼କୁ ସାମାନ୍ୟ ଅସ୍ପଷ୍ଟ ହେଇ ଆସିଥିଲା ।

ଝଡ ପରି ଘରୁ ବାହାରିଗଲା କ୍ଷିତୀଶ ପାଖ ଦୋକାନର ଫୋନ୍ ପାଖକୁ ।

ଡାଏଲ୍ କଲା ''ଟୁ ଥ୍ରୀ ସେଭେନ୍ ଏଇଟ୍ ଏଇଟ୍ ।''

ଉତ୍ତର ଆସିଲା, ''ମୁଁ ଗୋଏଙ୍କା କହୁଚି ।''

ଆଚ୍ଛା ଆପଣଙ୍କ ପୁଅ ଖୋକା କ'ଣ ହଜିଯାଇଛି ?''

''ହଁ ହଁ, ଆପଣ କ'ଣ ତା'ର ସନ୍ଧାନ ପାଇଛନ୍ତି ?'' ଗୋଏଙ୍କାର କଣ୍ଠ ଉତ୍ତେଜନାରେ ଥରୁଛି ।

''ହଁ, ପାଇଚି, ଆପଣ ଦୁଇମିନିଟ୍ ମଧ୍ୟରେ ହାଜରା ପାର୍କର ଦକ୍ଷିଣ କଣରେ ଆପଣଙ୍କ କାର୍ ପାର୍କ କରନ୍ତୁ । ଆପଣଙ୍କ କାର୍ ନମ୍ବର ?''

''ଏଇ ବର୍ତ୍ତମାନ ଗଲି—ମୋର କାର୍ ନମ୍ବର—ଡବ୍ଲ୍ୟୁ.ବି.ସି. ଥ୍ରୀ, ଫାଇଭ, ଫୋର୍, ଫୋର୍ । ଡବ୍ଲ୍ୟୁ ଫର୍ ଉଇଲିଆମ, ବି ଫର୍ ବମ୍ବେ, ସି ଫର୍ ଚାଇନା....

ଫୋନ୍ ପାଖରୁ ଫେରି ଆସି କ୍ଷିତୀଶ ଖୋକାକୁ କହିଲା, ''ଖୋକା, ତମ ବାପା ଅପେକ୍ଷା କରିଛନ୍ତି । ଯିବା ।''

ନା, ମୁଁ ଯିବିନି !

କାହିଁକି ?

ମୁଁ ଚାଲିଗଲେ ତମ ଉପରେ ସେମାନେ ରାଗିବେ ।

''ନିର୍ବୋଧ ଶିଶୁ'' ମନେ ମନେ କହିଲା କ୍ଷିତୀଶ ଓ କମ୍ବଳ ସହିତ ଖୋକାକୁ ଉଠେଇ ନେଇ ସେ' ଚାଲିଲା ହାଜରା ପାର୍କର ଦକ୍ଷିଣ ଆଡ଼କୁ ।

ସାଇରେନ୍ ଦେଇ ଆସୁଚି ଗୋଟାଏ ପୁଲିସ ଭ୍ୟାନ୍—ତା ପଛେ ପଛେ ଗୋଟାଏ ପ୍ଲିମଥ୍—ଡବଲ୍ୟୁ.ବି.ସି. ଥ୍ରୀ, ଫାଇଭ୍, ଫୋର୍, ଫୋର୍—ଏବଂ ତା' ପଛରେ ଆଉ ଗୋଟାଏ ପୁଲିସ ଆର୍ମଡ୍ ଭେକଲ୍ ।

କାଳ ବିଳମ୍ବ ନ କରି କ୍ଷିତୀଶ କାର୍‌ର ପଛ ସିଟ୍‌ରେ ଖୋକାକୁ ଧରି ପଶିଗଲା ଏବଂ ମିସେସ୍ ଗୋଏଙ୍କା ଗୋଟାଏ କାଙ୍ଗାଳୀ ସ୍ତ୍ରୀ ଲୋକ ପରି ଖୋକାକୁ ଝାମ୍ପିନେଲେ କ୍ଷିତୀଶର ହାତରୁ ଏବଂ ଅଜସ୍ର ଚୁମାରେ ପ୍ରାୟ ଅଣନିଃଶ୍ୱାସୀ କରି ପକେଇଲେ ଖୋକାକୁ । ଖୋକାକୁ ମା' ହାତକୁ ଦଉ ଦଉ ଖାଲି କ୍ଷିତୀଶ କହିଲା—ତାକୁ ଅନେକ ଜର ।

ପୁଲିସ୍ ଭ୍ୟାନ୍ ଓ ଗୋଏଙ୍କା ସାହେବଙ୍କର କାର୍ ଲାଗିଲା ବାଲିଗଞ୍ଜର ଏକ ବିରାଟ କୋଠିରେ । ଗୋଏଙ୍କା ଓ ମିସେସ୍ ଗୋଏଙ୍କା ଅଶେଷ ଧନ୍ୟବାଦ ଦେଲେ । କିନ୍ତୁ କ୍ଷିତୀଶକୁ ଯିବାକୁ ପଡ଼ିବ ପୁଲିସ୍ ଷ୍ଟେସନକୁ ।

ଗଲାବେଳେ କ୍ଷୀଣ ସ୍ୱରରେ ଖୋକା କହିବାର ଶୁଣାଗଲା ''ଦାଦାଙ୍କୁ ଡାକ, ଆମ ଘରକୁ ।''

କିନ୍ତୁ ମିସେସ୍ ଗୋଏଙ୍କା କହିଲେ, ''ସେ' ପରେ ଆସିବେ'' ଏବଂ ମିସେସ୍ ଗୋଏଙ୍କାଙ୍କର କଥାକୁ ବୁଡେଇ ଦେଇ ପୁଲିସ୍ ଗାଡ଼ିର ଇଞ୍ଜିନ୍ ଗର୍ଜନ କରି ଉଠିଲା ଓ ଅଳ୍ପ ସମୟ ପରେ କ୍ଷିତୀଶ ବସିଥିଲା ପୁଲିସ୍ ଷ୍ଟେସନ୍‌ରେ, ଦୁଇଜଣ ଏସ୍.ପି. ଓ କ୍ରାଇମ୍‌ବ୍ରାଞ୍ଚ ଡି.ଆଇ.ଜି.ଙ୍କ ଗହଣରେ ।

ହାଜତରେ ପ୍ରାୟ ଚାରିଦିନ ରହିବାକୁ ପଡ଼ିଥିଲା କ୍ଷିତୀଶକୁ । ପୁଲିସ୍ ଏ.ଏସ୍.ଆଇ. ଠାରୁ ଆରମ୍ଭ କରି ଆଇ.ଜି. ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରଶ୍ନର ଜବାବ୍ ଦବାକୁ ପଡ଼ିଥିଲା ତାକୁ।

ଅବଶ୍ୟ କ୍ଷିତୀଶ କାହାର ନାଁ ଉଚ୍ଚାରଣ କରି ନାହିଁ । ତେବେ ସେ' ଏ କଥା ସ୍ୱୀକାର କରିଚି ଯେ ଖୋକାକୁ ତା'ର ଦାୟିତ୍ୱରେ ରଖା ଯାଇଥିଲା ଏବଂ ଖୋକାର ସ୍ୱାସ୍ଥ୍ୟର ଦ୍ରୁତ ଅବନତି ହେତୁ ତାକୁ ବାଧ ହୋଇ ଆତ୍ମସମର୍ପଣ କରିବାକୁ ପଡ଼ିଚି ଏବଂ

ସେ ମଧ କହିଚି ଯେ ସେ ଆଉ କଲିକତାରେ ରହିବାକୁ ଚାହେନା । କାରଣ ଏ ଘଟଣା ପରେ ତା'ର ନିଜର ଜୀବନ ବିପନ୍ନ, ସେ ତା'ର ଘରକୁ ଫେରିଯିବାକୁ ଚାହେଁ । ତା'ଠାରୁ ତା'ର ଘରର ଠିକଣା ଓ ଗୋଟାଏ ବଣ୍ଡ୍ ରଖି ତାକୁ ପୁଲିସ୍ ଭ୍ୟାନ୍‌ରେ ଛାଡ଼ି ଦେଇ ଆସିଥିଲେ ହାଉଡ଼ା ଷ୍ଟେସନରେ । ସେହି ସନ୍ଧ୍ୟାରେ ସେ କଲିକତାରୁ ବିଦାୟ ନେଇ ଆସିଥିଲା । ଟ୍ରେନ୍ ଛାଡ଼ିବା ପରେ ସେ କଲିକତା ମହାନଗରୀକୁ ଟ୍ରେନ୍‌ର ଡବା ଭିତରୁ ହାତ ହଲେଇ ବିଦାୟ ଜଣେଇ ଥିଲା ଓ ସେ ଲକ୍ଷ୍ୟ କରିଥିଲା କଲିକତା ମହାନଗରୀରେ ଅସଂଖ୍ୟ ଆଲୁଅ ଜଳୁଛନ୍ତି ବିଷାକ୍ତ ବ୍ରଣ ପରି ।

କ୍ଷିତୀଶ ଅନେକ ସମୟ ଧରି କୁଇଲନ୍ ଷ୍ଟେସନର ଇଜି ଚେୟାର ଉପରେ ପଡ଼ି ରହି ନିକଟ ଅତୀତକୁ ରୋମନ୍ଥନ କରୁଥିଲା । ଷ୍ଟେସନ ବାହାର ପଟର କିରାସିନୀ ଆଲୁଅ ସବୁ ଜଳି ଉଠିଲେଣି ଏବଂ ଗୋଟାଏ ଆଗନ୍ତୁକ ଟ୍ରେନ୍‌କୁ ଅଭ୍ୟର୍ଥନା କରିବାକୁ ଖଲାସି, ପଏଣ୍ଟସମ୍ୟାନ ପ୍ରଭୃତି ତତ୍ପର ହୋଇ ଉଠିଲେଣି । କ୍ଷିତୀଶ ତା'ର ଚଉକି ଛାଡ଼ି ଉଠିଲା ଓ କ୍ଲାନ୍ତ ପଦକ୍ଷେପରେ ତା'ର ଗାଁ ଆଡ଼କୁ ଚାଲିବାକୁ ଆରମ୍ଭ କଲା ।

କ୍ଷିତୀଶର ଆସି ଗାଁରେ ରହିବାର ପ୍ରାୟ ଛମାସ ସମୟ ଅତିବାହିତ ହେଇଗଲାଣି । ତା'ର ଗାଁରେ କିଛି ଘଟେନା । ପ୍ରତିଦିନର ଜୀବନ ଅନ୍ୟ ଏକ ଦିନର ଜୀବନ ପରି ଘଟଣାବିହୀନ ଓ ଅଳସମନ୍ଥର । ନିୟମିତ ଭାବରେ ସୂର୍ଯ୍ୟ ଉଠେ ଓ ସୂର୍ଯ୍ୟ ଅସ୍ତ ଯାଏ । କ୍ଷିତୀଶ ଥିଲା ବିଶ୍ୱବିଦ୍ୟାଳୟର ଜଣେ ସାର୍ଥକ ଛାତ୍ର ତେଣୁ ତା' ପକ୍ଷରେ ଖଣ୍ଡେ ଦୁଇଖଣ୍ଡ ଖବରକାଗଜ ତା'ର ମନର ଖାଦ୍ୟ ପାଇଁ ଯଥେଷ୍ଟ ନୁହଁ । ପ୍ରକୃତରେ ସେ ନିଜର ଏଇ ବୃହନ୍ନଳୀ ଜୀବନ ନେଇ କ୍ଲାନ୍ତ ହୋଇ ପଡ଼ିଲାଣି । କିନ୍ତୁ ତା'ର ଉପାୟ କାହିଁ ? ତା ପକ୍ଷରେ ଆଉ ବୋଧହୁଏ କଲିକତା ଫେରିଯିବା ସମ୍ଭବ ନୁହଁ କାରଣ ସେ' ଭଲ ଭାବରେ ଜାଣେ ଖୋକାର ମୁକ୍ତିର ମୂଲ୍ୟ ତାକୁଇ ଦବାକୁ ପଡ଼ିବ । ହୁଏତ ଅର୍ଥରେ ନୁହଁ କଠୋର ଶାସ୍ତିରେ । ଅତୀତରେ ସେ ବହୁବାର ଏ ଶାସ୍ତିର ସ୍ୱରୂପ ଦେଖିଛି ତେଣୁ ସେ' କଥା ଚିନ୍ତା କଲାବେଳକୁ ତା'ର ଶରୀର ରୋମାଞ୍ଚିତ ହୋଇ ଉଠୁଥିଲା ଏକ ଅଚିନ୍ତନୀୟ ଆଶଙ୍କାରେ ।

କ୍ଷିତୀଶର ଗାଁରେ ସେଦିନର ସକାଳ ଅନ୍ୟ ଏକ ଦିନର ସକାଳ ପରି ଥିଲା ସୁନ୍ଦର ଓ ରୌଦ୍ରଦଗ୍ଧ ଏବଂ କ୍ଷିତୀଶ ସବୁଦିନ ପରି ତା'ର ଘର ବାରଣ୍ଡାରେ ବସି ରହି ଖଣ୍ଡେ ପୁରୁଣା ବହୁପଠିତ ବହିକୁ ଆଉ ଥରେ ପଢ଼ିବାକୁ ଆରମ୍ଭ କରିଥିଲା । ଠିକ୍ ଏଇ ସମୟରେ ତା'ର ନଜର ପଡ଼ିଗଲା, କାନ୍ଥ ଉପରେ ଗୋଟାଏ ଲାଲ ସଙ୍କେତ ଉପରେ ଏବଂ ସେଇ ସଙ୍କେତଟିକୁ ଥରେ ଦେଖି ନେଇ କ୍ଷିତୀଶର ମେରୁଦଣ୍ଡ ଦେଇ ଗୋଟାଏ ଶୀତଳ ଶୀତ୍କାର ଖେଳିଗଲା ମୁହୂର୍ତ୍ତକ ମଧରେ । ସେଇ ସଙ୍କେତଟିକୁ ଚିହ୍ନିବାରେ କ୍ଷିତୀଶର ଭ୍ରମ ହୋଇ ପାରେନା । ବହୁବାର ବହୁ ସ୍ଥାନରେ ସେ ସେଇ ସଙ୍କେତଟିକୁ

କେବଳ ଦେଖିଚି ନୁହଁ ତା'ର ଅଲଘନୀୟ ନିର୍ଦ୍ଦେଶରେ କାର୍ଯ୍ୟ ମଧ୍ୟ କରିଚି । ଶେଷଥର କ୍ଷିତୀଶ୍ ସେଇ ସଙ୍କେତଟିକୁ ଦେଖିଥିଲା ଗୋଏଙ୍କାର ଚିଠି ଉପରେ ଯାହାକୁ ସମୀର ଲେଖିଥିଲା ଖୋକାର ବାପାଙ୍କ ପାଖକୁ ।

କିନ୍ତୁ ଏଠି କ୍ଷିତୀଶ୍‌ର କାଛରେ ଏଇ ସଙ୍କେତଟା ଆକସ୍ମିକ ହୋଇ ପାରେନା । କ୍ଷିତୀଶ୍ ସ୍ପଷ୍ଟ ବୁଝି ପାରିଲା ଯେ ଲାମାର ଅନୁଚରମାନେ ତାକୁ ତା'ର ଗାଁ ପର୍ଯ୍ୟନ୍ତ ଅନୁସରଣ କରି ପହଞ୍ଚି ଯାଇଛନ୍ତି ଏବଂ ଖୁବ୍ ସମ୍ଭବ ସେମାନେ ଏଇ ମୁହୂର୍ତ୍ତରେ ତା'ରି ଗାଁରେ କୌଣସି ସ୍ଥାନରେ ଆଶ୍ରୟ ନେଇଛନ୍ତି କ୍ଷିତୀଶ ଉପରେ ପ୍ରତିଶୋଧ ନବାକୁ । କ୍ଷିତୀଶ୍ ପ୍ରତିଶୋଧ ବା ଶାସ୍ତିର ଅର୍ଥ ଖୁବ୍ ଭଲଭାବରେ ବୁଝେ । କ୍ଷିତୀଶ୍‌ର ଅନେକ ବନ୍ଧୁ ଅତୀତରେ ଏଇ ପ୍ରତିଶୋଧର ଶିକାର ହେଇ ଚିରଦିନ ପାଇଁ ଏଇ ପୃଥିବୀରୁ ବିଦାୟ ନେଇଛନ୍ତି ।

କ୍ଷିତୀଶ୍‌ର ଆକ୍ଷିରେ କିଛିଟା ବିସ୍ମୟ ଓ କିଛିଟା ଆତଙ୍କ । ସେ ଠିକ୍ ଭାବରେ କିଛି ଚିନ୍ତା କରି ପାରୁନାହିଁ । ସେ ଖଣ୍ଡେ ସିଗାରେଟ୍‌ରେ ନିଆଁ ଧରେଇ ଗୁଡାଏ ଧୂଆଁ ବେପରୁଆ ଭାବରେ ଉପରକୁ ଛାଡ଼ିଦେଲା (ଗାଁର ଏ କଟକଣା-ଜୀବନକୁ ସହ୍ୟ କରି ନବା ପାଇଁ ସେ ଅଧୁନା ସିଗାରେଟ୍ ଧରିଚି) । ଧୂଆଁ ଗୁଡ଼ାକ ତା'ର ଭାବନା ପରି ବଙ୍କା ବଙ୍କା ଛନ୍ଦାଛନ୍ଦି ହୋଇଗଲା । ପ୍ରଥମ ଧକ୍‌କାଟା କଟିଯିବା ପରେ କ୍ଷିତୀଶ୍‌ର ମୁହଁର ରେଖା ସବୁ ଆସ୍ତେ ଆସ୍ତେ କଠୋର ହୋଇ ଆସିଲା । ଆଜି ପର୍ଯ୍ୟନ୍ତ ସେ ଯେଉଁ ପରିସ୍ଥିତିକୁ ଏଡ଼ାଇ ଦେଇ ଆସିଛି ଆଜି ତାକୁ ମୁହାଁମୁହିଁ ସାମ୍ନା କରିବାକୁ ପଡ଼ିବ । ''ଆଫ୍‌ଟର୍ ଅଲ୍'', କ୍ଷିତୀଶ୍ ମନେ ମନେ ଭାବୁଥିଲା ''ମୋର ଗୋଟାଏ ଜୀବନ ଏବଂ ଦିନେ ନା ଦିନେ ତା'ର ଅବସାନ ଘଟିବ । ଆଜି ନ ହେଲେ କିଛିଦିନ ପରେ ।'' କିନ୍ତୁ ଗୋଟାଏ ନିରପରାଧ ଶିଶୁକୁ ସେ ଜାଣିଶୁଣି ମାରି ଦେଇ ପାରି ନ ଥାନ୍ତା । ଇମ୍‌ପସିବ୍‌ଲ । ବିରକ୍ତିରେ ଘୃଣାରେ ସେ ଅଧପୋଡ଼ା ସିଗାରେଟ୍‌ଟାକୁ ଗୋଟାଏ ଝଟ୍‌କାରେ ଫିଙ୍ଗିଦେଲା ରାସ୍ତା ଉପରକୁ ।

କ୍ଷିତୀଶ୍‌କୁ ତୁରନ୍ତ ସିଦ୍ଧାନ୍ତ ନବାକୁ ପଡ଼ିବ । ସେଥିପାଇଁ ସେ ତା'ର ଛୋଟ ବାରଣ୍ଡାଟିରେ ବାରମ୍ବାର ଏପଟକୁ ସେପଟ ବୁଲୁଛି । କ'ଣ ହୋଇପାରେ ? ଖୁବ୍ ଜୋର ତା'କୁ ଏଠି ଏକ ଅସତର୍କ ମୁହୂର୍ତ୍ତରେ ଆକ୍ରମଣ କରାଯାଇ ପାରେ କିମ୍ବା ସଙ୍କେତଟା ଦିଆ ସରିବା ପରେ ତାକୁ କଡ଼ା ନଜରରେ ରଖା ଯାଇଛି । ଏଇ ତ ! ଫୁଃ ! ସେଦିନ ରାତିରେ ଯେ କ୍ଷିତୀଶ୍ ଖୋକାକୁ ଘରେ ଛାଡ଼ିଦେଇ କଲିକତା ଛାଡ଼ି ପଳେଇ ଆସିଚି, ସେଥିପାଇଁ ତାକୁ ଥରକପାଇଁ ମଧ୍ୟ ବିବେକର ଦଂଶନ ସହିବାକୁ ପଡ଼ିନାହିଁ । ଆସନ୍ତୁ—ଲାମା ଆସୁ—ଡୁମା ଆସୁ—କ୍ଷିତୀଶ୍ ସ୍ପଷ୍ଟ କହିଦବାକୁ ପ୍ରସ୍ତୁତ, 'ମୁଁ

ଯାହା କରିଚି ସେ କଥା ପ୍ରତ୍ୟେକ ମଣିଷ କରିବ ।' ନା—ସେ ଆଉ ଚାନ୍‌ସ ନେଇ ପାରିବ ନାହିଁ । ତାକୁ ସିଧା ଯିବାକୁ ପଡ଼ିବ ପୁଲିସ୍ ଷ୍ଟେସନକୁ ଯେଉଁଠି ସେ ତା'ର ନିରାପତ୍ତା ପାଇଁ କିଛି ନା କିଛି କିନାରା କରିବ । ମରିବା ପୂର୍ବରୁ ଅନ୍ତତଃ ଶେଷଥର ପାଇଁ ସେ ମୁକାବିଲା କରିବାକୁ ଚାହେଁ ।

କ୍ଷିତୀଶ୍ ଲୁଗା ବଦଳେଇ ବାହାରି ପଡ଼ିଲା ପୁଲିସ୍‌ଷ୍ଟେସନକୁ । ଘରେ କେବଳ କହିଗଲା ଯେ ତା'ର ଫେରିବାକୁ ଡେରି ହୋଇପାରେ । ତେଣୁ ତା'ର ଖାଇବାପାଇଁ ଯେପରି କେହି ଅପେକ୍ଷା ନ କରନ୍ତି । ପୁଲିସ୍ ଷ୍ଟେସନ ତା' ଘରଠାରୁ ପ୍ରାୟ ମାଇଲିଏ ଦୂରରେ । କ୍ଷିତୀଶ୍ ଏକମୁହାଁ ହେଇ ଚାଲିଚି ଥାନା ଅଭିମୁଖରେ । ସେ କାହାର କ୍ଷତି କରିବାକୁ ଚାହେଁନା । କିନ୍ତୁ ସେ ବି ମଣିଷ । ସିଏ ମଧ୍ୟ ଅନ୍ୟମାନଙ୍କ ପରି ବଞ୍ଚି ରହିବାକୁ ଚାହେଁ । ତେଣୁ ଶେଷ ଚେଷ୍ଟା ନ କରି ଦଳେ ଫ୍ୟାନାଟିକ୍‌ଙ୍କ ହାତରେ ସେ ମରିବାକୁ ଚାହେନା । ଯାତୁ ସିଯାତୁ ଅନେକ ଚିନ୍ତା କରୁ କରୁ କ୍ଷିତୀଶ କେତେବେଳେ ତା'ର ଅଲକ୍ଷ୍ୟରେ ଥାନା ଫାଟକ ପାଖରେ ପହଞ୍ଚି ଯାଇଛି ।

କ୍ଷିତୀଶ୍ ଶୁଣି ପାରିଲା କିଏ ଜଣେ ଫିସ୍ ଫିସ୍ କଣ୍ଠରେ କଥା କହୁଚି, ''ଠିଆ ହେଇ ରହ କ୍ଷିତୀଶ୍—ଥାନା ଭିତରକୁ ଯିବାକୁ ଚେଷ୍ଟା କଲେ ତୋ'ର ଜୀବନ ବିପନ୍ନ'' । କ୍ଷିତୀଶ୍ ମୁହଁ ଟେକି ଚାହିଁଲା । ଗୋଟାଏ ଗଛ କରରେ ସମୀର ଉଦ୍ୟତ ରିଭଲଭର ଧରି ଠିଆ ହୋଇ ରହିଛି । କ୍ଷିତୀଶ୍ ଗୋଟାଏ ପଥର ମୂର୍ତ୍ତି ପରି ସ୍ଥାଣୁ ହୋଇଗଲା । କାରଣ ସେ ଭଲ ଭାବରେ ଜାଣେ ସମୀରର କଥା କେବଳ ଫମ୍ପା ଧମକ୍ ନୁହଁ କି ତା'ର ରିଭଲଭର୍‌ରେ ଗୁଳିର ଅଭାବ ନାହିଁ । ତା' ପରେ ସମୀର କହେ, ''ଏଥିରେ ବନ୍ଧୁତ୍ୱର ପ୍ରଶ୍ନ ନାହିଁ । ଏଟା ସଂଘର ନିର୍ଦ୍ଦେଶ—ଏଇଟା ମଧ୍ୟ ଠିକ୍ ଅଙ୍କ କଷା ହୋଇ ବାହାର କରା ଯାଇଥିଲା ଯେ ତୁ ଲାଲି ସଙ୍କେତ ଦେଖି ଥାନାକୁ ଆସିବୁ ଆଉ ମୁଁ ଏଠି କେବଳ ତୋ'ରି ପାଇଁ ଅପେକ୍ଷା କରି ରହିଥିଲି ।''

କ୍ଷିତୀଶ୍ କ'ଣ ଗୋଟାଏ କହିବାକୁ ଯାଉଥିଲା । କିନ୍ତୁ ତାକୁ କହିବାକୁ ସମୟ ନ ଦେଇ ସମୀର କହିଲା, ''ମୁଁ ଜାଣେ, ତୁ ହୁଏତ ଥାନା ଭିତରକୁ ଯିବାକୁ ଚେଷ୍ଟା କରିବୁ ତଥାପି—କିନ୍ତୁ ମୋର ଏଠି ଧରା ପଡ଼ିଯିବାର ସମସ୍ତ ବିପଦ ନେଇ ମଧ୍ୟ ମତେ ନିର୍ଦ୍ଦେଶ ପାଳନ କରିବାକୁ ପଡ଼ିବ ।''

କ୍ଷିତୀଶ୍ ଟିକିଏ ହସିଲା, ''ମୋ ଠାରୁ ତୁ କ'ଣ ଚାହୁ ସମୀର ?''

''କିଛି ନାହିଁ, କେବଳ ତତେ କଲିକତା ଫେରିଯିବାକୁ ପଡ଼ିବ ।'' ସମୀର ଉତ୍ତର ଦିଏ । ''କିନ୍ତୁ କଲିକତା ଗଲେ ଲାଭ କ'ଣ ହବ ? ଯାହା ହବାର ତ ହେଇଯାଇଚି ?'' କ୍ଷିତୀଶ୍ ପଚାରେ ।

''ସେ କଥା ମୁଁ ଜାଣେନା—କିନ୍ତୁ ତୁ ଅଯଥା ସମୟ ନଷ୍ଟ କରନା କ୍ଷିତୀଶ । Decide quick.''

କ୍ଷିତୀଶ୍ ଆଗରେ ଦୁଇଟି ବାଟ; କିନ୍ତୁ ଥାନାକୁ ଯିବା ତା' ପକ୍ଷରେ ସମ୍ଭବ୍ ନୁହଁ । ନିଶ୍ଚିତ ମୃତ୍ୟୁକୁ ଅସ୍ୱୀକାର କରିବା ମୂର୍ଖତା । ତେଣୁ ତାକୁ ଅନ୍ୟଟିକୁ ବାଛି ନେବାକୁ ପଡ଼ିବ । ''ଆଚ୍ଛା ସମୀର''....

କ୍ଷିତୀଶ୍‌ର କଥା ଉପରେ ସମୀର ଝାମ୍ପି ପଡ଼େ, ''ମୋର ସମୟ ଖୁବ୍ ଅଳ୍ପ, ମତେ ଜବାବ୍ ଦେ—ତୁ କଲିକତା ଯିବୁ ନା ନା...'' ।

ତଥାପି କ୍ଷିତୀଶ୍ ଜବାବ୍ ଦିଏ ''ହାତରେ ରିଭଲଭର୍ ଧରି କାହାକୁ ଚଏସ୍ ଦିଆଯାଏନା—ଏଟାକୁ ମୁଁ କାପୁରୁଷତା ମନେକରେ—ଠିକ୍ ଅଛି ମୁଁ କଲିକତା ଯିବି ।''

ସମୀର କହେ, ''ତାହା ହେଲେ ଏଇଠାରୁ ତତେ ସିଧା ଷ୍ଟେସନ ଯିବାକୁ ପଡ଼ିବ, ଆଉ ମୁଁ ତୋର ଠିକ୍ ଦଶ ଗଜ ପଛରେ ଚାଲୁଚି''—

''କିନ୍ତୁ ଘରେ ବାପା, ମା'ଙ୍କୁ ଟିକିଏ କହିଦେଇ....''

''ନା—'' ସମୀରର କଠୋର ଆଦେଶ ।

କ୍ଷିତୀଶ୍ ଆଉ ପଦେ କଥା ନ କହି ଷ୍ଟେସନ୍ ଆଡ଼କୁ ପାଦ ବଢ଼ାଏ ।

ସେତେବେଳକୁ ଦିନ ବାରଟା ବାଜି ସାରିଥାଏ ।

ମଧ୍ୟାହ୍ନର ସୂର୍ଯ୍ୟକିରଣରେ ରାସ୍ତା ଦୁଇକରର ଧାନକ୍ଷେତ ସବୁ ଦେଖାଯାଉଥାଏ ନୀଳ କାର୍ପେଟ୍ ପରି ଏବଂ ଗୋଟାଏ ସରୁ ବଙ୍କା ଟଙ୍କା ଚଲା ରାସ୍ତାରେ ଚାଲିଥାଏ କ୍ଷିତୀଶ୍ । କ୍ଷିତୀଶ୍ ଥରେ ହେଲେ ପଛକୁ ଚାହିଁ ନାହିଁ; କିନ୍ତୁ ତଥାପି ସେ ଜାଣେ ଯେ ତା'ର ଠିକ୍ ଦଶ ଠାରୁ ବାର ଗଜ ଦୂରରେ ଗୋଟାଏ ଧୂସର ରଙ୍ଗର ଚାଦରତଳେ ଗୋଟାଏ ଉଦ୍ୟତ ରିଭଲଭର୍ ଧରି ନିଶ୍ଚିତ ଭାବରେ ଚାଲିଚି ସମୀର । ସମୀର ବୋଷ ।

ରାସ୍ତା ଦୁଇକରର ଧାନକ୍ଷେତ ଉପରେ ସଶ୍ରଦ୍ଧ ଦୃଷ୍ଟି ବୁଲେଇ ଆଣିଲା କ୍ଷିତୀଶ୍ । କିଏ ଜାଣେ ହୁଏତ ସେ ତା'ର ଗାଁର ଧାନକ୍ଷେତକୁ ଶେଷଥର ପାଇଁ ଦେଖୁଚି । ପ୍ରାୟ ଷ୍ଟେସନ୍ ପାଖାପାଖି ହେଇଆସିଲା ବେଳକୁ କ୍ଷିତୀଶ ଠିଆ ହେଇଯାଇ ପଛକୁ ଫେରି ଦେଖିଲା । ସମୀର୍ ମଧ ଠିକ୍ ମାପିଲା ପରି ସେତିକି ଦୂରତ୍ୱ ରକ୍ଷାକରି ଠିଆ ହୋଇ ରହିଲା । କ୍ଷିତୀଶ୍ ତା'ର ଗାଁକୁ ଦେଖୁଥିଲା—କିନ୍ତୁ ଗାଁର ଚାଳଘରର ମଥାନ ସବୁ ଲମ୍ବା ଲମ୍ବା ନଡ଼ିଆ ଗଛର ବାହୁଙ୍ଗାର ଜଙ୍ଗଲ ଭିତରେ ସମ୍ପୂର୍ଣ୍ଣ ଅଦୃଶ୍ୟ ହୋଇଯାଇଚି, ଆଉ ଗାଁଠାରୁ ଟିକିଏଦୂରରେ ଠିଆ ହେଇଛି ଗୋଟାଏ ଏକୁଟିଆ ତାଳଗଛ, ଯାହାର ଛାଇ

ମୂଳରୁ ବାହୁଙ୍ଗା ପର୍ଯ୍ୟନ୍ତ ଏକତିରିଶ୍ ପାଦ—ସେ ପଟୁ ମାପିଲେ ମଧ ନିର୍ଭୁଲ୍ ଭାବରେ ସେୟା । ତାଳଗଛଟା ଦେଖାଯାଉଚି ଏକାନ୍ତ ନିର୍ଜନ—ଅତି କରୁଣ ଭାବରେ ନିଃସଙ୍ଗ ।

ପୁଣି ମୁହଁ ଫେରେଇ କ୍ଷିତୀଶ୍ ଷ୍ଟେସନ୍ ଆଡ଼କୁ ଚାଲିଲା । ତା'ର ଚିର ପରିଚିତ ଷ୍ଟେସନ୍‌ର ଚେହେରା ଯେପରି ପରିବର୍ତ୍ତିତ ହେଇଯାଇଛି ଆଜି । ପାହାଚ ଉଠୁ ଉଠୁ ପ୍ରଥମେ ସ୍ୱାଗତ କରନ୍ତି ଷ୍ଟେସନ୍‌ମାଷ୍ଟର—କ୍ଷିତୀଶ୍ ମୁହଁରେ ଗୋଟାଏ ଶୁଖିଲା ହସ ଟାଣି ନମସ୍କାର କରେ ଓ ପରେ ପରେ କହେ—ମୁଁ ପରିଚୟ କରେଇ ଦିଏ ଯେ ହେଲା ମୋର କଲିକତାର ବନ୍ଧୁ ସମୀର । ଚାଦର ଭିତରେ ସମୀରର ବିଶିଆଙ୍ଗୁଳି ଟ୍ରିଗର ଉପରକୁ ଉଠିଆସେ, ଓ ତା' ପରେ ପରେ ମୁହଁରେ ଆପାତ ସୌଜନ୍ୟର ଛାପ ଟାଣି କହେ ନମସ୍କାର । ତାଙ୍କର ଛୋଟ ଅଫିସ୍‌ଟି ଭିତରେ ଦୁଇଟି ଚୌକୀର ବନ୍ଦୋବସ୍ତ କରନ୍ତି ଷ୍ଟେସନ୍ ମାଷ୍ଟର ସେମାନଙ୍କର ବସିବା ପାଇଁ ଏବଂ କ୍ଷିତୀଶ୍ ବସିବା ପୂର୍ବରୁ ସମୀର୍ ସତର୍କତାର ସହିତ ଅପେକ୍ଷାକୃତ ପଛକୁ ପଡ଼ିଥିବା ଚୌକୀଟିକୁ ବାଛି ନେଇଯାଏ ।

ଟ୍ରେନ୍ ଆସିବାକୁ ତଥାପି ଡେରି ଅଛି । ତେଣୁ ଆପାତତଃ କିଛି କାମ ନାହିଁ । କଦବା କ୍ୱଚିତ୍ ଜଣେ ଦୁଇଜଣ ଯାତ୍ରୀ ଆସି ମଝିରେ ମଝିରେ ଟିକଟ୍ ମାଗୁଛନ୍ତି । ତେଣୁ ଷ୍ଟେସନ୍‌ମାଷ୍ଟର ତିନିକପ୍ ଚା' ପାଇଁ ବରାଦ ଦେଇ ନବାଗତ ବନ୍ଧୁମାନଙ୍କ ସହିତ ଗପ ଆରମ୍ଭ କରିଦେଲେ । ଚାହା ଆସିଲା । ସମୀର୍ ଚା'ର ଗିଲାସଟିକୁ ବାଁ ହାତରେ ନେଲା ଏବଂ ତା ମଧ କ୍ଷିତୀଶ୍‌ର ଦୃଷ୍ଟି ଏଡ଼ାଇପାରି ନ ଥିଲା । ଚା' ପିଉ ପିଉ ସମୀର୍ ତା'ର ଉତ୍କଣ୍ଠା ଚାପି ରଖି ପାରେ ନାହିଁ । ପଚାରେ, "ଆଜ୍ଞା, ଟ୍ରେନ୍ କ'ଣ ଆଜି ବେଶୀ ଡେରି ହବ ?" ଷ୍ଟେସନ୍‌ମାଷ୍ଟର ହୋ ହୋ କରି ହସି ଉଠିଲେ, ..."ଆଜିକାଲି ଟ୍ରେନ୍ ତ ଜନତାର ହାତମୁଠାରେ—ଇଚ୍ଛା କଲେ ଚାଲିବ ନ ହେଲେ ବନ୍ଦ, ପଡ଼ିରହିଲା—ଆଉ ଯଦି କେହି ପ୍ରତିବାଦ କରେ ତାହାହେଲେ ଚାଲିଲା ବନ୍ଧୁକ ନ ହେଲେ ବୋମା । କ'ଣ କହୁଛନ୍ତି କ୍ଷିତୀଶ୍ ବାବୁ ।"

କ୍ଷିତୀଶ୍ ଥରୁଟାଏ ଆଡ଼ ଆଖିରେ ସମୀର୍ ମୁହଁକୁ ଚାହିଁ ଦେଇ କହିଲା, "ହଁ—ପ୍ରାୟ ସେଇ ଅବସ୍ଥା ।" ତା' ପରେ ଷ୍ଟେସନ୍‌ମାଷ୍ଟର ସମୀର୍‌କୁ ଲକ୍ଷ୍ୟ କରି କହିଲେ, "ଆଚ୍ଛା କହନ୍ତୁନି ସମୀର୍ ବାବୁ, କ'ଣ ଅବସ୍ଥା ହୋଇଗଲା ? କଲିକତାରେ ତ ପ୍ରାୟ ପ୍ରତ୍ୟେକ ଦିନ କିଛି ନା କିଛି ଚାଲିଛି ।"

ସମୀର୍ କିଛି ସମୟ ଚୁପ୍ ରହିଯାଇ କହେ, "କଥା କ'ଣ ଜାଣନ୍ତି ? ଯା'ର ମୂଳ କାରଣ ହେଲା କେତେକ ଲୋକଙ୍କ ହାତରେ ଅନେକ ଟଙ୍କା ରହି ଯାଇଚି ଆଉ ଅନେକ ଲୋକଙ୍କ ପାଖରେ ମୋଟେ ଟଙ୍କା ନାହିଁ ।" ବିରକ୍ତରେ ଟିପ୍‌ପଣୀ କଲେ ମାଷ୍ଟର,

"ଆଉ ଏ ଖୁଣୀ, ଡକାୟତି ଫଳରେ କେମିତି ଯେ ସେ ଟଙ୍କା ଲୋକଙ୍କ ହାତକୁ ଆସିବ ସେ କଥା ମୁଁ ଅନେକ ଚିନ୍ତାକରି ମଧ୍ୟ ବୁଝିପାରୁ ନାହିଁ।"

ସମୀର୍ ନୀରବ ରହେ।

କ୍ଷିତୀଶ୍ ଚାହାର ପଇସା ଦବାପାଇଁ ବାହାରକୁ ବାହାରେ; କିନ୍ତୁ ସମୀର୍ ଆଦେଶରେ କ୍ଷିତୀଶ୍ ଠିଆ ହୋଇ ରହେ।

"କ୍ଷିତୀଶ୍ ତୋର ଯିବା ଦରକାର ନାହିଁ—ଚାହାବାଲା ଗିଲାସ ନବାକୁ ଆସିଲାବେଳେ ପଇସା ଦେଇଦେଲେ ଚଳିବ—ଆଉ ଯଦି ନିତାନ୍ତ ପ୍ରୟୋଜନ ପଡ଼େ ତାହାହେଲେ ମୁଁ ପଇସା ଦବାର ବନ୍ଦୋବସ୍ତ କରିବି।"

ସମୀର୍‌ର କଣ୍ଠସ୍ୱରରେ ଷ୍ଟେସନ୍ ମାଷ୍ଟର ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ଓ କହିଲେ, "ପଇସା ମୋର ଦବାର କଥା, ଆପଣମାନେ କାହିଁକି ଦେବେ।"

ସମୀର୍ ଅବସ୍ଥାଟାକୁ ସହଜ କରି ନବାକୁ କହେ, "ମୋର ଅନ୍ତରଙ୍ଗ ବନ୍ଧୁ କି ନା, ତେଣୁ ଆମ କଥାବାର୍ତ୍ତା ଉପରେ ଆପଣ କୌଣସି ଗୁରୁତ୍ୱ ଦେବେନାହିଁ।"

ତିନିଜଣଯାକ ହସି ଉଠନ୍ତି।

ଟ୍ରେନ୍ ଆସିବାର ଦ୍ୱିତୀୟ ଘଣ୍ଟି ବାଜି ଉଠିଲା।

କ୍ଷିତୀଶ୍ କହେ, "ଏଥର ଟିକେଟ୍ କରାଯାଉ।"

"ଆପଣ କ'ଣ କୁଆଡ଼େ ଯିବେନା କ'ଣ ? କୋଉଠିକି ?" ଷ୍ଟେସନ୍ ମାଷ୍ଟର କହନ୍ତି। ସମୀର କହେ, "ଆପଣମାନେ ବ୍ୟସ୍ତ ହେବେନାହିଁ—ଟିକେଟ୍ ମୁଁ କରିରଖିଚି।

କିନ୍ତୁ କେତେବେଳେ ?

ମୁଁ ପହଞ୍ଚିବା ମାତ୍ରକେ ଦୁଇଟା ଟିକେଟ୍ କାଟି ନେଇଥିଲି।

ଆପଣ ଏକାଥରକେ ଅନାଗତ ବିଧାତା, ଷ୍ଟେସନ୍‌ମାଷ୍ଟର ଟିପ୍‌ପଣୀ କରନ୍ତି। ଟ୍ରେନ୍‌ର ତୃତୀୟ ଘଣ୍ଟି ସନ୍ଧ୍ୟାରେ ଶାନ୍ତ ବାୟୁମଣ୍ଡଳ ବିଦୀର୍ଣ୍ଣ କରି ବାଜି ଉଠିଲା ଓ କ୍ଷିତୀଶ୍ ଏବଂ ସମୀର୍ ଷ୍ଟେସନ୍‌ମାଷ୍ଟରଙ୍କୁ ନମସ୍କାର କରି ଉଠିଲେ; କିନ୍ତୁ ପୂର୍ବ କ୍ରମର ବ୍ୟତିକ୍ରମ ହେଲାନାହିଁ। ଆଗେ ଆଗେ କ୍ଷିତୀଶ୍ ଓ ତା'ର ଦଶଗଜ ଦୂରରେ ସମୀର୍।

ସମୀର୍ ପଛପଟରୁ ନିର୍ଦ୍ଦେଶ ଦେଲା ଫାଷ୍ଟକ୍ଲାସ୍।

କ୍ଷିତୀଶ୍ ଓ ପଛେ ପଛେ ସମୀର୍ ଉଠିଲେ ଗୋଟିଏ ଫାଷ୍ଟକ୍ଲାସ୍ କମ୍ପାର୍ଟମେଣ୍ଟରେ।

ସେଇ ଦୁଇ ଜଣଙ୍କୁ ଛାଡ଼ିଦେଲେ ଆଉ ଜଣେ ହେଲେ ମଧ୍ୟ ଯାତ୍ରୀ ନାହିଁ ସେ ଡବାରେ।

ଓଃ, ଆଶ୍ୱସ୍ତିର ନିଶ୍ୱାସ ମାରିଲା ସମୀର୍ ।

କ୍ଷିତୀଶ୍ ବସିରହିଲା ବାର୍ଥର ଗୋଟାଏ କଣକୁ ନୀରବରେ ।

ଟ୍ରେନ୍ ଚାଲିବାକୁ ଆରମ୍ଭ କଲା ।

ଦୁଇଜଣ ଯାକ ନୀରବରେ ବସି ରହିଛନ୍ତି । ସେମାନଙ୍କୁ ଯିବାକୁ ହବ ଅନେକ ଦୂର । ମାଡ୍ରାସ ଏବଂ ଟ୍ରେନ୍ ସେଠି ପହଞ୍ଚିଲାବେଳକୁ ରାତିପ୍ରାୟ ଦୁଇଟା ବାଜି ଯାଇଥିବ । ତେଣୁ ଏଇ ଦୀର୍ଘ ସମୟ କାଟିବାର କ୍ଳାନ୍ତିରେ ଦୁଇଜଣ ଯାକ ଯାତ୍ରୀ ଆହୁରି ଅବସନ୍ନ ହୋଇ ପଡ଼ିଛନ୍ତି । କ୍ଷିତୀଶ୍ ନୀରବରେ ଚାହିଁ ରହିଚି ବାହାରର ସୂଚୀଭେଦ୍ୟ ଅନ୍ଧକାରକୁ ଏବଂ ସମୀର କେତେବେଳେ ବାହାରକୁ ଓ କେତେବେଳେ କ୍ଷିତୀଶ୍‌କୁ । ଟ୍ରେନ୍ ଚାଲିଚି ।

କ୍ଷିତୀଶ୍ କେବଳ ଚିନ୍ତା କରୁଛି ଏଇଟା ତା'ର ଜୀବନର ଶେଷ ବାଜି, କିଏ ଜାଣେ ସେ ହାରିବ କି ଜିତିବ ?

ସମୀର୍ ଭାବୁଚି ସେ ଜଣେ କର୍ତ୍ତବ୍ୟନିଷ୍ଠ ସିପାହୀ ଯିଏ ନିଖୁଣ ଭାବରେ ତା'ର କର୍ତ୍ତବ୍ୟ ପାଳନ କରି ଚାଲିଛି ।

କିନ୍ତୁ ଟ୍ରେନ୍ ଗୋଟାଏ ଏକଚକ୍ଷୁ ଦୈତ୍ୟ ପରି ତା'ର ଆଲୁଅରେ ରାତିକୁ ଦୁଇଭାଗ କରି ଦୁର୍ଦ୍ଧର୍ଷ ଗତିରେ ଆଗକୁ ମାଡ଼ି ଚାଲିଛି ।

କ୍ଷିତୀଶ୍ ଅତୀତରେ ଅନେକ ଶାସ୍ତିବିଧାନ ଦେଖିଚି କିନ୍ତୁ ସେ ଅନୁମାନ କରି ପାରୁନାହିଁ, ତାକୁ କାହିଁକି କଲିକତାକୁ ଟାଣି ନିଆ ଯାଉଛି । ଯଦି ମୃତ୍ୟୁ ହିଁ ତା'ର ଶାସ୍ତି ହୁଏ ତାହାହେଲେ ଏଇ ନିରୋଳା କମ୍ପାର୍ଟମେଣ୍ଟରେ ସମୀର୍ ଖୁସିରେ ସେ ଶାସ୍ତି ଦେଇ ପାରନ୍ତା । ଥରେ ଆଖି କଣରେ କ୍ଷିତୀଶ୍ ସମୀରକୁ ଲକ୍ଷ୍ୟ କରିନେଲା । ସେ ବାର୍ଥ ଉପରେ ନିଜର ଦୁଇ ଗୋଡ଼କୁ ଟେକିନେଇ ବେଶ୍ ଆରାମରେ ବସି ରହି ଖଣ୍ଡେ ସିଗାରେଟ ଟାଣୁଚି—କିନ୍ତୁ ବାଁ ହାତରେ । ତା'ର ଡାହାଣ ହାତଟା ତଥାପି ସେଇ ଧୂସର ଚାଦରର ଅଦୃଶ୍ୟ ଗଭୀର ମଧରେ ଲୁକ୍କାୟିତ ଅଛି ।

ନା, ସମୀର୍ ଜଣେ ଅନୁରକ୍ତ, ଅବିଚଳିତ, କର୍ତ୍ତବ୍ୟନିଷ୍ଠ ସୈନିକ; କିନ୍ତୁ କ୍ଷିତୀଶ୍‌କୁ ତ ବଞ୍ଚିବାକୁ ପଡ଼ିବ । ଠିକ୍ ସମୀର ପରି କ୍ଷିତୀଶ୍‌ର ମଧ ଗୋଟାଏ ଜୀବନ ଯାହାକୁ ଏକ ଆଦର୍ଶ ସୈନିକର ପାଦତଳେ ଉଜାଡ଼ି ଦେଇ ହୁଏନା ।

ସାମାନ୍ୟ ଥଣ୍ଡା ପଡ଼ିଚି । କିନ୍ତୁ ନିଜକୁ ଘୋଡେଇବା ପାଇଁ କ୍ଷିତୀଶ୍ ପାଖରେ ଖଣ୍ଡେ ଚାଦର ମଧ ନାହିଁ । ରିଭଲଭର୍‌ଟାକୁ ଘୋଡ଼େଇ ରଖିବା ପାଇଁ ଗୋଟାଏ ବାହାନା ହଉ ପଛେ କାଣ୍ଡିଆ ଚାଦରଟା ସମୀରକୁ ଯଥେଷ୍ଟ ଉଷ୍ଣତା ଦେଉଥିବ ।

କିଛିଟା ଫେରି ପାଇବା ଆଶାରେ କ୍ଷିତୀଶ୍ ତା'ର ଦୁଇହାତ ଆଣି ଛାତି ଉପରେ ଛକି ଦେଲା ।

ସମୀର୍ କିନ୍ତୁ ତଥାପି ନିର୍ବେଦ ହେଇ ବସି ରହିଛି... ଯେମିତି ସିଏ ଗୋଟାଏ ମୂଲ୍ୟବାନ୍ ପଶୁକୁ ଗୋଟାଏ ସ୍ଥାନରୁ ଆଉ ଗୋଟାଏ ସ୍ଥାନକୁ ଅତି ସତର୍କତାର ସହିତ ସ୍ଥାନାନ୍ତରିତ କରୁଚି ।

କ'ଣ କରାଯାଇପାରେ ? କ୍ଷିତୀଶ୍ ସବୁଗୁଡ଼ାକ ଅଲଟରନେଟିଭ୍ ହିସାବ କରିଗଲା ମନେ ମନେ । ସମୀରକୁ ଅତର୍କିତ ଭାବରେ ଆକ୍ରମଣ କରିବା ସମ୍ଭବ ନୁହଁ କାରଣ ରିଭଲ୍‌ଭରର ଗୁଳିଠାରୁ ଆହୁରି କ୍ଷୀପ୍ର ଭାବରେ କୌଣସି ମନୁଷ୍ୟ କାର୍ଯ୍ୟ କରିବା ସମ୍ଭବ ନୁହଁ । ହୁଏତ ଆସ୍ତେ ଆସ୍ତେ ସେ କମ୍ପାର୍ଟମେଣ୍ଟର ଦୁଆର ଖୋଲି ଦେଇପାରେ । କିନ୍ତୁ ତା'ପରେ ? ପଚାଶ ମାଇଲ ବେଗରେ ଚାଲୁଥିବା ଟ୍ରେନ୍‌ରୁ ଡେଇଁପଡ଼ି ବଞ୍ଚିବାର ସମ୍ଭାବନା ଖୁବ୍ କମ୍ । ଚେନ୍ ଟାଣି ଟ୍ରେନ୍ ଅଟକାଇ ଲାଭ ନାହିଁ, କାରଣ ଟ୍ରେନ୍ ରହିବା ପୂର୍ବରୁ ସମୀର ତା'ର କାର୍ଯ୍ୟ କରିସାରି ଅନ୍ୟ ଏକ କମ୍ପାର୍ଟମେଣ୍ଟକୁ ଓହ୍ଲେଇ ଯାଇପାରେ ଅବଲୀଳାକ୍ରମେ ।

ଝର୍କାର ଗୋଟାଏ କାଚ ପ୍ରଚଣ୍ଡ ଶବ୍ଦ କରି ପଡ଼ିଗଲା ଓ ସମୀର ତା'ର ସିଗାରେଟ୍‌ଟାକୁ ବାହାରକୁ ଫିଙ୍ଗିଦେଲା ଏବଂ ଚାଦରଟାକୁ ଆହୁରି ସାନ୍ଦ୍ର କରି ନିଜ ଦେହ ଉପରେ ଭିଡ଼ି ଧରିଲା ।

କ୍ଷିତୀଶ ଏକ୍‌ସପ୍ଲୋର କରୁଚି—ଆଃ ! ଆଉ ଯଦି କେତେଜଣ ସହଯାତ୍ରୀ ଥାଆନ୍ତେ ତାହାହେଲେ ଗୋଟାଏ ଚମତ୍କାର ଉପାୟ ଥିଲା । ସେ ବାଥରୁମ୍ ଭିତରକୁ ଯାଇ ଭିତରୁ କବାଟ ବନ୍ଦକରି ଚିତ୍କାର କରି ସହଯାତ୍ରୀ ମାନଙ୍କୁ ଜଣେଇ ଦିଅନ୍ତା ଯେ' ସେଇ ଚାଦର ଘୋଡ଼ିହୋଇ ବସିଥିବା ନିରୀହ ଯାତ୍ରୀଟିର ହାତରେ ଗୋଟାଏ ଲୋଡେଡ୍ ରିଭଲଭର୍ ଅଛି ଯାହାର ଭୟ ଦେଖାଇ ସେ ମୋତେ ଜୋର କରି ନେଇ ଯାଉଛି । ତାହାହେଲେ ହୁଏତ ଚେନ୍ ଟଣା ଯାଆନ୍ତା ବା ଷ୍ଟେସନରେ ଆର.ପି.ଏଫ୍‌ର ସାହାଯ୍ୟ ମିଳି ପାରନ୍ତା । କିନ୍ତୁ ଜଣେ ହେଲେ ଯାତ୍ରୀ ନ ଥିବା ସମୟରେ ତା' ତ ସମ୍ଭବ ନୁହେଁ; କିନ୍ତୁ କାହିଁକି ? ବର୍ତ୍ତମାନ ଯଦି କ୍ଷିତୀଶ ବାଥ୍‌ରୁମ୍‌କୁ ଯାଇ ଭିତରୁ କବାଟ ବନ୍ଦ କରି ରଖେ ତାହାହେଲେ କ'ଣ କରି ପାରିବ ସମୀର ? ଷ୍ଟେସନ ଆସିଲେ ସେ ଝରକା ବାଟେ ଲୋକ ଡାକି କିଛି ଗୋଟାଏ ପ୍ରତିକାର କରି ପାରିବା ନିଶ୍ଚୟ ସମ୍ଭବ । ୱାଣ୍ଡରଫୁଲ୍ ! କ୍ଷିତୀଶ୍‌ର ମୁହୂର୍ତ୍ତକ ପାଇଁ ମନେ ହେଲା ସେ ଯେପରି ହାତରେ ଆକାଶର ଚନ୍ଦ୍ରମା ପାଇଚି । କେବଳ ସୁଯୋଗକୁ ଅପେକ୍ଷା କରି ରହିଲା କ୍ଷିତୀଶ୍ । ସମୀର ତଥାପି ନୀରବରେ ଚାଦର ଘୋଡ଼ିହୋଇ ପଡ଼ି ରହିଚି । କିନ୍ତୁ ତା'ର ଡାହାଣ ହାତଟାକୁ ବିଶ୍ୱାସ କରାଯାଏନା ।

କ୍ଷିତୀଶ୍ ତା'ର ବାର୍ଥ ଉପରୁ ଠିଆ ହୋଇପଡ଼ି ବାଥ୍‌ରୁମ୍ ଆଡ଼କୁ ଅଗ୍ରସର ହେଲା ଏବଂ ତତ୍‌କ୍ଷଣାତ୍ ସମୀର ତା'ର ଆରାମଦାୟକ ଆଶ୍ରୟସ୍ଥଳୀରୁ ନିଜକୁ ମୁକ୍ତ କରି ଠିଆ ହୋଇ ପଡ଼ି କହିଲା, ''କ୍ଷିତୀଶ୍, ବାଥ୍‌ରୁମ୍ ଯିବୁ ବୋଧହୁଏ ?''

ହଁ—କ୍ଷିତୀଶ୍ କହିଲା ଅତି ସାଧାରଣ ଭାବରେ ।

''କିନ୍ତୁ କ୍ଷିତୀଶ୍'', ସମୀର କହେ, ''ଯଥେଷ୍ଟ ଅଭଦ୍ରତା ହେଲେ ମଧ୍ୟ ମତେ ତୋ ସହିତ ବାଥ୍‌ରୁମ୍ ଭିତରକୁ ଯିବାକୁ ପଡ଼ିବ ।''

''ହ୍ୱାଟ୍ !'' ଆକାଶରୁ ପଡ଼ିଲା ପରି କ୍ଷିତୀଶ୍ କହେ, ''ତମେମାନେ ଏତେ ତଳକୁ ଯାଇ ପାରୁଛ ?''

ସମୀର ସାମାନ୍ୟ ଲଜ୍ଜିତ ହେଇ କହେ, ''ଏ ବିଷୟରେ ମତେ ଆଗରୁ ସତର୍କ କରି ଦିଆ ଯାଇଚି ତେଣୁ ମୁଁ ନିରୁପାୟ ।''

ବିରକ୍ତିରେ କ୍ଷିତୀଶ୍ କହେ, ''ଓ.କେ.—କମ୍ ଆଣ୍ଡ୍ ୱାଚ୍'' ଦୁହେଁ ବାଥ୍‌ରୁମ୍ ଭିତରକୁ ଯାଆନ୍ତି ଓ କିଛି ସମୟ ପରେ ଫେରି ଆସି ନିଜ ନିଜର ନିର୍ଦ୍ଦିଷ୍ଟ ସ୍ଥାନରେ ବସନ୍ତି ।

ତା'ର ପ୍ଲାନ୍‌ଟା ଫେଲ୍ ମାରିଗଲା ବୋଲି ଯେତେ ନୁହଁ, ତା'ଠାରୁ ବେଶୀ ଅପମାନରେ ଓ ଘୃଣାରେ କ୍ଷିତୀଶ୍‌ର ମନ ଓ ଦେହ ବିଷାକ୍ତ ହୋଇ ଉଠିଲା ଏବଂ ସେ ଆହୁରି ଜୋରରେ ହାତ ଉପରେ ହାତ ଛକି ଦେଇ ବସି ରହିଲା ଗୋଟାଏ ନିରୁପାୟ, ଅସହାୟ, ପଶୁ ପରି ।

ସମୀର ଠିକ୍ ପୂର୍ବ ପରି ନିରୁଦ୍‌ବିଗ୍ନ ।

ସମୀରର ଏଇ ଶାନ୍ତ, ଅବିଚଳିତ ଅଥଚ ପ୍ରତିଜ୍ଞାବଦ୍ଧ ସୈନିକର ଅଭିନୟରେ କ୍ଷିତୀଶ୍ ସତ ସତକୁ ଉତ୍‌କ୍ଷିପ୍ତ ହୋଇ ଉଠିଲା ମନେ ମନେ । ମୃତ୍ୟୁକୁ ସେ ଏତେ ବେଶୀ ଭୟ କରେନା, ଯାହାକି ତାକୁ କ୍ରୀତଦାସ ହବାକୁ ବାଧ୍ୟ କରିବ ।

ଟ୍ରେନ୍‌ର ଶବ୍ଦକୁ ବଢ଼େଇ ଦେଇ ଶୁଣାଗଲା କ୍ଷିତୀଶ୍‌ର ଚିତ୍କାର, ''ମତେ କାହିଁକି ନିଆ ଯାଉଚି ମୁଁ ଜାଣିପାରେ ?''

ସମୀର ସାମାନ୍ୟ ବିଚଳିତ ହୋଇ ଉଠିଥିଲା କ୍ଷିତୀଶ୍‌ର ଅଚାନକ ଚିତ୍କାରରେ । ସେ କେବଳ କହିଲା, ''ତୁ ଜାଣୁ କ୍ଷିତୀଶ୍, ମୁଁ ଜଣେ କର୍ମଚାରୀ, ଯାହାର ପ୍ରଶ୍ନ କରିବା ବା ଶେଷ ଉଦ୍ଦେଶ୍ୟ ଜାଣିବାର ଅଧିକାର ନାହିଁ ।''

ବିଦ୍ରୂପ କଲା କ୍ଷିତୀଶ୍—କର୍ମଚାରୀ ନୁହଁ—କ୍ରୀତଦାସ Slave ଦାଟ୍‌ସ ଦି ପ୍ରପର ୱାର୍ଡ଼ ।

ସ୍ଲେଭ୍ ! ସମୀର ପଚାରେ ।

ଲଜ୍ଜା, ଅପମାନ, ଘୃଣାରେ କ୍ଷିତୀଶ୍ର ଦେହରେ ବେପଥୁ ଆସିଛି । ସେ ତତ୍କ୍ଷଣାତ୍ ଜବାବ ଦିଏ—ସ୍ଲେଭ୍ ! ତା'ତ ଅନେକ ଭଲ । ତମେ ସବୁ ହଉଚ ଟୁଲ୍ (Tool) ।

ଆଣ୍ଡ ଦାଟ୍ ଇଜ୍ ବ୍ଲାଇଣ୍ଡ ।

ସମୀର ପ୍ରାୟ ସ୍ୱଗତୋକ୍ତି କରେ– ''ତୋ'ର ଯାହା ଇଚ୍ଛା କହିଯା ।'' ତା'ପରେ ଦୁଇଜଣଯାକ ନୀରବ ।

ଟ୍ରେନ୍ ଚାଲିଚି ନିରବଚ୍ଛିନ୍ନ ଭାବରେ । ମନେହୁଏ ଯେମିତି ଆଗ ଷ୍ଟେସନ୍ ଆଉ ଆସିବ ନାହିଁ ।

କ୍ଷିତୀଶ୍ ପ୍ରଥମେ ଆରମ୍ଭ କରେ, ''ମୁଁ ଖୁବ୍ ଦୁଃଖିତ ସମୀର—ତତେ ହୁଏତ ଏସବୁ ମୋର କହିବା ଉଚିତ୍ ନ ଥିଲା । କିନ୍ତୁ ମୋର ଉପାୟ ନାହିଁ । ମୁଁ ନାଜୀ କନ୍‌ସେଣ୍ଟ୍ରସନ୍ କ୍ୟାମ୍ପ୍ ବା ସୋଭିଏତ୍ ଲେବର୍ କ୍ୟାମ୍ପ୍ କଥା ବହିରେ ପଢ଼ିଚି—ସେଠି ମଧ୍ୟ ଅଭିଯୁକ୍ତକୁ ମାରିବା ପୂର୍ବରୁ ତା'ର ନିଜର କଥା କହିବାକୁ ଦିଆଯାଏ । କିନ୍ତୁ ଭାରତବର୍ଷରେ ମୁଁ ସେତିକିରୁ ମଧ୍ୟ ବଞ୍ଚିତ ହେବି ।

ସମୀର କହେ—ହୁଏତ କଲିକତାରେ ତମକୁ ତମର ବକ୍ତବ୍ୟ କହିବାକୁ ଦିଆଯିବ ।

ଷ୍ଟୁପିଡ୍ ! ଜବାବ ଦିଏ କ୍ଷିତୀଶ୍—ମୁଁ ଗଧିଆ ଆଉ ମେଷ ଶାବକର ଗଳ୍ପ ଅନେକ ପିଲାଦିନୁ ପଢ଼ିଚି । ଯେଉଁମାନେ ମୋର ରାୟ ଲେଖି ସାରିଛନ୍ତି ସେମାନଙ୍କ ଆଗରେ ମୋର ଜମାନବନ୍ଦୀ ଦବା ଗୋଟାଏ ପ୍ରହସନ—ବିଡ଼ମ୍ବନା ।

ତା' ଅବଶ୍ୟ ଠିକ୍—ସମୀର ଏକମତ ହୁଏ ।

''କିନ୍ତୁ ସମୀର,'' କ୍ଷିତୀଶ୍ର କଣ୍ଠସ୍ୱର କରୁଣ ଓ ଆର୍ଦ୍ର ''ମତେ କ'ଣ ଦଳେ ମୁଖାପିନ୍ଧା ଲୋକ ବିଚାର କରିବେ ଯେଉଁମାନଙ୍କର ଚରିତ୍ର, ପ୍ରକୃତି, ବିଷୟରେ ମୁଁ ସମ୍ପୂର୍ଣ୍ଣ ଅଜ୍ଞ । ତମେମାନେ ପରା କହ ଜନତାର ବିଚାରାଳୟ କଥା ! ତମେମାନେ ପରା କହ ତମେ ମଣିଷକୁ ବୁଝିଚ—ତମେମାନେ ପରା କହ ତମେ ମଣିଷର ମଙ୍ଗଳ ପାଇଁ ଏଇ କୃଚ୍ଛ୍ର ସାଧନା କରୁଛ—ତମେମାନେ ପରା କୁହ ଜନତାର ବୁଦ୍ଧି ତଥାକଥିତ ବୁଦ୍ଧିମାନ ବୁର୍ଜୁଆ ଠାରୁ ଅନେକ ବେଶୀ ଚମତ୍କାର—ତାହାହେଲେ ମତେ କାହିଁକି ନଉଛ ସେମାନଙ୍କ ପାଖକୁ ? ଆସ—ମଇଦାନରେ ସଭା ଡାକିବା—ସେମାନଙ୍କ ରାୟ ନବା—ଆଉ ସେମାନଙ୍କ ରାୟରେ ମୁଁ ଫାଶୀ ପାଇବାକୁ ପ୍ରସ୍ତୁତ; କିନ୍ତୁ ଦଳେ ଫାନାଟିକ୍ ସାଡ଼ିସଟ୍‌ଙ୍କ ବିଚାରରେ ମୁଁ ପାଞ୍ଚଟଙ୍କା ଜୋରିମାନା ଦବାକୁ ପ୍ରସ୍ତୁତ ନୁହେଁ । ଏଗ୍ରିଡ୍''—ଚିତ୍କାର କରେ କ୍ଷିତୀଶ୍ ।

ସମୀର ମୁହଁ ତଳକୁ କରି ନୀରବ ହୋଇ ବସିରହେ ।

ଚୁପ୍ ରହିଲୁ ଯେ ସମୀର—ମୁଁ ଜାଣେ ତୁ ତ ପ୍ରକୃତରେ ସ୍ଲେଭ୍ ନୁହଁ—ତୁ ତ ଟୁଲ୍ ନୁହଁ—ତାହାହେଲେ ଜବାବ୍ ଦେବାକୁ ପଛଉଛୁ କାହିଁକି ?

ସମୀର କେବଳ କହେ, ''ତୁ ଉତ୍ତେଜିତ କ୍ଷିତୀଶ୍—ଟିକିଏ ବିଶ୍ରାମ ନେ ।''

ବିଶ୍ରାମ ଅନେକ ନେଇଚି—ଛଅମାସ ହେଲା ବିଶ୍ରାମ ନେଲି—ଆଉ ମୃତ୍ୟୁପୂର୍ବରୁ ବିଶ୍ରାମ ନ ନେଲେ ଚଳିବ; କିନ୍ତୁ ମୁଁ ଯା'ର ଗୋଟାଏ ସମାଧାନ ଚାହେଁ ତୋ ସାଙ୍ଗରେ । ମୁଁ ସ୍ପଷ୍ଟ କହି ଦବାକୁ ଚାହେଁ ଯଦି ନେତାର ନିର୍ଦ୍ଦେଶ ଭୁଲ ହୁଏ, ତାହାହେଲେ ଯେ କୌଣସି ସୈନିକର ସେ ନିର୍ଦ୍ଦେଶକୁ ଉପେକ୍ଷା କରିବାର ଅଧିକାର ଅଛି ଓ ତାହା ସବୁଦିନ ରହିବ ।

କିନ୍ତୁ ସେ କଥା ତ ଆମର ଅଭିଧାନରେ ନାହିଁ—ସମୀର କହେ ।

''ଫରଗେଟ୍ ଇଟ୍—ତମର ଅଭିଧାନ—ତମେ କିଏ ? ତମେ ଜନତାର ଏକ ଛୋଟ ଭଗ୍ନାଂଶ—ଏତେ ଛୋଟ ଯେ ତାକୁ ଗାଣିତିକ ସଙ୍କେତରେ ପ୍ରକାଶ କରିବା ସମ୍ଭବ ନୁହେଁ । ତମର ଯେପରି ଏକ ଅଭିଧାନ ଅଛି ଠିକ୍ ସେହିପରି ମୋର ଓ ମୋ ପରି ଅନେକଙ୍କର ଅନ୍ୟ ଏକ ଅଭିଧାନ ଥାଇପାରେ, ସେ କଥା ଭୁଲି ଯାଉଚ କାହିଁକି ତମେମାନେ ?''

ସମୀର ନୀରବ ।

କିନ୍ତୁ କ୍ଷିତୀଶ୍ କଥା କହିବାର ପ୍ରଥମ ସଙ୍କୋଚ ଭାଙ୍ଗିଯିବା ପରେ ଅନର୍ଗଳ କହି ଚାଲିଚି ।

''ତତେ କେବଳ ସ୍ମରଣ କରେଇ ଦଉଚି ସେଇ ପୁରୁଣା କଥା । ଯେଉଁଠାରୁ ତୁ ଆଉ ମୁଁ ଅଲଗା ହେଇ ଯାଇଥିଲେ ଅନେକ ଦିନ ଧରି । ତୁ ସେ'ଦିନ ଅପରାହ୍ଣରେ ଗୋଟିଏ କୋମଳମତି କିଶୋରକୁ ଆଣି ମୋ ଦାୟିତ୍ୱରେ ଛାଡ଼ି ଦେଇ ଝଡ଼ ପରି ବାହାରି ଚାଲିଗଲୁ । କାରଣ ତୋର—ତୋର ନୁହଁ—ତୋ'ର ବସ୍ (Boss) ମାନଙ୍କର ଅନେକ ଟଙ୍କାର ପ୍ରୟୋଜନ ଥିଲା ଏବଂ ତୁ ଫେରି ନ ଥିଲୁ ଦୀର୍ଘ ଛତିଶ ଘଣ୍ଟା ଧରି—ସେ କଥା ତୋର ମନେ ଅଛି ସମୀର ?''

''ମନେ ଅଛି—ଆଉ ଠିକ୍ ସେଇ କାରଣରୁ ମୁଁ ତତେ ରିଭଲଭର୍‌ର ମୁନରେ ନେଇ ଯାଉଚି କଲିକତାକୁ ଆଉ ଥରେ ।''

''ସେ କଥା ଛାଡ୍—ମୁଁ ତୋ ରିଭଲଭର୍‌ରେ ମରିବି କି 'ଲାମା' ଆଉ 'ଡୁମା'ଙ୍କର ରିଭଲଭର୍ ଗୁଳିରେ ମରିବି ସେ କଥା ମୁଁ ଚିନ୍ତା କରୁ ନାହିଁ ଆଜି—ମୁଁ ଖାଲି ଭାବୁଚି ମୋ ଅବସ୍ଥାରେ ତୁ ଥିଲେ କ'ଣ କରି ପାରିଥାଆନ୍ତୁ । ତୁ...''

''ମୁଁ କିନ୍ତୁ ତୁ ଫେରି ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିଥାଆନ୍ତି । କୋଡ଼ିଏ ହଜାର ଟଙ୍କା ପୁରସ୍କାର ପାଇବା ଲୋଭରେ ମୁଁ ପିଲାଟିକୁ ଛାଡ଼ି ଦେଇ ନ ଥାନ୍ତି ।'' ସମୀରର କଣ୍ଠସ୍ୱର ସ୍ପଷ୍ଟ ଓ ଦୃଢ଼ ।

''କୋଡ଼ିଏ ହଜାର ଟଙ୍କାର ପୁରସ୍କାର ! ମାନେ !''

''ହଁ, ଦେଶୀ ବିଦେଶୀ ସବୁ ଖବର କାଗଜ ବେଶ୍ ବଡ଼ ବଡ଼ ହରଫରେ ପୁରସ୍କାର ଘୋଷଣା କରିଥିଲେ ଏ କଥା ପ୍ରତ୍ୟେକ କଲିକତାବାସୀ ଜାଣେ ।''

''ପ୍ରଥମ କଥା ମୁଁ ସେ ସମୟରେ ଖବରକାଗଜ ମୋଟେ ପଢ଼ିବାର ସୁବିଧା ପାଇ ନ ଥିଲି—କାରଣ ଦୀର୍ଘ ଛତିଶ ଘଣ୍ଟା ମୁଁ ମଧ୍ୟ ସେ ଘରୁ ବାହାରି ପାରି ନ ଥିଲି—ଆଉ ତା' ଛଡ଼ା ସେମାନେ ଯେ... ମୁଁ ଟଙ୍କା ନବା କଥା ଭାବିପାରୁଛ ତାହା ପ୍ରମାଣ କରୁଚି ଯେ ତମେମାନେ ତମ ଅଭିଧାନର ପୁଞ୍ଜିପତି ବା ବୁର୍ଜୁଆମାନଙ୍କଠାରୁ କୌଣସି ଗୁଣରେ ପୃଥକ୍ ନୁହଁ ।''

''କିନ୍ତୁ ଏ କଥା ଭାବିବା କ'ଣ ଖୁବ୍ ସ୍ୱାଭାବିକ ନୁହେଁ ?'' ସମୀର କହେ । ''ହଁ କହିଲି ତ ଏକା କଥା—ଠିକ୍ ବୁର୍ଜୁଆମାନଙ୍କ ପରି ସେମାନଙ୍କର ସବୁ କଥାର ଉତ୍ସ ହେଲା ଟଙ୍କା—ଟଙ୍କା, ଆହୁରି ଟଙ୍କା—ତେଣୁ ମୁଁ ଟଙ୍କା ପାଇଚି ବୋଲି ଭାବିବା ସେମାନଙ୍କ ପକ୍ଷରେ ଖୁବ୍ ସ୍ୱାଭାବିକ । ଟ୍ରେନ୍‌ଟା ଗୋଟାଏ କ'ଣ ଷ୍ଟେସନରେ ଅଟକିଲା । ରାତି ଅନେକ ହେଲାଣି । ଗୋଟାଏ କଫି ହକ୍‌ରର ଚିତ୍କାର ଛଡ଼ା ଆଉ କିଛି ଶୁଣା ଯାଉନାହିଁ । ପାଟିକରି ସମୀର ଡାକିଲା, ଏଇ କଫି, ଏଠି ଦି'କପ୍ ।

କଫିବାଲା ଆସି ଖୁରୀରେ ଦୁଇକପ୍ କଫି ଦୁଇଜଣଙ୍କୁ ଦେଇଗଲା । ଗରମ କଫି କପ୍‌ରେ ଓଠ ଲଗେଇ କ୍ଷିତୀଶ୍ ଦୁଇଢୋକ କଫି ଖାଇଦେଲା । ତା'ପରେ ହସି ହସି କହିଲା, ''ସମୀର୍, ମତେ ଆଶ୍ଚର୍ଯ୍ୟ ଲାଗୁଛି ଯେ ତୋର Boss ମାନେ ମତେ କଫି ଦବା ବିଷୟରେ ତତେ ସତର୍କ କରିଦେଇ ନାହାନ୍ତି ।''

ମାନେ ?

ମାନେ ସିମ୍ପଲ୍ ! ମୁଁ ଏଇ ଗରମ କଫିତକ ହଠାତ୍ ତୋ ମୁହଁକୁ ଛାଟି ଦେଇ ପାରେ ଓ ତତେ କାବୁ କରି ଦେଇପାରେ ସେଇ ସୁଯୋଗରେ । ସମୀର୍ ନୀରବ ରହିଲା, ଯେପରି ସେ ଏମିତି ଗୋଟାଏ ସମ୍ଭାବନାକୁ ପୂରାପୂରି ଅସ୍ୱୀକାର କରି ପାରୁନାହିଁ !

କଫି ଖାଉ ଖାଉ ଅନ୍ୟମନସ୍କ ଭାବରେ କ୍ଷିତୀଶ୍ କହିଚାଲିଥାଏ—କିନ୍ତୁ ସମୀର ତମେମାନେ ଖାଲି ଟଙ୍କାର କଥା ଚିନ୍ତା କରୁଚ; କିନ୍ତୁ ଟଙ୍କାର ଉର୍ଦ୍ଧରେ ଯେ ମଣିଷର ଜୀବନ ସେ କଥା ତମେମାନେ ପୂରାପୂରି ଭୁଲିଯାଉଚ । ମୁଁ ତ କହିବାର ଶୁଣିଚି ଯେ

ତମେ କୁଆଡ଼େ ରାଜ୍ୟସାରା, ଖୁଣୀ, ଡକାୟତି ନିର୍ବିକାର ଭାବରେ କରିଯାଉଛ ଜନସାଧାରଣଙ୍କର ଜୀବନକୁ ଉନ୍ନତ କରିବାକୁ—କିନ୍ତୁ ଇତିମଧ୍ୟରେ ତମେ ତମର କେନ୍ଦ୍ରୀୟ ଉଦ୍ଦେଶ୍ୟରୁ ଯେ ବିଚ୍ୟୁତ ହେଲଣି ସେ କଥା ସ୍ମରଣ ରଖିବ ?

ସେ ବିଷୟରେ ମୋଆଡୁ "ନୋ କମେଣ୍ଟସ୍ ।"

ତା'ତ ହବାର କଥା—କ୍ଷିତୀଶ୍ କହେ; କିନ୍ତୁ ସେଦିନ ମୁଁ ଯଦି ତତେ ସେଇ ପିଲାଟିର ଦାୟିତ୍ୱ ଦେଇ ତୋ' ପରି ଟଙ୍କା ସଂଗ୍ରହ କରିବାକୁ ଯାଇଥାନ୍ତି ତାହାହେଲେ ଆଜିର ପରିସ୍ଥିତି ଠିକ୍ ଓଲଟା ହେଇ ଯାଇଥାଆନ୍ତା, ଅର୍ଥାତ୍ ମୁଁ ତତେ ରିଭଲଭର୍ ମୁନରେ କଲିକତାକୁ ଟାଣି ନଉଥାଆନ୍ତି...

ସମୀର୍ ନୀରବରେ କ୍ଷିତୀଶ୍‌କୁ ଚାହିଁ ଚାହିଁ ଶୁଣୁଥିଲା ।

ସକାଳ ସାତଟାବେଳୁ ପିଲାଟାକୁ .୧୦୪ ବା ୧୦୫ ଡିଗ୍ରୀ ଜର ଏବଂ ତାକୁ କିଛି ଖୁଆଇବା ସମ୍ଭବ ନୁହଁ । ନା ବାର୍ଲି ନା ପାଉଁରୁଟି—କିଛି - କିଛି ନୁହେଁ ଏବଂ ଦିନ ବାରଟା ଗୋଟାଏ ବେଳକୁ ପିଲାଟାର ଡିଲିରିୟମ୍ ଷ୍ଟେଜ୍ । ମୋ ପକ୍ଷରେ ପିଲାଟାକୁ ଛାଡ଼ି ପଳେଇଯିବା ସମ୍ଭବ ନୁହଁ ବା ତା' ପାଖରେ ନିର୍ବେଦ ହେଇ ଅସହାୟ ହେଇ ବସି ରହିବା ମଧ୍ୟ ସମ୍ଭବ ନୁହଁ ।

ସେ କଥା ମୁଁ କେମିତି ଜାଣିବି କହ କ୍ଷିତୀଶ୍ ?

ଆଉ ଠିକ୍ ସେତିକିବେଳେ ପିଲାଠାରୁ ଫୋନ ନମ୍ବର ନେଇ ତା'ର ବାପ ମା'କୁ ଫୋନ୍ କରି ମୁଁ ପିଲାକୁ ଦେଇ ଆସିଚି । କୋଡ଼ିଏ ହଜାର ଟଙ୍କାର ପୁରସ୍କାର ପାଇଁ ନୁହଁ । ମୋ ପକ୍ଷରେ ପିଲାଟାକୁ କୋଲଡ୍ ବ୍ଲଡ୍‌ରେ ମାରିଦବା ସମ୍ଭବ ହେଇପାରିଲା ନାହିଁ ବୋଲି । ସମୀର୍‌ର ମୁହଁ ଅପେକ୍ଷାକୃତ ଶାନ୍ତ ଆଉ ନରମ ହେଇ ଆସିଚି । ସେ କିଛି କହୁ ନାହିଁ । ବୋଧହୁଏ ତା'ର ତଣ୍ଟି ପାଖରେ କ'ଣ ଗୋଟାଏ ଅଟକି ଯାଇଛି ।

ସେଥିପାଇଁ ମୁଁ କହେ ଅନେକ ବଡ଼ ବଡ଼ ଆଦେଶ ଦିଆଯାଇପାରେ; କିନ୍ତୁ ସେ ଆଦେଶକୁ ନିଜେ ପାଳନ କରିବା ମଧ୍ୟ ବେଳେ ବେଳେ ସମ୍ଭବ ହୁଏ ନାହିଁ । ଅନେକ ବର୍ଷଧରି ଅନ୍ୟର ଆଦେଶ ପାଳନ କଲୁ, ଏଥର ଟିକିଏ ପ୍ରଶ୍ନ କରିବାକୁ ଶିଖ । ଏଥର କଥା କହିବାକୁ ଶିଖ । ପଚାର ତମର ବସ୍‌ମାନଙ୍କୁ, ଏଇ ହେତୁହୀନ ମର୍ଡର ଆର୍ସନ୍ ଲୁଟ୍ ପଛରେ ଭାରତବର୍ଷର ଜନତାର ଭାଗ୍ୟ ପରିବର୍ତ୍ତିତ ହବାର ଇଙ୍ଗିତ ପ୍ରକୃତରେ ଅଛି କି ନାହିଁ ।

ସମୀର୍ କହେ—ସେ କଥା କିନ୍ତୁ ପଚାରିବାର ଅଧିକାର ଆମର ନାହିଁ କ୍ଷିତୀଶ୍ । ତତ୍‌କ୍ଷଣାତ୍ କୁହେ, "ସେଇଥିପାଇଁ କହିଥିଲି ସ୍ଲେଭ୍, ଟୁଲ୍—ସେମାନେ ବ୍ରେନ୍‌ୱାସ୍ କରି ତମର ଶେଷ ଇଚ୍ଛାଶକ୍ତି ବା ଚିନ୍ତା କରିବାର ଶକ୍ତିଟିକୁ ନିଃଶେଷ କରି ଧୋଇ

ଦେଇଛନ୍ତି—ଆଉ ମୋର ବିଶ୍ୱାସ କୌଣସି ଚିନ୍ତାଶକ୍ତି-ଶୂନ୍ୟ-କାଓ୍ୱାର୍ଡ୍ ଜଣେ ଦେଶପ୍ରେମୀ ବା ପାଟ୍ରିଅଟ୍ ହେଇପାରେ ନାହିଁ ।''

ସମୀର୍ ତଥାପି ନୀରବ ।

କ୍ଷିତୀଶ୍ ଆଉ କିଛି କଥାର ଉତ୍‌ଥାପନ ମଧ୍ୟ କଲା ନାହିଁ ।

ଟ୍ରେନ୍ ଚାଲିଚି ତା'ର ଏକଟଣା ସଙ୍ଗୀତ ଗାଇ ଗାଇ ।

ମଝିରେ ମଝିରେ ଟ୍ରେନ୍‌ର ତୀବ୍ର ହୁଇସିଲ୍ ଶୁଣିଲେ ମନେହୁଏ ଯେମିତି ଏଇ ଟ୍ରେନ୍ ତା'ର ଆରୋହୀମାନଙ୍କୁ କେଉଁ ଏକ ଦୈତ୍ୟପୁରୀକୁ ନେଇଯାଇଚି । ତାର ଛାତି ଉପରେ ଦୁଇଟା ହାତ ଛକି ଦେଇ କ୍ଷିତୀଶ୍ ଦୋହଲୁଚି ଏପଟକୁ ସେପଟ ଟ୍ରେନ୍‌ର ଦୋଳନ ସହିତ ତାଳ ମିଳେଇ ।

କ୍ଷିତୀଶ୍‌ର କିଛି ସମୟପାଇଁ ମନେ ହେଇଥିଲା ସମୀରକୁ ବୋଧହୁଏ ନିଦ ଲାଗିଯାଇଛି; କିନ୍ତୁ ନିରୀକ୍ଷଣ କରି ଦେଖିଲା, ସମୀର ପୂରାପୂରି ଯେମିତି ଭାଙ୍ଗିପଡ଼ିଚି ଆଉ ତା'ର ଆକ୍ଷିର ଦୁଇପତା ଆର୍ଦ୍ର ହେଇଆସିଛି ।

''ସମୀର୍ ! ସମୀର୍ ! କ'ଣ ଶୋଇପଡ଼ିଲୁ ନା କ'ଣ ?''

ନା ।

ମୁଁ ଜାଣେ ତୁ ଗୋଟାଏ ଅନ୍ଧ ଗଳି ଭିତରେ ପଶିଯାଇଚୁ ଯାହାର ଆରପଟକୁ ରାସ୍ତା ନାହିଁ ଅଥଚ ପଛକୁ ଫେରିବା ମଧ୍ୟ ସମ୍ଭବ ନୁହଁ ।

ତାହାହେଲେ ତ ସେପରି ଏକ ଅସହାୟ ଲୋକକୁ ତୋର ଦୋଷ ଦବା ଉଚିତ୍ ନୁହଁ—ସମୀର୍ ସାହସ କରି କହେ ।

ହସିଲା କ୍ଷିତୀଶ୍, ''ମୁଁ ଅସହାୟ ବୋଲି କହିବାକୁ ଘୃଣା କରେ—ତୁ ଯାହାକୁ କହୁଚୁ ଅସହାୟ ତା' ପ୍ରକୃତରେ ହଉଚି କାଓ୍ୱାର୍ଡିସ—ତୁ ଭାବୁଚୁ ତୁ ସେମାନଙ୍କର ଆକ୍ରମଣର ସାମ୍ନା କରିପାରିବୁ ନାହିଁ ?''

''ୟୁ ଫୁଲ୍ !'' ଚିତ୍କାର କରି ଉଠେ ବଡ଼ପାଟିରେ କ୍ଷିତୀଶ୍ ଏବଂ ଗୋଟାଏ ଲମ୍ଫ ଦେଇ ଯାଇ ସମୀର୍ ପାଖରେ ବସିପଡ଼େ ଏବଂ କହେ, ''ତୁ ଗୋଟାଏ ସରକାରର ସଙ୍ଗଠିତ ପୁଲିସ୍ ସହିତ ଲଢ଼େଇ କରିପାରୁଚୁ—ବିବେକକୁ କ୍ଲୋରଫର୍ମ ଦେଇ ନିରୀହ ଲୋକଙ୍କର ଘରେ ନିଆଁ ଲଗେଇ ଦେଇ ପାରୁଚୁ—ନିଷ୍ପାପ ଶିଶୁକୁ ମା'ର କୋଳରୁ କାଢ଼ି ଆଣି ପାରୁଚୁ, ଅଥଚ ତତେ ଲାଜ ଲାଗୁ ନାହିଁ କହିବାକୁ ଯେ ତୁ କେତେଜଣ ମୁଷ୍ଟିମେୟ ପର୍ଭର୍ଟ୍ ସାଡ଼ିଷ୍ଟମାନଙ୍କ ସହିତ ଲଢ଼େଇ କରିପାରିବୁ ନାହିଁ ।''

ସମୀର୍ ତଥାପି ଚୁପ୍ ହୋଇ ବସିରହେ ପୂର୍ବପରି ।

କ୍ଷିତୀଶ୍ ପୁଣି ଆରମ୍ଭ କରେ, ''ମୁଁ ବିଶ୍ୱାସ କରେନା ଯେ ତୁ ତୋର ଜୀବନକୁ ଭୟ କରି ଅନ୍ଧ ଗଳି ଭିତରୁ ବାହାରକୁ ଆସିପାରୁନାହୁଁ–ତୋ'ର ଭୟ ହଉଛି ନିଜକୁ–ତୁ ବିଶ୍ୱାସ କରି ପାରୁନାହୁଁ ଯେ ଯେଉଁ ଧାରଣା ପଛରେ–ବିଶ୍ୱାସ ପଛରେ–କନ୍‌ଭିକ୍‌ସନ୍ ପଛରେ ଏତେବର୍ଷ ରହି ତୁ ତୋର ପାଠପଢ଼ା, ସାମଜିକ ଜୀବନ, ମନୁଷ୍ୟତାକୁ ବିସର୍ଜନ ଦେଲୁ ସେ ଧାରଣା କିପରି ଭୁଲ୍ ହେଇପାରେ–ଯାହାକୁ କହନ୍ତି ଟୋଟାଲ୍ ଡିସ୍‌ଇଲ୍ୟୁଜନ୍‌ମେଣ୍ଟ୍ ।''

''ମୁଁ ମାନୁଚି, ଠିକ୍ ସେୟା–ଜୀବନର ସବୁଠାରୁ ଭାଇଟାଲ୍ ଛ'ଟା ବର୍ଷ ଏମିତି ନଷ୍ଟ ହେଇଗଲା ଏକଥା ଭାବିଲେ ସତରେ ଖୁବ୍ ବାଧୁଚି ।'' ଚାଦର ଭିତରୁ ବାହାରକୁ ହାତ କାଢ଼ି ହାତରେ ରିଭଲ୍‌ଭର୍‌ଟାକୁ ଏପଟ ସେପଟ ଘୁରାଉଥିଲା ସମୀର୍ ।

''କିନ୍ତୁ ଦେବତାର ଆଶୀର୍ବାଦ ପରି ସେଇ କିଶୋରଟି ଆସି ଅକସ୍ମାତ୍ ମୋର ଆଖି ଖୋଲି ଦେଇଗଲା ଗୋଟାଏ ମୁହୂର୍ତ୍ତରେ । ମୋର ଗୋଡ଼ତଳୁ ମୋର ତଥାକଥିତ ବିଶ୍ୱାସର ସବୁ ମାଟି ଖସିଗଲା । ହୁଏତ ତୋର ସେ ସୌଭାଗ୍ୟ ଆସିବାକୁ ଆହୁରି ଡେରି ।''

ସମୀର୍ ଜବାବ୍ ଦେଲା, ''ଡେରି ନୁହଁ–ଅନେକ ଆଗରୁ ମୁଁ ନିଜକୁ ନିଜେ ପ୍ରଶ୍ନ କରିବାକୁ ଆରମ୍ଭ କରିଛି; କିନ୍ତୁ ଉପାୟ ନାହିଁ–ବାଟ ନାହିଁ ।''

କାହିଁକି ?

ହୁଁଃ–ଟିକିଏ ବିମର୍ଷଭାବରେ ସମୀର ହସିଉଠି ରିଭଲ୍‌ଭର୍‌ଟାକୁ କ୍ଷିତୀଶ୍ ହାତକୁ ଫିଙ୍ଗିଦେଲା–ଦେଖି ଭଲକରି, ପରୀକ୍ଷା କରି ଦେଖ, ୟା'ର ସବୁଗୁଡ଼ାକ ଚେମ୍ବର ଖାଲି ।

''କିନ୍ତୁ ତୁ ତ ଗୋଟାଏ ହେଲେ ଗୁଳି ବ୍ୟବହାର କରିନାହୁଁ ।''

''ନା–ପ୍ରଥମରୁ ହିଁ ଏଥିରେ ଗୁଳି ନ ଥିଲା–କାରଣ ମୁଁ ଜାଣେ ତୁ ଯଦି ବାଧା ଦେଇଥାଆନ୍ତୁ ତାହାହେଲେ ମତେ ରିଭଲ୍‌ଭର୍ ହୁଏତ ବ୍ୟବହାର କରିବାକୁ ପଡ଼ିଥାଆନ୍ତା–ସେଥିପାଇଁ ସବୁ ଚେମ୍ବରଗୁଡ଼ାକ ତୋ ସହିତ ଦେଖାହବା ଆଗରୁ ଖାଲି କରି ରଖିଥିଲି–ନିଜକୁ ଜାଣିଶୁଣି ନିରସ୍ତ୍ର କରି ରଖିଥିଲି । କାରଣ ମୁଁ ତ ଜାଣେ ତୁ ଟଙ୍କାର ବିନିମୟରେ ପିଲାଟାକୁ ତା'ର ବାପ ମା'ଙ୍କୁ ବିକ୍ରି କରି ଦେଇନାହୁଁ–କିନ୍ତୁ କହିବାକୁ ତ ହବ କିଛି ଗୋଟାଏ । ନ ହେଲେ କିଛି ଗୋଟାଏ ଯୁକ୍ତି ନ ଦେଇ ଆମର ସବୁ କାର୍ଯ୍ୟକ୍ରମକୁ ଚାଲୁ ରଖିବା ସମ୍ଭବ ନୁହଁ–ସେଥିପାଇଁ ସତ ହଉ ମିଛ ହଉ ଆମର କାର୍ଯ୍ୟକ୍ରମକୁ ଜଷ୍ଟିଫାଇ କରିବାକୁ କିଛିନା କିଛି ଗୋଟାଏ କରିବାକୁ ପଡ଼େ ।''

କ୍ଷିତୀଶ୍ ରିଭଲ୍‌ଭର୍‌ଟାକୁ ହାତରେ ଧରି ସାମ୍ନା ବାର୍ଥର ଗୋଟାଏ ବିନ୍ଦୁକୁ ଚାହିଁ ରହିଥିଲା, ''ହଁ ସେ କଥା ଅତୀତରେ ମୁଁ ବି ଅନେକ ଥର କହିଚି—

କରିବାକୁଇ ପଡ଼େ—ଅଲ୍-ଇନ୍ ଦି ଗେମ୍ ।''

ଟ୍ରେନ୍‌ର ଗତି ସାମାନ୍ୟ ମନ୍ଥର ହୋଇ ଆସୁଛି ।

ଅକସ୍ମାତ୍ ତନ୍ଦ୍ରା ଭଙ୍ଗ ହେଲା ପରି ସମୀର୍ କହେ, କ୍ଷିତୀଶ୍ ଏଇଟା ହୁଏତ ମୋ'ର ତୋ ସହିତ ଶେଷ ଦେଖା । କାରଣ ଆଉ କେଇ ମିନିଟ୍ ପରେ ମାଡ୍ରାସ୍ ଷ୍ଟେସନ ଆସିଯିବ ଏବଂ ସେଠି ଆହୁରି ଦୁଇଟା ରିଭଲ୍‌ଭର୍ ଧରି ତତେ ଓ ମତେ ମଧ ଅର୍ଥାତ୍ ଆମକୁ ଅପେକ୍ଷା କରି ରହିଥିବେ ଆଉ ଦୁଇଜଣ ବନ୍ଧୁ । ଏଟା ହେଲା ଡବଲ୍ ଚେକ୍ ସିଷ୍ଟମ୍ । ଜଣକୁ ପୂରାପୂରି ବିଶ୍ୱାସ କରାଯାଏନା—ପ୍ଲାନଟା ଥିଲା ଆମେ ଯଦି ଏଇ ଗାଡ଼ିରେ ନ ଆସିବା ତାହାହେଲେ ସେମାନେ ମଧ ମତେ ସାହାଯ୍ୟ କରିବାକୁ ହୁଏତ ୱାର୍ କରିବାକୁ ପହଞ୍ଚିବେ ତୋର ଗାଁରେ । ଗୋଟାଏ ସୁଖବର କ୍ଷିତୀଶ୍ ତୋ ପରି ମୋ ପରି ଅନେକ ବନ୍ଧୁ ଧୀରେ ଧୀରେ ଡିସ୍‌ଇଲ୍ୟୁଜନ୍ ହବାକୁ ଆରମ୍ଭ କରିଛନ୍ତି ଏବଂ ମୁଁ ସ୍ୱୀକାର କରୁଚି ସେମାନେ ଦିନେ ନା ଦିନେ ହବାକୁ ବାଧ୍ୟ; କିନ୍ତୁ ମୋର କର୍ତ୍ତବ୍ୟ ମୁଁ କରିବି । ଯା' ପରେ ହୁଏତ ମୁଁ କଲିକତା ଛାଡ଼ି ଚାଲିଯିବି ।

ଏତିକି କହି ସମୀର୍ କ୍ଷିତୀଶ୍‌କୁ କୁଣ୍ଢେଇ ପକାଇଲା ଏବଂ ପରସ୍ପରର କାନ୍ଧରେ ଚିବୁକ ରଖି ଦୁଇ ବନ୍ଧୁ ଯେ କଣ ଚିନ୍ତା କରୁଥିଲେ ସେକଥା ସେହିମାନେ ହିଁ ଜାଣନ୍ତି । କାହାର ମୁହଁରେ କଥା ନାହିଁ ଅଥଚ ଦୁହିଁଙ୍କର ନିବିଡ଼ ଆଲିଙ୍ଗନ ଦୁହିଁଙ୍କୁ ପିଷ୍ଟ କରି ଦଉଛି । ସେମାନେ ବୋଧହୁଏ ନୀରବରେ ଅଶ୍ରୁବର୍ଷଣ କରୁଥିଲେ ସେମାନଙ୍କର ଅସହାୟ ପରିସ୍ଥିତି ପାଇଁ ।

ସମୀର୍‌ର ରିଭଲ୍‌ଭର୍‌ଟା ଫାଷ୍ଟକ୍ଲାସ୍ କମ୍ପାର୍ଟମେଣ୍ଟର ନେଳି ରେକସିନ୍ ଉପରେ ଅତ୍ୟନ୍ତ ଅସହାୟ ଭାବରେ ପଡ଼ି ରହିଥିଲା—ଯେମିତି ଗୋଟାଏ ଛୋଟ ପିଲା ତା'ର ଖେଳନା ବନ୍ଧୁକଟାକୁ ଭୁଲ୍‌ରେ ଛାଡ଼ି ଦେଇ ଟ୍ରେନ୍‌ରୁ ଓହ୍ଲେଇ ଯାଇଚି ପୂର୍ବ ଷ୍ଟେସନ୍‌ରେ । ଟ୍ରେନ୍‌ର ଗତି ଆହୁରି ଧୀର ହୋଇ ଆସିଚି ।

ଝର୍କାବାଟେ ଚାହିଁଲେ ମାଡ୍ରାସ ସହରର ଆଲୁଅ ସବୁ ଆଖିରେ ପଡ଼େ ।

କ୍ଷିତୀଶ୍ ଗୋଟାଏ ଝାଙ୍କରେ ସମୀରକୁ ଦୋହଲେଇ କହିଲା, ''ସମୀର୍ ରାସ୍ତା ଅଛି—ଖାଲି କହ ତୁ ମୋ ସହିତ ସହଯୋଗ କରିବୁ ।''

ଏବେ ବି ତୋର ବିଶ୍ୱାସ ହେଲା ନାହିଁ କ୍ଷିତୀଶ୍ ?

କ୍ଷିତୀଶ୍ ଗୋଟାଏ ଗୁଳିଖିଆ ବାଘ ପରି ଗୋଟାଏ ଲମ୍ଫରେ ଟ୍ରେନ୍‌ର ସତର୍କ ଶଙ୍କୁଳିଟାକୁ ଧରି ଝୁଲି ପଡ଼ିଲା ଏବଂ ଅନେକ ଆର୍ତ୍ତ ଚିତ୍କାର କରି ଟ୍ରେନ୍‌ଟା ଗୋଟାଏ ଅସନ୍ତୁଷ୍ଟ ଅଜଗର ସାପ ପରି ଘୁଷୁରି ଘୁଷୁରି ସମ୍ପୂର୍ଣ୍ଣ ସ୍ଥାଣୁ ହୋଇଗଲା ।

ଚାରିଆଡ଼େ କେବଳ ଅନ୍ଧାର—ଟ୍ରେନ୍‌ର ସବୁ ଯାତ୍ରୀ ନିଦ୍ରା ଯାଇଛନ୍ତି । ତେଣୁ ଟିକିଏ ମଧ୍ୟ ଶବ୍ଦ କେଉଁଠାରୁ ଶୁଣିବାକୁ ମିଳେନା । ମାଡ୍ରାସ ଷ୍ଟେସନ୍ ତଥାପି ଆହୁରି ତିନି ମାଇଲ୍ ଅଛି ।

କମ୍ପାର୍ଟମେଣ୍ଟର ଦୁଆର ଖୋଲି କ୍ଷିତୀଶ୍ ସମୀର୍‌ର ହାତ ଧରି ଆସ୍ତେ ଆସ୍ତେ ଓହ୍ଲେଇଗଲା ତଳକୁ । ଟ୍ରେନ୍‌ର ଶେଷ ଆଡୁ ଜଣେ କିଏ ଗୋଟାଏ ଲାଇଟ୍ ଧରି ଟ୍ରେନ୍‌ର କରେ କରେ ଆଗକୁ ଆସୁଥିଲା । କ୍ଷିତୀଶ୍ ଓ ସମୀର୍ ବାହାରର ସୂଚୀଭେଦ୍ୟ ଅନ୍ଧକାର ଭିତରେ ମିଶିଗଲେ ।

କିଛି ଦୂର ଗଲା ପରେ ଦୁଇ ବନ୍ଧୁ ଆଉଥରେ ପଛକୁ ଚାହିଁଲେ । ଟ୍ରେନ୍ ଇଞ୍ଜିନଟା କ୍ଳାନ୍ତ ହୋଇପଡ଼ି ଅନେକ କଳା କଳା ଧୂଆଁରେ ଆକାଶ ଆଚ୍ଛନ୍ନ କରି ଦେଇଚି । ହୁଇସିଲ୍ ଦେଇ ଟ୍ରେନ୍‌ଟା ଚାଲିବାକୁ ଆରମ୍ଭ କଲା—ଆସ୍ତେ ଆସ୍ତେ—ଯେମିତି ଗୋଟାଏ ଅଜଗର ସାପ କିଛି ଗୋଟାଏ ବଡ଼ ଜନ୍ତୁ ଗିଳି ଦେଇ ଆଉ ଚାଲି ପାରୁନାହିଁ ।

ମାଡ୍ରାସ୍ ଷ୍ଟେସନ୍‌ର ଡିଷ୍ଟାଣ୍ଟ ସିଗ୍‌ନାଲରେ ନୀଳ ଆଲୋକ ଜଳୁଛି—ଲାଲ୍ ନୁହଁ ।



# ଚକେ ଗଲେ ବାରହାତ

ରଜାଝିଅର ବାରହାତ ଲମ୍ବର ବାଳ ପରି ତାଙ୍କର ଅଠର ହାତ ସୂତାର ଗୋଟାଏ ଲେଖାଏଁ ଗୁଳି । ଏମିତି କେତେ ସୂତା ଗୁଳି ରହିଛି । ସେ ସୂତା ଗୁଳି ଟକ ସରୁ ସରୁ ସେ ବଞ୍ଚିଥିବେ କି ନାହିଁ—ତଥାପି ଗୁଡ଼େଇ ସାଇତି ରଖିଛନ୍ତି । ଏକା ଥରକେ କାମ ଛିଣ୍ଡେ । ସେଇ ସୂତା ପରି ପୁଣି ଅସରା ତାଙ୍କର ଗପ—ସୁଖ—ଦୁଃଖ—ଅଙ୍ଗେ ନିଭେଇବା କଥା ।

ତାଙ୍କ ସୁଖ କଥା ଶୁଣିଲେ ଆଜି କାଲିକା ପିଲାଙ୍କୁ ହସ ମାଡ଼େ—ଏଇଥିରେ ପୁଣି ସେକାଳର ଲୋକଙ୍କର ସୁଖ ଥିଲା—ଦୁଃଖ କଥା ଶୁଣିଲେ ଆହୁରି ହସନ୍ତି—ହସି ହସି ଗଡ଼ିଯାନ୍ତି—ସେମାନେ ଯେମିତି ଦୁଃଖର ଭଗ୍ନାଂଶ ପର୍ଯ୍ୟନ୍ତ ଜାଣୁନାହାନ୍ତି ।

ଅଂଗେ ନିଭେଇବା କଥା କହିଲେ ଖାଲି ଆଁ କରି ଅନେଇ ରହନ୍ତି—ଇତିହାସ ପରି ଲାଗେ—ଆଉ ଲାଗେ ସେମାନେ ଯେମିତି କଥା ଶୁଣୁଛନ୍ତି ଗୋଟାଏ ପ୍ରାଗ୍‌ଐତିହାସିକ କଥା କହିଲା କୁହୁକ ପଥର ଠାରୁ । ଅଙ୍ଗେ ନିଭେଇବା କଥା ବୋଇଲେ ଦଫାଦାର ଚାକିରୀ—ଚାକିରୀର ଡର । ସେଥିରେ ପୁଣି ମଣିଷ କରି ଠିଆ କରେଇଛନ୍ତି ଦି'ଦିଟା ଭେଣ୍ଡା ପୁଅ । ଖଟିଛନ୍ତି—ଖଟେଇଛନ୍ତି—ସତେ ଲୋକଟାର ଧୈର୍ଯ୍ୟ ଥିଲା—କେତେ ଝଡ଼ ବତାସରେ ମୁଣ୍ଡ ଟେକି ଠିଆ ହେଇ ରହିଚି ।

ଖାଲି ଗପ ଆଉ ଗପ—ଅସରନ୍ତି ଗପ—ପାକୁଆ ପାଟି ଭିତରେ ଖଣ୍ଡେ ଦରପୋଡ଼ା ବିଡ଼ି—ନାକତଳେ ମୋଟା ମୋଟା ଟାଁଉସିଆ ଟାଁଉସିଆ ପାକଲା ମୁଛ । କଥା କଥାକେ—''ବୁଝିଲେ ନାଇଁ କି—'' ମିଛୁ ମିଛିକି ହସ—ପ୍ରାଣ ଭରା ହସ । ଲୋକଟାର ଜୀବନ ଅଛି—ଏମିତି ହସି ହସି—ପାଣି ଆଉ ପବନକୁ ହସି ହସି ଆଖି ବୁଜି ଦବ ।

ହସ ବୋଇଲେ ହସ—ଆରେ ବାପ୍‌ରେ—ବୟସ ପଚାରିଲେ ହସ—କଂଗ୍ରେସ୍ କଥା ପଚାରିଲେ ହସ—ଆଜିକାଲି କେମିତି ଚାଲିଚି ପଚାରିଲେ ହସ—ଖାଲି ହସ ପାଇଁ ହସ—ହସିବାର ମଧ୍ୟ ପ୍ରଚୁର ଅବସର ଅଛି—ଆଉ ରସ୍‌ଦ୍ ମଧ୍ୟ ଅଛି ।

ଜିଭରେ ଠେଲି ଠେଲି ଦରପୋଡ଼ା ବିଡ଼ିଟାକୁ ଟିକିଏ ଆଗେଇ ଆଣିଲେ ଡିଆସିଲି ନିଆଁ ଉପରକୁ—ଆଚ୍ଛା କରି ଶୋଷଡ଼ାଏ—ପାଟି ଆଉ ନାକବାଟେ ଭକ୍ ଭକ୍ ଧୂଆଁ ଆଉ ତା'ରି ଭିତରେ ନାକଟେକି ଆଖିବୁଜି—''ବୁଝିଲ ନାଇଁ କି....''

ବୁଢ଼ା ଖଟ ପାଖକୁ ଲାଗି ଗୋଟାଏ ରେଡ଼ିଓ ସେଟ୍—ପ୍ରାୟ ସବୁବେଳେ ବନ୍ଦାଇ ଥାଏ । ନିଜ କଥା କହିବାକୁ ତ ବେଳ ନାହିଁ ଆଉ ପରକଥା ଶୁଣୁଛି କିଏ ? ଆଉ ରେଡ଼ିଓରେ ବା' କ'ଣ ଅଛି—ଖାଲି ଯୋଜନା—ଜାଆଁଳା ଭାଇ ପରି ଯୁଦ୍ଧ ଆଉ ଶାନ୍ତି—ଶାନ୍ତି ଆଉ ଯୁଦ୍ଧ ନକଲ୍ କଲା ସୁର୍‌ର ଗୀତ—ପୁଣି ପାଣି ପାଗ—ପୁଣି ଗାଁ ଗହଳ ପାଇଁ ପୋଥି ବାଇଗଣର ବିଷଦ୍ ବିବରଣୀ—

ବୁଢ଼ା ରାଗିଯିବ—କିହୋ—ୟେ' କ'ଣ ବକ୍ତୃତା କରିବେ, ଚାଷୀ ତ ଆକାଶକୁ ଅନେଇଲେ ପାଗ କହିବ—ଶୁଣ ହେଁ—ଟିକିଏ ଖୁଁ ଖୁଁ କାଶ—ପୁଣି ସ୍ୱରରେ ସେଇ ଦୃଢ଼ତା—ୟେ' ପୁଣି ଚାଷୀ ପୁଅକୁ ବତଉଛନ୍ତି ଧାନ କେମିତି ବୁଣିବ, କୋଠି କେମିତି ତିଆରି କରିବ—ନଡ଼ା କେମିତି ଗଦା ମାରିବ—ଖାଲି ଫମ୍ପା ଆବାଜ୍ ।

ବୁଢ଼ା ଖଟ ଉପରେ ଗୋଡ଼ ଛକି ଆସନ ଜମେଇ ବସିଛି—ଚାରି ପାଖ ଯାକ ଦି' ତିନିଟା ଟୋକା—ହାଓ୍ୱାଇନ୍ ପିନ୍ଧା ଟୋକା । ବୁଢ଼ା ପାଖରେ ବସିଲେ ରସ ଉପଭୋଗ କରିହୁଏ । ଗପରେ ଗପରେ କଟିଯାଏ ଦିନ । ମାନ ସମ୍ଭ୍ରମ ନାହିଁ—ବୁଢ଼ାର ଅବସ୍ଥାରେ ଆଉ ତାକୁ ସମ୍ମାନ ଦେଖେଇ ହୁଏ ନାହିଁ—ଥଟ୍ଟା—ନକଲ—ଇଙ୍ଗିତ—ଆଉ ବୁଢ଼ାକୁ ଯଦି ଚିଡ଼ାଇ ଦେଇ ପାରିବ ଦେଖୁଥା ମଜା ।

ନାଇଁ ତ କଉଦିନ ଏକା ଏକା, ବୋହୂ ହାତ ତିଆରି କପେ ଗରମ ଚା'—ତା'ପରେ ଗୋଟାଏ ଲମ୍ବ ଦୀର୍ଘଶ୍ୱାସ—ବୟସ ହେଲା ତିନି କୋଡ଼ି ଛ' । ଆ ଜାଲୁଜାଲୁଆ ଧରି ଆସିଲାଣି—ଚାହିଁ ରହିଲେ କେମିତି ଝାପ୍‌ସା ଝାପ୍‌ସା ଦିଶେ ସବୁ—ଖାଲି ଧୂଆଁ, ଆଉ ଧୂଆଁ—ନିଜର ଅତୀତ ପରି ଅସ୍ପଷ୍ଟ ଆଉ କୁହେଳିମୟ । ଭବିଷ୍ୟତ୍ ଭାବିବାକୁ କିଛିନାଇଁ—ଗୋଟାଏ ଧୋବ ଧଳା—ବରଫ ପରି ଧଳା କବର ଦିହରେ ପୋତି ହେଇ ପଡ଼ିଲାଣି—ଆଉ ବାକି ପାଦେ—କିଏ ଜାଣେ ବର୍ଷେ କି ମାସେ କି କାଲି—କିଏ ଜାଣେ ? ଚଳନ୍ତି ବର୍ତ୍ତମାନ ଚାଲିବ—ନଈସୁଅ ପରି । ନିଜର ମଛର ଦେହ ବା ନିଜର ଘସରା ଅଭ୍ୟାସକୁ ଆଉ ମାଜିବାକୁ ବେଳ ନାହିଁ—ଚାଲିଚି ତ ଚାଲୁ—ଦେଖାଯାଉ । ଜୀବନରେ ସ୍ପନ୍ଦନ ନାଇଁ—ସବୁ ଦୈନନ୍ଦିନ ଘଟଣା ପରି ଏକା ଟାଣ ଏକା ସୁର୍ । ଖାଲି ମଝିରେ ମଝିରେ—ଗାଈ କଅଁଳିଆ କଦଳୀ ପତ୍ରଟାକୁ ଝିଙ୍କି ଦେଲା ନାଇଁ ତ, ବାଇଗଣ ତଳିରେ ପୋକ ଲାଗିଗଲେ ପାଉଁଶ ଡାଳ—ନାଇଁ ତ ନାତି ଟୋକାଟା ପିଣ୍ଡା ଉପରୁ ତଳକୁ କେଡ଼େହାଁ ଗଡ଼ି ପଡ଼ିଲା । ବଞ୍ଚିବା ପାଇଁ ନିଜକୁ ଚହଲେଇବା ଦରକାର—ଆର ବକ୍‌ତକ ଖାଇବା ପାଇଁ ନିଜର ସାମାନ୍ୟ ଚଳତ୍‌ଶକ୍ତିର ପ୍ରୟୋଜନ, ବାସ୍ ଏତିକି ।

ଦି' ଦିଟା ଭେଣ୍ଡା ପୁଅ—ଗୋରା ଗୋରା ଜବରଦସ୍ତ ମଣିଷ—ମଣିଷ ପରି ମଣିଷ—ମୁଣ୍ଡ ଖଟଉଛନ୍ତି, ଘର ଚାଲିଚି । ସେଇ ପୁରୁଣା ଘର—ସେଇ ଜାଳି ଦିଆ

କବାଟ—ସେଇ ଭଙ୍ଗା ଟିଫିନ୍ କେରିଅର୍—ଖାଲି ପୁରୁଷକୁ ପୁରୁଷ ମଣିଷ ବଦଳି ଯାଇଛନ୍ତି—ବଦଳି ଯାଇଛି ସେମାନଙ୍କର କର୍ତ୍ତୃତ୍ୟ । ପିଲାଦିନେ କାନମୋଡ଼ା—ଚଟକଣା ଖାଇ ଯେଉଁମାନେ ତିନ୍ତି ତିନ୍ତି ବର୍ଷାରେ ଡାଳିମାଙ୍କୁଡ଼ି ଖେଳୁଥିଲେ ସେମାନେ ଆଜି କହିଲେଣି—ବାବା, ଆପଣ ବସନ୍ତୁ—ବ୍ୟସ୍ତ ହଉଛନ୍ତି କାହିଁକି କହିଲେ ।

ଚୁପ୍—ବୁଢ଼ା ରାଗିଯିବ । ସେଇ ପୁରୁଣା ମଣିଷର ହୁଙ୍କାର, ମତେ ପୁଣି ଏମାନେ ଶାସନ କରିବେ । ପୁଅମାନେ କରଛତ୍ର ଦେଲେ—ବାବା ରାଗି ଗଲେଣି—ନାତି ଗୁଡ଼ାକ ଖେଳ ଛାଡ଼ିଦେଇ ଚୁପ୍‌ଚୁପ୍ କାନ ଡେରିଦେଇ ରହିଲେଣି । ହୁଁ—ମୁଁ ଆଜିଯାଏ ବଂଚିଚି । ମୁଁ ମଲାପରେ ଯାହା କରିବ—କରିବ । ଏଇନା ନୁହଁ ।

ସମୟ ବିତିଗଲା—ପାଣି ଫାଟିଗଲା ବୁଢ଼ାର ରାଗ । ଆରେ ସତେ ତ ! ପୁଅ ଗୁଡ଼ାକ ବଡ଼ ବଡ଼ ହେଇ ଗଲେଣି—ବଦଳି ଗଲାଣି ସମୟ । ମନ ଭୁଲେଇବାକୁ ନାତି ସାଙ୍ଗରେ ଗେଲ—ମୋ ସୁନାଟାରେ—ମୋ ଧନଟାରେ—ଆଜି ଏକ୍ ଚାପୁଡ଼ା ଲଗେଇଥାନ୍ତି ତୋ ବାପାକୁ କହି ନାତି ଗାଲରେ ଥିର୍ କିନା ଗୋଟାଏ ଚାପଡ଼ା—ତା'ପରେ ନାତିର ନୂଆଁ ଉଠା ବି'ଟା ଧୋବ ଧୋବ ଦାନ୍ତ ଦେଖେଇ ଆଖି ମିଟିମିଟି କରି ଟିକିଏ ହସ—ଏମାନେ ସବୁ ତାଙ୍କରି ଗଛର କଢ଼ି ।

ପୁଣି ସେଇ ଗତାନୁଗତିକ କଥା—ହାର୍‌ମୋନିୟମ୍‌ର ସା' ଉପରେ ଲମ୍ବା ଟାଣ ପରି—ତାଙ୍କରି ଅସରନ୍ତି ସୂତା ଗୁଳି ପରି ।

ହଁ କ'ଣ କହୁଥିଲି—ତାଙ୍କର-ସୂତା ଗୁଳି । ହାତରେ ବିଡ଼ି ମୋଡ଼ି ଖାଇବା ତାଙ୍କର ଅଭ୍ୟାସ—ଆଜି କି ଚାଳିଶି ବର୍ଷ ତଳର ଅଭ୍ୟାସ—ଫିମ୍ପି ମରା ଡାଲିଆ ଦିହରେ କେରି କେରି କେନ୍ଦୁପତ୍ର—ତା' ଉପରେ ଖଣ୍ଡେ ନାଲିଚିଆ ସନ୍ତସନ୍ତିଆ କନା—କଲିକତି ଜରଦା ଆଉ ପୁଅର ଖଣ୍ଡେ କଳଙ୍କି ଲଗା ନିଶକଟା କତୁରୀ । ଆଉ ଅସରନ୍ତି ସୂତାଗୁଳି ।

ବିଡ଼ି ମୋଡ଼ିବାର ପୁଣି ବୁନିୟାଦି ଅଛି—କଳା ଅଛି ଆଉ ଅର୍ଥନୀତି ଅଛି । ଏଇକଥା କହିଲା ବେଳେ ତାଙ୍କର ସବୁଠାରୁ ବେଶୀ ଆନ୍ତରିକତା—କେତେଥର ତାକୁଇ ଆଉଟେଇ ଆଉଟେଇ କହିଲେଣି—କିନ୍ତୁ ସବୁ ପୁରୁଣା—ଶୁଣିବା ଲୋକ ଆର ପଦକ ମନେ ମନେ ଗୁଣି ହେଇଯିବ—କଥାର ସେଇ ପୁରୁଣା ଢଙ୍ଗ—କଥା କହିସାରି ସେଇ ଆଦିମ ସନ୍ତୋଷ ।

ଆଗେ ଥିଲା ଚାଖଣ୍ଡେ ଲମ୍ବର ପିଙ୍କା । ସବୁବେଳେ ଟାଣି ହୁଏନାଇଁ—ଟିକିଏ ଟାଣିଲେ ପୁଣି ତା'କୁ ନିଭେଇ ରଖ କୋ' ଗଛ କୋରଡ଼ରେ ନାଇଁ ତ ଛିଣ୍ଡା ପକେଟ୍ କନ୍ଦିରେ । ଆଉ ବିଡ଼ି—ଅତି ଅଳ୍ପ, ଦୁଇ ତିନି ପୁଳା ଖାଇଦେଇ ଆନନ୍ଦରେ ଫୋପାଡ଼ି ଦେଇହୁଏ । ପୁଣି କିଛି ବେଳ ଗଲେ ଗୋଟାଏ ନୂଆ ବିଡ଼ି ।

ସିନେମାର ଦରଖଣ୍ଡିଆ ଗୀତ ବୋଲି ବୋଲି ଚକ୍‌କର୍ ଦଉଚି ବସ୍‌ଷ୍ଟାଣ୍ଡ କୁଲି–ଗଙ୍ଗାକେ ପାର୍ ମୋରା—ଗଙ୍ଗାକେ ପାର୍ । ନଜର ପଡ଼ିବ ବୁଢ଼ା ଉପରେ—ବାବୁ ଖଣ୍ଡେ ବିଡ଼ି !

ପୁଣି ସେଇ ହସ—ସନ୍ତୋଷର ହସ—ବୁଢ଼ା ଖଣ୍ଡେ ହାତମୋଡ଼ା ବିଡ଼ି ବଢ଼େଇ ଦଉ ଦଉ କହିବ—ନେଇଥାରେ ଖାଇଥା—ମନେ କରୁଥିବୁ ।

ବିଡ଼ି ମୋଡ଼ିବାରେ ବୁଢ଼ାର ହାତ ଚାଲିବ ଯନ୍ତ୍ର ପରି ଆଉ କଥା ମଧ୍ୟ ଚାଲିବ ଅନର୍ଗଳ । ବିଡ଼ି ମୋଡ଼ିବାରେ ଆଉ ସାବଧାନତାରେ ପ୍ରୟୋଜନ ନାଇଁ । ସେ'ଟା ଖାଇବା, ବସିବା, ଶୋଇବା ପରି ଅତି ସାଧାରଣ—ମାମୁଲି ।

ହଁ ସେ ପୁଣି ପଇସାକରେ ଆରମ୍ଭ କରିଥିଲେ ତାଙ୍କର ବ୍ୟବସାୟ । ପଇସାକର ବିଡ଼ି ଜରଦା—ଗଛରୁ କେରାଏ କେନ୍ଦୁପତ୍ର, ବାସ୍ ସେତିକି । ବିଡ଼ିତକ ନେଇ ଗୁଞ୍ଜି ଦେଇ ଆସିଲେ ହମିଦ୍ ଖାଁ ଦୋକାନରେ ବଳେ ପଶି, ଦେଖୁ ଦେଖୁ ସେତକ ଖତମ୍ । ସମସ୍ତେ ବିଡ଼ିକୁ ଆଦର । ଶସ୍ତା ଆଉ ଦି'ପୁଳା ଖାଇଦେଇ ଫୋପାଡ଼ି ଦେଇହୁଏ । ପିକା ବଦଳରେ ବିଡ଼ିର ଚାହିଦା ବଢ଼ି ଚାଲିଚି । ମହାଜନ ଚାହୁଁଛି ଆହୁରି ବିଡ଼ି, ଷ୍ଟେସନ୍ ବୁଲାବିକା ଚାହୁଁଛି ଆହୁରି ବିଡ଼ି—ବିଡ଼ି—ବିଡ଼ି—ବିଡ଼ି । ବୁଢ଼ାର ହାତ ଚଳୁନି ଏକୁଟିଆ, ତା' ତଳେ ବସି ଆଉ ଦି'ଜଣ ବିଡ଼ି ବଳୁଛନ୍ତି ।

ଏଇ ବିଡ଼ି ବ୍ୟବସାୟର ଜନ୍ମ, ବାସ୍ ସେତିକି । ତା'ପରେ ବୁଢ଼ାର ଆଜିର ମନୋହରୀ ଦୋକାନ ସେଇ ପୁଞ୍ଜିରୁ । ବୁଢ଼ା କିନ୍ତୁ ଏବେ ବି ତା' ନିଜ ବିଡ଼ିତକ ହାତରେ ମୋଡ଼ିଦିଏ । ଶହେ ଗଜ ଦୂରରେ ଭୋକଲା ମହାଜନର ବିଡ଼ି କାରଖାନା—ଏଇ କାଲିକା ତିଆରି । ବୁଢ଼ା ହସି ହସି କୁହେ—ଆରେ ମାରୁଓ୍ୱାଡ଼ି ହେଲେ କ'ଣ ହବ—ଶିଖିଛି ମୋରିଠୁ, ବିଡ଼ିରେ ପଇସାକେ ପଇସେ ଲାଭ—ଶହେରେ ଶହେ—ହଜାରକେ ହଜାର । କିନ୍ତୁ ଭୋକିଲା ନିଜେ ବସିକି ସେ ବିଡ଼ି ମୋଡ଼ି ଜାଣେ ନାହିଁ—କିନ୍ତୁ ତା'ରି କାରଖାନାରୁ ପ୍ରତିଦିନ ହଜାର ହଜାର ବିଡ଼ି ବାହାରି ପ୍ରସରି ଯାଇଛି ବଜାର୍ ସାରା, ପ୍ରତିଦିନ ବିଡ଼ି ମୋଡ଼ି ମୋଡ଼ି କୁଜା ହେଇ ଗଲେଣି ପଚାଶ ଲୋକ । ତାଙ୍କ ବେଳେ ବିଡ଼ି ମୋଡ଼ିବା ଥିଲା ଗୋଟାଏ କଳା—ସେଥିପାଇଁ ଶିକ୍ଷା ଦରକାର—ପରିଶ୍ରମ ଦରକାର । କିନ୍ତୁ ଆଜି ସେ ବିଜ୍ଞାନ । ଏକ ମିନିଟ୍‌ରେ ଲକ୍ଷ ଲକ୍ଷ ବିଡ଼ି—ପଇସାକେ ପଇସେ ଲାଭ—ଶହେରେ ଶହେ—ହଜାରରେ ହଜାର । କିନ୍ତୁ ଭୋକିଲା ମହାଜନ ଦିନେ ବିଡ଼ି ମୋଡ଼ି ନାଇଁ—ଟଙ୍କା ଖଟେଇଚି—ଲୋକେ କୁଜା ହେଇ ଗଲେଣି—ଆଖି ଝାପ୍‌ସା ହେଇଗଲାଣି—ତଥାପି ପଇସାରେ ପଇସେ—ଶହେକେ ଶହେ—ହଜାରରେ ହଜାର୍ ।

ବୁଢ଼ାର ହାତ ଚାଲିଚି—ହାତ ଉପରେ ଠିଆ ଠିଆ ନେଳି ନେଳି ଶିରା । ତାଙ୍କର ଲାଭ ନାହିଁ କ୍ଷତି ନାହିଁ—ଅହଙ୍କାର ନାହିଁ ଅଭିମାନ ନାହିଁ । ଦିନକୁ ତିଆରି ଚବିଶି ଖଣ୍ଡ ବିଡ଼ି—ଖର୍ଚ୍ଚ ଠିକ୍ ସେତିକି—ଗାଏ ମୋଟ ବ୍ୟୟ ଦୁଇ ପଇସା—ଆଉ ନାହିଁ ଅଧଲାଏ—ସେଇ ବିଡ଼ିକୁ ବଜାରରୁ କିଣୁଥିଲେ ଦୁଇ ଅଣାରେ କିଣୁଥାନ୍ତେ । ପାହୁଣ୍ଡ ପକେଇ ବୟସ ମାଡ଼ି ଆସୁଚି—ଦିହରେ ବଳ ଥିଲା ଯାଏଁ ହାତ ଚାଲିବ—ବିଡ଼ି ମୋଡ଼ା ସୂତାର ବିଣ୍ଡା ସରି ଯାଇଚି ଆସ୍ତେ ଆସ୍ତେ—ବି—କଥାସବୁ ପୁରୁଣା ହେଇଗଲାଣି—ସେଇ ପୁରୁଣା କଥାର ଭାଙ୍ଗ—ପୁରୁଣା ହସକଥା—ଇତିହାସ ।

ଯୁଆନ୍ ବେଳେ ତାଙ୍କରି ଏକୁଟିଆ ମନୋହରୀ ଦୋକାନ ଥିଲା ଖଣ୍ଡ ମଣ୍ଡଳରେ—ଦୁଆତ, ପେନ୍‌ସିଲ୍, ନିବ୍, କାଳି, କାଚ ଗିଲାସ, ଚଟି ଯାହା ଖୋଜିବ ପାଇବ । ଆଜି କିନ୍ତୁ ସେ ଦୋକାନ ଆଉ ନାହିଁ । ଗୋଟାଏ ଅଫିସ୍ ହେଲାଣି ସେଠି । ପୁଞ୍ଜା ପୁଞ୍ଜା ଫାଇଲ୍—ଟାଇପ୍ ରାଇଟର୍—ଦଶ ଲୋକଙ୍କର ଯିବାଆସିବା ଗହଳ—ଚା’ ସିଗାରେଟ୍—ଗପ ଆଉ ଯୋଜନା—ଯୋଜନା । ଏ ବୟସରେ ବି ବୁଢ଼ା ଦିନେ ଦିନେ ମନମାରିଦିଏ...ଏଡ଼େ ଏଡ଼େ ଭେଣ୍ଡା ପୁଅ ଦି’ଟା କ’ଣ କରିଦେଲେ ଦୋକାନଟାକୁ ଦିନ କେଇଟାରେ—ପୁଅମାନେ କୁଆଡ଼େ ‘‘ବିଜିନେସ୍’’ କରୁଛନ୍ତି । ବିଜିନେସ୍ ଅର୍ଥ ଠିକ୍ ବ୍ୟବସାୟ ନୁହଁ—ନୁହଁ ଟଙ୍କାକେ ଦି’ ପଇସା ଲାଭରେ ବେପାର । ବିଜିନେସ୍ ଅର୍ଥ—ଯୋଜନା—ଖାଲି ଯୋଜନା—ଯୋଜନାର ଲଢ଼େଇ—ଟଙ୍କାକେ ଟଙ୍କାଏ—ହେଲା ତ ଏକା' ଦିନକେ ମଣିଷ ନାଇଁତ ଫତୁର୍—ଏଣ୍ଟରପ୍ରାଇଜ୍ ।

ବୁଢ଼ା ଏସବୁ କିଛି ବୁଝେନାଇଁ—ପଚାରେ ନାଇଁ—ନିଘା ରଖେନି—ତାଙ୍କ କର୍ମରେ ବୁଝିବେ—ମୋର ଆଉ କେଇଦିନ ।

ପୁଣି ସେଇ ସୂତା ବିଣ୍ଡା । ସରି ଆସୁଛି ଧୀରେ ଧୀରେ—ଠିକ୍ ତା’ରି ପରି ତାଙ୍କର ଗପ—ପୁରୁଣା—ଆଉ ଅସରନ୍ତି ।

କଂଗ୍ରେସ୍ ସେତେବେଳେ ନୂଆ ନୂଆ । କଂଗ୍ରେସ୍‌ର ଜଣେ ପୁରୁଣା କର୍ମୀ ହିସାବରେ ଗର୍ବ ଅଛି ତାଙ୍କର । ତାଙ୍କ ନିଜର କବିତା ଅଛି—ଗଡ଼ ଗଡ଼ କରି ଆବୃତ୍ତି କରିଯାନ୍ତି ବିଡ଼ି ମୋଡ଼ିଲା ପରି ଅତି ସହଜରେ—‘‘ଅକାଳ କୋଇଲି’’ ଘରେ ଘରେ ସୂତାକଟା ଚଳେଇବାକୁ ସେ ଗୀତରେଉଦ୍‌ବୋଧନ । ତାଙ୍କରି ନିଜ ତିଆରି, ଅନ୍ୟମାନଙ୍କର ବି ପଦେ ଅଧେ ଅଛି ସେଥିରେ । ତାଙ୍କ ଗପ ଭିତରେ ଅଛି କମିତି ପୁଲିଶ୍ ଚାକିରୀ କରି ମଧ କଂଗ୍ରେସ୍ କର୍ମୀ ଆସି ବରାବର ତାଙ୍କ ଘରେ ରହୁଥିଲେ—ଡର ନଥିଲା ଭୟ ନଥିଲା ।

ତାଙ୍କର ଉତ୍ସାହ ଏତିକି ବେଳେ ପ୍ରଚୁର—କଂଗ୍ରେସର ଚାରଣିକିଆ ମେମ୍ବର ସେ ନିଜେ ଗାଁ ଗାଁ ବୁଲି କରେଇଥିଲେ—କେତେ ବୋଇଲେ କେତେ—ସମୁଦାୟ ଟଙ୍କା କଂଗ୍ରେସକୁ ଦେଇଥିଲେ । ଗଣି ଗଣି କରି ଶୋହଳ କି ସତର କୋଡ଼ି । ଆଉ ନାହିଁ, ସେ କଂଗ୍ରେସ୍ ଆଉ ନାଇଁ, ବଦଳିଗଲା । କ୍ଷମତା ପାଇଲେ ସଭିଏଁ ସେମିତି ବଦଳିଯାନ୍ତି । ଏବେ କୁଆଡ଼େ ଜଣେ କଂଗ୍ରେସ୍ କର୍ମୀ ଆସିଥିଲେ—ନିଜେ ଚାରଣିକିଆ ମେମ୍ବର ହେଇ ନାହାନ୍ତି । ବସି ବସି ସେ କାଳର କଂଗ୍ରେସ୍ ଆଉ କର୍ମୀଙ୍କୁ ଝୁରନ୍ତି ଆଉ ନାକ ଟେକନ୍ତି ଆଜି କାଲିକା ସରୁ ଖଦଡ଼ ପିନ୍ଧା ପେଷାଦାର ରାଜନୀତିକ ମାନଙ୍କୁ ।

ଏୟା ତାଙ୍କର ଗପ ତାଙ୍କର ଜୀବନ ।

ଅତୀତ ନାହିଁ ଭବିଷ୍ୟତ ନାହିଁ—ଯାହା ଖାଲି ନିତ୍ୟ ପ୍ରବୃତ୍ତି ବର୍ତ୍ତମାନ, ସେ ପୁଣି ମୁହୂର୍ତ୍ତକର ବର୍ତ୍ତମାନ । କିଏ ଜାଣେ ଆଜି ନାଇଁ ତ କାଲି ନାଇଁ ତ ଆଉ ଘଣ୍ଟାକୁ କ'ଣ ହଉଛି, ଚକେ ଗଲେ ବାରହାତ ।

ତାଙ୍କ ଗପ କିନ୍ତୁ ଅସରନ୍ତି ତାଙ୍କ ବିଡ଼ି ମୋଡ଼ ସୂତାପରି ।



# ଗୋଟିଏ କୁକୁରର କଥା

ମିଃ ମାଲ୍‌ହୋତ୍ରା, ତାଙ୍କର ସ୍ତ୍ରୀ ଓ କନ୍ୟା ମୃଦୁଳା ଯେତେବେଳେ ଶ୍ରୀରାମପୁର ବିମାନ ବନ୍ଦରରେ ପହଞ୍ଚିଲେ, ସେତେବେଳେ ତାଙ୍କ ସହିତ ତାଙ୍କର ଅର୍ଡ୍ଲି ଲଛମନ ସିଂ ଓ ତାଙ୍କର ପୋଷା କୁକୁର 'ଲାଇକା' ମଧ୍ୟ ସେଠାରେ ଉପସ୍ଥିତ ଥିଲେ ।

'ଲାଇକା'ର ବ୍ରିଡ୍ କଅଣ ତା' ଠିକ୍ ନିର୍ଣ୍ଣୟ କରାଯାଏନା । ତେବେ ତା'ର ଆକୃତି ଓ ଗଢ଼ଣ ଦେଖି ଏତିକି ଅନ୍ଦାଜ କରାଯାଏ ଯେ ସେ କୌଣସି ଡ୍ୟାସ୍‌ହାଉଣ୍ଡ କୁକୁର ଓ ଦେଶୀ କୁକୁରର ଏକ ବର୍ଣ୍ଣଶଙ୍କର ସଂସ୍କରଣ ।

ମାତ୍ର ଦେଢ଼ ବର୍ଷ ତଳେ 'ଲାଇକା' ମାଲହୋତ୍ରା ପରିବାର ଭିତରକୁ ଏକ ଅତିଥି ଭାବରେ ପ୍ରବେଶ କରି ମାଲହୋତ୍ରା ପରିବାରର ସଂସାରକୁ ଏକ ଶିଶୁ-ସୁଲଭ ବିସ୍ମୟରେ ପରୀକ୍ଷା କରି ନଉଥିଲା । ଅଳ୍ପ ସମୟ ପରେ ସେ ପରିବାର ଜୋତା ରହିଥିବା ର୍‍ୟାକ୍ ଉପରେ ତା'ର ଆସ୍ଥାନ ଜମେଇ ନେଇ ଏକ ପ୍ରକାର ଭଙ୍ଗୀରେ ପ୍ରକାଶ କରିଥିଲା ଯେ, ସେ ସେଠାରେ ବେଶ୍ ଆରାମରେ ଅଛି ।

'ଲାଇକା'ର ଆକୃତି ଥିଲା ଈଷତ୍-ଦୀର୍ଘ ଏବଂ ତା'ର ମୁହଁକୁ ଦେଖିଲେ ମନେହବ ଯେପରି ସେ ଜଣେ ଅତ୍ୟନ୍ତ ନିରପରାଧ ଓ ଉଦାର ଜୀବ, ଯାହାର ପୃଥିବୀରେ କାହା ବିରୁଦ୍ଧରେ କିଛି ଅଭିଯୋଗ କରିବାର ନାହିଁ । ତା'ର ସମଗ୍ର ଦେହକୁ ଆବୃତ କରି ରହିଥିଲା କଫି ରଙ୍ଗର ବେଶ୍ ଘଞ୍ଚ ବାଳ ଏବଂ ତା'ର ଦୁଇଟି ନୀଳାଭ ଆଖିରେ ତା'ର ଅନ୍ନଦାତାମାନଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ବେଶ୍ ପରିସ୍ଫୁଟ ହେଉଥିଲା । ମହାକାଶଚାରୀ 'ଲାଇକା'ର ଅନୁକରଣରେ ଯେଉଁଦିନ ତା'ର ପ୍ରଥମ ନାମକରଣ ହେଇ ତାକୁ ଦୁଧ ଖାଇବାକୁ ସେଇ ନାଆଁ ଧରି ନିମନ୍ତ୍ରଣ କରାଗଲା, ସେ' ଦିନ ତା'ର ପ୍ରତିକ୍ରିୟା ଥିଲା ଅତ୍ୟନ୍ତ ସହଜ ଓ ସାଧାରଣ। ସେ ଆସି ଦୁଧ ପିଇଥିଲା ଯଥେଷ୍ଟ ଆତ୍ମବିଶ୍ୱାସ ଓ ଆତ୍ମ-ସମ୍ମାନବୋଧ ନେଇ ଯେପରି ସେ 'ଲାଇକା' ନିଜେ ।

କହିବା ବାହୁଲ୍ୟ ଯେ ଖୁବ୍ ଅଳ୍ପଦିନ ଭିତରେ ଲାଇକା ମାଲହୋତ୍ରା ପରିବାରର ଅତ୍ୟନ୍ତ ପ୍ରିୟ ଅନ୍ତେବାସୀ ହୋଇ ଉଠିଥିଲା । କିନ୍ତୁ ଭାଗ୍ୟର ବିପର୍ଯ୍ୟୟ ଯେ ଅକସ୍ମାତ୍ ମାଲହୋତ୍ରାଙ୍କର ପୋଷ୍ଟିଂ ହେଲା ନାଇଜେରିଆକୁ ଅନ୍ୟୁନ ଏକ ବର୍ଷ ପାଇଁ । ପର୍ଯ୍ୟାପ୍ତ ଖର୍ଚ୍ଚ କଥା ବାଦ୍ ଦେଲେ ମଧ୍ୟ ଯାତ୍ରୀବାହୀ ଉଡ଼ାଜାହାଜରେ 'ଲାଇକା'କୁ ସୁଦୂର

ନାଇଜେରିଆକୁ ନେଇଯିବା ସମ୍ଭବ ହବ କି ନାଁ ତାହା ମାଲହୋତ୍ରା ପରିବାରକୁ ଚିନ୍ତିତ କରି ତୋଳିଥିଲା । ଗୋଟାଏ ବର୍ଷ ଚହୁଁ ଚାହୁଁ କଟିଯିବ ବୋଲି ଭାବି ମିଃ ମାଲହୋତ୍ରା କାଗଜରେ ଗୋଟିଏ ଛୋଟ ବିଜ୍ଞାପନ ଦେଇଥିଲେ ଯାହାର ସାର ମର୍ମ ହେଉଛି ସେ ସେ ତାଙ୍କର ପୋଷା କୁକୁରଟିକୁ କୌଣସି ସଦୟ ବ୍ୟକ୍ତିଙ୍କର ତତ୍ତ୍ୱାବଧାନରେ ଛାଡ଼ି ଦେଇ ମାତ୍ର ବର୍ଷକ ପାଇଁ ବାହାରକୁ ଯିବାକୁ ଚାହାଁନ୍ତି । ଏଇ ବର୍ଷକର ସମସ୍ତ ଖର୍ଚ୍ଚ ମଧ୍ୟ ସେ ବହନ କରିବେ ଏବଂ ସେ ଫେରି ଆସିବା ପରେ କୁକୁରଟିକୁ ପୁଣି ଥରେ ଫେରାଇ ଦେବା ବା ନଦେବା ତତ୍ତ୍ୱାବଧାରକଙ୍କ ଇଚ୍ଛା ଉପରେ ସଂପୂର୍ଣ୍ଣ ନିର୍ଭର କରେ ।

ଯିବାର ନିର୍ଦ୍ଧାରିତ ସମୟ ଅତି ଦୃତ ଗତିରେ ନିକଟରୁ ନିଟତର ହେଇ ଆସିଲା । କିନ୍ତୁ କୌଣସି ବ୍ୟକ୍ତି ବିଜ୍ଞାପନର ଚାହିଦା ମତେ 'ଲାଇକା'ର ଅଭିଭାବକତ୍ୱ ଗ୍ରହଣ କରିବାକୁ ଆସିଲେ ନାହିଁ । ତେଣୁ ଅଗତ୍ୟା ଯିବା ପୂର୍ବଦିନ 'ଲାଇକା'ର ରକ୍ଷଣାବେକ୍ଷଣର ଦାୟିତ୍ୱ ତାଙ୍କର ପୁରୁଣା ଓ ବିଶ୍ୱସ୍ତ ଅର୍ଡ଼ରଲି ଲଛମନ ସିଂ ଉପରେ ହିଁ ନ୍ୟସ୍ତ କରାଗଲା । ଲଛମନ ସିଂକୁ ତିନିଶହ ଟଙ୍କା ଦେଇ ମିସେସ୍ ମାଲହୋତ୍ରା କହିଲେ—"ଲଛମନ ! ଲାଇକା ତମକୁ ଖୁବ୍ ଭଲପାଏ । ତେଣୁ ତମରି ପାଖରେ ରହିବା ସବୁଠାରୁ ଭଲହବ । ଟଙ୍କା ଦେଇଗଲି—ଆଉ ଦରକାର ହେଲେ ଲେଖିବ—ଆଉ ଟିକିଏ ଭଲ ଭାବରେ ଦେଖାଶୁଣା କରୁଥିବ—ମୁଁ ତ ଏଇ ଫେରି ଆସିଲି ବୋଲି ଜାଣ ।" ଏ କଥାତକ କହିଲାବେଳେ ମିସେସ୍ ମାଲହୋତ୍ରାଙ୍କର କଣ୍ଠ ବାଷ୍ପାକୁଳ ହୋଇ ଉଠିଥିଲା ଓ ତା'ର ଜବାବରେ ଲଛମନ ସିଂ କୁର୍ଣ୍ଣିସ୍ କରିବା ଭଙ୍ଗୀରେ ମୁଣ୍ଡ ତଳକୁ ଝୁକେଇ ଆଣି କହିଥିଲା, "ମେମ୍ ସା'ବ, ଆପଣ ବ୍ୟସ୍ତ ହେବେ ନାହିଁ—ଏତେ ଦିନ ଆପଣଙ୍କର ନିମକ ଖାଇଛି, ଆଉ ଗୋଟାଏ ବର୍ଷ ପାଇଁ ଏତକ କରି ପାରିବି ନାହିଁ ?"

ମିଃ ମାଲହୋତ୍ରାଙ୍କ ପରିବାରର ଛାତି ଉପରୁ ଗୋଟାଏ ଅତିକାୟ ପ୍ରସ୍ତର ଯେପରି କିଏ ଅପସାରିତ କରି ନେଇଥିଲା ।

ବିମାନ ବନ୍ଦର ସହିତ 'ଲାଇକା' ଅପରିଚିତ ନୁହେଁ । ବହୁବାର ମିଃ ମାଲହୋତ୍ରା ବା ମିସେସ୍ ମାଲହୋତ୍ରାଙ୍କୁ ସ୍ୱାଗତ କରିବା ପାଇଁ ସେ ବିମାନ ବନ୍ଦରକୁ ଯାଇଛି ଏବଂ ଲାଉଞ୍ଜରେ ଅପେକ୍ଷାଜନିତ କ୍ଳାନ୍ତି ଅପନୋଦନ କରିବାକୁ କଫି ପାନ କରାଗଲାବେଳେ 'ଲାଇକା'କୁ ଯେ ଖଣ୍ଡିଏ ପ୍ଲେଟରେ କ୍ୟାଣ୍ଟିନ ମେନେଜର୍ ଟିକିଏ ଦୁଧ ବା ଖଣ୍ଡେ ବିସ୍କୁଟ୍ ଦିଏ, ସେ କଥା 'ଲାଇକା'ର-ବିସ୍ମରଣ ହବାର କଥା ନୁହଁ । କିନ୍ତୁ ଆଜି ଯେ ସେ ବେକାରେ ଗୋଟାଏ ଲୁହା ଚେନ୍ ବନ୍ଧା ହେଇ ନିୟନ୍ତ୍ରିତ ହେଉଛି ଲଛମନ ଦ୍ୱାରା ଏଇ ବ୍ୟତିକ୍ରମ ପାଇଁ ତା'ର ବିସ୍ମିତ ହେବାର ଯଥେଷ୍ଟ କାରଣ ଥିଲା ।

କିନ୍ତୁ ଅବ୍ୟବହିତ ପରେ ପରେ ଗୋଟାଏ ଧାତବ ସ୍ୱରର ନିର୍ଦ୍ଦେଶରେ ଯେତେବେଳେ ମାଲହୋତ୍ରା ପରିବାରର ସମସ୍ତେ ଆସି 'ଲାଇକା'କୁ ଜଣକ ପରେ ଜଣେ ଗେଲ କରି ସାଶ୍ରୁଲୋଚନରେ ବିଦାୟ ନେଲେ ସେତେବେଳେ 'ଲାଇକା'ର ସେଇ ଅବିଶ୍ୱାସ୍ୟ ସତ୍ୟଟି ଅବା ହୃଦୟଙ୍ଗମ ହେଲା । ସେ ଆଜି ବିବର୍ଜିତ । ତେଣୁ ଏରୋଡ୍ରମ୍‌ରୁ ଅନ୍ୟୁନ ଦୁଇମାଇଲ ବାଟ ଲଛମନର ପାଦ ଶୁଙ୍ଘି ଶୁଙ୍ଘି ଫେରିଯିବା ଭିନ୍ନ ତା'ର ଆଜି ଉପାୟାନ୍ତର ନଥିଲା । ପଦବ୍ରଜରେ ଦୁଇ ମାଇଲ ବାଟ ଏକାଦିକ୍ରମେ ଯିବା 'ଲାଇକା' ପକ୍ଷରେ ଏକ ନୂତନ ଅଭିଜ୍ଞତା ଥିଲେ ମଧ୍ୟ ତାହା ଯଥେଷ୍ଟ ପ୍ରୀତିପଦ ନଥିଲା ।

ଲଛମନ ଘରକୁ ଆସି 'ଲାଇକା'କୁ ଯେତେବେଳେ ତା'ର ଘର ବାରଣ୍ଡାରେ ଖୁଣ୍ଟିରେ ବାନ୍ଧିଲା ସେତେବେଳେ ଲଛମନ ସିଂର ଏକାଧାରରେ ଘୋର ବୈଷ୍ଣବ, କୃଷ୍ଣପ୍ରେମୀ ଓ ଏକନିଷ୍ଠ ନିରାମିଷାଶୀ ସ୍ତ୍ରୀ ଲଳିତାଦେବୀ ଭୂତ ଦେଖିବା ପରି ଚମକି ଉଠି କଥ୍ୟ ଅକଥ୍ୟ ଭାଷାରେ ଗାଳି ବର୍ଷଣ କରିବାକୁ ଲାଗିଲେ । ସେ ଅଭିସଂପାତ ବର୍ଷଣ ଭିତରେ 'ଲାଇକା'ର ଆଗମନ ହେତୁ କି' କି' ଅସୁବିଧା ସୃଷ୍ଟି ହେବ ବା ହେଇପାରେ ତାହାର ଗୋଟିଏ ସୁବିସ୍ତୃତ ତାଲିକା ମଧ୍ୟ ଥିଲା ଓ ଉପସଂହାର ହେଲା ଯେ, ଏହି କୁକୁର ପାଇଁ ପ୍ରଥମେ ସେ ନିଜେ ଓ ତା' ପରେ ଲଛମନ ଓ ସେମାନଙ୍କର ସମସ୍ତ ଭାବୀ-ବଂଶଧରମାନେ ନିଶ୍ଚିତ ଭାବରେ ନର୍କଗାମୀ ହେବେ ।

ଝଡ଼ ସାମାନ୍ୟ କମିଯିବା ପରେ ଲଛମନ ତା'ର ସ୍ୱଭାବ ସୁଲଭ ସ୍ୱରରେ ଅସଲ କଥାଟିକୁ ଉପସ୍ଥାପିତ କରିବାକୁ ଚେଷ୍ଟିତ ହୋଇଥିଲା । କିନ୍ତୁ ପ୍ରତି ଥରର ଚେଷ୍ଟା ଅପର ପକ୍ଷର ପ୍ରତିଆକ୍ରମଣରେ ବିଡ଼ମ୍ବିତ ହେଉଥିଲା କେବଳ । ଅନନ୍ୟୋପାୟ ହୋଇ ଲଛମନ ବିନା ବାକ୍ୟ ବ୍ୟୟରେ ମିସେସ୍ ମାଲହୋତ୍ରା ଦତ୍ତ ତିନିଶହ ଟଙ୍କା ଉଦ୍‌ଘାଟନ କରନ୍ତେ ସମସ୍ତ ଝଡ଼ ମୁହୂର୍ତ୍ତକ ମଧ୍ୟରେ ସ୍ଥିର ହୋଇ ଯାଇଥିଲା ଓ ମିସେସ୍ ଲାଛମନ ସିଂ ଓରଫ୍ ଲଳିତା ଦେବୀ ଏକ ଗୋପୀକା ସୁଲଭ ଭଙ୍ଗୀରେ ଲଛମନଙ୍କ ପାଖକୁ ଆସି ଟଙ୍କାତକ ଅବିଳମ୍ୱେ ତାଙ୍କର କରଗତ କରିଥିଲେ ।

ଶେଷ ପର୍ଯ୍ୟନ୍ତ ଏଇ ଟଙ୍କା ହିଁ 'ଲାଇକା'ର ନିକଟ ଭବିଷ୍ୟତ ଭାଗ୍ୟ ନିୟନ୍ତ୍ରଣ କଲା—ଅର୍ଥାତ୍ ଦ୍ରୁତ—ସିଦ୍ଧାନ୍ତକରାଗଲା ଯେ 'ଲାଇକା' ବାରଣ୍ଡାରେବନ୍ଧାହବ ଓ ତାକୁ ଦିନକୁ ଦୁଇଥର ଖାଇବାକୁ ଦିଆଯିବ । ଦିବା ଭୋଜନ ପରିବାରର ସଂଗୃହୀତ ଉଚ୍ଛିଷ୍ଟ ଓ ରାତ୍ରି ଭୋଜନ ଖଣ୍ଡେ ରୁଟି । କ୍ଷୁଧା ଖାଦ୍ୟ ଅଖାଦ୍ୟର ବିଚାର ରଖେ ନାହିଁ । ତେଣୁ ଅଳ୍ପଦିନ ଭିତରେ 'ଲାଇକା' ସକାଳର ଖଣ୍ଡେ ବିସ୍କୁଟ—ଦ୍ୱିପ୍ରହରର ମାଂସ ଛେଞ୍ଚଡ଼ା—ପକା ପର୍ଯ୍ୟାପ୍ତ ପରିମାଣର ହଳଦୀ ପକା ଭାତ ଓ ରାତ୍ରିର ଦୁଇଖଣ୍ଡ ଦୁଧପକା ରୁଟିକୁ ଅବିଳମ୍ୱେ ଭୁଲିଗଲା ।

ଲଛମନ କାମର ତାଗିଦ୍‌ରେ ସକାଳୁ ଯାଏ, ଫେରେ ରାତିକୁ । ତେଣୁ 'ଲାଇକା'କୁ ଖାଦ୍ୟ ବା ପାଣି ଯଥା ସମୟରେ ଦିଆଯାଇ ପାରେ ନାହିଁ । ଅନଭ୍ୟସ୍ତା କୁଣ୍ଠିତା ଲଳିତା ଅତ୍ୟନ୍ତ ଅନିଚ୍ଛା ସତ୍ତ୍ୱେ 'ଲାଇକା'ରଖାଦ୍ୟ ବନ୍ଦୋବସ୍ତ କରୁଥିଲେ ମଧ୍ୟ ତା'ର ମଳମୂତ୍ରର ବ୍ୟବସ୍ଥା ସମ୍ପର୍କରେ ବିସ୍ମୃତ ହୋଇ ଯାଆନ୍ତି ଓ ବନ୍ଧା ହୋଇଥିବା ଜାଗାରେ 'ଲାଇକା' ପ୍ରାକୃତିକ କ୍ରିୟାକର୍ମ କଲେ ତାକୁ ବାରମ୍ବାର ଯଷ୍ଟି ପ୍ରହାର ସହିବାକୁ ପଡ଼ିଥାଏ । ତେଣୁ ଆଜିକାଲି ପ୍ରାୟଶଃଲଛମନଯିବା ପରେ ପରେ 'ଲାଇକା'କୁ ଖୋଲି ଦିଆଯାଏ ଓ 'ଲାଇକା' ଫେରେ ଅନେକ ରାତିରେ । ଯାଃ ଗଲା—କୁକୁରଟାଏକୋ' ଚୁଲ୍ଲୀରେଯାଇ ପଶିବ—ଘରକୁ ଫେରିବ ହିଁ ଫେରିବ । କିଏ ଗୋଟାଏ କୁକୁରଟାକୁ ହରବଖତ ଘରେ ବାନ୍ଧି ରଖି ଚାରିଓଳି ଖାଇବାକୁ ଗୋଡ଼ ପାଖକୁ ଯୋଗେଇ ଦଉଥିବ । ଏଇ ଥିଲା ଲଳିତାଙ୍କର ସ୍ୱଗତୋକ୍ତି ଓ ମଧ୍ୟେ ମଧ୍ୟେ ପ୍ରକାଶ ଘୋଷଣା ମଧ୍ୟ ।

ଲଛମନ ଘରକୁ ଫେରିଲେ କେବେ କେବେ 'ଲାଇକା' ଆସି ଲଛମନର ନିକଟସ୍ଥ ହୁଏ ଓ ଛମନ ମଧ୍ୟ କଦବା କ୍ୱଚିତ୍ 'ଲାଇକା'ର କ୍ଷିପ୍ର ଅପସୃୟମାନ କେଶରାଶି ଉପରେ ଆଦରରେ ଥରେ ଦୁଇଥର ତା'ର ହାତ ବୁଲେଇ ଆଣେ ଓ ବିନିମୟରେ ଏକାଧାରରେ କୃତାର୍ଥ ଓ କୃତଜ୍ଞ 'ଲାଇକା' ଲଛମନକୁ ଟିକିଏ ଚାଟିଦିଏ । ସେତିକି ଯଥେଷ୍ଟ । ଶୀତ, ଗ୍ରୀଷ୍ମ ନିର୍ବିଶେଷରେ ଲଛମନକୁ ମୁଣ୍ଡ ଉପରେ ଢୁ-ଢୁ ପାଣି ଢାଳି ଗାଧୋଇବାକୁ ପଡ଼େ, ଯେପରି ସେ ଗୋ-ହତ୍ୟା କରିଛି । 'ଲାଇକା'କୁ ମଧ୍ୟ ତା'ର କୃତଜ୍ଞତାର ପୁରସ୍କାର ସ୍ୱରୂପ ପ୍ରଚୁର ମାଡ଼ ହୁଏ ।

ଆଜିକାଲି 'ଲାଇକା' ଆଉ ପ୍ରତିଦିନ ଘରକୁ ଫେରେ ନାହିଁ । ଆସୁଥିଲେ ଆସୁଥିବ ସାତ/ଆଠ ଦିନରେ ଥରେ । ସେତେବେଳକୁ ହୁଏତ ଖାଇବା ବେଳ ଆଖର ହୋଇ ଯାଇଥାଏ । ତେଣୁ ତାକୁ କିଛି ଖାଇବାକୁ ଦବାର ପ୍ରଶ୍ନ ଉଠେ ନାହିଁ ଏବଂ ଇତି ମଧ୍ୟରେ ଲଛମନ ପରିବାର ନିଶ୍ଚିତ ଯେ 'ଲାଇକା' ତା'ର ଖାଦ୍ୟ ବାହାରୁ ଯୋଗାଡ଼ କରି ପାରୁଛି—ନହେଲେ ଏତେ ବଡ଼ କୁକୁରଟାଏ ବଞ୍ଚିଛି କେମିତି ? କିନ୍ତୁ ଯା' ଭିତରେ ଯେ 'ଲାଇକା' କ୍ଷୀଣ ହୋଇ ଯାଇଛି ଓ 'ଲାଇକା'ର ବାର'ଣା ରୁମ ଉପୁଡ଼ି ଗଲାଣି ସେ କଥା ଦେଖି ନ ଦେଖିଲା ପରି ରହନ୍ତି ନିରୂପାୟ ଲଛମନ ଓ ତା'ର ସ୍ତ୍ରୀ ଲଳିତା ।

କିନ୍ତୁ ଠିକ୍ ଏଇ ସମୟରେ 'ଲାଇକା'ର ଅନୁଭୂତି ଥିଲା ଅନ୍ୟ ରକମ । ତାକୁ ତା'ର ଖାଦ୍ୟ ଯୋଗାଡ଼ କରିବାକୁ ନିଜ ଗୋଡ଼ରେ ଠିଆ ହବାକୁଇ ପଡ଼ିବ । ତେଣୁ ଖାଲି ଦିନମାନଙ୍କରେ ବାହାରର ବୁଲା କୁକୁରମାନଙ୍କ ସହିତ ଝଗଡ଼ା କରିବା, ପ୍ରତିବେଶୀର ଅଗଣାରେ କିଛି ଖାଦ୍ୟର ସନ୍ଧାନ କରିବା ଓ ଭୋଜୀଭାତ ହବା ଜାଗାରେ ଧାରଣା ଦେଇ ଠିଆ ହେଇ ଫୋପଡ଼ା ହବା ଖଲିପତ୍ରକୁ ଅପେକ୍ଷା କରି

ରହିବା ଥିଲା 'ଲାଇକା'ର ଦୈନନ୍ଦିନ କର୍ମସୂଚୀ । ଶ୍ରୀରାମପୁର ସହରଟା ସମ୍ପର୍କରେ ତା'ର ବେଶ୍ ଗୋଟାଏ ମୋଟା ମୋଟି ଧାରଣା ମଧ୍ୟ ହୋଇଗଲାଣି । ସନ୍ଧ୍ୟା ହେଲେ ଏଠି ଆସି ଠିଆ ହେବେ ଆଳୁଚପ୍, ପିଆଜି ବିକିବାର ଠେଲାଗାଡ଼ି—ବାଲାମାନେ । ହାଟର କଂସେଇ ଦୋକାନ ପାଖରେ ସକାଳ ସାତଟା ଠାରୁ ଆଠ/ନଅଟା ପର୍ଯ୍ୟନ୍ତ ହମିଦ୍ ମିଆଁ ଗୋଟାଏ ଅତିକାୟ ଚାପଡ଼୍ ଧରି ମାସ ବନେଇଲା ବେଳେ କଦବା କ୍ୱଚିତ୍ ଛିଟିକି ପଡ଼େ ମାଂସର ଟୁକୁରା ଓ ସନ୍ଧ୍ୟା ବେଳେ ଯେଉଁଠି ମାଇକ୍ ବାଜି ନେଳୀ ଆଲୁଅର ରୋଷନୀ ଜଳେ ସେଠି ତ ନିଶ୍ଚିତ ଭୂରି ଭୋଜନ ।

କିନ୍ତୁ ଦିନେ ଗୋଟାଏ ଛୋଟ ଦୁର୍ଘଟଣା ଘଟିଲା । ଦୁର୍ଘଟଣା ବା କ'ଣ, ଖାଦ୍ୟ ଯୋଗାଡ଼ କରୁ କରୁ 'ଲାଇକା'ମାନଙ୍କର ଭାଗ୍ୟରେ ଏହା ପ୍ରାୟ ଘଟିଥାଏ । ଛକ ପାଖରେ ମାଂସ ଚପ୍ ବିକିବା ଲୋକ ହାତରୁ ଗୋଟାଏ ଅସତର୍କ ମୁହୂର୍ତ୍ତରେ ଚପ୍‌ଟାଏ ଖସି ପଡ଼ିଲା ବେଳକୁ ତାହା ଭୂମି ସ୍ପର୍ଶ କରିବା ପୂର୍ବରୁ ପଡ଼ିଥିଲା 'ଲାଇକା'ର ସଦା ଉଦ୍ୟତ ମୁଖ ଗହ୍ୱରରେ । ତା'ର ବା' ଏଥିରେ ଦୋଷ କ'ଣ ଥିଲା ? କିନ୍ତୁ ତା'ପରେ ଚାହା କେଟଲୀରୁ ବେଶ ପ୍ରଭୂତ ପରିମାଣରେ ବାମ୍ଫଉଠା ଗରମ ପାଣି ତା' ଉପରେ ଢାଳି ଦିଆଯାଇଥିଲା । ଅପମାନରେ ନୁହେଁ, କେବଳ ଗୋଟାଏ ଆହତ ପୀଡ଼ିତ ଶରୀର ନେଇ 'ଲାଇକା' ସେଦିନ ଫେରିଗଲା ତା'ର ପୁରାତନ ଆଶ୍ରୟଛଳୀ ଲଛମନର ଘରକୁ ଓ ତା'ର ନିର୍ଦ୍ଧାରିତ ସ୍ଥାନରେ ଚୁପ୍ ହେଇ କୁଣ୍ଡଳୀ ପକେଇ ଶୋଇ ରହିଥିଲା ।

ତା' ଆରଦିନ ସକାଳୁ ଲଛମନ ଓ ତା'ର ସ୍ତ୍ରୀ ଯାହା ପ୍ରତ୍ୟକ୍ଷ କରିଥିଲେ, ତାହା 'ଲାଇକା' ନୁହଁ ବା ଏକଦା ୟେ' ଯେ 'ଲାଇକା' ଥିଲା, ତାହା ମଧ୍ୟ ଅନୁମାନ କରିବା ସମ୍ଭବ ନୁହଁ । ଲଛମନଙ୍କର ସ୍ତ୍ରୀ ଲଳିତାଙ୍କର ଈଷତ ସ୍ଥୂଳକାୟ ହାତର ବାଟଟି ଦେଇ 'ଲାଇକା' ବୋଧହୁଏ ଗଳିଯାଇ ପାରିବ ଓ ତା'ର ଲାଞ୍ଜ ଗୋଟାଏ ଥୁଣ୍ଟା ବୁଢ଼ା ଭେଣ୍ଡି ପରି ଓହଳି ରହିଛି ତା'ର ପଶ୍ଚାତ ଦେଶରୁ । ସର୍ବୋପରି 'ଲାଇକା'ର ପିଠି ଉପରୁ ଏସିଆ ମାନଚିତ୍ର ଆକାରର ଚମ ଉଳୁରି ଯାଇ ଲାଲ ମାଂସ ପୁଳାଏ ଦଲ୍‌ଦଲେଇ ଯାଇଛି ।

ଆହା ! ଦୟା ହେଲା ଲଳିତା ଦେବୀଙ୍କର । ୟାକୁ ପଶୁ ଡାକ୍ତରଖାନାକୁ ନେଇଯାଅ—ହେଲେ ଡାକ୍ତର ଫିସ୍ ଦବ କିଏ ? ଖାଲି ଖାଇବା ପାଇଁ କେଇଟା ଟଙ୍କା କ'ଣ ପକେଇଦେଲେ ହୁଏ ? ପୁଣି ଦିହ ପା' ତ ଅଛି ? ସହଜେ ତ ଓଲିଆ କୁକୁରଟାଏ ।

ଆଗରୁ 'ଲାଇକା' ସମ୍ପର୍କରେ ମାଲହୋତ୍ରା ପରିବାରର ଅନେକ ଚିଠି ଓ ଜିଜ୍ଞାସାର ଉତ୍ତର ଦିଆଯାଇ ନଥିଲା । କିନ୍ତୁ ଆଜି 'ଲାଇକା'ର ଏହି ଦୁର୍ଘଟଣା ସମ୍ବାଦ

ବିସ୍ତାରିତ କରି ଚିଠି ଦିଆଗଲା ସୁଦୂର ନାଇଜେରିଆକୁ ତୁରନ୍ତ କିଛି ଟଙ୍କା ପଠାଇବା ପାଇଁ ।

କିନ୍ତୁ ଟଙ୍କା ମନିଅର୍ଡ଼ର ହେଇ ଆସିଲାବେଳକୁ 'ଲାଇକା' ଚିକିତ୍ସା ଅପେକ୍ଷାରେ ଲଛମନ ପିଣ୍ଡାରେ ଅପେକ୍ଷା କରି ବସି ରହି ନଥିଲା 'ଲାଇକା' ମାତ୍ର ଦିନକ ପରେ କୌଣସି ମତେ ତା'ର ଚାରିପାଦରେ ଠିଆ ହେଲା ଓ ବାରମ୍ବାର କ୍ଷତ ସ୍ଥାନକୁ ମୁହଁ ବଢ଼େଇ ବିଫଳ ହେବା ପରେ ଥରେ ଦୁଇଥର କୁଁ କୁଁ ହେଇ ତା'ର ତୀବ୍ର ପ୍ରତିବାଦ ଘୋଷଣା କଲା ସତ, କିନ୍ତୁ ସେ ତା'ର ଦୂରନ୍ତ ଅଭିଯାନରେ ବାହାରିଲା ।

ଏ 'ଲାଇକା' ସେ 'ଲାଇକା' ନୁହଁ, ଏ 'ଲାଇକା' ମାଂସ ଭାତ ଖାଇସାରି ଖରାଦିନ ଦ୍ୱିପ୍ରହରରେ ସାମାନ୍ୟ ତନ୍ଦ୍ରାବିଳାସୀ 'ଲାଇକା' ନୁହଁ । ଏ ଲାଇକା ଲଛମନ ପିଣ୍ଡାରେ କୁଣ୍ଡଳୀକୃତ ହୋଇ ଖାଦ୍ୟ-ଅପେକ୍ଷମାଣ 'ଲାଇକା' ନୁହଁ । ଏ 'ଲାଇକା' ବରାବିକାଳୀଙ୍କ କ୍ୟାବିନ୍ ଆଗରେ ଭାଗ୍ୟକୁ ଆଦରି ଧୂଳିରେ ଗର୍ତ୍ତ କରି ପଡ଼ି ରହିଥିବା 'ଲାଇକା' ନୁହଁ । 'ଲାଇକା'ର ଆଖିରେ ଏକ ଅସମ୍ଭବ ତୀକ୍ଷ୍ଣତା ପରିସ୍ଫୁଟ ହେଇଚି, ଯାହାକୁ ଶ୍ରୀରାମପୁର ସହରର ସମସ୍ତେ ଏପରିକି ନଗରପାଳ ପର୍ଯ୍ୟନ୍ତ ହିଂସ୍ରତା ବୋଲି ତର୍ଜମା କରିଥାଆନ୍ତି ।

'ଲାଇକା' ଯେତେବେଳେ ପୁନର୍ବାର ଫେରିଆସିଲା ରାସ୍ତାଧାରକୁ, ସେତେବେଳେ ତା'ର ଚିର-ସହଚର ବୁଲା କୁକୁରମାନେ ମଧ୍ୟ ତାକୁ ସମୀହ କରି ଚଳିଲେ । 'ଲାଇକା' ଅନେକ ଶକ୍ତି ସଞ୍ଚୟ କରିପାରିଛି ବୋଲି ନୁହେଁ—'ଲାଇକା'ର ବଞ୍ଚି ରହିବାର ଦୁର୍ବାର ଲାଳସା ତା'ର କୁତ୍ସିତ ଦେହ ଓ ତୀକ୍ଷ୍ଣ ଆଖି ଦୁଇଟା ଦେଇ ଅଗ୍ନି ସ୍ଫୁଲିଙ୍ଗ ପରି ଆତ୍ମପ୍ରକାଶ କରୁଚି ବୋଲି ।

ବିଳାସ ବର୍ଦ୍ଧିତ 'ଲାଇକା' ପ୍ରଥମେ ଦୁଃଖିତ ହେଉଥିଲା ମାଲହୋତ୍ରା ପରିବାରର ସାନ୍ନିଧ ହରେଇ । ତା'ପର ବୋଧହୁଏ ଏକ ଗଭୀର ନ୍ୟୁନତାବୋଧ ଭିତରେ ସେ ଲଛମନ ପରିବାର ସହିତ ସାଲିସ୍ କରି ନେଇଥିଲା । ତା' ପରେ ସେ ରାସ୍ତାରେ ବୁଲିଲା ବେଳେ ତା'ର ମନେ ହେଇଥିଲା ସେ ଶ୍ରୀରାମପୁର ସହରରେ ଏକ ଅବାଞ୍ଛିତ ଜୀବ । ସେଇଥିପାଇଁସେ ଦୂରେଇ ଦୂରେଇ ଠିଆ ହଉଥିଲା । ଅସୀମ ଧୈର୍ଯ୍ୟ ଧରି ଭୋଜିଭାତର ଖଳିପତର ଫିଙ୍ଗାକୁ ଅପେକ୍ଷା କରି ରହୁଥିଲା ଯେମିତି ହିଡ଼ ମୂଳର ବିଲୁଆମାନେ ସହର ଭିତରକୁ ଆସିଗଲେ ସବୁବେଳେ ଚଙ୍ଗ ଚଙ୍ଗ ହୁଅନ୍ତି ସେହିପରି ଗୋଟାଏ ନ୍ୟୁନତାବୋଧ—କିନ୍ତୁ ଆଜିର 'ଲାଇକା' ଥିଲା ଅନ୍ୟରକମ ।

ଇତି ମଧ୍ୟରେ ତା' ନାଆଁ ଆଉ 'ଲାଇକା' ନୁହେଁ । କେହି ତାକୁ 'ଲାଇକା' ବୋଲି ଡାକେ ନାହିଁ । ସେ କିଛି ସମୟ ପାଇଁ ଥିଲା ଗୋଟାଏ କୁକୁର ବା ବୁଲା କୁକୁର, କିନ୍ତୁ

ଅଳ୍ପ ସମୟ ଭିତରେ କୁତ୍ସିତ ଦର୍ଶନ 'ଲାଇକା'ର ନାଆଁ କେଉଁ ଯାଦୁକର ବଳରେ ହେଇଯାଇଛି ସେଇ କୁକୁରଟା ।

ସେଇ କୁକୁରଟା ଇତି ମଧ୍ୟରେ ତା'ର ନରମ ମାଟିଆ ଲୋମର କାର୍ପେଟ ହରେଇ ବସିଚି—ତା' ଦେହରେ ଗୋଟାଏ ହେଲେ ରୁମ ନାହିଁ । ଦେହଟା ଦେଖିବାକୁ ବାଇଗଣିଆ ମିଶା, କାଳିଆ-ଆଖି ରକ୍ତ ବର୍ଣ୍ଣ—ଏବଂ ପଛପଟେ ଓହଳି ରହିଛି ଏତେ ଟିକେ କାଠିପରି ଲାଞ୍ଜ ।

ଶ୍ରୀରାମପୁରର ବୁଲାକୁକୁର ସଂଘ ଭିତରେ ସେ ମଧ୍ୟ ଚିହ୍ନଟ ହୋଇ ସାରିଛି । ତାକୁ ଦେଖିଲେ ପିଲାମାନଙ୍କର ଟେକା ମାଡ଼ । ବଡ଼ମାନଙ୍କର ଯଷ୍ଟି ଉତ୍ତୋଳନ ଏବଂ ବିବାହ ଭୋଜିରେ ତାକୁ ସେ ସ୍ଥାନରୁ ବିତାଡ଼ିତ ନକଲା ପର୍ଯ୍ୟନ୍ତ ଯେପରି ଉପସ୍ଥିତ ଜନତାର ନିସ୍ତାର ନାହିଁ ।

କିନ୍ତୁ 'ଲାଇକା' ଶ୍ରୀରାମପୁରର ସଭ୍ୟ, ଭଦ୍ର ଓ ଅପେକ୍ଷାକୃତ ଗ୍ରହଣୀୟ ବୁଲା କୁକୁର ସମାଜରୁ ବିତାଡ଼ିତ ହେଇ ଆଶ୍ରୟ ନେଇଛି ସହରର ଉପକଣ୍ଠର ମଶାଣିପଦାର କୁକୁରମାନଙ୍କ ଭିତରେ । ଆଶ୍ରୟ ଠିକ୍ ନୁହେ—ଗଣ୍ଡେ ଚାଉଳ ପାଇଁ, ଟିକିଏ ଗୋରୁ ମାଂସ ପାଇଁ ତାକୁ ରୀତିମତ ଲଢ଼େଇ କରିବାକୁ ପଡ଼ିଛିସେଠିକାର କୁକୁର ସଂଘ, ଶାଗୁଣା ସମିତି ଓ ବିଲୁଆ ବିରାଦରି ସହିତ । ତା' ପରେ ଧୀରେ ଧୀରେ ସେ ମଶାଣିପଦାର କୁକୁର ସଂଘରେ ଏକ ଚାନ୍ଦା ଦଉ ନଥିବା ସଭ୍ୟ ହିସାବରେ ଗୃହୀତ ହେଇଯାଇଛି ।

କିନ୍ତୁ ଏବେ ବି 'ଲାଇକା' ଶ୍ରୀରାମପୁର ସହର ଭିତରକୁ ଆସେ । ସେଠି ତା'ର ପ୍ରତିଯୋଗୀ କେହି ନାହିଁ । କାରଣ ତା'ର ଉପସ୍ଥିତି ଅନ୍ୟ ବୁଲା କୁକୁରମାନଙ୍କୁ ଏକ ସାବଧାନ ଦୂରତ୍ୱରେ ରହିବାକୁ ସତର୍କ କରି ଦେଇଥାଏ । ତା'ର ସେ ପୂର୍ବତନ ନ୍ୟୁନବୋଧ ନାହିଁ । ସେ ତରତରରେ ଚାଲେ ନାହିଁ । ସେ ଚାଲେ ମୁଣ୍ଡ ତଳକୁ କରି ଝୁଲି ଝୁଲି ଆସ୍ତେ ଆସ୍ତେ । ଫୁଃ ! କିଏ ତା'ର କ'ଣ କରିବ ?

'ଲାଇକା'ର ଆଗମନ ଶ୍ରୀରାମପୁର ସହରରେ ଏକ ସତର୍କ ଘଣ୍ଟି ବଜାଏ । ପୁଣି ସେଇ କୁକୁରଟା ଆସିଚି । କାଲି ଯାଉଥିଲା—ମୋ ପୁଅକୁ ଗୋଡ଼େଇ ଆସିଲା । ଶ୍ରୀରାମପୁରର ଗୃହିଣୀମାନେ ପରସ୍ପରର ଶାଢ଼ୀ, ଗହଣା ଓ କିଛି ପରଚର୍ଚ୍ଚା ଛାଡ଼ି ଯେ ସେଇ କୁକୁରଟା କଥାରେ ସେମାନଙ୍କର ଅବସର ବିନୋଦନ ସମୟ ଅତିବାହିତ କଲେ, ଏହା ପ୍ରମାଣିତ କରେ ଯେ ସମଗ୍ର ଶ୍ରୀରାମପୁର ସେଇ କୁକୁରଟା ବିଷୟରେ ଅତିମାତ୍ରାରେ ସଚେତନ ।

ସାରା ସହରରେ ସମସ୍ତେ ଧୀରେ ଧୀରେ ସତର୍କ ହେଲେ । ସେଇ କୁକୁରଟା—ସେଇ ରୁମଛଡ଼ା, ବାଇଗଣିଆ, ଅପରଛନିଆ ପାଗଳା କୁକୁରଟା । 'ଲାଇକା'ର ମୁଣ୍ଡ

ତଳକୁ କରି ଝୁଲା ଚାଲିର କେବଳ ବ୍ୟତିକ୍ରମ ହୁଏ ଯେତେବେଳେ ପ୍ରତିଟି ନାଗରିକ ତାକୁ ଏକ ଉଦ୍ୟତ ଯଷ୍ଟିରେ ସ୍ୱାଗତ କରନ୍ତି । ଏବେ ବି ତା'ର ଦୌଡ଼ିବା ଶକ୍ତିର ଅପଚୟ ଘଟି ନାହିଁ । ସେ ତଥାପି ଦୌଡ଼ିପାରେ ବିଦ୍ୟୁତ ବେଗରେ, ନ ହେଲେ ବୁଲା ଷଣ୍ଢ, ମଶାଣି ପଦାର କୁକୁର, ଧୂର୍ତ୍ତ ବିଲୁଆ ଓ ଅତିକାୟ ଶାଗୁଣାମାନଙ୍କର ସେ ମୁକାବିଲା କରିବ କେମିତି ?

କଥାଟା ଆଉ ବ୍ୟକ୍ତିଗତ ସ୍ତରରେ ନାହିଁ । ଏହା ଏକ ସାମୂହିକ ଆତଙ୍କ ହେଇ ନଗରପାଳଙ୍କ ପାଖରେ ଦରଖାସ୍ତ ପଡ଼ି ସାରିଲାଣି ଓ ନଗରପାଳଙ୍କ ଆଜ୍ଞାବହ ବହୁ ହରିଜନମାନେ ଯଷ୍ଟି ଓ ଯଷ୍ଟି ସଂଯୁକ୍ତ ତାର ଫାଶ ଧରି 'ଲାଇକା'କୁ ଧରିବାକୁ ଚେଷ୍ଟିତ ହେଲେଣି । କିନ୍ତୁ 'ଲାଇକା' ବିଦ୍ୟୁତ୍ ବେଗରେ ଆତଯାତ କରେ । କେତେବେଳେ ଅପନ୍ତରାକୁ ଗଡ଼ିଯାଏ ତ କେତେବେଳେ କେଉଁ ପାଚିରୀ ଉପରେ ହଠାତ୍ ଡେଇଁ ପଡ଼ି ଉଭାନ୍ ହେଇଯାଏ । ଶ୍ରୀରାମପୁର ମ୍ୟୁନିସିପାଲିଟିର ଅନୁଧାବନକାରୀ ଦଳ ତା'ର ପତ୍ତା ପା'ନ୍ତି ନାହିଁ ।

ଶ୍ରୀରାମପୁର ଜନସାଧାରଣଙ୍କ ପାଇଁ 'ଲାଇକା' ଏକ ସାଂଘାତିକ ଓ ସାମୂହିକ ବିପତ୍ତି ହେଇ ସାରିଲାଣି । ଶ୍ରୀରାମପୁର ମ୍ୟୁନିସିପାଲିଟି ପାଇଁ 'ଲାଇକା' ଏକ ଚାଲେଞ୍ଜ । ସେଦିନ ନିଜେ ହେଲ୍‌ଥ ଇନ୍‌ସ୍‌ପେକ୍ଟର ବହୁ ମେହେନ୍ତର ପରିବେଷ୍ଟିତ ହୋଇ ଜୀପ୍‌ରେ ବସିଲେ । ଆଜି 'ଲାଇକା'ର ରକ୍ଷା ନାହିଁ । 'ଲାଇକା'ର ଅବଶିଷ୍ଟ ଶୀର୍ଣ୍ଣ ଦୀର୍ଘ ଶରୀର ଗୋଟାଏ ଜ୍ୟା-ମୁକ୍ତ ଧନୁର ବେଗରେ ଦୌଡ଼ିଛି ଓ ତା' ପଛେ ପଛେ ଦୌଡ଼ିଛି ଘର୍ଘର ଶବ୍ଦ କରି ମ୍ୟୁନିସିପାଲିଟିର ଜୀପ୍ ।

ଠିକ୍ ସେହି ମୁହୂର୍ତ୍ତରେ ମିଃ ମାଲହୋତ୍ରାଙ୍କର କନ୍ୟା ନାଇଜେରିଆଶେ ଆଲ୍‌ବମ୍ ଖୋଲି 'ଲାଇକା'ର ଫଟୋ ଦେଖି 'ଲାଇକା'କୁ ହୁଏତ ସ୍ମରଣ କରୁଥିଲେ । ଠିକ୍ ସେତିକିବେଳେ ଲଛମନ ଓ ତା'ର ସ୍ତ୍ରୀ ରିକ୍‌ସାରୂଢ଼ ହୋଇ ଲୁଗା ଦୋକାନରୁ ଶାଢ଼ୀ କିଣିବାକୁ ବାହାରୁଥିଲେ ଓ 'ଲାଇକା' ତା'ର ଶୀର୍ଣ୍ଣ ଅସମର୍ଥ ଗୋଡ଼ ଚାରିଟା ଦେଇ ଦୌଡୁଥିଲା ଅଣନିଶ୍ୱାସୀ ହୋଇ, ଜୀବନକୁ ପଣ କରି ।

ଲୋକମାନେ ରାସ୍ତାର ଦୁଇ ପାଖେ ଭିଡ଼ ଜମେ ଦେଲେଣି । ବିଚରା 'ଲାଇକା'କୁ କେଉଁ ପାଖ ଦେଇ ଖସି ଯିବାର ବାଟ ନାହିଁ । ତା'କୁ ଦୌଡ଼ିବାକୁ ପଡ଼ିବ ସିଧା । ଆଜି ମଲା ସେଇ କୁକୁରଟା—କିନ୍ତୁ ନାଁ—ସେଇ ଅପରଛନିଆ ବାଇଗଣିଆ କୁକୁରଟା ବିଦ୍ୟୁଲ୍ଲତା ପରି କେତେବେଳେ ଦିଶୁଛି ଓ ପୁଣି କେତେବେଳେ ଦିଶୁନି । ପଛେ ପଛେ ରେରେକାର ରବ କରି ଜୀପ୍ । ଆଗରେ ଲେଭ୍‌ଲ କ୍ରସିଂ ଗେଟ୍ ବନ୍ଦ ହେଇଗଲାଣି ଓ ଗୋଟାଏ ଭୀମ ଗର୍ଜ୍ଜନ କରି ଗଡ଼ି ଚାଲିଛି ଗୋଟାଏ ମାଲଗାଡ଼ି ।

ନିଜକୁ ସମ୍ଭାଳିବାର କ୍ଷମତା ଆଉ ନଥିଲା 'ଲାଇକା'ର । 'ଲାଇକା' ସିଧା ଲେଭ୍‌ଲ କ୍ରସିଂ ଗେଟ୍ ପାର ହେଇ ପଶିଗଲା ଗାଡ଼ିର ଚକ ଭିତରକୁ ଓ ତା' ତଳେ ନେପ୍‌ଟେଇ ଗଲା ଯେମିତି କାଛରେ ନେପ୍‌ଟେଇ ରହେ ଝିଟିପିଟି । ଗଡ଼ି ଯାଉଥିବା ଚକର ଫାଙ୍କରେ ତଥାପି ଦେଖା ଯାଉଥିଲା ଯେ 'ଲାଇକା'ର ପାଟି ଭିତରୁ ଲମ୍ବା ଜିଭଟାଏ ବାହାରି ପଡ଼ିଛି ପଦାକୁ ।

ଜୀପ୍ ରହିଗଲା । ଗର୍ଜ୍ଜନ କରି ମାଲଗାଡ଼ି ତା'ର ଶେଷ ଡବାଟିକୁ ଟାଣି ଅଦୃଶ୍ୟ ହୋଇଗଲା । ଏବଂ ପଟା ପଟା କାଠ ପ୍ଲାଙ୍କ ଉପରେ ତଥାପି ସେମିତି ପେନ୍‌ଟି କରି ପଡ଼ି ରହିଥିଲା 'ଲାଇକା'।

ଉପସ୍ଥିତ ଜନତା ଭିତରେ ଯୁଗପତ୍ କରୁଣା ଓ ଆଶ୍ୱସ୍ତିର ସଂଚାର ହେଲା ଓ କିଛି ସମୟ ପରେ ଜନତା ମଉଳିଗଲେ ଓ ତଥାପି ରେଲ ଲାଇନ୍‌ର ପ୍ଲାଙ୍କ ଉପରେ ପଡ଼ି ରହିଥିଲା 'ଲାଇକା'—ସେମିତି ଲେପ୍‌ଟି ହେଇ ଝିଟିପିଟି ପରି ।

ବେଶ୍ କିଛି ସମୟ ପରେ 'ଲାଇକା' ଆସ୍ତେ ଉଠି ଚାରିପଟକୁ ଚାହିଁଲା ଓ ଧୀରେ ଧୀରେ ଗେଟ୍‌ବାଲାର କ୍ୟାବିନ୍ ତଳକୁ ଯାଇ ଅଦୃଶ୍ୟ ହେଇ ଯାଇଥିଲା ।

ଶ୍ରୀରାମପୁର ଆଶ୍ୱସ୍ତ ହେଲା ଯେପରି ସେଇ ସହର ଏକ ଆସନ୍ନ ପ୍ଲେଗ୍‌ର ବିଭୀଷିକାରୁ ମୁକ୍ତି ପାଇଛ । ଏବେ ମଧ୍ୟ ଶ୍ରୀରାମପୁରର ଜନତା 'ଲାଇକା'କୁ ନେଇ ଗର୍ବ କରନ୍ତି । କେହି କେହି କୁହନ୍ତି, ''ନାଁ, 'ଲାଇକା' ସେହିଦିନ ଟ୍ରେନ ତଳେ ଚାପା ପଡ଼ି ମରିଗଲା''—କିନ୍ତୁ ଆଉ ଦଳେ କୁହନ୍ତି, 'ଲାଇକା' ଏବେ ମଧ୍ୟ ବଞ୍ଚିଛି' ଏବଂ ସେମାନଙ୍କ ଭିତରୁ କେହି କେହି ତାକୁ ଶ୍ରୀରାମପୁର ଉପକଣ୍ଠରେ ଦେଖିଛନ୍ତି । କିନ୍ତୁ 'ଲାଇକା'ର ସମସ୍ତ ଇତିହାସ କେହି ଜାଣନ୍ତି ନାହିଁ—ମୋ ଛଡ଼ା ଓ ବୋଧହୁଏ ଲଛମନ ଛଡ଼ା । କିନ୍ତୁ କେହି ଦିନେ ପଚାରିବାର ଶୁଣି ନାହିଁ ଲାଇକାର ଦୋଷ କଅଣ ?ସେ କାହାର ବା କଅଣ କରିଥିଲା ? କାହିଁକି ବା ତା' ବିରୁଦ୍ଧରେ ଅଚାନକ ସମଗ୍ର ଶ୍ରୀରାମପୁର ସହର ଯୁଦ୍ଧ ଘୋଷଣା କଲା ?

ମୁଁ ଲଛମନ ଘର ପାଖପାଖି ରୁହେ ଓ ମାଲହୋତ୍ରା ପରିବାରଙ୍କ ସହିତ ପରିଚିତ । ସେମାନେ ଯେଉଁଦିନ ଉଡ଼ାଜାହାଜରେ ନାଇଜେରିଆ ଗଲେ ସେଦିନ ମୁଁ ସେମାନଙ୍କୁ ବିଦାୟ ଦବା ପାଇଁ ବିମାନଘାଟୀକୁ ଯାଇଥିଲି । 'ଲାଇକା' ପାଖରୁ ଟିକିଏ ଦୂରେଇ ହେଇ ଠିଆ ହୋଇଥିଲା ମୃଦୁଳା । ଖୁବ୍ ଖୁସିବାସୀ ଝିଅ ସିଏ । କଥା କହିଲା ବେଳେ ତା'ର ଈଷତ୍ ନୀଳ ଆଖି ଖୁସିରେ ଝିଲ୍‌ମିଲ୍ ହେଇ ଉଠେ । କିନ୍ତୁ ସେଦିନ ସେ ଥିଲା ବିମର୍ଷ ଓ 'ଲାଇକା' ଠାରୁ ବିଦାୟ ନେଲା ବେଳେ ତା'ର ଆଖିର ଦୁଇ ଟୋପା ଅଶ୍ରୁ ଲାଉଞ୍ଜର ମୋଜାଇକ୍ ଉପରେ ପଡ଼ି ଅସଂଖ୍ୟ ଯାତ୍ରୀଙ୍କର ଯୋତା ତଳେ ନିଶ୍ଚିହ୍ନ

ହେଇ ଯାଇଥିଲା । ଫେରିବା ବେଳେ ବାଟରେ ଲଛମନ ଓ ତା' ପଛେ ପଛେ ଏକ ଅସହାୟ ବାଧ ଶିଶୁ ପରି 'ଲାଇକା'କୁ ମଧ ଫେରିବାର ଦେଖିଥିଲି ।

ଯେଉଁଦିନ ଶ୍ରୀରାମପୁର ମ୍ୟୁନିସିପାଲିଟି 'ଲାଇକା' ବିରୁଦ୍ଧରେ ପ୍ରକାଶ୍ୟ ଯୁଦ୍ଧ ଘୋଷଣଶ କଲା ସେଦିନ ମୁଁ ମଧ ଉପସ୍ଥିତ ଥିଲି । ରାସ୍ତାର ଦୁଇ କଡ଼ରେ ଉପସ୍ଥିତ ଜନତାର ଭିଡ଼ ଭିତରର ଦେଇ 'ଲାଇକା' ଯେତେବେଳେ ଦୌଡୁଥିଲା ମୋର ମନେ ହେଇଥିଲା ଯେମିତି ଗୋଟାଏ ଈଷତ୍ ବାଇଗଣିଆ ଅନୁଜ୍ଜ୍ୱଳ ଆଲୋକ ବୃତ୍ତାକାରରେ ପିଚୁ ରାସ୍ତା ଉପର ଦେଇ ଅତି କ୍ଷିପ୍ର ଗତିରେ ଗଡ଼ି ଗଡ଼ି ଯାଉଛି । ମନେ ହେଉଥିଲା ଯେପରି 'ଲାଇକା'ର କ୍ଷୁଦ୍ର ଶରୀର ଅତି କ୍ଷିପ୍ର ଗତି ଫଳରେ ବିସ୍ଫୋରିତ ହେଇ ଏକ ଆଲୋକ ରେଖାରେ ରୂପାନ୍ତରିତ ହେଇଯାଇଛି । ଜନତା ମଉଳିଯିବାର ଅନେକ ପରେ ମୁଁ 'ଲାଇକା'କୁ ଟ୍ରେନ୍ ଲାଇନ୍ ଉପରୁ ଆସ୍ତେ ମୁଣ୍ଡ ଟେକି ପରିସ୍ଥିତିକୁ ଅନୁଧ୍ୟାନ କରି ଧୀରେ ଧୀରେ କ୍ୟାବିନ୍ ତଳକୁ ଓହ୍ଲେଇଯିବାର ଦେଖିଛି । ସେଦିନ ମୁଁ ଘରକୁ ଫେରିଥିଲି ଏକ ଗଭୀର ଅସହାୟବୋଧ ନେଇ ।

ତା'ପରେ ମୁଁ ସେଇବାଟ ଦେଇ ଗଲା ବେଳେ ଲଛମନର ଦାଣ୍ଡ ଦୁଆର ଖୁଣ୍ଟିରେ ବନ୍ଧା ହେଇ ରହିଥିବା ଲଙ୍ଗଳା ଚେନ୍‌ଟା ଉପରେ ମୋର ଆଖି ପଡେ । କୌତୁହଳ ହେଲେ ମଧ ମୁଁ ଲଛମନ ସହିତ 'ଲାଇକା' ସମ୍ପର୍କରେ ଆଲୋଚନା କରିବାକୁ ଏଡ଼େଇ ଯାଇଛି । କଅଣ ବା କହିବ ଲଛମନ ? କହିବ ଅନେକ ଦିନ ଧରି 'ଲାଇକା' ଫେରି ନାହିଁ । ମୁଁ ଜଣେ ସାମ୍ବାଦିକ ଓ ଯେ କୌଣସି ବିଷୟକୁ ନେଇ ଗଳ୍ପ ତିଆରି କରିବା ମୋର ପେଷା । 'ଲାଇକା'ର ରହସ୍ୟମୟ ମୃତ୍ୟୁ ବା ଅନ୍ତର୍ଦ୍ଧାନ ଘଟଣା ନେଇ ସୁନ୍ଦର ଗଳ୍ପଟିଏ ହେଇ ପାରିଥାଆନ୍ତା, କିନ୍ତୁ କାଳେ ସେ ଗଳ୍ପ ମୃଦୁଳା ଦୈବାତ୍ ନାଇଜେରିଆରେ ପଢ଼ି ପକେଇବ ସେହି ଆଶଙ୍କାରେ ମୁଁ ମୋର ଖବରକାଗଜରେ ତା' ଉପରେ ଗଳ୍ପ ମଧ ଲେଖି ନାହିଁ ।

କିନ୍ତୁ ମୁଁ ଜାଣେ 'ଲାଇକା' ମରି ନାହିଁ । ତେଣୁ ମୁଁ ଲଛମନ ସିଂର ଦାଣ୍ଡ ଖୁଣ୍ଟିରେ ବନ୍ଧା ହୋଇଥିବା ଲୁହା ଶିକୁଳୀକୁ ଅତିକ୍ରମ କରି ମଶାଣିପଦାକୁ ଯାଇଛି 'ଲାଇକା'ର ଅନୁସନ୍ଧାନରେ । ସେଠି ଅନେକ କାଳିଆ, କଷରା ବୁଲା କୁକୁରଙ୍କ ମେଳରେ ମୁଁ 'ଲାଇକା'କୁ ଠାବ କରିଛି । ମଶାଣିପଦାର ସବୁ କୁକୁରମାନଙ୍କ ପରି 'ଲାଇକା' ମଧ କୌଣସି ବ୍ୟକ୍ତିର ଉପସ୍ଥିତି ପାଇଁ ହେଇଯାଇଛି ସମ୍ପୂର୍ଣ୍ଣ ଅନାସକ୍ତ । ତାକୁ ତା'ର କାଠି ଲାଙ୍ଗୁଡ଼କୁ ଠିଆ କରି ଉଦ୍ଦେଶ୍ୟହୀନ ଭାବରେ ଯାଡ଼େ ସିଆଡ଼େ ବୁଲିବାର ଦେଖିଛି । 'ଲାଇକା'ର ରଙ୍ଗ ଅଛି ସେମିତି ବାଇଗଣିଆ ମିଶା କଳା । କିନ୍ତୁ ତା'ର ଡାହାଣ କାନଟା ମୂଳରୁ କଟି ଯାଇଛି । ବୋଧହୁଏ ଗୃହ ଯୁଦ୍ଧର ପରିଣତି । ତା'ର ପିଠି ଉପରେ ରିଲିଫ୍ ମ୍ୟାପ୍ ପରି ଯାଦୁ ଯାଦୁ ହେଇ କଅଣ ଗୁଡ଼ାଏ ମାଡ଼ି ଯାଇଛି । କୌତୁହଳୀ

ହେଇ 'ଲାଇକା' ବୋଲି ଡାକି ଦେଇ ତା' ସହିତ ଏକ ନିଷ୍ଠୁର ପରିହାସ କରିଛି । ହଠାତ୍ ତା'ର କାନ ଦୁଇଟା ଠିଆ ହେଇଯାଏ ଏବଂ ପରେ ପରେ ସେ ଶବ୍ଦ ଆସୁଥିବା ଦିଗକୁ ମୁହଁ ଫେରେଇ ଚାହେଁ, କିନ୍ତୁ କାହିଁ କୋଉ ଦୂରରେ ଥିବା ନାଇଜେରିଆସ୍ଥିତ ମାଲହୋତ୍ରା ପରିବାରର କାହାକୁ ଦେଖିବାକୁ ନପାଇ ସେ ପୁଣି ଥରେ ଭୂଇଁରେ ନାକ ଲଗାଇ କଅଣ ଶୁଙ୍ଘେ ଓ ତା'ର ନାଁର ଶବ୍ଦଟାକୁ ଏକ ଭ୍ରମ ବା ଦୁଃସ୍ୱପ୍ନ ପରି ଭୁଲିଯାଏ ।

ମୋର ଅବସର ମୁହୂର୍ତ୍ତରେ ବା ରାତ୍ରିର ନିଦ୍ରାହୀନ ମୁହୂର୍ତ୍ତ ଗୁଡ଼ିକରେ କେବେ କେବେ 'ଲାଇକା' କଥା ମନେ ପଡ଼େ । ମୁଁ ମଝିରେ ମଝିରେ ଦିବାସ୍ୱପ୍ନ ଦେଖେ, ମୃଦୁଳା—ସେଇ ହସଖୁସୀ ନେଳୀ ନେଳୀ ଆଖି-ଝିଅଟି ହୁଏତ 'ଲାଇକା' ପାଇଁ ନାଇଜେରିଆରୁ ଗୋଟିଏ ସାପ ଚମଡ଼ାର ବକ୍‌ଲିସ୍ କିଣିଛି । ସେମାନେ ବୋଧହୁଏ ଆଉ ଅଳ୍ପଦିନ ପରେ ଆସି ପହଞ୍ଚି ଯିବେ ଶ୍ରୀରାମପୁର ବିମାନଘାଟୀରେ । ବିମାନଘାଟୀରୁ ଘର ପର୍ଯ୍ୟନ୍ତ ମାତ୍ର ଦୁଇ କିଲୋମିଟରର ରାସ୍ତା ମୃଦୁଳାକୁ ମନେ ହେଉଥିବ ଯେମିତି ମାଇଲ ମାଇଲ ଲମ୍ବା । ତା'ପରେ ଘରେ ପହଁଚି ସେ ଆଗ ଦୌଡ଼ି ଆସିବ ଲଛମନ୍ ଘରକୁ । ଖାଲି ଚେନ୍ ଓ ଅପରାଧୀ ଲଛମନ୍‌କୁ ଦେଖି ତା'ର ମୁହଁରୁ ସବୁଯାକ ରକ୍ତ ଶୁଖିଯିବ ଯେମିତି ଗୋଟାଏ ବ୍ଲଟିଙ୍ଗ ପେପର୍ ଦେଇ ତା'ର ମୁହଁର ଦୁଧ-ଅଳତା ମିଶା ରଙ୍ଗ ସବୁ କିଏ ହଠାତ୍ ପୋଛି ନେଇଗଲା ।

କିଛିଦିନ ପରେ ମୋର ମଧ୍ୟ ମାଲହୋତ୍ରା ପରିବାର ସହିତ ଦେଖାହେବ । ଦେଖା ହେବ ମୃଦୁଳା ସହିତ । କିନ୍ତୁ ମୋର କର୍ତ୍ତବ୍ୟ କଅଣ ମୁଁ ତା ଠିକ୍ କରି ପାରୁ ନାହିଁ । ମୁଁ କଅଣ 'ଲାଇକା' ସମ୍ପର୍କରେ ସମସ୍ତ ଘଟଣା ବିଷୟରେ ଚୁପ୍ ରହିଯିବି ? ନାଁ ମୁଁ ମୃଦୁଳାକୁ କହିବି ଯେ ତା'ର 'ଲାଇକା' ବଞ୍ଚିଛି ଓ ଏକ ନରହତ୍ୟା ମୋକଦ୍ଦମାର ଜଣେ ରାଜସାକ୍ଷୀ ପୁଲିସକୁ ଲୁକ୍‌କାୟିତ ଛୁରୀର ସନ୍ଧାନସ୍ଥଳୀକୁ ନେଇଯିବା ପରି ମୃଦୁଳାକୁ ନେଇଯିବି ଶ୍ରୀରାମପୁର ଉପକଣ୍ଠର ମଶାଣି ପଦାକୁ ?

ମୋର ସ୍ୱପ୍ନ ଭାଙ୍ଗିଗଲେ ମୁଁ ବାସ୍ତବତାକୁ ଫେରିଆସି ଆତଙ୍କିତ ହେଇପଡ଼େ ଓ ମନେ ମନେ ପ୍ରାର୍ଥନା କରେ ଯେ ମାଲହୋତ୍ରା ପରିବାର ଆଉ ଥରେ ଶ୍ରୀରାମପୁରକୁ ଫେରି ନ ଆସନ୍ତୁ ।

କିନ୍ତୁ ଏଇଟା ତ ସ୍ୱପ୍ନ ନୁହେଁ ଯେ ପ୍ରତି ସାତ ଆଠ ଦିନରେ ଡାକବାଲା ଲଛମନ ସିଂ ଘରକୁ ଚିଠି ଦେବା ପାଇଁ ଆସେ । ଅନେକ ଦିନୁ ନିଜର ଭିଟାମାଟି ଛାଡ଼ିଥିବା ଶହେ ଟଙ୍କା ଦରମାର ଅଡ଼ରଲି ଲଛମନ ସିଂ ଘରକୁ କିଏ ବା ଏତେ ଚିଠି ଲେଖେ ତା ପୁଣି ଉଡ଼ାଜାହାଜ ଯୋଗେ ଆସୁଥିବା ଚିଠି ।

●●

# କନିଅପା

ପରିବାରର ସମସ୍ତେ ତାଙ୍କୁ ଡାକୁଥିଲୁ କନିଅପା ବୋଲି ।

ଆମେ ପିଲାମାନେ ସମସ୍ତେ ତାଙ୍କୁ ସିଧା ସଳଖ ଡାକୁଥିଲୁ କନିଅପା ବୋଲି, କିନ୍ତୁ ବାପା, ମା' ବା ଖୁଡ଼ୀ ଓ ଅନ୍ୟାନ୍ୟ ଗୁରୁଜନମାନେ ତାଙ୍କୁ ପ୍ରତ୍ୟକ୍ଷରେ ନାଁ ଧରି ଡାକୁ ନଥିଲେ ମଧ ପରୋକ୍ଷରେ ସେଇ କନିଅପା ସମ୍ବୋଧନ ଦ୍ୱାରା ହିଁ ତାଙ୍କ ନାଁର ଉଲ୍ଲେଖ କରୁଥିଲେ ।

ତାଙ୍କର ବୟସ କେତେ ସେ ନିଜେ ଜାଣନ୍ତି ନାହିଁ, ପଚାରିଲେ କୁହନ୍ତି, ''ମୋର ପୁଣି ଗୋଟାଏ ବୟସର ହିସାବ କଅଣ ମ ? ଚାରିକୋଡ଼ି ପାଖାପାଖି ହବ ପରା !'' କିନ୍ତୁ ଏହା ନିଶ୍ଚିତ ଯେ ସେ ବାପା, ମା' ପ୍ରଭୃତିଙ୍କ ଠାରୁ ଯଥେଷ୍ଟ ବୟସ୍କ ଥିଲେ । ତେଣୁ ଯଦିଓ ସେ ଆମ ଘରେ ରୋଷେଇବାସ କରିଦେଇ ତାଙ୍କର ଏହି ଉତ୍ତର ଜୀବନଟିକୁ କଟେଇ ଦବାକୁ ମନସ୍ଥ କରିଥିଲେ, ତଥାପି ବାପା ବା ମା'ଙ୍କ ସହିତ ଯଥେଷ୍ଟ ସମ୍ଭ୍ରମର ସହିତ କଥାବାର୍ତ୍ତା କରୁଥିଲେ ଓ ସମୀହ କରି ଚଳୁଥିଲେ । କିନ୍ତୁ ଆମେମାନେ, ଯେଉଁମାନେ ତଥାପି ମାଇନର୍ ସ୍କୁଲ୍ ବା ହାଇସ୍କୁଲର ଛାତ୍ର ଥିଲୁ, ଆମ ପକ୍ଷରେ 'ସମ୍ଭ୍ରମ' ଓ 'ସମୀହ' ଦୁଇଟି ଶବ୍ଦ ଯେପରି ଦୁର୍ବୋଧ ଥିଲା, ସେହିପରି ଥିଲା ଅନାଚରଣୀୟ ।

ନିମ୍ନ ମଧ୍ୟବିତ୍ତ ପରିବାରର ପ୍ରାତ୍ୟହିକ ଖାଦ୍ୟ ସଂସ୍ଥାର ଦାୟିତ୍ୱରେ ଥିବା ବ୍ୟକ୍ତିଟିକୁ ଯେ ଅକଥନୀୟ ଅତ୍ୟାଚାର ସହ୍ୟ କରିବାକୁ ପଡ଼େ, ଏହା ସୁବିଦିତ । ଯିଏ ପଇସା ଦଉ ବା ଯିଏ ବଜାର କରୁ ପଛକେ, ଖାଦ୍ୟ ପଦାର୍ଥ ବିଶେଷ କରି ତାହା ଯଦି ଆମିଷାଦି ବ୍ୟଞ୍ଜନ ହୋଇଥାଏ ତାର ସାମାନ୍ୟ ଅସ୍ୱଚ୍ଛଳତା ଜନିତ ସମସ୍ତ କ୍ରୋଧ, ଅଭିମାନ ଓ ଅଭିସମ୍ପାତ ବିଚରା ପାଚକଟିକୁ ସହ୍ୟ କରିବାକୁ ପଡ଼ିଥାଏ । ସ୍ୱୀକାର କରିବାକୁ ହେବ, ସେ ସମସ୍ତ ଝଞ୍ଜାଳ କନିଅପା, ବସୁନ୍ଧରା ଠାରୁ ଅଧିକ ଧୈର୍ଯ୍ୟ ସହକାରେ ସହ୍ୟ କରିଥାନ୍ତି । ଓଃ ! ସେ କି ଜଞ୍ଜାଳ ! ଖାଦ୍ୟ ଅକୁଳନ ହେବ ନାହିଁ । ଅଧିକ ବା ସ୍ୱଳ୍ପ ଲବଣଯୁକ୍ତ ହୋଇପାରିବ ନାହିଁ । ବିଭିନ୍ନ ପନିପରିବା, ଆଳୁ ମାଛ ବା ଆଳୁ ମାଂସାଦି ବ୍ୟଞ୍ଜନରେ କୌଣସି ନିର୍ଦ୍ଦିଷ୍ଟ ବସ୍ତୁର ପ୍ରାଧାନ୍ୟ ରହିବ ନାହିଁ ଅଥଚ କିଛି କମ୍ ମଧ ପଡ଼ିଯିବ ନାହିଁ । ତାହା ହୋଇଥିବ ଉଚିତ୍ ସୁଷମ ଓ ସର୍ବୋପରି ସ୍ୱାଦୁକର ।

ତରକାରୀ ରାଗ ନହେଇଥିଲେ ପାଣିଚିଆ ହେଇଗଲା ଏବଂ ପଂକ୍ତି ଭୋଜନରେ ଆମମାନଙ୍କର ମନୋଭାବ ଯେପରି ଆଜିର ଯୁଦ୍ଧରେ ଆମ ଶିବିରର ମହାବୀର କର୍ଣ୍ଣ ନିହତ । ଯଦି ରାଗ ହୋଇଗଲା ତାହେଲେ ତାଣ୍ଡବ ନୃତ୍ୟ । ଏହି ସମସ୍ତ ଆଭ୍ୟନ୍ତରୀଣ ସଙ୍କଟ ସତ୍ତ୍ୱେ ଯିଏ ପାକଶାଳାର ଶିଳ୍ପଟିକୁ ଆଦିବସରଜନୀ ଅବ୍ୟାହତ ରଖି ପାରିଥିଲେ, ଯିଏ ହଉଛନ୍ତି କନିଅପା ।

ଆମମାନଙ୍କୁ କୁହାଯାଇଥାଏ, କନିଅପା ଆମ୍ଭମାନଙ୍କର ଦୂର ସଂପର୍କୀୟ ବନ୍ଧୁ । ଯଦିଓ ଆମକୁ କେହି କୁଷିନାମା କାଟି ବା ବଂଶ ଜାତକ ଖୋଲି ଏକଥା ପ୍ରମାଣ କରିବାକୁ ଚେଷ୍ଟା କରିନାହିଁ, ତାହେଲେ ମଧ୍ୟ ଏହାର ସତ୍ୟାସତ୍ୟ ସଂପର୍କରେ ଆମେମାନେ କେବେହେଲେ ସନ୍ଦିଗ୍ଧ ନଥିଲୁ । ଆମମାନଙ୍କର ରୋଷ, ଅଭିମାନ, ଇଙ୍ଗିତ ଓ ବ୍ୟଙ୍ଗୋକ୍ତି ସବୁ କନିଅପାଙ୍କ ପାଖରେ ଜେଜେମା' ବା ଆଈ ହିସାବରେ ଚାଲିଯାଏ ଯଦିଓ ଜେଜେମା' ଓ ଆଈମାନଙ୍କର କଦବା କ୍ୱଚିତ୍ ପ୍ରାପ୍ୟ ସମ୍ମାନ ପାଇବାରୁ ସେ ପ୍ରାୟଶଃ ବଞ୍ଚିତ ଥିଲେ ।

ଆମେମାନେ ଅର୍ଥାତ୍ ଆମେମାନେ ଚାରି ଭାଇ ଓ ଦୁଇ ଭଉଣୀ । ମୁଁ ହଲପ୍ କରି କହିପାରେ ଆମେମାନେ ରାମଚନ୍ଦ୍ରଙ୍କ ରାଜତ୍ୱ ସମୟରେ ଜନ୍ମ ହେଇଥିଲେ ଆମେମାନେ ସେତୁବନ୍ଧ ବାନ୍ଧିବାରେ ତାଙ୍କୁ ଅକୁଣ୍ଠ ସାହାଯ୍ୟ କରିଥା'ନ୍ତୁ । ତେବେ ଭଲ୍ଲୁକ ପ୍ରବର ଜାମ୍ବବାନ ଭାବରେ ବା ମର୍କଟ ଶ୍ରେଷ୍ଠ ସୁଗ୍ରୀବ ହିସାବରେ ତାହା କଳନା କଷ୍ଟକର, କାରଣ ଆମ୍ଭମାନଙ୍କ ଭିତରେ ଦୁଇ ଗୋଷ୍ଠୀର ସହଜାତ ପ୍ରବୃତ୍ତି, ପ୍ରକୃତି ସମ୍ୟକ୍ ଭାବରେ ବିଦ୍ୟମାନ ଥିଲା ।

ଘୋର ନିଷେଧାଜ୍ଞା ସତ୍ତ୍ୱେ ପାକଶାଳା ଭିତରକୁ ଆମ୍ଭମାନଙ୍କର ଗମନା ଗମନ ଅବାରିତ ଥିଲା । କେତେବେଳେ ଆଚାର ଖାଇବା, ଦୁଧ କରେଇରୁ ସରଟାକୁ କାଢ଼ିନେଇ ଖାଇଦେବା ବା କୋରା ନଡ଼ିଆ ଅନ୍ୟମାନଙ୍କର ଅଜ୍ଞାତରେ ଆତ୍ମସାତ୍ କରିବା ଏକ ଅତି ସାଧାରଣ କଥା ଥିଲା । କିନ୍ତୁ କନିଅପା କଦବା କ୍ୱଚିତ୍ ଘୋର ପକ୍ଷପାତୀ ଦୋଷରେ ଦୁଷ୍ଟ ଥିଲେ । କେତେବେଳେ କାହାକୁ ଶ୍ରଦ୍ଧାଶୀଳା ହୋଇ ଏ ସମସ୍ତ କର୍ମ କରିବାକୁ ପ୍ରବର୍ତ୍ତାଉଥିଲେ, ଅଥବା କେବେକେବେ, ତାହା ପୁଣି ବ୍ୟକ୍ତି ବିଶେଷ ଦେଖି, ଉତ୍‌କ୍ଷିପ୍ତ ହୋଇଉଠି ଏ ଅପକର୍ମ କର୍ତ୍ତୃପକ୍ଷଙ୍କ କର୍ଣ୍ଣଗୋଚର କରିବାକୁ କୁଣ୍ଠିତ ହଉନଥିଲେ । କେବେ କେବେ କେହି କେହି ବାଇଗଣଟାଏ ମୁଳୁମୁଳୁକିଆ ରଢ଼ ନିଆଁରେ ପୋଡ଼ିଦିଏ ବା ତେଲ କରେଇରେ କଞ୍ଚା ଲଙ୍କାଟାଏ ପକେଇଦିଏ ଓ ସେମାନେ ସେମାନଙ୍କର ସ୍ୱ ସ୍ୱ ସମୟରେ କ୍ଷୁଦ୍ର କ୍ଷୁଦ୍ର ବିସ୍ଫୋରଣମାନ ଘଟାଇଲା ବେଳେ କନିଅପା ଚମକି ପଡ଼ନ୍ତି ସତ, କିନ୍ତୁ ତା' ପରେ ପରେ ଡାକପକାନ୍ତି, ''ଆରେ

କିଏ ବାଇଗଣ ପୋଡିଥିଲା, ହେଇଗଲାଣି ନିଅ ।'' ସମୁଦ୍ରତଟ ବିପଦମୁକ୍ତ ଦେଖି ଆମେମାନେ ଆସ୍ତେ ଆସ୍ତେ ରୋଷେଇ ଘର ଆଡ଼କୁ ପାଦ ବଢ଼ାଉ ।

କିନ୍ତୁ ଦିନକର ସଂବାଦ ଥିଲା ଅତ୍ୟନ୍ତ ଅପ୍ରୀତିକର । କିଏ କେଜାଣି ? ଏଇ କଥାଟାକୁ ବାପା ମୋଟେ ସହ୍ୟ କରିନପାରି ସବୁବେଳେ ପଚାରନ୍ତି କିଏ କେଜାଣି ? ନାଁ–କିଏ ଆଉ, ତମେମାନେ ସମସ୍ତେ । ହଠାତ୍ ଏକ ନୂତନ ସଂବାଦ ଆମମାନଙ୍କ ନିକଟରେ ଆସି ପହଞ୍ଚିଯାଏ, ତାହା ହେଲା–ପାଚିଲା ବେଲକୁ ପୋଡ଼ି ସରବତ୍ କରି ଖାଇଲେ ତାହା ଅତ୍ୟନ୍ତ ସ୍ୱାଦିଷ୍ଟ ଅଟେ । ପୁଣି ସେଇ କିଏ କେଜାଣି ଗୋଟାଏ ପାଚିଲା ବେଲକୁ ଆଣି କ୍ରମ ଭସ୍ମୀଭୂତ ରଡ଼ ନିଆଁରେ ଘୋଡ଼େଇ ଦେଇଥିଲା ଓ ପ୍ରାୟ ଯାହା ହେଇଥାଏ, ଏ ସମସ୍ତ କାର୍ଯ୍ୟଟିକୁ ଅଚିରେ ବିସ୍ମୃତ ହୋଇଯାଇଥିଲା । କିଏ କେଜାଣି ?

କିନ୍ତୁ ଯେତେବେଳେ ଲୌହଶକ୍ତ ବଲ୍କଳାଚ୍ଛାଦିତ ପକ୍ୱ ବିଲ୍ୱ ଉତପ୍ତ ହେଇ ଏକ ପ୍ରଚଣ୍ଡ ବିସ୍ଫୋରଣ ଘଟିଲା ଓ ଏକାଧାରାରେ ଉତପ୍ତ, ଶତଧା ବିଭକ୍ତ ବିଲ୍ୱ ବଲ୍କଳ ଓ ତତ୍ ସଙ୍ଗେ ସଙ୍ଗେ ଆଗ୍ନେୟ ଅଙ୍ଗାର ଖଣ୍ଡମାନ ଅଗ୍ନ୍ୟୁପାତ ତୁଲ୍ୟ ଊର୍ଦ୍ଧ୍ୱକୁ ପ୍ରଚଣ୍ଡ ବେଗରେ ଉତ୍କ୍ଷିପ୍ତ ହୋଇ ପାକଶାଳାର ନାତ୍ୟୁଚ୍ଚ ଛାତରେ ଆଘାତପ୍ରାପ୍ତ ହୋଇ କେତେବେଳେ ଅଗ୍ନିଶଳାକା, କେତେବେଳେ ଅଗ୍ନିଚୂର୍ଣ୍ଣ ରୂପେ କ୍ରମାଗତ ବର୍ଷିବାକୁ ଲାଗିଲେ, ସେତେବେଳେ ପାକଶାଳାର ଏକମାତ୍ର ଅଧିବାସୀ ଥିଲେ କନିଅପା ଓ ସେ 'ମରିଗଲି' 'ମରିଗଲି' 'ପୋଡ଼ିଗଲି' ଇତ୍ୟାଦି ଆତଙ୍କ ସୂଚକ ଶବ୍ଦମାନ କରି ପ୍ରାୟ ଦୌଡ଼ି ଦୌଡ଼ି ପଦାକୁ ବାହାରି ଆସିଥିଲେ ।

ଅନୁମାନ କରାଯାଏ ଯେ ଏମନ୍ତ ଆତଙ୍କିତ ଶବ୍ଦରେ ବାପା ଓ ମା' ଉଭୟେ ଦୌଡ଼ି ଆସିଥିବେ । ମା' ବୋଧହୁଏ କିଛି ମଲମ ଆଣି କନିଅପାଙ୍କର ପୋଡ଼ା ଜାଗାମାନଙ୍କରେ ଲେପନ କରିଥିବେ। କିନ୍ତୁ ବାପା ଅତ୍ୟନ୍ତ ଶୋଚନୀୟ ଭାବରେ ନିରାଶ ହୋଇଥିବେ, କାରଣ ତତ୍କ୍ଷଣାତ୍ ଦଣ୍ଡିତ ହବା ପାଇଁ, ଏହି କ୍ରିୟା କାରକ ମାନଙ୍କ ମଧ୍ୟରୁ ଜଣେ ହେଲେ ଉପସ୍ଥିତ ନଥିଲେ ।

ସନ୍ଧ୍ୟାର ଭୋଜନ ଆସର ବେଳକୁ ଘଟଣାର ଗୁରୁତ୍ୱ ବହୁ ପରିମାଣରେ ଲଘୁ ହୋଇ ଯାଇଥିଲା ଓ ରୋଷେଇ ଘର ଭିତରେ ରୁଟି ସେକୁ ସେକୁ, ଅନୁନାସିକ ସ୍ୱରରେ କନିଅପା କହୁଥିଲେ, ''ଏତିକି ଟିକିଏ ବୁଦ୍ଧି ନାହିଁ ଏଗୁଡ଼ାଙ୍କ ମୁଣ୍ଡରେ, ବେଲଟାକୁ ଫଟେଇ ଦେଇ ପୋଡ଼ି ଥିଲେ କାହିଁକି କ'ଣ ହେଇଥା'ନ୍ତା–ନହେଲେ ମତେ କହିଥିଲେ କ'ଣ ମୁଁ ବେଲଟାକୁ ପୋଡ଼ି ଦେଇ ନଥା'ନ୍ତି ?''

ସେଦିନ ମୁଁ ଯଥେଷ୍ଟ ଅନୁତପ୍ତ ହୋଇଥିଲି ।

ଓ ଟିକିଏ ବଡ଼ ହୋଇଯିବା ପରେ, ମୁଁ ଆନ୍ତରିକ ଭାବରେ ଅନୁଭବ କରିଥିଲି ଯେ କନିଅପା ସହିତ ଏ ଖେଳ ଏକାନ୍ତ ଅନ୍ୟାୟ । ନାଁ ଧର୍ମସମ୍ମତ ନା ଶାସ୍ତ୍ରସମ୍ମତ । କନିଅପାର ପ୍ରତିପକ୍ଷ ଆମେ ଛ' ଜଣ, ଅଥଚ ଆରପଟେ କନିଅପା ଏକାକିନୀ ଠିଆ ହୋଇଛି ଗୋଲ୍‌ପୋଷ୍ଟ ପାଖରେ ତା'ର ଫରଓ୍ୱାର୍ଡ଼ ଲାଇନ୍, ହ୍ୟାଫ୍‌ବ୍ୟାକ୍, ବ୍ୟାକ୍ କେହି ନାହାନ୍ତି । ପ୍ରତିପକ୍ଷ ଘୋର ଶତ୍ରୁ ହେଲେ ମଧ୍ୟ ତା' ସହିତ ଏପରି ଅସମ ଓ ଅନ୍ୟାୟ ଖେଳ ଖେଳା ଯାଏନା ।

ତଥାପି ମୁଁ କନିଅପାର ଥିଲି ସବୁଠାରୁ ବେଶି ଆଦରର ।

ତା'ର କାରଣ ମୋର ହସ୍ତାକ୍ଷର ଦେଖିବାକୁ ଖୁବ୍ ସୁନ୍ଦର ଥିଲା ଓ ସମସ୍ତେ ଖାଇସାରିବା ପରେ ଏକ ଉଚ୍ଛୁଡ଼ି ଆସୁଥିବା ଅପରାହ୍ନରେ ଯେତେବେଳେ ସେ ଦୁଇଗୋଡ଼କୁ ଲମ୍ବେଇ ଦେଇ ବେଶ୍ ଦୀର୍ଘ ସମୟ ପର୍ଯ୍ୟନ୍ତ ପଖାଳ ଖାଇ ବସନ୍ତି, ସେତେବେଳେ ମୁଁ ତାଙ୍କ ପାଖରେ କାଗଜ କଲମ ଧରି ଅସୀମ ଧୈର୍ଯ୍ୟର ସହିତ ବସିରହେ ତାଙ୍କ ଚିଠିର ଶ୍ରୁତଲିଖନ ନବା ପାଇଁ ।

କ'ଣ ବା ସେ ଚିଠି ! ସବୁଥର ସେଇ ଏକାକଥାର ପୁନରାବୃତ୍ତି ।

'ଲେଖ୍', କନିଅପା କୁହନ୍ତି 'ପାରୁ' ।

ମୁଁ କହେ ''କ'ଣ ପାରୁ, ଖାଲି ପାରୁ ଲେଖିବି ନାଁ ତା' ଆଗରୁ ଆଉ କିଛି !''

କନିଅପା କୁହନ୍ତି, ''ମୁଁ ଜାଣିନି, ଯେମିତି ଚିଠି ଲେଖନ୍ତି ସେମିତି ଲେଖ୍–ଝିଅ ପାଖକୁ କେମିତି ଚିଠି ଲେଖାଯାଏ–କ'ଣ ତୁ ପାଠ ପଢ଼ିନୁ ?''

ମୁଁ କହେ, ''ହଉ ହେଲା, ସ୍ନେହର ପାରୁ, ତା'ପରେ ?''

ତା'ପରେ କନିଅପା ପାଟିରେ କିଛି ଖାଦ୍ୟ ପାକୁଳି କରୁ କରୁ ଅର୍ଦ୍ଧନିମୀଳିତ ଆଖିରେ ଚାହିଁ ରହନ୍ତି ଆକାଶକୁ । ଯେମିତି ତାଙ୍କର ସବୁ ଭାଷାର ଝରଣା କେଉଁ ବେଦନାର ମରୁଭୂମିରେ ହଠାତ୍ ଶୁଖିଗଲା ।

ତା'ପରେ କେତେ ବେଳକୁ କୁହନ୍ତି, ''ତତେ ଗଛ ମୂଳରୁ ପାଇକରି ଆଣିଥିଲି ବୋଲି, ତୁ ବୋଧହୁଏ ମତେ ଆଉ ପଚାରୁ ନାହୁଁ–ଗଲା ମାସ ଚିଠି ଦେଇଥିଲି, ତୁ ତା'ର ଜବାବ୍ ଏ ଯାଏଁ ଦେଲୁ ନାହିଁ । ମୋର କପାଳ ଫାଟିବାରୁ ମୁଁ ଏଠି ଆସି ପର ଘରେ ପଡ଼ିଚି''... ଇତ୍ୟାଦି ଇତ୍ୟାଦି । ପୁଣି ସେଇ ଗୋଟାଏ କଥାର ଅହେତୁକୀ ପୁନରାବୃତ୍ତି । ସେ ଚିଠି ଚାଲେ ଅସରନ୍ତି । ଫୁଲ୍‌ସ୍କେପ୍ କାଗଜରେ ପୁରା ଚାରିପୃଷ୍ଠା । ଅବାନ୍ତର ପୌନଃ ପୌନିକତାରେ ପୁଷ୍ଟ ଏକ ଦୀର୍ଘ ଚିଠିର ସାରାଂଶ ହେଲା–

''ତାଙ୍କର ମନ୍ଦ କପାଳ ହେତୁ ସେ ତାଙ୍କ ଝିଅ ପାଖରେ ନରହି ପର ଘରେ ଆସି ରହିଛନ୍ତି ସେ ସବୁଦିନ ଠାକୁରଙ୍କୁ ମୁଣ୍ଡିଆ ମାରୁଛନ୍ତି ଶୀଘ୍ର ଫେରିଯିବାକୁ ଓ ଇତି

ମଧ୍ୟରେ ସେ ତା' ପାଇଁ କେତେବେଳେ କାନ ଫୁଲ ବା କେତେବେଳେ ନାକ ମାଛି କରେଇ ରଖୁଛନ୍ତି–ଯେତେହେଲେ ଝିଅ ଜନମ ପରା ଶାଶୁ ଘରକୁ !''

ତାଙ୍କର ଖାଇବା ସରିଲା ବେଳକୁ ଚିଠି ଲେଖା ସରେ । ତଳେ ଲେଖାଯାଏ ତୋ'ର ମା'; ତା'ପରେ ବନ୍ଧନୀ ଭିତରେ 'କନିଅପା' । ପରେ ପରେ ଚିଠିରେ ଠିକ୍ ମୂଲ୍ୟର ଡାକଟିକଟ ଦେଇ ତାକୁ ଡାକ ଘରେ ମୁଁ ନିଜେ ପକେଇ ଦେଇ ଆସିବା ପାଇଁ କନିଅପାର ନିର୍ଦ୍ଦେଶ ଥାଏ । ତାହା ହିଁ କରାଯାଏ ।

ତା'ପରେ ପରେ ଏକ ଅସରନ୍ତି ଅପେକ୍ଷା । ସବୁଦିନ ଡାକପିଅନ ଆସିଲା ବେଳେ କନିଅପା ଟିକିଏ ଦୂରରେ ତଳକୁ ମୁହଁ ପୋତି ଠିଆ ହୁଅନ୍ତି, ଆଉ ଆସ୍ତେ କୁହନ୍ତି, ''ବୋହୂ'' । ମା' କୁହନ୍ତି, ''ନାଇଁ କନିଅପା ତମର ଚିଠି ନାହିଁ । ଏହା ଏକ ପ୍ରାତ୍ୟହିକ ଘଟଣା ।

ଏହିପରି ପ୍ରାୟ କୋଡ଼ିଏ ପଚିଶି ଦିନର ପ୍ରତୀକ୍ଷା ପରେ ପୁଣି ଆରମ୍ଭ ହୁଏ ଚିଠି ଲେଖା ।

ଥରେ ଚିଠି ଲେଖା ପ୍ରାୟ ତିନି ପୃଷ୍ଠା ସରିଗଲାଣି । କନିଅପାଙ୍କର ପଖାଳ ଖିଆ ମଧ୍ୟ ସରି ଆସିଲାଣି । କେତେବେଳେ ବଡ଼ି ଚୁରାରେ ଟିକିଏ ଲଙ୍କା ଭାଙ୍ଗି ଟିପକୁ ନେଇ ପାଟିରେ ମାରୁଛନ୍ତି ତ, ଅବଶିଷ୍ଟ ଶାଗ ପତର ଦି'ଟା ଦୁଇ ଆଙ୍ଗୁଠିରେ ମକଚି ମକଚି ଗୋଟେଇ ନଉଛନ୍ତି, ପୁଣି କେତେବେଳେ ତୋରାଣି ଭିତରେ ହାତ ପୁରେଇ ତଳତଳିଆ ଭାତ ଦି'ଟା ଦରାଣ୍ଡୁଛନ୍ତି ଓ ସେମିତି ଅନେଇ ରହିଛନ୍ତି ଆକାଶକୁ ଭାବଲେଶ ଶୂନ୍ୟ ଆଖିରେ ।

ମୁଁ ଠିକ୍ ଏତିକିବେଳେ ଗୋଟାଏ ଅଖାଡୁଆ ପ୍ରଶ୍ନ ପ୍ରଚାରି ଦେଲି ପରା ! ''କନିଅପା ! ତମ ନା କ'ଣ ?''

ସେ ହଠାତ୍ ମୋ ଆଡ଼କୁ ଏକ ଅବିଶ୍ୱାସର ଆଖିରେ ଚାହିଁ ରହିଲେ । ସେ ଆଖି ଯେମିତି କହୁଥିଲା, ''କେତେ ଛୋପରା ହଉଚୁ, ସତେ ଯେମିତି ଜାଣିନାହୁଁ କନି ବୋଲି ।''

ମୁଁ ପୁଣି ପଚାରିଲି, ''ନାଇମ, ତମ ଭଲ ନାଁ କ'ଣ ?''

କନିଅପା ବେଶ୍ ଡେଙ୍ଗା ଆଉ ଗୋରା ତକ ତକ ଚେହେରା । ସେ ପାକୁଆ ପାଟିରେ ଟିକିଏ ହସି ଦେଲେ, ଆଉ ତୋରାଣି କଂସାଟାକୁ ଧରି ଉଠି ଯାଉ ଯାଉ କହିଲେ ''କନକଲତା....ପୋଡ଼ି ଯାଉ ସେ ନାଆଁ ।''

କନିଅପା ସେମିତି ଉଠି ଯାଉ ଯାଉ ତାଙ୍କର ଦୀର୍ଘ ଓ ଶୀର୍ଣ୍ଣ ତନୁରେ ଯେମିତି ଅକାଳ ବସନ୍ତର ଏକ ହିଲ୍ଲୋଳ ଖେଳିଗଲା । ମୁଁ କୈଶୋର ପ୍ରାୟ ପ୍ରତିକ୍ରମ କରି ଆସୁଥିଲି ଓ ଯୌବନର ପ୍ରଥମ ଅଗ୍ନି ମୋର ଆଖିରେ ପ୍ରତିବିମ୍ବିତ ହେଉଥିଲା ମାତ୍ର ।

ମୁଁ ସେମିତି ଚୁପ୍‌ଚାପ୍ ବସି ରହିଲି । କନିଅପାର ଯୌବନରେ, ଗୋଟିଏ ତପ୍ତ କାଞ୍ଚନ ବର୍ଣ୍ଣା, ଆୟତ ନୟନା ଝିଅ ହୁଏତ ଠିଆ ହୋଇ ରହିଥିବ, କୁଆଁର ପୁନେଇଁ ଜହ୍ନରେ ଉବୁଟୁବୁ ଗାଧେଇ ଓ ତା'ର କାକ କୃଷ୍ଣ କବରୀ ମୁକ୍ତ କେଶର ଲହରୀ ବାରମ୍ବାର ନିତମ୍ବର ପ୍ରବାଳ ଦ୍ୱୀପରେ ବାଧାପ୍ରାପ୍ତ ହୋଇ ଫେରି ଆସୁଥିବ । ଅନେକ ଦୂରରେ ହୁଏତ ଝିଅମାନେ ଗାଉଥିବେ ସମ୍ମିଳିତ ସ୍ୱରରେ, ''କୁଆଁର ପୁନେଇଁ ଜହ୍ନଗୋ ଫୁଲ ବଉଳ ବେଣୀ...।'' ସେଦିନର ଉଦ୍‌ଭିନ୍ନ ଯୌବନା କନିଅପା ଆକ୍ଷିରେ ଭଅଁର ଥିବ ଚଞ୍ଚଳ, ମୃଣାଳ ଭୁଜରେ ଚମ୍ପକ ଅଙ୍ଗୁଳି ଥିବ କ୍ରୀଡ଼ାରତ । କେବଳ ପଦ୍ମକୋରକ ଥିବ ସ୍ଥିର ଓ ଅର୍ଦ୍ଧାବୃତ ।

ନାଁ, ତଥାପି କନିଅପାର ଚିଠି ଆସେନା ।

ମୁଁ ବି ଆଶ୍ଚର୍ଯ୍ୟ ହୁଏ, କିଏ ଏଇ ଚିର ଉଦାସିନୀ ପାରୁ, ଯିଏ ଏତେ ଚିଠିର ଖଣ୍ଡେ ହେଲେ ଉତ୍ତର ଦିଏନା ? ମୁଁ ଅନେକଥର ମାଆଙ୍କୁ ପଚାରିଛି, ମାଆ ଖାଲି କୁହନ୍ତି କନିଅପାଙ୍କର ପିଲାପିଲି ନାହିଁ, ସିଏ ପାର୍ବତୀ ବୋଲି ଗୋଟିଏ ଝିଅକୁ ଝିଅ କରିଛନ୍ତି । ତାକୁଇ ଚିଠି ଲେଖନ୍ତି ।

ମୁଁ ପଚାରେ, ''କିନ୍ତୁ ପାର୍ବତୀ କାହିଁକି ଚିଠି ଦିଏ ନାହିଁ ?''

ମାଆ କହନ୍ତି, ''ହୁଏତ ପାଠ ଶାଠ ପଢ଼ିନି କି ଆଉ କ'ଣ ହୋଇଥିବ । ଆମର ସେଥିରେ ମୁଣ୍ଡ ପୂରେଇବାର କ'ଣ ଅଛି ?''

ହଁ, ଆଉଥରେ ବି ଗୋଟାଏ ଘଟଣା ଘଟିଥିଲା । କନିଅପା ସବୁବେଳେ ଖାଆନ୍ତି ବାଆଁ ହାତରେ । ମୁଁ ଥରେ ଚିଠି ଲେଖିବାକୁ ବସି ପଚାରି ଦେଇଥିଲି, ''କନିଅପା, ତମେ ବାଆଁ ହାତରେ କାହିଁକି ଖାଉଛ ?'' କିଛି ନକହି ଅଧାଖିଆ ହୋଇ କନିଅପା ଉଠି ଚାଲିଯାଇ ଥିଲେ । ମାଆଙ୍କ ଠାରୁ ଅନେକ ଗାଳି ଖାଇଥିଲି, ମାଆ କହିଲେ, ''ସିଏ ପରା ଡେବିରୀ ଓଷା କରିଛନ୍ତି ତାଙ୍କ ଝିଅ ପାଇଁ । ତାଙ୍କ ଝିଅ କଥା କହିପାରୁ ନାହିଁ । ଯୋ' ଦିନ ଝିଅର ପାଟି ଫିଟିବ, ଆଉ ଝିଅ ଆସି ପଚାରିବ ମାଆ ତୁ ଡେବିରୀ ହାତରେ କାହିଁକି ଖାଉଚୁ, ସେଦିନ ଯାଇ ସେ ଓଷା ଉଜେଇବେ । ଯେଉଁମାନେ ଓଷା କରିଥା'ନ୍ତି, ସେମାନଙ୍କୁ ଆଉ କିଏ ପଚାରି ଦେଲେ, ସେମାନେ ଖାଇବା ଛାଡ଼ି ଉଠିଯା'ନ୍ତି ।''

କନିଅପାର ଭାବମୂର୍ତ୍ତି ଧୀରେ ଧୀରେ ମୋ ପାଖରେ ସ୍ୱଷ୍ଟ ହୋଇ ଉଠୁଥିଲା ଓ ଏଇ ବିଡ଼ମ୍ବିତା ଜନନୀ, ପାର୍ବତୀ ଗତ-ପ୍ରାଣ, ପରଦେଶାଗତ ହେଲେ ଆମର ଏଇ କନିଅପା ।

ଶେଷ ଆଡ଼କୁ କନିଅପା କାମକୁ ଆଉ ପାରୁ ନଥିଲେ । କଣ୍ଠା ଦି'ଖଣ୍ଡ ଘୋଡ଼ି ହୋଇ ଗୋଟାଏ କଣରେ ପଡ଼ି ରହିଥା'ନ୍ତି । ଦିନେ କୁଆଡ଼େ ମାଆଙ୍କୁ କହିଲେ, ''ବୋହୂ କେତେଦିନ ଆଉ ବସି ବସି ଖାଇବି, ମୁଁ ଗାଁକୁ ଯାଏ । ମୋ ଆଖିରେ ପାରୁ ଦିଶି ଯାଉଛି । ପାରୁ ପାଖରେ କିଛି ଦିନ ରହିସାରି ପୁଣି ଫେରି ଆସିବି ଯେ !'' ସେଇଦିନ ଖଣ୍ଡେ ବ୍ୟାଗ୍ ନେଇ କନିଅପା ଯେ ବାହାରିଗଲେ—ଆଉ ଫେରିଲେ ନାହିଁ । କିଛିଦିନ ପରେ ଖବର ଆସିଥିଲା ତାଙ୍କର କାଳ ହୋଇଗଲା ବୋଲି ।

ଆହୁରି ଅନେକ ଦିନ ପରେ କାର୍ଯ୍ୟ ଉପଲକ୍ଷରେ ବଡ଼ମ୍ବା ଯାଇଥିଲି । ସାମାନ୍ୟ ଅବସର ପାଇ ଯାଇଥିଲି କନିଅଁପାଙ୍କ ଘରକୁ । ଚିଠି ଲେଖି ଲେଖି ତାଙ୍କର ଠିକଣା ତ ମୋର ମୁଖସ୍ଥ ହୋଇ ଯାଇଥିଲା । ବେଶି ବାଟ ନୁହଁ, ଡାକବଙ୍ଗଳା ପାଖାପାଖି ଶିରପା ସାହିରେ ତାଙ୍କର ଘର ।

ସେଠି ମତେ ପ୍ରଥମେ କେହି ଚିହ୍ନିଲେ ନାହିଁ । ପରିଚୟ ଦବାରୁ କିଏ ଜଣେ ଖଣ୍ଡେ ଦରଭଙ୍ଗା ଚଉକୀରେ ବସିବାକୁ କହି ଘର ଭିତରକୁ ଗଲେ । ଘର ଭିତରୁ ଆସିଲା ଲେମ୍ବୁ ସରବତ ଓ ଜଣେ ବୃଦ୍ଧ ଭଦ୍ରଲୋକ । ସେ ଆସି ନିଜକୁ ଜୟରାମ ବୋଲି ପରିଚୟ ଦେଇ କହିଲେ, ''କନିଅପା ମୋର ବଡ଼ ଭଉଣୀ ।''

ମୁଁ ପଚାରିଲି, ''ଆଉ ପାର୍ବତୀ ?''

ଭଦ୍ରଲୋକ କିଛି ଜାଣି ନପାରିଲା ପରି ମତେ କେବଳ ଚାହିଁ ରହିଲେ ।

ମୁଁ କହିଲି, ''ପାରୁ, ଯାହା ପାଖକୁ କନିଅପା ଆମ ଘରୁ ବରାବର ଚିଠି ଦିଅନ୍ତି ?''

ଭଦ୍ରଲୋକ ଅପ୍ରତିଭ ହୋଇ ଅବଶିଷ୍ଟ ମାତ୍ର ଦୁଇଟି ଦାନ୍ତ ଦେଖେଇ ସାମାନ୍ୟ ହସି ଉଠିଲେ, କହିଲେ, ''ପାରୁ ମୋ ଝିଅ । କନିଅପାର ପିଲାପିଲି ତ ନଥିଲା, ମୋ ସ୍ତ୍ରୀ ତାକୁ କନିଅପା ହାତକୁ ଏକୁଡ଼ିଶାଦ୍ଦରୁ ନାଳ ନାଡ଼ କରି ଟେକି ଦେଇଥିଲା ।''

ମୁଁ କହିଲି, ''ସିଏ କ'ଣ ବାହା ହେଲାଣି ?''

ଭଦ୍ରଲୋକ ପୁଣି ହସିଲେ, ''ସେ ପିଲା କ'ଣ ରହିଲା ? ପାଞ୍ଚ ବର୍ଷରେ ପିତୁଳା ରୋଗରେ ମରିଗଲା—କନିଅଁପାଟା ବାୟାଣିଟାଏ ଆଜ୍ଞା—ତା' କଥା କ'ଣ ଧରୁଛନ୍ତି ?''

ମୁଁ ଯିବା ପାଇଁ ଉଠି ଠିଆ ହେଲି ।

ଭଦ୍ରଲୋକ ଦୁଆର ମୁହଁ ଯାଏ ମତେ ବଳେଇ ଦବାକୁ ଆସିଲେ । ସେତେବେଳକୁ ମୋର ଆଖି ବାଷ୍ପାଛନ୍ନ ହୋଇ ଆସିଥିଲା । ମୁଁ ମୁହଁ ବୁଲେଇ ଦେଇ ତରତରରେ ଚାଲି ଆସିଲି ।

ମତେ ଦେଖା ଯାଉଥିଲା କନିଅପା ଆମ ସମସ୍ତଙ୍କୁ ପଛକରି ଗୋଲପୋଷ୍ଟରେ ଠିଆ ହୋଇ ରହିଛି ଏକୁଟିଆ–ନିତାନ୍ତ ଏକୁଟିଆ ! ମୋର ଇଚ୍ଛା ହଉଥିଲା ଡାକିବାକୁ—କନିଅପା !

ନାଁ, ତାକୁ ଚୁପ୍‌ଚାପ୍ ଠିଆ ହବାକୁ ଦିଅ, ସିଏ ଅନେକ କ୍ଳାନ୍ତ !



# ଗୋଟିଏ ଉଡ଼ାଜାହାଜ ସଂପର୍କରେ

ସେଦିନ ମାଡ୍ରାସ୍ ଠାରୁ ହାଇଦ୍ରାବାଦ କ୍ୟାରାଭିଲ୍ ବିମାନବିଳମ୍ବିତ ହେବାରୁ ଅଭିଜିତ୍ ଆଦୌ ବିସ୍ମିତ ହେଇ ନଥିଲା । ଗୋଟାଏ ନାଁ କରା କମ୍ପାନୀର ବିଜିନେସ୍ ଏକଜିକ୍ୟୁଟିଭ୍ ହିସାବରେଁ ତାକୁ ଘୂରି ବୁଲିବାକୁ ପଡ଼େ ବିମାନ ବନ୍ଦରରୁ ବିମାନବନ୍ଦର ଓ ନିକଟ ଅତୀତରେ ସେ ବୁଝିପାରୁଚି ଯେ, ଉଡ଼ାଜାହାଜ ଗୁଡ଼ିକର ନିର୍ଦ୍ଧାରିତ ସମୟ ସୂଚୀ ପ୍ରାୟ ବିଳମ୍ବିତ ହେଇଯାଉଛି କୌଣସି ନା କୌଣସି କାରଣରୁ । ଆଉ ତା' ଭିନ୍ନ ଆଜି ସକାଳେ ଚା' ଖାଇବା ବେଳେ ତା'ର ସ୍ତ୍ରୀ ଲୀନା, ଚା' କପ୍‌ରେ ଅବଶିଷ୍ଟ ଭାସମାନ ଚା' ପତ୍ରର ପରିସ୍ଥିତିକୁ ଗମ୍ଭୀର ଭାବରେ ପର୍ଯ୍ୟବେକ୍ଷଣକରି ଘୋଷଣା କରିଛି ଯେ,ଆଜି ସମଗ୍ର ଦିନଟା ସେମାନଙ୍କର କଟିବ ଘୋର ଉତ୍ତେଜନା ଓ ଉଦ୍‌ବେଗ ଭିତରେ । ଅବଶ୍ୟ ଦିନର ସମସ୍ତ ଜଞ୍ଜାଳ ପରେ ପରିସମାପ୍ତି ଆନନ୍ଦ ଦାୟକ ହବାର ସମ୍ଭାବନା ରହିଛି ।

ଅଭିଜିତ୍‌ର ସାରା ଦିନଟା ଅବଶ୍ୟ ମୋଟାମୋଟି ସେହିପରି କଟିଛି । ସକାଳର ଚା' ଖାଇବାଟା ନଷ୍ଟ ହୋଇଗଲା ଘର ସାମ୍ନା ରାସ୍ତା ଉପରେ ଗୋଟିଏ କାର୍ ଆକ୍‌ସିଡ଼େଣ୍ଟ ପାଇଁ । ଗୋଟାଏ ରକ୍ତାକ୍ତ ସ୍ତ୍ରୀଲୋକ, ତା'ପରେ ଆମ୍ବୁଲାନ୍‌ସ ପାଇଁ ଟେଲିଫୋନ୍ ଓ ସମସ୍ତ ଝମେଲା ସରିଯିବାର ଉପକ୍ରମ କରୁ କରୁ ଅନିବାର୍ଯ୍ୟ ପୁଲିସ୍ ଭ୍ୟାନ୍ । ଅଫିସ୍‌ରେ ମଧ୍ୟ ସେହିପରି, ଲୋଡ୍‌ସେଡ଼ିଙ୍ଗ ହେତୁ ଏଆର୍ କଣ୍ଡିସନର୍ ଅଚଳ । ଗୋଟାଏ ହେଲେ ଲଙ୍ଗଡ଼ିଷ୍ଟାନ୍‌ସ କଲ୍ ମିଳୁ ନାହିଁ ଏବଂ ତାର ଚୋରି ହୋଇ ଯାଇଥିବା ହେତୁ ଟେଲିପ୍ରିଣ୍ଟର ଅଚଳ । ଅଫିସ୍‌ରୁ ଫେରିଲା ବେଳକୁ ରାସ୍ତାରେ ଦେଢ଼ଘଣ୍ଟା ଡେରି, କ'ଣ ଗୋଟାଏ ଶୋଭାଯାତ୍ରା ପାଇଁ ଟ୍ରାଫିକ୍ ଜାମ ହୋଇଯାଇଛି । ପୁଣି ଘରେ ପହଞ୍ଚୁ ନ ପହଞ୍ଚୁଣୁ ବାହାରିବାକୁ ପଡ଼ିଲା ସିଧା ଏଆର୍‌ପୋର୍ଟ, ହାଇଦ୍ରାବାଦରେ କନ୍‌ଫରେନ୍‌ସ ଆଟେଣ୍ଡ କରିବାକୁ । ଅବଶ୍ୟ ଆଜିର ଟ୍ରିପ୍‌ଟା କ୍ୟାନ୍‌ସେଲ୍ କରିଦେବାକୁ ଲୀନା ଅନେକ ପ୍ରବର୍ତ୍ତାଇଥିଲା ଅଭିଜିତ୍‌କୁ । କହିଥିଲା, ''ଏତେ ଟେନ୍‌ସନ୍ ଭିତର ଦେଇ ଗଲେ ନର୍ଭ ଉପରେ ଅଯଥା ଚାପ ପଡ଼େ, ଯେତେ ସମ୍ଭବ ଆଭଏଡ୍ କରାଯିବା ଉଚିତ୍ ।'' ଅଭିଜିତ୍ ଲୀନାର ଅନୁନାସିକ ବକ୍ତବ୍ୟକୁ କର୍ଣ୍ଣପାତ୍ ନକରି ବ୍ରିଫ୍‌କେସ୍‌ରେ ଫାଇଲ୍ ଭର୍ତ୍ତି କରୁ କରୁ ନୀରବରେ ସୂଚନା ଦେବାକୁ

ଚାହୁଁଥିଲା ଯେ କମ୍ପାନୀରେ ଚାକିରୀ କରିବା ଗୋଟାଏ ଘରୋଇ ଦାମ୍ପତ୍ୟ ବ୍ୟାପାର ନୁହେଁ, ଯାହାକୁ ବିନା କାରଣରେ କ୍ୟାନ୍‌ସେଲ୍ କରିଦେଇ ହୁଏ ।

ଏଆର୍‌ପୋର୍ଟ୍‌ର ଲାଉଞ୍ଜରେ ଯେତେବେଳେ ଧାତବସ୍ୱରରେ ଘୋଷଣା କରାଗଲା ଯେ ଫ୍ଲାଇଟ୍ ଫୋର୍ ଓ୍ୱାନ୍ ଫାଇଭ୍ ଦୁଇଘଣ୍ଟା ବିଳମ୍ବରେ ଛାଡ଼ିବ, ସେତେବେଳେ ଲୀନା ଟିପ୍ପଣୀ ଦବାକୁ ଭୁଲି ନଥିଲା । ଲୀନା କହିଥିଲା, ''ତମେ ସିନାସବୁବେଳେ ହସରେ ଉଡ଼େଇ ଦେଇ ଆସିଛ, କିନ୍ତୁ ଦେଖ ମୋର ପ୍ରେଡ଼ିକ୍‌ସନ୍ ଠିକ୍ ହଉଛି କି ନାହିଁ । ୟେ'ତ ମାତ୍ର ପ୍ରାଥମିକ ଘୋଷଣା, ୟା' ପରେ ପରେ ଆହୁରି ମଧ୍ୟ ବିଳମ୍ବ ହୋଇପାରେ । ସେଥର ମନେ ନାହିଁ ଦିଲ୍ଲୀରେ କ'ଣ ହେଲା ?'' ଅଭିଜିତ୍ ଲୀନାର କଟିରେ ବେଷ୍ଟିତ ବାହୁର ବନ୍ଧନୀ ସାମାନ୍ୟ ହୁଗୁଳା କରି କହିଲା, ''ତମେ ସବୁବେଳେ ପେସିମିଷ୍ଟିକ୍ । ଆର୍କେଡ୍‌ରେ ଉଇଣ୍ଡୋ ସପିଙ୍ଗ୍ କରୁ କରୁ ଦି' ଘଣ୍ଟା ଚାହୁଁ ଚାହୁଁ ଚାଲିଯିବ । ଜାହାଜ ଛାଡ଼ିବ ସାଢ଼େ ସାତଟାରେ, ଆଉ ପ୍ଲେନ୍‌ରେ ଡିନର୍ ସର୍ଭ ନକଲେ ମଧ୍ୟ ସାଢ଼େ ଆଠଟାରେ ହାଇଦ୍ରାବାଦରେ କୋ' ହୋଟେଲ୍ ବନ୍ଦ ହୋଇ ଯାଇଥିବ ଯେ ?'' ଲୀନା କିଛି ଉତ୍ତର ଦେଇ ନଥିଲା । ଯଦିଓ ସେ ନୀରବତା ଆଦୌ ସମ୍ମତି ସୂଚକ ନଥିଲା ।

ଅଭିଜିତ୍‌ର ପାଲାମ୍ ଏଆର୍‌ପୋର୍ଟ କଥା ମନେ ପଡ଼ିଗଲା । କିନ୍ତୁ ସେଦିନର ଅବସ୍ଥା ଥିଲା ଅନ୍ୟ ରକମର । ନିର୍ଦ୍ଧାରିତ ସମୟରେ ସମସ୍ତ ଯାତ୍ରୀମାନଙ୍କୁ ସିକ୍ୟୁରିଟି ଅର୍ଗକି ଦେଇ ଯାଞ୍ଚ କରି ସାରି ବସେଇ ଦିଆଯାଇଥିଲା । ଡିପାର୍‌ଚର୍ ହୋମ୍‌ରେ ଆଉ 'ସେଇ ଡିପାରଚର୍ ହୋମ୍‌ରେ ଅପେକ୍ଷମାଣ ଯାତ୍ରୀମାନଙ୍କୁ ବସି ରହିବାକୁ ପଡ଼ିଥିଲା ଦୀର୍ଘ ସାଢ଼େ ଚାରିଘଣ୍ଟା, ସେଠି ନାଁ ଅଛି ଚା', କଫି, ନାଁ ଅଛି ଏଟା ସେଟା ବୁଲି ବୁଲି ଦେଖିବା ପାଇଁ ସପିଙ୍ଗ ଆର୍କେଡ୍, ଖାଲି ଏକଟଣା ବିରକ୍ତିକର ଅପେକ୍ଷା ଆଉ ଅପେକ୍ଷା । ଆଉ ଥରେ ସିକ୍ୟୁରିଟିକୁ ଡେଇଁ ଲାଉଞ୍ଜକୁ ଆସିବା ସମ୍ଭବ ନୁହେଁ । ମନେହୁଏ ଯେମିତି ତମେ ଗୋଟାଏ ଯନ୍ତାରେ ପଡ଼ି ଯାଇଛ । କିନ୍ତୁ ଏଠି ତ ସେ ଅବସ୍ଥା ନାହିଁ । ବୁଲି ବୁଲି ଅନେକ କଥା କରାଯାଇପାରେ ।

ପ୍ରକୃତରେ ମଧ୍ୟ ସମୟ ଚାଲିଯାଇଥିଲା ଅନେକ ଶୀଘ୍ର । ସେମାନେ ଗୋଟାଏ ଟୁବାକୋ କିଅସକ୍‌ରୁ ଗୋଟାଏ ଡବା ଚୁରୁଟ୍ କିଣିଥିଲେ ଓ ସେଇ ଅବସରରେ ଦେଶୀ ବିଦେଶୀ ବିଭିନ୍ନ ଚୁରୁଟ୍ ବାକ୍‌ସକୁ ଆଣି ଏପଟ ସେପଟ କରି ପରୀକ୍ଷା କରିଥିଲେ । ତା'ପରେ ଯାଇଥିଲେ ବୁକ୍‌ଷ୍ଟଲ୍‌କୁ । ସେଠି ସେମିତି ଠିଆ ହେଇ ହେଇ ଏ ବହିର ସେ ବହିର ପୃଷ୍ଠା ଏପଟ ସେପଟ ଓଲଟଉ ଓଲଟଉ କଟି ଯାଇଥିଲା କିଛି ସମୟ । ଇତି ମଧ୍ୟରେ ପୃଷ୍ଠଭୂମିର ସଙ୍ଗୀତ ପରି ବାରମ୍ବାର ଶୁଣା ଯାଉଥାଏ ସେହି ଧାତବ ଘୋଷଣା

ବିଭିନ୍ନ ଫ୍ଲାଇଟ୍‌ର ଯାତ୍ରୀମାନଙ୍କୁ ସିକ୍ୟୁରିଟିକୁ ଯିବାକୁ ତାଗିଦ କରି ବା ଫ୍ଲାଇଟ୍‌ର ସମୟ ଘୋଷଣା କରି । କିନ୍ତୁ ଫୋର୍ ଓ୍ୱାନ୍ ଫାଇଭ୍ ଫ୍ଲାଇଟ୍‌ର ନାମ ଗନ୍ଧ ସୁଦ୍ଧା ନାହିଁ । ଅଭିଜିତ୍ ଦୁଇଟା ଖଣ୍ଡେ ଶସ୍ତା ଥ୍ରୀଲର୍ କିଣିଲା । ଲୀଳା ଦୋକାନୀ କି ଉଦ୍ଦେଶ୍ୟ କରି ପଚାରିଲା, ''ଚାଇଲ୍ଡ୍ କେୟାର୍ ସମ୍ପର୍କରେ କିଛି ବହି ଅଛି ?'' ତତ୍‌କ୍ଷଣାତ୍ ଲୀଳାର ଆଖିର ତାରା ମୁହୂର୍ତ୍ତକ ପାଇଁ ଅଭିଜିତ୍‌ର ଆଖି ସହିତ ମିଶି ଯାଇ ପୁଣି ବହିର ଥାକ ଆଡ଼କୁ ଫେରିଗଲା । ସେମାନେ ମାତ୍ର ଚାରି ପାଞ୍ଚ ଦିନ ତଳେ ଜାଣି ପାରିଛନ୍ତି ଯେ, ସେମାନେ ସେମାନଙ୍କର ପ୍ରଥମ ସନ୍ତାନକୁଆଶା କରୁଛନ୍ତି । ଯଦିଓ ଅନେକ ବିଳମ୍ବ ଅଛି । ବହି ଦୋକାନୀ ଏଠୁସେଠୁ ବାଛି ଚାରି ପାଞ୍ଚ ଖଣ୍ଡ ବହି କାଢ଼ିଲା । ଅଳ୍ପ ସମୟ ଟିକିଏ ଦେଖି ଦେଇ ଲୀଳା ସବୁଯାକ ବହି ନବ କହି ଭ୍ୟାନିଟି ବ୍ୟାଗ୍‌ରୁ ଟଙ୍କା କାଢ଼ିଲା । ବହିଦୋକାନପରେ ସେମାନେ ଯାଇ ଠିଆ ହେଇଥିଲେ ଗୋଟାଏ ବଡ଼ ଖେଳନା ଦୋକାନ ଆଗରେ । ସେମାନଙ୍କର ଯଦିଓ କିଛି କିଣିବାର ନଥିଲା ତଥାପି ଚାବିଦିଆ ମାଙ୍କଡ଼, ଭାଲୁ ଆଉ ପବନରେ ଫୁଲି ଉଠୁଥିବା ପେଲିକାନ୍ ଡକ୍ ·ଦେଖୁ ଦେଖୁ ସେମାନଙ୍କର ବୟସ ଯେମିତି ଖସି ଆସିଥିଲା ଅନେକ ତଳକୁ । ସେମାନେ ହାତ ବଢ଼େଇ ମଝିରେ ମଝିରେ କଣ୍ଢେଇ ଗୁଡ଼ାକୁ ଛୁଉଁଥିଲେ । ଅଭିଜିତ୍ ବତକର ଥଣ୍ଟାକୁ ଟିକେ ଆଉଁସି ଦେଲାଣି ତ ଲୀଳା ଗୋଟାଏ ବଡ଼ କନା ଗଧର ବେକପାଖ ବାଳରେ ଟିକିଏ ହାତ ବୁଲେଇ ଆଣିଲାଣି । ସେଠି ସେମାନଙ୍କର କଟିଥିଲା ବେଶ କିଛି ସମୟ । ତା'ପରେ ମ୍ୟାଗାଜିନ୍ ଷ୍ଟଲ୍‌ରୁ ମଧ୍ୟ ତିନି ଚାରି ଖଣ୍ଡ ପତ୍ରପତ୍ରିକା ନେଇଥିଲା ଅଭିଜିତ୍ ଓ ସେଇ ପଖରେ ଥିବା ଓଜନ ହେବା ଯନ୍ତ୍ର ଉପରେ ଗୋଟାଏ ଖିଆଲରେ ଠିଆ ହେଇପଡ଼ି ଅଭିଜିତ୍ ସ୍ଲଟ୍‌ରେ ଗୋଟାଏ ଦଶପଇସି ଗଳେଇ ଦେଇଥିଲା । ନାନା ପ୍ରକାର ଯାନ୍ତ୍ରିକ ଧ୍ୱନି କରି ମେସିନ୍‌ଟା' ଖୋପ ଭିତରକୁ ଫୋପାଡ଼ି ଦେଇଥିବା କାର୍ଡ଼ ଖଣ୍ଡକୁ ଧରି କିଛି ସମୟ ନିରୀକ୍ଷଣ କରି ଅଭିଜିତ୍ ତାକୁ ଦେଇ ଦେଇଥିଲା ଲୀଳାକୁ ଓ କହିଥିଲା, ''ମୁଁ ମୋଟା ହେଇ ଯାଉଛି ଲୀଳା ।'' ଲୀଳା କାର୍ଡ଼ର ପଛପଟେ ଯେଉଁ ଛୋଟ ଛୋଟ ଭବିଷ୍ୟତ୍‌ବାଣୀ ଲେଖା ଯାଇଥାଏ ତାକୁ ପଢ଼ିନେଇ ଭ୍ୟାନିଟି ବ୍ୟାଗ୍‌ରେ ରଖୁ ରଖୁ ଖୁବ୍ କାଜୁଆଲି କହିଲା, ''ତମେ ଯୋ' ରେଟ୍‌ରେ ବିଅର୍ ଖାଉଚ ନା...।'' ସେକଥା ଉପରେ ଅଭିଜିତ୍‌ର ପାଲଟା ଟିପ୍‌ପଣୀ ଅତ୍ୟନ୍ତ ସଂକ୍ଷିପ୍ତ ଥିଲା, ''ବାଜେ କଥା ।''

ଅଭିଜିତ୍ ମଣିବନ୍ଧର ଘଣ୍ଟାକୁ ଚାହିଁଲା ସାତଟା ପଚିଶି ମିନିଟ୍ । କିନ୍ତୁ ଏ ଯାଏଁ ତ ସିକ୍ୟୁରିଟି କାଉଣ୍ଟର ଦେଇ ବାହାରକୁ ଯିବା ପାଇଁ ଘୋଷଣା କରାଗଲା ନାହିଁ । ଏଇ କଥା ଭାବୁଥିଲା ଅଭିଜିତ୍ ଯେତେବେଳେ ପୁଣି କାନରେ ପଡ଼ିଲା ସେଇ ଧାତବ ଘୋଷଣା, ''ଫ୍ଲାଇଟ୍ ନମ୍ବର ଫୋର୍ ଓ୍ୱାନ୍ ଫାଇଭ୍ ଆହୁରି ଅଧଘଣ୍ଟାଏ ବିଳମ୍ବରେ ଯିବ ଓ ସେଥିପାଇଁ ଇଣ୍ଡିଆନ୍ ଏଆର୍ ଲାଇନ୍‌ସ୍ ଗଭୀର ଦୁଃଖ ପ୍ରକାଶ କରନ୍ତି ।''

ଏଥର କିନ୍ତୁ ବେଶ୍ ଟିକିଏ ଅସ୍ଥିର ହୋଇ ଉଠିଥିଲା ଅଭିଜିତ୍ ଓ ଏଆର୍ ଲାଇନ୍ସ ଉଦ୍ଦେଶ୍ୟରେ ସ୍ୱଗତ୍ ଗୋଟାଏ ଦୁଇଟା ଅଭିଧାନ ବିବର୍ଜିତ ଶବ୍ଦର ଅଭିସମ୍ପାତ ବର୍ଷଣ କରିଥିଲା । ଲୀନା କହିଥିଲା, ''ଏମାନଙ୍କର ଘୋଷଣାର ତରିକ୍‌କା ମତେ ବେଶ୍ ଜଣା, ବେଶି ବିଳମ୍ବ ହବ କହିଲେ, ଅନେକ ପ୍ୟାସେଞ୍ଜର୍ ଫ୍ଲାଇଟ୍ କ୍ୟାନ୍‌ସେଲ୍ କରି ଘରକୁ ଫେରିଯିବାର ଆଶଙ୍କା ଅଛି । ସେଥିପାଇଁ ସେମାନେ ସବୁବେଳେ ଏମିତି ଅଧଘଣ୍ଟାଏକୁ ଅଧଘଣ୍ଟାଏ ବଢ଼େଇବାରେ ଲାଗିଛନ୍ତି, ଅଥଚ ଫ୍ଲାଇଟ୍ ପୁରାପୁରି କ୍ୟାନ୍‌ସେଲ୍ ହୋଇଗଲା ଘୋଷଣା କରିବାକୁ ମଧ୍ୟ ଏମାନେ ନାରାଜ । କାରଣ ଅଢ଼େଇଶହ ଯାତ୍ରୀଙ୍କୁ ନେଇ ସହରର ଭଲ ହୋଟେଲରେ ରଖି, ଆସନ୍ତା ଫ୍ଲାଇଟ୍ ପର୍ଯ୍ୟନ୍ତ ସବୁ ଖର୍ଚ୍ଚ ଏଆର୍ ଲାଇନ୍‌ସକୁ ବହନ କରିବାକୁ ପଡ଼ିବ ।''

କଥାବାର୍ତ୍ତା କରି କରି ସେମାନେ ଚାଲୁଥିଲେ ଲାଉଞ୍ଜ ଆଡ଼କୁ । ଲାଉଞ୍ଜରେ ଲୋକଗହଳି ନାହିଁ; କାରଣ ଏଇ ଫ୍ଲାଇଟ୍‌ଟିକୁ ଛାଡ଼ି ଦେଲେ ଅନ୍ୟାନ୍ୟ ସବୁ ଯାତ୍ରୀମାନେ ଯେ ଯାହାର ଫ୍ଲାଇଟ୍ ଧରି ଚାଲିଯାଇ ସାରିଲେଣି । କମଳା ରଙ୍ଗର ପ୍ଲାଷ୍ଟିକ୍ ଚଉକିରେ ଚାରି ଧାଡ଼ିରେ ଅପେକ୍ଷମାଣ ଯାତ୍ରୀମାନେ ବସି ରହିଛନ୍ତି । ଦୁଇଟା ଖାଲି ଚଉକିରେ ବସି ପଡ଼ିଲେ ଅଭିଜିତ୍ ଆଉ ଲୀନା ।

ଧାଡ଼ି ଧାଡ଼ି ହୋଇ ବିଭିନ୍ନ ଜାତିର, ଦେଶର ଲୋକମାନେ ବସି ରହିଛନ୍ତି ଚୁପ୍ ଚାପ୍ । ସମସ୍ତଙ୍କର ମୁହଁରେ ଏଇ ଦୀର୍ଘ ପ୍ରତୀକ୍ଷାଜନିତ କ୍ଳାନ୍ତି ବେଶ ସ୍ପଷ୍ଟ ଭାବରେ ଅନୁଭବ କରି ହଉଛି । ଏଇ ଅବସ୍ଥାରେ ବିଭିନ୍ନ ଯାତ୍ରୀମାନଙ୍କୁ ଲକ୍ଷ୍ୟକରି କ୍ଳାନ୍ତି ଅପନୋଦନ କରିବା ଭିନ୍ନ ସେମାନଙ୍କର ଅନ୍ୟ କୌଣସି ଉପାୟ ନଥିଲା ।

ସେଠି ଯେଉଁ ଭଦ୍ରମହିଳା ବସିଛନ୍ତି, ସେ ଜଣେ ଇଟାଲୀୟ ମହିଳା ହୋଇଥିବା ସମ୍ଭବ କାରଣ ଇଟାଲୀୟମାନଙ୍କର ଭାରତୀୟ ମାନଙ୍କର ମୁହଁ ସହିତ ଅନେକ ସାମଞ୍ଜସ୍ୟ ଥାଏ। ନାକଟା ପୁରାପୁରି ଏରିଆନ୍ । ତାଙ୍କ ପାଖରେ ବସିଥିବା ଭଦ୍ରଲୋକ ସମସ୍ତ ବ୍ୟାପାରଟାକୁ ଭାଗ୍ୟ ଉପରେ ଛାଡ଼ି ଦେଇ ନିଶ୍ଚିନ୍ତରେ ନିଦ୍ରା ଯାଇଛନ୍ତି । ସେ ଭଦ୍ରମହିଳା ଜଣଙ୍କ ଗୁଜୁରାଟୀ ହେବେ ପରା ! ତାଙ୍କ ହାତ ଅନବରତ ବୁଣି ଚାଲିଛି ଏକ ସଂଭ୍ରାନ୍ତ ଭଙ୍ଗୀରେ । ଗୋଟାଏ ପାଉଁଶିଆ ରଙ୍ଗର ଉଲ୍‌ର ବଲ୍ ଥୁଆ ହୋଇଛି କୋଳ ଉପରେ । ଆଉ ଗୋଟାଏ କଫି ରଙ୍ଗର ବଲ୍ ଖୋସା ହୋଇ ବ୍ଲାଉଜ୍‌ର ବାଁ ପଟ ବେକ ଓ ଛାତି ମଝି ଜାଗାରେ ଓ ଆଉ ଗୋଟାଏ କି ରଙ୍ଗର କେଜାଣି ଉଲ୍ ଲମ୍ବି ଆସିଛି ଭ୍ୟାନିଟି ବ୍ୟାଗ୍ ଭିତରୁ । ଆଉ ଜଣେ ଭଦ୍ରଲୋକ ଅଧା ଜଳା ଗୋଟାଏ ଚୁରୁଟ୍‌କୁ ଲଗେଇବାର ନିଷ୍ଫଳ ଚେଷ୍ଟାରେ ଗୋଟାକ ପରେ ଗୋଟାଏ ଡିଆସିଲି କାଠି ଜାଳି ଚାଲିଛନ୍ତି । ସେଇ ଯେ ପତଳା ହୋଇ ଡେଙ୍ଗା ଭଦ୍ରଲୋକ ବସିଛନ୍ତି, ସେ

କେତେବେଳେ ତାଙ୍କର ବାଁ ଗୋଡ଼କୁ ଡାହାଣ ଜଙ୍ଘ ଉପରେ ତ କେତେବେଳେ ଡାହାଣ ଗୋଡ଼କୁ ବାଁ ଜଙ୍ଘ ଉପରେ ରଖୁଛନ୍ତି । ଭଦ୍ରଲୋକଙ୍କର ଯୋତା ପାଲିସ୍ ହୋଇ ଚକ୍ ଚକ୍ କରୁଛି । ଏପରି କି ଉପରେ ଝୁଲୁଥିବା ସିଲିଂ ଫ୍ୟାନ୍‌ଟି ଅକ୍ଷତ ଭାବରେ ପ୍ରତିବିମ୍ବିତ ହେଉଛି ତାଙ୍କ ଜୋତାର ଟୋ'ରେ । ମୋଟ ଉପରେ ପ୍ରତ୍ୟେକ ଯାତ୍ରୀ ନିଜ ନିଜର ଟେନ୍‌ସନ୍‌ରୁ ମୁକ୍ତି ପାଇବା ପାଇଁ କିଛି ନା କିଛି କରି ଚାଲିଛନ୍ତି । ଅଭିଜିତ୍ ଏଇ ଅବସରରେ ତା'ର କୋଟ୍‌ର ଫ୍ଲାପ୍ ମେଲାକରି, ଭିତର ପକେଟ୍‌ରୁ ଗୋଟିଏ ଚକ୍ ଚକ୍ ରୂପାର ଫ୍ଲାସ୍କ ବାହାରକରି ମୁହଁରେ ଲଗାଇଲା । ନିଟ୍ ବ୍ରାଣ୍ଡିର ଉତ୍କଟ ସ୍ୱାଦରେ ଅଭିଜିତ୍‌ର ମୁହଁ ଗୋଟାଏ ମୁହୂର୍ତ୍ତ ପାଇଁ ବିକୃତ ହୋଇ ଉଠିଲା ଯେପରି !

ପୁଣି ଥରେ ଘୋଷଣା କରାଗଲା, ଆହୁରି ଅଧଘଣ୍ଟାଏ ବିଳମ୍ବରେ ଛାଡ଼ିବ କ୍ୟାରାଭିଲ୍ ଜାହାଜ । ଅଭିଜିତ୍ ନିଜ ଦେହର ଓଜନ ଗୋଟାଏ ଗୋଡ଼ରୁ ଅନ୍ୟ ଗୋଡ଼କୁ ପରିବର୍ତ୍ତନ କଲା ।

ଅଭିଜିତ୍ କହିଲା, ''ଲୀନା, ଏ ଫ୍ଲାଇଟ୍‌କୁ ଏଇଥର ଶେଷ ସୁଯୋଗ ଦେଲି । ଯା'ପରେ ଆଉ ଥରେ ଯଦି ଏକ୍‌ଷ୍ଟେଣ୍ଡ୍ କରାଯାଏ ତାହାହେଲେ ଆମେ ଫେରିଯିବା । ଆଫ୍‌ଟର୍ ଅଲ୍ ସାଢ଼େ ଆଠଟା ବେଳେ ଛାଡ଼ିବ ।'' ଲୀନା ଏ କଥାର କିଛି ଜବାବ୍ ନଦେଇ ଲେଡ଼ିଜ୍ ଟଏଲେଟ୍ ଉଦ୍ଦେଶ୍ୟରେ ଉଠିଗଲା । ଲୀନା ଯେ ଅଭିମାନ କରିଛି ଏକଥା ଅଭିଜିତ୍ ବୁଝି ସାରିଥିଲା ଅନେକ ଆଗରୁ । ଶେଷ ଘୋଷଣା ପରେ ପରେ ବ୍ରିଫ୍‌କେସ୍ ଉପରେ ହାତ ଦେଇଥିବା ଯାତ୍ରୀମାନଙ୍କର ହାତମୁଠା ହାଣ୍ଡଲ୍ ଉପରେ ଆହୁରି ଶକ୍ତ ହୋଇଗଲା । ଭଦ୍ରମହିଳା ଉଲ୍ ବୁଣିବା ଛାଡ଼ି ଦେଇ ହାଇ ଛାଡ଼ିଦବା ପରି ଭଙ୍ଗୀରେ ଆଉଜି ଗଲେ ଚଉକି ଉପରେ ଚୁରୁଟ୍ ଟାଣୁଥିବା ଭଦ୍ରବ୍ୟକ୍ତି ଦରପୋଡ଼ ଚୁରୁଟ୍‌ଟାକୁ ଫୋପାଡ଼ି ଦବା ପାଇଁ ଆସ୍-ଟ୍ରେ ଖୋଜିବାକୁ ବ୍ୟଗ୍ର ହେଇ ପଡ଼ିଲେ । ସାମୂହିକ ଅସନ୍ତୋଷର ପ୍ରତୀକ ସ୍ୱରୂପ ଗୋଟିଏ ସଂକ୍ଷିପ୍ତ ଅଥଚ ଧୀର ଗୁଞ୍ଜରଣ ଲାଉଞ୍ଜରେ ପ୍ରସରି ଯାଇ ପୁଣି ନୀରବ ହେଇଗଲା ଏବଂ ପ୍ରାୟ ଦୁଇ ମିନିଟ୍ ଭିତରେ ଯାତ୍ରୀମାନେ ଆସନ୍ତା ଅଧଘଣ୍ଟାଏ ସମୟକୁ ମୁକାବିଲା କରିବାକୁ ନିଜ ନିଜକୁ ପ୍ରସ୍ତୁତ କରି ନେଲେ ।

ଠିକ୍ ଏଇ ସମୟରେ ଅନ୍ୟ ଏକ ଘଟଣା ଘଟିଲା, ଯାହା ଲାଉଞ୍ଜରେ ଯାତ୍ରୀମାନଙ୍କ ପାଇଁ ଥିଲା ଘୋର ନିଦାଘରେ ବୃଷ୍ଟିପାତ ପରି । ହଠାତ୍ କେଉଁଠୁ କେଜାଣି ଲାଉଞ୍ଜ ଭିତରକୁ ପଶି ଆସିଲା ଗୋଟିଏ ପାଞ୍ଚ ଛ' ବର୍ଷର ଛୋଟ ଶିଶୁ, ସମ୍ଭବତଃ ବିଦେଶୀ । ଶିଶୁଟିର କପୋଳର ରଙ୍ଗ ଥିଲା ବନି ଆସୁଥିବା ଆପେଲ୍‌ର ରଙ୍ଗ ପରି ଏବଂ ସେଇ ଅଧା ସବୁଜ ଓ ଅଧା ରକ୍ତିମରଙ୍ଗ ସହିତ ଯେପରି ମିଶିଥିଲା

ଟିକିଏ ଅଲିଭ୍ ଅଏଲ୍‌ର ରଙ୍ଗ, ରୌଦ୍ର ତାମ୍ର ଟ୍ରପିକ୍‌ର ନିଶ୍ଚିତ ସଙ୍କେତ ପରି । ତା'ର ଗୋଟିଏ ହାତରେ ସେ ଧରିଥିଲା ଗୋଟାଏ ଅତିକାୟ କଳା ଉଲ୍‌ର ଭାଲୁ ଯାହାର ଦୁଇଟି ଆଖିର ଲାଲ୍ ରୁବି ପଥର ଦୁଇଟି ବିଦ୍ୟୁତ୍ ଆଲୋକରେ ବେଶ୍ ଚିକ୍‌ଚିକ୍ କରୁଥିଲା । ଅନ୍ୟ ହାତରେ ସେ ଗୋଟାଏ ଖେଳଣା ପିଙ୍ଗ୍‌ପଙ୍ଗ୍ ବ୍ୟାଟ୍ ସାହାଯ୍ୟରେ ଗୋଟାଏ ପ୍ରକୃତ ପିଙ୍ଗ୍‌ପଙ୍ଗ୍ ବଲ୍‌କୁ ମୋଜାଇକ୍ ଉପରେ ପିଟି ପିଟି ବେଶ୍ ସ୍ୱଚ୍ଛନ୍ଦ ଭାବରେ ଖେଳୁଥିଲା । ଏତେ ଗୁଡ଼ିଏ ବୟସ୍କ ଲୋକମାନଙ୍କର ନିକଟ ଉପସ୍ଥିତି ସମ୍ପର୍କରେ ଶିଶୁଟି ଯେପରି ଆଦୌ ସଚେତନ ନ ଥିଲା ।

କିନ୍ତୁ ପ୍ରତ୍ୟେକଟି ଯାତ୍ରୀର ଆଖି ଥିଲା ଏହି ଶିଶୁ ଉପରେ, କାରଣ ସେମାନଙ୍କର ଦୀର୍ଘ କ୍ଲାନ୍ତିକର ମନୋଟନି ଭାଙ୍ଗିବା ପାଇଁ ଯେପରି ଏଇ ଦେବ-ପ୍ରେରିତ ଶିଶୁଟିର ଆବିର୍ଭାବ ହେଇଗଲା ଅକସ୍ମାତ୍ । ପିଲାଟିର ଛୋଟ ଛୋଟ ପାଦର ଚାଲି ଓ କ୍ରୀଡ଼ାଜନିତ ବିଭିନ୍ନ ଭଙ୍ଗୀ ସବୁ ଯାତ୍ରୀମାନଙ୍କର ମୁହଁରେ ବିଭିନ୍ନ ସହାନୁଭୂତି ସୂଚକ ମୁଦ୍ରା ସୃଷ୍ଟି କରୁଥିଲା । ପିଲାଟିର ପୋଷାକ ପରିଚ୍ଛଦ ସମ୍ପର୍କରେ ଖୁଣ୍ଟିନାଣ୍ଟି ବର୍ଣ୍ଣନା କରିବାର ପ୍ରୟୋଜନ ନାହିଁ । କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, ମୁଣ୍ଡ ଉପରେ ଗୋଟାଏ ବାଉଁଶର ଟୋପି ପିନ୍ଧି ପ୍ରଚୁର ଆତ୍ମବିଶ୍ୱାସର ସହିତ ଠିଆ ହେଇଥିବା ଏଇ ଶିଶୁ ଦେଖା ଯାଉଥାଏ ଗୋଟିଏ ଶିଶୁ ନେପୋଲିୟନ୍ ପରି ।

କିଛି ସମୟ ପରେ ଦେଖାଗଲା ଏଇ ଶିଶୁ ପେନୋଲିୟନ୍‌ଟି ଏପଟ ସେପଟକୁ ଚାହିଁ କିଛି ଅନୁସନ୍ଧାନ କରୁଛି ବୋଧହୁଏ । ହଁ, ଠିକ୍ କଥା ତାର ପିଙ୍ଗ୍‌ପଙ୍ଗ୍ ବଲ୍‌ଟି ହଠାତ୍ କୁଆଡ଼େ ଉଭେଇଗଲା । ତାକୁ ସାହାଯ୍ୟ କରିବାକୁ ଯାତ୍ରୀମାନେ ନିଜ ନିଜର ଗୋଡ଼ ଉଠେଇ ବଲ୍‌ଟିର ସନ୍ଧାନ ନବାକୁ ଚେଷ୍ଟିତ ଥିଲେ । କିନ୍ତୁ ନେପୋଲିୟନ୍‌ର ସେଥିପ୍ରତି ସାମାନ୍ୟ ଭ୍ରୂକ୍ଷେପ ନଥିଲା । ଦୁଇପଟେ ଧାଡ଼ି ବାନ୍ଧି ଉପବିଷ୍ଟ ବୟସ୍କ ଲୋକମାନଙ୍କର ମଝିରେ ସେ ଚାଲୁଥାଏ ଧୀରେ ଧୀରେ ଅଥଚ ନିଶ୍ଚିତ ଭାବରେ ତା'ର ଗନ୍ତବ୍ୟ ସ୍ଥଳକୁ । ମନେ ହଉଥାଏ ଯେପରି ଏଇ ବୟସ୍କ ଲୋକମାନେ ଏଇ ଶିଶୁ ସମ୍ରାଟର କରୋନେସନ୍ ଉତ୍ସବକୁ ଆମନ୍ତ୍ରିତ ଅତିଥି । ଧାଡ଼ି ଶେଷରେ ହେୟାର୍‌ପିନ୍ ମୋଡ଼ ଭାଙ୍ଗି ସେ ଚାଲିଲା ଦ୍ୱିତୀୟ ଶ୍ରେଣୀବଦ୍ଧ ଅତିଥିମାନଙ୍କର ଗାର୍ଡ଼ ଅଫ୍ ଅନର୍ ନବାକୁ । କିଛି ବାଟ ଯାଇ ସେ ହଠାତ୍ ଅଟକି ଗଲା ଜଣେ ପ୍ରୌଢ଼ ଭଦ୍ରବ୍ୟକ୍ତିଙ୍କ ନିକଟରେ, ଯିଏ ଚଉକିରେ ଆଉଜି ପଡ଼ି ନିଶ୍ଚିନ୍ତରେ ନିଦ୍ରା ଯାଇଥିଲେ ଓ ତାଙ୍କର ମୋଟା ଟୁଇଡ୍‌କୋଟ୍‌ର ବିରାଟ ପକେଟ୍ ଚଉକିର ଫାଙ୍କ ଦେଇ ଓହଳି ପଡ଼ିଥିଲା ତଳକୁ ।

ବିନା ସଙ୍କୋଚରେ ଭଦ୍ରବ୍ୟକ୍ତିଙ୍କ ପକେଟ୍‌ରେ ହାତ ପୂରେଇ ସେ କାଢ଼ି ଆଣିଲା ପିଙ୍ଗ୍‌ପଙ୍ଗ୍ ବଲ୍‌ଟିକୁ ଜଣେ କୁଶଳୀ ଯାଦୁକର ପରି । ଲକ୍ଷ୍ୟ କରୁଥିବା ଦର୍ଶକମାନଙ୍କ

ଭିତରେ ହାସ୍ୟର ମୃଦୁ ଗୁଞ୍ଜରଣ ଖେଳିଗଲା, କିନ୍ତୁ ନେପୋଲିୟନ୍ ଆସି ପୂର୍ବବତ୍ ନିର୍ଲିପ୍ତ ଭାବରେ ପିଙ୍ଗ୍‌ପଙ୍ଗ୍ ବଲ୍‌ଟିକୁ ପିଟିପିଟି ତାଙ୍କର ଅସମାପ୍ତ ଖେଳ ଆରମ୍ଭ କରି ଦେଇଥିଲେ । ବଲ୍‌ଟି ପାଇସାରି ଫେରିଲା ବେଳେ କିଏ ଜଣେ ପଚାରି ଦେଇଥିଲା ଇଂରେଜୀରେ, ''ତୁମର ନାଁ କ'ଣ ୟଙ୍ଗମ୍ୟାନ୍ ?'' ଶିଶୁଟି ମୁହୂର୍ତ୍ତକ ପାଇଁ ସ୍ଥିର ହେଇଯାଇ, ଭଦ୍ରବ୍ୟକ୍ତିଙ୍କ ଆଡ଼କୁ ମୁହଁ ବୁଲେଇ ବେଶ୍ ଗାମ୍ଭୀର୍ଯ୍ୟ ସହକାରେ ଘୋଷଣା କରିଥିଲା ମାତ୍ର ଗୋଟିଏ ଶବ୍ଦ 'କ୍ଲାଇବ୍' ।

ପ୍ରସ୍ତାବିତ ଅଧଘଣ୍ଟାଏ ସମୟ ସରି ନାହିଁ ଏଯାଏଁ, ତଥାପି ଯାତ୍ରୀମାନଙ୍କ ଭିତରେ ଧୈର୍ଯ୍ୟହାନିର ପ୍ରଚୁର ସଙ୍କେତ ମିଳିଲାଣି । କେହି କେହି ଏଠି ସେଠି ବୁଲାବୁଲି କରି ବିଳମ୍ବର କାରଣ ଅନୁସନ୍ଧାନ କରି ଫେରି ଆସିଲେଣି । ସେମାନଙ୍କର ସମ୍ବାଦ ଚଉକିରୁ ଚଉକି ସଂକ୍ରମିତ ହଉଛି । କିଏ କୁହେ, ହାଇଦ୍ରାବାଦ୍‌ର ଭୀଷଣ ତୋଫାନ୍, ଓ୍ୱେଦର୍ ଯିବା ପାଇଁ ପରମିଟ୍ କରୁ ନାହିଁ । ଆଉ କିଏ କୁହେ, ଆମ ଜାହାଜର ରାଡ଼ାର୍ ଖରାପ ହୋଇଯାଇଛି । ଯିବା ସଂଭବ ନୁହେଁ । ଅନ୍ୟ ଗୋଟିଏ ପ୍ଲେନ୍ ପାଇଁ ଖବର ଦିଆଯାଇଛି, ଇତ୍ୟାଦି ଇତ୍ୟାଦି । ବେଶ୍ କିଛି ଯାତ୍ରୀ ସେମାନଙ୍କର ଟିକେଟ୍ କ୍ୟାନ୍‌ସେଲ୍ କରିବାର ମସୁଧା କରି ସାରିଲେଣି । ଏତିକିବେଳେ ଘୋଷଣା କରାଗଲଣ ଯେ, ପାସେଞ୍ଜର୍‌ମାନେ ଏଆର୍‌ପୋର୍ଟ କ୍ୟାଣ୍ଟିନ୍‌ରେ ସେମାନଙ୍କର ରାତ୍ରିଭୋଜନ ଖାଇ ନିଅନ୍ତୁ । ଯାତ୍ରୀମାନେ ନିଜ ନିଜର ହ୍ୟାଣ୍ଡ୍‌ବ୍ୟାଗ୍ ଧରି ଅଗ୍ରସର ହେଲେ କ୍ୟାଣ୍ଟିନ୍ ଆଡ଼କୁ । ଅଭିଜିତ୍ ଲୀଳାକୁ କହିଲା, ''ଆସ ଲୀଳା, ଅନ୍ତତଃ କପେ କଫି ଖାଇ ମତେ କମ୍ପାନୀ ଦବ ।'' ଠିକ୍ ପରେ ପରେ ଘୋଷଣା କରାଗଲା ଯେ ଫୋର୍ ଓ୍ୱାନ୍ ଫାଇଭ୍ ବିମାନ ଆଉ ମାତ୍ର ଦଶ ମିନିଟ୍ ପରେ ଛାଡ଼ିବ ।

ସେତେବେଳେ ଲାଉଞ୍ଜର ଠିକ୍ ଠିକ୍ ଚିତ୍ର ଦବା ସମ୍ଭବ ନୁହଁ । ଦଳେ କ୍ୟାଣ୍ଟିନ୍‌କୁ ଚାଲିଗଲେଣି । ଆଉ ଦଳେ ଠିକଣା କରିନେଲେଣି ଯେ, ସେମାନଙ୍କର ଡିନର୍ ଖାଇବା ପ୍ରୟୋଜନ ନାହିଁ ବରଂ ସେମାନେ ସିଧା ପ୍ଲେନ୍‌କୁ ଯିବେ । ଇତି ମଧ୍ୟରେ ଆଉ ଚାରି ପାଞ୍ଚଜଣ ଯାତ୍ରୀ ଟିକଟ୍ କ୍ୟାନ୍‌ସେଲ୍ କରିବା କାଉଣ୍ଟର୍‌ରେ ଜିଦ୍ କରୁଛନ୍ତି । ଟିକଟ୍ କ୍ୟାନ୍‌ସେଲ୍ କରିବାରେ ଅବଶ୍ୟ କର୍ତ୍ତୃପକ୍ଷଙ୍କର କିଛି ଆପତ୍ତି ନାହିଁ । କିନ୍ତୁ ସେମାନଙ୍କର ଲଗେଜ୍ ଲୋଡ୍ ହେଇ ସାରିଲାଣି ଜାହାଜରେ ଏଇ ଅଳ୍ପ ସମୟ ଭିତରେ ଅଢ଼େଇ ଶହ ଯାତ୍ରୀଙ୍କ ଲଗେଜ୍ ଭିତରୁ ସେମାନଙ୍କର ଲଗେଜ୍‌କୁ ଚିହ୍ନଟ କରି ବାହାରକୁ ଆଣି ଦବା ସମ୍ଭବ ନୁହଁ । ଝମେଲା ବାଦ୍ ଦବାକୁ ଯାଇ ସେ ଯାତ୍ରୀମାନେ ମଧ୍ୟ ଅଗତ୍ୟା ରାଜି ହେଇଗଲେଣି, 'ଅଲ୍ ରାଇଟ୍ ଉଇ ଆର୍ ଟେକିଙ୍ଗ୍ ଦିସ୍ ଫ୍ଲାଇଟ୍ ।'

କ୍ୟାଣ୍ଟିନ୍ ଭିତରେ ମଧ୍ୟ ଠିକ୍ ସେଇ ଅବସ୍ଥା । ଏତେ ଅଳ୍ପ ନୋଟିସ୍‌ରେ ଏତେ ସଂଖ୍ୟକ ଯାତ୍ରୀଙ୍କୁ ଡିନର୍ ଦବା ପାଇଁ ସେମାନଙ୍କର ପ୍ରସ୍ତୁତି ହୋଇ ପାରିନାହିଁ ।

ଫଳରେ ବିଭିନ୍ନ ପୋଷାକପତ୍ରର ମିଶାମିଶି ଅନେକ ଗୋଡ଼ର ଫେଣ୍ଟାଫେଣ୍ଟି ଭିତରେ ଯାତ୍ରୀମାନେ ଗୋଟିଏ ଗୋଟିଏ ପ୍ଲେଟ୍ ଧରି କାଉଣ୍ଟର୍ ଉପରୁ ଯାହା କିଛି ସଂଗ୍ରହ କରି ପାରୁଛନ୍ତି ସେତକ ଯଥେଷ୍ଟ ମନେ କରାଯାଉଛି । ଅଭିଜିତ୍ ଭିଡ଼ ଭିତରୁ ନିଜକୁ ଯଥାସମ୍ଭବ ରକ୍ଷା କରି ଗୋଟାଏ ପ୍ଲେଟ୍‌ରେ ଗୋଟିଏ କଟ୍‌ଲେଟ୍‌ଧରି ଟେବୁଲ୍ ଉପରକୁ ଆସୁ ଆସୁ, କାହାର ଭ୍ୟାନିଟିବ୍ୟାଗ୍‌ରୁ କ'ଣ ଗୋଟାଏ ଛୋଟ ଶିଶି ତଳେ ପଡ଼ି ଭାଙ୍ଗିଯିବାର ଶବ୍ଦ ହେଲା ଓ ମୁହୂର୍ତ୍ତକ ମଧ୍ୟରେ କ୍ୟାଣ୍ଟିନ୍‌ର କୋଣ ଅନୁକୋଣ ଏକ ଲଘୁଅଥଚ ଚପଳ ସୁଗନ୍ଧରେ ଆମୋଦିତ ହୋଇ ଉଠିଲା । 'ଅନ୍ ସୋକନ୍' ପରଫ୍ୟୁମ୍ ସହିତ ଅଭିଜିତ୍ ଓ ଲୀଳା ବହୁ ପରିଚିତ । ସେମାନେ ଏହା ବିସ୍ମୃତ ହବାର ନୁହଁ । ସେମାନଙ୍କର ମଧୁଚନ୍ଦ୍ରିକା ରାତ୍ରିରେ ଏହା ହିଁ ଥିଲା ଲୀଳାର ନିର୍ବାଚିତ ପରଫ୍ୟୁମ୍ । ସେହି ଦିନଠାରୁ ଅଭିଜିତ୍ ଓ ଲୀଳା ଏହି ପରଫ୍ୟୁମ୍‌ର ବ୍ୟବହାରକୁ ଦାମ୍ପତ୍ୟ ମିଳନର ଏକ ଅଲଙ୍ଘନୀୟ ନିମନ୍ତ୍ରଣର ସଙ୍କେତ ରୂପେ ବ୍ୟବହାର କରି ଆସିଛନ୍ତି । ଟେବୁଲ୍ ଉପରକୁ ଅଭିଜିତ୍ ଆସିଲା ବେଳକୁ ଲୀଳାର ଦୁଇଟି ଆଖି ଯେ ଅସମ୍ଭବ ଭାବରେ ଉଜ୍ଜ୍ୱଳ ହୋଇ ଉଠିଥିଲା ତାହା ଅଭିଜିତ୍ ବେଶ୍ ଲକ୍ଷ୍ୟ କରି ପାରିଥିଲା । ସେ ପ୍ଲେଟ୍‌ଟାକୁ ଟେବୁଲ୍ ଉପରେ ରଖିଦେଇ କେବଳ କହିଲା, ''ସୋ ଇଟ୍ ହାପନ୍‌ଡ୍ !'' ଲୀଳା ସ୍ମିତ ହସି, ତା'ର ଆୟତ ଆଖି ଦୁଇଟିକୁ ଆନତ କଲା । ଲୀଳାର ଦୁଇ କପୋଳରେ ନବବଧୂସୁଲଭ ସାମାନ୍ୟ ଅରୁଣିମା, ଅଭିଜିତ୍‌ର ଧମନୀରେ ରକ୍ତ ପ୍ରବାହ ଯଥେଷ୍ଟ କ୍ଷିପ୍ର କରି ତୋଳିଥିଲା ।

ଏତିକିବେଳେ, ମାଇକ୍‌ରେ ଘୋଷଣାର ସ୍ୱର ଅତ୍ୟନ୍ତ ଜରୁରୀ ମନେ ହେଉଥିଲା, ''ଆଟେନ୍‌ସନ୍ ପ୍ଲିଜ୍''... ''ଦିସ୍ ଇଜ୍ ଆନ୍ ମର୍ସି ଏନାଉନ୍‌ସ୍‌ମେଣ୍ଟ ।'' କ୍ୟାଣ୍ଟିନ୍‌ର କାଉଣ୍ଟର୍ ଓ ଲାଉଞ୍ଜର ସମସ୍ତ ଗୋଳମାଳ ଏକାଥରକେ ଚୁପ୍ ହୋଇଗଲା । ଏପରି କି ପ୍ଲେଟ୍‌ରେ କଣ୍ଟା ଚାମୁଚ ବାଜିବାର ଶବ୍ଦ ନାହିଁ । ମନେହେଲା ଯେପରି ଗୋଟାଏ ମୁହୂର୍ତ୍ତ ଭିତରେ ଏଆର୍‌ପୋର୍ଟ ଉପରେ ଓହ୍ଲେଇ ଆସିଲା ମୃତ୍ୟୁର ନୀରବତା ।

ତା'ପରେ ଅତି ଆସ୍ତେ, ଅଥଚ ସ୍ପଷ୍ଟ ଭାବରେ ମାଇକ୍‌ରେ ଭାସି ଆସିଲା ଏକ ସାମାନ୍ୟ କମ୍ପିତ ନାରୀକଣ୍ଠ । ସେ ସ୍ୱର ଯେପରି ଆଭିଜାତ୍ୟର ସମସ୍ତ ସଂଯମ ପ୍ରୟୋଗ କରି ଉଦ୍‌ବେଗକୁ ନିୟନ୍ତ୍ରିତ କରିବାର ଉଦ୍ୟମ କରୁଛି ।

''ମୁଁ ମିସେସ୍ କପାସିଆ କହୁଛି । ଏଇ ମାତ୍ର ସମ୍ବାଦ ପାଇଲି ମୋର ସ୍ୱାମୀ ମିଃ କପାସିଆ ଗୁରୁତର ମଟର ଦୁର୍ଘଟଣାରେ ହସ୍‌ପିଟାଲ୍‌ରେ । ଏ ଫ୍ଲାଇଟ୍ ବିଳମ୍ବ ହେଇଥିବାରୁ ମୁଁ ଓ ମୋର ଶିଶୁ ପୁତ୍ର ଏହାର ସୁଯୋଗ ନବାକୁ ଚାହୁଁ । ଯଦି କେହି ଯାତ୍ରୀ ତାଙ୍କର ସିଟ୍‌ଟି ମତେ ଦିଅନ୍ତେ ମୁଁ ଆଜୀବନ ଋଣୀ ରହିବି । ଆସନ୍ତା ଫ୍ଲାଇଟ ଆଉ ବାର ଘଣ୍ଟା ପରେ; କିନ୍ତୁ ସେତେବେଳକୁ ଅନେକ ଡେରି ହେଇଯାଇପାରେ....''

ଶେଷ ଆଡ଼କୁ ଭଦ୍ରମହିଳାଙ୍କର କଣ୍ଠସ୍ୱର ସାମାନ୍ୟ ରୁଦ୍ଧ ହୋଇ ଆସିଲା ପରି ମନେ ହେଉଥିଲା ।

ତଥାପି ସମସ୍ତେ ଚୁପ୍ ଚାପ୍ । ସମସ୍ତେ ପରସ୍ପର ମୁହଁକୁ ଚାହୁଁଛନ୍ତି କେବଳ । ଅଭିଜିତ୍ ଚାହିଁଲା ଲୀନାକୁ । ଲୀନାର କିଛି ସମୟ ପୂର୍ବର ଦୁଇଟି ଉଜ୍ଜ୍ୱଳ ଆଖି ଯେପରି କରୁଣାସିକ୍ତ ହୋଇ ଉଠିଛି । ଅଭିଜିତ୍ ଟେବୁଲ୍ ତଳେ ତା'ର ଗୋଡ଼ ନେଇ ଲୀନାର ଗୋଡ଼ ଉପରେ ଆସ୍ତେ ଚାପି ଦେଇ କହିଲା, ମୁଁ ସ୍ଥିର କରି ନେଇଛି ଆଜିର ଫ୍ଲାଇଟ୍‌ରେ ମୋ ପରିବର୍ତ୍ତେ ଯାଉଛନ୍ତି ଏଇ ମିସେସ୍ କପାସିଆ ଭଦ୍ରମହିଳା—ଜଣେ ଭଦ୍ରମହିଳାଙ୍କର ସ୍ୱାମୀଙ୍କର ଜୀବନ ମରଣ ସମସ୍ୟା, ଗୋଟାଏ ମାମୁଲି ଗତାନୁଗତିକ ବିଜିନେସ୍ କନ୍‌ଫରେନ୍‌ସ୍ ଅପେକ୍ଷା ଅନେକ ବେଶି ଗୁରୁତ୍ୱପୂର୍ଣ୍ଣ ।'' ଲୀନା କହିଲା, ''ମୁଁ ତୁମଠାରୁ ଠିକ୍ ଏଇ କଥା ଶୁଣିବାକୁ ଆଶା କରିଥିଲି—ୟୁ ଆର୍ ସୋ ସେନ୍‌ସିବଲ୍ ।''

ପ୍ଲେଟ୍ ଉପରେ କଟ୍‌ଲେଟ୍ ଖଣ୍ଡିକ ତଥାପି ଅଭୁକ୍ତ ଥିଲା । ଅଭିଜିତ୍ ଓ ଲୀନା ଏକ ସମୟରେ ଉଠି ପଡ଼ିଲେ ଓ ଚାଲିଲେ ଏନ୍‌କ୍ୱାରୀ କାଉଣ୍ଟର ଆଡ଼କୁ । ଏନ୍‌କ୍ୱାରୀ କାଉଣ୍ଟର୍ ପାଖରେ ପହଞ୍ଚିବା ପରେ ମିସେସ୍ କପାସିଆଙ୍କୁ ଲେଡ଼ି ଆନାଉନ୍‌ସର ଠାରୁ ପୃଥକ କରି ଚିହ୍ନିବାରେ ଏତେଟିକେ ଅସୁବିଧା ହେଲା ନାହିଁ । କାରଣ ଅଭିଜିତ୍ ଓ ଲୀନାକୁ ଦେଖି ମିସେସ୍ ପକାସିଆଙ୍କର ଉଦ୍‌ବିଗ୍ନ ମୁଖମଣ୍ଡଳର ମାଂସପେଶୀ ଆଶୁ ସାହାଯ୍ୟ ପ୍ରାପ୍ତି ଆଶାରେ ସାମାନ୍ୟ ଶିଥିଳ ହୋଇ ଯାଇଥିଲା । ତା'ଛଡ଼ା ମିସେସ୍ କପାସିଆ ଥିଲେ ପୁରାପୁରି ବ୍ରିଟିଶ୍ ମହିଳା ଓ ତାଙ୍କର ତରୁଣ ସୁନ୍ଦର ମୁଖମଣ୍ଡଳକୁ ଆବୃତ କରି ରଖିଥିଲା ଘଞ୍ଚ ମହୁ ରଙ୍ଗର ବବ୍ ହେଆର୍‌ର ଗୁଚ୍ଛ । ଅଭିଜିତ୍ ନିଜର ପରିଚୟ ଦେଇ ନିଜର ସଂରକ୍ଷିତ ସ୍ଥାନଟି ମିସେସ୍ କପାସିଆଙ୍କୁ ନିବେଦନ କରିଥିଲା । ମିସେସ୍ କପାସିଆ ଅଭିଜିତ୍‌ର ଦୁଇ ହାତ ଧରି ପକାଇ କହିଥିଲେ, ''ଆପଣଙ୍କର ଏ ତ୍ୟାଗକୁ ମୁଁ ଚିରଜୀବନ ମନେ ରଖିବି—ଆଉ ମନେ ରଖନ୍ତୁ ଭଗବାନ ଦିନେ ନାଁ ଦିନେ ଆପଣଙ୍କ ଜୀବନରେ ଏହାର ପ୍ରଚୁର କ୍ଷତିପୂରଣ କରିବେ ।'' କଟାକ୍ଷରେ ଲୀନାକୁ ମଧ୍ୟ ଅଭିନନ୍ଦନ କରିବାକୁ ଭୁଲି ନଥିଲେ । ମିସେସ୍ କପାସିଆ କହିଥିଲେ, ''ଆପଣଙ୍କର ଅସାମାନ୍ୟ ସୁନ୍ଦରୀ ସ୍ତ୍ରୀଙ୍କୁ ଦେଖି ମୋର ପ୍ରକୃତରେ ଭାରି ଈର୍ଷା ହଉଛି ।''

ମିସେସ୍ କପାସିଆଙ୍କର କଥା କହିବାର ଭଙ୍ଗୀ ଥିଲା ଅତିମାତ୍ରାରେ ସଂଭ୍ରାନ୍ତ, ରୁଚିପୂର୍ଣ୍ଣ ଓ ସଂଯତ । ଆଉ ହାତରେ ସମୟ ନାହିଁ, ମିସେସ୍ କପାସିଆ ତାଙ୍କର ହ୍ୟାଣ୍ଡବ୍ୟାଗ୍ କାନ୍ଧକୁ ଉଠେଇ ଆଉ ଥରେ ଧନ୍ୟବାଦ ଦେଲେ । ନିଜର ଟିକଟ୍‌ଟିକୁ

ଆସନ୍ତାକାଲିର ଫ୍ଲାଇଟ୍ ପାଇଁ ଓ.କେ. କରିବାକୁ ଦେଇ ଦେଇ ଅଭିଜିତ୍ ଓ ଲୀଳା ମଧ ମିସେସ୍ କପାସିଆଙ୍କର ଅନୁଗମନ କଲେ ସିକ୍ୟୁରିଟ୍ ଗେଟ୍ ପର୍ଯ୍ୟନ୍ତ ।

କିନ୍ତୁ ବର୍ତ୍ତମାନର ଲାଉଞ୍ଜ ଥିଲା ସଂପୂର୍ଣ୍ଣ ଜନଶୂନ୍ୟ ଓ କମଳା ରଙ୍ଗର ପ୍ଲାଷ୍ଟିକ୍ ଚଉକିର ଧାଡ଼ିଗୁଡ଼ିକ ସେମାନଙ୍କର ଶୂନ୍ୟଗର୍ଭ କୋଳଗୁଡ଼ିକ ମୁକୁଳା କରି ସ୍ଥିର ହୋଇ ଠିଆ ହୋଇ ରହିଥିଲେ । ସେହି ସମଗ୍ର ବିରାଟ ଅଞ୍ଚଳର ଏକମାତ୍ର ଅଧିବାସୀ ଥିଲା କ୍ଲାଇବ୍ ଓ ସେ ତା'ର ଅତିକାୟ କୃଷ୍ଣଭଲ୍ଲୁକକୁ ତଳେ ପକେଇ ଦେଇ ତଥାପି ଏକାଗ୍ରତାର ସହିତ ପିଙ୍ଗ୍ ପଙ୍ଗ୍ ବଲ୍ ଖେଳି ଚାଲିଥିଲା । ମିସେସ୍ କପାସିଆ ଲାଉଞ୍ଜକୁ ଆସି କ୍ଲାଇବ୍‌ର ହାତ ଧରିକହିଲେ, 'କମ୍, କୁଇକ୍ ।' କିନ୍ତୁ କ୍ଲାଇବ୍ ମୁହୂର୍ତ୍ତକ ପାଇଁ ନିଜକୁ ମୁକ୍ତ କରି ଭାଲୁଟାକୁ ନେଇ ଆସି ଦୌଡ଼ି ଦୌଡ଼ି ଯୋଗଦେଲା ମିସେସ୍ କପାସିଆଙ୍କ ସହିତ । ଲୀଳାର ମୁହଁରୁ ବାହାରିଗଲା, 'ହାଉ ସୁଇଟ୍' । ଶେଷଥର ପାଇଁ କୃତଜ୍ଞତାସୂଚକ ହାତ ହଲେଇ ହଲେଇ ମିସେସ୍ କପାସିଆ ସିକ୍ୟୁରିଟି ଅର୍ଗଳିକୁ ପଶିଲେ । ଉଜ୍ଜ୍ୱଳ ନିୟନ୍ ଆଲୁଅରେ ମିସେସ୍ କପାସିଆଙ୍କର ହାତର ପାପୁଲି ଦେଖାଯାଉଥିଲା ଯଥେଷ୍ଟ ଶୁଭ୍ର ଓ ସୁରୁଚିପୂର୍ଣ୍ଣ ।

ଲାଉଞ୍ଜର ବାରଣ୍ଡାରେ କିଛି ସମୟ ପାଇଁ ତଥାପି ଠିଆ ହୋଇ ରହିଥିଲେ ଅଭିଜିତ୍ ଓ ଲୀଳା । ମିସେସ୍ କପାସିଆ ଓ କ୍ଲାଇବ୍‌କୁ ସେମାନେ ସାହାଯ୍ୟ କରି ପାରିଥିବାରୁ ପ୍ରଚୁର ଆତ୍ମସନ୍ତୋଷ ଲାଭ କରୁଥିଲେ । କେତେବେଳେକେ ଅଭିଜିତ୍ କହିଲା, 'ତମେ ଲକ୍ଷ୍ୟ କରିଛ ଲୀଳା, କ୍ଲାଇବର୍ ଗାଲରେ ସାମାନ୍ୟ ତାମ୍ରବର୍ଣ୍ଣର ଆଭା କହି ଦଉଥିଲା ଯେ, କ୍ଲାଇବ୍‌ର ରକ୍ତରେ କିଛିଟା ଟ୍ରପିକ୍‌ର ରକ୍ତ ପ୍ରବାହିତ ।'

ଲୀଳା ଉତ୍ତର ଦେଇ କହିଲା, 'ଟ୍ରପିକ୍ ଅର୍ ନୋ ଟ୍ରପିକ୍ ହ୍ୱାଟ୍ ସୁଇଟ୍ ଚାଇଲଡ୍ ।' ଲୀଳର ହାତ ଅଭିଜିତ୍‌ର ହାତ ଉପରେ ସାମାନ୍ୟ ଉଷ୍ଣଚାପ ସୃଷ୍ଟି କରିଥିଲା ।

ସେମାନେ ଉଡ଼ାଜାହାଜ ଟେକ୍-ଅପ୍ ଦେଖିଯିବା ପାଇଁ ଅପେକ୍ଷା କରି ରହିଥିଲେ ।

ଏଇ ପ୍ଲେନ୍ ଇଞ୍ଜିନ୍‌ର କାନଫଟା ଶବ୍ଦ ଶୁଣାଯାଉଛି ।

ଗୋଟାଏ ସେକେଣ୍ଡ ଭିତରେ ଦେଖାଗଲା ଯେପରି ଗୋଟାଏ ଆଲୁମିନିୟମ୍‌ର କଣ୍ଢେଇ ଉଡ଼ାଜାହାଜ ଗୁଡ଼ିଏ ଆଲୋକ ବିନ୍ଦୁକୁ ଏକ ସରଳ ରେଖାରେ ରଖି ଉଠିଗଲା ଆକାଶକୁ ।

ଅଭିଜିତ୍ ଆଉ ଲୀଳା ଫେରିବାକୁ ଆରମ୍ଭ କଲେ ତାଙ୍କର ଗାଡ଼ି ପାଖକୁ । ଲାଉଞ୍ଜର ପାହାଚ ଠିକ୍ ଓହ୍ଲେଇବା ପୂର୍ବରୁ ଅଭିଜିତ୍ ଲୀଳାକୁ ଗୋଟାଏ ମିନିଟ୍ ପାଇଁ

ଏକସ୍କ୍ୟୁଜ୍ କରିବାକୁ କହି ଗଲା ଟଏଲେଟ୍‌କୁ । ଲୀଳା, ବୋଧହୁଏ ଗୋଟାଏ ମିନିଟ୍‌ରୁ ସାମାନ୍ୟ ଉର୍ଦ୍ଧ୍ୱ ହବ ସେଇ ପାହାଚ ପାଖରେ ଠିଆ ହେଇ ଗୋଟାଏ କ'ଣ ଟ୍ୟୁନ୍ ଅନ୍ୟମନସ୍କ ଭାବରେ ହମ୍ କରୁଥିଲା । ଅଭିଜିତ୍ ଟଏଲେଟ୍‌ରୁ ଫେରୁଥିଲା ପାଦ ଗଣି ଗଣି । ଲୀଳାର ପାଖାପାଖି ହବା ମାତ୍ରକେ ଲୀଳା କହିଲା, 'ଶୁଣ, ମୁଁ ତମ ପାଇଁ ଗୋଟାଏ ବଡ଼ ସରପ୍ରାଇଜ୍ ରଖିଛି ।'

ଠିକ୍ ଏହି ସମୟରେ ଗୋଟାଏ ବିକଟ ଚିତ୍କାର କରି ସାଇରେନ୍ ବାଜି ଉଠିଲା । ଏଆର୍‌ପୋର୍ଟ୍‌ର କର୍ମଚାରୀମାନେ ଏପଟ ସେପଟ ଦୌଡ଼ା ଦୌଡ଼ି କରିବାକୁ ଆରମ୍ଭ କରିଦେଲେ । ଅଭିଜିତ୍ ଓ ଲୀଳା ଦୌଡ଼ିଗଲେ ଲାଉଞ୍ଜର ବାରଣ୍ଡାକୁ ଘଟଣାଟାକୁ ବୁଝିବା ପାଇଁ । କିନ୍ତୁ ସେମାନଙ୍କୁ କାହାକୁ ପଚାରିବାକୁ ପଡ଼ି ନାହିଁ । ସେମାନେ ଦେଖିଲେ ଗୋଟାଏ ପ୍ଲେନ୍‌ର ବାଁ ପାଖ ଇଞ୍ଜିନ୍‌ଟାରେ ନିଆଁ ଲାଗିଯାଇଛି ମଝି ଆକାଶରେ ଓ ସେଇ ପ୍ଲେନ୍‌ଟା ରନ୍‌ୱେରେ ଓହ୍ଲେଇ ପଡ଼ିବାକୁ ଆପ୍ରାଣ ଚେଷ୍ଟା କରୁଛି । ଆଉ ମାତ୍ର ଗୋଟାଏ ମିନିଟ୍ ପରେ ଯେତେବେଳେ ପ୍ଲେନ୍‌ଟା ରନ୍‌ୱେ ଛୁଇଁଲା ସେତେବେଳକୁ ସମୁଦାୟ ଜାହାଜଟାକୁ ଲେଲିହାନ୍ ଅଗ୍ନିର ଜିଭ ବାରମ୍ବାର, ବାରମ୍ବାର ଏକ ଗଭୀର ଆତ୍ମସନ୍ତୋଷରେ ଯେପରି ଚାଟି ନଉଥିଲା ।

କାଳବିଳମ୍ବ ନକରି ଜ୍ୱଳନ୍ତ ଜାହାଜ ପାଖରେ ପହଞ୍ଚିଥିଲା ଫାୟାର୍ ବ୍ରିଗେଡ୍, ଆମ୍ବୁଲାନ୍‌ସ ଏବଂ ସିକ୍ୟୁରିଟି ଫୋର୍ସ ଜ୍ୱଳନ୍ତ ଜାହାଜଟାକୁ ବର୍ଦ୍ଧନ କରି ଦେଇଥିଲେ । କିନ୍ତୁ ହାୟ ! ସେହି ଅଭିଶପ୍ତ ଜାହାଜର ଜଣେ ହେଲେ ମଧ ଯାତ୍ରୀ ବଞ୍ଚିପାରି ନଥିଲେ । ଫାୟାର୍ ବ୍ରିଗେଡ୍ ନିଆ ଲିଭେଇ ସାରିବା ପରେ ଆମ୍ବୁଲାନ୍‌ସ ପରିଣତ ହେଇଥିଲା କେବଳ ଗୋଟାଏ ଲାସ୍‌ବୁହା ଗାଡ଼ିରେ ।

ଅନେକ ଲୋକଙ୍କ ପରି ଅଭିଜିତ୍ ଓ ଲୀଳା ଥିଲେ ଏ ଘଟଣାର ପ୍ରତ୍ୟକ୍ଷଦର୍ଶୀ । ନିଆଁ ଲିଭି ସାରିବା ପରେ ଏଆର୍‌ପୋର୍ଟ୍‌ର ବ୍ୟସ୍ତତା ବଢ଼ି ଯାଇଥିଲା ଦଶଗୁଣ । ଏଇ ଅବସରରେ ଜଣେ କିଏ ଏଆର୍ ଲାଇନ୍‌ସର କର୍ମଚାରୀ କ୍ଳାନ୍ତି ଓ ହତାଶାରେ ଆସି ଲାଉଞ୍ଜର ପାହାଚ ଉପରେ ବସିପଡ଼ି ନିଜ ମୁଣ୍ଡର ଟୋପିଟାକୁ କାଢ଼ିନେଲେ । ଅଭିଜିତ୍ ଓ ଲୀଳା ତାଙ୍କ ପାଖକୁ ଯାଇ ପଚାରିଲେ, "ଯଦି କିଛି ମନେ ନକରି ତାହାହେଲେ କହିପାରିବେ ଏ ଫ୍ଲାଇଟ୍ କେଉଁଠୁ ଆସୁଥିଲା ?" ଭଦ୍ରଲୋକ ମୁହଁ ଫେରେଇ ଚାହିଁଲେ ନାହିଁ; କେବଳ କହିଲେ, "ଏ'ଟା ଫ୍ଲାଇଟ୍ ଫୋର୍ ୱ୍ୟାନ୍ ଫାଇଭ୍, ଯାହା ମାତ୍ର ପାଞ୍ଚ ମିନିଟ୍ ପୂର୍ବରୁ ଏଆର୍ ପୋର୍ଟ ଛାଡ଼ିଥିଲା ହାଇଦ୍ରାବାଦ ଯିବା ପାଇଁ ।"

ଅଭିଜିତ୍ ମୁହଁରୁ ଯେପରି ସବୁ ରକ୍ତ ଏକାଥରକେ ଶୁଖିଗଲା । ସେ ଯେଉଁଠି ଠିଆ ହେଇଥିଲା ସେଇଠି ପାହାଚ ଉପରେ ବସି ପଡ଼ିଲା ଯନ୍ତ୍ରଚାଳିତ ପରି ଓ ଲୀଳା ମଧ ।

ଲୀଳା ଅଭିଜିତ୍‌ର ଅଣ୍ଟାକୁ ଗୁଡ଼େଇ ଧରି ତା'ର କୋଳରେ ମୁଣ୍ଡ ରଖି ବୋଧହୁଏ ଟିକିଏ କାନ୍ଦୁଥିଲା । ଅଭିଜିତ୍ ଶୂନ୍ୟ ଆକାଶକୁ ଅନେଇ ରହିଲା କିଛି ସମୟ, ତା'ପରେ ତା'ର କୋଟ୍ ପକେଟ୍‌ରୁ ଫ୍ଲାସ୍କଟା କାଢ଼ି ସବୁଯାକ ବ୍ରାଣ୍ଡି ନିଃଶେଷ କରି ଦେଇଥିଲା ଏକାଥରକେ । ଅଭିଜିତ୍ ଲୀଳାର ପିଠି ଉପରେ ଗୋଟାଏ ହାତରଖି ଆକାଶକୁ ଚାହିଁଲା । ଆକାଶରେ ଅସଂଖ୍ୟ ତାରା ମିଟ୍‌ମିଟ୍ କରୁଥିଲେ । ଅଭିଜିତ୍ ଗୋଟାଏ ସିଗାର୍ କାଢ଼ିନେଇ ସେଥିରେ ଅଗ୍ନି ସଂଯୋଗ କଲା । ଯଦି କେହି ସେଠି ଡିଆସିଲି କାଠିର ଆଲୁଅରେ ଦେଖି ପାରିଥାନ୍ତା, ତାହାହେଲେ ସେ ଦେଖିଥାଆନ୍ତା ଅଭିଜିତ୍‌ର ଆଖିପତା ମଧ୍ୟ ଦେଖାଯାଉଛି ଭିଜା ଭିଜା ।

କିଛି ସମୟ ଏମିତି ନିଶ୍ଚଳ ହେଇ ବସି ସାରିବା ପରେ ଅଭିଜିତ୍ ଥରେ ଲୀଳାକୁ ଉଠେଇ ଦେଇ ଯାଇଥିଲା ଏନ୍‌କ୍ୱାରୀ କାଉଣ୍ଟର୍‌ରେ ବୁଝିବା ପାଇଁ ଏବଂ ସେମାନେ ଅସମର୍ଥିତ ଗୁଜବକୁ ସମର୍ଥନ କରି କହିଥିଲେ ଯେ, ଜଣେ ହେଲେ କେହି ବଞ୍ଚିନାହାନ୍ତି–ପାଇଲଟ୍, କୋ-ପାଇଲଟ୍, ଷ୍ଟିଓ୍ୟାର୍ଡ଼, ଏଆର୍ ହୋଷ୍ଟେସ୍ ସମେତ ।

ତାଙ୍କ ନିଜ ଗାଡ଼ିର ପଛ ସିଟ୍‌ରେ ବସି କେତେବେଳେ ଅଭିଜିତ୍ ଓ ଲୀଳା ଘରକୁ ଫେରିଥିଲେ ସେ କଥା ସେମାନଙ୍କର ଖିଆଲ ନାହିଁ । ରାସ୍ତା ପ୍ରାୟ ସାତ କିଲୋମିଟର । ଲୀଳା ଅଭିଜିତ୍‌କୁ କୁଣ୍ଢେଇ ଧରିଥିଲା ଏକ ଅନାଗତ ଆତଙ୍କର ଆଶଙ୍କାରେ । କେତେବେଳେକେ ଲୀଳା ଅଭିଜିତ୍‌ର କୋଳ ଉପରେ ମୁଣ୍ଡରଖି ଶୋଇ ଯାଇଥିଲା ବୋଧହୁଏ । ସେମାନେ ଦୁଇଜଣ ଗୋଟାଏ ହେଲେ ଶବ୍ଦ ଉଚ୍ଚାରଣ କରିନାହାନ୍ତି ଘରେ ପହଞ୍ଚିବା ପର୍ଯ୍ୟନ୍ତ ।

ଅଭିଜିତ୍ ଲୀଳର ବାହୁ ଉପରେ ଗୋଟାଏ ହାତ ରଖି ସ୍ଥିର ହୋଇ ବସି ରହିଥିଲା, ଏବଂ ମନେ ମନେ ସମସ୍ତ ଘଟଣାକୁ ପୁନଃ ନିର୍ମାଣ କରିବାକୁ ଚାହୁଁଥିଲା ।

ମିସେସ୍ କପାସିଆ ଓ କ୍ଲାଇବ୍‌କୁ ଏୟାର୍ ଲାଇନ୍‌ସର ଫିଲ୍‌ଡ଼ ବସ୍ ନେଇ ଉଡ଼ାଜାହାଜ ପାଖରେ ପହଞ୍ଚେଇ ଦେବା ପରେ ସେମାନେ ଲ୍ୟାଡ଼ାର୍ ଦେଇ ଉଠିଥିବେ ଜାହାଜ ଭିତରକୁ ଏବଂ ଦୁଆର ମୁହଁରେ ଏଆର୍ ହୋଷ୍ଟେସ୍ ମୁହଁରେ ପାରମ୍ପରିକ ହସ ଟାଣି ନମସ୍କାର କରିଥିବ ଭାରତୀୟ ରୀତିରେ । ତା'ପରେ ଉଡ଼ାଜାହାଜ ଗଡ଼ି ଗଡ଼ି ଯାଇଥିବ ଟ୍ୟାକ୍‌ସି ପଏଣ୍ଟକୁ ଏବଂ ଏଆର୍ ହୋଷ୍ଟେସ୍ ତା'ର ଚିରାଚରିତ ରୀତିରେ ଆରମ୍ଭ କରିଥିବ... ''ଆପଣମାନଙ୍କ ସିଟ୍‌ବେଲ୍‌ଟ ବାନ୍ଧି ନିଅନ୍ତୁ ଓ ଦୟାକରି କେହି ସିଗାରେଟ୍ ଖାଆନ୍ତୁ ନାହିଁ ।'' ତା'ପରେ ଜାହାଜ ତା'ର ଗତି ବଢ଼େଇଥିବ ଏବଂ ଗତିର ଚୂଡ଼ାନ୍ତ ବିନ୍ଦୁରେ କୋ-ପାଇଲଟ୍ ଷ୍ଟିକ୍ ରିଲିଜ୍ କଲାପରେ ଜାହାଜ ଭୂଇଁ ଛାଡ଼ି ଉଠି ଯାଇଥିବ । ଅଭିଜିତ୍ ତ ନିଜ ଆଖିରେ ଦେଖିଛି ଜାହାଜ ଟେକ୍-ଅଫ୍

କଲାବେଳେ, ଠିକ୍ ଦେଖା ଯାଉଥିଲା ଯେମିତି ଗୋଟାଏ ପ୍ଲାଷ୍ଟିକ୍ ଖେଳନା ଉଠିଗଲା ଉପରକୁ । ତା'ର ଗୋଟାଏ ମିନିଟ୍ ପରେ ଏଆର୍ ହୋଷ୍ଟେସ୍ ଆରମ୍ଭ କରିଥିବ ଅକ୍ସିଜେନ୍ ଟ୍ୟୁବ୍ ବ୍ୟବହାର କରିବାର ପ୍ରଣାଳୀ ଏବଂ କହିଥିବ ଯେ, ଏହାର ପ୍ରୟୋଜନ ଯଦିଓ ପଡ଼ିବ ନାହିଁ ତଥାପି ଆନ୍ତର୍ଜାତିକ ନିୟମର ଖାତିରିରେ କେବଳ ଏହି ସତର୍କବାଣୀ କହିବାକୁ ପଡୁଛି ।

ତା'ପରେ ନାଁ, ଏଆର୍ ହୋଷ୍ଟେସ୍ ଦୁଇ ହାତରେ ପ୍ଲାଷ୍ଟିକ୍ ଟ୍ରେ ଧରି କଫି ବାଣ୍ଟିବାର ସମୟ ପାଇ ନଥିବ (କ୍ଲାଇବ୍ ଦୁଇ ଚାରିଟା ଟଫି ନେଇ ତା'ର ପକେଟ୍‌ରେ ରଖିଥାନ୍ତା ଅବଶିଷ୍ଟ ଯାତ୍ରାର ପାଥେୟ ପାଇଁ) । ଠିକ୍ ଏଇ ସମୟରେପାଇଲଟ୍‌ର ବୋର୍ଡ଼ରେ ବାରମ୍ବାର ଫାୟାର୍ ସିଗ୍‌ନାଲ୍ ଜଳି ଉଠିଥିବ ଏବଂ ଗ୍ରାଉଣ୍ଡ କଣ୍ଟ୍ରୋଲ୍‌କୁ ପାଇଲଟ୍ 'ମେ' ଡେ' 'ମେ' ଡେ' ଚିତ୍କାର କରିଥିବ । ଅସହାୟ ଗ୍ରାଉଣ୍ଡ କଣ୍ଟ୍ରୋଲ୍ ପାଇଲଟ୍‌କୁ ନିର୍ଦ୍ଦେଶ ଦେଇଥିବ ଓହ୍ଲେଇ ଆସିବାକୁ ଏବଂ କ୍ୟାପ୍‌ଟେନ୍ ଆପ୍ରାଣ ଚେଷ୍ଟା କରିଥିବ ଫେରେଇ ଆଣିବାକୁ ଜାହାଜକୁ ତଳକୁ ।

ପାସେଞ୍ଜର କ୍ୟାବିନ୍ ଭିତରେ ଅତି ସାଧାରଣ ଭାବରେ ଦେଖା ଦେଇଥିବ ସାମାନ୍ୟ ଧୂଆଁ, ଅଥବା ଟିକିଏ ପୋଡ଼ା ଗନ୍ଧ । ପାସେଞ୍ଜରମାନେ ନିଜ ନିଜ ଭିତରେ ଦୃଷ୍ଟି ବିନିମୟ କରିଥିବେ । କିନ୍ତୁ ବେଶି ସମୟ ନୁହେଁ, ସେମାନେ ମୁହୂର୍ତ୍ତକ ଭିତରେ ଉପଲବ୍ଧ କରିଥିବେ ଯେ ସେମାନେ ହୁଏ ତ ସତର ବା ଅଠର ହଜାର ଫୁଟ୍ ଉପରେ ଝୁଲି ରହିଛନ୍ତି ଗୋଟାଏ ଉଡ଼ାଜାହାଜରେ ଯେଉଁଥିରେ ନିଆଁ ଲାଗିଯାଇଛି ।

ସେମାନେ ସମସ୍ତେ ହଠାତ୍ ଅସହାୟ ହେଇ ଉଠିଥିବେ । ପ୍ରତ୍ୟେକ ଯାତ୍ରୀର ଚକ୍ଷୁ ଗୋଲକ ହେଇ ଉଠିଥିବ ଦୁଇଟି ମୂର୍ତ୍ତିମାନ ଆତଙ୍କର ଜ୍ୱଳନ୍ତ ବିନ୍ଦୁ । ପ୍ରବୃତ୍ତିକ୍ରମେ ମିସେସ୍ କପାସିଆ କୁଣ୍ଢେଇ ଧରିଥିବେ କ୍ଲାଇବ୍‌କୁ । କିନ୍ତୁ ଆଉ ବେଳ କାହିଁ ? ଉଡ଼ାଜାହାଜ ଭିତରର ତାତି ବୃଦ୍ଧି ପାଇ ଏକ ଅସହ୍ୟ ଅବସ୍ଥାକୁ ଆସିଲାଣି । ସବୁ ଯାତ୍ରୀମାନେ ଉତ୍ତାପରୁ ରକ୍ଷା ପାଇବାକୁ ଆସ୍ତେ ଆସ୍ତେ ଭିଡ଼ ବାନ୍ଧୁଛନ୍ତି କକ୍‌ପିଟ୍ କାଛରେ । କକ୍‌ପିଟ୍‌ର ସଂକୀର୍ଣ୍ଣ ପରିସରରେ ପ୍ରାୟ ଅଢ଼େଇଶହ ଲୋକଙ୍କର ଭିଡ଼ । ଉଡ଼ାଜାହାଜ ଗୋଟାଏ ଅତିକାୟ ପାଗଳା ଈଗଲ୍ ଚଢ଼େଇ ପରି ଗଁ ଗଁ ହେଇ ଦିଗ୍‌ବିଦିଗଶୂନ୍ୟ ହେଇ ଓହ୍ଲଉଚି ତଳକୁ । କିନ୍ତୁ କ୍ଲାଇବ୍ ? ସେ କେଉଁଠି ? କ୍ଲାଇବ୍ ହୁଏ ତ ଭିଡ଼ କରିଥିବା ଲୋକମାନଙ୍କର ଆଣ୍ଠୁ ତଳେ ଲୁଚି ଯାଇଥିବ କୁଆଡ଼େ । ବା' ହୁଏ ତ ସେ ଠିଆ ହେଇ ରହିଥିବ ତା'ର ମା'ର ନିର୍ଦ୍ଦେଶରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ କାସିବିଆଙ୍କା ପରି ।

...କମଳା ରଙ୍ଗର ନିଆଁ । ସମୁଦ୍ରର ଖାଲୁଆ ଖାଲୁଆ ଢେଉ ପରି ମାଡ଼ି ଆସୁଥିବ ଆଗକୁ ଆଗକୁ । ବୟସ୍କ ଲୋକମାନେ ସେମାନଙ୍କର ବାହୁ ଦେଇ ତାଙ୍କର ଆଖି

ଆଢୁଆଳ କରିବାର ଚେଷ୍ଟାରେ ବିଡ଼ମ୍ବିତ ହେଇ ବହୁ ବିଭିନ୍ନ ପ୍ରକାରର ଯନ୍ତ୍ରଣାର ଧ୍ୱନି ସୃଷ୍ଟି କରୁଥିବେ । ତା' ପରେ ଆରମ୍ଭ ହେଇଥିବ ଚିତ୍କାର । ଆଃ ! କକ୍‌ପିଟ୍‌ର କାଚଟା ଭାଙ୍ଗିଯିବ ପରା ! ତା'ପରେ ଅଢ଼େଇଶହ ଲୋକ ଅଜାଡ଼ି ହୋଇ ପଡ଼ିବେ ପାଇଲଟ୍ ଓ କୋ-ପାଇଲଟ୍ ଉପରେ । କିଏ ଜାଣେ ମିସେସ୍ କପାସିଆ କେଉଁଠି ? ବାଳ ପୋଡ଼ିଯିବାର ଫୁରୁକୁଟିଆ ଗନ୍ଧ ମିସେସ୍ କପାସିଆଙ୍କର ମହୁ ରଙ୍ଗର କେଶଗୁଚ୍ଛ କି ନାଁ ତା' କିଏ କହିପାରିବ ? ଲୋକମାନଙ୍କର ଚିତ୍କାର, ଜାହାଜର ଗଁ ଗାଁ ଶବ୍ଦ ଭିତରେ ବୋଧହୁଏ ତଥାପି କ୍ଲାଇବ୍ ସାମ୍ନା କରିଥିବ ଅବାରିତ ଅନଳକୁ । ତା'ପରେ ଗୋଟାଏ ସମବେତ ଚିତ୍କାର ଓ ତା' ସହିତ ତାଳରଖି ଜାହାଜଟା କଚାଡ଼ି ହେଇ ପଡ଼ିଚି ତଳେ କାହିଁ କେଉ ଉଚ୍ଚତାରୁ କିଏ ଜାଣେ ? କିନ୍ତୁ କ୍ଲାଇବ୍ ? କ୍ଲାଇବ୍‌ର କଳା ଭାଲୁ ? ତା'ର ପିଙ୍ଗ୍‌ପିଙ୍ଗ୍ ବ୍ୟାଟ୍ ଆଉ ବଲ୍ ?

ନିଜେ ତ ଅଭିଜିତ୍ ଦେଖିଛି କିପରି ଗୋଟାଏ ଜଳନ୍ତା ଲଣ୍ଠାତାରା ପରି ଓହ୍ଲେଇଥିଲା ଏହି ଅଭିଶପ୍ତ ଜାହାଜ । ତଳକୁ ଆସିଲା ପରେ ଅଭିଜିତ୍‌ର ମନେ ହେଇଥିଲା ଯେପରି ବୈଶ୍ୱାନରଙ୍କର କ୍ଷୁଧା ପ୍ରାୟ ନିର୍ବାଚିତ ହେଇ ସାରିଥିଲା । ତଥାପି ସିଏ ଯେପରି ପ୍ଲେଟର ଅବଶିଷ୍ଟ ଖାଦ୍ୟକୁ ଖାଇବାରେ ଲାଗିଥିଲେ ଚାଟିଚୁଟି, ପରମ ତୃପ୍ତିରେ ଖୁବ୍ ସାବଧାନରେ, ଯେପରି କୌଣସି ଖାଦ୍ୟ ନଷ୍ଟ ନହୁଏ ।

ଗାଡ଼ିର ଶବ୍ଦ ପରିବର୍ତ୍ତିତ ହେଲା, କାରଣ ଗାଡ଼ି ବର୍ତ୍ତମାନ ଚାଲୁଥିଲା ଅଭିଜିତ୍‌ର ସାମ୍ନା ଲନ୍‌କୁ ବୃତ୍ତାକାରରେ ବେଷ୍ଟିତ କରିଥିବା ମୋରମ୍ ଓ ପେବଲ୍ ବିଛା ରାସ୍ତା ଉପରେ । ଅଭିଜିତ୍‌ର ଦୃଶ୍ୟ-କକ୍ଷ ବାଧାପ୍ରାପ୍ତ ହେଲା । ସେ ଲୀଳାର ବାହୁରେ ମୃଦୁ ଚାପଦେଇ କହିଲା, 'ଲୀଳା, ଉଠ ଘର ହେଲା ।' ଲୀଳା ଉଠିଥିଲା ସ୍ୱପ୍ନୋତ୍ଥିତ ପରି । କିନ୍ତୁ ଅଭିଜିତ୍ ଯେ' ତା'ର ବାଁ ପକେଟ୍‌ରୁ ରୁମାଲ୍ କାଢ଼ି ଆଖି ପୋଛୁଥିଲା ଏ କଥା ଲୀଳାର ଦୃଷ୍ଟି ଏଡ଼େଇ ଯାଇ ନଥିଲା ।

ସେମାନେ ଉଭୟେ ଗାଡ଼ିରୁ ଓହ୍ଲେଇ ଘରକୁ ଗଲେ । ଅଭିଜିତ୍ ଲୀଳାକୁ ପ୍ରାୟ ବାହୁବେଷ୍ଟିତ କରି ନଉଥିଲା ଓ ମନେ ହଉଥିଲା ଲୀଳାର ଓଜନ ଯେପରି ଅନେକ ବଢ଼ିଯାଇଛି । ପୋର୍ଚ୍ଚ ତଳେ ଅଭିଜିତ୍ ଡ୍ରାଇଭରକୁ ଇଙ୍ଗିତ ଦେଇ ପାଖକୁ ଡାକିଥିଲା ଓ ବହୁ ଆୟାସ କରି ଗୋଟାଏ ହାତ ମୁକ୍ତି କରି ପକେଟରୁ ଗୋଟାଏ ଶହେ ଟଙ୍କିଆ ନୋଟ୍ କାଢ଼ି ଡ୍ରାଇଭର୍‌କୁ ବକ୍‌ସିସ୍ ଦେଇଥିଲା । ଡ୍ରାଇଭର୍ ଚିରାଚରିତ ଭଙ୍ଗୀରେ ସଲାମ କରି କହିଥିଲା; 'ସାବ୍, ବକ୍‌ସିସ୍‌କା ହୋଇ ବାତ୍ ନେହିଁ, ହର ଦଫେ ମିଲତା ହେ, ଲେକିନ୍ ଆଜ୍ ଆପ ବଚ୍ ଗିଆ, ୟେ ମେରେ ଲିଏ କ୍ରୋର୍ ରୁପିୟା କି ବକ୍‌ସିସ୍ ହେଁ ।'' ଅଭିଜିତ୍ ତଥାପି ବାହୁବେଷ୍ଟନ କରି ଲୀଳାକୁ ମାର୍ବଲର ପାଞ୍ଚଟା ପାହାଚ ଚଢ଼େଇ ନେଇଥିଲା ।

ଘର ଭିତରର ଆଲୁଅ ସବୁ ଏଠି ସେଠି କୋରିଡ଼ରରେ ଥିଲା ସ୍ତିମିତ । ପ୍ରତିଶୋଧ ନେବା ପରି ଭଙ୍ଗୀରେ ଅଭିଜିତ୍ ଘରର ସବୁଗୁଡ଼ାକ ସୁଇଚ୍ ଜଳେଇ ଜଳେଇ ଚାଲିଲା, ଯେମିତି ଏଇ ସ୍ତିମିତ ଆଲୋକ ତା'ର ସହ୍ୟ ହେଉ ନାହିଁ ମୋଟେ । ସେମାନେ ବେଡ୍ ରୁମ୍‌କୁ ପଶିଲେ । ଗଲାବେଳେ ସେମାନେ ବେଡ୍‌ରୁମ୍‌କୁ ଯେମିତି ଛାଡ଼ି ଯାଇଥିଲେ ଠିକ୍ ସେମିତି ଥିଲା । ବେଡ୍ ଟେବୁଲ୍ ପାଖରେ ଠିଆ ହେଇ ରହିଥିଲା ବ୍ରାଣ୍ଡିର ବୋତଲ ଓ ଆସ୍‌ଟ୍ରେରେ ଥିଲା ଅଧାଜଳା ଚୁରୁଟ୍ । ହୁଏତ ଖାଇବା କଥା ଚନ୍ତା କରି ଲୀନା ଫ୍ରିଜ୍ ଖୋଲିଥିଲା । ଫ୍ରିଜ୍‌ରେ ସବୁକିଛି ମହଜୁଦ୍ ଥିଲା—ଫଳ, ଚିଜ୍, ବଟର୍ ଏବଂ ସେରାମେଲ୍ କଷ୍ଟାର୍ଡ଼ (ଯାହା ଅଭିଜିତ୍‌ର ଅତ୍ୟନ୍ତ ପ୍ରିୟ ଓ ଯାହାକୁ ଲକ୍ଷ କରି ଅଭିଜିତ୍‌କୁ ଗୋଟାଏ ସରପ୍ରାଇଜ୍ ଦବ ବୋଲି କହିଥିଲା ଲୀନା) କିନ୍ତୁ ପର ମୁହୂର୍ତ୍ତରେ ଫ୍ରିଜ୍‌ଟାକୁ ପୁଣି ବନ୍ଦ କରି ଦେଇଥିଲା ସେ ।

ଅଭିଜିତ୍ ଗୋଟାଏ ଗ୍ଲାସ୍‌ରେ ଟିକିଏ ବ୍ରାଣ୍ଡି ଢାଳି ଡାକିଲେ, 'ଟିକିଏ ବରଫ ଦିଅ ଲୀନା ।' ଲୀନା ବରଫର ଟ୍ରେ କାଢ଼ିଲା ଫ୍ରିଜ୍‌ରୁ ଓ ଯେତେବେଳେ କିଛି କ୍ୟୁବ୍ ଆଣି ଅଭିଜିତ୍ ପାଖରେ ପହଞ୍ଚିଲା ଅଭିଜିତ୍ କହିଲା, 'ଆଜି ଡ୍ରିଙ୍କ ପାଇଁ ନହେଲେ ମଧ ମୋର ଡେଡ୍‌ବଡ଼ିକୁ ପ୍ରିଜର୍ଭ କରିବାକୁ ହୁଏତ ବରଫ ଦରକାର ହେଇ ଥାଆନ୍ତା ।' ଲୀନା କହିଲା, 'ଆଜି ଆଉ ଏ ରସିକତା କର ନାହିଁ ଅଭିଜିତ୍—ମୁଁ ସତରେ କ୍ଲାନ୍ତ ।'

ଅଭିଜିତ୍ ସାମାନ୍ୟ ବ୍ରାଣ୍ଡି ସିପ୍ କରୁ କରୁ ଯେତେବେଳେ ସିଲିଂଫ୍ୟାନ୍‌କୁ ଚାହିଁ ରହିଥିଲା ଏକ ଭାବଲେଶ ଶୂନ୍ୟ ଆଖିରେ ସେତେବେଳେ ଆସି ଲୀନା ପାଖ ଖଟରେ ଶୋଇ ପଡ଼ିଥିଲା । ସେମାନେ ଉଭୟେ ସଂପୂର୍ଣ୍ଣ ବିସ୍ମୃତ ହେଇ ଯାଇଥିଲେ ଯେ ମାତ୍ର କିଛି ସମୟ ତଳେ ଗୋଟାଏ 'ଅନ୍‌ସ୍ନୋକନ୍' ପରଫ୍ୟୁମ୍ ଶିଶି ଭାଙ୍ଗିଯାଇ ସେମାନଙ୍କର ସ୍ନାୟୁରେ ରକ୍ତ ପ୍ରବାହ କ୍ଷିପ୍ର କରି ତୋଳିଥିଲା । ଲୀନା ଚୁପ୍‌ଚୁପ୍ ଶୋଇଚି । କିଛି ସମୟ ପରେ ଅଭିଜିତ୍ ବ୍ରାଣ୍ଡିର ଗ୍ଲାସ୍‌ଟାକୁ ନିଃଶେଷ କରିଦେଇ ବେଡ୍‌ରୁମ୍‌ର ଆଲୁଅ ଲିଭେଇ ଦେଇ ଶୋଇବାକୁ ଚେଷ୍ଟାକଲା ।

ଅଭିଜିତ୍ ଓ ଲୀନା କେତେବେଳେ ଶୋଇ ଯାଇଥିଲେ ସେମାନେ ଜାଣନ୍ତି ନାହିଁ । ହଠାତ୍ ରାତିରେ ଅଭିଜିତ୍‌ର ନିଦ୍ରା ବ୍ୟାହତ ହେଇଥିଲା । ବେଡ୍ ଲ୍ୟାମ୍ପ୍‌ଟାକୁ ଜଳେଇ ଦେଇ ଅଭିଜିତ୍ ଦେଖିଲା ଯେ, ଲୀନା ତାର ଅନେକ ଆଗରୁ ଉଠି ବସି ଝରକା ଦେଇ ଶୂନ୍ୟ ଆକାଶକୁ ଅନେଇ ବସିଛି । ଅଭିଜିତ୍ ଲୀନାର ଦୁଇ ହାତକୁ ଚାପିଧରି କହିଲା, ''ମୁଁ ଜାଣେ ତମେ ଏତେ ସମୟଧରି କ୍ଲାଇବ୍ କଥା ଭାବୁଛ ।'' ଲୀନା କହିଲା, ''ହଁ, ତମର ଜୀବନ ବଞ୍ଚାଇବାକୁ ଯାଇ ଯେ ମିସେସ୍ କପାସିଆ ଆଉ କ୍ଲାଇବ୍‌କୁ ବଳି ପଡ଼ିବାକୁ ପଡ଼ିବ ଏ କଥାଟାକୁ ମୁଁ ହଜମ କରିପାରୁ ନାହିଁ ।''

ଅଭିଜିତ୍ କହିଲା, ''ଲୀଳା ମୁଁ ବି ଅନେକ ସମୟ ଧରି ସେଇ କଥା ଭାବିଛି, କିନ୍ତୁ ମୁଁ ତମକୁ ଆଜି ଗୋଟାଏ ଅଦ୍‌ଭୁତ ଗପ କହିବି, କିନ୍ତୁ ତମେ ଆଗ ପ୍ରମିସ୍ କର– ବର୍ତ୍ତମାନ କିଛି କଫି ତିଆରି କରିବ ।''

ଲୀଳା କଫି ତିଆରି କରିବାକୁ ଉଠିଗଲା ଏବଂ ଅବିଳମ୍ବେ ଦୁଇ କପ୍ ବାମ୍ପ ଉଠୁଥିବା କଫି ନେଇ ଆସି ହାଜର ହେଲା ଅଭିଜିତ୍ ପାଖରେ । ଦୁଇଜଣ ଯାକ ଗରମ ଗରମ କଫିର କପ୍ ଓଠ ପାଖକୁ ନେଲେ । ଓଠରେ ଉଷ୍ଣ କଫିର ସ୍ପର୍ଶ ସେମାନଙ୍କୁ ଯେପରି ବାସ୍ତବ ଜୀବନକୁ ଫେରେଇ ଆଣିଲା, କେଉଁ ଏକ ଅପହଞ୍ଚ ଜନଶୂନ୍ୟ ଦ୍ୱୀପରୁ । ଅଭିଜିତ୍ ତା'ର ପ୍ରତିଶ୍ରୁତି ଗପ ଆରମ୍ଭ କଲା :

ଆରବ ଦେଶରେ ସାମୁରାହି ବୋଲି ଗୋଟିଏ ସହର ଅଛି । ସେହି ସହରର ପ୍ରାୟ ଦୁଇ କିଲୋମିଟର ଦୂରରେ ଅନ୍ୟ ଏକ ସହରରେ ଜଣେ ବଣିକ ବାସ କରୁଥିଲେ । ଦିନେ ପ୍ରାୟ ଦିନ ଦୁଇଟାବେଳେ ତାଙ୍କର ଭୃତ୍ୟ ବଜାରରୁ ବେଶ୍ ଭୟଭୀତ ହେଇ ଫେରିଆସି କହିଲା ଯେ ସେ ଆଉ ଗୋଟିଏ ମୁହୂର୍ତ୍ତ ସେଠି ରହିବାକୁ ଚାହେଁ ନାହିଁ ଓ ତା'ର ଦାଦା ପାଖକୁ ସାମୁରାହି ଚାଲିଯିବାକୁ ଚାହେଁ । ବଣିକଟି ଏହାର କାରଣ ଜାଣିବାକୁ ଚାହିଁବାରୁ ଭୃତ୍ୟଟି କହିଲା ଯେ ସେ ଆଜି ବଜାରର ଗୋଟିଏ କ'ଣରେ ମୃତ୍ୟୁକୁ ଠିଆ ହେଇ ରହିଥିବାର ଦେଖିଲା ଓ ମୃତ୍ୟୁ ତାକୁ ଚାହିଁ ହସିଲା ମଧ୍ୟ । ଏହା କହି ଭୃତ୍ୟଟି ଚାକିରିରୁ ଇସ୍ତଫା ଦେଇ ସେହି ମୁହୂର୍ତ୍ତରେ ସାମୁରାହି ଚାଲିଗଲା ।

ଏହା ପରେ ପରେ କଥାର ସତ୍ୟାସତ୍ୟ ଜାଣିବା ପାଇଁ ବଣିକ ବି ନିଜେ ବଜାରକୁ ଯାଇଥିଲେ ଓ ଭୃତ୍ୟ କହିବା ଅନୁଯାୟୀ ସତକୁ ସତ ମୃତ୍ୟୁକୁ ବଜାରର ଗୋଟିଏ କ'ଣରେ ଠିଆହୋଇ ରହିଥିବାର ଦେଖିଲେ । ପ୍ରଚୁର ସାହସ ସଂଚୟ କରି ମୃତ୍ୟୁ ନିକଟକୁ ଯାଇ ପ୍ରଶ୍ନ କଲେ, ''ମହାଭାଗ, ବଜାରରେ ବହୁଲୋକ ଚଳାଚଳ କରୁଛନ୍ତି, କିନ୍ତୁ ଆପଣ ମୋରି ଭୃତ୍ୟଟିକୁ ଦେଖି ହସିଲେ କାହିଁକି ? ଫଳରେ ଭୃତ୍ୟଟି ମୋତେ ପରିତ୍ୟାଗ କରିଛି ।''

ମୃତ୍ୟୁ ଉତ୍ତର ଦେଲେ, 'ମହାଶୟ, ସେ ଆପଣଙ୍କର ଭୃତ୍ୟ ତାହା ମୁଁ ଜାଣିନାହିଁ, କିନ୍ତୁ ସେହି ଲୋକଟି ସହିତ ମୋ'ର ଆଜି ସାକ୍ଷାତକାର ଅଛି ସାମୁରାହିରେ ସନ୍ଧ୍ୟା ଛ'ଟାରେ, ତେଣୁ ନିର୍ଦ୍ଧାରିତ ସମୟର ମାତ୍ର ଚାରି ଘଣ୍ଟା ପୂର୍ବରୁ ସେ ଏ ସହରରେ କ'ଣ କରୁଛି ବୋଲି ଭାବି ବୋଧହୁଏ ଅନିଚ୍ଛାକୃତ ଭାବରେ ହୁଏ ତ ହସି ଦେଇଥିବି ।'

ଅଭିଜିତ୍‌ର ଗଳ୍ପ ଶେଷ ହେଲା । ଲୀଳା କେବଳ ଗବାକ୍ଷ ଦେଇ ଆକାଶକୁ ଚାହିଁ ରହିଲା । ରାତି କେତେ ହବ ଜଣା ନାହିଁ । ଅଭିଜିତ୍ ମଧ୍ୟ ଆକାଶକୁ ଚାହିଁଲା । ଆକାଶରେ ଝୁଲି ରହିଥିଲା ଏକ ବିକଳ ଅସ୍ତଗାମୀ ଚନ୍ଦ୍ର, କ୍ଲାଇବ୍‌ର ମୁହଁପରି ତୋଫା ଗୋରା, ପୁଣି ସେଥିରେ ମିଶି ରହିଛି ସାମାନ୍ୟ ତମ୍ବାଟିଆ ରଙ୍ଗ, ଟ୍ରପିକ୍‌ର ଅବଦାନ ।

# କିଂଶୁକର ଅଭିସାର

ଘରଟାର ଅବସ୍ଥାନ ବେଶ୍ ଗୋଟାଏ ଛକ ଜାଗାରେ, ଯାହାକୁ କୁହାଯାଏ ମିଲିଅନ୍-ଡଲାର୍-ସାଇଟ୍ । ଯେମିତି ବିଲାତ୍‌ର ପିକାଡ଼େଲି ସ୍କୋୟାର୍, ମସ୍କୋର ରେଡ୍ ସ୍କୋୟାର୍ ନ ହେଲେ ପ୍ୟାରିସ୍‌ର ସାଁ ଆଲିଜେ, ତଥାପି ମଧ୍ୟ ଘରଟା ସାଧାରଣତଃ ନଜରକୁ ଆସେ ନାହିଁ । କାରଣ ଘରଟା ମୋଟେ ଆଠଫୁଟରେ ଛଅଫୁଟ, ଆଉ ଉଚ୍ଚତା ତୁଳି ପର୍ଯ୍ୟନ୍ତ ମାପିଲେ ଆଠଫୁଟ ହୋଇପାରେ । ଘରର ଛାତ ତୁଳି ପାଖରୁ ଦି'ପଟକୁ ନୁଆଁଣିଆ ହେଇ ଆସି ମିଶିଚି ତିନି ତିନି ଫୁଟର ମାଟି କାନ୍ଥିନୀ ଉପରେ । ପାଖକୁ ଲାଗି ଟ୍ରାଫିକ୍ ଆଇଲାଣ୍ଡ ଉପରେ ଧଳା ୟୁନିଫର୍ମ ଆଣ୍ଟି ଆଉ ହେଲ୍‌ମେଟ୍ ପିନ୍ଧି ପୁଲିସ୍ ଠିଆ ହୋଇ ରାଜପଥ ଓ ଜନପଥର ଛକ ଉପରେ ଟ୍ରାଫିକ୍ ନିୟନ୍ତ୍ରଣ କରେ । ଅସୁମାରୀ ଗାଡ଼ି, ରିକ୍‌ସା, ସ୍କୁଟର୍‌ର ଅବାରିତ ସ୍ରୋତ ବହିଯାଏ । ତା' ମଝିରେ ମଝିରେ କେତେବେଳେ କେତେବେଳେ ଖଣ୍ଡେ ଖଣ୍ଡେ ଇମ୍ପାଲା ନ ହେଲେ ଜାଗୁଆର୍ ଗାଡ଼ି ଟ୍ରାଫିକ୍‌ର ବହମାନ ହାରର ମଧ୍ୟମଣି ପରି ଝଟକି ଉଠେ । ସେଠି ଚାରିପଟେ ବଡ଼ ବଡ଼ ହୋର୍ଡ଼ିଙ୍ଗରେ ବିଜ୍ଞାପନର ବାହାର । କେଉଁ ମିଲ୍‌ର ଶାଢ଼ୀ, କାହାର ରିଫ୍ରିଜରେଟର୍, କାହାର ପଙ୍ଖା ନ ହେଲେ କାହାର ସୁବାସିତ ସାବୁନ୍ । ପ୍ରତ୍ୟେକଟି ବିଜ୍ଞାପିତ ବସ୍ତୁକୁ ଅତି ସନ୍ତର୍ପଣରେ ଆଲିଙ୍ଗନ କରି ରଖିଛନ୍ତି ଖୁବ୍ ସୁନ୍ଦରୀ ସୁନ୍ଦରୀ ତରୁଣୀମାନେ । ସେମାନଙ୍କର ଭଙ୍ଗୀ ଲୀଳାୟିତ, ସେମାନଙ୍କର ଦୃଷ୍ଟିରେ କେଉଁ ସ୍ୱପ୍ନପୁରୀ ଓ ସେମାନଙ୍କର ଅଙ୍ଗବାସ ଆଲୁଳାୟିତ, । ଟିକିଏ ଜୋର୍‌ରେ ପବନ ବହିଲେ ସେମାନେ ଖସିପଡ଼ି ତରୁଣୀଟିର ନଗ୍ନ ସବୁଜ ଶରୀର ଲତାଟିକୁ ପ୍ରକାଶ କରିବା ପାଇଁ ଉନ୍ମୁଖ ।

ହଠାତ୍ କାନରେ ପଡ଼େ ନାହିଁ, କିନ୍ତୁ କେହି ଶୁଣିବାକୁ ଇଚ୍ଛା କଲେ ଶୁଣିପାରିବ ଯେ ସେଠାରେ ବହୁ ବିଭିନ୍ନ ଶବ୍ଦ ତରଙ୍ଗର ଘାତ ପ୍ରତିଘାତ ଏକ ବିଚିତ୍ର ସିମ୍ଫୋନୀ ସୃଷ୍ଟି କରେ, ଅଥଚ ହଠାତ୍ କାନରେ ପଡ଼େନା । ରାତି ଏଗାରଟା ପରେ ହୁଏ ତ ଏହି ଚିର-ଶବ୍ଦାୟମାନ ବାୟୁମଣ୍ଡଳ ଶାନ୍ତ ହୁଏ । ସେଠିକାର ସେହି ଅଣଓସାରିଆ ଘରର ଛାତରେ ରହିଥାଏ ବହୁ ବିଚିତ୍ର ଦ୍ରବ୍ୟ ଓ ବର୍ଣ୍ଣର ଏକ ମୋଜାଇକ୍ । କୋଲ୍‌ଟାର୍, ଟିଣ, ଛିଣ୍ଡା ଟାର୍‌ପୋଲିନ୍, ଭଙ୍ଗା ଆକ୍‌ବେଷ୍ଟସ୍,-ଟିଣର ଟୁକୁରା ଆଉ ଠାଏ ଠାଏ ଅଖା ଦେଇ ତାଳିପକା ଛାତ । ସେ ଘରର ଇଞ୍ଜିନିୟରିଙ୍ଗ କୌଶଳ କେବଳ ସେଇ ଘରର

ଅଧିବାସୀମାନଙ୍କୁ ଜଣା । ତା'ର କୌଣସି ଫର୍ମୁଲା ନାହିଁ । ଯେ କୌଣସି ପରିତ୍ୟକ୍ତ ବସ୍ତୁ ଗୃହନିର୍ମାଣ ଉପକରଣ ହେଇପାରେ । ସେ ଘରର ମରାମତି ମଧ୍ୟ ଚାଲିଥାଏ ଅବିରତ । ଖରାଦିନେ ମୁକ୍ତବାୟୁ ପାଇଁ ଛାତ ଖୋଲି ଦିଆଯାଇପାରେ ଏବଂ ଶୀତଦିନେ ବା ବର୍ଷା ଦିନେ ତାକୁ ଇଚ୍ଛାମତେ ନିବୁଜ କରି ଦିଆଯାଇପାରେ ।

ସେଇଠି ଲକ୍ଷ୍ମୀର ଜନ୍ମ । ଏଇ ପରିବେଶରେ ଜନ୍ମ ହେଇଥିବା ସନ୍ତାନର ନାମ ଲକ୍ଷ୍ମୀ ରଖିବା ଯେ ଏକ ଘୋର ବିଡ଼ମ୍ବନା, ଏ କଥା ବୋଧହୁଏ ଲକ୍ଷ୍ମୀର ବାପମାଆଙ୍କୁ ଗୋଚର ନଥିଲା । ଲକ୍ଷ୍ମୀର ଜଣେ ବଡ଼ଭାଇ ଥିଲା, ଏକଥା ସିଏ କଦବା କ୍ୱଚିତ୍ ତା'ର ବାପମାଆଙ୍କ ଠାରୁ କୌଣସି ଉପଲକ୍ଷ୍ୟରେ ଶୁଣିବାକୁ ପାଇଥାଏ । କିନ୍ତୁ ସେକଥା ଲକ୍ଷ୍ମୀର ହେତୁ ନାହିଁ ଏବଂ ସେଇ ବଡ଼ଭାଇ ବୋଲି ବ୍ୟକ୍ତିଟି ଯେ କେଉଁଆଡ଼େ ଗଲା, ସେ ସମ୍ପର୍କରେ ମଧ୍ୟ ଲକ୍ଷ୍ମୀର ବଂଶ ଇତିହାସ ସଂପୂର୍ଣ୍ଣ ନୀରବ, ତଥାପି ସାମାନ୍ୟ ଆଭାସ ମିଳେ ଯେ ସିଏ ଅକାଳ ମୃତ୍ୟୁବରଣ କରିଥିଲା ।

ଲକ୍ଷ୍ମୀ ଟିକିଏ ବଡ଼ ହେଇଯିବା ପରେ ତା'ର ପ୍ରଚୁର ଖେଳନା ଥିଲା । ପରିତ୍ୟକ୍ତ ହର୍‌ରଙ୍ଗୀ ସିଗାରେଟ୍ ପ୍ୟାକେଟ୍, ଖାଲି ଦିଆସିଲି ଡବାର ରେଳଗାଡ଼ି, ଯୋତାରେ ପିଟା ଯାଉଥିବା ପେରକ୍ କଣ୍ଟା, ଲୁହାପାତିଆ, ବ୍ଲେଡ୍, ପେନ୍‌ସିଲିନ୍ ଇଞ୍ଜେକ୍‌ସନ୍ ଶିଶି, ଏମିତି କେତେ କଅଣ । ସେସବୁ ଜିନିଷର ଏକ ସଂପୂର୍ଣ୍ଣ ତାଲିକା ଦବା ସମ୍ଭବ ନୁହେଁ । ପ୍ରତିଦିନ ଖେଳନା ଆମଦାନୀ ହୁଏ, ଆଉ ପ୍ରତିଦିନ ମଧ୍ୟ କିଛି କିଛି କୁଆଡ଼େ ହଜିଯାଏ, ଭାଙ୍ଗିଯାଏ ନ ହେଲେ ମିଶିଯାଏ ମାଟିରେ । କିନ୍ତୁ ତା'ର ସବୁଠାରୁ ବଡ଼ ଖେଳନା ଥିଲା ଗୋଟାଏ ପଣସ ଗଛ, ଯିଏ ତା'ର ଘରର ମଥାନ ଉପରକୁ ଉଠିଯାଇ ବୁଦ୍ଧଦେବଙ୍କ ପରି ଏକ ସ୍ଥିର, ନିଶ୍ଚଳ ଅଭୟ ମୁଦ୍ରାରେ ଠିଆହେଇ ରହିଥାଏ ।

ଏଇ ଗଛର ଗଣ୍ଡିକୁ କେତେଥର ଗୋଇଠା ଚାପୁଡ଼ା ମାରିଛି ଲକ୍ଷ୍ମୀ, ପୁଣି କେବେ ଗୋଟାଏ ଧୂ' ଧୂ' ଖରାବେଳେ ଗଛର ଗଣ୍ଡିକୁ ଆଉଜି ରହି ଅନ୍ୟମନସ୍କ ହେଇ ଚାହିଁ ରହିଛି ଲକ୍ଷ୍ମୀ । ଗଛକୁ ଆଉଜି ରହି କାନ୍ଦି କାନ୍ଦି ରାହା ଧରିଛି । ପୁଣି ନିଜେ ନିଜର ଆଖିରୁ ଲୁହ ପୋଛିଛି । ବୁଢ଼ା ଆଙ୍ଗୁଠି ଆଉ ବିଶି ଆଙ୍ଗୁଠିରେ ନାକରୁ ସିଙ୍ଘାଣି କାଢ଼ି ଗଛର ଗଣ୍ଡିରେ ପୋଛିଛି । ଗଛର କଞ୍ଚା ପତରରେ ଦନା କରିଛି, ଆଉ ଖଲି ସିଇଁଛି । କିନ୍ତୁ ଶୁଖିଲା ପତ୍ରରେ ତା'ର ଭାଗ ନାହିଁ । କାରଣ ତା'କୁ ମାଆ ନବ ଜାଳ କରିବା ପାଇଁ ।

ଲକ୍ଷ୍ମୀର ବାପା ତା' ପିଲାଦିନରୁଇ ବୁଢ଼ା, ସବୁଦିନ ତା' ଗାଲରୁ ବ୍ରୁସ୍ ପରି ଧଳା ଧଳା ଦାଢ଼ି ଗୁଡ଼ାକ ବାହାରି ପଡ଼ିଥାଆନ୍ତି । ସେଥିପାଇଁ ଲକ୍ଷ୍ମୀ କେବେ ତା' ବାପା ପାଖକୁ ଗେଲ ହବା ପାଇଁ ଯାଏ ନାହିଁ । ଦାଢ଼ିଗୁଡ଼ାକ ପିନ୍ କଣ୍ଟା ପରି ଲକ୍ଷ୍ମୀର ପୁଟ୍‌କା

ଗାଲରେ ଫୋଡ଼ି ହେଇଯାଏ । ତା'ଛଡ଼ା ସବୁବେଳେ ପିକା ଟାଣି ଟାଣି ବାପ ଓଠଟା ଖଣ୍ଡେ ଦରପୋଡ଼ା କାଠ ପରି କାଳିଆ ଆଉ ଶୁଖିଲା । ଶୀତ ଦିନେ ତା'ର ଓଠସବୁ ସୋରା ସୋରା ହେଇ ଫାଟିଯାଇ ଆଁ କରି କେମିତି ବିକୃତ ଦେଖାଯାଏ । ଖରାକୁ ପିଠି ଦେଖେଇ କୁଜା ହେଇ ବସି ବସି ଖାଲି ବାଉଁଶ ପାତିଆ କାଢୁଥାଏ ଆଉ କାଟୁଥାଏ । ହାତର ସେତିକି ହଲ୍‌ଚଲ୍ ନ ଥିଲେ ଦୂରରୁ ଯେ କେହି ଭାବନ୍ତା କାଳିଆ ପଥର ଖଣ୍ଡେ କୋ' କାକୁ ବୋଁଧହୁଏ ପଡ଼ିରହିଚି । କିନ୍ତୁ ତା' ମାଆ ଚଟ୍‌ପଟ୍ । ନାକରେ ଗୋଟାଏ ପିତଳ ଫାଶିଆ କଷଟି ପଥର ଉପରେ ସୁନା ପରି ଚକ୍‌ଚକ୍ କରୁଥାଏ । ଗୋଡ଼ ଲମ୍ବେଇ ଦେଇ ଦି' ହାତରେ ବାଉଁଶ ପାତିଆ ଧରି ବୁଣି ଚାଲିଥାଏ ବେତା, ବାଉଁଶିଆ, ଭୋଗେଇ, କେତେ କଅଣ, ଯେମିତି ଗପ କରୁ କରୁ ଅଭିଜାତ ଘରର ଝିଅବୋହୂମାନେ ଉଲ୍ ବୁଣି ଚାଲିଥାଆନ୍ତି ଚଟ୍‌ପଟ୍—ଚଟ୍‌ପଟ୍ ।

ତିଆରି ମାଲ୍ ଚାହୁଁ ଚାହୁଁ ଲକ୍ଷ୍ମୀର ଅଗଣାରେ ଭର୍ତ୍ତି ହୋଇଯାଏ । ଲକ୍ଷ୍ମୀର ଅଗଣା ତ ଛୋଟ ନୁହଁ, ସେ'ଟା ଖୁବ ବଡ଼, ଗୋଟାଏ ବିରାଟ ପଡ଼ିଆ । ସାମ୍ନାର ରାଜଧାନୀର ଡ୍ରେନ୍ । ପଚାଶ ଷାଠିଏ ଫୁଟ୍ ପଛରେ ବାବୁମାନଙ୍କର ଟାଇପ୍ ଫୋର୍ କ୍ୱାର୍ଟର, ଆଉ ଦି' କରରେ ଗଳିରାସ୍ତା । ତିଆରି ମାଲ୍ ବେପାରୀମାନେ କିଣି ନିଅନ୍ତି । କିନ୍ତୁ କେବେ କେବେ ବାବୁମାନେ ନିଜେ ଚାଲିଆସନ୍ତି କିଣିବା ପାଇଁ । ଆଲୁଆନ୍ ଘୋଡ଼ି ହେଇ ଚଟିରୁ ଗୋଡ଼ କାଢ଼ି, ଗୋଡ଼ର ବୁଢ଼ାଆଙ୍ଗୁଠିରେ ବାଉଁଶିଆଟାକୁ ବୁଲେଇ କରେଇ ଏପଟ ସେପଟ କରି ଦେଖୁଥାଆନ୍ତି, ଆଉ ଅନ୍ୟମନସ୍କ ଭାବରେ ଦାନ୍ତ ଖୁଣ୍ଟୁ ଖୁଣ୍ଟୁ ଦରଦାମ ବି କରୁଥାଆନ୍ତି । ଲକ୍ଷ୍ମୀ ଯେତେବେଳେ ବଡ଼ ହେଲା, ଏଇ ଗୋଡ଼ରେ କୁଲା, ବାଉଁଶିଆକୁ ବାବୁମାନେ ପରୀକ୍ଷା କରିବା କଥାଟା, ସେ ମୋଟେ ସହ୍ୟ କରିପାରେ ନାହିଁ । କିନ୍ତୁ ତା'ର ବା ଉପାୟ କଅଣ ? କେମିତି ଗୋଟାଏ କଅଣ ହେଇ ସେମାନେ ତ ହେଇଯାଇଛନ୍ତି ବାବୁ ! ଆଉ ଥରେ ବାବୁ ହେଲେ ସେମାନଙ୍କୁ ବା କଅଣ କରିହବ ?

ତା'ର ମାଆ ଏଇ ବାବୁଗୁଡ଼ାଙ୍କୁ ବିଶେଷ କିଛି ସମୀହ କରେ ନାହିଁ । ସିଏ ତା'ର ବୁଣୁଥାଏ, ଦର ଫୁଙ୍ଗୁଳା ଛାତିରୁ ଦୁଇଟି ଶୁଖିଲା ଥନ ତଳକୁ ଓହଳି ପଡ଼ିଥାଏ । କେତେବେଳେ କେମିତି ବୁଣୁବୁଣୁ ଝିଙ୍ଗାସିକରି କଥା କହିଦେଲେ ନାକର ଫାଶିଆଟା ହଲିଯାଏ, ଆଉ ଓହଳି ଆସିଥିବା ଥନ ଦି'ଟି ମଧ ଟିକିଏ ଚହଲିଯାଇ ପୁଣି ସ୍ଥିର ହୋଇଯାଆନ୍ତି ।

ଏଇ ଥିଲା ଲକ୍ଷ୍ମୀର ଜୀବନ । କିଣିବା ବେପୋରୀ କାଁ ଭାଁ ଜଣେ ଦି' ଜଣ ବାବୁ, ଆଉ ବାଉଁଶ ବିକିବା କୁମୁଟି ବେପାରୀ । ତା'ର ଘର ଚାରିପଟେ ନିତିପ୍ରତି ବୁଲୁଥିବା ଲକ୍ଷ ଲକ୍ଷ ଜନସ୍ରୋତରୁ ଏଇ କେଇ ଜଣ ମାତ୍ର ତା'ର ସଂସାର । କିନ୍ତୁ ସେଦିନ ତା'ର ସଂସାରକୁ ଏକ ଅଭିନବ ଆଲୋକରେ ଉଜ୍ଜ୍ୱଳ କରି ଆସିଥିଲା ବୁଲା, ଗୋଟିଏ କୁନି

କୁକୁରଛୁଆ । କିଛି ଦୂରରେ ଗୋଟାଏ ବାଡ଼ କରରେ ଗାଡ଼ କରି କୋ' ଗୋଟାଏ ବୁଲା କୁତୀ ଛୁଆ ଦେଇଥିଲା । ଲକ୍ଷ୍ମୀ ସେମାନଙ୍କୁ ଦିନେ ଅକସ୍ମାତ ଆବିଷ୍କାର କରିଥିଲା । କାଳିଆ ଧୂସରା, ଛଇଛଇକା, ଛୋଟିଆ ଛୋଟିଆ ଘୁଷୁରୀ ପରି ଇଏ ତାକୁ ସିଏ ତାକୁ ଥୋମଣିରେ ଡିହ ମାରୁଥାଆନ୍ତି । ଲକ୍ଷ୍ମୀର ଇଚ୍ଛା ଥିଲା ସବୁଗୁଡ଼ାକୁ ନେଇ ଆସିବାକୁ, କିନ୍ତୁ ସେ ପ୍ରସ୍ତାବ ଶୁଣି କାହିଁକି ଯେ, ତା'ର ବାପ ମାଆ ଏକା ସାଙ୍ଗରେ ବାଉଁଶ ପାତିଆ ଧରି ତାକୁ ମାରି ଗୋଡ଼େଇଲେ, ସେ କଥା ସେ ଦିନ ବୁଝିପାରି ନଥିଲା । ଏବେ ଅବଶ୍ୟ ବୁଝୁଚି ଯେ, କୁକୁରମାନେ ମଧ ମଣିଷ ପରି ସବୁଦିନ ମାଆ ଦୁଧ ଖାଇ ବଞ୍ଚିପାରନ୍ତି ନାହିଁ; ସେମାନଙ୍କୁ ରଖିଲେ ଖାଇବାକୁ ଦେବାକୁ ପଡ଼େ । ସେ ଯାହାହଉ, ବହୁତ ନେହୁରା ହେବା ପରେ ଲକ୍ଷ୍ମୀକି ମାତ୍ର ଗୋଟିଏ କୁକୁର ଛୁଆ ରଖିବା ପାଇଁ ଅନୁମତି ମିଳିଥିଲା ।

ଉଭୟେ ଖେଳି ଖେଳି ସେଇ ସଂସାରରେ ବଡ଼ ହେଲେ ଏବଂ ଅତିଶୀଘ୍ର ବୁଲା ହେଲା ଲକ୍ଷ୍ମୀ-ଗତ-ପ୍ରାଣ ଓ ଲକ୍ଷ୍ମୀ ହେଲା ବୁଲା-ଗତ-ପ୍ରାଣ । ସେଇ ଖୋଲା ପଡ଼ିଆରେ ସେମାନେ ଦଉଡ଼ା ଦଉଡ଼ି ହେଇ ଖେଳିଲା ବେଳେ ଲକ୍ଷ୍ମୀ ଗୋଟାଏ ଜିନିଷର ଅଭାବ ବଡ଼ ବେଶି ଅନୁଭବ କରେ । ଏଡ଼େ ବଡ଼ ଖୋଲାପଡ଼ିଆ ଅଛି । କିନ୍ତୁ ଲୁଚିବାକୁ ଏତେ ଟିକିଏ ଜାଗା ନାହିଁ । ଆଉ ତାଙ୍କ ଘର ଭିତରେ ବାପ, ମାଆ ଆଉ ଲକ୍ଷ୍ମୀ ଶୋଇଗଲେ ଇଞ୍ଚେ ମଧ ଜାଗା ନାହିଁ । ତେଣୁ ବାଧ ହୋଇ ବୁଲାକୁ ଶୋଇବାକୁ ପଡ଼େ ବାହାରେ । ଶୀତ ଦିନେ ଶୀତ ସହି ନପାରି ବୁଲାଟା କୁଁ କୁଁ ହେଲେ ଲକ୍ଷ୍ମୀ ଶୋଇବା ଜାଗାରୁ ଉଠିଯାଇ ତାକୁ ଆଣି କୋଳରେ ଭର୍ତ୍ତି କରି ଶୁଏ । ବାପା ମାଆଙ୍କ ନିଦ ନ ଭାଙ୍ଗିଥିଲେ ରକ୍ଷା । ନ ହେଲେ ସେମାନେ ବୁଲାର ଶଙ୍ଖି ପାଖରୁ ଧରି ଫୋପାଡ଼ି ଦିଅନ୍ତି ପଦାକୁ, ଗୋଟାଏ ବଡ଼ ରବର କଣ୍ଢେଇ ପଡ଼ିଲା ପରି ନଥି କିନା ଶବ୍ଦ ହୁଏ ।

ରାଜଧାନୀର ମୁକ୍ତପ୍ରାଙ୍ଗଣରେ ବଢ଼ିବାକୁ ଲାଗିଲେବୁଲା ଆଉ ଲକ୍ଷ୍ମୀ । ଦୁହେଁ ଅଜ୍ଞାତ କୁଳଶୀଳ, ଅଖ୍ୟାତନାମା ଓ ଅଶ୍ରୁତପୂର୍ବ । ଏମାନଙ୍କର ଦିନକୁ ଦିନ ବଡ଼ହବା ଯେମିତି ଆଖିରେ ପଡ଼େ, ପଣସ ଗଛଟା ସେମିତି ଆଖି ଦୃଶିଆ ବଡ଼ହେଇ ପାରେ ନାହିଁ । ସିଏ ତା'ର ଚୁପ୍‌ଚାପ୍ ଥାଏ, କେତେବେଳେ କେମିତି ଦି'ଟା ପତର ପବନରେ ଥରି ଥରି ତଳକୁ ଓହ୍ଲେଇ ଆସେ, ନ ହେଲେ କେତେବେଳେ କେମିତି କୋ' ସନ୍ଧି ଭିତରେ ଗୋଟାଏ ଦି'ଟା କଅଁଳିଆ ପତର ଗଜୁରି ଉଠେ, ନ ହେଲେ ନେଳିଆ କୋଳି ପରି କୁନି କୁନି ପଣସ କଷି ଧରେ । ବଡ଼ ହବା ପରେ ଲକ୍ଷ୍ମୀକୁ ଲୁଗା ପିନ୍ଧିବାକୁ ପଡ଼ିଲା, ଯେମିତି ସମସ୍ତଙ୍କୁ ପିନ୍ଧିବାକୁ ପଡ଼େ । କିନ୍ତୁ ବୁଲାର ଅସୁବିଧା ହେଲା ଅନ୍ୟ

ରକମ । ତା'କୁ ପର୍ଯ୍ୟାପ୍ତ ପରିମାଣର ଖାଦ୍ୟ ଲକ୍ଷ୍ମୀର ସଂସାର ଯୋଗେଇ ପାରିଲା ନାହିଁ । ତେଣୁ ତା'କୁ ତା'ର ଖାଦ୍ୟ ଯୋଗାଡ଼ କରିବା ପାଇଁ ବହୁ ସମୟରେ ଅନୁପସ୍ଥିତ ରହିବାକୁ ପଡ଼ିଲା । ଏପରି କି କ୍ରମାଗତ ଦୁଇ ତିନି ଦିନ ଧରି ବୁଲା ଅନୁପସ୍ଥିତ ରହେ । ଅବଶ୍ୟ ଫେରି ଆସିବା ପରେ ବୁଲା ଲାଙ୍ଗୁଡ଼ ହଲେଇ ଆନନ୍ଦର ଅତିଶଯ୍ୟ ଓ କୃତଜ୍ଞତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ତା'ର ଏଇ ସାମୟିକ ଅନୁପସ୍ଥିତ ପାଇଁ ପ୍ରଚୁର ଦୁଃଖ ମଧ ପ୍ରକାଶ କରେ ।

ଲକ୍ଷ୍ମୀ ଭୋଗେଇ, ଡାଳିଆ ବୁଣିବା ଆରମ୍ଭ କଲାଣି ତା'ର ମାଆର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ । ଅଥଚ ଆଉ ସବୁ ପୁରୁଣା, ସେ ଜାଗାଟାର ଅବସ୍ଥିତି, ସେ ଘର, ସେ ପଣସଗଛ ଆଉ ପ୍ରତିଦିନ ତା' ଚାରିପଟେ ପିମ୍ପୁଡ଼ି ପରି ସିଆର କାଟି ଚାଲୁଥିବା ଅବିରାମ ଜନସ୍ରୋତ । ଲକ୍ଷ୍ମୀ ଗାଧେଇଲା ବେଳେ, ନହେଲେ ଏକୁଟିଆ ଥିଲାବେଳେ ତା'ର ନିଜର ଶରୀରର କ୍ରମପରିବର୍ତ୍ତନକୁ ଲକ୍ଷ୍ୟ କରେ, ଆଉ ନିଜର ମୁଣ୍ଡରେ ପରିସ୍ଥିତିଟାକୁ ଠିକ୍ ଭାବରେ ବୁଝିବାକୁ ଚେଷ୍ଟା କରେ ଓ ବୁଝେ ମଧ । ସେ ନିଜେ କେତେବେଳେ ଧୂଳି ଖେଳୁଥିବା କାନ୍ଦୁରା ସିଙ୍ଘାଣିନାକୀ ଝିଅରୁ ବଡ଼ ହେଇ ଯୁବତୀ ହେଇଗଲାଣି, ସେକଥା ସେ ନିଜେ ଖିଆଲ କରିପାରି ନାହିଁ, କିନ୍ତୁ ଉର୍ଦ୍ଧ୍ୱରେ ତା'ମାନେ ପୃଥିବୀ ଉପରେ କେବଳ ଅଙ୍ଗୁଷ୍ଠି ଭାର ରଖି ତପସ୍ୟା କରୁଥିବା ପରି ଲକ୍ଷ୍ମୀ ମଧ ପୃଥିବୀ ଉପରେ କେବଳ ଦୁଇଟି ପାଦର ଭାର ରଖି ତା'ର ପରିପୂର୍ଣ୍ଣ ଯୌବନର ଭାରରେ ଟୁଳୁଟୁଳୁ ହଉଚି । ଭାରି ସୁନ୍ଦର ଦେଖା ଯାଉଛି ଲକ୍ଷ୍ମୀ । ପୂରିଲା ପୂରିଲା ଛାତି, କଟା କଟା ଆଖି, ପରିପୂର୍ଣ୍ଣ ନିତମ୍ବ ଆଉ ସମଗ୍ର ଶରୀରରେ ଛନ୍ଦାୟିତ ଆଳସ୍ୟ ।

ଏଥର ତା' ଚାରିପଟର ଜନସ୍ରୋତ ତାକୁ ଅବହେଳା କରିପାରନ୍ତି ନାହିଁ । ସ୍କୁଟରରେ ବା ରିକ୍ସାରେ କେହି ଯାଉଥାଉ ପଛକେ, ତାକୁ ଦଣ୍ଡେ ଅନେଇଦବାକୁ ପଡ଼ିବ । ଲକ୍ଷ୍ମୀ ବି କୌଣସି କୌଣସି ଲୋକଙ୍କୁ ଚାହେଁ, କିନ୍ତୁ ସବୁଠାରୁ ବେଶି ତା' ଆଖିରେ ପଡ଼େ ତା' ଘର ଆଗରେ ଠିଆ ହୋଇଥିବା ଗୋଟାଏ ବିରାଟ ହୋର୍ଡ଼ିଙ୍ଗ, କି ଗୋଟାଏ ସାବୁନ୍‌ର ବିଜ୍ଞାପନ । ଏକ ପୂର୍ଣ୍ଣଯୌବନା ତରୁଣୀ ଯେପରି ସାବୁନ୍‌ର ମୃଦୁଗନ୍ଧରେ ଆମୋଦିତ ହୋଇ ପବନରେ ଭାସିବୁଲୁଚି । ପ୍ରସାରିତ ପାଣିରେ ସେହି ତରୁଣୀଟିର ନିତମ୍ବବ୍ୟାପୀ କୁଞ୍ଚିତ କେଶରାଶି ବାରମ୍ବାର ତରଙ୍ଗ ସୃଷ୍ଟି କରି ଉଡ଼ିବୁଲୁଚି ପବନରେ । ଲକ୍ଷ୍ମୀ ତା'କୁ ଚାହିଁ ଚାହିଁ ଭାବେ, ଆଃ ! କି ସୁନ୍ଦର ! ଏମିତି ହାଲୁକା ହେଇ ଉଡ଼ିବୁଲିବା, ପବନରେ ପ୍ରତିମୁହୂର୍ତ୍ତରେ କୁଞ୍ଚିତକେଶଦାମର ଢେଉ ପିଟି ପିଟି । ନାଁ ଅଛି କାମର ଜଞ୍ଜାଳ, ନାଁ ଅଛି ସଂସାର ଚଳେଇବାର ଦାୟିତ୍ୱ ।

ଲକ୍ଷ୍ମୀ ବଡ଼ ହେଇଯିବା ପରେ ଯେପରି ଅକସ୍ମାତ ତାକୁ ବହୁ ବିଚିତ୍ର ଶବ୍ଦ ଓ ବର୍ଣ୍ଣମାନେ ଗ୍ରାସ କରି ବସିଲେ । ଜୀବନର ଏଇ ନୂତନ ସ୍ୱାଦରେ ସିଏ ଯେତିକି ଆତ୍ମହରା ହେଇ ଉଠିଲା, ଠିକ୍ ସେତିକି ପରିମାରେ ଦୀନ, ଦୟନୀୟ ଓ କୁତ୍ସିତ ହେଇ ଉଠିଲା ତା'ର ନିଜର ପାରିବାରିକ ପରିସ୍ଥିତି । ଘର ଭିତରର ଗୁମ୍‌ଟି ଗନ୍ଧ, ସନ୍ତସନ୍ତିଆ ଚଟାଣ, ଚେପା ଟଉବାସନ, ଏପରି କି ନିତିପ୍ରତି ଦିନର ଖାଦ୍ୟ, ଯାହା-ଖାଇ ସେ ବଡ଼ ହେଇଚି, ସେସବୁ ମଧ୍ୟ ତା' ପାଇଁ ଧୀରେ ଧୀରେ ଅସହ୍ୟ ହେଇଉଠିଲା । ସେ ନିଜକୁ ନିଜେ ବାରମ୍ବାର ପ୍ରଶ୍ନକଲା ଯେ ସେ ନିଜେ କାହିଁକି ଏଇ ପରିସ୍ଥିତିରେ ରହିବ, ଅଥଚ ଠିକ୍ ତା'ରି ପରି ଜଣେ ମୁକ୍ତ ଆକାଶରେ ହାଲୁକା ବାହୁ ପିଟି ଭାସି ବୁଲୁଥିବ ? କିନ୍ତୁ ସେ ପ୍ରଶ୍ନ ଶେଷହୀନ, ସେ ସ୍ୱପ୍ନ ଅବାସ୍ତବ ।

ତା'ରି ଆଖି ଆଗରେ ଧୀରେ ଧୀରେ ତା' ବାପା ମାଆ ଦୁଇଜଣଯାକ ଅନେକ ବୁଢ଼ା ହେଇଗଲେଣି । ସେମାନେ ସେମିତି ଘୁଷୁରି ଘୁଷୁରି କାମ କରୁଛନ୍ତି । ଏକ ସାମଗ୍ରିକ ଅସ୍ୱଚ୍ଛଳତା ଖୁବ୍ ନିକଟକୁ ଆସି ତା'ରି କୁଡ଼ିଆ ଆଗରେ ଯେପରି ମୁଖବ୍ୟାଦାନ କରି ବସି ରହିଛି, ଟିକେ ସମୟ ପାଇଲେ ଟକ୍ କିନା ଗିଳିଦବ । ପାଖ ଚାହା ଦୋକାନୀ; ଆଖୁରସ ବିକାଳି, ଖବରକାଗଜ ହକର୍‌ମାନଙ୍କର ଅଶ୍ଳୀଳ ଇଙ୍ଗିତ ଓ ହୁଇସିଲ୍ ମଧ୍ୟ ଦେହସୁହା ହେଇଗଲାଣି । ବାବୁମାନେ ମଧ୍ୟ ଆଜିକାଲି କୁଲା, ବାଉଁଶିଆ ଦରଦାମ କରିବା ପାଇଁ ଆଗଠାରୁ ବେଶି ଆସୁଛନ୍ତି ଏବଂ ସବୁଠାରୁ ବେଶି ଆସୁଚି ସେଇ ଭୁଷୁଣ୍ଡା କୁମୁଟିଟା, ଯିଏ ତାଙ୍କୁ ବାଉଁଶ ବିକେ । ସିଏ ବି ଆଜିକାଲି ଯିବା ପାଇଁ ତରତର ହଉ ନାହିଁ । ମାଆ ସାଙ୍ଗରେ ଟିକିଏ ବେଶି କଥା ଫିସ୍ ଫିସ୍ ହେଇ ଗପୁଛି । ସେଦିନ ତା' ବାପା ହଠାତ୍ କାଶି କାଶି ବିଛଣା ଧରିଲା ଆଉ ସେଇ କୁମୁଟି ମାଆ ହାତକୁ ପନ୍ଦରଟଙ୍କା ବଢ଼େଇ ଦେଇଗଲା ଓଷୁଧ ପାଇଁ । ତା' ସାଙ୍ଗରେ ମଧ୍ୟ କଥାବାର୍ତ୍ତା କରିବା ପାଇଁ ଲୋକଟା ବାଆଁରେଇ ବାଆଁରେଇ ହଉଚି । କିନ୍ତୁ ଛିଃ ଏମିତି ଅସୁନ୍ଦର ବେଢ଼ଙ୍ଗିଆ ପୁରୁଷ ଲକ୍ଷ୍ମୀ ଆଉ କୋ'ଠି ଦେଖି ନାହିଁ । କେମିତି ଗୋଟାଏ ମାଇଚିଆ ମାଇଚିଆ ସ୍ୱର । ଲକ୍ଷ୍ମୀର ତ ସେଇ ହୋର୍ଡ଼ିଙ୍ଗ ଉପରେ ଅଙ୍କା ଯାଇଥିବା ଝିଅଟି ପରି ଉଡ଼ିବୁଲିବାର କଥା । ଥୁଃ-ଛେପ ମେଞ୍ଚାଏ ଲକ୍ଷ୍ମୀ ପକେଇଦିଏ ସେଇ ଅନୁପସ୍ଥିତ କୁମୁଟିର ମୁହଁକୁ ଲକ୍ଷ୍ୟ କରି ।

କିନ୍ତୁ ସଂସାର ଯେ ଆଉ ଚଳେନା । ବାପା ବିଛଣାରେ ଶୋଇ ଶୋଇ ଧଇଁ ପେଲୁଚି । ମାଆ କାମକୁ ପାରୁ ନାହିଁ, ବୁଣୁ ବୁଣୁ ଥକ୍‌କା ହେଇ ଗୋଟାଏ ଶୂନ୍ୟ ଦୃଷ୍ଟିରେ ଅନେଇ ରହିଯାଉଚି ବହୁତ ବେଳ । କଞ୍ଚା ବାଉଁଶର ଗଦା ମଧ୍ୟ ଶୂନ୍ୟ । ଏସବୁ ଭିତରେ ମାତ୍ର ଗୋଟିଏ ବ୍ୟତିକ୍ରମ, ସେ ହଉଚି ବୁଲା । ଏ ଘୋର ଦାରିଦ୍ର୍ୟ ଭିତରେ କିଛି ଖାଇବାକୁ ପାଉ ନଥିଲେ ମଧ୍ୟ ବୁଲା ଏ ସଂସାରକୁ ଭୁଲି ନାହିଁ ।

ଲକ୍ଷ୍ମୀର ମନେହଉଚି ଏଇ କିଛି ଦିନ ହେଲା, ତା' ମାଆ ତାକୁ ଗୋଟାଏ କିଛି କହିବ କହିବ ହଉଚି, କିନ୍ତୁ କହି ପାରୁ ନାହିଁ । କିନ୍ତୁ ମାଆର ତ କହିବାର କଥା ବହୁତ ଅଚ୍ଛ, ବାଉଁଶ ବୁଣା, ପଇସା ନ ହେଲେ ଖାଇବା । ସେ ଦିନ ତା' ମାଆ କାମଛାଡ଼ି ତା' ପାଖରେ ଅନେକ ସମୟ ବସି ରହିଥିଲା, କଅଣ ସବୁ ମନକୁ ମନ ବିଡ଼ ବିଡ଼ ହଉଥିଲା । ତା'ପରେ କେତେବେଳେକେ କହିଲା 'ଆଜି ଗୋଟେ ଠା'କୁ ଯିବା ।' ଲକ୍ଷ୍ମୀ କଥାଟାର ଅର୍ଥ ପୂରାପୂରି ବୁଝି ନ ଥିଲେ ମଧ୍ଯ ଯେ ଏକବାରେ ବୁଝି ନଥିଲା, ସେକଥା ନୁହେଁ । ସେ ଦିନ ସନ୍ଧ୍ୟା ଗଡ଼ିବା ଆଗରୁ ମାଆ ତା' ମୁଣ୍ଡରେ ତେଲ ଲଗେଇ ବାଳ ବାନ୍ଧି ବସିଲା, କାହିଁ ଏତେ ଆଦର ତ ମାଆ କେବେ କରି ନାହିଁ ! ତା'ପରେ ମଧ ଯାହା ଘଟିଲା, ତାହା ଅନ୍ତତଃ ଲକ୍ଷ୍ମୀର ଜୀବନରେ ଏକ ଘୋର ଅପ୍ରତ୍ୟାଶିତ ଓ ବିସ୍ମିତ ଘଟଣା । ଖଣ୍ଡେ ନୂଆ କସ୍ତା ଶାଢ଼ୀ ଲକ୍ଷ୍ମୀ ଆଡ଼କୁ ପକେଇ ଦେଇ ମାଆ କହିଲା, ''ପିନ୍ଧିପକା'' । ବାପା ତଥାପି ସେଇ କୁଡ଼ିଆ ଭିତରେ ଗୋଟାଏ ଏକଟଣା କ୍ଳାନ୍ତିକର ଶବ୍ଦ କରି ଧଇଁ ପେଲୁଥାଏ, ଯେମିତି ମଳୟସେବିତ ଏକ ପୁଷ୍ପିତା ବନ୍ୟବୀଥିକା ମୂଳରେ କୌଣସି ଏକ ଆହତ ବନ୍ୟପଶୁର ଯନ୍ତ୍ରଣାର ଅଭିବ୍ୟକ୍ତି ପରି । ମାଆ ଆଖିରେ କିପରି ଏକ ବିଷର୍ଣ୍ଣଦୃଷ୍ଟି ଯେପରି ତାକୁ ଯିବାକୁ ପଡ଼ିବ ଅନେକ ପଥ, ଏକ ଅସୁସ୍ଥ ସ୍ୱାମୀ ଓ ଏକ ଯୁବତୀ କନ୍ୟାର ଗୁରୁଭାର ବହନ କରି କରି ।

ଯଥା ସମୟରେ ସନ୍ଧ୍ୟା ହେଲା । କେଇଥର ପାଇଁ ଆଖି ମିଟ୍‌ମିଟ୍ କରି ରାସ୍ତାର ଲାଇଟ୍‌ପୋଷ୍ଟରେ ବାଉଲାଇଟ୍‌ମାନେ ଆଖି ଉଜ୍ଜ୍ୱଳ କଲେ । ଟ୍ରାଫିକ୍ ଆଲୁଅର ଲାଲ୍‌ସଙ୍କେତ ଓ ନୀଳସଙ୍କେତ କ୍ରମାଗତ ଭାବରେ ଜଳିବାକୁ ଲାଗିଲା । ମାଆ ଲକ୍ଷ୍ମୀକୁ କହିଲା, 'ଚାଲ ଯିବା ।' ସେ ପଥ ଯେପରି ଲକ୍ଷ୍ୟହୀନ ଓ ଶେଷହୀନ ।

ମାଆ ପିଚୁ ରାସ୍ତା ଛାଡ଼ି ଗୋଟାଏ ଗଳି ରାସ୍ତା ଧରିଲା । ମାଆ ପଛେ ପଛେ ଚାଲିଥାଏ ଲକ୍ଷ୍ମୀ । ଗଳି ରାସ୍ତା, ଗଳି ରାସ୍ତାରୁ ଉପଗଳି । ଛିଣ୍ଡା ଅଦରକାରୀ କାଗଜର ଗୋଦାମ । ତା'ପରେ ଟୁକୁରା ଭଙ୍ଗା କାଚ ବେପାରୀର ପର୍ବତ ପ୍ରମାଣ କାଚର ସ୍ତୁପ, ଗୋଟାଏ ବେସରକାରୀ ଡ୍ରେନ, ଯେଉଁଥିରେ ନେଳି ନେଳି ପାଣି ଭିତରୁ ଭୁଟକି ଉଠୁଛି । ଦେଶୀ ରନ୍ଧାମଦର ବାସ୍ନାରେ ସମସ୍ତ ପରିବେଶଟା ଥମ୍ ଥମ୍ ହଉଚି ଯେପରି । ମାଆ କିନ୍ତୁ ଚାଲିଚି ଯେପରି ଧ୍ରୁବତାରାକୁ ଲକ୍ଷ୍ୟ କରି କରି, ପରିବେଶ ସହିତ ତା'ର ସମ୍ପର୍କ ନାହିଁ ଏତେ ଟିକେ । ପଛେ ପଛେ ଚାଲିଛି ଲକ୍ଷ୍ମୀ ଏକ ତ୍ରସ୍ତା ବନ୍ୟହରିଣୀ ପରି । ତା'ର ଚାରିପଟେ ଅନେକ ମନ୍ତବ୍ୟ, ଅନେକ ହସ, ଅନେକ ହ୍ୱିସିଲ ଆଉ ଅନେକ ଅଙ୍ଗଭଙ୍ଗୀ, ତାକୁ କ୍ରମାଗତ ଭାବରେ ବିଦ୍ଧ କରି ଚାଲିଛନ୍ତି । କିନ୍ତୁ ଉପାୟ କଅଣ ? ତାକୁ ଏ ତପ୍ତ ବୈତରଣୀ ପାରହବାକୁ ହେବ ।

ଗୋଟିଏ ଛୋଟ କୋଠାଘରର ଯାଉଁଳି କବାଟରେ ହାତ ମାରିଲା ମାଆ । କବାଟଟା ବୋଧହୁଏ ଦର ଆଉଜା ଥିଲା, ଖୋଲି ଗଲା । ଭିତରେ ଆଲୁଅ ଜଳୁଥିଲା ଏବଂ ସେଇ ଆଲୁଅରେ ଦରଜାର ଫ୍ରେମ୍‌ରେ ଫଟ ଝୁଲା ହୋଇଥିବା ପରି ଯେଉଁ ଲୋକଟା ଠିଆ ହେଇଥିଲା, ସେ'ଟା ସେଇ ବାଉଁଶ ବିକିବା କୁମୁଟି । ବେଶ୍ ନିଶା ହୋଇ ଥିଲା ତାକୁ, ଟିକିଏ ହସିବାକୁ ଚେଷ୍ଟା କରି ତା'ର ଓଠଗୁଡ଼ାକ କେମିତି ନେସେଡ଼ି ପଡୁଥିଲା । କୁତ୍ସିତ ପେଟଟା ଗୋଟାଏ ହାଣ୍ଡିପରି ବାହାରି ଆସିଥିଲା ପଦାକୁ ।

ଏଇ ଏକମାତ୍ର ସୁଯୋଗ । ଏ ସୁଯୋଗ ଛାଡ଼ିଦେଲେ ବୋଧହୁଏ ସାରା ଜୀବନ ପାଇଁ ଅନୁତାପ କରିବାକୁ ପଡ଼ିବ ଲକ୍ଷ୍ମୀକୁ । ମାଆ ପଛପଟୁ ଲକ୍ଷ୍ମୀ ହଠାତ୍ ଖସିଗଲା ନିକଟସ୍ଥ ଗୋଟାଏ ଅନ୍ଧାରୁଆ ଜାଗାକୁ । ସେଠୁ ଲକ୍ଷ୍ୟକଲା ମାଆର କଥାବାର୍ତ୍ତା ଚାଲିଚି, ଲୋକଟା ଖୋସଣି ଫିଟେଇ ମାଆ ହାତରେ କଅଣ କିଛି ଦେଲା । ଏଇ ବୋଧହୁଏ ବେଳ, ମାଆ ପଛକୁ ଚାହିଁବ ଲକ୍ଷ୍ମୀକୁ ଡାକିବା ପାଇଁ । କିନ୍ତୁ ଲକ୍ଷ୍ମୀ ସେ ପର୍ଯ୍ୟନ୍ତ ଅପେକ୍ଷା କରି ପାରିବ ନାହିଁ । ଲକ୍ଷ୍ମୀ ପଚାପାଣି, ଛିଣ୍ଡା କାଗଜର ଗୋଦାମ, ଭଙ୍ଗାକାଚର ସ୍ତୂପ ସବୁ କିଛିକୁ ଅତିକ୍ରମ କରି ଦଉଡ଼ିବାକୁ ଆରମ୍ଭ କଲା ଏକ ବ୍ୟାଧଭୀତା କୁରଙ୍ଗୀ ପରି । ସେ ଥରେ ମାତ୍ର ପଛକୁ ଫେରି ଚାହିଁନାହିଁ । ଉପଗଳି, ଗଳି, ରାଜରାସ୍ତା, ଟ୍ରାଫିକ୍ ଷ୍ଟାଣ୍ଡର ଆଲୁଅ ଆଉ ଏଇ ଆଲୋକର ସମ୍ଭାର ଭିତରେ ଖଟେଇ ହେଲା ପରି ପଡ଼ିଥିବା ତା'ର ଜୀର୍ଣ୍ଣ କୁଡ଼ିଆ ଖଣ୍ଡକ । ସେଠି ପହଞ୍ଚିଲା ବେଳକୁ ଖୁବ୍ କ୍ଳାନ୍ତ ହେଇ ପଡ଼ିଥିଲା ଲକ୍ଷ୍ମୀ । କୁଡ଼ିଆ ପାଖର ପଣସ ଗଛ ଦିହକୁ ଆଉଜି ବସି ରହି ଏକ ରୁଦ୍ଧ ଅଭିମାନର ସ୍ୱତଃ ବିସ୍ଫୋରଣରେ ହା' ହା' କରି ଶ୍ରାବଣର ଆକାଶ ପରି କାନ୍ଦି ଉଠିଲା ଲକ୍ଷ୍ମୀ । ଆଉ କିଛି ସମୟ ପରେ ତା'ର ମାଆ ଫେରି ଆସିବ, ହୁଏ ତ ଅନେକ ଗାଳିଗୁଲଜ କରିବ । ଯାହା କରିବ କରୁ ।

ଲକ୍ଷ୍ମୀ ପଣସ ଗଛଟାକୁ ଆଉଜି ସ୍ଥାଣୁ ପରି ବସି ରହିଥିଲା । ତା' ଆଖି ସାମ୍ନାରେ ଲାଲ୍ ଟ୍ରାଫିକ୍ ଆଲୁଅ କ୍ରମାଗତ ଛନ୍ଦରେ ଜଳୁଥିଲେ ଆଉ ଲିଭୁଥିଲେ । ଗାଡ଼ିର ଆଲୁଅରେ ସେଇ ଭାରମୁକ୍ତ ସ୍ୱଚ୍ଛନ୍ଦ ଝିଅଟି ବାରମ୍ବାର ଜଳି ଉଠି ଲିଭି ଯାଉଥିଲା । ହଠାତ୍ ତା'ର ପାଦ ଉପରେ ଏକ ଓଦା ଓଦା ସ୍ପର୍ଶ ପାଇ ଲକ୍ଷ୍ମୀ ଚମକି ପଡ଼ିଲା, ବୁଲା କେତେବେଳୁ ଆସି ସେଠି ଠିଆ ହେଇ ତାର ଉପସ୍ଥିତି ଘୋଷଣା କରିବା ପାଇଁ ଲକ୍ଷ୍ମୀର ପାଦକୁ ଚାଟି ଦେଇଥିଲା ଥରେ ଦି'ଥର । ଲକ୍ଷ୍ମୀ ବୁଲାକୁ କୋଳ ଉପରକୁ ଉଠେଇ ନେଇ ପୁଣି ଥରେ ହା' ହା' କରି କାନ୍ଦି ଉଠିଲା ।

●●

# ମାଂସପେଶୀର ହୃଦୟ

କାରଖାନା ଅଞ୍ଚଳକୁ ଘେନି ଗଢ଼ି ଉଠିଛି ଗୋଟିଏ ଛୋଟିଆ ଟାଉନ୍‌ସିପ୍—ଶ୍ରମିକ ବସ୍ତି । ଝୁପୁଡ଼ି, ଛିଣ୍ଡା ଅଖା, ଭଙ୍ଗା ଆସ୍‌ବେଷ୍ଟସ୍ ସିଟ୍, ଫୁଟାଟିଣ, ପିଚୁଡ୍ରମ୍, ତାଟି ବାଉଁଶ ଇତ୍ୟାଦି ଇତ୍ୟାଦି ଅନେକ ଅନେକ ଉପକରଣ । ଖରା ବର୍ଷାର ଆକ୍ରମଣରୁ ଆତ୍ମରକ୍ଷା କରିବା ପାଇଁ, ଆଶ୍ରୟ ନିର୍ମାଣ କରିବା ଆରମ୍ଭ କରିବା ଦିନଠାରୁ ମଣିଷ ଯେତେ ଯେତେ ରକମର ଉପକରଣ ସଂଗ୍ରହ କରି ପାରିଥିବା ସମ୍ଭବ ସେ' ସବୁର ଏକ ଖୋଲା ପ୍ରଦର୍ଶନୀ ।

ସେଇ ବସ୍ତି ନିକଟରେ ଗୋଟାଏ ଛକଠାରୁ ବାଙ୍କି ଯାଇଛି ରାଷ୍ଟ୍ରାୟତ୍ତ କାରଖାନାକୁ କଳା ରିବନ୍ ପରି ଚକ୍ ଚକ୍ କରୁଥିବା ରାସ୍ତା । କାରଟା ସେଇ ଛକ ମୋଡ଼ରେ ଅଟକିବା ମାତ୍ରେ ଦଳେ କଳା ପିମ୍ପୁଡ଼ି ପରି ଘେରିଗଲା ଗୋଟାଏ ଜନତା ଓ ତା'ପରେ ପରେ ଗୋଟାଏ ପ୍ରମତ୍ତ ଚିତ୍କାର, 'ଜୟନ୍ତ ଦାସ ଜିନ୍ଦାବାଦ୍', 'ଶ୍ରମିକ ୟୁନିୟନ୍ ଜିନ୍ଦାବାଦ' । କଳା ଆମ୍ବାସାଡ଼ର୍ କାର୍ ଭିତରେ ଜୟନ୍ତ ଦାସର ଦାମୀ ବିଦେଶୀ ସିଗାରେଟ୍‌ର ନିଆଁ ତଥାପି ଲିଭି ନଥିଲା ।

କାରର୍ ପଛସିଟ୍‌ରୁ ପଦାକୁ ଓହଳି ପଡ଼ିଥିବା ଆସ୍‌ଟ୍ରେଟ୍‌ଟା ଭିତରେ ସିଗାରେଟ୍‌ଟାକୁ ଦଳୁ ଦଳୁ ଜୟନ୍ତ ଭାବୁଥିଲା,... ସେକ୍ସପିୟର୍ ମିଛ ଲେଖି ନଥିଲା ଯେ' ଏଇ ସମଗ୍ର ପୃଥିବୀଟା ଗୋଟାଏ ରଙ୍ଗମଞ୍ଚ । ନହେଲେ କି ଜୟନ୍ତ ଦାସ ଆଜି ଶ୍ରମିକ ନେତା ! ହସିବାକୁ ଇଚ୍ଛା ହଉଥିଲା ଜୟନ୍ତର । କିନ୍ତୁ ସେଇ ମୁହୂର୍ତ୍ତରେ ହସିବାଟା ବେମାନୀନ୍ ହୁଅନ୍ତା ପରା !

କିନ୍ତୁ ଜୟନ୍ତର ଏଇ ଦାର୍ଶନିକ ଭାବବିଳାସର ଖିଅ ହଠାତ୍ ଛିଣ୍ଡେଇ ଦେଇ ଲୁହାର ଭାଇସ୍ ପରି ଗୋଟାଏ ବଜ୍ରମୁଷ୍ଟି ମତେ କାର୍ ଭିତରୁ ଝିଙ୍କି ନେଇ ରାସ୍ତା ଉପରେ ଛିଡ଼ା କରେଇ ଦେଇ କହିଲା, ''ସାର୍ ପ୍ରସେସନ୍, ପାଇଁ ଡେରି ହେଇଗଲାଣି ଯେ !''

ପ୍ରସେସନ୍ ? ହଠାତ୍ ଦୁଇ ତିନିଟା କଣ୍ଠର ସମବେତ ଚିତ୍କାର, ''ହଁ ସାର୍ ପ୍ରସେସନ୍, ପ୍ରସେସନ୍, ଆଜି ସେମାନଙ୍କୁ ଆମେ ଦେଖେଇ ଦବୁ, (ମୁଦ୍ରଣର ଅଯୋଗ୍ୟ) ଆଉ ମେନେଜ୍‌ମେଣ୍ଟକୁ ଆମର ତାଁକତ୍ କେତେ । କୋଉ ବୋପା ଆମକୁ ରେକଗ୍‌ନିସନ୍ ନଦବ ଦେଖିବା ।''

ବାତାବରଣରେ ଚାଉଳି, ମହୁଲି, ଆଉ ଶସ୍ତା ରମ୍, ହୁଇସ୍କି ଗନ୍ଧର କକ୍‌ଟେଲ୍ । ସମସ୍ତଙ୍କର ପ୍ରାୟ ସେଇ ନଦୀୟା କୀର୍ତ୍ତନ ଅବସ୍ଥା । ''ଲାଇଟ୍, ଲାଇଟ୍, ଆବେ ଶଳା ପ୍ରେସିଡ଼େଣ୍ଟଙ୍କ ମୁହଁ ସାମ୍ନାରେ ଲାଇଟ୍ ଟେକିଧରି''– । ଲାଇଟ୍ ଟେକି ଧରିବା ମାତ୍ରେ ମୁହଁ ଉପରକୁ ଲମ୍ଫ ଦେଲେ କେଇଟା ଝିଣ୍ଟିକା, ସେଥିରୁ ଗୋଟାଏ ଦୁଇଟା ବେକ ଉପରେ, ମୁହଁରେ ଦଂଶନ କଲେ ପରା । ଜୟନ୍ତ ଦାସ ! ଜିନ୍ଦାବାଦ୍ ପାଇଁ ବେଳେ ବେଳେ ଏପରି ମୂଲ୍ୟ ମଧ ଦବାକୁ ପଡ଼ିଥାଏ । ଜୟନ୍ତ ଦାସ ! ଜୀବନରେ ସବୁ ଭୂମିକାରେ ତ ଅଭିନୟ କରିଗଲ, ବର୍ତ୍ତମାନ ଟିକିଏ ଦାର୍ଶନିକ ହବାକୁ ଚେଷ୍ଟାକର ! ବେକ ଉପରେ ହଠାତ୍ କୁଆଡୁ ଆସି ଗଦା ହୋଇଗଲା ଅସୁମାରୀ ଗେଣ୍ଡୁ ଫୁଲର ମାଳ । ଆହା ! ତା' ଭିତରେ ବି ରଜନୀଗନ୍ଧାର ବାସ୍ନା ! ସବୁ ଦଂଶନର ମଧ କ୍ଷତିପୂରଣ ଅଛି ।

''ବାସ୍, ଏଥର ସରିଲା ତ ?'' ପଚାରିଲି ନିସ୍ପୃହ କଣ୍ଠରେ । ''ସରିଲା ! ୟେ'ତ ଆରମ୍ଭ ହେଲା ମାତ୍ର–ଆମର ଅଫିସ୍ ଯାଏଁ ପ୍ରସେସନ୍ ଯିବ ଯେ ସାର୍ ! ସ୍ଲୋଗାନ୍ ବନ୍ଦ କଲ କାହିଁକି ବେ ?'' ପୁଣିଥରେ ଅନେକ ତୁଙ୍ଗା ଯୋଗେ କୋରସ୍ ଆରମ୍ଭ ହେଲା, ''ଜୟନ୍ତ ଦାସ ଜିନ୍ଦାବାଦ୍, ଶ୍ରମିକ ୟୁନିୟନ୍ ଜିନ୍ଦାବାଦ୍'' ।

ମୁଁ ପଚାରିଲି, ''ତା' ମାନେ ଚାଲି ଚାଲି ଯିବାକୁ ପଡ଼ିବ ? କେତେ କିଲୋମିଟର୍ ?'' ଜବାବ୍ ଆସିଲା, ''ସାର୍ ! ମୋଟେ ଦୁଇ ତିନି କିଲୋମିଟର୍ ରାସ୍ତା–ଆମର ହଜାର ହଜାର ଶ୍ରମିକ ପ୍ରସେସନ୍ ପାଇଁ ଆଜି ଜମା ହେଇ ଗଲେଣି, ଇଏ ପରା ହଉଛି ତାକତ୍‌ର ପରୀକ୍ଷା !''

କିନ୍ତୁ ଏମାନେ ବା' କଅଣ ବୁଝନ୍ତି ! ଦୁଇ କିଲୋମିଟର ଗଲାବେଳକୁ ମୋର ଆଣ୍ଠୁର ଜଏଣ୍ଟଗୁଡ଼ାକ ହୁଗୁଳା ହେଇ ସାରିଥିବ । ଜୟନ୍ତ ଦାସ ! ଏଇ ଅବସ୍ଥାକୁ ତାତ୍ତ୍ୱିକମାନେ ବ୍ୟାଖ୍ୟା କରି କହିଛନ୍ତି ଧର୍ମ ସଙ୍କଟ । ନିଜ ଗୋଡ଼କୁ ସମ୍ଭାଳିବ ବା ଜଗିବ ଜିନ୍ଦାବାଦ୍‌କୁ ? ପେଟ୍ରୋମାକ୍ସ ଆଲୁଅରେ ଚକ୍ ଚକ୍ କରୁଛି ଅସୁମାରୀ ନିଆଁର ଫୁଲ୍‌କି ପରି ମଣିଷର ଆଖି ସବୁ । ସେଥିରେ ପୁଣି ଚାଉଳି, ମହୁଲୀ ଆଉ ଶସ୍ତା ହୁଇସ୍କି, ରମ୍‌ର ଉତ୍ତେଜନା ! ମୁହଁ ସବୁ ପଥରରେ ଖୋଳା ମୁହଁ ପରି କଠୋର, ଉତ୍ତେଜିତ, ପୁଣି କେତେ ନିରୀହ ! କେତେଟା ମୁହଁରେ କେତେ ଦିନର ଅକଟା ଦାଢ଼ି ସବୁ ବାହାରି ଆସିଚି ଝିଙ୍କର କାଠି ପରି ।

ଏଇ ତ ମାତ୍ର ଉପକ୍ରମଣିକା ! ପ୍ରସେସନ୍ ଗନ୍ତବ୍ୟ ସ୍ଥଳରେ ପହଞ୍ଚିଲେ ଆରମ୍ଭ ହବ ସଭା । ପଛରୁ ଦୁଇ ତିନି ଜଣ ଶ୍ରମିକ ପ୍ରାୟ ଧକ୍‌କା ଦେଇ କହିଲେ, ''ଚାଲନ୍ତୁ ସାର୍ ! ପ୍ରସେସନ୍ କମ୍ ସେ କମ୍ ଦୁଇ ତିନି ଘଣ୍ଟା ଲାଗିବ–ତା' ପରେ ପୁଣି ସଭା

ତ ଅଛି। ଜୟନ୍ତ ଦାସ ! ତମର କେତେ ଶୁଭାକାଂକ୍ଷୀମାନେ ତମକୁ ପରାମର୍ଶ ନ ଦେଇଛନ୍ତି ଗୋଟାଏ ଲାଇଫ୍ ଇନ୍‌ସ୍ୟୁରାନ୍‌ସ ପଲିସି କରିବା ପାଇଁ। କିନ୍ତୁ ନିର୍ବୋଧ ତୁମେ ! ବୁଝ ଏଥର । ଗୋଟାଏ ପଲିସି କରି ନେଇଥିଲେ ଅନ୍ତତଃ ଏଇ ମୁହୂର୍ତ୍ତରେ ତୁମେ କେତେ ନିଶ୍ଚିନ୍ତ ହେଇ ପାରିଥାଆନ୍ତା ! 'ଜୟନ୍ତ ଦାସ ଜିନ୍ଦାବାଦ୍' ଏଇ ପଦକ ମୋ' ମୁହଁରୁ ଏକ ଅସତର୍କ ମୁହୂର୍ତ୍ତରେ ବାହାରି ପଡ଼ିଥିଲା । ଏଇ ରାସ୍ତାଟାହିଁ ସତ୍ୟ, ବଞ୍ଚିବାର ଦିନ, ମାସ, ବର୍ଷ ପରି । ତାକୁ ଫାଙ୍କିଦବାକୁ ଚେଷ୍ଟାକଲେ ବି ପାରିବନି । ଯଦି ନିତାନ୍ତ ଚାଲି ଚାଲି ଯିବାକୁ ପଡ଼ିବ ତାହାହେଲେ ଆରମ୍ଭ ହଉ ତୁମର ସେଇ ଯାତ୍ରା ।

ପ୍ରସେସନ୍‌ର ପୁରୋଭାଗରେ ମୁଁ, ଆଉ ମୋ' ପଛେ ପଛେ ପିପୀଲିକାର ଧାଡ଼ି । 'ଜୟନ୍ତ ଦାସ ଜିନ୍ଦାବାଦ୍' ଧ୍ୱନି ସାମ୍ନା ପଟୁ ଆରମ୍ଭ ହେଇ ଲମ୍ବା ଧାଡ଼ିର ବିଭିନ୍ନ ପର୍ଯ୍ୟାୟରେ ପ୍ରତିଧ୍ୱନିତ ହେଇ ଶେଷ ଆଡ଼କୁ ଧିମେଇ ଯାଉଛି । ପଛ ଲୋକମାନଙ୍କର କୁଣ୍ଠିତ ଉଚ୍ଚାରଣରେ ''ଆଉ କେତେବାଟ ତମର ଅଫିସ୍ ?''—ମୁଁ ପଚାରିଲି । ଜଣେ କିଏ ଝିଙ୍କାରି ଉଠିଲେ, ଯିଏ ମତେ ଫୁଲମାଳ ପିନ୍ଧେଇଥିଲେ ସିଏ ହେବେ ପରା, ''ୟେ'ତ ସାର୍ ଆରମ୍ଭ ହେଲା— କିନ୍ତୁ ସାର୍ ! ସେମାନଙ୍କ ୟୁନିୟନ୍‌ର ଅଫିସ୍ ରାସ୍ତାରେ ପଡ଼ିବ । ସେଠି ଦୁଇମିନିଟ୍ ହଉ ନାଁ କାହିଁକି ଆପଣଙ୍କୁ ଗୋଟାଏ ଓଜସ୍ୱିନୀ ବକ୍ତୃତା ଦବାକୁ ପଡ଼ିବ ।....ଆବେ ହେ ସ୍ଲୋଗାନ୍ କାହିଁକି ବନ୍ଦ କଲ ବେ ଶଃ...'' ପୁଣି ସେଇ ଜୟନ୍ତ ଦାସ ଜିନ୍ଦାବାଦ୍‌ର ନିର୍ଘୋଷ ।

ଚରୈବତି ଜୟନ୍ତ ଦାସ ଚରୈବତି । କିନ୍ତୁ ରାସ୍ତାଟା ବଡ଼ ଆବ୍‌ଡ଼ା ଖାବ୍‌ଡ଼ା । କ୍ରମାନ୍ୱୟରେ ଟ୍ରକ୍ ଓ ମାଲ୍‌ବାହୀ ଶଗଡ଼ ସବୁ ଚାଲି ଚାଲି ରାସ୍ତାର ସ୍ଥାନେ ସ୍ଥାନେ ଖାଲ ଆଉ ଖମା । ସେଇପରି ଗୋଟାଏ ଖମା ଭିତରେ ପାଦଟା ପଡ଼ିଯାଇ ମକ୍‌ଚି ହୋଇଗଲା ପରା ! କିନ୍ତୁ ଜୟନ୍ତ ଦାସ, ତୁମର ଗୋଡ଼ର ମାଂସପେଶୀ ସବୁ ଯେତେ ଯନ୍ତ୍ରଣା ଦିଅନ୍ତୁ ନାଁ କାହିଁକି ତମକୁ ଚାଲିବାକୁ ପଡ଼ିବ । ହାୟ ଭଗବାନ୍ ! ଚଟି ଟା ଇତିମଧ୍ୟରେ କୁଆଡ଼େ ଛିଣ୍ଡିଗଲାଣି । ଫିଙ୍ଗିଦିଅ ଚଟି, ସର୍ବହରାର ନେତା ହବା ପାଇଁ ଚଟିର ବା' ଆଉ କି ପ୍ରୟୋଜନ ଅଛି ! ଚଟି ଫୋପାଡ଼ି ଦବା ମାତ୍ରେ ଦୁଇଜଣ ଲୋକ ସେଇ ଛିଣ୍ଡା ଚଟିକୁ ହାତରେ ଉଠାଇ ଧରି ପାଗଳ ପରି ନାଚି ନାଚି ବକ୍ତୃତା ଆରମ୍ଭ କରିଦେଲେ, ''ଏଇ ଦେଖ ଚଟି, ଚଟି, ଆମର ନେତା ଶଳା ଠିକାଦାର ଆଉ ମାନେଜ୍‌ମେଣ୍ଟର ଦଲାଲ୍ ନୁହଁନ୍ତି—ତମରି ପାଇଁ ଫିଙ୍ଗିଦେଲେ ପାଦରୁ ଚଟି...ଜୟନ୍ତ ଦାସ ଜିନ୍ଦାବାଦ୍....ଶ୍ରମିକ ୟୁନିୟନ୍ ଜିନ୍ଦାବାଦ୍... ଶ୍ରମିକ ୟୁନିୟନ୍ ଜିନ୍ଦାବାଦ୍ ।'' ଆଗେଇ ଚାଲିଚି ପ୍ରସେସନ୍ ।

ମୁଁ ଭୁଲିଗଲିଣି ପାଦର ଜ୍ୱାଳା । କିନ୍ତୁ ହାୟ, ମୋ'ର ଦୁର୍ବଳ ମାଂସପେଶୀ ! ତୁମେ ଯଦି ଏଇ ମୁହୂର୍ତ୍ତରେ ମୋ' ସହିତ ଆଉ ଟିକିଏ ସହଯୋଗ କରିପାରନ୍ତ ! ଅଣ୍ଟାଟା ବିନ୍ଧୁଛି ବୋଧହୁଏ । ଅଣ୍ଟା ବିନ୍ଧୁ । ପାଦର ଭଣ୍ଡା ସବୁ ଶୀଥିଳ ହୋଇ ଖସିପଡୁ ! ଉଇଲ୍ ପାୱାର୍ ! ଭୁଲିଗଲଣି କେବେ ତୁମେ ପଢ଼ିଥିଲ ନୀଟ୍‌ସେ ! ଇଚ୍ଛାଶକ୍ତି, ଇଚ୍ଛାଶକ୍ତି ! ଜୟନ୍ତ ଦାସର ଦୁଇ ପାଦରେ ନୂତନ ସ୍ପନ୍ଦନ । ସଂକୀର୍ତ୍ତନରେ ନାଚିବା ଭଙ୍ଗୀରେ ମୁଁ ସ୍ଲୋଗାନ୍ ଦେଲି, ''ଭାଇମାନେ ! ଜୟନ୍ତ ଦାସ ଜିନ୍ଦାବାଦ୍ ନୁହଁ, କୁହ, ମାଲିକ ଶ୍ରେଣୀ ହୁଅ ହୁସିଆର୍ !'' ଉତ୍ତେଜନାରେ କେତେଜଣ ସ୍ଲୋଗାନ୍ ଦଉ ଦଉ ତଳେ ଲୋଟି ପଡ଼ିଲେ ପରା । ଏମାନେ ହିତାହିତ ଜ୍ଞାନଶୂନ୍ୟ । ଆତ୍ମରକ୍ଷା ପାଇଁ, ଖାଦ୍ୟ ପାଇଁ, ଆଶ୍ରୟ ପାଇଁ, ଏକ ନିଶ୍ଚିତ ଅବଲମ୍ବନ ପାଇଁ ଗୋଟାଏ ଆଦିମ ପ୍ରବୃତ୍ତିର ଏଇମାନେ ହିଁ ବହିଃପ୍ରକାଶ । ଅଥଚ କି ସରଳ କି ନିଷ୍ପାପ ଏମାନେ ! କି ଗଭୀର ଏମାନଙ୍କର ପ୍ରତ୍ୟୟ !

ମୋର ଚିନ୍ତାର ସ୍ରୋତ ବ୍ୟାହତ ହେଲା । କିଏ ଗୋଟାଏ କିଳିକିଳା ପାଟି କରି ଉଠିଲା, ''ଆବେ ଶଳା, ଲାଇଟ୍ କ'ଣ ଆଣିଥିଲ (ମୁଦ୍ରଣର ଅଯୋଗ୍ୟ) ଆମ ନେତାଙ୍କର ମୁହଁ ତ ଦିଶୁନି ଅଉ...'' । କିନ୍ତୁ କିଏ ବା' କାହିଁକି ବୁଝିବ, ସନ୍ତସନ୍ତିଆ ଦହ କରର ସ୍ୱାସ୍ଥ୍ୟବାନ୍ ଝିଣ୍ଟିକାମାନଙ୍କର ଉଗ୍ର ଦଂଶନରେ ମୋର ଗାଲର ଗୋଟାଏ ଦୁଇଟା ଜାଗା ବେଶ୍ ଫୁଲିଗଲାଣି ଇତିମଧ୍ୟରେ । ''ଏଇ ସାର୍ ! ଆଗରେ ସେ ଶଳାମାନଙ୍କର ଅଫିସ୍ ! ଶଳାମାନେ ମାଲିକର ଦଲାଲି କରି ତାଙ୍କ ୟୁନିୟନ୍ ଅଫିସ୍‌ଟାକୁ ଦୋତାଲା କରି ସାରିଲେଣି ସାର୍ ।''

''ଆଃ ! ସେମାନଙ୍କୁ ଏପରି ଅଶ୍ଳୀଳ ଭାବରେ ଗାଳି ଗୁଲଜ କରୁଛ କାହିଁକି ? ତମରି ପରି ସେମାନେ ବି ତ ମେହେନତି ଜନତା'' ମୁଁ କହିଲି । ହାୟ ମାର୍କସ୍ ! ତୁମେ ପରା କାଳେ କହିଥିଲ ଦୁନିଆର ମେହେନତି ଜନତା ଏକଜୁଟ୍ ହୁଅ । ସାରା ଦୁନିଆ କଥା ଛାଡ଼, ଏଇ ଗୋଟିଏ ରାଷ୍ଟ୍ରାୟତ୍ତ ଶିଳ୍ପାଞ୍ଚଳର ମେହେନତି ଜନତା ଏକାଠି ହୋଇ ପାରିଲେ ନାହିଁ ଯେ ! ତତ୍ତ୍ୱ ଆଉ ଜୀବନର ବାସ୍ତବତା ଭିତରେ କେତେ ତଫାତ୍ ! ଦୂରରୁ ଦେଖା ଯାଉଛି ଶିଳ୍ପାଞ୍ଚଳର ଆଡ଼ମିନିଷ୍ଟ୍ରେଟିଭ୍ ବ୍ଲକ୍‌ର ବିରାଟ ଅଟ୍ଟାଳିକା । ନିଅନ୍ ଆଲୋକରେ ଉଦ୍‌ଭାସିତ ହୋଇ ଯେପରି ସେ' ଘୋଷଣା କରୁଛି, ଆମର ସବୁ ସ୍ଲୋଗାନ୍, ସବୁ ଉଚ୍ଚାରଣ, ସବୁ ଉଦ୍‌ଘୋଷଣ ନେପଥ୍ୟରେ ପ୍ରଚ୍ଛନ୍ନ ରହିଛି ଯେଉଁ ରୋଧାଭାଷ, ଯେଉଁ ହିପୋକ୍ରିସି ! କିଏ କହିଲା, ''ସାର୍ ! ଟାୟାର୍ଡ୍ ହେଇ ପଡ଼ିଲେ କି ?'' ''ନାଁ ନାଁ ଟାୟାର୍ଡ୍ ଆଉ କଅଣ ।'' ମୋ ମୁହଁରେ ସେତେବେଳେ ଏଭରେଷ୍ଟ ବିଜୟୀ ଟେନ୍‌ସିଂ ବା ଏଡ଼ମଣ୍ଡ ହିଲାରୀଙ୍କର ମୁଖା । କିନ୍ତୁ ତା'ର ନେପଥ୍ୟରେ ଥିଲା ଗୋଟାଏ ପ୍ରାୟ କାନ୍ଦିଲା କାନ୍ଦିଲା କରୁଣ ମୁହଁ ।

''ଏଇଠି ସାର୍, ଏଇଠି ଆପଣଙ୍କୁ ଅନ୍ତତଃ ଦୁଇ ମିନିଟ୍ ଗୋଟାଏ ଫାୟାରିଂ ସ୍ପିଚ୍ ଦବାକୁ ପଡ଼ିବ ।'' ରାସ୍ତା କଡ଼ର ଚା' ଦୋକାନରୁ କିଏ ଜଣେ ଟାଣି ଆଣିଲା ଗୋଟାଏ ଭଙ୍ଗା ଟେବୁଲ । ତା' ଉପରେ କେଉଁ ଦିନର ତେଲ ଚିକିଟା ବୋଳ ଲାଗି ଲାଗି ସଂପୂର୍ଣ୍ଣ ପିଚ୍ଛିଳ । ତା' ଉପରେ ଠିଆ ହବା କଥା କଳ୍ପନା କରି ମନେ ମନେ ଆତଙ୍କିତ ହୋଇ ଉଠିଥିଲି । ''ଉଠନ୍ତୁ ସାର୍, ଉଠନ୍ତୁ ଉପରକୁ'' କିଏ ଜଣେ କହିଲା । କିନ୍ତୁ ଏଇ ଦେଢ଼ ମିଟର୍ ଉଚ୍ଚା ଟେବୁଲ ଉପରକୁ ଉଠିବା କ'ଣ ମୋ ପକ୍ଷରେ ସହଜ ? ବହୁ ସମୟର ପୁଞ୍ଜିଭୁତ ବିରକ୍ତି ଓ କ୍ରୋଧକୁ ଦମନ କରି ନପାରି ବିସ୍ଫୋରଣ କରି ଉଠିଲି, ''ହ୍ୱାଟ୍ ନନ୍‌ସେନ୍‌ସ ! ତୁମେମାନେ ମୋତେ ବିଚ୍ ରାସ୍ତା ଉପରେ ଏମିତି ଟେବୁଲ ଉପରେ ଠିଆ କରେଇବ ଜାଣିଥିଲେ ତୁମମାନଙ୍କ ୟୁନିୟନ୍‌ର ପ୍ରେସିଡ଼େଣ୍ଟ ହେବା ପାଇଁ ମୁଁ ମୋଟେ ରାଜି ହେଇ ନଥାନ୍ତି ।'' ସେମାନଙ୍କ ଭିତରୁ ହୁଏତ କେହି କେହି ବୁଝିଲେ ଏ ବିସ୍ଫୋରଣର ଯଥାର୍ଥତା, ଆଉ କେହି କେହି ବୁଝିଲେ ନାହିଁ ବା' ବୁଝିବାର ମାନସିକ ଅବସ୍ଥାରେ ନଥିଲେ ।

ମୁଁ ଆଉ କିଛି କହିବା ପୂର୍ବରୁ କେତେଟା ବଜ୍ରମୁଷ୍ଟି ମତେ ଟେକି ନେଇ ଠିଆ କରାଇ ଦେଇଥିଲା ସେଇ ଟେବୁଲ ଉପରେ । ଚାରି ଆଡ଼କୁ ଚାହିଁ ଦେଖିଲି ଦପ୍ ଦପ୍ ଜଳନ୍ତା ଆଖିର ସମୁଦ୍ର । ମୁଁ ଯେପରି ସେମାନଙ୍କର ସଂଗ୍ରାମୀ ସଂକଳ୍ପର ପ୍ରତିରୂପ, ସେମାନଙ୍କର ଇସ୍ପାତୀ ଶପଥର ପ୍ରତିନିଧି । ତା'କୁ ଏଇ ମୁହୂର୍ତ୍ତରେ ଦୁର୍ବଳ କରି ଦେବାର ଅର୍ଥ ହେବ ଭ୍ରୁଣ ହତ୍ୟା । ତେଣୁ ଭାଷଣ ଦେଲି, ଯଥା ସମ୍ଭବ ଉତ୍ତେଜିତ ଭଙ୍ଗୀରେ । କିନ୍ତୁ ଏମାନେ କ'ଣ ଜାଣନ୍ତି ମୋର ବ୍ଲଡ୍ ପ୍ରେସର୍‌ର ଡାଇଓଷ୍ଟିଲିକ୍‌ର ହିସାବ ? ଏମାନେ କ'ଣ ଜାଣନ୍ତି ମୋର ଅଛି ଆଞ୍ଜିଏନା ? ଡାକ୍ତରମାନଙ୍କର ସମ୍ମିଳିତ ପରାମର୍ଶ କେବେ ଉତ୍ତେଜିତ ହୋଇ ଭାଷଣ ନଦେବା ପାଇଁ । ଫରଗେଟ୍ ଇଟ୍ ଜୟନ୍ତ ଦାସ, ଫର୍ ଗଡ୍‌ସ୍ ସେକ୍ ଫର୍ ଗେଟ୍ ଇଟ୍ ଫର୍ ଓ୍ୟାନ୍‌ସ !

''ଭାଇମାନେ, ସାଥୀମାନେ, କମ୍ରେଡ୍‌ସ !'' ଭାଷଣ ମଝିରେ ମୋ କାନର ଅତି ନିଟରେ ଗୋଟାଏ ମହୁଲି ଗନ୍ଧ ମିଶା କଣ୍ଠ ସ୍ୱର ଫିସ୍ ଫିସ୍ କରି ଉଠିଲା, ''ସାର୍, ୟେ' କ'ଣ ସାହିତ୍ୟ ସଭା ହେଇଚି କି, ସେ ଶଳାମାନଙ୍କୁ ଏମିତି ସଂସ୍କୃତ ଭାଷାରେ କହିଲେ ଚଳିବ ନାହିଁ । ସେମାନଙ୍କର ମାଡ଼ରେ ଆମର ଦୁଇଜଣ ଶ୍ରମିକ ଏବେ ସୁଦ୍ଧା ପଡ଼ିଛନ୍ତି ହାସ୍‌ପାତାଳରେ....ମାଲିକର ଅଇଁଠା-ଚଟା କୁତ୍ତା ସେମାନେ ।'' ମୁଁ ମଧ ସେତେବେଳକୁ ସେଇ ବାତାବରଣ ଦ୍ୱାରା ଯଥେଷ୍ଟ ସଂକ୍ରମିତ ହୋଇ ଉଠିଥିଲି । ହିଂସା, ଘୃଣା, ଜିଘାଂସା ଆଉ ଉତ୍ତେଜନାର ସେଇ ସଂକ୍ରମଣରେ ମୋ'ର ଭାଷା ପ୍ରାୟ ହୋଇ ପଡ଼ିଥିଲା ସେମାନଙ୍କର ଅର୍ଥାତ୍ ଗଣଭାଷାର ସମୀପବର୍ତ୍ତୀ । ଜୟନ୍ତ ଦାସ !

ଭୁଲି ଯାଉଛ କାହିଁକି କ୍ଷୁଧାଆଉ ସଂଗ୍ରମା ହଉଛି ଦୁଇଟି ଆଦିମ ପ୍ରକୃତି, ଆଉ ତା'ରି ଉଷ୍ଣ କନ୍ଦରରୁ ଜନ୍ମ ନେଇଛି ସବୁ କଳା, ସବୁ ସାହିତ୍ୟ ଓ ସବୁ ସୌକୁମାର୍ଯ୍ୟ ।

ପଦ୍ମତୋଳା ବୋଲିଲେ କି ହୁଙ୍କା ଭିତରେ ଆଉ ଗୋଖର ସାପ ଥୟ ଧରି ପାରେ । ପ୍ରତିଦ୍ୱନ୍ଦ୍ୱୀ ଶ୍ରମିକ ୟୁନିୟନ୍ ଅଫିସ୍ ଭିତରୁ ଲମ୍ଫ ଦେଇ ଆସିଲା ଏକ ବିକଟାଳ ମୂର୍ତ୍ତି । କଳା ମୁଚ୍ ମୁଚ୍ ଦିହ, ମାଂସପେଶୀ ସବୁ ପେଟ୍ରୋମାକ୍ସ ଲାଇଟ୍‌ରେ ଆହୁରି ବଳିଲା ବଳିଲା ଦିଶୁଛି । ତା' ଉପରେ ଶିରା ଗୁଡ଼ାକ ସବୁ ଯେପରି ଉତ୍ତେଜନାରେ ସ୍ଫୀତ ହୋଇ ଉଠିଛି । ବେକରେ ଗୋଟାଏ ତମ୍ବା ମାଦୁଳି ଖଣ୍ଡେ କଳା ସୂତା ଦିହରୁ ଝୁଲି ରହିଛି । ଆଖି ଦୁଇଟାରେ ନିଆଁର ଫୁଲ୍‌କି । ହାତରେ ପଟେ ଛିଣ୍ଡା ଜୋତା । କିନ୍ତୁ କ'ଣ ଭାବି ସେ' ଲୋକଟା ହଠାତ୍ ମୋ' ଆଗରେ ଥମ୍‌କି ଠିଆ ହୋଇଗଲା । ତା'ର ଫିକା ମନ୍ଦାର ଫୁଲ ପରି ରଙ୍ଗା ଆଖିରେ ମୁଁ ଏକ ମେଘମୁକ୍ତ ଆକାଶ ପରି ଶିଶୁର ନିଷ୍ପାପ ଆଖି ଅନୁସନ୍ଧାନ କରୁ କରୁ ମୁହୂର୍ତ୍ତକ ପାଇଁ ଅନ୍ୟମନସ୍କ ହୋଇ ଯାଇଥିଲି । ସମସ୍ତଙ୍କ ମଧ୍ୟରେ ଏକ ଅସ୍ଥିର ଉତ୍ତେଜନା ଆଉ ଚିତ୍କାର, ''ମାର ମାର ଶଳାକୁ'', କିନ୍ତୁ ସେହି ଲୋକକୁ ସିଧାସଳଖ ମୁକାବିଲା କରିବାକୁ ସେହି ବାକ୍ୟବୀରମାନଙ୍କ ଭିତରେ ହଠାତ୍ ଯେ କେହି ଭରସୁ ନଥିଲେ ତାହା ମୁଁ ସ୍ପଷ୍ଟ ଅନୁଭବ କରି ପାରୁଥିଲି । କିଛିଟା ହୁଏତ ଆତଙ୍କିତ ହୋଇ ଉଠିଥିଲି । ଜୟନ୍ତ ଦାସ ! କିସସ୍ କ୍ରାଏଷ୍ଟଙ୍କର ସେହି ମହାନ୍ ଉକ୍ତି ସ୍ମରଣ କର ଏବେ—ଆଉ ଅନ୍ୟ ଗତି ନାହିଁ । କିଏ ଯଦି ତୁମକୁ ଗୋଟାଏ ଗାଲରେ ଚଟ୍‌କଣା ମାରେ ତାକୁ ଅନ୍ୟ ଗାଲଟି ସୁଶୀଳ ବାଳକ ପରି ଦେଖାଇ ଦବା ହିଁ ତୁମର ଏକମାତ୍ର କର୍ତ୍ତବ୍ୟ ।

କିନ୍ତୁ ସେ ଲୋକଟା କ'ଣ ଭାବିଲା କେଜାଣି । ବିରୋଧୀ ୟୁନିୟନ୍‌ର ସମସ୍ତ ଉତ୍ତେଜକ ବାକ୍ୟ ସତ୍ତ୍ୱେ ସେ' ହଠାତ୍ ଛିଣ୍ଡା ଯୋତା ପଟକ ଫିଙ୍ଗି ଦେଇ ପୁଣି ଫେରିଗଲା ଅଫିସ୍ ଭିତରକୁ । ଲୋକଟିର ଏତାଦୃଶ ଆଚରଣ ମୋ' ଅପେକ୍ଷା ସମବେତ ଶ୍ରମିକମାନଙ୍କୁ ଆଶ୍ଚର୍ଯ୍ୟ କରିଥିଲା ଅନେକ୍ ବେଶୀ । ତା'ର କାରଣ ସେମାନେ ସେହି ଲୋକଟିର ଅତୀତ କାର୍ଯ୍ୟକଳାପ ସମ୍ପର୍କରେ ଅବହିତ ଥିଲେ । ଏକ ଉତ୍ତେଜିତ ମୁହୂର୍ତ୍ତରେ ସେ ଖୋଦ୍ କମିସନ୍‌ର ସାହେବଙ୍କ ଅଫିସ ଭିତରେ ପଶି ତାଙ୍କୁ ତାଙ୍କର ଚଉକି ଉପରୁ ଝିଙ୍କି ଆଣିଥିଲା ବୋଲି—ସମ୍ବାଦ ମୁଁ ପରେ ପାଇଥିଲି ।

ଟେବୁଲ ଉପରୁ ଓହ୍ଲାଇ ପଡ଼ି ମୁଁ କିନ୍ତୁ ସ୍ପଷ୍ଟ ଘୋଷଣା କରି ଦେଇଥିଲି ଯେ ମୁଁ ଆଉ ପାଦରେ ଚାଲି ଚାଲି ଯାଇ ପାରିବି ନାହିଁ, ତୁମର ସଭା ବରଂ ଏଇଠାରେ କର । ସମବେତ କଣ୍ଠରେ ଚିତ୍କାର ଉଠିଲା, ''ରିକ୍ସା, ରିକ୍ସା'' । ହଠାତ୍ ଦୁଇଜଣ କୁଆଡୁ ଆଣି ଠିଆ କଲେ ଗୋଟାଏ 'ସାଇକଲ୍ ରିକ୍ସା' । ''ଉଠନ୍ତୁ ସାର୍ ରିକ୍ସା

ଉପରକୁ''–କିଏ କହିଲା । ଆଉ କିଏ କିଏ ଚିତ୍କାର କରୁଥାଆନ୍ତି, 'ଲାଇଟ୍, ଲାଇଟ୍, ଠିଆ ହୁଅନ୍ତୁ ସାର୍ ରିକ୍ସା ଉପରେ ।' କିନ୍ତୁ ରିକ୍ସାର ବାଡ଼ ନାହିଁ ଯେ ଧରିବି କାହାକୁ ? ଦୁଇଟା ନିଦା ପଞ୍ଝୁହଡା ମଣିଷ ରିକ୍ସାଟାକୁ ଯେପରି ଟାଣି ଟାଣି ନଉଛନ୍ତି, ସେଥିରେ ବେକରେ ତିନି ଚାରି କେଜି ଓଜନର ଗେଣ୍ଡୁ ଫୁଲ ମାଳର ଓଜନ ବୋହି ଭାରସାମ୍ୟ ରକ୍ଷା କରି ଠିଆ ହୋଇ ରହିବା କ'ଣ ସମ୍ଭବ ?

ଜୟନ୍ତ ଦାସ ! ଟ୍ରାଇ ଇଟ୍, ଟ୍ରାଇ ଇଟ୍, ନେତୃତ୍ୱ ମଧ ଗୋଟାଏ ବାଲାନ୍ ସିଂ ଫିଟ୍ । ଏଇ ଅମୀମାଂସିତ ମୁହୂର୍ତ୍ତରେ ଟିକିଏ ଅଧିକ ପ୍ରେରଣା ପାଇବା ପାଇଁ ପଛକୁ ଚାହିଁ ଦେଖିଲି ଠିକ୍ ଠିକ୍ ଅନୁଗମନ କରୁଛି ସେଇ ପିପୀଲିକାର ଧାଡ଼ି । ଗୋଟାଏ ବ୍ୟାଣ୍ଡ୍ ପାର୍ଟି ଇତିମଧ୍ୟରେ କୁଆଡୁ ଆସି ଜୁଟି ଗଲାଣି । ବ୍ୟାଣ୍ଡ୍ ପାର୍ଟିର ଫ୍ଲୁଟରେ ''ମେରା ନାମ୍ ରାଜୁ''ର ରାଗିଣୀ, ସ୍ଲୋଗାନ୍ ପରେ ସ୍ଲୋଗାନ୍ ଓ ସେଇ ଉନ୍ମତ୍ତ ନୃତ୍ୟ । ଆମ ୟୁନିୟନ୍ ଅଫିସ୍ ନିକଟ ହେଇ ଆସିଲା ପରା । ''ଏଇ ତ ସାର୍ ଆଗରେ ପାର୍ଟି ଅଫିସ୍''–କିଏ କହିଲା । ସାମ୍ନା ପଡ଼ିଆରେ ସଭାମଣ୍ଡପର ସାଜସଜ୍ଜାରୁ ତାହା ବେଶ୍ ଅନୁମାନ କରି ପାରୁଥିଲି । ଯାହାହଉ ସ୍ୱସ୍ତିର ଗୋଟାଏ ନିଃଶ୍ୱାସ ପକାଇ କହିଲି, ''ଏଇଥର ତମର ଯାତ୍ରାର ଶେଷ ହେଲା ଜୟନ୍ତ ଦାସ ।''

ସଭା ଆରମ୍ଭ ପୂର୍ବରୁ ସ୍ଥାନୀୟ ମାମ୍‌ଲତ୍‌କାରମାନେ ମାଇକ୍ ଆଗରେ ଠିଆହେଇ ମାଇକ୍ ଟେଷ୍ଟିଂ କରୁଛନ୍ତି–ଓ୍ୟାନ୍-ଟୁ-ଥ୍ରୀ । ମୁଁ ସେତେବେଳକୁ ପ୍ରାୟ ଊର୍ଦ୍ଧ୍ୱଶ୍ୱାସ । ମୁଁ ସଭାପତିର ଆସନରେ ସମାବିଷ୍ଟ ହେଲି । କିନ୍ତୁ ଆଶ୍ଚର୍ଯ୍ୟ ! ଅଳ୍ପ ପୂର୍ବେ ସେଇ ମାଦୁଳି ପିନ୍ଧା ଯେଉଁ କଳା ମୁଚ୍ ମୁଚ୍ ଲୋକଟା ପଟେ ଛିଣ୍ଡା ଯୋତା ଧରି ଆସିଥିଲା ମତେ ଆକ୍ରମଣ କରିବା ପାଇଁ, ହଠାତ୍ କୁଆଡୁ ଭିଡ଼ ଠେଲି ଆସି ମୋ ସାମ୍ନାରେ ରଖିଦେଲା ଗୋଟାଏ ଷ୍ଟେଟ୍ ଏକ୍ସପ୍ରେସ୍ ସିଗାରେଟ୍ ପ୍ୟାକେଟ୍ ଆଉ ଡିଆସିଲି । କେଉଁଠୁ ସ୍ମଗଲ୍ କରି ଆଣିଛି କେଜାଣି ? ମୁଁ ତା'କୁ କିଛି କହିବା ପୂର୍ବରୁ ସେ' ମୋ ସାମ୍ନାରେ ମୁହଁ ମାଡ଼ି ଲମ୍ବ ହେଇ ପଡ଼ିଯିବାକୁ ଯାଉଥିଲା, କିନ୍ତୁ ଆମ ୟୁନିୟନ୍‌ର କେତେଜଣ ମସ୍ତାନ୍ ତାକୁ ଶୂନ୍ୟେ ଶୂନ୍ୟେ ଟେକି ଧରି ବାହାରକୁ ନେଇଗଲେ, ''ଶଳା ! ଏଠିକି ପୁଣି ଆସିଛି ଆମ ସଭା ଭାଙ୍ଗିବା ପାଇଁ ।'' ସେଦିନର ସଭକାର୍ଯ୍ୟ ବେଶ୍ ନିର୍ଦ୍ୱନ୍ଦ୍ୱରେ ସମାପ୍ତ ହେଇଥିଲା ଏବଂ ଆମ ୟୁନିୟନ୍‌ର ଶ୍ରମିକମାନେ ପ୍ରତିପକ୍ଷର ଚକ୍ରାନ୍ତକୁ ପଣ୍ଡ କରି ଦେଇ ପାରିଛନ୍ତି ବୋଲି ବେଶ୍ ସନ୍ତୋଷ ପ୍ରକାଶ କରିଥିଲେ ।

x x x x

ଏହାର କେତେଦିନ ପରେ ପୁଲିସ୍ ସହିତ ଲାଗିଲା ଆମ ୟୁନିୟନ୍‌ର ଏକ ମୁହାଁମୁହିଁ ସଂଘର୍ଷ । ଲାଠିଚାର୍ଯ୍ୟ ପରେ ଆମର ଶହେ ସରିକି ଶ୍ରମିକ ଗୋଟାଏ

ଟ୍ରକ୍‌ରେ ଲଦା ହୋଇ ଗିରଫ ହେଇ ଆସିଥିଲେ ଥାନାକୁ । ହାଜତ୍‌ରେ ସେମାନଙ୍କ ପାଇଁ ସ୍ଥାନର ଏକାନ୍ତ ଅଭାବ । ଥାନା ଭିତରେ ତିଳ ଧାରଣ ପାଇଁ ସ୍ଥାନ ନାହିଁ । କନ୍‌କନିଆ ଡିସେମ୍ବର ମାସର ଶୀତ ରାତ୍ରି । ଶୀତର ପବନ ଚମଡ଼ାକୁ ଭେଦିଯାଉଛି ଛୁଞ୍ଚିପରି । ପୁଲିସ୍‌ର ନିର୍ଦ୍ଦେଶରେ ଟ୍ରକ୍ ଠାରୁ ଶହେ ଗଜ ଦୂରରେ ମୁଁ ଠିଆ ହେଇ ରହିଛି ପୁଲିସ୍ ସହିତ ମୁକାବିଲା ପାଇଁ । ମାଜିଷ୍ଟ୍ରେଟ୍ ଓ ଅନ୍ୟ ଅଫିସର୍‌ମାନେ ଯେ କେତେବେଳେ ଆସିବେ ତା'ର ସ୍ଥିରତା ନାହିଁ । ମୋର ଚାରିଆଡ଼େ ଘେରି ରହିଛି କେବଳ ଅନ୍ଧକାର ଓ ପୁଲିସ୍‌ର ଆତଙ୍କଗ୍ରସ୍ତ ଶୂନ୍ୟତା । କାରଖାନା ଅଞ୍ଚଳଟା ସାରା ଶହେ ଚଉରାଳିଶ ଧାରା ଜାରି କରାଯାଇଛି ଓ ତଦୁପରି କର୍ଫ୍ୟୁ । ଏପରି ଅବସ୍ଥା ଯେ ରାସ୍ତା ଉପରେ ଗୋଟିଏ ମାର୍ଜାର ଶିଶୁ ଦେଖିଲେ ମଧ୍ୟ ବେଖାପ୍ ମନେ ହେବ ।

ପଛରୁ କାହାର ଗୋଟାଏ ଉତପ୍ତ ଦୀର୍ଘଶ୍ୱାସରେ ମୁଁ ଚମକି ଉଠିଲି । ଝାପ୍‌ସା ଆଲୁଅରେ ଚାହିଁ ଯାହା ଦେଖିଲି ସେଥିରେ ମୋର ମେରୁଦଣ୍ଡ ଦେଇ ଗୋଟାଏ ବିଦ୍ୟୁତ୍‌ର ଶୀତ୍‌କାର ପହଁରିଗଲା । ସେଇ ଲୋକଟା, ସେଇ ମାଦୁଳୀ ପିନ୍ଧା କଳା ମୁଟ୍ ମୁଟ୍ ଲୋକଟା । ପ୍ରତିପକ୍ଷ ୟୁନିୟନ୍‌ର ସେଇ ଗୁଣ୍ଡା ଶ୍ରମିକ । ମୁହଁରେ ଝିଙ୍କ କାଠି ପରି ଅରମା ଦାଢ଼ି ସବୁ ଥୁଣ୍ଟା ଥୁଣ୍ଟା ହେଇ ବାହାରକୁ ବାହାରିଛି, ଆଉ ଫୁଲିଲା ଫୁଲିଲା ଛାତିର ମାଂସପେଶୀ ଗୁଡ଼ାକ ଉପରେ ଚକ୍ ଚକ୍ କରୁଚି ସେଇ ତମ୍ବା ମାଦୁଳି । ସେଦିନର ପ୍ରତିଶୋଧ ନବାକୁ ଆସିଛି ପରା ! ବର୍ତ୍ତମାନର ମୋର ଏହି ଅସହାୟ ଅବସ୍ଥାରେ କ'ଣ ମାରିବ ?

ସାର ! ଆଉ କ'ଣ କହିବ କହିବ ହେଇ ସେ' ଯେପରି ଛେପ ଢୋକିନେଲା । "ମାରିବ ତ ମାର, ଆଉ ତ କେହି ନାହିଁ ଦେଖୁଚ"—ମୁଁ ସାହସ ସଞ୍ଚୟ କରି କହିଲି । ସେ' ତା'ର କୁର୍ତ୍ତା ପକେଟ୍‌ରୁ ମୋ' ହାତରେ ଗୋଟାଏ ବୋତଲ ଧରେଇ ଦେଇ କହିଲା, "ସାର୍ ଏ ଥଣ୍ଡାରେ ଆଉ କେତେ ସମୟ ଏମିତି ଠିଆ ହୋଇ ରହିବେ; ସେଥିପାଇଁ ଆପଣଙ୍କ ପାଇଁ ଆଣିଚି ଗୋଟାଏ ବ୍ରାଣ୍ଡି ବୋତଲ । ଯଦି କାମରେ ଆସେ ।"

"କିନ୍ତୁ ତମେ ତ ସେମାନଙ୍କ ୟୁନିୟନ୍‌ର" ?—ପଚାରିଲି କୁଣ୍ଠିତ ଓ ସନ୍ଦିଗ୍ଧ କଣ୍ଠରେ ।

"ହେଲେ କ'ଣ ହେଲା ସାର୍, ମୁଁ ଯେତେହେଲେ ତ ଜଣେ ମଜଦୁର୍ । ସେମାନେ ତ ସମସ୍ତେ ପୁଲିସ୍ ଘେରରେ, ଆପଣଙ୍କ କଥା ବୁଝିବ କିଏ ?"

ବାସ୍ତବିକ୍ ସେଇ ମୁହୂର୍ତ୍ତରେ ମୋ'ର କ୍ଷୁଧା, ତୃଷ୍ଣାଓ ସର୍ବୋପରି କ୍ଳାନ୍ତି ଦୂର କରିବା ପାଇଁ ବ୍ରାଣ୍ଡିର ଅତ୍ୟନ୍ତ ପ୍ରୟୋଜନ ଥିଲା । ବୋତଲଟାକୁ ସାମାନ୍ୟ ଆଲୁଅକୁ

ଟେକିଧରି ସମୀକ୍ଷା କଲି । କୋନିଆକ୍—ନେପୋଲିୟନ୍ ବ୍ରାଣ୍ଡି । ଅଦ୍ୟାବଧି ପୃଥିବୀର ସର୍ବଶ୍ରେଷ୍ଠ ବ୍ରାଣ୍ଡି । କଷ୍ଟମ୍‌ସର ଫାଙ୍କ ଦେଇ କିଏ ତାକୁ ପଦାକୁ ଚାଲାଣ କରିଛି ନିଶ୍ଚୟ, ନ ହେଲେ ଏତେ ମୂଲ୍ୟବାନ୍ ବ୍ରାଣ୍ଡି ଜଣେ କୁଲିବସ୍ତିର ଶ୍ରମିକର ହାତରେ ବେମାନାନ ଦେଖାଯାଏ ।

''କିନ୍ତୁ ପିଇବି କିପରି ?''—ପଚାରିଲି । ''ରହନ୍ତୁ ସାର୍ ମୁଁ କେଉଁଠୁ ଗୋଟାଏ କିଛି ଯୋଗାଡ଼ କରେ ।''

କିଛିକ୍ଷଣ ପରେ କେଉଁଠୁ ଗୋଟାଏ ଡେମ୍ପ ଭଙ୍ଗା କପ୍ ଧରି ଆସି ପହଞ୍ଚିଲା କିଏ ଜାଣେ ।

ସେଇ ଅନ୍ଧକାର ଶୀତ ରାତ୍ରିର ନିର୍ଜନ ଆତଙ୍କଗ୍ରସ୍ତ ପରିବେଶ ଓ ତା'ର ଅଯାଚିତ ଆତିଥ୍ୟ ମୋତେ ତା'ର ବହୁ ନିକଟକୁ ନେଇ ଯାଇଥିଲା ।

ପଚାରିଲି, 'କିନ୍ତୁ ତୁମେ...ତୁମ ପାଇଁ କିଛି ଗୋଟାଏ ଆଣିଲ ନାହିଁ ।' ସେ ହଠାତ୍ ବସି ପଡ଼ି ମୋର ପାଦ ଧରି ପକେଇ କହିଲା, 'ସାର୍ ଆପଣଙ୍କ ସାଙ୍ଗରେ...ମୁଁ ଅଶିକ୍ଷିତ ବୋଲି କ'ଣ ମୋର ସ୍ଥାନ କାଚ ପାତ୍ର ଛାନ ନାହିଁ ।'

ତା'ପରେ ଲୋକଟା ଅଦୃଶ୍ୟ ହୋଇଗଲା ଅନ୍ଧକାର ଭିତରେ ।



# ଅକ୍ଟୋପସ୍‌ର କ୍ଷୁଧା

ଯେତେବେଳେ ସକାଳେ ଡୋଗ୍ରାର ସମସ୍ତ କର୍ମଚଞ୍ଚଳ ଜନତା ସହରର କେନ୍ଦ୍ରବିନ୍ଦୁକୁ ବା' ଅନ୍ୟାନ୍ୟ କାର୍ଯ୍ୟସ୍ଥଳୀକୁ ବ୍ୟସ୍ତ ହୋଇ ଛୁଟିବାକୁ ଆରମ୍ଭ କରନ୍ତି ସେତେବେଳେ ଦେଖାଯାଏ, ଧାରା ଶ୍ରାବଣର ଝିପି ଝିପି ବର୍ଷା ସତ୍ତ୍ୱେ ମଧ୍ୟ ଜଣେ ପଞ୍ଚାଶୋତ୍ତର ବୃଦ୍ଧ ଓ ଜଣେ ସାତ ଆଠ ବର୍ଷର ବାଳକ ଗୋଟିଏ ଛତା ତଳେ ହାତରେ ଦୁଇଟି ବନ୍‌ଶୀ ଖଡ଼ା ଧରି, ରାସ୍ତା ଉପରେ ପାଣି ଚବର ଚବର କରି ଚାଲିଛନ୍ତି ଜନତାର ବିପରୀତ ଦିଗରେ ।

ସେମାନଙ୍କର ଏହି ନିବିଡ଼ ବନ୍ଧୁତା ସମ୍ପର୍କରେ ସମଗ୍ର ସହରଟି ବିଦିତ ଥିବାରୁ ଏହାକୁ କେହି ଆଶ୍ଚର୍ଯ୍ୟ ମଣନ୍ତି ନାହିଁ । ସମସ୍ତେ ଯା' ମଧ୍ୟ ଜାଣନ୍ତି ସେମାନେ ବେଶୀ ଦୂର ଯିବେ ନାହିଁ । କେବଳ ଏହି କ୍ଷୁଦ୍ର ସହରର ଉପକଣ୍ଠରେ ଥିବା ପଦ୍ମ ପୋଖରୀ ପାଖରେ ପହଞ୍ଚି ତା'ର ହୁଡ଼ା ଉପରେ କାହିଁ କେ। 'ଜେଜେପା' ଅମଳରୁ ଠିଆ ହୋଇ ରହିଥିବା ବୁଢ଼ା ବରଗଛର ଲମ୍ବି ଆସିଥିବା ଶିଅ ଉପରେ ସେମାନଙ୍କର ଆସ୍ଥାନ ଜମେଇ ନେବେ ।

ସେମାନଙ୍କର ଗତିବିଧି ବା' କାର୍ଯ୍ୟକଳାପରେ କୌଣସି ବ୍ୟସ୍ତତା ବା ଉତ୍କଣ୍ଠାର ଲେଶ ମାତ୍ର ନଥାଏ । କାରଣ ଗଫୁର୍ ଅନେକ ଆଗରୁ ମାଛ ମାରିବାର ଦୁଇଟି ଅପରିହାର୍ଯ୍ୟ ଗୋପନ ସତ୍ୟ ପ୍ରକାଶ କରି ସାରିଥାଏ, ଗୋଟିଏ ହେଲା ଅଖଣ୍ଡ ନୀରବତା ଅବଲମ୍ବନ କରିବା ଓ ଅନ୍ୟଟି ହେଲା ସବୁ କାମ ଧୀର ମନ୍ଥର ଭାବରେ କରାଯିବା ଉଚିତ୍ । ସେ ପୁଣି କହେ କୋ'ଠି ପଢ଼ିଥିଲା କିଛି କାମ ତରବରରେ କରିବା ଅର୍ଥ ସଇତାନ୍‌ର ଚକର୍‌ରେ ପଡ଼ିବା ।

ତେଣୁ ସେମାନଙ୍କର ସମସ୍ତ ଆୟୋଜନର ଆରମ୍ଭ କରିବାକୁ ପଡ଼େ ଆସ୍ତେ ଆସ୍ତେ ସହି ସମାଳି । ପୋଖରୀ ପାଖରେ ପହଞ୍ଚି ସାରି ସେଦିନର ପାଣିପାଗ ଯଦି ଅନୁମତି ଦିଏ ତାହାହେଲେ ପ୍ରଥମେ ଛତାଟିକୁ ଆନୁଷ୍ଠାନିକ ଭାବରେ ବନ୍ଦ କରାଯାଏ ଓ ବନ୍ଧୁ ଚମ୍‌ବାବୁ ତତ୍‌କ୍ଷଣାତ୍ ଛତାଟିକୁ ଗଫୁର୍ ମିଆଁ ହାତରୁ ନେଇ ବରଗଛରୁ ଓହଳି ଆସିଥିବା ଅସଂଖ୍ୟ ଓହଳ ଭିତରୁ ଗୋଟିକରେ ସୁବିଧା ଜାଗା ଦେଖି ତାକୁ ଅଟକବନ୍ଦୀ କରିବାକୁ ପଡ଼େ । ଚମ୍‌ବାବୁ ଏ କାର୍ଯ୍ୟଟି କରିବାର ହେତୁ ଏହି ଯେ' ପାଣିପାଗର

ଆକସ୍ମିକ ପରିବର୍ତ୍ତନ ହେଲେ ଯେତେବେଳେ ଗଫୁର୍ ତେରେଣ୍ଡା ଉପରେ ମନୋନିବେଶ କରି ବସିଥିବ ସେତେବେଳେ ଟମ୍‌ବାବୁ ଯେପରି ତା'ର ହାତ ପାଆନ୍ତାରେ ଥିବା ଛତାଟିକୁ ପୁନର୍ବାର ଉଦ୍ଧାରକରି ଗଫୁର୍‌କୁ ସାହାଯ୍ୟ କରିପାରେ ।

ନୂଆ ନୂଆ ଟମ୍‌ବାବୁଙ୍କୁ ଗଫୁର୍‌ର ସମସ୍ତ ନିର୍ଦ୍ଦେଶକୁ ଅପେକ୍ଷା କରିବାକୁ ପଡୁଥିଲା, କିନ୍ତୁ ଆଜିକାଲି ଆଉ ତାହାର ପ୍ରୟୋଜନ ପଡ଼େ ନାହିଁ । ପୋଖରୀ କୂଳରେ ପହଞ୍ଚି ଓଦା ଜାଗା ଦେଖି ସାଙ୍ଗେ ସାଙ୍ଗେ ଟମ୍‌ବାବୁ ଜିଆ ଖୋଳିବାକୁ ଆରମ୍ଭ କରି ଦିଅନ୍ତି ଓ ମୃତ୍ତିକାର ବିଭିନ୍ନ ସ୍ତରରୁ ଆତ୍ମପ୍ରକାଶ କରୁଥିବା ଜିଆମାନଙ୍କୁ ଗୋଟିଏ ସଢ଼େଇରେ ସଂଗ୍ରହ କରିବାକୁ ଲାଗିପଡ଼ନ୍ତି । ଅତି ସରୁ ସରୁ ଜିଆମାନଙ୍କୁ ଛାଡ଼ିଦବାକୁ ପଡ଼େ, କାରଣ ଦ୍ୱିବିଧ—ସେମାନେ କଣ୍ଟାରେ ଗୁନ୍ଥା ହେଲା ବେଳେ ଅନେକ ଅସୁବିଧା ସୃଷ୍ଟି କରନ୍ତି ଓ ଆୟାସ ସ୍ୱୀକାର କରି ଗୁନ୍ଥାଗଲେ ମଧ ସେମାନେ ପତଳା ହେଉଥିବାରୁ ସେମାନଙ୍କର ତ୍ୱକ୍‌ର ଆବରଣ ଭେଦି ମାଛମାନେ ବନ୍‌ଶୀ କଣ୍ଟାଟିର ସମ୍ବାଦ ପାଇଯାଇ ତରକି ଯାଆନ୍ତି । ଆଉ ଥରେ ମାଛମାନେ ତରକି ଗଲେ କି ହୁରୁଡ଼ା ହେଇଗଲେ ସେମାନଙ୍କୁ ବାଗକୁ ଆଣିବା ମୁସ୍‌କିଲ ହେଇଯାଏ ।

ଅନ୍ୟ ଦିଗରେ ଖୁବ୍ ସ୍ଥୂଳକାୟ ଜିଆମାନଙ୍କୁ ମଧ ସଂଗ୍ରହ କରିବା ଅନୁଚିତ କାରଣ ସେମାନେ କଣ୍ଟାରୁ ଖସି ଯାଇ ପାରନ୍ତି, ତେଣୁ ମାଛ ଜିଆ ପାଇଁ କଣ୍ଟା ଗିଳିବାର ସମ୍ଭାବନା ଅତ୍ୟନ୍ତ କ୍ଷୀଣ । ତେଣୁ ତୃତୀୟ ପନ୍ଥା ହେଲା ଅତି ସରୁ ନୁହଁ ବା' ଅତି ମୋଟା ନୁହଁ ଜିଆମାନଙ୍କର ସଂଗ୍ରହ ।

ଏଇ ଟମ୍‌ବାବୁ ଯେତେବେଳେ ଖଣ୍ଡେ ଖାକୀ ହାଫ୍ ପ୍ୟାଣ୍ଟ୍ ଓ ଖଣ୍ଡେ ଧଳା ହାପ୍ ସାର୍ଟ ପିନ୍ଧି ଜିଆ ଆହରଣରେ ବ୍ୟସ୍ତ ଥାଏ ସେତେବେଳେ ଗଫୁର୍ ଚାଚା ତା'ର ଲୁଙ୍ଗିଟିକୁ ମଜଭୁତ୍ କରି ଅଣ୍ଟା ଉପରେ ଭିଡ଼ି ନେଇ ପାଣିକୁ ଚରେଇ ଫିଙ୍ଗୁ ଫିଙ୍ଗୁ ମଝିରେ ମଝିରେ ଆକାଶକୁ ଚାହିଁ ମନକୁ ମନ କହିଲା ପରି କହୁଥାଏ, ''ଆଜି ଖାଲି ଚୁନାଗୁଡ଼ାକ ଭାରି ହରକତ୍ କରିବେ ।'' ଏହା ଗତ ତିରିଶ ବର୍ଷ ଧରି ଗ୍ରୀଷ୍ମ, ଶୀତ, ବର୍ଷା ନିର୍ବିଶେଷରେ ନିରବଚ୍ଛିନ୍ନ ଭାବରେ ପ୍ରତ୍ୟହ ମାଛ ମାରୁ ଥିବା ବ୍ୟକ୍ତିଙ୍କର ସିଦ୍ଧ ବଚନ, ଏହା ଅନ୍ୟଥା ହବାର ନୁହଁ । ଟମ୍‌ବାବୁ ଜିଆ ଖୋଳୁ ଖୋଳୁ ଟିକିଏ ରହିଯାଇ ମୁହଁ ଫେରେଇ ପଚାରେ, ''କାହେ ଗଫୁର୍ ଚାଚା ?'' ଗଫୁର୍ କୁହେ, ''ଦେଖୁନ ଟମ୍‌ବାବୁ, ଏଇନେ ମେଘ ତ ଏଇନେ ଖରା, ଏ ପାଗରେ ଯେତେ ଚୁନା ପୁଁଟି ମାଛ ସେମାନେ ସବୁ ଭେଳା ଭେଳା ହେଇ ଉପରକୁ ଉଠିବେ ଆଉ ବଡ଼ ମାଛ ସବୁ ଚାଲିଯିବେ ଗହେରୀ ପାନି କୋ ।'' କଥାଟାକୁ ମାନସିକ ପର୍ଯ୍ୟାୟରେ ଗ୍ରହଣ କରି ସରି ଟମ୍‌ବାବୁ ପୁଣି ଜିଆ ଖୋଳାରେ ମନ ଦିଏ ।

ଯା’ ପରେ ପରେ ଗଫୁର୍ ଆରମ୍ଭ କରେ ପାଣିର ଗଭୀରତା ମାପି ସୂତା ଉପରେ ମୟୂର ପକ୍ଷୀ ତେରେଣ୍ଡାଟାର ସ୍ଥିତି ନିର୍ଣ୍ଣୟ କରିବା । ବହୁ ସମୟ ଧରି ସେ’ କଣ୍ଟା ସହିତ ସୂତାକୁ ଛାଟି ପାଣି ଭିତରକୁ ଲମ୍ୱେଇ ଦିଏ ଓ ପୁଣି କାଢ଼ି ଆଣି ତେରେଣ୍ଡା ଓ ତତ୍‌ସଂଲଗ୍ନ କ୍ଷୁଦ୍ର ସୀସକ ଖଣ୍ଡକୁ କେତେବେଳେ ଆଗକୁ ଆଣେ, ପୁଣି କେତେବେଳେ ପଛକୁ ନିଏ । ଏହିପରି ଆଗକୁ ପଛକୁ ସେ’ କ୍ରମାଗତ ଭାବରେ କରି ଚାଲିଥାଏ ଅନେକ ସମୟ ଧରି । ଏହି ଅନୁପାତ କେବଳ ଗୋଟିଏ ବନ୍‌ଶୀ ଖଡ଼ା ପାଇଁ ନୁହଁ; ଦୁଇଟା ପାଇଁ କରିବାକୁ ପଡ଼ିବ । ପାଣିରେ ସୂତା ଫିଙ୍ଗ ଓ ଯଦି ତେରେଣ୍ଡା ବୁଡ଼ିଗଲା ତାହା ହେଲେ ତା’କୁ ପଛକୁ ଟାଣ, ଯଦି ଭାସିଲା ତାହାହେଲେ ତା’କୁ ଆସ୍ତେ ଆସ୍ତେ ଆଗକୁ ନିଅ, ପାଣିର ଗଭୀରତା ଅନୁଯାୟୀ ତେରେଣ୍ଡାର ଆନୁପାତିକ ଅବସ୍ଥିତି ସମ୍ପୂର୍ଣ୍ଣ ନିର୍ଭୁଲ୍ ହେବା ପର୍ଯ୍ୟନ୍ତ । ଓଃ! ଆଉ ଟିକିଏ ଉପରକୁ, ପୁଣି କେତେବେଳେ ଆଉ ଟିକିଏ ତଳକୁ ଯେପରି ଏହାର ଶେଷ ନାହିଁ ।

ଉତ୍ତର ଜୀବନରେ ଟମ୍‌ବାବୁ ଯେତେବେଳେ ବିଦେଶକୁ ଚିଙ୍ଗୁଡ଼ି ରପ୍ତାନୀ କରୁଥିବା ଏକ ପ୍ରଚୁର ବିତ୍ତଶାଳୀ କମ୍ପାନୀ ‘ଇଷ୍ଟ କୋଷ୍ଟ ଫିସିଙ୍ଗ୍’ର ମ୍ୟାନେଜିଂ ଡାଇରେକ୍ଟର ଓ ସେ’ ପ୍ରଦେଶର ଚେମ୍ବର୍ ଅଫ୍ କମର୍ସର ପ୍ରେସିଡ଼େଣ୍ଟ ଭାବରେ କୌଣସି ସଙ୍ଗୀତ ଆସରକୁ ବିଶିଷ୍ଟ ଅତିଥି ଭାବରେ ନିମନ୍ତ୍ରିତ ହୋଇ ଯାଆନ୍ତି । ସେତେବେଳେ ସେଠି ତାବଲ୍ ଚି ସୀତାର୍ ଓ ବେହେଲା ବାଦକମାନେ ସେମାନଙ୍କର ବାଦ୍ୟ ଯନ୍ତ୍ରଗୁଡ଼ିକୁ ସମତାନରେ ବାନ୍ଧିବାକୁ ଯାଇ ଯେଉଁ ବିଳମ୍ବିତ ପୌନଃପୌନିକତାର ସୂତ୍ରପାତ କରିଥାଆନ୍ତି, ତାହା ତଦାନୀନ୍ତନ ଚିନ୍ମୟ ମହାନ୍ତିଙ୍କୁ ମୁହୂର୍ତ୍ତକ ମଧ୍ୟରେ ଏଇ ସୁଦୂର ଅତୀତର ଗଫୁର୍ ଚାଚା ପାଇଁ ପାଣି ମାପି ତେରେଣ୍ଡା ନିର୍ଦ୍ଧିଷ୍ଟ କରିବାର ସ୍ମୃତିଟିକୁ ସ୍ମରଣ କରାଇ ଦେଇଥାଏ । ଗଫୁର୍ ଚାଚା କଥା ସ୍ମରଣ କରି ଚିନ୍ମୟ ମହାନ୍ତିଙ୍କର ମୁହଁରେ ଉଇଁ ଆସୁଥିବା ଗୋଟିଏ ଛୋଟ ସ୍ମିତ ହସଟିଏ ପ୍ରକଟିତ ହେବା ପୂର୍ବରୁ ଏକ ପ୍ରଶାନ୍ତ ଔଦାସୀନ୍ୟ ଭିତରେ ଲୁପ୍ତ ହୋଇଯାଏ, ଯେପରିଆକାଶର କଳା ମେଘ ଛୋଟ ଗୋଟିଏ ତାରାକୁ ଟୁପ୍ କରି ଗିଳି ଦେଲା ।

ପ୍ରାଥମିକ ଆୟୋଜନ ସମାପ୍ତ ହେଲେ ଗଫୁର୍ ଚାଚା ଦୁଇଟା ବନ୍‌ଶୀ ଖଡ଼ାରେ ଜିଆ ଗୁନ୍ଥିବାକୁ ଆରମ୍ଭ କରେ । ବେଳେ ବେଳେ ସେ ନିଜେ କରେ ନ ହେଲେ କେତେବେଳେ ଟମ୍‌ବାବୁ ତାକୁ ସାହାଯ୍ୟ କରିବାକୁ ଆଗେଇ ଆସେ । ଜିଆ ଗୁନ୍ଥି ସାରି ଟମ୍‌ବାବୁ ଗଫୁର୍‌ର ସମ୍ମତି ପାଇଁ ଅପେକ୍ଷା କରେ କାରଣ ଜିଆ ଗୁନ୍ଥିବାଟା ଗୋଟାଏ ମାମୁଲି କାମ ନୁହଁ । ବେଳେ ବେଳେ ଟମ୍‌ବାବୁର ଜିଆ ଗୁନ୍ଥାଟିକୁ ଗଫୁର୍ ଅକ୍ଷତ ପାସ୍ କରିଦିଏ ନ ହେଲେ କେତେବେଳେ କେତେବେଳେ ତା’ ଉପରେ ତା’ର ଆଙ୍ଗୁଠିରେ ଟିକିଏ ତାରକସୀ କାମ କରି ଦେଖେଇ ଦିଏ । ଏଥର ସବୁ ପ୍ରସ୍ତୁତ । ଗୋଟାଏ ବନ୍‌ଶୀ

ଖଡ଼ାକୁ ଗଫୁର୍ ଡାହାଣ ଗୋଡ଼ ତଳେ ଚାପି ଧରେ ଓ ଅନ୍ୟଟିକୁ ଡାହାଣ ହାତରେ ଧରି ଗଭୀର ଏକାଗ୍ରତାର ସହିତ ଦୁଇଟି ଭାସମାନ ତେରେଣ୍ଡାକୁ ଲକ୍ଷ୍ୟ କରି ବସିରହେ ।

କିନ୍ତୁ ଯେତେବେଳେ ସୂର୍ଯ୍ୟ ଆସି ପ୍ରାୟ ମୁଣ୍ଡ ଉପରେ । ଛୁଟି ଥିଲେ ବି ଟମ୍ ବାବୁର ସମୟ ନାହିଁ, କାରଣ ତାକୁ ଘରେ ଅପେକ୍ଷା କରି ରହିଥିବେ ତା'ର ମା' ଓ ତା'ର ବଂଶ ଆଭିଜାତ୍ୟ । ବାରମ୍ବାର ବାରଣ ସତ୍ତ୍ୱେ ମଧ୍ୟ ଟମ୍‌ବାବୁ ସେ ଆଭିଜାତ୍ୟର କଠୋର ଅର୍ଗଳି ଅତିକ୍ରମ କରି ଚାଲି ଆସିଛି ଗଫୁର୍ ମିଆଁ ସହିତ ମାଛ ମାରିବାକୁ । ସେ ପରିବାରରେ ମାଛ ମାରିବା ଗୋଟାଏ ଅପରାଧ ଆଉ ତା' ପୁଣି ଗୋଟାଏ ଲକ୍ଷ୍ମୀଛଡ଼ା ପଠାଣ ସହିତ । ଟମ୍‌ବାବୁ ଦିନେ ଦିନେ ଘରକୁ ଆସି ତା'ର ବାପାଙ୍କୁ କହେ, ମାଛ ମାରିବାର ମଜା କଥା, କିନ୍ତୁ ଆଶ୍ଚର୍ଯ୍ୟ ହୁଏ ଯେ, ଏତେ ନିରପରାଧ ଆନନ୍ଦ ପାଇଁ ତାକୁ କାହିଁକି ବାରମ୍ବାର ବାରଣ କରାଯାଏ ।

ଟମ୍‌ବାବୁ ଧ୍ୟାନ ଗମ୍ଭୀର ମୂର୍ତ୍ତିଟାକୁ କୁହେ, ''ଚାଚା ମୁଁ ଆସୁଛି ।'' ଗଫୁର୍ ନୀରବରେ ମୁଣ୍ଡ ହଲେଇ ସମ୍ମତି ଜ୍ଞାପନ କରେ ଓ ତା' ପରେ ଟମ୍‌ବାବୁ ସିଧା ଦଉଡ଼େ ଘର ମୁହାଁ । ଗଛ, ବିଲ, ବସ୍ତୀ ସବୁ ଅତିକ୍ରମ କରି ଯେତେବେଳେ ଟମ୍‌ବାବୁ ଆସି ଘରେ ପହଞ୍ଚେ ତା'କୁ ଅପେକ୍ଷା କରି ନୀରବରେ ଇତଃସ୍ତତ ପଦଚାରଣ କରୁଥାଆନ୍ତି ତା'ର ବାପା ଏକ ମୂର୍ତ୍ତିମନ୍ତ ଶାସନ ପରି । ''କ'ଣ ଘରେ ଖେଳନା ନାହିଁ ଖେଳିବାକୁ, ଟେପ୍‌ରେକର୍ଡ୍ର ନାହିଁ ଶୁଣିବାକୁ, ଇନ୍‌ଡୋର୍ ଗେମ୍‌ସ୍ ନାହିଁ....ତାହାହେଲେ କାହିଁକି ସବୁବେଳେ ମାଛ ମରା ଚାଲିଛି, କ'ଣ ମିଳୁଛି ସେ' ମାଛ ଧରାରୁ ?'' ଟମ୍ ବାବୁ ଯା'ର କୌଣସି ଉତ୍ତର ଦିଏ ନାହିଁ, କାରଣ ସିଏ ସେଇ ଗୋଟାଏ କଥା ଆଉ କେତେଥର ବା' କହିବ ? ଏବଂ ଠିକ୍ ସେହି ମୂହୂର୍ତ୍ତରେ ସେ ନିଜେ ଜାଣେ ଯେ, ଖିଆପିଆ ସରିଲେ ଟିକିଏ ସୁଯୋଗ ପାଇଲେ ସେ ଦୌଡ଼ିବ ପୁଣି ପଦ୍ମ ପୋଖରୀ କୂଳକୁ, ଗଫୁର୍ ଚାଚା ପାଖକୁ ।

ପୁଣି ଯେତେବେଳେ ଟମ୍ ବାବୁ ଆସି ଗଫୁର୍ ପାଖରେ ପହଞ୍ଚେ ସେତେବେଳକୁ ଖରା ନଇଁ ଆସିଥାଏ । ଆଉ ଗଫୁର୍ ଚାଚାର ଚୁପ୍‌ଚାପ୍ ଛାଇଟା ମଧ୍ୟ ଅନେକ ଲମ୍ବା ହୋଇଯାଇଥାଏ । ଟମ୍ ବାବୁ ଆସି ଆଗ ଖାଳେଇଟାକୁ ଯାଞ୍ଚ୍ କରେ କିନ୍ତୁ ଯାହା କିଛି ଚୁନା ମାଛ ତା' ଦୁଇଶହ କି ତିନିଶହ ଗ୍ରାମ ହବ । କିନ୍ତୁ ସେଥିପାଇଁ ଗଫୁର୍ ଚାଚାର ଦୁଃଖ ନାହିଁ ଏତେଟିକେ, ସେ ସେମିତି ବସି ରହିଛି । ଗଫୁର୍‌ର ଏହି ନିର୍ଲିପ୍ତ ନୀରବ ଧ୍ୟାନଗମ୍ଭୀର ମୁଦ୍ରାଟିକୁ ଦେଖିବାକୁ ଭାରି ଭଲ ଲାଗେ ଟମ୍ ବାବୁକୁ । ବିଶେଷ କରି ଯେତେବେଳେ ସଂଧ୍ୟା ହେଇଆସେ ଓ ପଶ୍ଚିମ ଆକାଶ ହେଇଯାଏ ଗୋଟାଏ ଅଳଣର ସମୁଦ୍ର ଓ ସେହି ରକ୍ତିମ ପୃଷ୍ଠଭୂମିରେ ଗଫୁର୍‌ର ସମଗ୍ର ଚେହେରା ହେଇଯାଏ

ଗୋଟାଏ କଳା ସିଲ୍‌ହୁଟ୍ ଛବି, ଏପରିକି ତା'ର ଚିବୁକ ତଳକୁ ଓହଳି ଆସିଥିବା ଶ୍ୱେତ ଶ୍ମଶ୍ରୁଗୁଚ୍ଛ ପର୍ଯ୍ୟନ୍ତ କୃଷ୍ଣ ରଙ୍ଗରେ ରଞ୍ଜିତ ହେଇଉଠେ, ଯାହାକି ମାତ୍ର ସାମାନ୍ୟ ଅବ୍ୟବହିତ ପୂର୍ବରୁ ରେଖାଙ୍କିତ ହେଇଥିଲା ଅସ୍ତ ସୂର୍ଯ୍ୟର କୋମଳ ଲୋହିତ କିରଣରେ, ଜାଫ୍ରାନ୍‌ର ଭ୍ରମ ସୃଷ୍ଟି କରି ।

ସବୁ ଚୁପ୍ ଚାପ୍ । ପାଣି ସବୁ ଯେମିତି ଜମାଟ ବାନ୍ଧି ଯାଇଛି । ପୃଥିବୀର ଅନ୍ୟ ଏକ ଦିନ ଅସ୍ତ ଯାଉଛି । କିନ୍ତୁ ଏଇ ଅଖଣ୍ଡ ନୀରବତାଓ ସ୍ଥିତାବସ୍ଥାକୁ ମୁହୂର୍ତ୍ତକରେ ଫେରିଆସେ ପ୍ରାଣର ଚଞ୍ଚଳତା ଯେତେବେଳେ ଅନତି ଦୂରର ମସ୍‌ଜିଦ୍‌ର ଚୂଡ଼ାରୁ ମୁଆଜିନ୍‌ର ଗୁରୁ ଗମ୍ଭୀର ଧ୍ୱନି ତୁହାଇ ତୁହାଇ ଆଜାନ୍ ଡାକେ—ୟା ଆଲ୍ଲା ହୋ ଅକବର୍ । ସେ' ଧ୍ୱନି ଗଫୁର୍‌କୁ ଅତିକ୍ରମ କରି ଦିଗ୍‌ବଳୟକୁ ପ୍ରସରି ଯାଏ । ଗଫୁର୍ ଚାଚାର ମାଛ ମରାର ପର୍ବ ସେଦିନ ପାଇଁ ସମାପ୍ତ ହୁଏ ଓ ସେ' କାଳ ବିଳମ୍ବ ନକରି ମୁଣ୍ଡରେ ଖଣ୍ଡେ ରୁମାଲ୍ ପକେଇ ଦେଇ, ଜାନୁପାତ ପୂର୍ବକ ନମାଜ୍ ପଢ଼େ ଯାହାର ଏକମାତ୍ର ପ୍ରମାଣ ଗଫୁର୍‌ର ଓଷ୍ଠର ନୀରବ ଅଥଚ ମୃଦୁ ସ୍ଫୁରଣ ।

ସେଦିନ ସେମାନଙ୍କର ବୟସ ଥିଲା ଷାଠିଏ । ଗଫୁର୍‌ର ଗୋଟିଏ ଦିନ ହଜିଗଲା ଓ ହେଇପାରେ ଟମ୍ ବାବୁ ପାଇଁ ଆଉ ଗୋଟିଏ ଦିନ ଆସିବାର ସଙ୍କେତ ।

ଦିନେ ଦିନେ ସମୟ ଆଉ ସୁଯୋଗ ଯଦି ଥାଏ ତାହାହେଲେ ଟମ୍‌ବାବୁ ଗଫୁର୍ ଚାଚା ପାଦ ତଳୁ ବନ୍‌ଶୀ ଖଡ଼ାଟା ଟାଣିନେଇ ବସେ । ସେ ଖଡ଼ାଟାରେ ଗୋଟାଏ ମସ୍ତବଡ଼ କଣ୍ଟା ତିନି-ଚାରି ସେରିଆ ରୋହି, ଭାକୁର ବା ବାଳିଆ ଧରିବା ପାଇଁ । ଟମ୍ ବାବୁର ତେରେଣ୍ଡାରେ ଖାଲି ଅସଂଖ୍ୟ କମ୍ପନ ସୃଷ୍ଟି ହୁଏ ଓ ଖୋପରେ ଦେଖାଯାଏ ଯେ' ସଫରୀ ବା ତତ୍‌ତୁଲ୍ୟ ବା ତଦ୍‌ନିକୃଷ୍ଟ ମାଛମାନେ ଜିଆଟିକୁ ଖୁମ୍ପି ଖୁମ୍ପି ନିଃଶେଷ କରି ପଳାୟନ କରିଛନ୍ତି । କିନ୍ତୁ ଗଫୁର୍ ଚାଚାର ବନ୍‌ଶୀ ଖଡ଼ାରେ ବାରମ୍ବାର ଉତ୍ତୋଳିତ ହେଉଥାଆନ୍ତି, କେତେବେଳେ ରଜତ୍-ଶୁଭ୍ର କେରାଣ୍ଡି ମାଛ ଓ କେବେ କେବେ ମୁଗୁନି ପଥର ପରି ଘୋର କୃଷ୍ଣବର୍ଣ୍ଣ ମାଗୁର, ରଟା ଓ ଚେଙ୍ଗ ପ୍ରଭୃତି ମାଛ ।

ବୀତସ୍ପୃହ ଟମ୍ ବାବୁକୁ ଉତ୍ସାହ ଦବା ପାଇଁ ଗଫୁର ଚାଚା କୁହେ, ''ସବୁ କିସ୍‌ମତ୍ ବାବୁ ସବୁ କିସ୍‌ମତ୍—କିନ୍ତୁ ୟାଦ୍ ରଖ ଟମ୍ ବାବୁ ଦିନେ ନା ଦିନେ ଗୋଟାଏ ଏମିତି ମାଛ ଧରିବି ଯେ' ସହର ସାରା ଲୋକ ମାଛଟାକୁ ଦେଖିବା ପାଇଁ ଆସି ଜମା ହେଇଯିବେ ।'' ଟମ୍ ବାବୁର କଳ୍ପନା ପ୍ରବଣ ମାନସ ପଟରେ ସେହି ସୁଦିନର ଦୃଶ୍ୟ ଭାସିଉଠେ—ହଁ, ଜରୁର୍ ଦିନେ ନାଁ ଦିନେ ଧରାହବ ଗୋଟାଏ ମାଛ ପରି ମାଛ ! ଆଉ ସେଦିନର ଗୌରବରେ ତ ଟମ୍ ବାବୁ ପୁରାପୁରି ଆଠପଣ ଭାଗୀଦାର୍ ।

ସେଦିନ ସେହି ହାତକୁ ନଆସିଥିବା ବଡ଼ ମାଛ କଥା କଥାବାର୍ତ୍ତା ହେଇ ହେଇ ପାଦ ଗଣି ଗଣି ଘରକୁ ଫେରୁଥିଲେ ଗଫୁର୍ ଆଉ ଟମ୍‌ବାବୁ । ଯଦି ହଠାତ୍ ଟମ୍‌ବାବୁ

ବନ୍‌ଶୀ ଖଡ଼ା ଧରିଥିବା ବେଳେ ସେଇ ମାଛଟା ଖୋପ ଗିଳେ ତାହା ହେଲେ କ'ଣ କରାଯିବ ? ଅସୁବିଧା ବା କ'ଣ ପାଖରେ ତ ଗଫୁର୍ ଚାଚା ଥିବ, ସେ କ'ଣ ମାଛଟାକୁ ଆୟତ୍ତ କରି ପାରିବ ନାହିଁ ? ମାଛ ଲାଗୁନାହିଁ ଲାଗୁନାହିଁ, ସିଏ କିସ୍‌ମତ୍ କି କଥା, କିନ୍ତୁ ମାଛ ଥୋପ ଗିଳି ଗଫୁର୍ ହାତରୁ ଖସିଯାଇ ନାହିଁ କେବେ । ଆଜି ନାହିଁ, କିନ୍ତୁ ଦିନେ ତ ପୁଣି ଗଫୁର୍ ଚାଚାର ହୁଇଲ୍ ବନ୍‌ସୀ ଥିଲା ଆଉ ସେଥିରେ କେତେ ବଡ଼ ବଡ଼ ମାଛ ଲାଗିଛନ୍ତି । ଗଫୁର୍ ସୂତା ଛାଡ଼ିଛି—ନଉ ଶଳା କେତେ ସୂତା ନଉଚି, ପୁଣି ତାକୁ ଶେଷରେ ଖେଳେଇ ଖେଳେଇ କୂଳକୁ ଆଣି କାବୁ କରିଛି । ଛ'— ସେରିଆ ଭାକୁର । ଗୋଟାଏ ମାଛକୁ ଖେଳେଇ ଖେଳେଇ କୂଳକୁ ଆଣିବାକୁ ଗଫୁର୍‌କୁ ଲାଗିଛି ବଇରା ତିନି ଘଣ୍ଟା ।

କଥା ଶୁଣୁ ଶୁଣୁ ଟମ୍ ବାବୁର ଆଖି ବଡ଼ ବଡ଼ ହେଇ ଯାଇଛି । ଅନେକ ପଇସା ଥିବ ଗଫୁର୍ ଚାଚାର । ଜୀବନରେ କେତେ ନାଁ କେତେ ରୋହୀ, ଭାକୁର ମାଛ ମାରିଛି ଗଫୁର୍ ଚାଚା । ମାଛର ଖାଳେଇ ଧରି ଲମ୍ବା ଗଫୁର୍ ସହିତ ଫେରୁଥାଏ ଟମ୍ ବାବୁ । କୋ'ଠି କୋ'ଠି ଗୋଟାଏ ଦୁଇଟା ଆଲୁଅ ଜଳି ଉଠିଲାଣି । ଏମିତି ଫେରିଲା ବେଳେ ଗଫୁର୍ ଅନେକ ଥର କହିଛି, ''ଟମ୍ ବାବୁ, ବଢ଼ିଆ ମଞ୍ଜି କଣ୍ଟିଆ ପତିରି, ଆଜି ଦି'ଟା ଘରକୁ ନେଇଯାଅ—ମାଛ ପେଟରେ ମଞ୍ଜି ଖୁନ୍ଦି ହେଇଛି ଖାଲି ।'' ଟମ୍‌ବାବୁ ଗଳ୍ପନା କରିପାରେ ନାହିଁ ଯେ ସେ' ଗଫୁର୍‌ର ମାଛ ଖାଳେଇରେ ମାଛ ନେଇ ଘରକୁ ଆସି କହିବ ଯେ' ଗଫୁର୍ ଚାଚା ଆମ ଘରକୁ ମାଛ ପଠେଇଛି । ଟମ୍ ବାବୁ ନିଜେ ବୁଝିପାରେ ନାହିଁ ତାଙ୍କ ଘରର ଅଭାବଟା କେଉଁଠି ଯାହା ପାଇଁ ଜଣେ ଲୋକର ସାମାନ୍ୟ ଉପହାର ମଧ୍ୟ ଗ୍ରହଣ କରାଯାଇ ପାରେ ନାଁ । ଟମ୍ ବାବୁ ଆତଙ୍କିତ ହେଇ ଉଠି କହେ, ''ନାହିଁ, ଥାଉ ଗଫୁର୍ ଚାଚା ରାତିରେ ଆମ ଘରେ ମାଛ ହୁଏ ନାହିଁ ।''

ଗଫୁର୍‌ର ଘର ପାଖରେ ଟମ୍ ବାବୁ ମାଛ ଖାଳେଇକୁ ବାରଣ୍ଡାରେ ଥୋଇଦିଏ । କେବେ କେବେ ଟିକିଏ ସମୟ ଅବଶିଷ୍ଟ ଥାଏ—ଆଉ ଟିକିଏ ପରେ ଟମ୍ ବାବୁ ଘରକୁ ଫେରିଲେ ଚଳିବ । ଗଫୁର୍ ପାଖ ଦୋକାନରୁ ଟିକିଏ ଚା' ଆଣି ମୁହଁରେ ଲଗାଏ । ଟମ୍‌ବାବୁ କହେ ''ଚାଚା ତମର ଆଉ କିଏ ସବୁ ଅଛନ୍ତି ?'' ଗଫୁର୍ ହସେ ମଳିଚିଆ ହସ, କୁହେ, ''ମେରା କୋଇ ନେହିଁ ଟମ୍ ବାବୁ, ସ୍ରିଫ୍ ଆଲ୍ଲା ହାଏ ।'' ପୁଣି ସେଇ ଏକା କଥାକୁ ଦୋହରେଇ ପଚାରେ ଟମ୍ ବାବୁ, ''ତମର କ'ଣ କେହି-କେହି-କେହି ନାହିଁ ? ସଂକ୍ଷିପ୍ତ ଉତ୍ତର ଦିଏ ଗଫୁର୍, 'ନାଁ' କେହି ନାହିଁ । କେହି—କେହି ନାହିଁ ।''

ଗଫୁର୍ ତା'ପରେ ଘର ଭିତରକୁ ଯାଇ ହାରିକିନ୍ ଲଗାଏ । ଏଇ ହାରିକିନ୍ ଲଗେଇବାଟା ଅତି କରୁଣ ଲାଗେ ଟମ୍ ବାବୁକୁ କାରଣ ଲଣ୍ଠନର ମଳିନ ଆଲୁଅ ଗଫୁର୍‌ର ଦାରିଦ୍ର୍ୟକୁ ପ୍ରକଟିତ କରେ । କେବଳ ଖଣ୍ଡେ ଦଉଡ଼ିଆ ଖଟ, ଗୋଟାଏ

ମାଠିଆ ଆଉ କଳେଇ କରା ଖଣ୍ଡେ ପ୍ଲେଟ୍ ଆଉ ଗିଲାସକୁ ଛାଡ଼ି ଦେଲେ ଆଉ କିଛି ନାହିଁ। ସେଇ ବଖରାଏ ଘରର ଗୋଟାଏ କ'ଣକୁ ଗୋଟାଏ ଛୋଟ ଦୋପଖା ଚୁଲୀ କେବଳ । ଥରେ ପଚାରିଲା ଟମ୍‌ବାବୁ, ''ତମର ଗଫୁର୍ ଚାଚା ଆଉ କିଛି ଜିନିଷ ନାହିଁ ?'' ଗଫୁର୍ ସେଦିନ ବି ସେହିପରି ଉଦାସୀନ ଭଙ୍ଗୀରେ ଜବାବ୍ ଦେଇଥିଲା, ''ମେରେ କୁଛ୍ ନେହିଁ, ମେ ଫକୀର୍ ହୁଁ ।'' ସେଦିନ ଅନେକ ଦୁଃଖ ପାଇ ଘରକୁ ଫେରିଥିଲା ଟମ୍ ବାବୁ, ଗଫୁର୍ ପାଇଁ ମଧ୍ୟ ପ୍ରଚୁର ସହାନୁଭୂତି ହେଇଥିଲା ତା'ର ଶିଶୁ ମନରେ । ଆହା ! ବିଚରାର କିଛି ନାହିଁ, ସେଥିପାଇଁ ତାକୁ ଖରା ବର୍ଷା ଶୀତରେ ପ୍ରତିଦିନ ମାଛ ମାରିବାକୁ ଯିବାକୁ ପଡୁଛି । ଅଥଚ ଟମ୍ ବାବୁର ଘରେ ଏତେ ଆସ୍‌ବାବ୍ ପତ୍ର, ଏତେ ଲୁଗାପଟା ଓ ଏତେ କ୍ରୋକରୀ କଟ୍‌ଲେରୀର ସମ୍ଭାର ।

ସମୟ ବହି ଚାଲିଛି ନିଦାଘ ଗ୍ରୀଷ୍ମରେ, ପ୍ରଚଣ୍ଡ ଶୀତରେ ଓ ମଳୟିତ ବସନ୍ତରେ । ଦୁଇ ବନ୍ଧୁଙ୍କର ଏକତ୍ର ମାଛ ମାରିବାର ସମୟ ମଧ୍ୟ ସଂକ୍ଷିପ୍ତ ହେଇ ଆସୁଛି । ପାଠ୍ୟ ପୁସ୍ତକର ଚାପରେ, ସମାଜର ଅନୁଶାସନର ଦାବୀରେ ଓ ସର୍ବୋପରି ଟମ୍ ବାବୁଙ୍କର ପରିବାରର ନିଷେଧାଜ୍ଞାରେ ଟମ୍ ବାବୁଙ୍କର ବନ୍ଧୁ ବିଳାସ ଅତି ନିଷ୍ଠୁର ଭାବରେ ବିଡ଼ମ୍ବିତ ହୋଇଛି । ଟମ୍ ବାବୁ ଟମ୍‌ବାବୁ ଓ ଗଫୁର୍ ମିଆଁ ଗଫୁର୍ ମିଆଁ—ଏ ସତ୍ୟ ଗଫୁର୍ ବୁଝିଥିଲେ ମଧ୍ୟ ଟମ୍‌ବାବୁ ବୁଝିବାକୁ ସମୟ ଲାଗିଥିଲା । ଆଉ ତା'ଛଡ଼ା ବର୍ତ୍ତମାନ ଟମ୍‌ବାବୁ ଆଉ ଟମ୍‌ବାବୁ ହେଇ ନାହିଁ, ସେ' ଧୀରେ ଧୀରେ ଚିନ୍ମୟରେ ରୂପାନ୍ତରିତ ହେଇଯାଇଛି, ତା' ନହେଲେ ତାକୁ ଚିନ୍ମୟ ନାଁରେ ସମସ୍ତେ ଡାକୁଥାନ୍ତେ କାହିଁକି ? ସ୍କୁଲ୍‌ର ଉପସ୍ଥାନ ବହିରେ ତା' ନାଁ ଚିନ୍ମୟ ମହାନ୍ତି ଲେଖା ହେଇଥାଆନ୍ତା କାହିଁକି ତମ ନାଁ ଚିନ୍ମୟ ନାଁ—ମତେ ଏଇ ଚିନ୍ମୟ ନାଁ ଟା ଭାରି ଚମତ୍କାର ଲାଗେ । କିନ୍ତୁ ଏ ସମସ୍ତ ସତ୍ତ୍ୱେ ମଧ୍ୟ ଚିନ୍ମୟ ମଝିରେ ମଝିରେ ରବିବାର ବା' ଅନ୍ୟ କୌଣସି ଛୁଟି ଦିନ ଦେଖି ଚାଲିଆସେ ଗଫୁର୍ ମିଆଁ ପାଖକୁ—ଗଫୁର୍ ମିଆଁ ଫକୀର୍ ପାଖକୁ । ଗଫୁର୍ ମିଆଁ ଫକୀର୍, ବାଃ ! ତା'ର କେହି ନାହିଁ, ତା'ର କିଛି ନାହିଁ—ତା'ର କିଛି ଜରୁରତ୍ ନାହିଁ—ଆଉ ସେଥିପାଇଁ ତା'ର କୌଣସି ଜଞ୍ଜାଳ ନାହିଁ । ଖାଲି ତା' ପାଇଁ ଏକା ଅଛି ଆଲ୍ଲା । ସେଥିପାଇଁ ଯେତେବେଳେ ଆରକ୍ତ ଆକାଶର ପୃଷ୍ଠଭୂମିରେ ଗଫୁର୍‌ର ଛବି ହେଇଯାଏ ସିଲ୍‌ହୁଟ୍, ଯେତେବେଳେ ମୋଆଜିନ୍ ମସ୍‌ଜିଦ୍‌ର ଚୂଡ଼ାରୁ ଆଜାନ୍ ଡାକେ 'ଯେ ଆଲ୍ଲା ହୋ ଅକବର୍' ସେତେବେଳେ ଫକୀର୍ ଗଫୁର୍ ନମାଜ୍ ପଢ଼େ—ଆଲ୍ଲା ପାଖରେ ଦୁଆ ଜଣାଏ ।

ଆଉ ଏକ ଦିନର ସକାଳ ।

ସେ' ଦିନର ସକାଳ ଥିଲା ଅକ୍ଟୋବର୍‌ର ଏକ ରୌଦ୍ର ଧୌତ ସକାଳ ଏବଂ କଲେଜ୍‌ର ପୂଜା ଛୁଟିରେ ଘରକୁ ଫେରି ଅକସ୍ମାତ୍ ଚିନ୍ମୟ ମହାନ୍ତି ପହଞ୍ଚି ଯାଇଥିଲେ

ଗଫୁର୍ ଚାଚ୍ଚାର ଭଙ୍ଗା ଚାଳଘରେ । ସବୁଦିନ ପରି ସେ' ଦିନ ମଧ ଗିଲାସେ ନାଲି ଚା' ଖାଉ ଖାଉ ମାଛ ମାରି ଯିବା ପାଇଁ ତା'ର ଛୋଟ ଛୋଟ ଉପକରଣ ସବୁ ସଜାଡ଼ି ନଉଥିଲା ଗଫୁର୍ । ଚିନ୍ମୟ ଦଉଡ଼ିଆ ଖଟଉପରେ ବସିପଡ଼ି ପଚାରିଲା, ଆଉ ଚାଚ୍ଚା ଖବର କ'ଣ, ସବୁ ଭଲତ ? ଗଫୁର୍ କହିଲା, ''ବାବୁ ମୁଁ ଏକ ରକ୍ଷିତ ଲୋକ, ମତେ ଯେମିତି ରଖାଯାଇଛି ମୁଁ ସେମିତି ଅଛି ।'' ତା'ପରେ ଅଳ୍ପ ସମୟ ଭିତରେ ସେମାନେ ଦୁଇଜଣ ଯାକ ବାହାରି ପଡ଼ିଲେ ପଦ୍ମପୋଖରୀ ହୁଡ଼ାକୁ, ଏବଂ ଚିନ୍ମୟ ଜଣେ ବାଧ ତାଲିମ ପ୍ରାପ୍ତ ଛାତ୍ର ପରି ଗଫୁର୍‌କୁ ଅନୁସରଣ କଲେ । ସେଦିନ ମଧ ଶିକ୍ଷା ଶିବିରରେ, ଅର୍ଥାତ୍ ପଦ୍ମ ପୋଖରୀ ହୁଡ଼ାରେ ଚିନ୍ମୟକୁ ମୌନବ୍ରତ ନାମକ କଠୋର ତାପସ ଆଚରଣ କରିବାକୁ ପଡ଼ିଥିଲା । କିନ୍ତୁ ସେଦିନ ଗଫୁର୍ ଚାଚ୍ଚାର ବନ୍‌ଶୀରେ ମାଛ ଉଠୁଥିଲେ ପଟାପଟ୍ । ସୂତା ଛାଟୁ ଛାଟୁ ତେରେଣ୍ଡା ଉପରକୁ ଉଠିଛି କି ନାହିଁ ଆରମ୍ଭ ହୋଇଗଲା ଖୁମ୍ପିବା ଆଉ ଗୋଟାଏ ଝଟ୍‌କାରେ ମାଛ । ଖାଲି ଚୁନା ମାଛ ନୁହଁ ଉଠୁଛନ୍ତି ପୋହଳା, ପୋବ୍‌ତା ଆଉ ଚାଖଣ୍ଡେ ଲମ୍ବର ମଞ୍ଜିକଣ୍ଟିଆ । ଚିନ୍ମୟର ଉତ୍ସାହର ସୀମା ନାହିଁ । ଚାହୁଁ ଚାହୁଁ ପ୍ରାୟ ଖାଳେଇ ଅଧା ପୂରି ଗଲାଣି । କିନ୍ତୁ ଆଶ୍ଚର୍ଯ୍ୟର କଥା ସୂର୍ଯ୍ୟ ମୁଣ୍ଡ ଉପରକୁ ଆସୁ ନ ଆସୁଣୁ ଗଫୁର୍ ତା'ର ବନ୍‌ଶୀ ଖଡ଼ା ଗୋଟେଇ ନେଇ ଘରକୁ ଫେରିବାକୁ ପ୍ରସ୍ତୁତ ହେଲା । ଚିନ୍ମୟ ଆଶ୍ଚର୍ଯ୍ୟ ହେଇ ପଚାରିଲା, ''ଚାଚ୍ଚା ! ଆଜି କଅଣ ଏତେ ସଅଳ ?''

ଗଫୁର୍ କହିଲା, ''ବହୁତ୍ ମଛି ହୋ ଗୟା, ଔର୍ କ୍ୟା ହୋଗା ?''

ଚିନ୍ମୟ କହିଲା, ''କାହିଁକି, ଆଜି ଟପାଟପ୍ ଖୋପ ଗିଳୁଛନ୍ତି, ବେଶୀ ମାଛ ମାରିଲେ ବଜାରରେ ବିକ୍ରୀ କରିଦବ ।''

ଗଫୁର୍ ସାମାନ୍ୟ ଆଶ୍ଚର୍ଯ୍ୟ ହେଇ ଚିନ୍ମୟକୁ ଚାହିଁଲା ଆଉ କହିଲା, ''ବିକ୍ରୀ କରିବି କାହିଁକି ?'' ଚିନ୍ମୟ ବି ବେଶ୍ ଆଶ୍ଚର୍ଯ୍ୟ ହେଲା, କହିଲା, ''ତମେ କ'ଣ କହୁଚ ମୁଁ କିଛି ବୁଝିପାରୁ ନାହିଁ ଗଫୁର୍ ଚାଚ୍ଚା, କାହିଁକି ଲୋକେ ବିକ୍ରୀ କରନ୍ତି, କାହିଁକି ବଜାରରେ ଏତେ ବିକ୍ରୀବଟା ଲାଗିଛି, ପଇସା ପାଇଁ—ପଇସା ପାଇବ ।''

ଗଫୁର୍ ବେଶ୍ ନିରୀକ୍ଷଣ କରି ଚିନ୍ମୟକୁ ଅନେଇଲା ଥରେ ଆଉ ତା'ପରେ ପରେ କିଛିଟା ସ୍ୱଗତଃ ଓ କିଛିଟା ପ୍ରକାଶ୍ୟ ଭାବରେ କହିଲା, ''ଫକୀର୍‌ର ପଇସା କ'ଣ ହବ ବାବୁ ? ଜରୁରତ୍ ନେହିଁ ।''

ଗଫୁର୍ ଚାଚ୍ଚାର ଗାଲ ଉପରେ ପିନ୍ କଣ୍ଟା ପରି ଧଳା ଧଳା ଚୂଳ ଉଠିଥିଲା ଓ ସୂର୍ଯ୍ୟର ବିପରୀତ ଦିଗରେ ଥାଇ ମଧ ତା'ର ମୁହଁ ଉପରେ ଅସଂଖ୍ୟ କୁଞ୍ଚିତ ରେଖା ଜରାର ସ୍ପଷ୍ଟ ସୂଚନା ଦେଉଥିଲା । ଏଇ ଜରାଗ୍ରସ୍ତ, ଦରିଦ୍ର ଫକୀର୍‌ର ପ୍ରଚଣ୍ଡ

ଆଶ୍ଚର୍ଯ୍ୟରେ ଚିନ୍ମୟ ପ୍ରଚଣ୍ଡ ଭାବରେ ଉତ୍ତେଜିତ ହୋଇ ଉଠିଥିଲା । ସେ ଏକା ନିଃଶ୍ୱାସରେ କହି ଚାଲିଲା, ''ପଇସା କ'ଣ ହବ ? ତମର ଆଉ ଓଳିକି ଖାଇବାକୁ ନାହିଁ, ଦିହରେ କନା ନାହିଁ, ପଇସା କ'ଣ ହବ ? ପଇସା ହେଲେ ଆଉ ଜିନିଷ କିଣି ପାରିବ, ଆହୁରି ଭଲ ଖାଇ ପାରିବ, ଖରା ବର୍ଷା ଶୀତରେ ତମକୁ ବନ୍‌ଶୀ ଖଡ଼ା ଧରି ମାଛ ମାରିବା ପାଇଁ ଆସିବାକୁ ପଡ଼ିବ ନାହିଁ, ତମେ ଆରାମରେ ରହିବ, ସୁଖରେ ରହିବ....।'' ଏକା ନିଃଶ୍ୱାସରେ ସବୁତକ କହିସାରି ଚିନ୍ମୟ ନୀରବ ହେଲା ।

ଗଫୁର୍‌କୁ ଚିନ୍ମୟର ଉତ୍ତେଜନା ସାମାନ୍ୟତମ ପରିମାଣରେ ମଧ୍ୟ ସଂକ୍ରମିତ କରି ପାରି ନଥିଲା । ସେ ସେମିତି ମନକୁ ବିଡ୍‌ବିଡ୍‌ ହେଲା ପରି କହିଲା, ''ମତେ ଆରାମରେ ସୁଖରେ ରହିବାକୁ ଏତେ ତଖ୍‌ଲିଫ୍ କରିବାକୁ ହବ । କାହିଁକି, ମୁଁ ତ ଏଇନେ ବେଶ୍ ଆରାମରେ ସୁଖରେ ଅଛି । ଟମ୍‌ବାବୁ, ହମ୍ ଗୋଲାମ୍ ହାଏ, ହାମ୍‌କୁ ଯେଇସେ ରଖ୍‌ଖା ଗିଆ ହେ ହମ୍ ଏଇ ସେଇ ହେଁ ।''

ସେଦିନ ଚିନ୍ମୟ, ଗଫୁର୍ ଚାଚାର ଏଇ ସରଳ ଅଥଚ ପ୍ରହେଳିକା ପୂର୍ଣ୍ଣ ବକ୍ତବ୍ୟ ଠିକ୍ ହୃଦୟଙ୍ଗମ କରିପାରୁ ନଥିଲେ ମଧ୍ୟ, ସେ ବୁଝୁଥିଲା ଯେ କଥାଟାକୁ ପୁରାପୁରି ହସି ଉଡ଼େଇ ଦେଇ ହେବ ନାହିଁ ।

ସେ'ଦିନ ପଦ୍ମପୋଖରୀରୁ ଫେରିଲା ବେଳେ କଥାଟାର ମୋଡ଼ ବଦଳେଇବା ପାଇଁ ଚିନ୍ମୟ ପଚାରିଲା, ''ଆଉ ଗଫୁର୍ ଚାଚା, ତମର ସେ ବିରାଟ ମାଛଟାକୁ ଧରିବାର୍ ଚେଷ୍ଟା କେତେ ଦୂର ଗଲା ?'' ଗଫୁର୍ ଚାଚାର ଉତ୍ସାହ ଯେପରି ଦ୍ୱିଗୁଣିତ ହେଇଗଲା । ହଠାତ୍ କହିଲା, ''ଟମ୍ ବାବୁ, ତମେ ତ ଆଉ ଏଠି ରହୁ ନାହିଁ, କିନ୍ତୁ ଯୋଠି ଯାଅ ଶୁଣିବ ଗଫୁର୍ ମରିବା ପୂର୍ବରୁ ସେଇ ଛ' ସେରିଆ ରୋହିଟାକୁ ଖୋପ ଗିଳେଇ କାତ୍ କରିଛି ।'' ସୂର୍ଯ୍ୟ ଠିକ୍ ମୁଣ୍ଡ ଉପରେ ଆଉ ସେତିକି ବେଳେ ବସ୍ତୀ ଭିତରେ ଗଫୁର୍ ଆଉ ଚିନ୍ମୟ ଯେଝା ଘରକୁ ବାଟ ଭାଙ୍ଗି ଗଲେ । ଗଲାବେଳେ କେବଳ ଚିନ୍ମୟ କହିଲା, ''ଚାଚା ଗଲି । ମୁଁ କାଲି ସକାଳୁ ଚାଲିଯିବି ଆଉ ଦେଖା ହବ ନାହିଁ । ତେବେ ଆର ଥରକୁ ତମ ପାଇଁ ଗୋଟାଏ ସିଙ୍ଗାପୁର କେନ୍‌ର ହୁଇଲ୍ ବନ୍‌ଶୀ ଆଣିବି । ତା' ହେଲେ ସେଇ ଛ' ସେରିଆ ରୋହୀଟାକୁ ଖେଳେଇ ଖେଳେଇ କିନାରାକୁ ଆଣିବାକୁ ସୁବିଧା ହବ ।''

ଗଫୁର୍ ଏତକ କଥା ଶୁଣି ପାରିଥିଲା କି ନାହିଁ କହିହବ ନାହିଁ । ସେ ତା'ର ଘର ଆଡ଼କୁ ମୁହଁ ଫେରେଇଲା ବେଳେ ତା'ର ଚିରାଚରିତ ଭଙ୍ଗୀରେ ଉଚ୍ଚାରଣ କରିଥିଲା, ଆଲ୍ଲା ତେରା ଭଲ୍ଲା କରେ ।

ଚିନ୍ମୟ ପୁଣି ଥରେ ଫେରିଲା ବେଳେ ସିଙ୍ଗାପୁର କେନ୍‌ର ବନ୍‌ଶୀ ଖଡ଼ା ଆଣିଥିଲା । କିନ୍ତୁ ସେତେବେଳକୁ ଗଫୁର ଖାଁ ଆଲ୍ଲାର ସେଇ ଚିର ଆନନ୍ଦମୟ ଦେଶକୁ

ଚାଲି ଯାଇଥିଲା ଯେଉଁଠାରୁ କେହି କେବେ ଫେରେ ନାହିଁ । ଚିନ୍ମୟ ଯାଇଥିଲା ଗଫୁର୍‌ର ଘରକୁ, କିନ୍ତୁ ତା'ର ସେହି କେହି ନଥିବା, କିଛି ନଥିବା ଘରୁ ଚାଳଟା ଭୁଷୁଡ଼ି ପଡ଼ି ମାଡ଼ି ବସିଥିଲା ଘରଟାକୁ । ସେ'ଇ ଧ୍ୱଂସ ସ୍ତୁପ ପାଖରେ ବସି ବସି ସେ କିଛି ସମୟ ପାଇଁ ଗଫୁର ଚାଚାର ମୃତ୍ୟୁ ଶୋଭାଯାତ୍ରାକୁ ଆଉ ଥରେ ପୂର୍ଣ୍ଣ ନିର୍ମାଣ କରୁଥିଲା । ସେ'ଦିନ ମାଛ ମାରି ଫେରି ଗଫୁର୍ ଚାଚା ତା'ର ଦଉଡ଼ି ବୁଣା ଖଟିଆ ଖଣ୍ଡକ ଉପରେ ବସୁ ନ ବସୁଣୁ ବୋଧହୁଏ ଟଳି ପଡ଼ିଥିବ, ଯେମିତି ଅକସ୍ମାତ୍ ବିନା କଷ୍ଟରେ ପାଚିଲା ଆମ୍ବ ବୃନ୍ତଚ୍ୟୁତ ହୁଏ । ଆଉ ତା'ପରେ ପରେ କିଛି ମୁସଲମାନ୍ ମୁଣ୍ଡରେ ଧଳା ଟୋପି ପିନ୍ଧି ଜାନୁପାତି ନମାଜ୍ ପଢ଼ିଥିବେ ଫକୀର୍‌ର ମୃତ୍ୟୁର ଶେଷକୃତ୍ୟ ପାଇଁ । ତା'ପରେ ଶୁଭ୍ର ବସ୍ତ୍ର ଆଚ୍ଛାଦିତ କଫିନ୍‌କୁ କାନ୍ଧେଇ ଚାଲିଥିବ ଗୋଟିଏ ଅତିକ୍ଷୁଦ୍ର ଶୋଭାଯାତ୍ରା କବରଖାନା ପର୍ଯ୍ୟନ୍ତ, ଅତି ସଂକ୍ଷିପ୍ତ ।

ଗଫୁର୍ ଚାଚାର ମୃତ୍ୟୁ ଥିଲା ମୋଟାମୋଟି ଭାବେ ଚିନ୍ମୟ ଜୀବନର ଅଧ୍ୟମାରମ୍ଭ ମାତ୍ର । ଯା ଭିତରେ ସେହି ସହର ନୁହଁ ଗାଁ ନୁହଁ ତୋଗ୍ରା ନିକଟରେ ଖରସ୍ରୋତା ବଂଶଧାରା ନଈରେ କେତେ ପାଣି ବହି ଗଲାଣି । ଚିନ୍ମୟ ଜୀବନ ସଂଗ୍ରାମରେ ପ୍ରାଣମୂର୍ଚ୍ଛା ଲଢ଼େଇ କରିଛି । ତା' ନହେଲେ ଇଷ୍ଟକୋଷ୍ଟ ଫିସିଙ୍ଗ୍ କମ୍ପାନୀ ପରି ବୁନିଆଦି କମ୍ପାନୀର ମ୍ୟାନେଜିଂ ଡାଇରେକ୍ଟର୍ ପଦବୀ ଏତେ ସହଜ ଲକ୍ଷ୍ୟ ନୁହଁ । ତା'ର ନିଜ ଅଜାଣତରେ ସେ ତା'ର ନିଜ ଚାରିପଟେ ଗୋଟାଏ ବିରାଟ କର୍ମୀ କଲୋନୀ ତିଆରି କରି ସେ ନିଜେ ବସି ରହିଛି ରାଣୀ ମଧୁମକ୍ଷୀକା ପରି ତା'ର କେନ୍ଦ୍ର ବିନ୍ଦୁରେ । ସକାଳ ଆଠଟାଠାରୁ ସନ୍ଧ୍ୟା ଛ'ଟା ପର୍ଯ୍ୟନ୍ତ ନିଃଶ୍ୱାସ ନବାକୁ ସମୟ ନାହିଁ ଚିନ୍ମୟର । ଏଇନା ଷ୍ଟେଟ୍‌ସ୍‌ରୁ ଲଙ୍ଗ୍ ଡିଷ୍ଟାଣ୍ଟ୍ କଲ୍ ତ ଆଉ ମିନିଟିକ ପରେ ଜାପାନ୍ ଇମ୍ପୋଟରସ୍ ପାଖରୁ ଦୁଇ ପୃଷ୍ଠାର ଟେଲେକ୍‌ସ ମେସେଜ୍ । ଏ ମାସର କ୍ୟାଚ୍ କେତେ ? ଆନ୍ତର୍ଜାତିକ ପ୍ରନ୍ ଚାହିଦା ବଢ଼ିଲା ନାଁ କମିଲା ? ଇଷ୍ଟଇଣ୍ଡିଜ୍ ଉପକୂଳରେ କୃତ୍ରିମ ପ୍ରନ୍ ପ୍ରଜନନ ସ୍କିମ୍ କେତେ ବାଟ ଗଲା ? ସେଆର୍ ମାର୍କେଟ୍‌ରେ ଆଜିର ଡିଭିଡେଣ୍ଡ୍ କେତେ । ଅସୁମାରୀ ପ୍ରଶ୍ନର ଜବାବ୍ ଠିକ୍ କରି ରଖିବାକୁ ହବ ଚିନ୍ମୟକୁ । ଯେମିତି ସିଏ ନିଜେ ଗୋଟାଏ କମ୍ପ୍ୟୁଟର୍ । ଟେବୁଲ୍ ଉପରେ ଥୁଆ ହୋଇଥିବା ଛ' ସାତଟା ରଙ୍ଗ ବେରଙ୍ଗର ଟେଲିଫୋନ୍ ପରି ସିଏ ଗୋଟାଏ ମେସିନ୍ ।

ଖାଲି ସେତିକି ନୁହଁ ଚିନ୍ମୟକୁ ମାସର ଅଧା ସମୟ କଟେଇବାକୁ ପଡ଼େ ଭାରତବର୍ଷ ବାହାରେ । ଏଆର୍ ପୋର୍ଟ ଲାଉଞ୍ଜରୁ ଏଆର୍ ପୋର୍ଟ ଲାଉଞ୍ଜକୁ ଗଡ଼ି ଚାଲିଛି ଚିନ୍ମୟ ଯନ୍ତ୍ରଚାଳିତ ପରି, ଏଇ ଅବସରରେ ଇଷ୍ଟ କୋଷ୍ଟ ଫିସିଙ୍ଗ୍ କମ୍ପାନୀର ଲାଭର ଗ୍ରାଫ୍ ଶିଖରରୁ ଶିଖରକୁ ଚଢ଼ି ଚାଲିଛି । ଚିନ୍ମୟ ତା'ର ଶୀତତାପ ନିୟନ୍ତ୍ରିତ କାଚ ଘେରା ଘରେ ବସି ରହିଛି ରାଣୀ ମଧୁମକ୍ଷୀକା ପରି । ତା'ର ମେହୋଗାନୀ କାଠର ଭାରୀ ଫ୍ରେମ୍ ଦେଇ କାଚର କବାଟ କେହି ଖୋଲି ପଶି ଆସିଲେ ତା' ସହିତ

ପଶିଆସେ ଗୁଡ଼ାଏ ଶବ୍ଦ । ଇଲେକ୍‌ଟ୍ରିକ୍ ଟାଇପ୍ ରାଇଟର୍‌ର ଶବ୍ଦ । ଟେଲିପ୍ରିଣ୍ଟର୍‌ର ଶବ୍ଦ । ଟେଲେକ୍‌ସର ଶବ୍ଦ ଓ ବାହାରେ ପ୍ରଚଣ୍ଡ ଗତିରେ ପ୍ରବାହିତ ଟ୍ରାଫିକ୍‌ର ଶବ୍ଦ । ତାହା ପୁଣି ମୁହୂର୍ତ୍ତକ ପାଇଁ । କବାଟ ବନ୍ଦ ହେଇଗଲେ ସବୁ ଶବ୍ଦର ଅବସାନ । ସେ ଯେପରି ପୃଥିବୀର ଚଳମାନ ନିତ୍ୟ ପ୍ରବୃତ୍ତ ଘଟଣାଠାରୁ ନିଜକୁ ବିଚ୍ଛିନ୍ନ ରଖି ତା' ପାଇଁ ତିଆରି କରିଛି ଏଇ କାଚର ଦ୍ୱୀପ, ଯାହା ଭିତରକୁ ଆଲୋକ, ବାୟୁ ଓ କୋଳାହଳର ପ୍ରବେଶ ନିଷିଦ୍ଧ । କେବଳ ଏଆର୍ କଣ୍ଡିସନର୍‌ର, ମଧ୍ୟରାତ୍ରିର ଝିଙ୍କାରି ପରି ଏକଟଣା ଝିଁ ଝିଁ ଶବ୍ଦ । ପାଓ୍ୱାର୍ ଫେଲିଓର୍ ହେତୁ ସେ ଶବ୍ଦଟା ବନ୍ଦ ହୋଇଗଲେ ଚିନ୍ମୟର ମନେହୁଏ ଯେପରି କେଉଁଠି କିଛି ଗୋଟାଏ ଗୁରୁତର ଅଘଟଣ ଘଟିଗଲା, ଯେପରି ପୃଥିବୀ ତା'ର ନିଜର କକ୍ଷରେ ଘୁରିବା ବନ୍ଦ ହେଇଗଲା । ଆତଙ୍କିତ ହୋଇଉଠେ ଚିନ୍ମୟ । କିଏ ଜାଣେ ଏଇ ସବୁ ଅଘଟଣ ହେତୁ କାଲି ତା'ର କମ୍ପ୍ୟୁଟର୍ ଘୋଷଣା କରିପାରେ ଇଷ୍ଟ କୋଷ୍ଟ ଫିସିଙ୍ଗ୍ କମ୍ପାନୀର ଲାଭର ଗ୍ରାଫ୍ ଦ୍ରୁତ ଗତିରେ ତଳକୁ ତଳକୁ ଆସୁଚି । ଚିନ୍ମୟ ଯନ୍ତ୍ର ହେଇଯାଇଛି । ଅଫିସ୍‌ରୁ ଗାଡ଼ି, ଗାଡ଼ିରୁ ଏଆର୍ ପୋର୍ଟ ପୁଣି ଏଆର୍ ପୋର୍ଟରୁ ଗାଡ଼ି ଓ ଗାଡ଼ିରୁ କନ୍‌ଫରେନ୍‌ସ ହଲ୍ ଓ ସେଠି ବିଜିନେସ୍ ଲଞ୍ଚ । ଦୁଇଟା ସାଣ୍ଡୁଇଚ୍, କପେ କଫି । ପୁଣି ଗାଡ଼ି, ଗାଡ଼ିରୁ ଏଆର୍ ପୋର୍ଟ ଓ ଏଆର୍‌ପୋର୍ଟରୁ ଘର । ଘରେ ପହଞ୍ଚିଲା ବେଳକୁ ହୁଏତ ଚିନ୍ମୟ ଶୁଣୁଛି ତାର ସ୍ତ୍ରୀ କହୁଛି, ''ଧରନ୍ତୁ ଧରନ୍ତୁ, ବୋଧହୁଏ ବର୍ତ୍ତମାନ ଆସିଲେ । ତଳୁ ଗାଡ଼ି ଶବ୍ଦ ଶୁଣୁଛି ।'' ତା'ପରେ ଚିନ୍ମୟ ସିଧା ଟେଲିଫୋନ୍ ପାଖକୁ– ''ୟେସ୍ ଚିନ୍ମୟ ସ୍ପିକିଙ୍ଗ୍...।''

ଚିନ୍ମୟର ଶୀତତାପ ନିୟନ୍ତ୍ରିତ କୋଠରୀ ଭିତରେ ହଜିଯାଏ ବସନ୍ତ, ଗ୍ରୀଷ୍ମ, ବର୍ଷା ଆଉ ଶୀତ କେବେ ଅକସ୍ମାତ୍ ଯଦି ଚିନ୍ମୟକୁ କେଉଁ ସିନେମା ହଲ୍ ଭିତରେ ଆବିଷ୍କାର କରାଯାଏ, ତାହାହେଲେ ସେଠି ଶୁଣିବାକୁ ମିଳେ ତା'ର ସତର ବର୍ଷର ଝିଅ (କ'ଣ ପଢୁଛି କେଜାଣି) ସିନେମାର ଅଭିନେତା ଓ ଅଭିନେତ୍ରୀମାନଙ୍କୁ ଚିହ୍ନେଇ ଦଉଚି ଚିନ୍ମୟକୁ ।

ସେଦିନ ଅନ୍ୟ ସବୁଦିନ ପରି ଚିନ୍ମୟ ବସି ରହିଥିଲା ତା'ର ଶୀତତାପ ନିୟନ୍ତ୍ରିତ କାଚର କୋଠରୀ ଭିତରେ । ଗୋଟାଏ ଉଡ଼ନ୍ତା ଡ୍ରେପର୍ ଦେଇ ସେ ଦେଖି ପାରୁଥିଲା ବାହାରେ ପୌଷର ଖରା । ସାମାନ୍ୟ ଉଦାସୀନ ହେଇ ଉଠିଥିଲା ଚିନ୍ମୟ । ଆଜି କେତେ ତାରିଖ ? ତା'ର ମଣିବନ୍ଧରେ ଅଟୋମ୍ୟାଟିକ୍ ଘଣ୍ଟାଟା ମଧ୍ୟ ଆଜି ଭୁଲି ଆସିଛି ସେ । କ୍ୟାଲେଣ୍ଡରକୁ ଅନେଇଲା ଓ ଆଜିକି ପ୍ରାୟ ଦଶମାସ ଧରି ଭୁଲି ଯାଇଥିବା କ୍ୟାଲେଣ୍ଡର୍ ଉପରେ ଆଜି ପ୍ରଥମ ଥର ପାଇଁ ଆଖି ପଡ଼ିଲା ଚିନ୍ମୟର । ଆର୍ଟ ପେପର୍‌ରେ ଛପା ଯାଇଥିବା ଦାମୀ କ୍ୟାଲେଣ୍ଡର୍ ଉପରେ ଜୁମା ମସ୍‌ଜିଦ୍‌ର ଓ ମସ୍‌ଜିଦ୍‌ର ଗମ୍ବୁଜ ଉପରେ ଅଳସରେ ପର ଝାଡ଼ି ବସିଥିବା ପାରାବତ

ଯୁଗଳମାନଙ୍କର ଛବି । ଆଃ ! ପୌଷର ଏଇ ଉଷ୍ଣ ରୌଦ୍ରରେ ସେମାନଙ୍କର ଅଳସ ଅକାରଣ ବକମ୍ ବକମ୍ ଗୁଞ୍ଜରଣ ଯେପରି ଶୁଣିବାକୁ ପାଇଲା ଚିନ୍ମୟ ।

ଠିକ୍ ଏହି ସମୟରେ ଟେଲିଫୋନ୍ ବାଜି ଉଠିଲା । ଲଙ୍ଗ୍ ଡିଷ୍ଟାନ୍ସ କଲ୍ ଫ୍ରମ୍ ହଂକଙ୍ଗ । ଚିନ୍ମୟ କହିଲା, 'ହାଲୋ'—କିନ୍ତୁ କେବଳ ସେତିକି, ତା' ପରେ ସବୁ ଚୁପ୍ ଚାପ୍ । ଚିନ୍ମୟ କେବଳ ଚାହିଁ ରହିଛି ଜୁମା ମସ୍‌ଜିଦ୍ ଉପରେ ପର ଢିଲା କରି ବସି ରହିଥିବା ଅସଂଖ୍ୟ ପାରାବତ ଦମ୍ପତିଙ୍କୁ ।

ହଠାତ୍ ଯେପରି ଚିନ୍ମୟର ବାକ୍‌ଶକ୍ତି ରୁଦ୍ଧ ହେଇଗଲା, ସେ' ସାଧାରଣ ଭାବରେ ନିଃଶ୍ୱାସ ଗ୍ରହଣ କରିପାରୁ ନାହିଁ କାହିଁକି ? ହଠାତ୍ ଯେପରି ଏଆର୍ କଣ୍ଡିସନ୍ ପ୍ଲାଣ୍ଟଟା ବନ୍ଦ ହୋଇଗଲା ପରା । କିନ୍ତୁ ଚିନ୍ମୟ ଜାଣେ ତା' ଭିତରେ ଶ୍ୱାସରୁଦ୍ଧ ହେଇ ଯାଉଥିବା ଟମ୍‌ବାବୁଟି ହଠାତ୍ ବାହାରି ପଡ଼ି କୌଣସି ଟ୍ରେନ୍ ବା ପ୍ଲେନ୍‌ର ସାହାଯ୍ୟ ନ ନେଇ ପହଞ୍ଚି ଯାଇ ସାରିଥିଲା ଗଫୁର୍ ଚାଚାର ଭଙ୍ଗା ଚାଳଘର ପାଖରେ । ସେଠୁ ଟମ୍ ବାବୁ ରାସ୍ତା ଉପରେ ପାଣି ଚବର ଚବର କରି ମୁହାଁଇଥିଲା ପଦ୍ମ ପୋଖରୀ ଆଡ଼େ ।

ଆଃ ! ପଦ୍ମପୋଖରୀର ପାଣି କି ଶୀତଳ ! ପାଣି ଉପରେ ପୌଷର ଖରା ଯେମିତି ସମୁଦାୟ ପୋଖରୀଟାକୁ ଗୋଟାଏ ବିପୁଳାୟତନ ଦର୍ପଣରେ ପରିବର୍ତ୍ତନ କରି ଦେଇଛି । ପଦ୍ମ ପତ୍ର ଉପରେ ଏ କ'ଣ ସବୁ ଢଳ ଢଳ ହଉଛି ? ତରଳ ମର୍କତ ନାଁ ସ୍ଫଟିକ ? ତା'ରି ଉପରେ ସୂର୍ଯ୍ୟର କିରଣ ପଡ଼ି ପ୍ରତିବିମ୍ବିତ ହେଇ ଫେରି ଆସୁଛି ଉଜ୍ଜ୍ୱଳତର ହୋଇ । ସେଇ ବରଗଛର ଗୋଟାଏ ଶିଅ ଉପରେ ହାତରେ ଗୋଟାଏ ଓହଳ ଧରି ଗଭୀର ଆତ୍ମବିଶ୍ୱାସର ସହିତ ଠିଆ ହେଲା ଟମ୍‌ବାବୁ । ସେ ଯେପରି ଖର୍ବ ନେପୋଲିୟନ୍‌ଙ୍କର ଖର୍ବତର ସଂସ୍କରଣ ଓ ତା'ପରେ ସେ ହଠାତ୍ ମାଛମାନଙ୍କୁ ଉଦ୍ଦେଶ୍ୟ କରି କହିଲା, "ହେ ମାଛମାନେ ! ତମେମାନେ ନିର୍ଭୟରେ କ୍ରୀଡ଼ା କରିପାର, ଗଫୁର୍ ଚାଚା ଯାଇଛି ଆଲ୍ଲାଙ୍କ ପାଖକୁ, ଯେଉଁଠାରୁ ସେ' ଆଉ ଫେରିବ ନାହିଁ । ହେ ବଡ଼ ମାଛମାନେ ! ତମେମାନେ ମୁକ୍ତ, ତମକୁ ପ୍ରଲୁବ୍ଧ କରିବାକୁ ଗଫୁର୍ ଚାଚାର ବଡ଼ ବଣ୍ଡା ଆଉ ପାଣି ଭିତରେ ଝୁଲି ରହିବ ନାହିଁ ।"

ତା'ପରେ ମନକୁ ମନ ବେଶ୍ ବଡ଼ ପାଟିରେ ହସି ଉଠିଲା ଟମ୍‌ବାବୁ ଓ ଅନେକ ଦିନ ଧରି ଏମିତି ଖୋଲା ହସ ସେ ହସି ପାରିନାହିଁ ଯାହାର ଶବ୍ଦ ତରଙ୍ଗ ଦୂରରୁ ଦୂରକୁ ଭାସି ଭାସି ଯାଇ ଚକ୍ରବାଳରେ ଲୀନ ହେଇଯାଏ । ତା'ପରେ ଟମ୍‌ବାବୁ ହାତ ହଲେଇ ନାଚିବାକୁ ଆରମ୍ଭ କଲା ପୋଖରୀର କୂଳେ କୂଳେ । ଆଃ କି ଖୁସି, କି ଆନନ୍ଦ ଏମିତି ଖାକି ହାଫ୍ ପ୍ୟାଣ୍ଟ୍ ଆଉ ଧଳା ହାଫ୍ ସାର୍ଟ ପିନ୍ଧି ନାଚିବାରେ ଗଫୁର୍ ଚାଚାର କେହି ନଥିବା, କିଛି ନଥିବା ଓ କିଛି ପ୍ରୟୋଜନ ନଥିବାର ଦେଶରେ ! ଟମ୍ ବାବୁର ମନେ ହଉଛି ଯେପରି ସେ' ଅମରାବତୀର ସ୍ୱଚ୍ଛ ଶୀତଳ ମନ୍ଦାକିନୀ ଧାରାରେ ଅବଗାହନ କରୁଛି ଯେଉଁଠି ସମସ୍ତ କାମନା, ପାଇବାର ଆଶା ଓ ଯନ୍ତ୍ରଣାର ସମାପ୍ତି ହୁଏ ।

ଆହୁରି ଅନେକ ସମୟ ଧରି ଟମ୍‌ବାବୁ ସେହି ଦିବାଲୋକରେ ଅବଗାହନ କରିଥାଆନ୍ତା ଯଦି ସୂର୍ଯ୍ୟ ସବୁଦିନ ପରି ପଶ୍ଚିମ ଆକାଶରେ ଅସ୍ତ ଯିବାର ପ୍ରସ୍ତୁତି ଆରମ୍ଭ କରି ନଥାନ୍ତେ । ଅନେକ ସୂର୍ଯ୍ୟାସ୍ତର ସୂର୍ଯ୍ୟାସ୍ତ ଯେ । ଲଳିତ, କୋମଳ ମଧୁରୁ ଏକ ଅଗ୍ନିର କନ୍ଦୁକ ମହାଶୂନ୍ୟରେ ଝୁଲି ରହିଛି, ଆଉ ସେଇ କନ୍ଦୁକରୁ ବିଚ୍ଛୁରିତ ଆଲୋକରେ ପଶ୍ଚିମ ଆକାଶ ରକ୍ତରଞ୍ଜିତ ।

ଟମ୍‌ବାବୁର ଇଚ୍ଛା ହେଲା ସେ' ସୂର୍ଯ୍ୟଙ୍କୁ ମଧ ସମ୍ବୋଧନ କରି କହିବ, ସୂର୍ଯ୍ୟ ତୁମେ ସ୍ତବ୍ଧ ହୁଅ, ଗଫୁର୍ ଚାଚା ଏବେ ମଧ ନମାଜ ପଢ଼ିବା ପାଇଁ ପ୍ରସ୍ତୁତ ହେଇ ନାହିଁ । କିନ୍ତୁ ନାଁ, ସୂର୍ଯ୍ୟ ମାଛ ନୁହଁ, ତା'ର ଅନ୍ତିମ କିରଣରେ ମସ୍‌ଜିଦ୍‌ର ଗମ୍ବୁଜ ସବୁ ଜଳି ଉଠନ୍ତି । ତେଣୁ ସୂର୍ଯ୍ୟଙ୍କୁ ତାଙ୍କର କର୍ତ୍ତବ୍ୟ କରିବାକୁ ଦିଆଯାଉ । କିନ୍ତୁ କେହି ନଭାବୁ ସୂର୍ଯ୍ୟଙ୍କୁ ଆକାଶରେ ବିଳମ୍ବିତ କରି ଝୁଲେଇ ରଖିବା ପାଇଁ ଟମ୍‌ବାବୁର ଶକ୍ତିର ଅଭାବ । ଟମ୍‌ବାବୁ ଆଜି ସର୍ବଶକ୍ତିମାନ୍ ! ସେ ଆଜି କେହି ନଥିବା, କିଛି ନଥିବା ଓ କିଛି ଜରୁରତ୍ ନଥିବା ଫକୀର୍ ଚାଚାର ଦେଶର ପରିବ୍ରାଜକ ।

ସନ୍ଧ୍ୟା ଆସନ୍ନ । ସେଦିନ ପରି ଆଜି ମଧ ମସ୍‌ଜିଦ୍‌ର ଉପରୁ ମୁଆଜିନ୍ ଆଜାନ୍‌ର ଡାକ ଦେଲା, ଆଲ୍ଲା ହୋ ଅକ୍‌ବର୍, ଆଲ୍ଲା ହୋ ଅକ୍‌ବର୍ । ଟମ୍‌ବାବୁ ଗଫୁର୍ ଚାଚା ପରି ଜାନୁପାତି କିଛି ସମୟ ନୀରବରେ ବସି ରହିଲା । ଆଲ୍ଲାକୁ କ'ଣ କହି ସେ' ଦୁଆ ଦବ ଜଣେ ନାହିଁ । ଖାଲି ମନେ ମନେ କହିଲା, "ଆଲ୍ଲା ! ତମକୁ ଗଫୁର୍ ଚାଚା ଦୁଆ ଦେଉଥିଲା ଦିନ ଭିତରେ ପାଞ୍ଚଥର ସେଥିପାଇଁ ମୋ'ର ଧାରଣା ତମେ ଗଫୁର୍ ଚାଚାଠାରୁ ମଧ ବଡ଼ । ଭାରି ଭଲ ଲୋକ ଥିଲା ଗଫୁର୍ ଚାଚା । ସେ କହୁଥିଲା ତମେ କୁଆଡ଼େ ତା'ର ରକ୍ଷକ । ସେ ଗୋଟାଏ ବଡ଼ ମାଛ ମାରିବାକୁ ଇଚ୍ଛା କରିଥିଲା କିନ୍ତୁ ତା' ପୂର୍ବରୁ ତମେ କୁଆଡ଼େ ତାକୁ ଡକେଇ ପଠେଇଲ ସେଠି ତାକୁ ତିମି ମାଛ ପରି ଗୋଟାଏ ପ୍ରକାଣ୍ଡ ମାଛ ଧରେଇ ଦବ । ତା'ର କେହି ନଥିଲେ, କିଛି ନଥିଲା, କିଛି ମଧ ଜରୁରତ୍ ନଥିଲା । କିନ୍ତୁ ଆଲ୍ଲା ! ସେଠି ତାକୁ ଅନେକ ଲୋକ ଦିଅ, ମଣି, ମୁକ୍ତା, ବୈଦୁର୍ଯ୍ୟରେ ତା'ର ଶୂନ୍ୟ ଝୁଲି ପୂର୍ଣ୍ଣ କରିଦିଅ ।"

ସେ'ଦିନ ଟମ୍ ବାବୁ ସେଇ କେହି ନଥିବା, କିଛି ନଥିବା, କିଛି ପ୍ରୟୋଜନ ନଥିବା ଦେଶରୁ ଫେରିଥିଲା ଅନେକ ବିଳମ୍ବରେ ଘୋର ଅନିଚ୍ଛା ସତ୍ତ୍ୱେ । କିନ୍ତୁ ବେଶୀଦିନ ନୁହଁ । ସେ ଖୁବ୍ ଶୀଘ୍ର ଏଇ ଦେଶକୁ ଫେରି ଆସିବ ସବୁ ଦିନ ରହିବା ପାଇଁ ।

ନର୍ସିଂ ହୋମ୍‌ରେ ଡାକ୍ତରମାନଙ୍କର ଅକ୍ଳାନ୍ତ ପରିଶ୍ରମ ଫଳରେ ଚିନ୍ମୟ ମହାନ୍ତିଙ୍କର ସଂଜ୍ଞା ଫେରିଥିଲା ଅନେକ ଡେରିରେ । ସନ୍ଧ୍ୟା ପରେ । ପୃଥିବୀର ଅସଂଖ୍ୟ ମସ୍‌ଜିଦ୍‌ର ମୁଆଜିନମାନେ ଆଜାନ୍ ଡାକ ପାରିଲା ପରେ ।



# ମତ୍ସ୍ୟଗନ୍ଧା

ସନ୍ଧ୍ୟା ହବ ପ୍ରାୟ ।

ହଠାତ୍ ବସ୍‌ଟା ଗୋଟାଏ ବିକଟ ଶବ୍ଦ କରି ପ୍ରାୟ ଘୁଷୁରି ଘୁଷୁରି ରାସ୍ତା ଉପରେ ରହିଗଲା । ତା' ପରେ ଯାହା ସାଧାରଣତଃ ହୋଇଥାଏ, ବସ୍‌ର ସଦା ଜାଗ୍ରତ ଡ୍ରାଇଭର୍, କ୍ଲିନର୍ ଓ କଣ୍ଡକ୍ଟରମାନେ ବସ୍ ଉପରୁ ଖପ୍ ଖାପ୍ ତଳକୁ ଡେଇଁପଡ଼ି ସହସା ଘୋଷଣା କଲେ ଯେ, ସେ ବସ୍ ଆଉ ପାଦେ ମଧ୍ୟ ଆଗକୁ ଯିବା ସମ୍ଭବ ନୁହେଁ, ଗୋଟାଏ ବଡ଼ ଧରଣର ସାହାଯ୍ୟ ନ ଆସିବା ପର୍ଯ୍ୟନ୍ତ, କାରଣ ବସ୍‌ର ଆକ୍‌ସିଲ୍ ଭାଙ୍ଗିଯାଇଛି । ବସ୍ ତା ଆରଦିନ ସକାଳ ବାରଟା ସୁଦ୍ଧା ଛାଡ଼ିଲେ ଛାଡ଼ିପାରେ ।

ପାସେଞ୍ଜରମାନେ ଆସ୍ତେ ଆସ୍ତେ ତଳକୁ ଓହ୍ଲେଇଲେ ଓ ରାସ୍ତା ଉପରେ ଦଳ ଦଳ ହୋଇ ଠିଆହୋଇ ପରସ୍ପର ଭିତରେ ନିଜ ନିଜର ହତାଶାଜନିତ ବାକ୍ୟାଳାପ ଆରମ୍ଭ କରିଦେଲେ । ତନ୍ମଧ୍ୟରୁ ଅଧିକାଂଶ ହେଲା ବସ୍ ଉପରେ ଓ ବସ୍ ମାଲିକଙ୍କ ଉପରେ ଘୋର ଅଭିସମ୍ପାତ ବର୍ଷଣ । ଡ୍ରାଇଭର, କ୍ଲିନର ପ୍ରଭୃତି ରାସ୍ତାର ଅନେକ ଦୂରକୁ ଦୁଇ ଭିନ୍ନ ଦିଗରେ ଚାହିଁରହିଲେ କୌଣସି ବସ୍ ଆସୁଥିବାର କ୍ଷୀଣତମ ସୂଚନା ଆବିଷ୍କାର କରିବା ପାଇଁ ।

ମୁଁ ଅବଶ୍ୟମ୍ଭାବୀ ସହିତ ଅତିଶୀଘ୍ର ସାଲିସ୍ କରିନେଇ ଖବର ନେଇ ବୁଝିଲି ଯେ ବସ୍‌ଟି ଯେଉଁଠାରେ ଖରାପ ହୋଇଛି ସେଇଟା ମାତ୍ର ସୋନପୁରର ଉପକଣ୍ଠ । ପାଖରେ ରାସ୍ତାକରରେ ଗୋଟିଏ ଡାଲି ଚାଉଳ ଦୋକାନ, ପାନ ଦୋକାନ ଓ ଚାହା ଦୋକାନ ଦେଖି ଅତ୍ୟନ୍ତ ଆଶ୍ୱସ୍ତ ହେଲି । ଘୋର ଅପନ୍ତରା ରାସ୍ତାରେ ମଧ୍ୟ ବସ୍ ଖରାପ ହବାର ସମ୍ଭାବନା ଥିଲା । ଯେ'ତ କଣାମାମୁଁ !

ପାନ ଦୋକାନ ପାଖରେ ଠିଆହୋଇ ସିଗାରେଟ୍ ଲଗଉ ଲଗଉ ଗୋଟାଏ ଦୁଇଟା ସ୍ଥାନୀୟ କୌତୁହଳୀ ପିଲାଙ୍କ ସହିତ କଥାବାର୍ତ୍ତା କରି ବୁଝିଲି ଯେ ଡାହାଣ ପଟକୁ ମାତ୍ର ଦୁଇଶହ ଗଜ ଖଣ୍ଡେ ଚାଲିଗଲେ ମହାନଦୀ ଦେଖିବାକୁ ମିଳିବ । ସୋନପୁର ଓ ମହାନଦୀ ଏଇ ଦୁଇଟାର ଏକତ୍ର ଯୋଗାଯୋଗ ଯେମିତି ମତେ ଅକସ୍ମାତ୍ ମୋର ଶୈଶବକୁ ମର୍ମାନ୍ତରିତ କରିଦେଲା । ଓଡ଼ିଶାର ଭୂଗୋଳ ଅଧ୍ୟୟନ

କରିବାକୁ ଯାଇ ଏହି ଦୁଇଟିର ଘନିଷ୍ଠ ଯୋଗାଯୋଗ ମୁଁ ବହୁବାର ପଢ଼ିଛି ଓ ଲେଖିଛି ମଧ । ରାସ୍ତା ଛାଡ଼ି ତଳକୁ ଗଡ଼ି ମହାନଦୀ ଅଭିମୁଖେ ଯାଉ ଯାଉ ଭାବୁଥିଲି, ସୋନପୁରରେ କ'ଣ ମିଳେ ? ...କ'ଣ ଗୋଟାଏ ମିଳେ; କିନ୍ତୁ ଅନାବନା ସ୍ମୃତିର ଜଙ୍ଗଲ ଭିତରୁ ମୁଁ କଥାଟାକୁ ଠିକ୍ ମନେକରି ପାରୁ ନଥିଲି, ଯେ ପର୍ଯ୍ୟନ୍ତ ମୁଁ ମହାନଦୀ କୂଳରେ ନ ପହଞ୍ଚିଛି ।

କ୍ଷୁଦ୍ର ଧୀବର ପଲ୍ଲୀର ଘର ଗୁଡ଼ିକର ନଡ଼ା ଛପର କରା ଘର ସବୁ ଆଖିରେ ପଡ଼ିଲା ମାତ୍ରକେ ମନେ ପଡ଼ିଗଲା ସୋନପୁର ମାଛପାଇଁ ପ୍ରସିଦ୍ଧ । ପ୍ରତିଟି ଘର ଆଗରେ ଜାଲ ଝୁଲୁଛି । କେଉଁଠି ମାଛର ଖାଳେଇ ରଖାହୋଇଛି ତ କେଉଁଠି ଡେରା ହୋଇ ଠିଆ କରେଇ ଦିଆଯାଇଛି ଡଙ୍ଗାର ଆହୁଲା ଆଉ କାତସବୁ ।

ଧୀବରପଲ୍ଲୀକୁ ପଶୁ ପଶୁ ହଠାତ୍ ଆଖି ଆଗରେ ବିଶାଳ ମହାନଦୀର ଚେନାଏ ଅଂଶ ଦେଖିବାକୁ ପାଇଲି, କାରଣ ପଲ୍ଲୀଟିର ପ୍ରଶସ୍ତି ବୋଲି ବିଶେଷ କିଛି ନାହିଁ, ଅଛି କେବଳ ଦୈର୍ଘ୍ୟ । ବସ୍ତିଟି ନଦୀର କୂଳେ କୂଳେ ଲମ୍ବିଯାଇଛି ଅନେକ ଦୂରକୁ । ସ୍ତ୍ରୀ ଲୋକଟିଏ ବେଶ୍ ସଫା ସୁତୁରା ଗୋଟିଏ ମାଟିପିଣ୍ଡା ଉପରେ ବସି ତାର ଏକ ମାଂସଳ ଜଙ୍ଘ ଉପରେ ଦୁଇହାତ ରଖି ସଞ୍ଜବତୀ ବଳୁଥିଲା । ତାର ଦୁଇ ହାତରେ ବିଶାଏ ବିଶାଏ ଓଜନର ପିତଳ ଖଡୁସବୁ ମର୍ଜାଘଷା ହୋଇ ସୁନାପରି ଚକ୍ ଚକ୍ କରୁଥିଲା ଶେଷ ହୋଇ ଆସୁଥିବା ଦିନର ଆଲୁଅରେ । ମତେ ଦେଖି ସେ ଅତ୍ୟନ୍ତ ଆପଣାର ଲୋକପରି ପଚାରିଲା, 'କଅଣ ମାଛ ନବ ବାବୁ ?' ମୋର ମାଛ ନବାର ସାମାନ୍ୟତମ ଉଦ୍ଦେଶ୍ୟ ନଥିଲେ ମଧ ମୋ ପାଟିରୁ ଅଭ୍ୟାସବଶତଃ ବାହାରି ପଡ଼ିଲା 'ହଁ' । ହଉତ ସ୍ତ୍ରୀଲୋକଟିର ଏଇ ଅମାୟିକ ଯାଚଞ୍ଚାକୁ ଉପେକ୍ଷା କରିପାରି ନଥିଲି; କିନ୍ତୁ ମୁଁ ମହାନଦୀର ଦୃଶ୍ୟ ଦେଖୁ ଦେଖୁ ମୁହୂର୍ତ୍ତକ ପାଇଁ ଅନ୍ୟମନସ୍କ ହୋଇ ପଡ଼ିଥିଲି ।

ଜୀବନରେ ବାରମ୍ବାର ବହୁ ପରିବେଶରେ ମୁଁ ମହାନଦୀ ଦେଖିଛି; କିନ୍ତୁ ସୋନପୁର ପାଖର ଅପୂର୍ବ ମହାନଦୀ ମୁଁ କେବେ ଦେଖିଥିବା ପରି ମନେ ହଉ ନାହିଁ । ଏଠାରେ ମହାନଦୀ କେଶରୀ ମଧ୍ୟମା ନୁହଁ, ଗୁରୁ ନିତମ୍ବିନୀ । ଗୋଟାଏ ପଟେ କ୍ଷୁଦ୍ର ସୋନପୁର ଧୀବର ପଲ୍ଲୀର ଶାନ୍ତ ପରିବେଶ ଅନ୍ୟପଟେ ଧୂସର ପର୍ବତ ମାଳାର ଉତ୍ତୁଙ୍ଗ ଗାମ୍ଭୀର୍ଯ୍ୟ ଓ ମଝିରେ ଏକ ବିରାଟ ଜଳରାଶିର ରହସ୍ୟମୟ ପରିବ୍ୟାପ୍ତି । ସାମାନ୍ୟ ପବନରେ ମହାନଦୀର ଦେହେ ଦେହେ ପୁଲକର ଅପୂର୍ବ ରୋମାଞ୍ଚ । ଥରକୁ ଥର ମହାନଦୀ ଭାଙ୍ଗିପଡୁଛି ଛୋଟ ଛୋଟ ଅସଂଖ୍ୟ ଉର୍ମିରେ ଓ ତାର ମୃଦୁ ହିଲ୍ଲୋଳରେ କୂଳରେ ବନ୍ଧା ହୋଇଥିବା ଅସଂଖ୍ୟ ଛୋଟ ବଡ଼ ଡଙ୍ଗାସବୁ ପରସ୍ପର ଦେହରେ ବାଜି ବାଜି ଏକ ଅଦ୍ଭୁତ ସଂଗୀତ ସୃଷ୍ଟି କରୁଛନ୍ତି । ମନେ ହଉଛି ଯେପରି

ଜଙ୍ଗଲର ଏକ ଶାନ୍ତ ନିଥର ପରିବେଶ ଭିତରେ ଶୁଣାଯାଉଛି ଅନେକ ମଇଁଷି ଟିପାର ଶବ୍ଦ ।

—'ବାବୁ !'

ମୁଁ ଏକ ଅତିନ୍ଦ୍ରିୟ ଦେଶରୁ ଯେପରି ବାସ୍ତବତାକୁ ଓହ୍ଲେଇ ଆସିଲି ହଠାତ୍ ।

—'ମାଛ ନବ ପରା ?'

କିନ୍ତୁ ଇଏ କିଏ ? ମୋ ସାମ୍ନାରେ ଦୁଇହାତକୁ ଅଣ୍ଟାରେ ଦେଇ ସ୍ମିତ ହସି ଠିଆ ହେଇ ରହିଛି ଝିଅଟିଏ । ମନେ ହଉଛି ଯୌବନର ଗୁରୁ ଭାରରେ ଟୁଳୁ ଟୁଳୁ ହେଉଥିବା ଏଇ ମଦାଳସା ବୋଧହୁଏ ଯେ କୌଣସି ମୁହୂର୍ତ୍ତରେ ତା'ର ଭାରସାମ୍ୟ ହରେଇ ବସିବ । ୟେ' କଅଣ ସେଇ ପୁରାଣ ବର୍ଣ୍ଣିତ ମତ୍ସ୍ୟଗନ୍ଧା ସତ୍ୟବତୀ ! ଅପୂର୍ବ ! ତା'ର ଗହମରଙ୍ଗର କପୋଳ ଦିନାନ୍ତର ଆଲୋକରେ ଆଉଟା ତମ୍ବା ପରି ଜଳି ଉଠୁଛି ଯେପରି । ଠିକ୍ ତା' ପଛକୁ ମହାନଦୀର ଜଳରାଶି ଉପରେ ନାତିପ୍ରଶସ୍ତ ଆଲୋକର ସେତୁ ଲମ୍ବିଯାଇଛି ଏ କୂଳରୁ କୋ' ଯାଏଁ ଆଖି ପାଏନା ।

ମୁଁ କେତେ ବେଳେକେ କହିଲି, ''ହଁ'' ।

ଝିଅଟି ହସି ଉଠିଲା ଖିଲ୍ ଖିଲ୍ ହୋଇ ଗୋଟାଏ ପାହାଡ଼ୀ ଝରଣା ପରି, ''କିନ୍ତୁ ନଈ ଆର ପଟକୁ ଯିବାକୁ ହବ ସେଠି ମୋ' ଡଙ୍ଗା ତଳେ ମାଛର ଗାଲିସି ବାନ୍ଧି ଜିଆଇ ରଖିଛି ।''

ସେଇ ମଧ ବୟସ୍କା ସ୍ତ୍ରୀ ଲୋକଟି ପିଣ୍ଡା ଉପରେ ଠିଆ ହେଇ କହିଲା, ''ଯାଅ ବାବୁ, ସେଠି ମାଛ ଦେଖିବ, ଯୋ' ମାଛ ଲୋଡ଼ା ନେଇ ଆସିବ, ସବୁ ଜୀଅନ୍ତା ଅଛନ୍ତି ।''

ମତେ ତଥାପି ନିଶ୍ଚେଷ୍ଟ ଦେଖି ଝିଅଟି ତଥାପି ଅଣ୍ଟା ଉପରେ ହାତ ରଖି ମୁରୁକେଇ ମୁରୁକେଇ ହସୁଥାଏ, ଯେମିତି ସେ ଅନୁମାନ କରିପାରିଛି ଯେ ଏଇ ସହରି ଲୋକଟିର ନଈ ଆରପଟକୁ ଯିବର ସାହସ କୁଳଉ ନାହିଁ ।

ଏକ ମନୋରମ ସଂଧ୍ୟାରେ ମହାନଦୀରେ ନୌକା ବିହାର ତା' ପୁଣି ଏଇ ଉଦ୍‌ଭିନ୍ନ ଯୌବନାର ସାନ୍ନିଧ୍ୟରେ, ଏହା ଏକ ଅପ୍ରତ୍ୟାଶିତ ସୁଯୋଗ । ମୁଁ କହିଲି, ''କିନ୍ତୁ ଡଙ୍ଗା କିଏ ନବ ?''

ଝିଅଟି ତତ୍‌କ୍ଷଣେ କହିଲା, ''କାହିଁକି, ମୁଁ ?''

ମଧ ବୟସ୍କା ସ୍ତ୍ରୀ ଲୋକଟି ସାମାନ୍ୟ ଉଚ୍ଚସ୍ୱରରେ ହସିଲାପରା କହିଲା, ''ଶାରୀ ଡଙ୍ଗା ନେଲେ, ତା' ସହିତ ଡଙ୍ଗା ବାହିବାକୁ ଏ ମୁଲକରେ ମରଦ ମଧ ପାରିବେ ନାହିଁ ।''

ତା' ପରେ ଆମେ ଓହ୍ଲେଇ ଚାଲିଲୁ ଅନେକ ବଡ଼ ବଡ଼ ପଥର ଉପରେ ପାଦ ଦେଇ ନଈ କୂଳରେ ବନ୍ଧା ହୋଇଥିବା ଡଙ୍ଗା ପାଖକୁ । କହିବା ବାହୁଲ୍ୟ ଯେ ମୁଁ ପହଞ୍ଚିବାର ଅନେକ ଆଗରୁ ଶାରୀ ସେଠି ପହଞ୍ଚି ଡଙ୍ଗା ଫିଟେଇ ଆହୁଲା ଧରି ବସି ସାରିଥାଏ ଡଙ୍ଗା ଉପରେ । ମୋରି ଅନଭ୍ୟସ୍ତ ପାଦ ପାଇଁ କୂଳର ଶେଷ ପଥର ଉପରୁ ଡଙ୍ଗାକୁ ଉଠିବା ବେଶ୍ କଷ୍ଟକର । ମନେ ହୁଏ ଡଙ୍ଗାରେ ଗୋଟାଏ ପାଦ ଦଉ ଦଉ ସେ'ଟା ଆହୁରି ଘୁଞ୍ଚିଯିବ ପାଣି ଭିତରକୁ ଓ ଅନ୍ୟ ପାଦଟାକୁ ଠିକ୍ ସମୟରେ ଡଙ୍ଗା ଉପରକୁ ଆଣିହବ ନାହିଁ ପରା ! ମୁଁ ଟିକିଏ ଦ୍ୱିଧାଗ୍ରସ୍ତ ହେଲି । ତା'ପରେ ଦେଖିଲି ଶାରୀ କେତେବେଳେ ଡଙ୍ଗା ଏପଟକୁ ଚାଲି ଆସି ହାତ ବଢ଼େଇ ଦେଇଛି ମୋ' ଯିବା ପାଇଁ, ମୁଁ ହାତ ଧରିବା ମାତ୍ରେ ସେ ମତେ ଗୋଟାଏ ଝାଙ୍କରେ ଟାଣି ନେଲା ଡଙ୍ଗା ଉପରକୁ । ଡଙ୍ଗା ଚହଲିଗଲା ଟିକିଏ । ମୁଁ ମଧ୍ୟ ପ୍ରାୟ ଭାରସାମ୍ୟ ହରେଇ ବସୁ ବସୁ ଶାରୀକୁ ଧରିନେଇ ବଞ୍ଚିଗଲି । ପୁଣିଥରେ ଶାରୀ ହସି ଉଠିଲା ସେଇ ହସ, ଯାହା ପାହାଡ଼ୀ ଝରଣା ପରି ବହିଯାଏ, ଖାଲି ବହିଯାଏ ଅର୍ଥହୀନ ଭାବରେ । ସେ ବୋଧହୁଏ ହସୁଥିଲା ମୋର ଅହେତୁକ ଆଶଙ୍କା ପାଇଁ ।

ସୂର୍ଯ୍ୟ ବୁଡ଼ିଗଲା ।

କିନ୍ତୁ ମହାନଦୀର ପାଣି କଳା ଘୁମର ହୋଇଯିବା ପୂର୍ବରୁ ଚନ୍ଦ୍ର ଉଇଁ ଆସିଲା ଅକସ୍ମାତ୍ ଗୋଟାଏ ରୂପା ଥାଳୀପରି । ଆଜି କ'ଣ ପୂର୍ଣ୍ଣିମା ? ଯାହା ତିଥି ହଉନା କାହିଁକି,' ନଈ ପାଣିରେ ବିମ୍ବିତ ଚନ୍ଦ୍ରର ଅସଂଖ୍ୟ ଭଗ୍ନାଂଶ, ଯେପରି ସମୁଦାୟ ନଈଟାକୁ କରିଦେଇଛି ଗୋଟାଏ ବିଶାଳ ରୂପାକାତିଆ ମାଛ ।

ଡଙ୍ଗା ଚାଲିଛି । ଆମେ ବସି ରହିଛୁ ନୀରବରେ । ସେ ପରିବେଶରେ ବୋଧହୁଏ ଯେ କୌଣସି ସଂଳାପ ମନେ ହୋଇଥାନ୍ତା ନିରର୍ଥକ, ଅତିରିକ୍ତ, ମୁଁ ମୁଗ୍ଧ ହୋଇ ବସିରହିଥିଲି କେବଳ ।

ଶାରୀ ମଧ୍ୟ ବସିରହିଥିଲା ମୋର ବିପରୀତ ମଙ୍ଗରେ । ପ୍ରଥମେ ଶାରୀ କଥା ଆରମ୍ଭ କରିଥିଲା, 'ବାବୁ, କଅଣ ଭାବୁଚ ?'

'ମୁଁ କହିଲି, ନାଁ କିଛି ନୁହଁ—ଦେଖୁଚି ଏଇ ମହାନଦୀର ପାଣିରେ ବିମ୍ବିତ ଚନ୍ଦ୍ରମାକୁ ।'

ଏଥରକ ଶାରୀ ସିଧା ଚାଲି ଆସି ମୋ ପାଖରେ ବସିପଡ଼ି କହିଲା, 'ତମ ଦେଶରେ ନଈ ନାହିଁ ?'

—'ଅଛି, ତେବେ ଏତେବଡ଼, ଏଡ଼େ ସୁନ୍ଦର ନାହିଁ ।

ନଈର ପାଣିରେ ହାତ ବୁଡ଼େଇ ଶାରୀ ମୁଠାମୁଠା ରୂପାର ପାଣି ଫୋପାଡୁ ଥିଲା ଶୂନ୍ୟକୁ । ଅଦ୍ଭୁତ ଲାଗୁଥିଲା ଏଇ ଝିଅଟିକୁ ତା'ର ସାନ ସାନ କଥାରେ ଖୁସି ହେଇଯାଇ ହସି ଉଠିବା ପାହାଡ଼ୀ ଝରଣାର କୁଳୁ କୁଳୁ ପରି ।

ମୁଁ କହିଲି, 'ବାଃ ! ମୋର ଅନେକ ଦିନ ମନେ ରହିବ ତୋ ସହିତ ମହାନଦୀରେ ଏଇ ଚନ୍ଦ୍ର ବିହାର ।'

ଶାରୀ କହିଲା, 'ବାବୁ ! ତମେ ତ ଆସିଥିଲ ମାଛ ନବ ଆଉ ଯିବ । କେବେ ମନେ ପଡ଼ିଲେ ମାଛ ମନେ ପଡ଼ିବ, ଶାରୀ କାହିଁକି ମନେ ପଡ଼ିବ ?'

ମୁଁ କହିଲି, 'ମାଛଟା କ'ଣ ଏମିତି ଗୋଟାଏ ମନେ ରହିବାର କଥା, ମଣିଷ ସିନା ମନେ ରହନ୍ତି ।'

ପୁଣି ଥରେ ପାହାଡ଼ୀ ଝରଣା ପରି ସେଇ ହସ, 'ମୋ ପରି ଗୋଟାଏ ମାଛବାଲୀର ଝିଅ, ସିଏ ପୁଣି ମନେ ରହିବ ସହରୀ ବାବୁମାନଙ୍କ ପାଇଁ ।'

କିଛି ସମୟ ଚୁପ୍‌ଚାପ୍ ବିତି ଯାଇଥିଲା ତା ପରେ ।

ଏଥର ମୁଁ ପଚାରିଲି, 'ତୁ ବାହା ହେଇଚୁ ଶାରୀ ?'

ଡଙ୍ଗାର ମଙ୍ଗଟାକୁ ଧରି ତା'ର ଗତି ବଦଳେଇବାକୁ ଚେଷ୍ଟା କରି ଶାରୀ କହିଲା, 'ମୋ ପରି କାଳି ଝିଅକୁ କିଏ ବାହା ହବ ?' ହଠାତ୍ ଗୋଟାଏ ପ୍ଲାଷ୍ଟିକ୍ ଡଙ୍ଗା ପରି ଦୁଇ ତିନି ଥର ଚକର ଖାଇଗଲା । ମୁଁ ପ୍ରାୟ ପଡ଼ିଯାଇଥିଲି । ମତେ ଦୁଇହାତରେ କୁଣ୍ଢେଇ ଧରି ଅଟକେଇ ନେଲା ଶାରୀ । ପ୍ରଥମ ଧକ୍‌କାଟା କଟିଯିବା ପରେ ମୁଁ ମଧ ନିଜକୁ ଶାରୀର ଅନାହୂତ ବେଷ୍ଟନୀ ଭିତରୁ ମୁକ୍ତ କରିବାକୁ ବିଶେଷ ବ୍ୟଗ୍ର ହୋଇ ନାହିଁ । ସେଇ କେଇ ମିନିଟ୍ ମାତ୍ର ମୋର ମନେ ହେଇଥିଲା ଗୋଟାଏ ଯୁଗପରି ।

ଦେଖିଲି ଡଙ୍ଗା ଗୋଟାଏ ବୁଲାବାଟକୁ ମୁହଁଉଛି । ପଚାରିଲି, 'ସିଧା ନଯାଇ ଆମେ ଏତେବାଟ ବୁଲିବା କାହିଁକି ?'

ଶାରୀ ଆହୁଲା ଛାଡ଼ିଦେଇ ମୋ ପାଖକୁ ଆସି ଖୁବ୍ ବିସ୍ତାରିତ କରି ବୁଝାଇବାକୁ ଚେଷ୍ଟା କରିଥିଲା ଯେ ସିଧାଗଲେ ଗୋଟାଏ ଗଣ୍ଡ ପଡ଼ିବ, ଯାହା ଉପରେ ସେମାନେ ଡଙ୍ଗା ନିଅନ୍ତି ନାହିଁ । ମୁଁ ପୁଣି ପଚାରିଲି, 'କାହିଁକି ?'

ସେ କହିଲା, 'ସେଠି ଜହ୍ନ ରାତିରେ ମତ୍ସ୍ୟ-କନ୍ୟାମାନେ ଖେଳିବାକୁ ଉପରକୁ ଉଠନ୍ତି । ଆଉ ସେଇଠି ଖେଳନ୍ତି ଅନେକ ସମୟ ଧରି ସକାଳ ହେବା ପର୍ଯ୍ୟନ୍ତ ।'

ପ୍ରଥମ ପ୍ରତିକ୍ରିୟାରେ କହିଲି, 'ରବ୍‌ବିସ୍ ।' ତାପରେ କହିଲି, 'ଚାଲନାଁ ସେଇବାଟେ, ଖୁବ୍ ମଜା ହବ ଯଦି ମତ୍ସ୍ୟକନ୍ୟାମାନେ ସତକୁ ସତ ଖେଳୁଥିବେ ।'

ଶାରୀ କହିଲା, 'ନାଁ, ସେ ବାଟେ କେହି ଯାଆନ୍ତି ନାହିଁ....ବର୍ଷକୁ ବର୍ଷ...' କ'ଣ କହିବାକୁ ଯାଇ ଶାରୀ ଅଟକି ଗଲା । ମୁଁ ପ୍ରାୟ ଜିଦ୍ କରି କହିଲି, 'ଯେତେ ସବୁ କୁସଂସ୍କାର, ତୁ ଚାଲ ମୁଁ ଅଛି ।' ତା'ପରେ ପରିହାସ କରି କହିଲି, 'ଏତେ ଭାଗ୍ୟ କାହାର ହୁଏ, ଆସିଥିଲା ମାଛପାଇଁ ଅଥଚ ନେଇକରି ଫେରିଲା ଗୋଟାଏ ଜୀଅନ୍ତା ମତ୍ସ୍ୟକନ୍ୟା ! ଅଗତ୍ୟା ଶାରୀ ଡଙ୍ଗାର ମୋଡ଼ ଫେରେଇଲା ସେଇ ଗଣ୍ଡ ଉପରକୁ, ଯେଉଁଠାରେ ନଈର ପାଣି ହାବୁକା ମାରି ମାରି ଖେଳୁଚି ଚନ୍ଦ୍ରକିରଣ ସାଙ୍ଗରେ । ଶାରୀ ଆହୁଲା ମାରି ଚାଲିଛି ।

ମୁଁ ବସିଛି ଶାରୀର ବିପରୀତ ମଙ୍ଗରେ । ମୋ ଆଗରେ ଶାରୀର ଦେହର ସିଲ୍‌ହୁଟ୍ ଓ ତା ପଛପଟେ ଆକାଶକୁ ବେଶ୍ କିଛିବାଟ ଉଠି ଆସିଥିବା ଜହ୍ନ । ହଠାତ୍ ପଛକୁ ଫେରି ଚାହିଁଲି, କେତେବାଟ ଆସିଲୁଣି କଳନା କରିବାକୁ ।

ସେଇଠି, ଠିକ୍ ସେଇଠି ଯେମିତି ପାଣି ଦୁଇଭାଗ ହୋଇ ଯାଇଥିଲା ଏବଂ ସେଇ ଖଣ୍ଡିତ ଜଳଭାଗର ଦୁଇ ପଟରେ ଧାଡ଼ିବାନ୍ଧି ଠିଆ ହୋଇ ରହିଥିଲେ ମତ୍ସ୍ୟକନ୍ୟାମାନେ ସେମାନଙ୍କର ମାଛକାତିର ସାଞ୍ଜୁ ପିନ୍ଧି । ମୁଁ ସ୍ପଷ୍ଟ ଦେଖିପାରୁଛି ସେମାନଙ୍କର ମତ୍ସ୍ୟାକୃତି ମେଖଳା ଏକ ଛନ୍ଦାୟିତ ଗତିରେ ମିଶିଯାଇଛି ପାଣି ପର୍ଯ୍ୟନ୍ତ ଏବଂ ସେମାନଙ୍କର ଉତ୍ତମାଂଶ ସମ୍ପୂର୍ଣ୍ଣ ଆଭରଣହୀନ । ସେମାନଙ୍କର ବକ୍ଷୋଜ ସବୁ ଉଦ୍ଭାସିତ ହୋଇ ଉଠିଚି ଚନ୍ଦ୍ରକିରଣରେ ଭାସମାନ ବହୁ ଯୁଗ୍ମ ରଜତ କମଳ ସଦୃଶ ।

ସେମାନେ ଏକ ସଙ୍ଗରେ ହସି ଉଠିଲେ । ମୁହୂର୍ତ୍ତକ ପାଇଁ ଓ ତା' ପରେ ସେମାନେ ବେଢ଼ିଗଲେ ଶାରୀର ଚାରିପଟେ ଯେମିତି ସେମାନେ ବହୁ ଦିନରୁ ହଜେଇ ଦେଇଥିବା ବାନ୍ଧବୀକୁ ପାଛୋଟି ନେବା ପାଇଁ ଆସୁଛନ୍ତି । ମୋର ସମସ୍ତ ଶରୀର ଅସାଡ଼ ହୋଇଯାଇଥିଲା । ମୋରି ଆଖି ଆଗରେ ସେମାନେ ଶାରୀକୁ ଡଙ୍ଗାରୁ ଅନାୟାସରେ ଟୋକିନେଇ ଅଦୃଶ୍ୟ ହୋଇଗଲେ ପାଣି ଭିତରେ; କିନ୍ତୁ ଶାରୀ ପାଣିରେ ଅଦୃଶ୍ୟ ହୋଇଯିବା ଅବ୍ୟବହିତ ପୂର୍ବରୁ ମୁଁ ଠିକ୍ ଦେଖିଛି ଶାରୀ ବି ହୋଇ ଯାଇଥିଲା ସେମାନଙ୍କ ପରି–ଅଣ୍ଟାଠାରୁ ତଳକୁ ମାଛକାତିର ସାଞ୍ଜୁ ଆଉ ସେଇ ଆଭରଣହୀନ ଯୁଗ୍ମରଜତ କମଳ ।

ମୋ ସାମ୍ନାରେ ଖାଲି ରୂପାର ଜରିକାମ କରା ପାଣି ଝିଲିମିଲି ହଉଛି । ଖାଲି ଝିଲିମିଲି ।

କେହି କିଛି କଥା କହୁନାହିଁ–ଡଙ୍ଗା ତା'ର ଆପଣା ଛାଏଁ ଛାଏଁ ଭାସି ଭାସି ଚାଲିଛି ।

ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ବସିଛି । ଜାଣେନା ଗାଁକୁ କେତେବେଳେ ଫେରିବି ଓ ଫେରିଯାଇ ସେମାନଙ୍କୁ କଅଣ କୈଫିୟତ ଦେବି । ସେମାନେ କଅଣ ବିଶ୍ୱାସ କରିବେ ମୋ କଥା ? ସେମାନେ କ'ଣ ମତେ ସାନ୍ତ୍ୱନା ଦେଇ କହିବେ, ତମର କିଛି ଭୁଲ୍ ନାହିଁ, ସବୁ ବର୍ଷ ଆମ ପଲ୍ଲୀରୁ ଗୋଟିଏ ଗୋଟିଏ ଝିଅ ନଈକୁ ଦବାକୁ ପଡ଼େ—ନହେଲେ ନଈରେ ମାଛ ମରିବେ ନାହିଁ—ଆମର ବାପ ଅଜା ଚଉଦ ପୁରୁଷର ବେଉଷା ବୁଡ଼ିଯିବ !

ମୁଁ ସେଇ ଡଙ୍ଗା ଉପରେ ନିରୂପାୟ ହୋଇ ବସି ରହିଛି ଓ ମୋ ସାମ୍ନାରେ ଖାଲି ଝିଲିମିଲି ଝିଲିମିଲି ରୂପାର ପାଣି ।



# ବହୁରୂପୀ

ନୀଶିଥବାବୁଙ୍କର ସୁଦୂର ଆଫ୍ରିକାକୁ ସ୍ଥାନାନ୍ତରିତ ହେବା ଅତ୍ୟନ୍ତ ଅପ୍ରତ୍ୟାଶିତ ଥିଲା, କିନ୍ତୁ ନିଜର ସ୍ୱଜନ ଓ ବନ୍ଧୁମାନଙ୍କ ଠାରୁ ଦୂରେଇ ଯିବାର ଦୁଃଖ ଭିତରେ ଯେ ସାମାନ୍ୟ ଆନନ୍ଦ ମିଶି ନଥିଲା, ଏପରି ନୁହେଁ । ଶୈଶବ କାଳରେ ପଢ଼ା ହେଇଥିବା 'ଅନ୍ଧକାର ମହାଦେଶ' ପ୍ରତି ପ୍ରତ୍ୟେକ ଲୋକର ମନରେ କିଛିଟା ଭୟ ଓ କିଛି ରୋମାଞ୍ଚ ମିଶ୍ରିତ ହୋଇଥାଏ । ନୀଶିଥବାବୁଙ୍କ କମ୍ପାନୀର ହେଡ୍‌କ୍ୱାର୍ଟର ଇରାନ୍‌ରେ ହୋଇଥିଲେ ମଧ୍ୟ ତାଙ୍କର କମ୍ପାନୀର ଅନେକଗୁଡ଼ିଏ ଶାଖାଅଫିସ ଭାରତବର୍ଷ, ଅଷ୍ଟ୍ରେଲିଆ, ଆଣ୍ଡାମାନ୍ ଓ ଆଫ୍ରିକାରେ ମଧ୍ୟ ଅଛି । ଆଫ୍ରିକା ବଦଳିହବା କଥା ଯେତେବେଳେ ନାସ୍ତି କରିଦବା ସମ୍ଭବ ନୁହେଁ ସେତେବେଳେ ତାକୁ ସ୍ୱାଗତ କରିନବା ହିଁ ଉଚିତ୍ କାର୍ଯ୍ୟ । ତେଣୁ ନୀଶିଥବାବୁ ତାଙ୍କର ସାମାନ୍ୟ ଆସବାବପତ୍ର ଧରି ସେଦିନ ସନ୍ଧ୍ୟା ଫ୍ଲାଇଟ୍‌ରେ ପାଲମ୍ ଏଆର୍‌ପୋର୍ଟ୍‌ରୁ ରମାନା ହେଇଥିଲେ ।

'ଟିମ୍-ବକ୍-ଟୁ' । ଭାରି ରୋମାଣ୍ଟିକ ନାଆଁ । ନାଆଁଟାକୁ ଶୁଣିଲେ ହଠାତ୍ ଠଉର୍ କରାଯାଏନାଁ ଏ'ଟା ଠିକ୍ କୋ' ଜାଗାରେ ବୋଲି । ଯଦିଓ ଟିମ୍-ବକ୍-ଟୁ ସମ୍ପର୍କରେ ଅନେକ ରୋମାଞ୍ଚକର ଗଳ୍ପ ମୁଖେ ମୁଖେ ଓ ବିଭିନ୍ନ ପତ୍ର ପତ୍ରିକା ଜରିଆରେ ବହୁଳ ପ୍ରଚାରିତ । ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଇଂରେଜ, ଫରାସୀ ଓ ଡଚ୍‌ମାନଙ୍କ ଭିତରେ ଏହି 'ଅନ୍ଧକାର ମହାଦେଶ'କୁ ଜୟ କରିବା ପାଇଁ ତୀବ୍ର ପ୍ରତିଯୋଗିତା ଲାଗି ରହିଥିଲା । ସେଇ ସମୟରେ ଜନୈକ ଡଚ୍ ଦମ୍ପତ୍ତି ଟିମ୍-ବକ୍-ଟୁ ପଲ୍ଲୀ ଗାଆଁଟିକୁ ଆବିଷ୍କାର କରି ଆଶ୍ଚର୍ଯ୍ୟରେ ଅଭିଭୂତ ହେଇପଡ଼ନ୍ତି । ଯଦିଓ ସେମାନେ ଟିମ୍-ବକ୍-ଟୁ ଆଦିମ ଅଧିବାସୀମାନଙ୍କର ଭାଷା ବୁଝିବାରେ ଅସମର୍ଥ ଥିଲେ, ତଥାପି ସେମାନଙ୍କୁ ଉପଲବ୍ଧି କରିବାକୁ ବିଶେଷ କଷ୍ଟ ହେଇ ନଥିଲା ଯେ ଟିମ୍-ବକ୍-ଟୁର ଅଧିବାସୀମାନଙ୍କର ମାଟିଝାଟି ଘର ସବୁ ଛାଉଣି କରାଯାଇଥିଲା ବିଶୁଦ୍ଧ ସୁବର୍ଣ୍ଣ ଦେଇ । ଆମ ଦେଶରେ ଯତ୍ରତତ୍ର ମିଳୁଥିବା ଗେଙ୍ଗୁଟି ପଥର ପରି ଟିମ୍-ବକ୍-ଟୁର ମାଟି ଆଡ଼େଇ ଦେଲେ ମିଳୁଥିଲା ସୁନା, ଆଉ ସୁନା । ଯଥାର୍ଥରେ ସେହି ଡଚ୍ ଦମ୍ପତ୍ତି ଉପଲବ୍ଧି କରିଥିଲେ ଯେ ସମଗ୍ର ଟିମ୍-ବକ୍-ଟୁଟା ଗୋଟାଏ ସୁବର୍ଣ୍ଣର ପାହାଡ଼ ଉପରେ ଅବସ୍ଥିତ, କେଉଁଠି ପୀତାଭ ଓ କେଉଁଠି ହରିତାଭ । ବାହାର ପୃଥିବୀରୁ ସମ୍ପୂର୍ଣ୍ଣ ଯୋଗାଯୋଗ ଶୂନ୍ୟ ହୋଇଯିବା ଫଳରେ ବାହାର ପୃଥିବୀରେ ସୁବର୍ଣ୍ଣର ମୂଲ୍ୟ

ସମ୍ପର୍କରେ ସେମାନଙ୍କର ଲେଶମାତ୍ର ଧାରଣା ନଥିଲା । ବାକ୍ସ ଭର୍ତ୍ତିକରି ସୁବର୍ଣ୍ଣ ଆଣିବା ପରେ ଅନେକ ଡଚ୍ ଲୋକେ ଟିମ୍-ବକ୍-ଟୁକୁ ଯାଇ ଛାଉଣି ପକାଇଥିଲେ ।

ନୀଳ-ନୀରା ନାଇଜର୍ ନଦୀ କୂଳରେ ଅବସ୍ଥିତ ଟିମ୍-ବକ୍-ଟୁ ସହରର ରାସ୍ତା ଘାଟରେ ବୁଲୁ ବୁଲୁ ନୀଶିଥବାବୁ ଏହି କଥା ହିଁ ସ୍ମରଣ କରୁଥିଲେ ଓ ଭାବୁଥିଲେ ଯେ ନିକଟ ଅତୀତର ଏକ ପଲ୍ଲୀ ଗାଆଁ ଓ ତା'ର ଅନାବିଳ ଅଧିବାସୀମାନଙ୍କର ପାଶ୍ଚାତ୍ୟ ପ୍ରଭାବରେ କି ଅଭୂତପୂର୍ବ ପରିବର୍ତ୍ତନ ନ ହେଇଚି ।

ପହଞ୍ଚିବାର ଅଳ୍ପ କେଇଦିନ ଭିତରେ ଟିମ୍-ବକ୍-ଟୁ ସହର ଓ ତାର ଆଖପାଖ ଅଞ୍ଚଳ ସବୁ ବୁଲି ଦେଖିନବା ଇଚ୍ଛା ଥିଲା ନୀଶିଥବାବୁଙ୍କର, ଯାହା ସ୍ୱାଭାବିକ୍ । ନୀଶିଥବାବୁଙ୍କୁ ଆବିଷ୍କାର କରିବାକୁ ବିଳମ୍ବ ହୋଇ ନଥିଲା ଯେ ଯଦିଓ ଟିମ୍-ବକ୍-ଟୁ ଗୋଟିଏ ଛୋଟକାଟର ସହର ହୋଇ ଗଢ଼ି ଉଠିଛି ତଥାପି ତା'ର ପାରିପାର୍ଶ୍ୱିକ ଅବସ୍ଥା ଯଥେଷ୍ଟ ବନ୍ୟ ଅଛି । ନାଇଜର୍ ନଦୀର ଜଳପ୍ରପାତ, ଘଞ୍ଚତମାଳ, ନାରିକେଳ ବୃକ୍ଷରାଜି, ସାନ୍ଦ୍ର ଜଙ୍ଗଲ ଟିମ୍-ବକ୍-ଟୁର ଚତୁଃପାର୍ଶ୍ୱକୁ ଯଥେଷ୍ଟ ବନ୍ୟ ଓ ଆଦିମ ରଖିଛି ।

ଇତି ମଧ୍ୟରେ ନୀଶିଥବାବୁ ଗୋଟିଏ ପ୍ରକାଣ୍ଡ ହ୍ରଦ ଆବିଷ୍କାର କରିଛନ୍ତି । ହ୍ରଦ ଉପରେ ନୀଳ-ଜଳର ଅଖଣ୍ଡ ବିସ୍ତୃତି ଓ ତା'ର ଚାରିପଟର ଘଞ୍ଚ ଅଥଚ ନିସ୍ତବ୍ଧ ଜଙ୍ଗଲ ମନରେ ଏକ ଅଭୁତ ପ୍ରଶାନ୍ତି ଆଣିଦିଏ । ହ୍ରଦ କୂଳରେ ଛୋଟ ବଡ଼ ହୁଲି ଡଙ୍ଗାସବୁ ଖୁଣ୍ଟରେ ବନ୍ଧା ହୋଇ ହ୍ରଦର ଅନୁଚ୍ଚ ତରଙ୍ଗରେ ସାମାନ୍ୟ ଇତସ୍ତତଃ ହଉଥା'ନ୍ତି । ମନେହେବ ଏଇ ଅଖଣ୍ଡ ନୀରବତା ଭିତରେ ସେମାନେ ଯେପରି ପରସ୍ପର ସହିତ ଚୁପ୍‌ଚୁପ୍ ଖୁସି ଗପ କରୁଛନ୍ତି ।

ସେ ଡଙ୍ଗା ସବୁ ଟିମ୍-ବକ୍-ଟୁର ଆଦିମ ଅଧିବାସୀମାନଙ୍କର ଏବଂ ସହରରେ ଥିବା ସାହେବ ବଡ଼ ଲୋକମାନଙ୍କର ନୌକା ବିହାର ପାଇଁ ଉଦ୍ଦିଷ୍ଟ । ନୀଶିଥବାବୁ ଅବସର ବିନୋଦନ ପାଇଁ କିଛିଥର ସେ ନୌକାର ସୁଯୋଗ ନେଇଛନ୍ତି । କିନ୍ତୁ ସେଦିନ ନୀଶିଥବାବୁଙ୍କ ହାତରେ ଅଳ୍ପ କିଛି ଛୁଟିଥିଲା ଓ ନୀଶିଥବାବୁ ଏଇ ସୁଦୀର୍ଘ ହ୍ରଦକୁ ଅତିକ୍ରମ କରି ହ୍ରଦର ଅପରପାର୍ଶ୍ୱକୁ ଯିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ନୀଶିଥବାବୁ ବିସ୍ମିତ ହୋଇଥିଲେ ଯେ ଅପରପାର୍ଶ୍ୱକୁ ନବା ପାଇଁ ନୌକାଚାଳକମାନେ ତାଙ୍କୁ ନାସ୍ତି କରି ଦେଇଥିଲେ । ନୌକା ଚଳାଉଥିବା ଲୋକମାନଙ୍କର ନାସ୍ତି କରି ଦେବାର କଥାଟା ନୀଶିଥବାବୁ ଯଦିଓ ବୁଝୁଥିଲେ ତାଙ୍କର ଦୋ' ଭାଷୀ ଜରିଆରେ, ତଥାପି ନାଉରିଆମାନଙ୍କର ଆଖିରେ ଯେଉଁ ଆତଙ୍କ ଫୁଟି ଉଠିଥିଲା, ତାହା ସେ ଲକ୍ଷ୍ୟ କରି ପାରିଥିଲେ । ସେମାନେ ସବୁ ସେଇ ଜାଗାର ଅଧିବାସୀ ପୁରୁଷାନୁକ୍ରମିକ

ଭାବରେ । ତାହାହେଲେ ଏତେ ଆତଙ୍କ କାହିଁକି ? କଅଣ ବା ଅଛି ହ୍ରଦର ଆରପଟେ ? କୌଣସିମତେ ନୀଶିଥବାବୁ ତାଙ୍କର କୌତୂହଳ ଦମନ କରିପାରି ନଥିଲେ । ତାଙ୍କର ପିଅନ ଜରିଆରେ ସେ ବାରମ୍ବାର ପ୍ରଶ୍ନ କରି କଥାଟାକୁ ଜାଣିବାକୁ ଚାହିଁଥିଲେ, କିନ୍ତୁ ନୌକା ଚାଳକମାନେ ସେ ସମ୍ପର୍କରେ କୌଣସି କଥା ଉତ୍‌ଥାପନ କରିବାକୁ ଆଦୌ ପ୍ରସ୍ତୁତ ନଥିଲେ । ସେମାନଙ୍କ ପାଖରେ ନିରସ୍ତ ହୋଇ ଥିଲେ ମଧ୍ୟ ନୀଶିଥବାବୁ କଥାଟାର ଅସଲ ମର୍ମ ଜାଣିବା ପାଇଁ ତାଙ୍କର ତଦନ୍ତ ଅବ୍ୟାହତ ରଖିଥିଲେ ।

କଥାଟା ଅପ୍ରତ୍ୟାଶିତ ଭାବରେ ଉତ୍‌ଥାପିତ ହେଇଥିଲା ନୀଶିଥବାବୁଙ୍କର ଜଣେ ଡଚ୍‌ବନ୍ଧୁଙ୍କର ଡ୍ରଇଂ ରୁମ୍‌ରେ । ଗୃହସ୍ୱାମୀ ଟିମ୍-ବକ୍-ଟୁ ଆସିବା ପୂର୍ବରୁ ସମ୍ପର୍କିତ ତଥ୍ୟ ହଲାଣ୍ଡରେ ହିଁ ଶୁଣିଥିଲେ ।

ଘଟଣାଟା ପ୍ରାୟ କୋଡ଼ିଏ ବର୍ଷ ତଳର କଥା । ହ୍ରଦ ଆରପଟେ ପ୍ରାୟ ଦଶ ଏକର ହବ ଜାଗା ନେଇ ମିସ୍‌ବାଥ୍ ନାମକ ଜଣେ ମହିଳା ସେଠି ରହୁଥିଲେ । ତଙ୍କର ପ୍ରକୃତ ଘର ଥିଲା ଆମଷ୍ଟରଡ୍ୟାମ୍‌ରେ । କିନ୍ତୁ ଟିମ୍-ବକ୍-ଟୁ ହ୍ରଦ ତୀରର ପ୍ରାକୃତିକ ଶୋଭା ପାଇଁ ସେ ସେଇଠାରେ ହିଁ ବସବାସ କରି ରହିବାକୁ ମନସ୍ଥିର କରିନେଇ ଥିଲେ । ତାଙ୍କର ଅର୍ଥର କୌଣସି ଅଭାବ ନଥିଲା । ଖଣ୍ଡେ ଛୋଟ ବଙ୍ଗ୍ଳୋଟାଇପ୍ ଘର । ତା' ଭିତରେ ସିଏ ଓ ଆଉ ଦୁଇଜଣ ବବୁର୍ଚ୍ଚି, ଖାନ୍‌ସାମା ଓ ଦୁଇଟି ଡ୍ୟାସ୍ ହାଉଣ୍ଡ୍ କୁକୁର । ସେ ପ୍ରାୟ ଏକା ଏକା ରହିବାକୁ ଭଲ ପାଆନ୍ତି । ତାଙ୍କର ଗୋଟିଏ ବେଶ୍ ସମୃଦ୍ଧ ଲାଇବ୍ରେରୀ ମଧ୍ୟ ଥିଲା ଏବଂ ଅନ୍ୟାନ୍ୟ ଅନେକ ବହି ଭିତରେ ଅନେକ ବହିଥିଲା ବନ୍ୟଜନ୍ତୁ ଓ ଚଢ଼େଇମାନଙ୍କ ସମ୍ପର୍କରେ । ବିରଳ ପଶୁପକ୍ଷୀମାନଙ୍କର ଫଟ ଉଠେଇ ଓ ସେମାନଙ୍କ ସମ୍ପର୍କରେ ତଥ୍ୟ ଆହରଣ କରି ବିଦେଶୀ ପତ୍ରପତ୍ରିକାକୁ ପଠେଇବାରେ ତାଙ୍କର ଖୁବ୍ ସଉକ୍ ଥିଲା ଏବଂ ଏଇ ହବି ଜରିଆରେ ସେ ମଧ୍ୟ ବେଶ୍ ଅର୍ଥ ଉପାର୍ଜନ କରୁଥିଲେ । କେତେବେଳେ କେମିତି ମନ ହେଲେ ତାଙ୍କର କନ୍‌ଭର୍ଟିବ୍‌ଲ୍ ଭୋକ୍‌ସ୍ ୱାଗନ୍ ଖଣ୍ଡକ ଧରି ସେ ସହରକୁ ଆସି କିଛି ସଂମୟ ବୁଲାବୁଲି କରି ଫେରି ଯାଆନ୍ତି । କେବେ କେମିତି ତାଙ୍କ ଘରକୁ ଅତିଥିମାନେ ଆସିଲେ ସେଇ ନିରୋଳା ଘରଟି ଉତ୍ସବ-ମୁଖର ହୋଇ ଉଠେ । ରେକର୍ଡ଼ ପ୍ଲେୟାର୍‌ରେ କିଛି ଭଲ ଭଲ ଗୀତ ବାଜେ, ମଦ ଗ୍ଲାସ୍‌ର ଟୁଙ୍ଗ୍ ଟାଙ୍ଗ୍ ଶବ୍ଦ ଶୁଭେ ଏବଂ ପୁଣି ଅତିଥିମାନେ ଚାଲିଗଲେ ସମଗ୍ର ଘରଟିକୁ ନୀରବତା ଗୋଟାଏ ମଶାରୀ ପରି ଢାଙ୍କି ବସେ ।

ଦିନେ ମିସ୍ ବାଥ୍ ଗାଡ଼ି ଛୁଟେଇ ଘରକୁ ଫେରୁଥିଲେ । ହଠାତ୍ ଖୁବ୍ ଜୋର୍‌ରେ ବ୍ରେକ୍ ଦେଲେ, ଗାଡ଼ିର ଟାୟାର୍ ସବୁ କିଁ କିଁ ଶବ୍ଦ କରି ନିଶ୍ଚଳ ହେଇଗଲେ ଏବଂ ବାଥ୍ ଦେଖିଲେ ଯେ ତାଙ୍କର ରାସ୍ତା ଅବରୋଧ କରି ଗୋଟାଏ ପ୍ରକାଣ୍ଡ ବହୁରୂପୀ ଠିଆ ହେଇଛି । ଆମେ ସବୁ ଦେଖିଥିବା ପର୍ବତୀ ଏଣ୍ଡୁଅ ବା ବହୁରୂପୀ ପରି ସେ ବହୁରୂପୀ

ନୁହେଁ । ସେଟା ଅନେକ ବଡ଼ । ପ୍ରାୟ ଗୋଟାଏ ପର୍ସିଆନ୍ ବିଲେଇ ପରି । ସେମାନେ ତର୍ ତର୍‌ରେ ଚାଲିପାରନ୍ତି ନାହିଁ । ଚାରିଗୋଡ଼ ଉପରେ ଭରା ଦେଇ ଥରି ଥରି ଆସ୍ତେ ଆସ୍ତେ ପାଦ ଗଣି ଗଣି ଚାଲନ୍ତି । ଏବଂ ଶତ୍ରୁର ଆଶଙ୍କା ହେଲେ ଏକ ଭୀଷଣ ଗର୍ଜନ କରନ୍ତି ।

ମିସ୍‌ବାଥ୍ ବହୁରୂପୀ ସଂପର୍କରେ ଅବିଦିତ ନୁହଁନ୍ତି । ସେ ଜାଣନ୍ତି ଯେ ବହୁରୂପୀର ଆଖି ଏପରି ତିଆରି ଯେ ସିଏ ଏକାଥରକେ ତିନିଶହ ଅଶି ଡିଗ୍ରୀ ଦେଖିପାରେ । ଗୋଟାଏ ଆଖି ଆଗକୁ ଦେଖିଲାବେଳେ ଆର ଆଖିଟାକୁ ପଛପଟକୁ ବୁଲେଇ ଏକା ସାଙ୍ଗରେ ସମଗ୍ର ପରିସ୍ଥିତିର ସମୀକ୍ଷା କରିପାରେ । ବହୁରୂପୀ ବେଙ୍ଗ ପରି ତ'ର ଜିଭକୁ ପ୍ରାୟ ଚାରି ପାଞ୍ଚ ଇଞ୍ଚ ଆଗକୁ ଫୋପାଡ଼ି କଣ୍ଟା କଣ୍ଟା ଅଠାଳିଆ ଜିଭରେ ପୋକଜୋକ ଧରି ଖାଏ । ଯଦିଓ ସାଧାରଣ ଲୋକଙ୍କର ବିଶ୍ୱାସ ବହୁରୂପୀ ଅତ୍ୟନ୍ତ ବିଷାକ୍ତ ବୋଲି, ବିଜ୍ଞାନ କୁହେ ବହୁରୂପୀ ଠାରେ ବିଷର ଲେଶ ମାତ୍ର ନାହିଁ । ଅତ୍ୟନ୍ତ ନିରୀହ, ଏବଂ ସେଇଥି ପାଇଁ ଆତ୍ମରକ୍ଷା କରିବାକୁ ପ୍ରକୃତି ତାକୁ ଏକ ଅପୂର୍ବ ଐଶ୍ୱର୍ଯ୍ୟ ଦେଇଛି । ସେ ଯେଉଁ ପୃଷ୍ଠଭୂମିରେ ରହିବ, ଆପେ ଆପେ ତା'ର ସାରା ଦେହରେ ସେଇ ରଙ୍ଗ ସଞ୍ଚରିଯିବ ।

କିନ୍ତୁ ଏତେ ବଡ଼ ବିଶାଳକାୟ ବହୁରୂପୀ ଦେଖି ନଥିଲେ ମିସ୍ ବାଥ୍ । ତେଣୁ ଗୋଟିଏ ଛୋଟ କାଠି ସାହାଯ୍ୟରେ ବହୁରୂପୀଟିକୁ ଧରି ଗାଡ଼ିର ଲଗେଜ୍ ବୁଟ୍‌ରେ ବନ୍ଦ କରି ଦେଇଥିଲେ ମିସ୍‌ବଥ୍ ଓ ଗାଡ଼ି ଚଲାଇ ଘରକୁ ଫେରି ଆସିଥିଲେ । ମିସ୍ ବାଥ୍‌ଙ୍କର ଉଦ୍ଦେଶ୍ୟ ଥିଲା ସେଇ ବହୁରୂପୀଟିକୁ ପୋଷା ଭାବରେ ତାଙ୍କ ଘରେ ରଖିବା ପାଇଁ ଓ ଅତି ନିକଟରୁ ତା'ର ଗତିବିଧି ଲକ୍ଷ୍ୟ କରିବା ପାଇଁ । କିନ୍ତୁ ଆଶ୍ଚର୍ଯ୍ୟର କଥା ଘରକୁଆସି ଲଗେଜ୍ ବୁଟ୍ ଖୋଲିଲା ବେଳକୁ ସେ ବହୁରୂପୀଟି ଅନ୍ତର୍ଦ୍ଧାନ ହେଇଯାଇଥିଲା । କିନ୍ତୁ କୁଆଡ଼େ ତ ବାଟ ନାହିଁ, ଗଲା ବା କୁଆଡ଼େ ? ସେ ଦିନ ମିସ୍ ବାଥ୍ ଆଚମ୍ବିତ ହେଇଯାଇଥିଲେ । କିନ୍ତୁ ତା'ର ଦିନକ ପରେ ତା'ର ହେତୁ ବୁଝିପାରିଥିଲେ ମିସ୍ ବାଥ୍, ଯେତେବେଳେ ତାଙ୍କର ସାରା ଗାଡ଼ିଟିରୁ ଏକ ଉତ୍କଟ ପୂତିଗନ୍ଧ ନିର୍ଗତ ହଉଥିଲା । ମିସ୍‌ବାଥ୍ ବୁଝି ପାରିଥିଲେ ଯେ ଅନନ୍ୟୋପାୟ ହେଇ ବହୁରୂପୀଟି ଲଗେଜ୍ ବୁଟ୍‌ରୁ ଗାଡ଼ିର ଡୋର୍ ଚ୍ୟାନେଲ୍‌କୁ ଯେଉଁ କ୍ଷୁଦ୍ର ଛିଦ୍ରଟି ଅଛି, ତା'ରି ଭିତର ଦେଇ ବାହାରି ଯିବାକୁ ଚେଷ୍ଟା କରିଛି । କିନ୍ତୁ ସିଏ କଅଣ ଜାଣେ ଯେ ଚ୍ୟାନେଲ୍‌ର କ୍ଷୁଦ୍ର ରନ୍ଧ୍ର ଗୋଟାଏ ଅନ୍ଧଗଳି ବୋଲି ? ସେଠି ପହଞ୍ଚି ସେଇ ଅଣଓସାରିଆ ଜାଗା ଭିତରେ ଲେଉଟି ଫେରି ଆସିବା ଆଉ ତା' ପକ୍ଷରେ ସମ୍ଭବ ହୋଇ ନାହିଁ, ଏବଂ କିଛି ସମୟ ପରେ ସେ ଅବଶ୍ୟମ୍ଭାବୀ ମୃତ୍ୟୁ ମୁଖରେ ପଡ଼ିଛି । ନିରୀହ ବହୁରୂପୀଟିର ଏଇ ଶ୍ୱାସରୁଦ୍ଧ ମୃତ୍ୟୁ ମିସ୍‌ବାଥ୍‌ଙ୍କ ମନରେ ବହୁ କରୁଣାର ଉଦ୍ରେକ କରିଥିଲା । କିନ୍ତୁ ସେତେବେଳକୁ ଅନେକ ବିଳମ୍ବ ହୋଇ ଯାଇଥିଲା ।

ଘଟଣାଟାକୁ ପ୍ରାୟ ଦୁଇ ତିନି ଦିନ ଧରି ମିସ୍‌ବାଥ୍ ବିସ୍ମରଣ ହୋଇ ପାରୁ ନଥିଲେ । ବେଳେବେଳେ ହଠାତ୍ ତଙ୍କ ଆଖି ଆଗରେ ଯେପରି ବହୁରୂପୀଟି ଦିଶି ଯାଉଥିଲା । ତା' ପରଦିନ ଡିନର୍ ଟେବୁଲ୍ ଉପରେ ବହୁରୂପୀଟିର ପ୍ରକାଣ୍ଡ ଛାଇ ଦେଖି ମିସ୍‌ବାଥ୍ ବେତ୍ରାହତା ପରି ଚମକି ପଡ଼ିଥିଲେ । କିନ୍ତୁ ପର ମୁହୂର୍ତ୍ତରେ ସେ ତାଙ୍କର ଭ୍ରମ ବୁଝିପାରିଥିଲେ । ପୋକ ପାଇଁ ବଲ୍‌ବ ପାଖରେ ଦିଆ ହୋଇଥିବା ଡାଳର ଥିଲା ସେ ଛାଇଟା । ବହୁରୂପୀ ମୃତ୍ୟୁର ଚତୁର୍ଥ ଦିନ ସେଇ ଆଶ୍ଚର୍ଯ୍ୟ ଘଟଣାଟି ଘଟିଥିଲା ।

ସେଦିନ ସକାଳୁ ଗାଡ଼ି ପାଖକୁ ଯାଇ ମିସ୍ ବାଥ୍‌ଙ୍କର ଆଖି ଦୁଇଟି ଆଶ୍ଚର୍ଯ୍ୟରେ ବିସ୍ଫାରିତ ହୋଇଗଲା । ସେ ଯାହା ଦେଖୁଛନ୍ତି, ତା ଠିକ୍ କି ନୁହଁ, ତାହା ପରୀକ୍ଷା କରିବା ପାଇଁ ତାଙ୍କୁ ତାଙ୍କର ଖାନ୍‌ସାମା ଓ ବବୁର୍ଚ୍ଚିଙ୍କର ଆଶ୍ରୟ ନବାକୁ ପଡ଼ିଥିଲା । କିନ୍ତୁ ସେମାନେ ମଧ୍ୟ ଏକ ସ୍ୱରରେ ସ୍ୱୀକାର କଲେ ଯେ ଗାଡ଼ିର ଡ୍ରାଇଭିଂ ସିଟ୍‌ର ଦୁଆର ଉପରେ ଯେଉଁ ଚିତ୍ରଟି ଧୀରେ ଧୀରେ ଅସ୍ପଷ୍ଟରୁ ସ୍ପଷ୍ଟ ହୋଇ ଆସୁଛି,ତାହା ଗୋଟାଏ ବହୁରୂପୀର ଚିତ୍ର । କିନ୍ତୁ ୟା' କଅଣ ସମ୍ଭବ ? ଏଇ କଥା ପ୍ରାୟ ଗୋଟାଏ ସପ୍ତାହ ମିସ୍ ବାଥ୍‌ଙ୍କର ମନକୁ ଆଚ୍ଛନ୍ନ କରି ରଖିଲା । ତାହାହେଲେ ବିଜ୍ଞାନ କଅଣ ପରାସ୍ତ ହୋଇଗଲା ? ମିସ୍ ବାଥ୍ ଦିନର ଆଲୋକ ପରି ଯାହା ତାଙ୍କର ଗାଡ଼ି ଉପରେ ପ୍ରତ୍ୟକ୍ଷ କରୁଛନ୍ତି, ତାହା କଅଣ ଗୋଟାଏ ଆଧିଭୌତିକ ଘଟଣା ? ଏ ଦ୍ୱନ୍ଦ୍ୱର ଯେପରି ସମାଧାନ ନାହିଁ । କିନ୍ତୁ କିଛିଦିନ ପରେ କଥାଟା ସାମାନ୍ୟ ଘଷରା ହୋଇଯିବାରୁ ମିସ୍ ବାଥ୍‌ଙ୍କ ମନରୁ ସଂଶୟର ଉଗ୍ରତା ବହୁ ପରିମାଣରେ ଲାଘବ ହୋଇ ଯାଇଥିଲା । ସେଇ ଗାଡ଼ିଟିକୁ ଧରି ମିସ୍ ବାଥ୍ ଯିବା ଆସିବା କରୁଥିଲେ ଏବଂ ତାଙ୍କର ପରିଚିତ ମହଲରେ ଆଧିଭୌତିକ ଶକ୍ତିର ଏକ ନିଶ୍ଚିତ ପ୍ରମାଣ ରୂପେ ଗାଡ଼ି ଉପରର ବହୁରୂପୀ ଚିତ୍ରଟିକୁ ସାକ୍ଷ୍ୟ ମଧ୍ୟ ଦେଉଥିଲେ ।

ଆଉ ଦିନେ ମିସ୍ ବାଥ୍ ତାଙ୍କ ବଙ୍ଗଳା ଫାଟକ ଭିତରେ ପଶୁ ପଶୁ ତିନି ଚାରିଟି ବହୁରୂପୀଙ୍କୁ ଏକତ୍ର ଦେଖିଲେ । କିନ୍ତୁ ମିସ୍ ବାଥ୍ ପୂର୍ବ ଭ୍ରମର ପୁନରାବୃତ୍ତି କରିବେ ନାହିଁ । ତେଣୁ ସେ ଗୋଟିଏ ନାଇଲନ୍ ନେଟ୍ ସାହାଯ୍ୟରେ ବହୁରୂପୀଗୁଡ଼ିକୁ ଧରି ନେଇ ତାଙ୍କ ବସିବା ଘରେ ଗୋଟିଏ ତାର ଜାଲି ଘେରା ବାକ୍‌ସ ଭିତରେ ରଖିଲେ । ବହୁରୂପୀମାନଙ୍କର ସ୍ୱାଚ୍ଛନ୍ଦ୍ୟ ବା ଖାଦ୍ୟପେୟର କୌଣସି କାର୍ପଣ୍ୟ ସେ କରି ନାହାନ୍ତି ।

ଏବେ କିଛିଦିନ ଧରି ମିସ୍ ବାଥ୍ ତାଙ୍କର ହତା ଭିତରେ ବୁଲାଚଲା କରୁ କରୁ ପ୍ରାୟ ବହୁରୂପୀ ଦେଖୁଛନ୍ତି । ପ୍ରକାଣ୍ଡ ହତାର ନେଳି ଘାସ, ଆଉ ଗଛପତ୍ର ଭିତରେ ସେମାନଙ୍କୁ ବାରିନବା ସବୁବେଳେ ସହଜସାଧ୍ୟ ନୁହେଁ, କିନ୍ତୁ କେତେବେଳେ କେମିତି ଗୋଟାଏ ଦୁଇଟା ରାସ୍ତାର ନାଳି ମୋରମ୍ ଉପରକୁ ବା ପାହାଚ ଉପରକୁ ଉଠି ଆସିଲେ ବାରି ହୋଇ ପଡ଼ନ୍ତି କିନ୍ତୁ ସେମାନଙ୍କ ପରି ନିରୀହ ସରୀସୃପ ହତା ଭିତରେ

ଚଲାବୁଲା କଲେ କ୍ଷତି ବା କଅଣ ? ୟା' ଭିତରେ ମିସ୍ ବାଥ୍ ତାଙ୍କର ପୋଷ୍ୟ ବହୁରୂପୀମାନଙ୍କ ପାଇଁ ଗୋଟିଏ ସୁଦୃଶ୍ୟ ଓ ଦୀର୍ଘ ପଞ୍ଜୁରୀ ତିଆରି କରିଛନ୍ତି । ପଞ୍ଜୁରୀଟିର ପଛପଟ ଅନେକ କାଚର ଫଳକ ଦେଇ ତିଆରି ଏବଂ ସେଇ କାଚ ଫଳକର ପଛପଟେ ବିଭିନ୍ନ ରଙ୍ଗର ବଲ୍‌ବ୍ ଲଗାଯାଇଛି—ନାଳି, ନେଳି, ହଳଦିଆ, ସବୁଜ ଏମିତି କେତେ କଅଣ । ସେମାନେ ଯେତେବେଳେ ଗୋଟାଏ ପଟରୁ ଆଉ ଗୋଟାଏ ପଟକୁ ଧୀରେ ଧୀରେ ଯାଆନ୍ତି, ସେତେବେଳେ ସେମାନେ କେତେବେଳେ ନେଳି, ନହେଲେ କେତେବେଳେ ସବୁଜ ରଙ୍ଗ ଧାରଣ କରନ୍ତି । ଶୋଇ ଶୋଇ ସେମାନଙ୍କର ଏଇ କ୍ରମାଗତ ରଙ୍ଗ ପରିବର୍ତ୍ତନ ଲକ୍ଷ୍ୟ କରିବାରେ ମିସ୍ ବାଥ୍ ଯେ ଯଥେଷ୍ଟ ଆନନ୍ଦ ପାଆନ୍ତି, ଏକଥା ଉଲ୍ଲେଖ କରିବା ବାହୁଲ୍ୟ ମାତ୍ର ।

ଦିନକର ଘଟଣା । ଏକା ସାଙ୍ଗରେ ଚାରିଟା ମଲା ବହୁରୂପୀଙ୍କୁ ଲାଞ୍ଜ ପାଖରୁ ଧରି ବବୁର୍ଚ୍ଚି ଘରୁ ବାହାରକୁ ନେଲାବେଳେ ମିସ୍‌ବାଥ୍‌ଙ୍କର ଦୃଷ୍ଟି ଆକର୍ଷିତ ହୋଇଥିଲା । ବବୁର୍ଚ୍ଚି କେବଳ କହିଥିଲା ଯେ ସେମାନେ ରୋଷେଇ ଘର ନଳା ଦେଇ ଭିତରକୁ ପଶିବାକୁ ଗଲାବେଳେ ଜାଲି ପାଖରେ ଅଟକି ଯାଇ ମରି ଯାଇଛନ୍ତି । ଏଇ କଥା ପଦକରେ ମିସ୍ ବାଥ୍‌ଙ୍କର ନାକ ପାଖକୁ ସେଇ ପ୍ରଥମ ଦିନର ପୂତିଗନ୍ଧ ପ୍ରତିବିମ୍ବିତ ହୋଇଆସିଲା ଯେପରି । ସେ ଏକ ଉତ୍କଟ ଗନ୍ଧ । ମିସ୍ ବାଥ୍‌ଙ୍କର ଲଞ୍ଚ୍ ପାଇଁ ଖାଦ୍ୟ ସାମଗ୍ରୀ ତାଙ୍କ ଟେବୁଲ୍ ଉପରୁ ସେହିପରି ଅକ୍ଷତ ଫେରିଯାଇଥିଲା ।

ଏବେ ମିସ୍ ବାଥ୍ ଲକ୍ଷ୍ୟ କରୁଛନ୍ତି ଯେ ତାଙ୍କର ବାରଣ୍ଡା ଉପରେ, ବାଲ୍‌କନି ଉପରେ, ଏପରିକି ଛାତ ଉପରେ ବହୁରୂପୀମାନେ ବେଶ ନିର୍ଭୟରେ ବୁଲାବୁଲି ଆରମ୍ଭ କରିଛନ୍ତି । ବେଶ୍ ଟିକିଏ ଆଶ୍ଚର୍ଯ୍ୟ ହୋଇଛନ୍ତି ମିସ୍‌ବାଥ୍ । ପ୍ରତିଦିନ ସେମାନଙ୍କୁ ଘରର ବିଭିନ୍ନ ସ୍ଥାନରୁ ଝାଡ଼ି ତଳକୁ ପକେଇବା ଏକ ନିତ୍ୟ ନୈମିତ୍ତିକ କାର୍ଯ୍ୟ ହୋଇଗଲାଣି । କିନ୍ତୁ ଉପାୟ ବା କଅଣ ? ସେମାନଙ୍କୁ କାଚ ପିଞ୍ଜରାରେ ବନ୍ଦ କରି ସେମାନଙ୍କର ରଙ୍ଗର କ୍ରମ ପରିବର୍ତ୍ତନ ଉପଭୋଗ କରାଯାଏ ସତ, କିନ୍ତୁ ସେମାନେ ଘରର ଅତ୍ରତତ୍ର ସର୍ବତ୍ର ବୁଲାବୁଲି କରୁଥିବେ, ଏକଥା ତ ସହ୍ୟ କରାଯାଏ ନାଁ ।

ଯେତେ ଫୋପାଡ଼ିଲେ ବି ଦିନକୁ ଦିନ ସେମାନଙ୍କର ସଂଖ୍ୟା ଆଶାତୀତ ଭାବରେ ବୃଦ୍ଧି ପାଉଛି । ପ୍ରତିଦିନ ସକାଳୁ ସେମାନଙ୍କୁ ଘରର ଅନ୍ଦିକନ୍ଦି ଖୋଜି କାଢ଼ି ଫୋପାଡ଼ିବା ଗୋଟାଏ ଲୋକପାଇଁ ପ୍ରାୟ ପୂରା ଦିନର କାମ । ସେଥିପାଇଁ ମିସ୍ ବାଥ୍‌ଙ୍କୁ ଆଉ ଜଣେ ଭୃତ୍ୟ ନିଯୁକ୍ତ କରିବାକୁ ପଡ଼ିଲା । ସେଥିପାଇଁ ମଧ୍ୟ ମିସ୍ ବାଥ୍‌ଙ୍କୁ ବେଶ୍ କଷ୍ଟ ସ୍ୱୀକାର କରିବାକୁ ପଡ଼ିଛି, କାରଣ ଟିମ୍-ବକ୍-ଟୁର କେହି ଆଦିମ ଅଧିବାସୀ ସେ କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ ନୁହଁନ୍ତି । କାରଣ ବହୁରୂପୀ ସେମାନଙ୍କର ଅନେକ ଉପଦେବତାମାନଙ୍କ ମଧ୍ୟରୁ ଅନ୍ୟତମ ।

ସେ ନବାଗତ ଭୃତ୍ୟ ବା କରିବ କଅଣ ? ଘରର ନଳା, ଖଟ ତଳ, ଆଲମାରୀ ସନ୍ଧି, ବାରଣ୍ଡା, ଛାତ, କେତେ କଅଣ ଦେଖିବ ? ସେମାନଙ୍କର ସଂଖ୍ୟା ପ୍ରବଳ ଆକାର ଧାରଣ କରିଛି । ମିସ୍ ବାଥ୍ ବେଶ୍ ଆତଙ୍କିତ ହୋଇ ପଡ଼ିଛନ୍ତି । ଏମାନେ ଏତେ ସଂଖ୍ୟାରେ ଆସୁଛନ୍ତି ବା କାହିଁକି ? ପ୍ରତିଟି ଦିନର କଥା ସେ ତାଙ୍କର ଡାଏରୀରେ ଲିପିବଦ୍ଧ କରୁଛନ୍ତି । ଗୋଟାଏ ପୃଷ୍ଠାରେ ଲେଖାଅଛି—''ମୁଁ ଶୁଣିଚି ବନ୍ୟ ଜନ୍ତୁମାନେ ଦଳ ଦଳ ହୋଇ ଏକ ଆଶ୍ରୟସ୍ଥଳରୁ ଅନ୍ୟ ଆଶ୍ରୟସ୍ଥଳକୁ ସ୍ଥାନାନ୍ତରିତ ହୁଅନ୍ତି, ହୁଏତ ତାଙ୍କର ପୂର୍ବତନ ଆଶ୍ରୟ ସ୍ଥଳିରେ ଖାଦ୍ୟ ଅଭାବ; ସେମାନେ ଯାଉଛନ୍ତି ଖାଦ୍ୟର ସନ୍ଧାନରେ । ଆହୁରି ମଧ୍ୟ ଶୁଣାଅଛି, ସେମାନଙ୍କର ଆଶ୍ରୟସ୍ଥଳୀ କୌଣସି ସଂକ୍ରାମକ ରୋଗରେ ସଂକ୍ରମିତ ହେଲେ, ସେମାନେ ତାଙ୍କର ସହଜାତ ପ୍ରବୃତ୍ତି ଦ୍ୱାରା ସ୍ଥାନାନ୍ତରିତ ହବାର ସତର୍କତା ଅବଲମ୍ବନ କରନ୍ତି । କିନ୍ତୁ ଏତେ ସଂଖ୍ୟାରେ ଏକ ଆରଣ୍ୟକ ସରୀସୃପ ସ୍ଥାନାନ୍ତରିତ ହବା ବୋଧହୁଏ ପୃଥିବୀର ଲିପିବଦ୍ଧ ଇତିହାସରେ ବିରଳ ।''

ଏବେ ମିସ୍ ବାଥ୍ ପ୍ରାୟ ଦିନର ସମସ୍ତ ସମୟ ସହରରେ ଏଠି ସେଠି ବୁଲି କଟାଉଛନ୍ତି, କାରଣ ତାଙ୍କର ଛୋଟ ଘରଟିକୁ ବହୁରୂପୀର ଜଞ୍ଜାଳରୁ ମୁକ୍ତ କରିବାକୁ ପ୍ରାୟ ସନ୍ଧ୍ୟା ପର୍ଯ୍ୟନ୍ତ ଲାଗିଯାଉଛି । ମିସ୍ ବାଥ୍ ସନ୍ଧ୍ୟାରେ ଘରକୁ ଫେରୁଛନ୍ତି ପ୍ରାୟ ଆତଙ୍କିତ ହୋଇ । କାଲିକି କଅଣ ହବ ? ସେଦିନ ସନ୍ଧ୍ୟାରେ ସେଇ ଆତଙ୍କ ନେଇ ମିସ୍ ବାଥ୍ ଘରକୁ ଫେରିଥିଲେ ଏବଂ ଆଶ୍ୱସ୍ତ ହୋଇଥିଲେ ଦେଖି ଯେ ତାଙ୍କର ଶୋଇବା ଘରଟି ଅନ୍ତତଃ ବହୁରୂପୀମାନଙ୍କର ଅତ୍ୟାଚାରରୁ ମୁକ୍ତ ରହିଛି । ଓଃ ! ସେ ଅତିଷ୍ଠ ହୋଇ ପଡ଼ିଥିଲେ । ସେଦିନ ରାତିରେ ଆଖ ପାଖରେ ଟିମ୍-ବକ-ଟୁ'ର ଆଦିବାସୀମାନେ ଖୁବ୍ ମଦ ପିଇ, ବାଜା ବଜେଇ ନାଚିଥିଲେ । ତାଙ୍କରି ବଙ୍ଗଳା ପାଖ ଦେଇ ସେମାନଙ୍କର ଗୋଟାଏ ଶୋଭାଯାତ୍ରା ମଧ୍ୟ ବାହାରିଥିଲା ସେଇ ରାତିରେ । ଝରକାର କର୍ଟେନ୍ ଆଡ଼େଇ ଅତି ସନ୍ତର୍ପଣରେ ମିସ୍ ବାଥ୍ ବାହାରକୁ ଚାହିଁଥିଲେ । ଶୋଭାଯାତ୍ରାର ଆଗରେ ମୁଣ୍ଡରେ ପକ୍ଷୀ ଲଗେଇ, ଗୋଟାଏ ବିମାନ କାନ୍ଧେଇ ଚାଲିଛନ୍ତି ଚାରିଜଣ କଳାମଚ୍ଚମଚ୍ ନିଗ୍ରୋ । କିନ୍ତୁ ସେ ବିମାନ ଉପରେ ସେଇଟା କଅଣ ? ଭୟରେ ମିସ୍ ବାଥ୍ଙ୍କ ମୁହଁରୁ ସମସ୍ତ ରକ୍ତ ଶୁଖିଗଲା । ବିମାନ ଉପରେ କେଜାଣି କୋ'ଥିରେ ତିଆରି ଗୋଟାଏ ଅତିକାୟ ବହୁରୂପୀ ପ୍ରାୟ ଏଗାର ବାର ଫୁଟ ଲମ୍ବ ଓ ଚାରି ପାଞ୍ଚ ଫୁଟ ଉଚ୍ଚ ।

ସେଦିନ ରାତିରେ ଅନେକ ବେଳଯାଏ ନିଦ ହୋଇ ନଥିଲା ମିସ୍ ବାଥ୍ଙ୍କୁ । ଘରର ଆଲୁଅ ଜାଳିରଖି ଅତି ସତର୍କତାର ସହିତ କାନ୍ଥବାଡ଼ ଓ ଘରର ଚଟାଣ ଉପରେ ସେ ଲକ୍ଷ୍ୟ ରଖିଥିଲେ । ତାଙ୍କ ଆଖିରେ ତାଙ୍କ ଗାଡ଼ି ଉପରେ ସେଇ ବହୁରୂପୀଟିର ଚିତ୍ର ବାରମ୍ବାର ଭାସି ଉଠୁଥିଲା । ରାତ୍ରିର ଶେଷ ପ୍ରହରରେ ମିସ୍ ବାଥ୍ଙ୍କର ଆଖି ବୋଧହୁଏ ଲାଖି ଯାଇଥିଲା ଅଳ୍ପ କିଛି ସମୟ ପାଇଁ ।

ତା' ଆରଦିନ ସକାଳୁ ଖୁବ୍ ଭୋର୍‌ରୁ ନିଦ ଭାଙ୍ଗି ଯାଇଥିଲା ମିସ୍ ବାଥ୍ଙ୍କର ।

ସେତେବେଳେ ତଥାପି ରାତି ଥିଲା । ମିସ୍ ବାଥ୍ ଚିରାଚରିତ ଅଭ୍ୟାସରେ ତାଙ୍କର ବାଥ୍‌ରୁମ୍ ଭିତରକୁ ପ୍ରବେଶ କରିଥିଲେ । ଏ ଦିନଟିର କଥା ତାଙ୍କର ଡାଏରୀରେ ଲେଖା ନାହିଁ । ତାଙ୍କ ଘରୁ ସେଇଦିନ ପଳେଇ ଆସିଥିବା ବବୁର୍ଚ୍ଚି, ଖାନ୍‌ସାମା ଓ ଭୃତ୍ୟର ମୁହଁର ଶୁଣା କଥା ।

ବାଥ୍‌ରୁମ୍ ଭିତରୁ ଏକ ତୀକ୍ଷ୍ଣ ଚିତ୍କାର ଶୁଣାଗଲା, ଏବଂ ବବୁର୍ଚ୍ଚି ବାଥ୍‌ରୁମ୍ କବାଟକୁ ଧକ୍କା ମାରି ଖୋଲିଲା ବେଳକୁ ଦେଖାଗଲା ଉଲଗ୍ନ ମିସ୍ ବାଥ୍ ପ୍ରାୟ ଏକ ବହୁରୂପୀର ସମୁଦ୍ର ଭିତରେ କବଳିତ । କମୋଡ୍ ଭିତରୁ ବହୁରୂପୀମାନେ ତାଙ୍କର ବଡ଼ ବଡ଼ ଆଖି କାଢ଼ି ସେମିତି ଝୁଲି ଝୁଲି ଆସ୍ତେ ଆସ୍ତେ ଉଠୁଛନ୍ତି ଉପରକୁ । ତା'ପରେ ମିସ୍ ବାଥ୍ ବୁଦ୍ୟୁତ୍ ବେଗରେ ବାରଣ୍ଡାକୁ ବାହାରି ଆସିଲେ ! ସେଠି ବି ସେହି ବହୁରୂପୀର ସମୁଦ୍ର । ମିସ୍ ବାଥ୍ ଦେଖିଲେ ଦୁଇଟା ବିଭିନ୍ନ ଜାଗାରେ ବହୁରୂପୀମାନଙ୍କର ଦୁଇଟି ଛୋଟ ଆବର୍ତ୍ତ ଛାଟିପିଟି ହଉଚି ଏବଂ ସେମାନଙ୍କ ଭିତରୁ ଦୁଇଟି ଡ୍ୟାସ୍‌ହାଉଣ୍ଡ କୁକୁରର କରୁଣ କ୍ରନ୍ଦନ ଶୁଣାଯାଉଛି । ମିସ୍ ବାଥ୍ ମୁହୂର୍ତ୍ତେ ବିଳମ୍ବ ନକରି ତଥାପି ଉଲଗ୍ନ ଅବସ୍ଥାରେ ଡ୍ରଇଂ ରୁମ୍ ଭିତରକୁ ଦୌଡ଼ିଗଲେ । ସେଠି ବି ସେହି ବହୁରୂପୀର ସମୁଦ୍ର । ମିସ୍ ବାଥ୍ ସଂଜ୍ଞାହୀନା ଅବସ୍ଥାରେ ସେଇଠି ଟଳି ପଡ଼ିଲେ ଏବଂ ଗୋଟାଏ ମୁହୂର୍ତ୍ତ ଭିତର ବହୁରୂପୀମାନଙ୍କର ନୀଳ ତରଙ୍ଗ ମିସ୍ ବାଥ୍‌ଙ୍କର ସମସ୍ତ ଶରୀରକୁ ସଂପୂର୍ଣ୍ଣ ଭାବରେ ଆବୃତ କରିନେଲେ ।

ଏହାପରେ ମିସ୍ ବାଥ୍‌ଙ୍କ ବିଷୟରେ ଆଉ କେହି କିଛି ଶୁଣି ନାହାନ୍ତି । ଏକ ଅନୁସନ୍ଧାନକାରୀ ଦଳ ଏ ଘଟଣାର କିଛି ଦିନ ପରେ ହ୍ରଦର ଉପକଣ୍ଠ ପର୍ଯ୍ୟନ୍ତ ଯାଇଥିଲେ । ସେମାନଙ୍କ ଠାରୁ ପ୍ରକାଶ ଯେ କୋଟି କୋଟି ବହୁରୂପୀ ମିସ୍ ବାଥ୍‌ଙ୍କର ସମସ୍ତ ହତାକୁ ଆବୋରି ରହି ନିଶ୍ଚଳ ହୋଇ ବସି ରହିଛନ୍ତି । ତା' ଭିତରକୁ ପଦକ୍ଷେପ କରିବା ମଧ୍ୟ ସମ୍ଭବ ନୁହେଁ ।

ଡଟ୍ ବନ୍ଧୁଙ୍କର କଥା ଶେଷ ହେଲା ବେଳକୁ ଅନେକ ରାତି ହୋଇ ଯାଇଥିଲା । ନିଶୀଥ୍ ବାବୁ ଘରକୁ ଫେରି ବିଛଣାରେ ଶୋଇ ରହି ଅନେକ ରାତି ପର୍ଯ୍ୟନ୍ତ ଭାବୁଥିଲେ । ମିସ୍ ବାଥ୍‌ଙ୍କର ଉଲଗ୍ନ ଶରୀରରେ କିଛି ଦିନ ପରେ ଅନେକ ମ୍ୟାଗଟ୍ ସୃଷ୍ଟି ହୋଇଥିବେ । ଏବଂ ସେ ମ୍ୟାଗଟ୍‌ମାନଙ୍କୁ ଏକ ହିଂସ୍ର ଆନନ୍ଦରେ ଚାଟି ନେଇଥିବେ ଲକ୍ଷ୍ୟ ଲକ୍ଷ୍ୟ ବହୁରୂପୀର ଦଳ ଏବଂ ଯଦି ପୁନରୁଦ୍ଧାର କରାଯାଏ, ହଏତ ଆଜି ମିଳିବ ମିସ୍ ବାଥ୍‌ଙ୍କର ଏକ ଅକ୍ଷତ କଙ୍କାଳ, ଯାହାକୁ ପରୀକ୍ଷା କରି ହଏତ ବୈଜ୍ଞାନିକ ମାନେ ନିର୍ଣ୍ଣୟ କରି ପାରିବେ ଯେ ମିସ୍ ବାଥ୍‌ଙ୍କର ମୃତ୍ୟୁ ବେଳକୁ ତାଙ୍କର ବୟସ ବୋଧହୁଏ ଅଣତିରିଶି ଠାରୁ ତିରିଶି ଭିତରେ ।

●●

# ରାଣୀବାଈ

ଦୀର୍ଘଦିନ ଟୁର୍ ପରେ ମୁଁ ଘରକୁ ଫେରୁଥାଏ । ଅନ୍ୟୁନ ଦେଢ଼ ଶହ ମାଇଲ ରାସ୍ତା ଅତିକ୍ରମ କରି ଆସିବାକୁ ହବ । ମୋ ଡ୍ରାଇଭର୍ ଆଉ ମୁଁ । ଆଉ କେହି ନାହିଁ । ବେଳେ ବେଳେ ଇଚ୍ଛା ହୁଏ, ଏ ଦୀର୍ଘ କ୍ଲାନ୍ତିକର ସମୟତକ କଟେଇ ନବା ପାଇଁ ରାସ୍ତା ଉପରୁ କାହାକୁ କେତେବେଳେ ସାଙ୍ଗରେ ଉଠେଇ ଆଣିବା ପାଇଁ । କିଛି ତ ଗପି ହବ । ଏ ସାଲ୍ ଧାନ କିମିତି ହେଇଚି ବା ଯୋ' ସାଲ ପ୍ରଚୁର ଆମ୍ବ ଆସିଥାଏ ସେ ସାଲ ଧାନ କିମିତି ହେଇଚି ବା ଯୋ' ସାଲ ପ୍ରଚୁର ଆମ୍ବ ଆସିଥାଏ ସେ ସାଲ ଧାନ ଫସଲ ଭଲ ହୁଏ ନାହିଁ କାହିଁକି । କିନ୍ତୁ ପଦସ୍ଥ ଅଫିସର ହବାରୁ ଅନେକ ଅସୁବିଧା ଅଛି । ରାସ୍ତା କରରୁ ଲୋକ ଉଠେଇ ଆଣିଲେ, ଆସ୍ତେ ଆସ୍ତେ କଥାଟା ପ୍ରଘଟ ହବ । କିଏ କିଏ କହିବେ, ଏ ଅଫିସର୍‌ଟା ଲୋକଙ୍କୁ ଟ୍ୟାକ୍‌ସି ପରି ବୋହି ପଇସା ରୋଜଗାର କରୁଛି । ଏପରି ଏକ ଗୁଜବ ଉଠିବାରେ କିଛି ଆଶ୍ଚର୍ଯ୍ୟ ହବାର କାରଣ ନାହିଁ । ପଦସ୍ଥ ଅଫିସରମାନେ ପ୍ରାୟଶଃ ଯଥା ସମ୍ଭବ ଗାମ୍ଭୀର୍ଯ୍ୟ ରକ୍ଷା କରି ବୁଲାଚଲା କରନ୍ତି; ଏପରିକି କଦବା କ୍ୱଚିତ୍ ରାସ୍ତା କରରେ ଛନ ଛନିଆ ନେଉଟିଆ ଶାଗ କିମ୍ବା ସଦ୍ୟ ତୋଳା ହୋଇଥିବା ଫୁଲକୋବି ବା ବିଲାତି ବାଇଗଣ ସେମାନଙ୍କ ପାଇଁ କିଣିବା ମନା । ଜଣେ ଅଫିସରଙ୍କର ଏତାଦୃଶ ଚାଲିଚଳନ ସେମାନଙ୍କର ଦକ୍ଷତା ପ୍ରମାଣ କରିବା ସଙ୍ଗେ ସଙ୍ଗେ ଏକ ପ୍ରଶାସନିକ ନିରପେକ୍ଷତା ଓ ନିର୍ଲିପ୍ତତାର ପରିଚୟ ମଧ୍ୟ ଦେଇଥାଏ । କିନ୍ତୁ ମୋ ପରି ଯେଉଁ ଅଫିସର୍‌ମାନେ ଜୀବନକୁ ପ୍ରଶାସନର ଏକ ଅଂଶ ବୋଲି ମନେ ନ କରି, ପ୍ରଶାସନକୁ ଜୀବନରଂ ଏକ ଅତୀବ କ୍ଷୁଦ୍ରାଂଶ ବୋଲି ମନେ କରନ୍ତି, ସେମାନଙ୍କର ଭାଗ୍ୟରେ ଏହି ପ୍ରକାରର ଜନରବ ସର୍ବଦା ଲିଖିତ ଥାଏ । ଜନତାର ଯେଉଁ କ୍ଷୁଦ୍ରାଂଶ ଏ ପ୍ରକାରର ଜନରବରେ ବିଶ୍ୱାସ କରନ୍ତି ନାହିଁ, ସେମାନଙ୍କର ମନ୍ତବ୍ୟ ହୁଏ, "ହେଃ, ସେ ପଇସା ଫଇସା ନବା କଥା ମିଛ, ଅସଲ କଥାଟା ହେଲା, ଲୋକଟା ଟିକେ ଆଡ଼ପାଗଳା ।" ତେଣୁ ଏ ପ୍ରକାରର ଜନମତ ବା ରବ (ଦୁଇଟା ଯାକ ପ୍ରାୟ ଏକା କଥା) ସୃଷ୍ଟି କରିବା ଅପେକ୍ଷା ଡ୍ରାଇଭରର ତେଲ ଚିକିଟା ବେକକୁ ଚାହିଁ ଚାହିଁ ସମୟ ବିତେଇ ଦବା ଶ୍ରେୟସ୍କର । ବାଟରେ ଅବସର ବିନୋଦନ ପାଇଁ ଅନେକ କିଛି ମଧ୍ୟ ଅଛି । ପୋଖରୀ ଭର୍ତ୍ତି ବିଲାତି ଦଳର ବାଇଗଣି ଫୁଲ ସବୁ ମଧ୍ୟ ଖୁବ୍ ଆନନ୍ଦ ଦିଏ । କେତେବେଳେ ଅସାଭାବିକ ଭାବରେ ବାଙ୍କି

ଯାଇଥିବା ଗୋଟାଏ ନାଁ ନ ଜଣା ଗଛ ବା କେତେବେଳେ ଗୋଟାଏ ଗଛକୁ ନିର୍ମୂଳୀ ଲତା ଅତି ନିଷ୍ଠୁର ଭାବରେ ଚିପି ଚିପି ଅନ୍ତଃସାର ଶୂନ୍ୟ କରି ସାରିଲାଣି । କେତେବେଳେ ପୁଣି ଦଳେ ଶାଗୁଣା ତାଙ୍କର ବଡ଼ ବଡ଼ ଡେଣା ମେଲେଇ ଗୋଟାଏ ଜାଗାରେ ଚକ୍‌କର୍ ଦେଉଛନ୍ତି ।

ଏଇ ସବୁ ଭାବୁ ଭାବୁ ଅନ୍ୟମନସ୍କ ହୋଇ ପଡ଼ିଥିଲି । ଗାଡ଼ି ମଧ୍ୟ ଅତି ସହଜ ଗତିରେ ଗଛ, ବିଲ, ଗାଁ ଗଣ୍ଡା ପଛକୁ ପକେଇ ଦେଇ ଆଗକୁ ମାଡ଼ି ଚାଲିଥାଏ । ହଠାତ୍ ଗାଡ଼ିର ଗତି ମନ୍ଥର ହୋଇଗଲା । ଯେତେ ଚେଷ୍ଟା କଲେ ବି ଆଉ ଆଗକୁ ଯାଉ ନାହିଁ । ଗାଡ଼ିକୁ ରାସ୍ତାର ବାଆଁ ପଟକୁ ନେଇ ଡ୍ରାଇଭର ରଖିଲା ଏବଂ ବନେଟ୍ ଖୋଲି ଅନେକ ସମୟ ଏଠି ସେଠି ହାତ ମାରି ପୁଣି ଷ୍ଟାର୍ଟ କରିବାକୁ ଚେଷ୍ଟା କଲା । କିନ୍ତୁ ଷ୍ଟାର୍ଟ କରିବା ସମ୍ଭବପର ହେଲା ନାହିଁ । ଡ୍ରାଇଭର ଗୁଣୁ ଗୁଣୁ ହୋଇ ରୋଗର ଉପସର୍ଗ ସଂପର୍କରେ ଯାହା କହିଲା, ତା' ହେଲା ଯେ କାର୍‌ବରେଟର୍‌କୁ ପେଟ୍ରୋଲ ଆସୁ ନାହିଁ । ଯେଉଁଠାରେ ଏହା ମରାମତ କରାଯାଇ ପାରି ଥାଆନ୍ତା, ସେପରି ଏକ ଅଧା ମଫସଲ ଓ ଅଧା ସହର ଆମେ ଅତିକ୍ରମ କରି ଆସିଛୁ ପ୍ରାୟ ତିରିଶି ମାଇଲ ଧରି ଏବଂ ରାସ୍ତାରେ ଚଲାବୁଲା କରୁଥିବା ଲୋକମାନଙ୍କ ଠାରୁ ଯାହା ସମ୍ବାଦ ନେଲୁ ଏପରି ଏକ ଜାଗା ହଏତ ମିଳିପରେ ପଚିଶି ମାଇଲ ଆଗକୁ । ଆମେ ନିରୁପାୟ । କିନ୍ତୁ ହତୋତ୍ସାହ ହୋଇ ବସି ପଡ଼ିଲେ ତ ଚଳିବ ନାହିଁ । ମୁଁ ଡ୍ରାଇଭରକୁ କହିଲି, କାର୍‌ବରେଟର୍‌ଟାକୁ ଖୋଲି ନେଇ କୌଣସି ଏକ କାର୍ ବା ଟ୍ରକ୍ ଯୋଗେ ତିଆରି କରିବାକୁ ନେଇଯିବା ପାଇଁ । ଡ୍ରାଇଭର କାର୍‌ବରେଟର୍‌ଟିକୁ ଖୋଲି ରାସ୍ତା କରରେ ଯେ କୌଣସି ଗାଡ଼ି ପାଇଁ ଅପେକ୍ଷା କରି ରହିଲା । କିଛି ସମୟ ପରେ ଟ୍ରକ୍ ମିଳିଲା ଓ ଡ୍ରାଇଭର ଟ୍ରକ୍ ଯୋଗେ ରମାନା ହେଲା, କିନ୍ତୁ ମୁଁ ରହିଗଲି ଏକ ଘୋର ଅନିଶ୍ଚିତତା ଭିତରେ । ମନ ଭିତରେ କେବ ଗୋଟିଏ ଚିନ୍ତା । ଡ୍ରାଇଭର ପହଞ୍ଚିବ କେତେବେଳେ, ସେଠି ତିଆରି କରାଯାଇ ପାରିବକି ନାହିଁ ଏବଂ ପ୍ରାୟ କେତେବେଳକୁ ସେ ଫେରିପାରେ ଇତ୍ୟାଦି ଇତ୍ୟାଦି । କିଛି ସମୟ ଚିନ୍ତା କଲା ପରେ ଯେତେବେଳେ ହୃଦୟଙ୍ଗମ ହେଲା ଯେ ଏ ସମସ୍ତ ଅନିଶ୍ଚିତ ଅବସ୍ଥା ମଧ୍ୟରୁ ଗୋଟିଏ ମାତ୍ର ମୋର ଅକ୍ତିଆର ଭିତରେ ନାହିଁ, ସେତେବେଳେ ମୁଁ ମନକୁ ମନ ହସି ପକାଇଲି ଏବଂ ଦୃଢ଼ ସଂକଳ୍ପ ହେଲି ଯେ ଆଉ ଏସବୁ କଥା ମନକୁ ଆଣିବି ନାହିଁ ।

ଖରା ଦିନ । ଆଉ କିଛି ଦିନ ଗଲେ ଆମ୍ବ ପାଚିବାକୁ ଆରମ୍ଭ କରିବ । ବେଳ ପ୍ରାୟ ତିନିଟା ହବ । ସୂର୍ଯ୍ୟ ପଶ୍ଚିମ ଆକାଶକୁ ଯଥେଷ୍ଟ ଢଳି ଯାଇଥିଲେ ମଧ୍ୟ ଉତ୍ତାପ କିଛି ମାତ୍ର କମି ନଥାଏ । ମୁଁ ଗାଡ଼ିରୁ ବାହାରି ଅନିଶ୍ଚିତ ଭାବରେ ପଦଚାରଣା କରୁଥାଏ, ଏବଂ ମୋ ଆଖି ଆଗରେ ଯେମିତି ଏକୁଟିଆ ଗାଡ଼ିଟା ଉପରେ ମୁଠା ମୁଠା ନିଆଁ ବର୍ଷି

ଯାଉଥାଏ । ଦୂରରେ ବୋଧହୁଏ କେଇଟା ଗାଈ ଉପରକୁ ମୁହଁ ଟେକି ପାକୁଳି କରୁଥାଆନ୍ତି । ଚକ୍ରବାଳରୁ ଚକ୍ରବାଳ ମେଲି ଯାଇଥିବାହଳଦିଆ ଖରାର ବିସ୍ତୃତି ଭିତରେ କେଉଁଠି କେମିତି ଝଙ୍କାଳିଆ ଆମ୍ବ ଗଛର ଛାଇ ମନେ ହେଉଥାଏ ଓଏସିସ୍ ପରି । ହଠାତ୍ ପଛପଟୁ କିଏ ଜଣେ ଅତି ନରମ କଣ୍ଠରେ କହିଲା, ''ମହାଶୟ, ଖରାଟାରେ ବୁଲୁଛନ୍ତି କାହିଁକି ? ଗଛତଳ ଛାଇକୁ ଆସନ୍ତୁ ।'' ଚମକି ପଡ଼ିଲା ପରି ପଛକୁ ଚାହିଁ ଦେଖିଲି, ଜଣେ ବିଧବା ନାରୀ ହାତରେ ଖଣ୍ଡେ ଆମ୍ବ ତୋଳା ନଗି ଧରି ଠିଆ ହୋଇ ରହିଛନ୍ତି । ବୟସ ତିରିଶି ଠାରୁ ପଇଁତିରିଶି ଭିତରେ । ଦେଖିବାକୁ ସୁନ୍ଦରୀ କହିଲେ ଅତ୍ୟୁକ୍ତି ହେବ ନାହିଁ, ଯଦିଓ ଆଖିରେ, ମୁହଁ ଉପରେ କ୍ଲାନ୍ତିର, ବିଷର୍ଣ୍ଣତାର ଏକ କଳା ଛାଇ ମାଡ଼ି ଯାଇଛି । ମୁଁ ନିମ୍ନ ସ୍ୱରରେ 'ଧନ୍ୟବାଦ' କହି ଗଛ ଛାଇକୁ ଗଲି । ଗଛତଳେ ଅଳ୍ପ କେତୋଟି କଞ୍ଚା ଆମ୍ବ ଥୁଆ ହୋଇଚି ଏବଂ ଝଙ୍କା ଆମ୍ବ ଗଛଟାର ଛାଇ ମନେ ହେଲା ଯେପରି କିଏ ମୋ ଦେହରେ ଚନ୍ଦନ ଲେପନ କରୁଚି । ଗଛକୁ ଆଉଜି ଠିଆ ହେଇ ରହି ଖଣ୍ଡେ ସିଗାରେଟ୍‌ରେ ନିଆଁ ଲଗେଇଲି । ଅଳ୍ପ କିଛି ସମୟ ଭିତରେ, ଛଅ ସାତ ଜଣ ଫୁଙ୍ଗୁଳା ପିଲା କୌତୂହଳୀ ହୋଇ ଆସି ପାଖରେ ଠିଆ ହେଲେ । ସେ ପିଲାମାନଙ୍କର ଠିଆ ହବାର ଭଙ୍ଗୀ ମଧ୍ୟ ଥିଲା ବହୁ ବିଚିତ୍ର । ଜଣେ ଡାହାଣ ଗୋଡ଼ର ଗୋଇଠି ଗଛ ଗଣ୍ଡିରେ ଠେକ ଦେଇ ଗଛକୁ ଆଉଜି ରହିଚି ଆଉ ମତେ କଣେଇ କଣେଇ କରି ଚାହୁଁଚି, ଯେପରି ମୁଁ ସଦ୍ୟ ଚିଡ଼ିଆଖାନାରୁ ଅଣାଯାଇ ଏଠି ଥୁଆ ହେଇଚି । ଆଉଜଣେ ଖଣ୍ଡେ ଗାମୁଛା କାନ୍ଧରେ ପକେଇ, ଫାଳେ କଞ୍ଚା ଆମ୍ବ ଚୋବେଇ ଚୋବେଇ ଟାକରା ଫୁଟଉଚି ଆଉ ସବୁଯାକ ଦାନ୍ତ ବାହାର କରି ତାର ସାଙ୍ଗମାନଙ୍କୁ ଜଣେଇ ଦଉଚି, ''ଭାଇ କଅଣ କହିବି; ଏ ଆମ୍ବ ଯୋ' ସୁଆଦ ନା– ।'' ପିଲାଟିର ଖୁସି ମତେ ଧିରେ ଧିରେ ସଂକ୍ରମିତ ହେଲା । ମୁଁ ଯେମିତି ପିଲାଟିକୁ ଚାହିଁଚି, ପିଲାଟି କିଛି ଭୟ ଆଉ କିଛି ସଙ୍କୋଚରେ ଏତେ ଟିକେ ହେଇଗଲା । ଆଉ ଗୋଟାଏ ପିଲା ବଇଁଶୀ ଖଣ୍ଡେ ଧରି ମଝିରେ ମଝିରେ ପେଁ ପେଁ କରି ଦଉଥାଏ । ସେ ଜାଗାର ଅଖଣ୍ଡ ନୀରବତା ଭିତରେ ସେଇ ବୋତାଳିଆ ବଂଶୀସ୍ୱନ ଯେପରି ଜୀବନ ସଞ୍ଚାର କରୁଥାଏ । ଆଉ ଦି'ଟା ପିଲା ଆମ୍ବ ଗଛକୁ ଟେକା ଫୋପାଡ଼ି ଚାଲି ଥାଆନ୍ତି କ୍ରମାଗତ । ଶାସନର ସ୍ୱରରେ ସ୍ତ୍ରୀ ଲୋକଟି କହିଲେ, ''ଏ ଟୋକା, ଟେକା ମାରୁଚି ଦେଖୁନୁ ସେଠି ବାବୁଙ୍କ ଗାଡ଼ି ଥୁଆ ହେଇଚି; ଗାଡ଼ି ଉପରେ ଟେକା ପଡ଼ିଲେ କଅଣ ହବ ?'' ପିଲାମାନେ ଶଙ୍କିଗଲେ । କିଛି ସମୟ ପରେ ସ୍ତ୍ରୀ ଲୋକଟି ପୁଣି କହିଲେ, ''ଗାଡ଼ିଟା ଖାଲି ଖାଲି ଖରାରେ ସିଝୁଚି, ଗଛ ମୂଳକୁ ନେଇ ଆଣନ୍ତେ ନି ?'' ମୁଁ କହିଲି, ''ଗାଡ଼ି ଷ୍ଟାର୍ଟ ହଉ ନାହିଁ, ଠେଲିବା ପାଇଁ ଲୋକ ଦରକାର ।'' ସ୍ତ୍ରୀ ଲୋକ ଜଣକ ସାମାନ୍ୟ ହସିଲେ, ''ଏଇ କଥା, ଆମ ଗାଆଁରେ

କଅଣ ଲୋକର ଅଭାବ ଅଛି ? ଏ ଶଙ୍କରା, ଯିବୁଟି ଆଉ ଦଶ ବାରଟା ଟୋକାଙ୍କୁ ଡାକି ଆଣିବୁ ।'' ଶଙ୍କରା ଯେତେବେଳେ ଫେରିଲା, ତା' ପଛରେ ଆଉ କୋଡ଼ିଏ କି ପଚିଶ ପିଲା । ଅସମ୍ଭବ କୋଳାହଳ । ଗାଡ଼ି ଠେଲା ଆରମ୍ଭ ହେଲା ଏବଂ ଗାଡ଼ି ଆସି ରହିଲା ଆମ୍ବ ଗଛର ଛାଇ ତଳେ । ପିଲାମାନେ ଗାଆଁରୁ ଅନ୍ୟ ପିଲାମାନଙ୍କୁ ଡାକିବାକୁ ଗଲାବେଳେ ସ୍ତ୍ରୀ ଲୋକଟି ସହିତ ମୋର ସାମାନ୍ୟ ବିଶ୍ରାମାଳାପ ହେଇଥିଲା । ସେଥିରୁ ସଂକ୍ଷିପ୍ତ ସଂବାଦ ପାଇଥିଲି ଯେ ସେମାନେ ଯଦିଓ ବଙ୍ଗାଳୀ, ପୁରୁଷାନୁକ୍ରମେ ଓଡ଼ିଶାରେ ରହି ଆସିଛନ୍ତି ଏବଂ ତା' ନାଁ ହେଉଚି ରାଣୀ ସେନ୍ । ସେ ଯାହାଙ୍କୁ ବିବାହ କରିଥିଲା, ତାଙ୍କୁ ଚାରି ବର୍ଷ ତଳେ ବ୍ରାହ୍ମଣୀ ନଦୀର ବନ୍ୟା ଭସେଇ ନେଇଗଲା । ସେ ଆଉ ଫେରିଲେ ନାହିଁ ଏବଂ ତା' ପରେ ପରେ ରାଣୀ ସେନ୍ ତା'ର ପୂର୍ବ ପୁରୁଷର ଭିଟାମାଟି ଛାଡ଼ି ଏଇ ଛୋଟ ଗାଆଁରେ ଘର ତିଆରି କରି ରହିଚି । ଦିନ ସରି ଯାଉଚି । ଘର ଘର ବୁଲି ଧାନ ଆଣି ଚାଉଳ କରେ । ଆଉ ବାରିରେ ଶାଗ, ମୁଗ, କଖାରୁ ତଙ୍କଟାଏ ହେଲେ, ଦାଉଦ୍ ମିଆଁ ଘର କୁକୁଡ଼ା ଗୁଡ଼ାକ ଅଗ ଠୁଙ୍କି ଦଉଛନ୍ତି ଇତ୍ୟାଦି ଇତ୍ୟାଦି । ହଁ ଏ ସମ୍ବାଦ ମଧ୍ୟ ଦବାକୁ ଭୁଲି ନଥିଲା ଯେ ସେ ଏଇ ଆମ୍ବ ଗଛଟିକୁ ମିଶେଇ ତିନୋଟି ଆମ୍ବ ଗଛ କିଣିଛି । ପୁଣି ସେଇ ଅନୁନାସିକ ସ୍ୱରରେ ଅଭିଯୋଗ; ''ଗାଆଁ ପିଲେ କଷି ବେଳୁ ଲଗାତର୍ ଟେକା ଫୋପାଡ଼ି ଚାଲିଛନ୍ତି ।''

ସୂର୍ଯ୍ୟ ପଶ୍ଚିମ ଆକାଶକୁ ଲାଲ୍ କରି ସାରିଲେଣି । ରାସ୍ତା ଆର ପଟର ଗୋଟାଏ ବିରାଟ ପଦ୍ମ ପୋଖରୀର ପଦ୍ମଫୁଲ ସବୁ ସେମାନଙ୍କର ପାଖୁଡ଼ା ଗୋଟେଇ ନେଇ ସାରିଲେଣି । ଦୁଇଟି କ୍ଳାନ୍ତ ବଳାକା ଆକାଶ ବିଦାରି ଉଡ଼ି ଯାଉଛନ୍ତି; ସେମାନଙ୍କର ଭୟ କାଳେ ସେମାନେ ତାଙ୍କର ନୀଡ଼ ହଜେଇ ବସିବେ । ଦୂର ଚକ୍ରବାଳରୁ ରେଣୁ ରେଣୁ ଅନ୍ଧାର ସଂକ୍ରମିତ ହବାକୁ ଆରମ୍ଭ କରିଚି । ମନେ ହଉଚି, ଯେପରି ଦଣ୍ଡକ ପାଇଁ ସମୟ ଥମକି ସ୍ଥିର ହୋଇ ଯାଇଛି । ଗାଆଁ ପିଲାମାନେ ଗାଆଁକୁ ବାହୁଡ଼ି ଗଲେଣି । ଏଇ ପରିବେଶରେ ମୁଁ ସଂପୂର୍ଣ୍ଣ ବିସ୍ମୃତ ହୋଇ ଯାଇଛି ଯେ ମୁଁ ଜଣେ ଆଶ୍ରୟହୀନ ଲୋକ । କିଏ ଯେମିତି ମୋର ସ୍ୱପ୍ନ ଭାଙ୍ଗି ଦେଇ କହିଲା, ''ବାବୁ, ରାତିରେ କୁଆଡ଼େ ଯିବେ ? ଆସନ୍ତୁ ଆମ ଗାଆଁରେ ରହିଯିବେ ।'' ପଛକୁ ଚାହିଁଲି । ଚକ୍ରବାଳର ମଳିନ ପଡ଼ି ଆସୁଥିବା ପୃଷ୍ଠଭୂମିରେ ଏକ ଅନ୍ଧକାରର ଛାୟା ମୂର୍ତ୍ତି ପରି ଠିଆ ହେଇ ରହିଚି ରାଣୀ ସେନ୍ । ଏକ କରୁଣ, ଯନ୍ତ୍ରଣା ପ୍ରପୀଡ଼ିତ ରହସ୍ୟମୟୀ ରାଣୀ ସେନ୍ । ପୁଣି ସେଇ ଚାପା ସ୍ୱରର କଥା; ''ବାବୁ, କଅଣ ଭାବୁଛନ୍ତି, ଯାହି ତାଇ କରି ଗୋଟାଏ ରାତି କଟେଇ ନେବେ । ଆଉତ ପାଖ ଆଖରେ କିଛି ଆଶ୍ରା ନାହିଁ ।'' ମୁଁ କହିଲି, ''ଗାଆଁରେ କାହା ଘରେ ରହିବି, କାହାକୁ ତ ଚିହ୍ନେ ନାହିଁ ।'' ରାଣୀ ସେନ୍ କହିଲା, ''କାହିଁକି, ମୋର କଅଣ ଘର ନାହିଁ ନା କଅଣ ? କିଛି ନହେଲେ ଖଟ ଖଣ୍ଡେ, ସଉପ ମଶିଣା ଖଣ୍ଡେ, ତକିଆ ଖଣ୍ଡେ ତ ଦେଇ ପାରିବି ।''

ମୋର ମଧ ଗତ୍ୟନ୍ତର ନଥିଲା । ଏକ ବାଧ ଶିଶୁପରି ମୁଁ ରାଣୀ ସେନ୍‌ର ଅନୁସରଣ କଲି । ରାସ୍ତାରୁ ଗଡ଼ିଲେ ଗୋଟିଏ ଛୋଟ ଚଲା ରାସ୍ତା ବଙ୍କେଇ ବଙ୍କେଇ, ବାଉଁଶ ବଣ ଭିତର ଦେଇ କୁଆଡେ ଅଦୃଶ୍ୟ ହେଇଯାଇଚି । ତାରି ଉପରେ ରାଣୀ ସେନ୍ ଚାଲିଚି ଆଉ ତା' ପଛେ ପଛେ ଚାଲିଚି ମୁଁ । କାହାରି ମୁହଁରେ କଥା ନାହିଁ । କିନ୍ତୁ ରାଣୀ ସେନ୍‌ର ଗୁରୁ ନିତମ୍ବ କେତେବେଳେ ଉଠୁଥିଲା ଉପରକୁ ଓ କେତେବେଳେ ପଡୁଥିଲା ତଳକୁ । ପରିବେଶର ଏକ ସ୍ୱତନ୍ତ୍ର ମାୟା ଅଛି, ଯାହା ବେଳେ ବେଳେ ଅଚିହ୍ନା ଅଜଣା ଲୋକମାନଙ୍କୁ ମଧ ଅତି ଆପଣାର କରିନିଏ । ଅନ୍ଧକାର ଗାଢ଼ ହୋଇ ଆସୁଚି ରାସ୍ତା ଦେଖାଯାଉ ନାହିଁ । କିନ୍ତୁ ମୁଁ କେବଳ ଅନୁସରଣ କରି ଚାଲିଚି ରାଣୀ ସେନ୍‌କୁ । ନଡ଼ିଆ ଗଛ ଦେଖାଗଲାଣି । ତା'ର ଆରପଟେ ରାଣୀ ସେନ୍‌ର ପଲ୍ଲୀ ଗାଆଁ । ଆଜି ସେ ଗାଆଁର ନାଆଁ ମନେ ନାହିଁ, କିନ୍ତୁ ସେ ରାତିର ଘଟଣା ଏ ଯାଏ ମନରୁ ପାଶୋରି ଯାଇ ନାହିଁ ।

ଖୁବ୍ ଛୋଟ ଖଣ୍ଡେ ଗାଆଁ । ଚାଳିଶି ପଚାଶ ଭିତରେ ଘର । ସଂଧ୍ୟା ନଇଁ ଆସିବା ପରେ ଗାଆଁ ଭିତରର କାର୍ଯ୍ୟତତ୍ପରତା ଅପେକ୍ଷାକୃତ ମନ୍ଥର ହୋଇ ଆସିଥାଏ । କେହି କେହି ପିଣ୍ଡା ଉପରେ ବସି ଅହେତୁକ ଭାବରେ ଗପସପ କରୁଥାଆନ୍ତି । ଗାଆଁ ଆରମ୍ଭରୁହିଁ ରାଣୀ ସେନ୍‌ର ଘର । ତେଣୁ ରାଣୀ ସେନ୍ ସହିତ ତା' ଘରେ ଆତିଥ୍ୟ ଗ୍ରହଣ କରିବା ଗାଆଁରେ ବିଶେଷ କିଛି କୌତୂହଳ ସୃଷ୍ଟି କରି ନଥିଲା ।

ଛୋଟ ଗୋଟିଏ ଘର । ଖଣ୍ଡେ ଖଟ ଛାଡ଼ିଦେଲେ ଘର ଭିତରେ କିଛି ଆସବାବ୍ ପତ୍ରନାହିଁ । ଗୋଟିଏ ମାତ୍ର ହାରିକେନ୍ ଲଣ୍ଠନ ଘରକୁ ଆଲୋକିତ କରିବା ଅପେକ୍ଷା ବେଶି ଅନ୍ଧକାର ସୃଷ୍ଟି କରୁଛି । ଲଣ୍ଠନଟାକୁ ହାତରେ ଧରି ରାଣୀ ଏପଟ ସେପଟ ହେଲାବେଳେ ତା'ର ଲମ୍ବା ଛାଇ ରହସ୍ୟର ଗ୍ରନ୍ଥିଳ ଆଙ୍ଗୁଠି ପରି ଅଗଣାରେ କେତେବେଳେ ପ୍ରସାରିତ ବା କେତେବେଳେ ସଙ୍କୁଚିତ ହେଉଛି । ରାଣୀ ସେନ୍ ବୋଧହୁଏ ମୋ ପାଇଁ କିଛି ଖାଦ୍ୟ ବନ୍ଦୋବସ୍ତ କରିବାକୁ ବ୍ୟସ୍ତ । ରାଣୀ ସେନ୍‌କୁ ଡାକି କହିଲି ଯେ ଏଇ ସାମାନ୍ୟ ଆଶ୍ରୟ ଟିକକ ପାଇଁ ମୁଁ ତା' ପାଖରେ କୃତଜ୍ଞ; ରାତିରେ ମୁଁ ପ୍ରାୟ କିଛି ଖାଏ ନାହିଁ। ତେଣୁ ମୋର ଖାଇବା ପାଇଁ ଅଯଥା ବ୍ୟସ୍ତ ନହେଲେ ଚଳିବ । କିନ୍ତୁ ରାଣୀ ସେନ୍ ନଛୋଡ଼ବନ୍ଧା; କହିଲା, ''ଆଉ କିଛି ଖାଆନ୍ତୁ ନ ଖାଆନ୍ତୁ ଅନ୍ତତଃ କ୍ଷୀର ଆଉ ଦେଶୀ କଦଳୀ ଆପଣଙ୍କୁ ଖାଇବାକୁଇ ପଡ଼ିବ ।'' ତାହାହିଁ ହେଲା ଭୋଜନ ପର୍ବ ଅତି ସଂକ୍ଷିପ୍ତରେ ସରିଲା । ଅନେକ ଭାଗ୍ୟର କଥା ଯେ ମୋ' ପାଖରେ ପ୍ରଚୁର ସିଗାରେଟ ଥିଲା, ତେଣୁ ରାତିଟା ପାଇଁ ମୋର ଆଉ କିଛି ଚିନ୍ତା ନଥିଲା । କେବଳ ଅଭ୍ୟାସବଶତଃ ବିଛଣାକୁ ଯିବା ପୂର୍ବରୁ ଖଣ୍ଡେ ଖବର କାଗଜ ବା ବହି ଖୋଜିଥିଲି । ରାଣୀ ସେନ୍ ସମ୍ବାଦ ଦେଇଥିଲା ଯେ କେତେଖଣ୍ଡ ପୂଜା ପୋଥି ଛଡ଼ା

ସେପରି ଦ୍ରବ୍ୟ ତାଙ୍କ ଗାଆଁରେ ମିଳିବା ସମ୍ଭବ ନୁହେଁ । ତା'ର ମଧ୍ଯ ଅନେକ ଅଭିଯୋଗ ଥିଲା । ତାଙ୍କ ବାପାଙ୍କର ଗୋଟାଏ ବିରାଟ ଟ୍ରଙ୍କ୍ ଫ୍ୟାକ୍ଟରୀ ଥିଲା ଏବଂ ସେସବୁ ଟ୍ରଙ୍କ୍ ଚାଲାଣ ହଉଥିଲା କଲିକତା ପର୍ଯ୍ୟନ୍ତ । ଆଜି ବି ବାଲୁଗାଁ ଚିଲିକା କୂଳରେ ସେଇ ଫ୍ୟାକ୍ଟରୀର ଭଗ୍ନାବଶେଷ ଦେଖିବାକୁ ମିଳିବ । ସେ ପାଠ ପଢ଼ି ପାରିଥାଆନ୍ତା ପ୍ରଚୁର, କିନ୍ତୁ ପାରିବାରିକ ଅବସ୍ଥା ଅନୁକୂଳ ନଥିଲା । ମଝିରେ ମୁମୂର୍ଷୁ ଲଣ୍ଠନଟିଏ ଦିକି ଦିକି ହେଇ ଜଳୁଚି ଆଉ ମୁଁ ଅଗତ୍ୟା ପ୍ରଚୁର ସହାନୁଭୂତିର ସହ ଶୁଣି ଯାଉଚି ରାଣୀ ସେନ୍‌ର ଅଭିଯୋଗ; କେତେବେଳେ ବାପାଙ୍କ ବିରୁଦ୍ଧରେ, କେତେବେଳେ ସ୍ୱାମୀ, ଗାଆଁ ଲୋକ ଆଉ କେତେବେଳେ ଭାଗ୍ୟ ଆଉ ଭଗବାନ୍ । ମୋର ଅହେତୁକୀ ସହାନୁଭୂତିର ରାଣୀ ଯେତେ ବିସ୍ମିତ ହୋଇ ନଥିଲା । ସେତେ ଦ୍ରବୀଭୂତ ହୋଇ ଯାଇଥିଲା ।

ଶୋଇବାକୁ ଯିବା ପାଇଁ ଉଠିଲି । ରାଣୀ ସେନ୍ କହିଲା, "ହଁ, ଗୋଟାଏ କଥା କହିବାକୁ ଭୁଲି ଯାଇଚି, ଆପଣଙ୍କ ଆଡ଼େ କଅଣ କହନ୍ତି କେଜାଣି, ଆମ ଆଡ଼େ କହନ୍ତି ହାଡ଼ବାଈ । ମୁଁ ସିନା ବିଧବା ହେଲି, କିନ୍ତୁ ମୋର ସଉତୁଣୀ ମଲାବେଳେ ଅହିଅ ଡେଙ୍ଗୁରା ବାଜିଥିଲା । ସେ ମରିଥିଲେ ଅନେକ କମ୍ ବୟସରେ । ଅନେକ କିଛି ଆଶା ରହି ଯାଇଥିଲା ତାଙ୍କର । ସିଏ ସେଇଦିନ ଠାରୁ ଏ ଘର ଛାଡ଼ି ଯାଇପାରି ନାହାନ୍ତି ।"

ହାଡ଼ବାଈ କଥାଟା ଶୁଣି ମୋର ମେରୁଦଣ୍ଡ ଦେଇ ଗୋଟାଏ ଶୀତଳ ଶୀତ୍କାର ପହଁରିଗଲା । ପିଲାଦିନୁ ହାଡ଼ବାଈ ବିଷୟରେ ଅନେକ ଶୁଣିଚି । ବଡ଼ ହେଇ ମଧ୍ଯ ଶୁଣିଚି । ହାଡ଼ବାଈ ଆସି ପିଲାଙ୍କ ପାଇଁ ଖାଇବା ବାଢ଼ି ଦେଇଯାଏ । ଗୃହସ୍ଥ ଘରେ ନଥିବା ବେଳେ ଯଦି କେହି ଅତିଥି ଆସି ପହଞ୍ଚେ, ତାହାହେଲେ ହାଡ଼ବାଈ ଚଟ୍‌କରି ପାନ ଭାଙ୍ଗି, କବାଟ କଣରେ ଠିଆ ହେଇ ବଢ଼େଇ ଦିଏ ଅତିଥିଙ୍କ ଆଡ଼କୁ—କେବେ ଯଦି ହାଡ଼ବାଈର ମନ ହେଲା, ତାହାହେଲେ ଲଗାଏଡ୍ ପାଞ୍ଚମିନିଟ୍ ସମୟ ଶ୍ରାବଣର ବାରିଧାରା ପରି ଘର ଭିତରେ ଟଙ୍କା ବୃଷ୍ଟି ହୋଇଯାଏ । କେତେ ଲୋକ କିଛି ନକରି ହଠାତ୍ ବଡ଼ଲୋକ ହୋଇ ଯାଇଛନ୍ତି ଏଇ ହାଡ଼ବାଈ କୃପାରୁ ।

ମୁଁ ମୁହୂର୍ତ୍ତକ ପାଇଁ ଅନ୍ୟମନସ୍କ ହୋଇ ପଡ଼ିଥିଲି । ହଠାତ୍ ରାଣୀ ସେନ୍ କହିଲା, "ବାବୁ ଭୟର କିଛି କାରଣ ନାହିଁ, ସେ କାହାର କିଛି କ୍ଷତି କରନ୍ତି ନାହିଁ । କେତେବେଳେ ଆସି ବାସନଗୁଡ଼ାକ ମନ ଇଚ୍ଛା ମାଜି ବସନ୍ତି, ସେତେବେଳେ ଦେଖିବ ବାସନମଜା କୁଣ୍ଡ ପାଖରେ ଢେଲା, କଂସା, ଥାଳି ସବୁ ଶୂନ୍ୟେ ଶୂନ୍ୟେ ଉପରକୁ ଉଠି ଯାଉଛନ୍ତି ଆଉ ଶୂନ୍ୟେ ଶୂନ୍ୟେ ବୁଲି ବୁଲି ଘଷି ମାଜି ହେଇ ସାଫ୍ ହେଇ ଯାଉଛନ୍ତି । କେବେ ମନ ହେଇଚି ତ ଆସି ବୁହେ ଘଷି ଦେବେ । ଇଏ ବଞ୍ଚିଥିଲା ବେଳେ ଭାବନ୍ତି ମୁଁ ଘଷି ଦଉଚି ବୋଲି ।" ସତ କହିବାକୁ ଗଲେ ମୋ ଆଖିରେ ବିସ୍ମୟ ଅପେକ୍ଷା

ଆଶଙ୍କା ଫୁଟି ଉଠୁଥିଲା ବେଶି ଏବଂ ତାହା ରାଣୀ ସେନ୍‌ର ଦୃଷ୍ଟି ଏଡ଼େଇ ଯାଇନଥିଲା । ମୁଁ କିଛି ସମୟ ତଳେ ଥିଲି ଜଣେ ମଧ ବୟସ୍କ ଅପରିଚିତ ବ୍ୟକ୍ତି, ତା'ପରେ ରାସ୍ତା କରର ସାମାନ୍ୟ ପରିଚୟ, ତା'ପରେ ଜଣେ ଅପରିଚିତା ତରୁଣୀ ବିଧବାଙ୍କର ଅତିଥି ଏବଂ ଅଧୁନା ମୁଁ ଜଣେ ଅନନ୍ୟୋପାୟ ଦ୍ୱନ୍ଦ୍ୱ ବିଭକ୍ତ, ଆଶଙ୍କିତ ବ୍ୟକ୍ତି । ରାଣୀ ଆଗରେ ମୋର ବ୍ୟକ୍ତିତ୍ୱ ସାମାନ୍ୟ କ୍ଷୁର୍ଣ୍ଣ ହୋଇଥିଲା ଏବଂ ଏଇ ଖର୍ବ ହବାର ପ୍ରଣାଳୀ ରାଣୀ ସେନ୍‌କୁ ଯେ ସାମାନ୍ୟ ଆମୋଦିତ କରି ନଥିଲା, ତା' ନୁହେଁ । ପୁଣି ରାଣୀ ସେନ୍ କହିଲା, ''ତେବେ ସିଏ ଆସିବା ଆଗରୁ ଜଣେଇ ଦିଅନ୍ତି, ଚାଲୁଥିଲେ, କିଛି କାମ କରୁଥିଲେ ହାତରେ ରୁଣୁଝୁଣୁ ଚୁଡ଼ି ବାଜୁଥିବ—ହାତରେ ଯେମିତି ଲୋକଟା ବହେ ଚୁଡ଼ି ପିନ୍ଧିଚି ।''

ମଝିରେ ସେଇ ଲଣ୍ଠନ । ସାମ୍ନା ସାମ୍ନି ବସିଚୁ ଆମେ ଦୁହେଁ । ମୁଁ ରାଣୀ ସେନ୍ ପଛକୁ ଲମ୍ବି ଯାଇଥିବା ଛାଇଟାକୁ ସ୍ପଷ୍ଟ ଦେଖି ପାରୁଚି । ରାଣୀ ସେନ୍ ଠିକ୍ ସେହିପରି ମୋ ଛାଇକୁ କାଛ ଉପରେ ସିଲ୍‌ହୁଟ୍ ଛବି ପରି ଦେଖିପାରୁଥିବ ନିଶ୍ଚୟ । ରାଣୀ ସେନ୍‌ର ନିଷ୍କର୍ମ ଛାଇକୁ ଦେଖି ମୋର ମୁହୂର୍ତ୍ତେ ମନେ ହେଲା ଯେ ସେ ଛାଇ ମତେ ଛକି ବସିଚି, ବଣ ଭିତରେ ଯେପରି ଶ୍ୱାପଦ ତା'ର ଶୀକାରକୁ ଛକି ବସିଥାଏ । ରାଣୀ ସେନ୍ ମୃଦୁ ମୃଦୁ ହସୁଚି, ତା'ର ଡାହାଣ ମୁଠା ଉପରେ ତା'ର ଚିବୁକର ଭାର ରଖି । କିନ୍ତୁ ରାଣୀ ସେନ୍ ହସୁଚି ବା କାହିଁକି ? ବାହାରେ ନିଶୁନ୍ ଝିଁ ଝିଁ, ମଇଳା ହାରିକିନ୍ ଲଣ୍ଠନର ନିସ୍ତ୍ରଭ ଆଲୋକ, ଅବିଚଳିତ ଛାୟା ମୂର୍ତ୍ତି ଆଉ ରାଣୀ ସେନ୍‌ର ସ୍ମିତ ହାସ୍ୟ, ସବୁ ମତେ ଘେରି ରହିଥିଲା ଏକ ରହସ୍ୟର ଜାଲପରି । ଫେରିଯାଇ ଗାଡ଼ିରେ ଶୋଇବା କଥା ଯେ ମନକୁ ଆସି ନାହିଁ, ତା' ନୁହେଁ, କିନ୍ତୁ ସିଏ ପୁଣି ଅନେକ ଝମେଲା—ରାଣୀ ସେନ୍ ମନା କରିବ, ଲଣ୍ଠନ ଦର୍‌କାର୍, ପୁଣି ସେଇ ବାଉଁଶ ବଣ ଦେଇ ଅଙ୍କାବଙ୍କା ଚଲା ରାସ୍ତା—ହଏତ ଗାଆଁ ଲୋକ ଭିତରୁ କିଏ କେମିତି ଉଠି ପାରନ୍ତି । ନାଁ, ଏଇଠି ଶୋଇବି ।

ଦି' ବଖରି ଘର । ଗୋଟିକରେ ମୁଁ ଶୋଇବି, ଅନ୍ୟଟିରେ ରାଣୀ ସେନ୍ । ଆଉ ଘର ବାରଣ୍ଡାରେ ମଝାମଝି ରହିବ କମେଇ ଦିଆଯାଇଥିବା ଗୋଟିଏ ମାତ୍ର ଲଣ୍ଠନ ! ଘଣ୍ଟା ଦେଖିଲି ପ୍ରାୟ ଏଗାରଟା ବାଜିବ, ଆଉ କେଇ ଘଣ୍ଟା ବା ରାତି । ଖଣ୍ଡେ ପତଳା ଚାଦର ଦେହ ଉପରକୁ ଟାଣିନେଇ ଆଖି ପତାକୁ ଜୋର କରି ବନ୍ଦ କରିଦେଲି । ଭଗବାନଙ୍କୁ ସେହି ସ୍କୁଲ୍ ଦିନଗୁଡ଼ାକ ପରେ ଅନେକ ଦିନ ଡାକି ନାହିଁ – ଏବେ ଭାବିବାକୁ ସାହସ ହୁଏ ନାହିଁ, ଅନେକ ଡେରି ହେଇଗଲାଣି ।

ନିଶୁନ୍ ରାତିରେ ଅନେକ ଛୋଟ ଛୋଟ ଶବ୍ଦ ଭାସି ଆସେ ।ମୁଁ କାନ ଡେରି ରହେ । କଅଣ ହେଲା ? କାଛରୁ ଝିଟିପିଟିଟାଏ ଖସିଲା ନାଁ ଗୋଟାଏ ଧେଡ଼ିଆ, ରୁମ

ଛଡ଼ା, ଭୋକିଲା ବିଲେଇ କିଛି ଗୋଟାଏ ହଏତ ମାଡ଼ି ବସିଲା । କେତେବେଳେ ହଏତ ନଡ଼ା ଭିତର ଦେଇ ସର୍ ସର୍ ହେଇ ଗୋଟିଏ ଚୁଟିଆ ମୂଷା ଚାଲିଗଲା । ଅଳ୍ପକିଛି ସମୟ ଭିତରେ ଏଇ ସବୁ ଶବ୍ଦ ସହିତ ମୁଁ ସାଲିସ୍ କରିନେଲି । ମନେ ମନେ ଭାବୁଥିଲି, ଏଇ କାଛ ଆରପଟେ ରାଣୀ ସେନ୍ କଅଣ କରୁଥିବ, ସେ ହଏତ ଆଖି ମେଲା କରି, ଚିତ୍ ହେଇ ଶୋଇ ଶୋଇ ବ୍ରାହ୍ମଣୀ ନଈର ସେଇ ଦୁଇକୂଳ ଖିଆ ବନ୍ୟା କଥା ଚିନ୍ତା କରୁଥିବ ।

ମତେ ନିଶ୍ଚୟ ନିଦ ହେଇଯାଉଥିଲା । କାରଣ ତା' ନ ହେଲେ ସେଦିନ ରାତିରେ ମୁଁ ରାଣୀ ସେନ୍‌ର ପଦ୍ମ ପୋଖରୀକୁ ଲମ୍ଫ ଦେଇ ପାରି ଥାଆନ୍ତି କିପରି ? ମୋର ସ୍ପଷ୍ଟ ମନେ ଅଛି, ମୁଁ ସେଦିନ ରାତିରେ ରାଣୀ ସେନ୍‌ର ପଦ୍ମପୋଖରୀରେ ଅବଗାହନ କରିଥିଲି କ୍ଳାନ୍ତ ହବା ପର୍ଯ୍ୟନ୍ତ । ସେ ରାତିରେ ବହୁ ପଦ୍ମ କୋରକ ମୁଁ ମୋର ଦାନ୍ତ ଆଉ ନଖ ଦେଇ ଛିନ୍ନ ଭିନ୍ନ କରିଛି । ପୋଖରୀ ଭିତରେ ତା'ର ଉଦ୍‌ଭିନ୍ନ ଯୌବନ ମୁକୁଳିତ କରି ରାଣୀ ସେନ୍ ଠିଆ ହେଇ ହସୁଚି ଆଉ ହସୁଚି । ମୋର ରକ୍ତ କଣିକା ସବୁ ଅସମ୍ଭବ ଭାବରେ କ୍ଷିପ୍ତ ହେଇ ଉଠିଚି ।

ଏହା ଯଦି ସ୍ୱପ୍ନ ହୁଏ, ତାହାହେଲେ ଜୀବନରେ ଅନ୍ୟ କୌଣସି ସ୍ୱପ୍ନ ଏତେ ସତ୍ୟ ବୋଲି ମତେ ପ୍ରତୀୟମାନ ହୋଇ ନାହିଁ । ଏହା ଯଦି ସତ୍ୟ ହୁଏ, ତାହା ହେଲେ ଜୀବନରେ ଅନ୍ୟ କେବେ ଏକ ଅତି–ବାସ୍ତବ ଅନୁଭୂତି ଏତେ ସ୍ୱପ୍ନ ବିଜଡ଼ିତ ମନେ ହୋଇ ନାହିଁ । ଏକ ଅର୍ଦ୍ଧ ସୁଷୁପ୍ତି ଓ ଏକ ଅର୍ଦ୍ଧ ଜାଗରଣର ଅବସ୍ଥା, ଯେଉଁଠାରେ ସ୍ୱପ୍ନ ଆଉ ବାସ୍ତବତା ଫେଣ୍ଟି ହେଇ, ଏକ ସୁଷୁପ୍ତ ଆଗ୍ନେୟଗିରିରୁ ଉତ୍‌କ୍ଷିପ୍ତ ହୋଇ ପ୍ରଚଣ୍ଡ ଲାଭାସ୍ରୋତ ପରି ପ୍ରବାହିତ ହୋଇଛି ।

ମୋର ନିଦ ଭାଙ୍ଗିଲା ବେଳକୁ ସୂର୍ଯ୍ୟ ତା'ର ଖରାର ଆଙ୍ଗୁଠି ବଢ଼େଇ ମତେ ଉଷ୍ଣ ଆଲିଙ୍ଗନ କରୁଥିଲା । ଯେଉଁ ରାଣୀ ସେନ୍ ମୋ' ପାଇଁ ଚା' ନେଇ ଆସି ମୋ ପାଖରେ ଠିଆ ହେଲା, ସିଏ ଅନ୍ୟ ଏକ ରାଣୀ ସେନ୍ । ଖଣ୍ଡେ ଧୋବ ଲୁଗା ବେଶ୍ ଯତ୍ନ କରି ପିନ୍ଧିଚି । କୁଞ୍ଚିତ କେଶର ଲହରୀ ବାରମ୍ବାର ଆସି ତା'ର ନିତମ୍ବର ପଥରରେ ପିଟି ହୋଇ ପ୍ରତିହତ ହଉଚି । କାହା ବିରୁଦ୍ଧରେ ତା'ର ଅଭିଯୋଗ ନାହିଁ । ସେ ଯେପରି ଅକସ୍ମାତ୍ ଆଉ ଥରେ ବଞ୍ଚିବା ପାଇଁ ଏକ ନୂତନ ସାହସ ଆହରଣ କରିଛି । ରାଣୀ ହାତରୁ ଚା' କପ୍‌ଟା ନେଇ କହିଲି, ''ଧନ୍ୟବାଦ'' । ରାଣୀ ହଠାତ୍ ଖିଲ୍ ଖିଲ୍ କରି ହସି ଉଠିଲା, ପଚାରିଲା, ''ବାବୁ, କାଲି ରାତିରେ ହାଡ଼ବାଈ ଆସି ନଥିଲା ତ ? ମୁଁ ଆଗରୁ କହିଚି, ସେ କାହାର କିଛି କ୍ଷତି କରେ ନାହିଁ ।'' ମୁଁ କାଲି ରାତିର ଅର୍ଦ୍ଧ ଜାଗରଣ ଓ ଅର୍ଦ୍ଧ ସୁଷୁପ୍ତିର କମଳ ବନର ଅନୁଭୂତି ଚିନ୍ତା କରୁ କରୁ

ରାଣୀ ସେନ୍‌ର ପ୍ରଶ୍ନ ମତେ ଗୋଟାଏ ଦୁର୍ଭେଦ୍ୟ ଗୋଲକ ଧନ୍ଦା ଭିତରକୁ ଠେଲି ଦେଲା । କିଛି ଜବାବ୍ ଦେଲି ନାହିଁ ।

ଚା'ଟା ଖାଇସାରି ଗାଡ଼ି ପାଖକୁ ଯିବା ପାଇଁ ବାହାରିଲି । ରାଣୀ ସେନ୍ ଦୁଆର ମୁହଁ ପାଖରେ ଠିଆ ହେଇଥିଲା । ମୁହଁର ଭାବଟା ଥିଲା, ଯେପରି ତା'ର ଦୟିତ ଯାଉଚି ଅନେକ ଦୂରକୁ, ଫେରିବ କାହିଁ କେବେ । ଖାଲି କହିଲା, ''ବାବୁ, ଏ ଗାଆଁ ଆଉ ମତେ ମନେ ରଖିବ ତ ?'' ମୁଁ ଅପ୍ରତିଭ ଭାବଟାକୁ ଘୋଡ଼େଇ ନବା ପାଇଁ ଡାହାଣ ହାତର ପାପୁଲିଟା ଦୁଇ ଥର ହଲେଇ ଦେଇ କହିଲି, ''ଆଚ୍ଛା ଆସୁଛି'' ।

ଭଗବାନଙ୍କୁ ଅଶେଷ ଧନ୍ୟବାଦ ଡ୍ରାଇଭର ସକାଳୁ ଆସି ଗାଡ଼ି ଠିକ୍ କରି ବସି ରହିଥିଲା । କେଜାଣି କାହିଁକି ଗାଡ଼ିରେ ହଠାତ୍ ବସି ପଡ଼ି ଡ୍ରାଇଭରକୁ କହିଲି, ''ଶୀଘ୍ର ଚଳାଅ ।''

ଗାଡ଼ି ଚାଲିଚି । ବାରମ୍ବାର ମନକୁ ଗତ ରାତିର ଅନୁଭୂତି ଫେରି ଆସୁଥିଲେ ମଧ୍ୟ ମୁଁ ତାକୁ ଗୋଟାଏ ଦୁଃସ୍ୱପ୍ନ ପରି ବାରମ୍ବାର ଦୂରକୁ ଠେଲୁଚି । ଆଗରେ ଗୋଟାଏ ଚା' ଦୋକାନ ଦେଖି ଡ୍ରାଇଭରକୁ ଗାଡ଼ି ରଖିବାକୁ କହିଲି ଏବଂ ଚା' ଦୋକାନୀ କିପରି ଆସ୍ତେ ଆସ୍ତେ ଚା' ପାଣି ଢାଳୁଚି, ଚିନି ଦଉଚି, ସେଥିପ୍ରତି ଅତିମାତ୍ରାରେ ମନୋନିବେଶ କଲି ।

କିନ୍ତୁ ହଠାତ୍, ବିଦ୍ୟୁତ୍‌ର ଝଲକ ପରି ମୋ ମନ ଭିତରେ ଗୋଟାଏ କଥା ଅନୁରଣନ କରି ଉଠିଲା, ''କାହିଁ ! ମୁଁ କାଲି ରାତିରେ ତ ଅନେକ ଚୁଡ଼ିର ରୁଣୁ ଝୁଣୁ କଥା ମନେ କରି ପାରୁ ନାହିଁ । ତାହା ହେଲେ କଅଣ...''



# ପୁତ୍ର

ପ୍ରାୟ ପ୍ରତିଦିନ ପରି ସେଦିନ ପ୍ୟାରିସ୍‌ର ସକାଳ ଥିଲା ମେଘାଚ୍ଛନ୍ନ ।

ସେଥିପାଇଁ ସମଗ୍ର ପ୍ୟାରିସ୍ ସହର ଦେଖା ଯାଉଥିଲା ପାଣ୍ଡୁର ବର୍ଣ୍ଣହୀନ ଗୋଟାଏ ନେଫ୍ରାଇଟିସ୍ ରୋଗୀର ମୁହଁପରି । ଟିକିଏ ଶାନ୍ତ ସକାଳ ପବନର ସ୍ପର୍ଶ ପାଇବା ପାଇଁ ମ୍ୟାଦାମ୍ ଭାଁଦେକ୍ ସୋପାର୍ଣ୍ଣୋ ତାଙ୍କର ପ୍ରକୋଷ୍ଠର ଭାରୀ ଭାରୀ ଡ୍ରେପର୍ ଗୁଡ଼ିକୁ ଦୁଇ ଦିଗକୁ ଟାଣି ନେଇ କାଚର ଲମ୍ବା ଲମ୍ବା ଫ୍ରେଞ୍ଚ୍ ଉଇଣ୍ଡୋ ସବୁ ଖୋଲି ଦେଇଥିଲେ । ଆବ୍‌ହାଓ୍ୱା ସାମାନ୍ୟ ଉଷ୍ଣ ହେଇଥିବାରୁ ବୋଧହୁଏ ସକାଳୁ ସକାଳୁ ସେଣ୍ଟ୍ରାଲ୍ ହିଟିଙ୍ଗ୍ ସିଷ୍ଟମ୍‌ଟାକୁ ବିଶ୍ରାମ ଦିଆଯାଇଛି । ମୁହଁରେ ଟିକିଏ ତାଜା ଥଣ୍ଡା ପବନ ବାଜି, ନିଦ୍ରା ଜନିତ କ୍ଳାନ୍ତିର ସାମାନ୍ୟ ଉପଶମ ହେଲାପରି ଲାଗୁଛି ।

କିନ୍ତୁ ତଥାପି ଶୋଇ ରହିଛନ୍ତି ମୋସିଓ ସୋପାର୍ଣ୍ଣୋ । ଶୋଇ ରହିଥାଆନ୍ତୁ ସିଏ । ଶ୍ୱାସ ଜନିତ ଯନ୍ତ୍ରଣାରେ ସିଏ ତ ଶୋଇ ପାରୁ ନାହାନ୍ତି, ଶୋଇବାକୁ ଅନେକ ରାତି ହୋଇଯାଏ । ଏଇ କିଛି ମୁହୂର୍ତ୍ତ ପାଇଁ ଅନ୍ତତଃ ସେ ମୁକ୍ତି ପାଇ ପାରୁଛନ୍ତି ତାଙ୍କର ଶାରୀରିକ ଅସ୍ୱସ୍ତି ଓ ମାନସିକ କ୍ଷତର ଯନ୍ତ୍ରଣାରୁ । ସେମାନଙ୍କର ଜୀବନର କୋ'ଠି କିଛି ଗୋଟାଏ ଭୁଲ୍ ରହିଗଲା ପରା, ନ ହେଲେ ସେମାନେ ଆଜି ଆସି କାହଁକି ରହିଥାଆନ୍ତେ ପ୍ୟାରିସ୍ ଉପକଣ୍ଠର ଏଇ ନିର୍ବାସିତ 'ଓଲଡ୍‌ହୋମ୍'ରେ !

ଆସନ୍ତା ଡିସେମ୍ବରରେ ସେମାନଙ୍କର ବିବାହର ପଇଁତ୍ରିଶ୍ ବର୍ଷ ପୁରିଯିବ । କିନ୍ତୁ ସେ ସମୟର ମୋସିଓ ସୋପାର୍ଣ୍ଣୋ ତ ଥିଲେ ଭିନ୍ନ ଲୋକ । ଡେଙ୍ଗା ପତଳା ଚେହେରା, ଚାଲିଲାବେଳେ ମନେ ହେଉଥିଲା ଲୋକଟି ଯେମିତି ଦୌଡ଼ି ଦୌଡ଼ି ଚାଲୁଛି । ସବୁ ଦିନ ଟେନିସ୍ ଖେଳ । ଆଉ ସବୁଠାରୁ ବଡ଼ କଥା ହେଲା, ତାଙ୍କର ଆଦର କରିବାର ଭଙ୍ଗୀ ଥିଲା ଯଥେଷ୍ଟ ଅନ୍ତରଙ୍ଗ ଓ ଉଷ୍ଣ । ପ୍ରେମରେ ପଡ଼ିବା ପରି ଲୋକ ! ଆଉ ସେ ଦିନର ପଚିଶ୍ ବର୍ଷର ଝିଅ ଭାଁଦେକ୍ ତାଙ୍କୁ ପ୍ରେମ କରି ଓ ଶେଷରେ ସ୍ୱାମୀ ରୂପରେ ବରଣ କରି କ'ଣ ବା ଭୁଲ୍ କରିଥିଲା ? ଟିକିଏ ଭଲ ପୋଷାକ ପତ୍ର ପିନ୍ଧି, ଡିନର୍ ପୂର୍ବରୁ ଟିକିଏ ଓ୍ୱାଇନ୍ ପିଇ ପାରିବାର ସ୍ୱଚ୍ଛଳତା ନିଶ୍ଚୟ ଥିଲା ଜଣେ ବ୍ୟାଙ୍କ୍‌ର ସିନିଅର୍ ଆକାଉଣ୍ଟାଣ୍ଟ୍‌ର, ଯାହାର ସ୍ତ୍ରୀ ପୁଣି ସିଟି ହସ୍‌ପିଟାଲ୍‌ର ନର୍ସ ।

ବାହାଘରର ଦୁଇ ବର୍ଷ ପରେ ହିଁ ସେମାନେ ରିଏଲ୍ ଇଷ୍ଟେଟ୍‌ର ଡିଲର୍ ସହିତ ବୁଲି ବୁଲି ଅନେକ ଘର ଦେଖି ଦେଖି ତାଙ୍କର ଘର କିଣିଥିଲେ ଅଭିଜାତ ପଡ଼ା ପଁ ତୁ ନୁଇରେ । ଆଃ, ପୁଣିଥରେ ତାଙ୍କ ମୁଣ୍ଡ ଭିତରେ ଯେପରି ଯନ୍ତ୍ରଣାର ଗୋଟାଏ କଳା ରିବନ୍ କିଏ ଖୋଲି ଦେଲା କର୍ କର୍ ଶବ୍ଦ କରି । ନାଁ, ସେସବୁ ଭାବି ଲାଭ ନାହିଁ । ତା' ଛଡ଼ା ଏଠିକାର ନିର୍ବାସିତ ଜୀବନରେ ତ ନିଜର ରୁମ୍ ଭିତରେ ବସି ଚା' ଖାଇ ହୁଏନା । ଗୁରୁତର ଭାବରେ ଅସୁସ୍ଥ ନ ହେଲେ ଯିବାକୁ ପଡ଼ିବ ତଳ ମହଲାର କମନ୍ ଡାଇନିଂ ରୁମ୍‌କୁ, ନିର୍ଦ୍ଦିଷ୍ଟ ସମୟରେ । ସେଥିପାଇଁ ମୋସିଓ ସୋପାର୍ଣ୍ଣୋଙ୍କୁ ଉଠେଇ ଦବାକୁ ପଡ଼ିବ, ଆଜିକାଲି ସକାଳର ନିତ୍ୟକର୍ମ ସାରି ପ୍ରସ୍ତୁତ ହବାକୁ ତାଙ୍କୁ ବେଶ୍ ସମୟ ଲାଗୁଛି । ଉଠେଇ ଦବା ପାଇଁ ଖଟ ପାଖକୁ ଯାଉ ଯାଉ, ଅଭ୍ୟାସବଶତଃ ନିଜର ହାତର ମଣିବନ୍ଧଟିକୁ ବୁଲେଇ ନେଲେ ହାତ ଘଣ୍ଟା ଦେଖିବାକୁ । ଅନେକ ଦିନ ଧରି ହାତରେ ଘଣ୍ଟା ନଥିଲା ତାଙ୍କର । କିନ୍ତୁ ସେ ଯାହାହେଉ ଆଉ ଦଶମିନିଟ୍ ଅପେକ୍ଷା କରାଯାଇପାରିବ ନିଶ୍ଚୟ ।

ନିଜେ ମ୍ୟାଡ଼ାମ୍ ସୋପାର୍ଣ୍ଣୋ ଟଏଲେଟ୍‌ରେ ପଶି ଭିତରୁ କବାଟ ବନ୍ଦ କରି ନେଲେ । ସାଓ୍ୟାର୍ ତଳେ ଠିଆ ହୋଇ ମଧ୍ୟ ସେ ବେଶ ଉତ୍କର୍ଣ୍ଣ ଥିଲେ, ତା ନ ହେଲେ ଭିତରୁ ମୋସିଓ ସୋପାର୍ଣ୍ଣୋଙ୍କର ଖୁଁ ଖୁଁ କାଶ ସେ ଶୁଣି ପାରି ନଥାନ୍ତେ । ତଉଲିଆରେ ଯଥା ସମ୍ଭବ ଶୀଘ୍ର ପୋଛୁ ପୋଛି ହେଇପଡ଼ି ସେ ଟଏଲେଟ୍‌ରୁ ବାହାରି ଆସିଲେ । ସାଙ୍ଗେ ସାଙ୍ଗେ ମାରିଦେଲେ ଛୋଟ ହିଟର୍‌ର ସୁଇଚ୍ । ଟିକିଏ ଗରମ ପାଣିରେ ସେଭ୍ କରିବା ତାଙ୍କର ଅନେକ ଦିନର ଅଭ୍ୟାସ । ଜୀବନରେ ଅନେକ ଐଶ୍ୱର୍ଯ୍ୟ, ଏପରିକି କମ୍‌ଫର୍ଟ୍ ସେମାନଙ୍କ ପାଇଁ ହଜି ଯାଇଛି, ତଥାପି ଯେତେଟା ସମ୍ଭବ ତାକୁ ଅବହେଳିତ କରିବା ଠିକ୍ ହବ ନାହିଁ । ପରେ ପରେ ପଚାରିଲେ ସେ, ''ବେରେଟ୍, ତମର ଭଲ ନିଦ ହେଇଥିଲା ଆଶା କରେ'' । ନିଦୁଆ, ଭାରୀ କଫ ମିଶା କଣ୍ଠରେ ଉତ୍ତର ଦେଇଥିଲେ ବେରେଟ୍ ସୋପାର୍ଣ୍ଣୋ, ''ଗୋଟାଏ ପ୍ରକାର, କିନ୍ତୁ ଏତେ ସକାଳୁ ତମର ନିଦ ଭାଙ୍ଗିଗଲା କାହିଁକି ?'' ସେମାନେ ପ୍ରତିଦିନ ସକାଳୁ ଉଠିବା ପରେ ଏଇ ନିର୍ଦ୍ଦିଷ୍ଟ ପ୍ରଶ୍ନୋତ୍ତର ବିନିମୟ କରନ୍ତି ଓ କ୍ଷୁଦ୍ର ହିଟରଟି ଉପରେ, ଗୋଟିଏ ଛୋଟ କାଚ ଗିନାରେ ପାଣି ଫୁଟିବାର ସିଞ୍ଜିନୀ ଶୁଣାଯାଏ ଓ ମ୍ୟାଡ଼ାମ୍ ସୋପାର୍ଣ୍ଣୋ ହିଟର୍‌ର ସୁଇଚ୍ ଅଫ୍ କରିଦେଇ ବସି ରହନ୍ତି ଡ୍ରେସିଂ ଟେବୁଲ ସାମ୍ନାରେ ତାଙ୍କର ପ୍ରାତ୍ୟହିକ ପ୍ରସାଧନ ପାଇଁ ଓ ମୋସିଓ ତାଙ୍କର ସ୍ଲିପିଂସୁଟ୍‌ରୁ ନିଜକୁ ମୁକ୍ତ କରି ପାଦ ଘୋଷାରି ଘୋଷାରି ଯାଆନ୍ତି ଟଏଲେଟ୍ ଭିତରକୁ ।

ଏବେ ମଧ୍ୟ ମ୍ୟାଡ଼ାମ୍ ସୋପାର୍ଣ୍ଣୋଙ୍କୁ ପର୍ଯ୍ୟାପ୍ତ ସମୟ ବସି ରହିବାକୁ ପଡ଼େ ଡ୍ରେସିଂ ଟେବୁଲ୍ ସାମ୍ନାରେ । ''ଆଉ ବୋଧହୁଏ କେଇଟା ବାଳ ପାଚିଗଲାଣି'', ବସି

ବସି ଭାବୁଥାଆନ୍ତି ସେ' ଆଇବ୍ରୋ ପେନ୍‌ସିଲ୍‌ରେ ତାଙ୍କର ଭ୍ରୂଲତା ଆଙ୍କୁ ଆଙ୍କୁ । ବାର୍ଦ୍ଧକ୍ୟ ଅପରିହାର୍ଯ୍ୟ କିନ୍ତୁ ତା' ବୋଲି ତାକୁ ଏତେ ସହଜରେ ସ୍ୱୀକାର କରି ନିଆଯାଇ ପାରେ ନାଁ । ପ୍ରସାଧନର ଶେଷ ପର୍ଯ୍ୟାୟରେ ଯେତେବେଳେ ସେ କିଛି ଗୋଟାଏ ପରଫ୍ୟୁମ୍ ଧରି ନିଜର ଦେହ ଉପରେ ସ୍ପ୍ରେ କରୁଥାଆନ୍ତି ସେତେବେଳେ ଟଏଲେଟ୍‌ର କବାଟ ଖୋଲି ବାହାରକୁ ଆସନ୍ତି ମୋସିଓ ଓ ସେ ତାଙ୍କର ପରିଧାନ ପିନ୍ଧିବା ତ୍ୱରାନ୍ୱିତ କରିବାକୁ ଚେଷ୍ଟା କରନ୍ତି ।

ଠିକ୍ ଏତିକିବେଳେ ତଳୁ ଡାଇନିଂ ହଲ୍‌ର ଗଙ୍ଗ୍ ଡିଂ ଡିଂ ଶବ୍ଦ କରି ବାଜିଉଠେ । ଅନ୍ୟ ପରିସ୍ଥିତିରେ ଅନ୍ୟ ସମୟରେ ଏଇ ଗଙ୍ଗ୍‌ର ଶବ୍ଦ ହୁଏତ ପ୍ରୀତିକର ମନେ ହେଇଥାଆନ୍ତା, କିନ୍ତୁ ଏଇ ପରିବେଶରେ ମ୍ୟାଡ଼ାମ୍ ସୋପାର୍ଣ୍ଣୋଙ୍କର ଦେହ ଘୃଣାରେ ଶୀତେଇ ଉଠେ । ମନେହୁଏ ଯେମିତି କିଏ କଏଦୀମାନଙ୍କୁ ଖାଇବାକୁ ଡାକୁଚି । କିନ୍ତୁ ସେମାନଙ୍କର ନିଜ ଡାଇନିଂ ହଲ୍‌ରେ ଥିଲା ଗୋଟାଏ କଂସାର ଛୋଟ ସୁନ୍ଦର ଘଣ୍ଟା ଯାହାକୁ ସେମାନେ ସେମାନଙ୍କର ଭାରତ ପରିଭ୍ରମଣ ସମୟରେ ସାଙ୍ଗରେ ଆଣିଥିଲେ । ଯେଉଁଦିନ କିଛି ଗୋଟାଏ ଡିସ୍ ତିଆରି କରିବାକୁ ବିଳମ୍ବ ହବାର ଥାଏ ସେଦିନ ଜାଣିଶୁଣି କୌତୁକ କରି ବେରେଟ୍ ଡିଂ ଡିଂ କରି ବଜାଏ ତାକୁ ବିରକ୍ତ କରିବାକୁ । ସେ ଯେତେବେଳେ ଗରମ କଣ୍ଟେନର୍‌ଟାକୁ ଆଣି ଟେବୁଲ୍ ଉପରେ ରଖନ୍ତି ସେତେବେଳେ ବେରେଟ୍ ଉଦ୍ଦେଶ୍ୟରେ ଲକ୍ଷ୍ୟ କରି କହନ୍ତି, "ତମେମାନେ ସବୁ ଉତ୍ତର ଫ୍ରାନ୍‌ସର ଲୋକ ଓ ଜର୍ମାନ୍‌ମାନଙ୍କ ପରି ସିଝାଆଳୁ ଖାଇବାରେ ଅଭ୍ୟସ୍ତ । ଖୋଦ୍ ପ୍ୟାରିସ୍‌ର ଏଇ ଡିସ୍ ରାନ୍ଧିବାକୁ କେତେ ସମୟ ଲାଗେ ତା ତମେମାନେ ଜାଣିବ କେମିତି ? ସେତେବେଳକୁ ବେରେଟ୍ ତାଙ୍କର କଟି ବେଷ୍ଟନ କରି ତାଙ୍କୁ ନିଜ ଉପରକୁ ଆଉଜେଇ ନେଇ ଚୁମ୍ବନ କରୁଥାଆନ୍ତି ଓ ସେମାନଙ୍କର ତିନିଫୁଟ ଉଚ୍ଚତାର ପୁଅ ରବର୍ଟ ସେମାନଙ୍କୁ ଜୁଳୁ ଜୁଳୁ କରି ଚାହିଁ ରହିଥାଏ କେବଳ, ବେକ ପଛକୁ ଭାଙ୍ଗି ଦେଇ ।

ତଳକୁ ଯିବାକୁ ପଡ଼ିବ ଅଗତ୍ୟା । ସେମାନେ ରୁମ୍‌ର ତାଲା ବନ୍ଦ କରି ତଳକୁ ଯିବା ପାଇଁ ନିଜକୁ ତିଆରି କରନ୍ତି । ବେରେଟ୍ ତାଙ୍କ ହାତରେ ଧରିଥଂଆନ୍ତି ସେଲୋଫେନ୍ କାଗଜରେ ମୋଡ଼ା ଗୋଟାଏ ସିଗାର୍ ।

ଶିଡ଼ିରେ ଓହ୍ଲେଇ ଯାଉ ଯାଉ ଲ୍ୟାଣ୍ଡିଂ ପାଖକୁ ଆସି ମୁହୂର୍ତ୍ତକ ପାଇଁ ଅଟକି ଯାଆନ୍ତି ମ୍ୟାଡ଼ାମ୍ ସୋପାର୍ଣ୍ଣୋ । ସେଇଠାରୁ ପୁରାପୁରି ଡାଇନିଂ ହଲ୍‌ଟା ଦେଖାଯାଏ । ଆଖି ପଡ଼ିବା ମାତ୍ରେ ଦେଖାଯିବ ପ୍ରାୟ ଦେଢ଼ଶହ ଲୋକ ବସି ରହି ସେମାନଙ୍କର ପ୍ରାତଃ ଭୋଜନ କରୁଛନ୍ତି ଓ ସମସ୍ତଙ୍କର ମୁଣ୍ଡ ଯେପରି ଧଳା ବାଳରେ ଛାଉଣି କରାଯାଇଛି । ମୃତ୍ୟୁ ଯେପରି ଏଠି ତା'ର ସ୍ଥାୟୀ ଶିବିର ପକେଇ ରଖିଛି । ଏଇ ଓଲ୍‌ଡ଼ ହୋମ୍‌ର ଅସହାୟ ଅନ୍ତେବାସୀମାନେ ଜୀବନରୁ ନିର୍ବାସିତ କିନ୍ତୁ ମୃତ୍ୟୁ ସେମାନଙ୍କୁ

ତଥାପି ଗ୍ରହଣ କରି ନାହିଁ । ସେମାନେ ଏକ ମଧ୍ୟବର୍ତ୍ତୀ ଅବସ୍ଥାରେ ଝୁଲି ରହିଛନ୍ତି ତ୍ରୀଶଙ୍କୁ ପରି, ମୃତ୍ୟୁ ଦ୍ୱାରା ଅନୁଗୃହୀତ ହବାର କରୁଣ ପ୍ରତୀକ୍ଷାରେ ।

ଶିଡ଼ିରେ ଓହ୍ଲେଇ ସାରି ହଲ୍ ଭିତରକୁ ପଶିଲା ବେଳେ ସୋପାର୍ଣ୍ଣୋ ଦମ୍ପତିଙ୍କର ଚାଲିବାର ବେଗ ତ୍ୱରାନ୍ୱିତ ହୁଏ । ଏହା ଆକସ୍ମିକ ନୁହଁ, ଇଚ୍ଛାକୃତ । ଦ୍ରୁତ ପଦକ୍ଷେପ ବୋଧହୁଏ ସାମାନ୍ୟ ଅଧିକ ଜୀବନୀଶକ୍ତିର ପ୍ରମାଣ ଦିଏ । ଡାଇନିଂ ହଲ୍‌ରେ ସମବେତ ବ୍ୟକ୍ତିମାନେ ମୁହୂର୍ତ୍ତକ ପାଇଁ ମୁହଁ ବୁଲେଇ ସେମାନଙ୍କୁ ଦେଖି ନିଅନ୍ତି ତା'ପରେ ଏକ ସାଧାରଣ ଭଙ୍ଗୀରେ ସେମାନଙ୍କର ବେକ ପାଖର ନ୍ୟାପ୍‌କିନ୍ ଟିକିଏ ଏପଟ ସେପଟ କରି ନିଅନ୍ତି ନ ହେଲେ, ଟା'ର କେଟ୍‌ଲିରେ ଚାମୁଚ୍ ଭର୍ତ୍ତିକରି ଆସ୍ତେ ଆସ୍ତେ ଲିକର୍‌କୁ ସଂଚାଳିତ କରିବାକୁ ଆରମ୍ଭ କରନ୍ତି । ପୋର୍ସିଲେନ୍‌ର କାଛରେ ଷ୍ଟିଲ୍‌ର ଚାମୁଚ୍ ବାଜି ଟୁଂ ଟାଂ ହେଇ ଯେଉଁ ମୃଦୁ ଗୁଞ୍ଜନ ସୃଷ୍ଟି ହୁଏ ତାହା ସୋପାର୍ଣ୍ଣୋ ଦମ୍ପତିଙ୍କର ସ୍ତିମିତ କ୍ଷୁଧାକୁ ସାମାନ୍ୟ କ୍ଷିପ୍ର କରି ଡୋଳେ ବୋଧହୁଏ । ସେମାନେ ଗୋଟାଏ ଟେବୁଲ୍ ଦେଖି ବସି ଯାଇ ସେମାନଙ୍କର ନ୍ୟାପ୍‌କିନ୍ ବେକ ପାଖରେ ଲଗେଇ ନିଅନ୍ତି ।

ଟେବୁଲ୍ ଉପରେ ଆସି ଥୁଆ ହୁଏ ଗୋଟାଏ ଲମ୍ୱା ବ୍ରାଉନ୍ ବ୍ରେଡ଼୍ ଓ ଟା'ର ସରଞ୍ଜାମ । ଲୋକଟା ବେଶ ପରିଷ୍କାର ପରିଚ୍ଛନ୍ନ ଧଳା ସୁଟ୍ ପିନ୍ଧିଥାଏ ଓ ତା' ଉପରେ ବାନ୍ଧିଥାଏ ଗୋଟାଏ କଳା ବୋ' । ଟ୍ରେ ରଖିଦେଇ ଗଲାବେଳେ ଯେ ସେ ମୁଣ୍ଡ ତଳକୁ ଝୁଙ୍କେଇ ବୋ' କରି ଯାଏ ତା ନୁହଁ କିନ୍ତୁ ତଥାପି ଲୋକମାନେ ଗତାନୁଗତିକ ଭାବରେ ଅନ୍ୟ ଆଡ଼କୁ ମୁହଁ ଫେରାଇ କୁହନ୍ତି ମର୍ସି, କିନ୍ତୁ ମୋସିଓ ବେରେଟ୍ ରୀତିମତ ଗୋଟିଏ ସ୍ମିତ ହସ ଟାଣି କହନ୍ତି, ''ମର୍ସି ବୁକ୍‌କୁ'', ଅର୍ଥାତ୍ ପ୍ରଚୁର ଧନ୍ୟବାଦ । ଧଳା ପୋର୍ସିଲେନ୍‌ର ଟା' କେଟ୍‌ଲି । ଦୁଧ ଜଗ୍ ଆଉ ଚିନିର ଦାନୀ ସବୁ ଦେଖା ଯାଆନ୍ତି ଯେମିତି ମଣିଷ ହାଡ଼ରେ ତିଆରି । ସବୁ ଦିନ ଟେବୁଲ୍ ଉପରେ ସେଇ ଏକା ଦୃଶ୍ୟ । ଅବଶ୍ୟ ଅଭିଯୋଗ କରିବାର କିଛି ନାହିଁ—ଫ୍ରାନ୍‌ସରେ ସଚରାଚର ଏୟା ହିଁ ବ୍ରେକ୍‌ଫାଷ୍ଟ୍ । କାହାକୁ କେମିତି କେବେ କେବେ ହୁଏତ ମିଳିଯାଏ, ଇଣ୍ଡିଆନ୍ ଟି ପିଇବାର ଦୁର୍ଲ୍ଲଭ ବିଳାସ ।

ରବର୍ଟ କିନ୍ତୁ ଏଇ ଧରଣର ବ୍ରେକ୍‌ଫାଷ୍ଟ୍ ସହ୍ୟ କରିପାରୁ ନଥିଲା । ଜର୍ମାନୀ ଆଉ ସ୍କାଣ୍ଡିନେଭିଆନ୍ କଣ୍ଟ୍ରିରେ ବହୁଦିନ ରହିଯାଇ ତା'ର ଖାଇବାର ପଦ୍ଧତିଟା ହେଇ ଯାଇଥିଲା ପୂରାପୂରି କଣ୍ଟିନେଣ୍ଟାଲ୍ । ସେଲ୍‌ଫ ହେଲ୍‌ପ୍ ଷ୍ଟୋର୍‌ରୁ ସେଥିପାଇଁ ନିୟମିତ ଭାବରେ ବେରେଟ୍ କିଣି ଆଣୁଥିଲେ ବଟର୍, ଜାମ୍ ଆଉ ଜେଲି ।

ଟା'ର ଲିକର୍‌ଟା କେତେବେଳୁ ପ୍ରସ୍ତୁତ ହେଇଯିବଣି, ଅନ୍ୟମନସ୍କ ହେଇ ପଡ଼ିଥିଲେ ଭାଁଦେଜ୍ ସୋପାର୍ଣ୍ଣୋ । ତରତର ହେଇ ଟି-କୋଜିଟାକୁ ବାଁ ହାତରେ

ଉଠେଇ ଧରି କେଟ୍‌ଲିର ଡାଙ୍କୁଣି ଖୋଲିଲେ । ଚା'ର ଗନ୍ଧରେ ପରିପକ୍ୱ ପ୍ରଥମ ବାମ୍ପଟା ଆସି ବାଜିଲା ତାଙ୍କର ନାକରେ । ତା'ପରେ ଚାମୁର୍‌ଟାକୁ ଲିକର୍‌ରେ ବୁଡ଼େଇ ଧରି ଧୀରେ ଧୀରେ ବୃତ୍ତାକାରରେ ବୁଲେଇବାକୁ ଲାଗିଲେ ସେ । ହାତରେ ଅଫୁରନ୍ତ ସମୟ । ଖୁବ୍ ଧୀରେ ଧୀରେ ଚା' ଖିଆଯିବା ଉଚିତ୍ । ନହେଲେ ସେମାନଙ୍କୁ ଖୁବ୍ ଶୀଘ୍ର ଫେରିଯିବାକୁ ପଡ଼ିବ ଗୋଟାଏ ସନ୍ତସନ୍ତିଆ ଟ୍ରେନ୍ କମ୍ପାର୍ଟମେଣ୍ଟ ପରି ଥଣ୍ଡା ସେମାନଙ୍କର ନିଜର ପ୍ରକୋଷ୍ଠକୁ ।

ଏଇ, ଯାଡ଼କୁ ଆସିବା ଆରମ୍ଭ କଲାଣି ତା'ର ଲମ୍ବା ଲମ୍ବା ପାହୁଣ୍ଡ ମାପି ଇମାନୁଏଲ୍ । ହାତରେ ବୋଧହୁଏ ଟୁବାକୋ ଧରି ମଳୁଚି ଆଉ ତା'ର ଶାଗୁଣା ଚଞ୍ଚୁ ପରି ବାହାରକୁ ବାହାରି ଆସିଥିବା ନାକ ଦୁଇପଟେ ଦୁଇଟା କୋଟରଗତ ଆଖିରେ କେତେବେଳେ ଚାହୁଁଛି ସୋପାର୍ଣ୍ଣୋ ଦମ୍ପତିଙ୍କ ଟେବୁଲ୍ ଆଡ଼େ ତ ପୁଣି କେତେବେଳେ ହାତରେ ମୋଡୁଥିବା ଟୁବାକୋ ରୋଲ୍‌ଆଡ଼େ । ଯେ ତା'ର ଚିରାଚରିତ ଅଭ୍ୟାସ । କୌଣସି ନା କୌଣସି ଟେବୁଲ୍‌ରେ ବସି ଯିବ ଆସି ଆଉ ଗପି ଚାଲିବ 'ଓଲ୍‌ଡ଼ ହୋମ୍' କଲୋନୀର ଯେତେ ସବୁ ମୁଖରୋଚକ ସ୍କ୍ୟାଣ୍ଡାଲ୍ ଓ ଏଇ ଆଳରେ କପେ ଏକ୍‌ଷ୍ଟ୍ରା ଚା' ମଧ୍ୟ ପିଇ ଚାଲିଯିବ ।

''ବୋଁଜୁର୍ ମୋସିଓ ବୋଁଜୁର୍ ମ୍ୟାଦାମ୍'' କହିଲା ଇମାନୁଏଲ୍ ଓ ଗୋଟାଏ ଚଉକୀ ଉପରେ ବସିଗଲା ''ବୋଁଜୁର୍'', ଦୁହେଁ ପ୍ରତି ଅଭିବାଦନ ଜଣାଇ କହି ଉଠିଲେ ଏକା ସାଙ୍ଗରେ ତା'ପରେ ଇମାନୁଏଲ୍ ଏପଟ ସେପଟ ଚାହିଁ ନେଇ ମ୍ୟାଦାମ୍‌ଙ୍କ କାନ ପାଖରେ ମୁହଁ ଲଗେଇ କ'ଣ ଗୋଟାଏ ଫିସ୍ ଫିସ୍ କରି କହିଲା । ସାମାନ୍ୟ ଟିକିଏ ହସିଲେ ମ୍ୟାଦାମ୍ ଭାଁଦେଲ୍ ଓ ତାଙ୍କର ସ୍ୱାମୀଙ୍କୁ ଲକ୍ଷ୍ୟ କରି କହିଲେ, ''ଚାଲ, ଘରକୁ ଗଲେ କହିବି ।''

ବ୍ରେକ୍ ଫାଷ୍ଟ ପର୍ବ ସମାପ୍ତ କରି ଅନେକ ଲୋକ ସେମାନଙ୍କର ରୁମ୍‌କୁ ଫେରିଗଲେଣି । କାଁ ଭାଁ କେଇଜଣ ବସି ରହି କାଚର ଝର୍କା ଦେଇ ଉଦ୍ଦେଶ୍ୟହୀନ ଭାବରେ ଆକାଶକୁ ଚାହିଁ ରହିଛନ୍ତି । କାହା କୋଳରେ ଖଣ୍ଡେ ମ୍ୟାଗାଜିନ୍, ଆଉ କିଏ ବସି ବସି ସିଗାରେଟ୍‌ରୁ ଧୂଆଁ ଛାଡୁଛି—ଆଉ ଟିକିଏ ଦୂରରେ 'ବବ୍' ବସିରହି ଗୋଟାଏ ଟୁଥ୍ ପିକ୍ ଧରି ତା'ର ଅବଶିଷ୍ଟ ଥିବା କେଇଟି ମାତ୍ର ଦାନ୍ତକୁ ହିଂସ୍ର ଭାବରେ କ୍ରମାଗତ ଆକ୍ରମଣ କରି ଚାଲିଛି ହଠାତ୍ ସୋପାର୍ଣ୍ଣୋ ଦମ୍ପତିଙ୍କ ଆଡ଼କୁ ଚାହିଁ ଗୋଟାଏ ଅଭ୍ୟାସଗତ ପ୍ରଶ୍ନ ଫୋପାଡ଼ି ଦେଲା, ''ରବର୍ଟ୍ କେମିତି ଅଛି ?'' ବାସ୍ ସେତିକି । ମ୍ୟାଦାମ୍ ସୋପାର୍ଣ୍ଣୋ ତତ୍‌କ୍ଷଣାତ୍ ଉତ୍ତର ଦେଲେ; ''ହଁ ଗୋଟେ ରକମ ।'' କହିବା ସେଙ୍ଗ ସଙ୍ଗେ ସେମାନେ ଉଠିଗଲେ ସେମାନଙ୍କ ରୁମ୍‌କୁ ଯିବା ପାଇଁ । ଯାଉ ଯାଉ

ମନକୁ ମନ ସ୍ୱାଗତ୍ କହୁଥିଲେ ଭାଁଦେଜ୍, ''ଧୂର୍ତ୍ତ ଶୃଗାଳ, ଲୋକଙ୍କୁ ଶାନ୍ତିରେ ବସେଇ ଦବ ନାହିଁ ।''

ଉପର ମହଲାକୁ ଉଠିବା ପରେ ଦେଖାଗଲା ବାରଣ୍ଡାରେ ଖଣ୍ଡେ ଛୋଟ ଟେବୁଲ ଉପରେ ଚେସ୍ ବୋର୍ଡ଼ ରଖି ନିଜ ନିଜର ଚଉକୀରେ ମୁହଁ ତଳକୁ କରି ବସି ରହିଛନ୍ତି ଗର୍ଜ୍ଜ ଆଉ ଜାକ୍ୟୁଲିନ୍ । ଗର୍ଜ୍ଜ ମୃତଦାର ଓ ଜାକ୍ୟୁଲିନ୍ ତଥାପି କୁମାରୀ । କହିବା ବାହୁଲ୍ୟ ଯେ ଦୁହିଁଙ୍କର ବୟସ ଷାଠିଏ ବର୍ଷରୁ ଉର୍ଦ୍ଧ୍ୱ ।

ଭାଁଦେଜ୍ ନିଜର କହୁଣୀରେ ବେରେଟ୍‌କୁ ସାମାନ୍ୟ ଇଙ୍ଗିତ ଦେଇ ଚୁପ୍‌ଚୁପ୍ କହିଲେ, ''ଏଇମାନଙ୍କ କଥା କହୁଥିଲା ଇମାନୁଏଲ୍, ଗତ କାଲି ରାତିରେ କୁଆଡ଼େ ଚେସ୍ ଖେଳିବା ପାଇଁ ପ୍ରାୟ ରାତି ତିନିଟା ପର୍ଯ୍ୟନ୍ତ ଜାକ୍ୟୁଲିନ୍‌ର ରୁମ୍‌ରେ ରହିଯାଇଥିଲେ ମୋସିଓ ଗର୍ଜ୍ଜ ।'' ସେମାନଙ୍କ ପାଖ ହେଇ ଆସିବାରୁ ରସିକତା କରି କହିଲେ ବେରେଟ୍, ''ଟିକିଏ ହୁସିଆର୍ ହେଇ ଖେଳୁଥିବ ଜାକ୍ୟୁଲିନ୍, ଏଇ ଗର୍ଜ୍ଜ ଲୋକଟା ବିଶେଷ ଭଲ ଲୋକ ନୁହଁ, ଟିକିଏ ସୁବିଧା ପାଇଲେ ଖାପ୍‌ଚାରେ ପକେଇଦବ, ବିଶେଷ କରି ଯଦି ତା'ର ପ୍ରତିପକ୍ଷ ମହିଳା ହୁଅନ୍ତି ।''

ଜାକ୍ୟୁଲିନ୍ ଚେସ୍ ବୋର୍ଡ଼ ଉପରୁ ମୁହଁ ଉଠେଇ କହିଲା, ''ମର୍ସି, ମୋସିଓ ସୋପାର୍ଣ୍ଣୋ, ଆପଣଙ୍କର ଏ ସତର୍କ ବାଣୀ ପାଇଁ ମର୍ସି ବୁକ୍‌କୁ ।'' ଜାକ୍ୟୁଲିନ୍‌ର ସଲଜ୍ଜ ମୁହଁକୁ ଦେଖି ମନେହେଲା ଯେପରି ଏକ ଗତାୟୁ ଗୋଲାପର ପାଖୁଡ଼ାକୁ କିଛି ତାଜା ରକ୍ତ ଫେରି ଆସିଲା ।

ଭାଁଦେଜ୍ ଆଉ ବରେଟ୍ ସେମାନଙ୍କର ପ୍ରକୋଷ୍ଠ ଭିତରକୁ ପଶିଲେ । ପ୍ୟାରିସ୍‌ର ସ୍କାଏ୍ କଟେଇ ଟିକିଏ ଖରା ଆସିଛି ପରା । ଆଃ ! ସୂର୍ଯ୍ୟଙ୍କର ଏଇ କୃପଣ ଦାନରେ ମଧ୍ୟ ପ୍ରତ୍ୟେକ ପ୍ୟାରିସ୍ ବାସୀର ମନ ଖୁସିରେ ନାଚି ଉଠେ । ନିଜ ଘରର ବେ' ଉଇଣ୍ଡୋ ପାଖରେ ବସି ରହି ମୋସିଓ ବରେଟ୍ ସୋପାର୍ଣ୍ଣୋ ଆଉ ଖଣ୍ଡେ ସିଗାର୍‌ରେ ଅଗ୍ନି ସଂଯୋଗ କଲେ । ଏଇ କୁଣ୍ଠିତ ସୂର୍ଯ୍ୟାଲୋକର ସୁବିଧା ନେଇ ଆକାଶକୁ ଉଠିଛନ୍ତି ଦୁଇଖଣ୍ଡ ଗ୍ଲାଇଡ଼ର୍ । ଗୋଟିଏ ଆକାଶ ପରି ନୀଳ, ଅନ୍ୟଟି ରକ୍ତ ଗୋଲାପ ପରି ଲାଲ୍ । ସେମାନେ ଯେପରି ଦୁଇଟି ପ୍ରଜାପତି, ଭାସି ବୁଲୁଛନ୍ତି ଆକାଶରେ ଦୁଇ ନିଷ୍କମ୍ପ ଡେଣାର ଲଘୁ ବିସ୍ତାରରେ ।

ସେତେବେଳକୁ ଭାଁଦେଜ୍ ଖଟ ଉପରେ ଦୁଇଖଣ୍ଡ ତକିଆ ରଖି ତା' ଉପରେ ଟିକିଏ ଆଉଜି ପଡ଼ିଥିଲେ । ଏଇ ଭାଁଦେଜ୍ ଯୌବନକୁ ବହୁ ପଛରେ ପକେଇ ଆସିଥିଲେ ମଧ୍ୟ ତା'ର ଆକର୍ଷଣୀ ଶକ୍ତି ସଂପୂର୍ଣ୍ଣ ହରାଇ ବସି ନଥିଲେ । ମୋସିଓ ବେରେଟ୍ ଥରେ ଚାହୁଁଥିଲେ, ଆକାଶରେ ଭାସମାନ ଗ୍ଲାଇଡ଼ର୍‌କୁ ଓ ଥରେ ଚାହୁଁଥିଲେ

ବିଗତ ଯୌବନା ମ୍ୟାଡାମ୍ ଭାଁ ଦେଜ୍‌ଙ୍କୁ । ଭାବୁଥିଲେ, ଜୀବନର ଚଲା ପଥର ଉତ୍‌ଥାନ ପତନ ଭିତରେ ଏଇ ମହୀୟସୀ ମହିଳା ତାଙ୍କୁ ଦେଇ ଆସିଛନ୍ତି ଉତ୍ସାହ, ପ୍ରେରଣା ଓ ସହାନୁଭୂତି, ଜୀବନର ଅନ୍ତିମ ପ୍ରାନ୍ତରେ ସେ ଦୟନୀୟ ଭାବରେ ଋଣୀ ହୋଇ ପଡ଼ିଛନ୍ତି ଏଇ ମହିଳାଙ୍କ ପାଖରେ । ଇଚ୍ଛା ହଉଥିଲା ଏଇ ଆଜୀବନ ଋଣର ସ୍ୱୀକୃତିର ନିଦର୍ଶନ ସ୍ୱରୂପ ସେ ଯାଇ ତାଙ୍କର ଗଣ୍ଡ ଚୁମ୍ବନ କରନ୍ତେ ।

ଏଇ ସମୟରେ ଘରର କବାଟରେ କିଏ ନକ୍ କଲା ।

ମୋସିଓ ବେରେଟ୍ କହିଲେ, ଭିତରକୁ ଆସନ୍ତୁ ।

ଭିତରକୁ ପଶି ଆସିଲେ ଓଲଡ୍ ହୋମ୍‌ର ଡାକ୍ତର ଆଉ ସିଷ୍ଟର୍ ।

ବିରକ୍ତିରେ ବେରେଟ୍‌ଙ୍କର ଭ୍ରୂ କୁଞ୍ଚିତ ହୋଇଗଲା । ଏଇ ସୁନ୍ଦର ରୌଦ୍ର ଉଷ୍ମ ସକାଳଟା ବ୍ୟର୍ଥ ହୋଇଗଲା । ଏଇନା ତାଙ୍କୁ ଶୋଇ ରହିବାକୁ ପଡ଼ିବ ଆଉ ଅନୁସନ୍ଧାନର ପ୍ରଥମ ପର୍ଯ୍ୟାୟରେ ଆରମ୍ଭ ହବ ତାଙ୍କର ଡାହାଣ ବାହୁରେ ରବରର ପଟିବନ୍ଧା । ତା'ପରେ କେତେ କ'ଣ, ଏପଟ ସେପଟ, ଏଠି ଚିପ, ସେଠି ବାଡ଼ାଅ ଓ ଶେଷ ପର୍ଯ୍ୟାୟରେ ଗୋଟାଏ ପ୍ରିକ୍ ଦେଇ ବାଁ ହାତ ଅନାମିକା ଆଙ୍ଗୁଠି ଉପରୁ ଦୁଇଟୋପା ରକ୍ତ । ତା'ପରେ ଡାକ୍ତର ଗମ୍ଭୀର ହୋଇ ବସି ରହି ରୁମ୍‌ରେ ଟଙ୍ଗା ହେଇଥିବା ସ୍ୱାସ୍ଥ୍ୟ ଚାର୍ଟଟାକୁ ଆଣି ତା' ଉପରେ କ'ଣ ସବୁ ଲେଖିବେ ଓ ସେହି ଚାର୍ଟ୍‌ର ନିର୍ଦ୍ଦେଶରେ ସଂଧ୍ୟାବେଳକୁ ପୁଣି ଆସି ସିଷ୍ଟର୍ ହାଜର ହୋଇଯିବ ହାତରେ ଗୁଡ଼ାଏ ବଟିକା ଓ ଚକ୍ ଚକ୍ କରୁଥିବା ଗୋଟାଏ ନିଡ୍‌ଲ୍ ଧରି ।

ଏଇ ଅନୁସନ୍ଧାନ ପର୍ବ ସରିବା ପରେ ପରେ ଡାକ୍ତର ବିଦାୟ ନେଲା ବେଳକୁ ତାଙ୍କ ସଙ୍ଗେ ସଙ୍ଗେ ପଦାକୁ ଚାଲିଯିବ ଭାଁଦେଜ୍ ଓ ଟିକିଏ ସମୟ ପରେ ଫେରି ଆସି କବାଟ ଭିତରୁ ବନ୍ଦ କରି ଆଣି ବେରେଟ୍‌ଙ୍କ କାନ୍ଧରେ ହାତ ରଖି କହିବ, "ବାଃ, ଚମତ୍କାର, ଡାକ୍ତର କହିଲେ ତମର ସ୍ୱାସ୍ଥ୍ୟର ଦ୍ରୁତ ଅଗ୍ରଗତି ହେଇ ଚାଲିଛି—ଖୁବ୍ ଭଲ ଖବର—ଆମକୁ ଏଠୁ ଫେରିଯିବା ପାଇଁ ତ ପ୍ରସ୍ତୁତ ରହିବାକୁ ପଡ଼ିବ । କିଏ ଜାଣେ କେଉ ମୁହୂର୍ତ୍ତରେ ରବର୍ଟର ସେଇ ଚିଠି ଆସି ପହଞ୍ଚିଯିବ ।"

ବ୍ରେକ୍‌ଫାଷ୍ଟ ପରେ ପରେ ଲଞ୍ଚ୍ ନେବା ପର୍ଯ୍ୟନ୍ତ ସମୟଟା ସେପାର୍ଣ୍ଣୋ ଦମ୍ପତିଙ୍କ ପାଇଁ ଏକାନ୍ତ କ୍ଳାନ୍ତିକର ହେଇଉଠେ । ଯେଉଁମାନେ ବ୍ରିଜ୍, ପୋକର୍ ବା ଚେସ୍ ଖେଳରେ ସମୟ କଟାଇ ଦେଇପାରନ୍ତି ସେମାନଙ୍କ କଥା ଅଲଗା, କିନ୍ତୁ ଏମାନଙ୍କର ସେସବୁ ଆୟତ୍ତ କରିବା ପାଇଁ ସମୟ ବା ଥିଲା କୁଆଡ଼େ ? ଏମାନେ ତ ଏକ ଲକ୍ଷ୍ୟରେ ସେମାନଙ୍କର କର୍ତ୍ତବ୍ୟ ସମ୍ପାଦନ କରିଯାଉଥିଲେ ସେମାନଙ୍କର କଷ୍ଟଲବ୍ଧ ଅର୍ଥରେ ରବର୍ଟକୁ ମଣିଷ କରିବା ପାଇଁ—ଇଂଜିନିୟର କରିବା ପାଇଁ ଓ ତା'ପରେ

ସେମାନଙ୍କର ଅବସର ଜୀବନ ହବା ଉଚିତ୍ ଥିଲା ନିରବଚ୍ଛିନ୍ନ ଆନନ୍ଦର ଏକ ଆଳସ ଅପରାହ୍ନ ।

ସେଥିପାଇଁ ଏଇ ଅତିରିକ୍ତ ସମୟର ଗୁରୁ-ଭାରରୁ ମୁକ୍ତି ପାଇବା ପାଇଁ ବେରେଟ୍‌ଅନେଇ ରହନ୍ତି ତାଙ୍କର ବେ' ଉଇଣ୍ଡୋ ଦେଇ ପଦାକୁ ଓ ମ୍ୟାଦାମ୍ ସୋପାର୍ଣ୍ଣୋ କେତେବେଳେ ଗୋଟାଏ ଜର୍ଣ୍ଣାଲ୍, କେତେବେଳେ ଦୈନିକ ଖବର କାଗଜ ଓ କେତେବେଳେ ଖଣ୍ଡେ ଡିଟେକ୍‌ଟିଭ୍ ଉପନ୍ୟାସ ଧରି ବିଛଣାରେ ଏପଟ ସେପଟ ହେଇ ଗଡୁଥାଆନ୍ତି । କିନ୍ତୁ ପ୍ରକୃତ ପକ୍ଷେ ମୋସିଓ ବେରେଟ୍ ଦେଖନ୍ତି ନାହିଁ କିଛି ବା ମ୍ୟାଦାମ୍ ସୋପାର୍ଣ୍ଣୋ ପଢ଼ନ୍ତି ନାହିଁ କିଛି । ଏଇ ଅଳସ ରୋମନ୍ଥନ ସମୟ ଭିତରେ ସେମାନଙ୍କର ଆଖି ଆଗରେ ଭାସିଉଠେ ଗୋଟିଏ ଶିଶୁ, ଯାହାର ଦୁଇ ଆଖି ତାରାପରି ଉଜ୍ଜ୍ୱଳ, ଦୁଇ କପୋଳ ଆପେଲ୍ ପରି ରକ୍ତିମ ଓ କେଶଗୁଚ୍ଛ ସୁନାର ତାର ପରି ପୀତାଭ-ବ୍ଲଣ୍ଡ୍ ।

ସମୟ ହେଲେ ମଧ୍ୟାହ୍ନ ଭୋଜନର ଗଙ୍ଗ୍ ବାଜେ ଓ ଦୁହେଁ ଦୁହିଁଙ୍କର (ଦେଜୁନେ) ମଧ୍ୟାହ୍ନ ଭୋଜନକୁ ଯିବା ପାଇଁ ପ୍ରସ୍ତୁତ ଉଜ୍ଜ୍ୱଳ କରି ନିଅନ୍ତି ଓ ବେରେଟ୍ ତାଙ୍କର ଟାଇର ନଟ୍‌ଟାକୁ ଆଉ ଥରେ ପରୀକ୍ଷା କରି ନିଅନ୍ତି । ମଧ୍ୟାହ୍ନ ଭୋଜନର ସମୟ ଅପେକ୍ଷାକୃତ ବିସ୍ତୃତ । ତେଣୁ ତାହା ଓଲ୍‌ଡ୍ ହୋମ୍‌ର ଅଧିବାସୀମାନଙ୍କ ପାଇଁ କ୍ଲାନ୍ତିକର ସମୟକୁ ହତ୍ୟା କରିବାର ଅନ୍ୟ ଏକ ମାଧ୍ୟମ ହିସାବରେ ବ୍ୟବହୃତ ହେଇଥାଏ । ତେଣୁ କେହି କେହି ବହି ମ୍ୟାଗାଜିନ୍ ଇତ୍ୟାଦି ଧରି, ବା କେହି କେହି ମିନି ଚେସ୍ ବୋର୍ଡ଼ ଧରି ଡାଇନିଂ ହଲ୍‌କୁ ଯାଇଥାଆନ୍ତି ।

କିନ୍ତୁ ସେହି ଏକା ଖାଦ୍ୟର ବିରକ୍ତିକର ପୌନଃପୌନିକତା । ପ୍ରଥମେ ଆସିବ ସାଲାଡ୍—କିଛି କଞ୍ଚା ଲିଟୁସ୍ ପତ୍ର, ନହେଲେ ଖୁବ୍ ଛୋଟ ଛୋଟ ମୂଳା । ତା' ଉପରେ ଛିଞ୍ଚା ହେଇଥିବ ଟିକିଏ ଅଲିଭ୍ ଅଏଲ୍ ନହେଲେ କଷ୍ଟାର୍ଡ଼ ନହେଲେ ସାଲାଡ୍ ସସ୍ ଅଥବା ଓ୍ୟର୍‌ସେଷ୍ଟର ସସ୍; ସବୁ ବ୍ୟତିରେକେ ନିର୍ଭେଜାଲ୍ ଭିନିଗାର୍ । ପ୍ରତିଟି ପତର ବା' ମୂଳା ସହିତ ଟିକିଏ ବଟର୍ ସଂଯୋଗ କରି ଖାଇବାକୁ ହବ । କିନ୍ତୁ ଆସ୍ତେ ଆସ୍ତେ, କାରଣ ହାତରେ ପ୍ରଚୁର ସମୟ ରହିଛି । ସମସ୍ତେ ବେଶ୍ ବ୍ୟାକୁଳ ଚିତ୍ତରେ ଅପେକ୍ଷା କରି ରହିଥାଆନ୍ତି ମେନ୍ ଡିସ୍‌ଟାକୁ, କାରଣ ଖାଦ୍ୟ ତ ହେଲା ମେନ୍ ଡିସ୍ ଓ ତାହା ମଧ୍ୟ ଏକମାତ୍ର ଡିସ୍ । ଲମ୍ବା ପାଉଁରୁଟିରୁ ଖଣ୍ଡେ ଖଣ୍ଡେ ଚକ୍‌ତି କାଟି ତା ସହିତ ଖାଇବାକୁ ହବ ସେହି ଡିସ୍‌ଟିକୁ ।

କିନ୍ତୁ ଏହି ଡିସ୍‌ଟି ପାଇଁ ଯେ ଏକାଗ୍ର ପ୍ରତୀକ୍ଷା ଏକଥା ଓଲ୍‌ଡ୍ ହୋମ୍‌ମାନଙ୍କର ଅନ୍ତେବାସୀମାନଙ୍କ ଭିନ୍ନ ଆଉ କାହାରି ଜାଣିବାର ଉପାୟ ନାହିଁ । ଜଣେ ଜଣେ ଅଛନ୍ତି

ଯେଉଁମାନେ ପ୍ରକାଶ୍ୟରେ ଘୋଷଣା କରନ୍ତି ଏହି ଡିସ୍‌ଟି ସମ୍ପର୍କରେ ସେମାନଙ୍କର ମତାମତ, କିନ୍ତୁ ଅନ୍ୟମାନେ ବିଡ଼ମ୍ବିତ ହେଲେ ମଧ୍ୟ ପ୍ରକାଶ କରିବାକୁ କୁଣ୍ଠିତ । କାରଣ ଏଠିକାର ଅନ୍ତେବାସୀମାନଙ୍କ ମଧ୍ୟରେ ତୀବ୍ର ଶ୍ରେଣୀ ବିଭାଗ । ଦଳେ ହେଲେ ପ୍ରୋଲେତାରିଆଁତ୍ । ଯେଉଁମାନେ କହନ୍ତି, ''ଏଥିରେ ଲୁଚା ଛପା କିଛି ନାହିଁ ଆମେ ଆସିଛୁ ସମାଜର ମଜ୍‌ଦୁର୍ ଶ୍ରେଣୀରୁ, ତେଣୁ ଆମେମାନେ ଜାଣୁ ଯେ' ଆମର ଶେଷ ଜୀବନ କଟିବ ସୋସାଲ୍ ସିକ୍ୟୁରିଟି ସ୍କିମ୍‌ର ଦୌଲତରେ ଗଢ଼ା ଏଇ ଓଲ୍‌ଡ୍ ହୋମ୍ ଅନୁଷ୍ଠାନ ଭିତରେ । ତେଣୁ ଆମ ପାଇଁ ସାଲାଡ୍‌ଟା ନ ହେଲା ଅବା 'ଇର୍ମା' ଯାହା ଆସ୍ପାରାଗସ୍, ଫ୍ରେଞ୍ଚବିନ୍, ପିକ୍, କାକୁଡ଼ିର ମିଶାମିଶି ଓ ତା' ଉପରେ ମାୟୋନିଜ୍‌ର ଡ୍ରେସିଂ । ଆମ ପାଇଁ ବେଦ ଅଶୁଦ୍ଧ ହେଇଯାଏ ନାହିଁ ଏବଂ ମେନ୍ ଡିସ୍ ନହେଲା ଅବା କୋରିଜ୍ଞୁଁ ଯେଉଁଥିରେ କୁକୁଡ଼ାର ପେଟ ଭିତରେ ଛତୁ, ଆଳୁମଣ୍ଡ ସସ୍ ଦେଇ ରୋଷ୍ଟ୍ କରାଯାଇ ଟମାଟୋ ସସ୍ ସହିତ ପରିବେଷଣ କରାଯାଏ ।''

କିନ୍ତୁ ଅନ୍ୟ ଶ୍ରେଣୀ ପ୍ରକାଶ୍ୟରେ ଘୋଷଣା କରନ୍ତି ନାହିଁ । ସେମାନେ ନୀରବରେ ଏଇ ଲୋକମାନଙ୍କର ପ୍ରକାଶ୍ୟ ଔଦ୍ଧତ୍ୟ ସହ୍ୟ କରନ୍ତି; କିନ୍ତୁ ନାକ ଯେ ଟେକନ୍ତି ନାହିଁ, ଓଠ କଣରୁ ଯେ ସାମାନ୍ୟ ହସନ୍ତି ନାହିଁ ଏକଥା କହି ହବ ନାହିଁ । ଏତିକି ମାତ୍ର ସେମାନଙ୍କର ନୀରବ ପ୍ରତିବାଦ, କିନ୍ତୁ ମଝିରେ ମଝିରେ ସେମାନେ ତାଙ୍କର ସଗୋତ୍ରମାନଙ୍କ ସହିତ ଏକତ୍ରିତ ହେଇ ଯାଆନ୍ତି ଲଞ୍ଚ୍ ବା ବ୍ରିଜ୍ ଟେବୁଲ୍‌ରେ । ସେମାନେ ସେଠି କୁହନ୍ତି, ''ଅହୋ ଭାଗ୍ୟ ! କି ବିଚିତ୍ର ଓ କି ନିଷ୍ଠୁର ! ନ ହେଲେ କି ଆମେ ବୁର୍ଜୁଆମାନେ ଆସି ଏଇ ଇତର ଲୋକମାନଙ୍କ ସହିତ ରବରର ରୁଟି ଓ ଲେଟୁସ୍ ପତରର ସ୍ୟାଲାଡ୍ ଖାଉ ଥାଆନ୍ତୁ ?''

ତା'ପରେ ପ୍ରସଙ୍ଗଟା ଅନ୍ୟଦିଗକୁ ପ୍ରସାରିତ ହୁଏ । ପ୍ରତ୍ୟେକ ବ୍ୟକ୍ତି ତା'ର ନିଜର ଅତୀତର ଗୋଟାଏ ଖୁଣ୍ଟି ନାଣ୍ଟି ବିବରଣୀ ଉପସ୍ଥାପିତ କରେ ଓ ପ୍ରମାଣ କରେ ଯେ କେବଳ ସେ' ବୁର୍ଜୁଆ ନୁହେଁ, ତା'ର ପିତା ପ୍ରପିତାମହ ମଧ୍ୟ ବୁର୍ଜୁଆ । ସେଠି ବିଶ୍ୱାସ ଅବିଶ୍ୱାସର ପ୍ରଶ୍ନ ନାହିଁ, କାରଣ ସତ୍ୟାସତ୍ୟ ଅନୁସନ୍ଧାନ କରିବା ସମସ୍ତଙ୍କର ସାଧର ଅତୀତ । କିନ୍ତୁ ଆଡ୍‌ଡ଼ା ସେତିକିରେ ସମାପ୍ତ ହୁଏ ନାହିଁ, ସେମାନେ କେତେବେଳେ ଅକସ୍ମାତ୍ କଥାର ସ୍ରୋତରେ ଭାସି ଗପ କରୁଥାଆନ୍ତି ଫ୍ରେଞ୍ଚ୍ କୁଇଜିନ୍ ଉପରେ, ଯାହା ଏକ ଜଳ ଆବର୍ତ୍ତ, ଯେଉଁଥିରୁ ମୁକ୍ତି ପାଇବା କୌଣସି ମର ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ । ଓ ତା'ପରେ ପୃଥିବୀର ସମସ୍ତ ଖାଦ୍ୟ, ଚର୍ବ୍ୟ, ଚୋଷ୍ୟ ଓ ଲେହ୍ୟର ଯଦି ଗୋଟାଏ ତାଲିକା କରାଯାଏ, ଓ ତା'ପରେ ସେମାନଙ୍କର ପର୍‌ମୁଟେସନ୍ କମ୍ବିନେସନ୍ କଲେ ଯେଉଁ ସଂଖ୍ୟା ବାହାରିବ ତାହା ପୃଥିବୀ ପୃଷ୍ଠରେ ଏକ ଦେଇ ଆରମ୍ଭ କଲେ ତା'ର ପର ପର ଶୂନ୍ୟ ଗୁଡ଼ିକ ଚନ୍ଦ୍ର ପର୍ଯ୍ୟନ୍ତ ଲମ୍ବି ଯିବାର ସମ୍ଭାବନା ଅଛି ।

ଏମାନଙ୍କର ଅଳସ ଗଳ୍ପ ଜମି ଉଠେ ଏହି ବିସ୍ତୃତ କ୍ୟାନ୍‌ଭାସ୍‌ର ପରିସର ଉପରେ । ସଂକ୍ଷିପ୍ତ କାରଣ ସେମାନେ ବୁର୍ଜୁଆ ଓ ତାଙ୍କ ଘରେ ବା ଅଭିଜାତ ହୋଟେଲ୍‌ମାନଙ୍କର ସେମାନେ ଅନେକ ସୁକୁମାର ଖାଦ୍ୟ ସହିତ ପରିଚିତ, ଯାହାକୁ ନେଇ ଫରାସୀ ଜାତି ଗର୍ବ କରେ ।

ମୋସିଓ ସୋପାର୍ଣ୍ଣୋ ଥିଲେ ଏଇ ଅଭିଜାତ ବୁର୍ଜୁଆ ଶ୍ରେଣୀଗତ କିନ୍ତୁ ଅଦୃଷ୍ଟର ଏକ ନିଷ୍ଠୁର ପରିହାସରେ ସେ' ଦିନେ ହଠାତ୍ ଖସି ଆସିଲେ ଏଇ ପ୍ରୋଲେତାରିଆଁତ୍ ବା' ସର୍ବହରା ପର୍ଯ୍ୟାୟକୁ ।

ଲଞ୍ଚ୍ ଟେବୁଲ୍ ଉପରେ ସୋପାର୍ଣ୍ଣୋ ଦମ୍ପତିଙ୍କ ପାଖରେ ବସିଥାଆନ୍ତି ଜାକ୍ୟୁଲିନ୍ ଓ ବବ୍ । ସେମାନଙ୍କର ଲେଟୁସ୍ ପତ୍ରର ସାଲାଡ୍ ଖିଆ ସରିଛି ଓ ସେମାନେ ସେହି ବହୁ ପ୍ରତୀକ୍ଷିତ ମେନ୍‌ଡିସ୍‌କୁ ଅପେକ୍ଷା କରିଥିବା ଅବସରରେ ୟା'ତୁ ସିଆଡୁ ଗପ କରୁଛନ୍ତି । ଓ ହଠାତ୍ ବବ୍ ପ୍ରଶ୍ନ କଲା ''ରବର୍ଟ ଠାରୁ ଚିଠି ପାଇଥିଲେ ମ୍ୟାଦାମ୍ ସୋପାର୍ଣ୍ଣୋ ?'' ମ୍ୟାଦାମ୍ ସୋପାର୍ଣ୍ଣୋ ପ୍ରଶ୍ନ ଶୁଣି ଆତଙ୍କିତ ହେଇ ଉଠିଲେ, କିନ୍ତୁ ଯଥାସମ୍ଭବ ସଂଯମ ରକ୍ଷା କରି କହିଲେ, ''ହଁ, ପଅରଦିନ ଚିଠି ପାଇଥିଲି ।'' ବବ୍ ତତ୍‌କ୍ଷଣାତ୍ କହିଲା, ''ପଅରଦିନ ତ ଥିଲା ଗୁରୁବାର, ପୋଷ୍ଟାଲ ହଲିଡ଼େ, ଆପଣ ଚିଠି କେମିତି ପାଇଲେ ?'' ପୁଣି ଥରେ ଭିତରେ ଅଣନିଶ୍ୱାସୀ ହେଇପଡ଼ିଲେ ମ୍ୟାଦାମ୍ ଓ ସାଧାରଣ ଭାବରେ ଜବାବ୍ ଦେଲେ, ''ହେଇଥିବ ତା' ପୂର୍ବଦିନ, ଆଜିକାଲି ଠିକ୍ ଠିକ୍ ଦିନ ମନେ ରହୁନାହିଁ—ତା'ଛଡ଼ା ଏଠି ଦିନ ବାର ତାରିଖର କ'ଣ ପ୍ରୟୋଜନ, ଏଠି ତ ସବୁ ଦିନ ଗୁଡ଼ିକ ଏକ ଅଖଣ୍ଡ ରବିବାର ।''

ମ୍ୟାଦାମ୍ ସୋପାର୍ଣ୍ଣୋ ଆଶା କରୁଥିଲେ ଏଇଥର ରବର୍ଟ ସଂକ୍ରାନ୍ତରେ ସବୁ ଆଲୋଚନାର ଶେଷ ହେଇଯିବ ବୋଲି । କିନ୍ତୁ କେବଳ ସୌଜନ୍ୟର ଖାତିର୍‌ରେ କଥାଟାର ଖିଅ ଧରିନେଲା ଜାକ୍ୟୁଲିନ୍, କହିଲା, ''ରବର୍ଟ ? ରବର୍ଟ କିଏ ? ଆଶାକରେ ଆପଣଙ୍କର କେହି ପରିବାରର ଲୋକ ନିଶ୍ଚୟ ? ମୁଁ ଯଦି ଇନ୍‌କ୍ୟୁଜିଟିଭ୍ ହେଉନଥାଏ...''

''ହଁ, ମୋ ପୁଅ'' ସଂକ୍ଷେପରେ କହିଲେ ମ୍ୟାଦାମ୍ ସୋପାର୍ଣ୍ଣୋ।

ବାସ୍ ସେତିକି !

ତା'ପରେ କିଛି ସମୟ ଧରି ଚାଲିଲା ଟେଷ୍ଟ କ୍ରିକେଟ୍ ଭାଁଦେଜ୍ ଓ ଜାକ୍ୟୁଲିନ୍ ଭିତରେ । ଜାକ୍ୟୁଲିନ୍ ବୋଲ୍ କରି ଚାଲିଥାଏ ଗୋଟାକ ପରେ ଗୋଟାଏ ବଲ୍, ଆଉ ବ୍ୟାଟିଂ କରି ଚାଲିଥାନ୍ତି ମ୍ୟାଦାମ୍ ସୋପାର୍ଣ୍ଣୋ । ପ୍ରଥମେ ପ୍ରଥମେ ପେସ୍ ବୋଲିଂ । ''ଆରେ, ଆପଣ ଭାଗ୍ୟବାନ, କିଏ ତ ହେଲେ ଆପଣଙ୍କୁ ଚିଠି ଲେଖୁଛି । କିଏ ତ ହେଲେ ଆପଣଙ୍କ କଥା ଏ ନର୍କପୁରୀର ବାହାରେ ଭାବୁଛି ।''

ମ୍ୟାଦାମ୍ ସୋପାର୍ଣ୍ଣୋ, "ହେଁ ହେଁ, ତା' ସତ, ମର୍ସି ଜାକ୍ୟୁଲିନ୍ ।"

"ଏତେ ଦିନ ଏଠି ରହିଲି, ମୁଁ ରବର୍ଟକୁ କେବେହେଲେ ଦେଖି ନାହଁ ।"

ଖୁବ୍ ସତର୍କ ମ୍ୟାଦାମ୍ ସୋପାର୍ଣ୍ଣୋ, "ସିଏ ଆସିପାରି ନାହିଁ ଅନେକ ଦିନ ଧରି । ସିଏ ଇଞ୍ଜିନିୟର୍ ତା କାମରୁ ବିଶ୍ରମା ପାଇବା ତା' ପକ୍ଷରେ ସମ୍ଭବ ହୁଏ ନାହଁ । ହୁଏତ ଆସିପାରେ । ମୁଁ ଏଥର ନିଶ୍ଚୟ ପରିଚୟ କରେଇ ଦେବି ।"

ପୁଣି ପାଲଟା ପ୍ରଶ୍ନ, "କୋ'ଠି ରହୁଛି ସିଏ ?"

ଏକାଥରକେ ଗୋଟାଏ ବାଉଣ୍ଡ୍ରି ମାରିଲେ ମ୍ୟାଦାମ୍ ସୋପାର୍ଣ୍ଣୋ, "ଫ୍ରାନ୍ କଫୁର୍ଟରେ ।"

ଏଥରକ ଜାକ୍ୟୁଲିନ୍ ଛାଡ଼ିଲା ଲେଗ୍‌ସ୍ପିନ୍, "କିନ୍ତୁ, ଆପଣଙ୍କ ପୁଅ ଫ୍ରାନ୍ କଫୁର୍ଟରେ, କେତେ ବା ବାଟ...!"

ଏଇଥର ନିଶ୍ଚିତ ବୋଲ୍ଡ଼ ଆଉଟ ହୋଇ ଯାଇ ଥାଆନ୍ତେ ମ୍ୟାଦାମ ସୋପାର୍ଣ୍ଣୋ କିନ୍ତୁ ପରିସ୍ଥିତି ତାଙ୍କୁ ପ୍ରଚୁର ସାହାଯ୍ୟ କଲା । ଠିକ୍ ଏଇ ସମୟରେ ଆସି ପହଞ୍ଚିଗଲା ମେନ୍ ଡିସ୍ ଓ ଜାକ୍ୟୁଲିନ୍‌ର କଥା ଅଟକି ରହିଲା ସେତିକିରେ ଓ ସେଇ ସୁଯୋଗ ନେଇ ମ୍ୟାଦାମ ସୋପାର୍ଣ୍ଣୋ ସେଇ କଥାଟା ବିଷୟରେ ପୁରାପୁରି ଭୁଲିଯାଇ ନିଜର ବେକ ପାଖରେ ନ୍ୟାପ୍‌କିନ୍ ଆଡ଼ଜଷ୍ଟ୍ କରୁ କରୁ କହିଲେ, "ଚିକେନ ଦେଖି ମୁଁ ଆଦୌ ବିସ୍ମିତ ନୁହଁ ।"

ଠିକ୍ ଯା ପରେ ପରେ କଥାଟାର ମୋଡ଼ ଭାଙ୍ଗିଗଲା, "ରବର୍ଟ ଅର୍ ନୋ' ରବର୍ଟ, ସପ୍ତାହକୁ ଛ'ଦିନ ମ୍ୟାଜୋ ପୁର୍-ଲେ-ଭିଆଇ ଏସ୍‌ରେ ଚିକେନ୍ ଦିଆଯିବ କାହିଁକି ? ଏମାନେ କିଛି ମାଗଣା ଖାଇବାକୁ ଦଉ ନାହାନ୍ତି । ଆମେମାନେ ସମର୍ଥ ଥିଲାବେଳେ, ଆମର ଦରମାରୁ କାଟି ଏମାନଙ୍କୁ ମୁଠା ମୁଠା ଟଙ୍କା ଦେଇଚୁ । ଦେଇଛୁ କ'ଣ ଏଇଥିପାଇଁ ସପ୍ତାହକୁ ଛ' ଦିନ କୁକୁଡ଼ା ମାଂସ ଗିଳିବୁ ବୋଲି ?" ସବୁଠାରୁ ବେଶୀ ପ୍ରଗଲ୍‌ଭ ଥିଲା ବବ୍ ଓ ତାହା ସମର୍ଥିତ ହେଉଥିଲା ଜ୍ୟାକୁଲିନ୍ ଓ ମ୍ୟାଦାମ୍ ସୋପାର୍ଣ୍ଣୋଙ୍କ ଦ୍ୱାରା ।

ମୋସିଓ ସୋପାର୍ଣ୍ଣୋ ବସି ରହିଥିଲେ ଜଣେ ନିର୍ଲିପ୍ତ ମହାପୁରୁଷ ପରି । ତାଙ୍କର ପାଟି ଭିତରୁ ପଦାକୁ ବାହାରି ଆସିଥିବା ଲମ୍ବା ଚୁରୁଟ୍‌ଟା ତଥାପି ଜଳି ଉଠୁଥିଲା ଗୋଟାଏ ଛୋଟ କୋଇଲା ଚୁଲ୍ଲାର ରଡ଼ ନିଆଁପରି । ସେ ଏକାଥରକେ ମାରିଲେ ଗୋଟାଏ ଓଭର୍ ବାଉଣ୍ଡରୀ, "ଡାର୍ଲିଂ, ବିରକ୍ତ ହେଇ ଲାଭ ନାହିଁ । ଖୁବ୍ ଜୋର୍ ଆମେଏଠି ରହିବା ଆଉ ଦୁଇ, ତିନି ମାସ । ରବର୍ଟର ଇଣ୍ଟିରିଅର୍ ଡେକୋରେସନ୍

ସରିଗଲେ ତ ଆମେ ଫେରି ଯାଉଛେ—ତା' ଛଡ଼ା ଆମର ସ୍ୱାସ୍ଥ୍ୟ ପାଇଁ ତ ହ୍ୱାଇଟ୍ ମିଟ୍‌ର ପ୍ରୟୋଜନ । ଫେରିଯାଇ ତମେ ରବର୍ଟର ସ୍ତ୍ରୀ ହାତର ରନ୍ଧା କୁଇଜିନ୍ ଖାଇ ଖାଇ ତମର ବ୍ଲଡ୍ ପ୍ରେସର୍ ବଢ଼େଇବାର ପ୍ରଚୁର ସୁଯୋଗ ପାଇବ । ସମ୍ ଗାର୍ଲ, ମନେ ନାହିଁ ସେ ଥରେ ତିଆରି କରିଥିଲା କ୍ରିଷ୍ଟମାସ୍ ପାଇଁ ପଏଁକା, ଉଃ, ମତେ ଭାରି ଭଲ ଲାଗିଥିଲା । ମୁଁ ଏମିତି କାକୁଆଳି ପଚାରି ଦେଇଥିଲି ପଏଁକାର ରେସିପି । ଆଉ ଯାଏ କୁଆଡ଼େ । ସେ ଆରମ୍ଭ କଲା ରନ୍ଧନ ଶୈଳୀରେ ପୂରାପୂରି ଗୋଟାଏ କଣ୍ଡେନ୍‌ସଡ୍ କୋର୍ସ ।''

ପ୍ରଥମେ ଭିଲ୍‌ର ଷ୍ଟକ୍ ନିଅ ଏବଂ ଷ୍ଟକ୍‌ର ଲିକ୍ୱିଡ୍‌ଟାକୁ ଆସ୍ତେ ଆସ୍ତେ କମେଇ ନିଅ—ତା' ସହିତ ମିଶାଅ କ୍ରେଫିସ୍ ଓ ଭିଲାର୍ କ୍ରିମ୍ ଇତ୍ୟାଦି ଇତ୍ୟାଦି ଅନେକ ଝମେଲା—ଶେଷରେ ତା' ସହିତ ଦିଅ ଗ୍ରେଟେଡ୍ ଚିଜ୍ ଓ କ୍ରେ ଫିସ୍‌ର ଲାଙ୍ଗୁଡ଼ ପୁଣି ଅନେକ ଗୋଳମାଳିଆ କଥା—ଶେଷ କଥା ହେଲା ଡିସ୍‌ଟାକୁ ବକସ୍ କୋମ୍ ଦେଇ ସଜେଇ ପରିବେଷଣ କର ।

ଚିକେନ୍‌ଟା ଠିକ୍ ଆକ୍ରମଣ କରିବାକୁ ଉଦ୍ୟତ ହେଲାବେଳେ ପାଖ ଟେବୁଲ୍ ଉପରେ ନଜର ପଡ଼ିଗଲା ଭାଁଦେଜ ସୋପାର୍ଣ୍ଣୋଙ୍କର । ସେ' ଟେବୁଲରେ ବସି ରହିଛନ୍ତି ମୋସିଓ, ମ୍ୟାଦାମ୍ ସେଁସା । ସେମାନଙ୍କର ମେନ୍ ଡିସ୍ ଏଯାଏଁ ଆସି ନାହିଁ ଓ ସେମାନେ ଗ୍ଲାସ୍‌ରେ ୱାଇନ୍ ଭର୍ତ୍ତିକରି ଆସ୍ତେ ଆସ୍ତେ ଗିଲାସରେ ଚୁମୁକ ଦଉଛନ୍ତି । ତାଙ୍କର ପୁଅ ବୋହୂ ସେମାନଙ୍କୁ ସପ୍ତାହକରେ ଥରେ ଦେଖିବାକୁ ଆସନ୍ତି ଓ ଆସିଲାବେଳେ ସାଙ୍ଗରେ ଆଣିଥାଆନ୍ତି କେବେ ୱାଇନ୍‌ର ବୋତଲ ନ ହେଲେ ଚିଜ୍‌ର ପ୍ୟାକେଟ୍ । ତେଣୁ ସେମାନେ ଆନନ୍ଦରେ ୱାଇନ୍ ବା ନ ଖାଇବେ କାହିଁକି ?

ଆଃ ! ୱାଇନ୍ ଗ୍ଲାସରେ ଟୁଲୁ ଟୁଳୁ ରକ୍ତ ବର୍ଣ୍ଣର ୱାଇନ୍ ! ସେ' କାହିଁ କେତେଦିନ ହେଲା ସେ ୱାଇନ୍ ଖାଇ ନାହାନ୍ତି ! ସେଇ କଥା ଚିନ୍ତା କରୁ କରୁ ସେ ଖଣ୍ଡେ ପାଉଁରୁଟି ସହିତ ରବର ପରି ଖଣ୍ଡେ କୁକୁଡ଼ା ମାଂସକୁ ବାରମ୍ୱାର ତାଙ୍କର ଦୁଇ ମାଢ଼ି ଦେଇ ଚୋବେଇବାକୁ ଚେଷ୍ଟା କରୁଥିଲେ । ଚିକେନ୍‌ର ଡିସ୍ ଦେଖି ହଠାତ୍ ଯେପରି ମୋସିଓ ସୋପାର୍ଣ୍ଣୋଙ୍କର କ୍ଷୁଧାଟା ସ୍ତିମିତ ହେଇଗଲା । ସେ ବାଁ ହାତର ଫର୍କ ମୂନରେ ଖଣ୍ଡେ ଚିକିନ୍ ପିସ୍ ଗୁଚ୍ଛିଦେଇ ଆଖି ପାଖକୁ ଆଣି ସେଇ ଟୁକୁରା ଖଣ୍ଡକୁ ବୁଲେଇ ବୁଲେଇ ନିରୀକ୍ଷଣ କରୁଛନ୍ତି, ଯେମିତି କୁକୁଡ଼ା ମାଂସ ସେ ଏ ଯାବତ୍ ଦେଖି ନ ଥିଲେ । କିନ୍ତୁ ଜାକ୍ୟୁଲିନ୍ କୁଛ୍ କୁଛ୍ ହୁଏନା—ଯାହା ରଖିଦିଅ ସେ ଖାଇନିଏ ସନ୍ତୁଷ୍ଟ ହେଇ । ତା'ଛଡ଼ା ଜାକ୍ୟୁଲିନ୍ ମଧ ଖାଏ ଅତି ଚମତ୍କାର । ତ' ହାତର ଆଙ୍ଗୁଠି ଓ କଣ୍ଟା ଚାମଚ୍ ଛୁରୀ ଚାଲିଥାଏ ଏକ ନିର୍ଦ୍ଦିଷ୍ଟ ଛନ୍ଦରେ ଯମିତି ସେ କୃଶ କଣ୍ଟା ଧରି ତା'ର ପ୍ରେମିକ ପାଇଁ ପୁଲ୍ ଓଭର୍ ବୁଣୁଚି, ମୁହଁରେ ଲାଗି ରହିଥାଏ ସେଇ ସ୍ମିତ ହସ । କେତେବେଳେ ଯଦି

ଦୈବାତ୍ ଗମ୍ଭୀର ଥାଏ ତାହାହେଲେ ମନେହୁଏ ସେ କୁନି କୁନି ମୋଜା ବୁଣି ଚାଲିଛି ତା'ର ଆଗନ୍ତୁକ ଶିଶୁ ସନ୍ତାନ ପାଇଁ । ତା'ର ମୋଜା ବୁଣା ସେତିକିବେଳେ ସରେ ଯେତେବେଳେ ତା'ର ପ୍ଲେଟ୍‌ରେ ଆଉ କିଛି ଅବଶିଷ୍ଟ ନ ଥାଏ, ଏପରି କି ଟୁକୁରାଏ ମାଂସ ନୁହଁ କି ଖଣ୍ଡେ ବ୍ରେଡ୍‌ର ଭଗ୍ନାଂଶ ନୁହଁବା ଖଣ୍ଡେ ଛିଣ୍ଡା ଲେଟୁସ୍ ପତର ମଧ ନୁହଁ । ଏକାଥରକେ ନିଟ୍ । ତା'ପରେ ବେକ ପାଖରୁ ତା'ର ନ୍ୟାପ୍‌କିନ୍‌ଟାକୁ ହୁଗାଳି ନେଇ ମୁହଁଟିକୁ ପୋଛି ଦେଇ ସାରିବା ପରେ ମନେ ହୁଏ ଯେପରି ଏ ଭଦ୍ର ମହିଳା ଏ ପର୍ଯ୍ୟନ୍ତ ତାଙ୍କର ଖାଇବା ଆରମ୍ଭ କରି ନାହାନ୍ତି ।

ମେନ୍‌ଡିସ୍ ଖାଇସାରିବା ପରେ ପରେ ଫରାସୀ ଖାଦ୍ୟ ଟେବୁଲରେ ଏକ ଅବଶ୍ୟମ୍ଭାବୀ ବିରତିର ପର୍ବ ଆସେ । ମେନ୍‌ଡିସ୍ ପରେ ପରେ ତମର କ୍ଷୁଧାର ସଂପୂର୍ଣ୍ଣ ଉପଶମ ହେଇଯାଇଥିବା ଉଚିତ୍ । ଏଇ ବିରତି ସମୟଟା ହେଲା ବ୍ଲାକ୍ କଫି ପାଇଁ ଅପେକ୍ଷା କରିବା ଓ ସେଇ ଅବସରରେ ଗୋଟାଏ ଧାରୁଆ ଛୁରୀ ଧରି କାଠର ପ୍ଲେଟ୍ ଉପରେ ରଖାଯାଇଥିବା ଅନେକ କିସମର ଚିଜ୍‌ରୁ କିଛି କିଛି କାଟି ନେଇ ପାଟିରେ ପକେଇବା । ସାହିତ୍ୟ, କଳା, ଭାସ୍କର୍ଯ୍ୟକୁ ବାଦ ଦେଲେ ଫରାସୀ ଜାତି ତା'ର ଚିଜ୍ ଓ ୱାଇନ୍‌କୁ ନେଇ ଗର୍ବ କରେ । ସେମାନଙ୍କର ଜୱାନ୍‌ମାନେ ମାର୍ଚ୍ଚ କରି ଗଲାବେଳେ ମାଇଲ୍ ମାଇଲ୍ ଲମ୍ବାର ଅଙ୍ଗୁର କ୍ଷେତ ଦେଖିଲେ ସେମାନଙ୍କର ବନ୍ଧୁକ ଅବନତ କରନ୍ତି ଅଙ୍ଗୁର କ୍ଷେତକୁ ସମ୍ମାନ ପ୍ରଦର୍ଶନ କରି ଏବଂ ସେମାନେ କୁହନ୍ତି ଆମେ ବର୍ଷର ୩୬୫ ଦିନରେ ପ୍ରତିଦିନ ନୂଆ ନୂଆ ଚିଜ୍ ଖାଇବା ପାଇଁ ଆମ ଦେଶରେ ସେତିକି ପ୍ରକାରର ଚିଜ୍ ମହଜୁଦ୍ ଅଛି । କିନ୍ତୁ ଏଇ ଓଲ୍‌ଡ୍ ହୋମ୍‌ରେ ଯେଉଁ ଚିଜ୍ ପରିବେଷଣ କରାଯାଏ ତା' ଚିଜ୍ ତ ନୁହେଁ, ଶକ୍ତ ହେଇଯାଇଥିବା ବଟର୍ ମାତ୍ର ।

''କିନ୍ତୁ ବ୍ଲାକ୍ କଫିଟା କଫି'', କୁହନ୍ତି ମୋସିଓ ସୋପାର୍ଣ୍ଣୋ ଓ ଚୁରୁଟ୍‌ରେ ନିଆଁ ଧରାନ୍ତି । ଜାକ୍ୟୁଲିନ୍ ଖଣ୍ଡେ ଛ' ଇଞ୍ଚ ଲମ୍ବର ସିଗାରେଟ୍ ତା'ର ଡାହାଣ ହାତର ବିଶି ଓ ମଝିଆଙ୍ଗୁଠି ମଝିରେ ଧରି ଆସଟ୍ରେରେ ଗୁଳା ଝାଡ଼େ । ନ ହେଲା ପଛେ ପସନ୍ଦ ଅନୁଯାୟୀ ଚିଜ୍, କଫି ତ ଆସୁଚି !

ଏଇ ସମୟଟା ହେଲା ଗୋଟାଏ ରିଲାକ୍ସ କରିବାର ସମୟ । ଖାଇବା ଲୋକଙ୍କ ପାଇଁ ଓ ପରିବେଷଣ କରିବା ଲୋକଙ୍କ ପାଇଁ ମଧ କଫି ଆସିବା ଟିକିଏ ଡେରି ହେଇଗଲେ କେହି ବ୍ୟସ୍ତ ହେଇ ପଡ଼ନ୍ତି ନାହିଁ, କାରଣ ସେମାନଙ୍କର ଟେବୁଲ୍‌ରେ ଗପ ଜମି ଯାଇଥାଏ । ସେଥିପାଇଁ ୱେଟର୍‌ମାନେ ଧୀରେ ସୁସ୍ଥେ କଫି ଲିକର୍‌ର ଟ୍ରେ ଧରି ଏପଟ ସେପଟ ହଉଥାଆନ୍ତି । କୌଣସି କୌଣସି ଟେବୁଲ୍‌ରେ ବିଳମ୍ବିତ କଫି ସର୍ଭିସ୍ ଜଲାବେଳେ କେବଳ କୁହନ୍ତି, ''ପାର୍ଦୋଁ ମୋସିଓ ।'' କିନ୍ତୁ ସେତିକି ସୌଜନ୍ୟର ମଧ

ପ୍ରୟୋଜନ ନ ଥାଏ । କାରଣ ବାହାରେ ବିଚ୍ଛୁରିତ ରୌଦ୍ର, ପାଇନ୍ ଓ ଉଇଲୋ ଗଛର ସବୁଜ ସମାରୋହ ଓ ତା' ଉପରେ ଉଠିଛି ଗ୍ଲାଇଡ଼ର୍, ତାରୁଣ୍ୟର ନିଶ୍ଚିତ ପ୍ରତୀକ । କିନ୍ତୁ କେବଳ ଶୀଘ୍ର ଶୀଘ୍ର କଫି ପିଇଦେଇ ଫେରିଯାଆନ୍ତି, ବ୍ରିଜ୍, ପୋକର୍ ବା ଟେଲିଭିଜନ୍‌ର ନିଶାରେ ଅସକ୍ତ ବ୍ୟକ୍ତିମାନେ । କେହି କେହି ଫେରିଯାଆନ୍ତି, କାରଣ ତାଙ୍କର ଡିଟେକ୍‌ଟିଭ୍ ବହିର ନାୟକ ଏକ ଘୋର ସଂକଟମୟ ପରିସ୍ଥିତିରେ ଥିବା ସମୟରେ ସେମାନେ ଲଞ୍ଚ୍ ଟେବୁଲ୍‌କୁ ଆସିଥିଲେ କିଏ କେଉଁଥିପାଇଁ ଉଠିଯାଉଛି ସେ କଥା ପ୍ରାୟ ସମସ୍ତେ ଜାଣିପାରନ୍ତି । ମୋସିଓ ସୋପାର୍ଣ୍ଣୋ ରସିକତା କରି, ସେହି ନିର୍ଦ୍ଦିଷ୍ଟ ବ୍ୟକ୍ତିମାନଙ୍କ ଆଡ଼କୁ ତାଙ୍କର ଚୁରୁଟ୍‌ର ଜଳନ୍ତା ମୁହଁଟା ବରଗି ଧରି କୁହନ୍ତି, ''ଏମାନଙ୍କର ଅତି ଶୀଘ୍ର ଯିବା ପ୍ରୟୋଜନ, ତା' ନ ହେଲେ ସଂକଟାପନ୍ନ ହୋଇପଡ଼ିଥିବା ସେମାନଙ୍କର କାଗଜ–ନାୟକମାନଙ୍କୁ ଏମାନେ ଉଦ୍ଧାର କରିବେ କେମିତି ?'' ସମସ୍ତେ ହୋ' ହୋ' ହୋଇ ହସିଉଠନ୍ତି ।

କିନ୍ତୁ ତା' ସତ୍ତ୍ୱେ ମଧ୍ୟ ମୋସିଓ ସୋପାର୍ଣ୍ଣୋ ହାଡ଼େ ହାଡ଼େ ବୁଝନ୍ତି ଯେ' ଏଇ ଅଜବ୍ ଜାଗାରେ ଆଜୀବନ ବଞ୍ଚି ରହିବାକୁ ଗଲେ କିଛି ଗୋଟାଏ ନିଶାର ପ୍ରୟୋଜନ । କେବଳ ମଦ୍ୟ ସେଥିପାଇଁ ଯଥେଷ୍ଟ ନୁହଁ । ହୁଏତ ଚେସ୍ ନ ହେଲେ ତାସ୍; ନ ହେଲେ ଏକ ଅନନ୍ତ ଅଭିଶାପ ପରି ଝୁଲି ରହେ ସମୟ ।

ମଧ୍ୟାହ୍ନ ବେଶ୍ ଢଳିଗଲାଣି । ହଲ୍‌ର ଚଉକି ଛାଡ଼ି ଠିଆ ହେଲେ ମ୍ୟାଦାମ୍ ଓ ମୋସିଓ ସୋପାର୍ଣ୍ଣୋ ଓ ସେମାନଙ୍କର କ୍ଳାନ୍ତ ପାଦକୁ ଟାଣି ଟାଣି ଆସ୍ତେ ଆସ୍ତେ ଉଠିଲେ ଉପର ମହଲାକୁ । କେଉଁ ଗୋଟାଏ ରୁମ୍‌ରୁ ମାଉଥ୍ ଅର୍ଗାନ୍ ବାଜିବାର ଶବ୍ଦ ଶୁଣାଯାଉଛି । ଗୋଟାଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ସବୁ ଘରର ଦରଜାମାନ ବନ୍ଦ, ସେ ଯେପରି କେଉଁ ରାଜାର ପରିତ୍ୟକ୍ତ ଏକ ହାରେମ୍ ! ନିଜର ପ୍ରକୋଷ୍ଠ ଭିତରକୁ ପଶି ଯାଇ ସେମାନେ ମଧ୍ୟ କବାଟ ବନ୍ଦ କରିଦେଲେ ଭିତର ପଟୁ । ପୋଷାକ ବଦଳେଇ ନେଇ ଦୁହେଁ ଗଡ଼ି ପଡ଼ିଲେ ଖଟ ଉପରେ ଟିକିଏ ଆଫ୍‌ଟର୍‌ନୁନ୍ ସିଏସ୍ତା ଉପଭୋଗ କରିବାର ଆଶାରେ । ମ୍ୟାଦାମ୍ ସୋପାର୍ଣ୍ଣୋ ଦାଗ ଦିଆହୋଇଥିବା ବହିର ପୃଷ୍ଠା ଖୋଲି ସେଥିରେ ମନୋନିବେଶ କଲେ ଓ ମୋସିଓ ତାଙ୍କ ବେଡ୍ ହେଡ୍ ଟେବୁଲ୍ ଉପରେ ଥିବା ଗୋଟାଏ ଆୱାର୍ ଗ୍ଲାସ୍ ଧରି ଏପଟ ସେପଟ କରି ଦେଖିଲେ କେମିତି ଗୋଟାଏ ପାତ୍ରରୁ ଆଉ ଗୋଟାଏ ପାତ୍ରକୁ ଅବିରତ ଝରି ଚାଲିଛି ସରୁ ସରୁ ବାଲି । ଖୋଲା ବହିକୁ ମୁହଁ ମାଡ଼ି ପକେଇ ଦେଲେ ଭାଁଦେଜ୍, ତକିଆ ଉପରେ ନିଜର ଡାହାଣ ହାତଟାକୁ ଲମ୍ବେଇ ଦେଇ ହାତର ମାଂସପେଶୀ ଉପରେ ନିଜର ଗାଲ ରଖି ଶୋଇବାକୁ ଚେଷ୍ଟା କଲେ ଓ ଡାହାଣ ଗୋଡ଼ର ବୁଢ଼ା ଆଙ୍ଗୁଠି ଦେଇ ବାଁ ଗୋଡ଼ର ତଳିପାକୁ କୁଣ୍ଡେଇ ନେଲେ ଥରେ ଦୁଇଥର । ତା'ପରେ କିଛି ସମୟ ପାଇଁ ସବୁ ଚୁପ୍

ଚାପ୍ । ଏକାଥରକେ ଶବାସନ କଲା ପରି ସ୍ଥିର ହୋଇ ଶୋଇ ରହିଛନ୍ତି ମୋସିଓ ସୋପାର୍ଣ୍ଣୋ । ଆଖି ଖୋଲ୍-ବନ୍ଦ କରି ପାରୁଥିବା ପିଲାଙ୍କ କଣ୍ଢେଇ ପରି ଆୱାର୍ ଗ୍ଲାସ୍‌ର ବାଲି ପଡ଼ିବାକୁ ଅନୁସରଣ କରି କେତେବେଳେ ତାଙ୍କର ଆଖିର ଡୋଳା ଉଠୁଥାଏ ଉପରକୁ କେତେବେଳେ ତଳକୁ ।

ଦୁହିଁଙ୍କ ଆଖିରେ ପ୍ରାୟ ଏକା ସମୟରେ ତନ୍ଦ୍ରା ଲାଗି ଆସିଥିଲା ଓ ସେହି ନିର୍ଜନ୍ ପ୍ରକୋଷ୍ଠ ଭିତରେ ସେମାନଙ୍କୁ ପହରା ଦଉଥିଲେ ସେମାନଙ୍କର ବୟସ ଓ ବାହାରର ଉଷ୍ଣ ଅପରାହ୍ନ । ମଝିରେ ମଝିରେ ସେମାନଙ୍କର ଅବଚେତନ ଭିତରୁ ପଦାକୁ ବାହାରି ଆସି ଯାହା ଉଙ୍କି ମାରୁଥିବ ତା' ହେଲା ପଁତୁନୁଇରେ ତାଙ୍କର ଦ୍ୱିତଳ ପ୍ରାସାଦ, ଯାହା ଅତୀତ ଓ ରବର୍ଟ ଯିଏ ଅନାଗତ ।

ପ୍ରକୃତରେ ତାଙ୍କର ପଁତୁ ନୁଇର ରିଏଲ୍ ଇଷ୍ଟେଟ୍ ଥିଲା ଏକ ଚମତ୍କାର ପରିବେଶ ଭିତରେ । ପ୍ରାକୃତିକ ଅବସ୍ଥାରେ ତାଙ୍କର ଜାଗାଟା ଥିଲା ତଳର ରାସ୍ତାଠାରୁ ପ୍ରାୟ କୋଡ଼ିଏ ଫୁଟ ଉଚ୍ଚରେ । ତେଣୁ ଘର ଉପରେଠିଆ ହେଇ ଚାରିପଟର କ୍ରମନିମ୍ନ ଲନ୍‌କୁ ଦେଖିଲେ ମନେହୁଏ ଯେମିତି ସେମାନେ ଠିଆ ହେଇଛନ୍ତି ଗୋଟାଏ ସବୁଜ ଗ୍ଲୋବ୍ ଉପରେ । ଚାରିପଟରେ ଇଉକାଲିପଟ୍‌ସ ଆଉ ଦେଓଦାର୍‌ର ଡେଙ୍ଗା ଡେଙ୍ଗା ଗଛ ଠିଆ ହେଇ ରହିଛନ୍ତି ସତର୍କ ପ୍ରହରୀ ପରି ।

ଘରେ ଗ୍ୟାରେଜ୍ ଆଉ ସେଲାର୍‌କୁ ଛାଡ଼ି ଦେଲେ ତିନିଟା ବେଡ୍ ରୁମ୍, ଗୋଟାଏ ଲିଭିଂ ରୁମ୍ ଓ ପ୍ରଶସ୍ତ ଡାଇନିଂ ହଲ୍ । ବଡ଼ ବଡ଼ ଫ୍ରେଞ୍ଚ୍ ଉଇଣ୍ଡୋକୁ ବାଦ୍ ଦେଇ ଘରର କାନ୍ଥସାରା ସୁରୁଚିପୂର୍ଣ୍ଣ ଓ୍ୟାଲ୍ ପେପର୍ । ଆସବାବ୍ ପତ୍ର ମଧ୍ୟ ସବୁ ବେଶ୍ ସଂଭ୍ରାନ୍ତ । ଦୋତାଲାର ବ୍ୟାଲ୍‌କନି ଉପରେ ବସି ପଡ଼ିଲେ ଯେମିତି ସମୁଦାୟ ପ୍ୟାରିସ୍ ସହର ଉପରେ ଗୋଟାଏ ବିହଙ୍ଗମ ଦୃଷ୍ଟି ନେଇଯାଇ ହୁଏ ।

ସୋପାର୍ଣ୍ଣୋ ଦମ୍ପତି କୌଣସି ଦିନ ସଞ୍ଚୟର ପକ୍ଷପାତୀ ନଥିଲେ । ତେଣୁ ମୋସିଓ ସୋପାର୍ଣ୍ଣୋ କହିଥିଲେ, "ଟିକିଏ ଏକ୍‌ସ୍‌ପେନ୍‌ସିଭ୍ ହେଇ ଯାଉଥିଲେ ମଧ୍ୟ କିଣାଯାଉ, ଘରଟା ଯେତେବେଳେ ପସନ୍ଦ ହେଇଛି । ଆମର ରୋଜଗାରରେ ଆମେ ଦୁଇଟା ବର୍ଷର କିସ୍ତି ସମ୍ଭାଳି ଦବା, ତା' ଉପରେ ତ ରବର୍ଟ ବାହାରି ଆସିଥିବ ଇଞ୍ଜିନିୟର ହେଇ । ଘରର କିସ୍ତି ତୁଟେଇ ଦବା ପାଇଁ ତା' ପାଖରେ ସେତେବେଳକୁ ସମୟ ଥିବ ପ୍ରଚୁର !

ହାଉସ୍ ୱାର୍ମିଂ ପାର୍ଟି ଦିନ ସକାଳେ ବେରେଟ୍ ଯାଇଥିଲେ ତାଙ୍କର ବାପାଙ୍କର କବର ପାଖରେ ପୁଷ୍ପସ୍ତବକ ରଖି ଆସିବା ପାଇଁ ଓ ସେଦିନ ସେମାନଙ୍କର କିଛି ବନ୍ଧୁ, ରବର୍ଟର କିଛି ବନ୍ଧୁ, ଓ ଆତ୍ମୀୟସ୍ୱଜନ ଭାବରେ ଉପସ୍ଥିତ ଥିଲେ ବହୁ ଦୂରାଗତ

ମୋସିଓ ସୋପାର୍ଣ୍ଣୋଙ୍କର ମା' ଓ ଶାଶୁ, ସେଇ ସନ୍ଧ୍ୟାର ପାର୍ଟିରେ । ବେଶ୍ ଉଜ୍ଜ୍ୱଳ ଆଲୋକ ତଳେ ଖୋଲା ହେଇଥିଲା ଅନେକ ଅନେକ ବୋତଲ ସାମ୍ପେନ୍ ଓ ରେମି ମାର୍ଟିନି । ମୌଲିନୀ ରୁଜ୍‌ରୁ ଆସିଥିଲା ଇଲ୍ ମାଛର ପାଉଲେଟ୍ ଓ ବିଫ୍‌ର ହୋଟେଲିଅର୍ ଓ କ୍ଷୁଧା ବର୍ଦ୍ଧନକାରୀ ହିସାବରେ ଆସିଥିଲା ହର୍ସଡ଼ିଭୋର୍—ଡଚେସ୍ ଆ-ଲା-ରେଁ । ଦସ୍ତରମତ ଖାନୀ । ମାଛ ସହିତ ବୋର୍ଦୋର ହ୍ୱାଇଟ୍ ୱାଇନ୍ ଓ ମାଂସ ସହିତ ବର୍‌ଗାଣ୍ଡିର ରେଡ୍ ୱାଇନ୍ । ଡେସେର୍ଟ୍ ପାଇଁ ଥିଲା ବିସ୍କିଟ୍-ଆ-ଲା-କୁଇଲର୍ ଓ ପରିବେଷଣ କରାଯିବା ପୂର୍ବରୁ ତା' ଉପରେ ଟିକିଏ ବ୍ରାଣ୍ଡି ଢାଳି ଦେଇ ନିଆଁ ଧରେଇ ଦିଆଯାଇଥିଲା ।

ସେଦିନ ପାର୍ଟି ସରୁ ସରୁ ଅନେକ ରାତି ହେଇଯାଇଥିଲା ଓ ଆମନ୍ତ୍ରିତ ଅତିଥିମାନେ ଫେରିଲାବେଳେ ଯେତେବେଳେ କହୁଥିଲେ ଓଭୁଆ (ଆଉ ଥରେ ଦେଖା ହବ) ସେତେବେଳେ ସମସ୍ତେ ତାହା ଠିକ୍ ଠିକ୍ ଉଚ୍ଚାରଣ କରିପାରୁ ନଥିଲେ । ରବର୍ଟ ଓ ତା'ର ବନ୍ଧୁମାନଙ୍କର ପାର୍ଟି ଚାଲିଥିଲା ଆହୁରି କିଛି ସମୟ ଓ ସେମାନଙ୍କର ପାର୍ଟି ସରିଲାବେଳକୁ ଗଭୀର ନିଦ୍ରାରେ ଶୋଇ ସାରିଥିଲେ ମୋସିଓ ଓ ମ୍ୟାଦାମ୍ ସୋପାର୍ଣ୍ଣୋ ।

ଘର ନେଇ ଆନନ୍ଦ କେବଳ ସେତିକିରେ ଶେଷ ହେଇ ନଥିଲା । ଏବେ ବି ଘରସାରା ଲାଗିପାରି ନାହିଁ କାର୍ପେଟ୍ ଡ୍ରେପର୍ ସବୁକିଛି । କିଛି ସାମ୍ପଲ୍ ଧରି ଭାଁଦେଜ୍ ଏ ଘରରୁ ସେ ଘର ବୁଲି ଯାଉଛନ୍ତି ଗୋଟିଏ ଛୋଟ ଚଢ଼େଇ ପରି ଓ ପୁଣି ଫେରିଆସି ବେରେଟ୍‌କୁ ପଚାରୁଛନ୍ତି, ''ଲିଭିଂ ରୁମ୍ ପାଇଁ ଏଇ ୱାଇନ୍ ରଙ୍ଗର କାର୍ପେଟ୍‌ଟା କେମିତି ମାନିବ ମନ୍ ଆମି ?''

କିନ୍ତୁ ସେଦିନ କ'ଣ ବେରେଟ୍ ଆଉ ଭାଁଦେଜ୍ ଜାଣିଥିଲେ ସେମାନଙ୍କର ଏଇ ଘର ଘର ଖେଳର ସମୟ କାଳ ଅତ୍ୟନ୍ତ ସଂକ୍ଷିପ୍ତ ?

ଦିନେ ହଠାତ୍, ସୁନୀଳ ଆକାଶରୁ ବଜ୍ରପାତ ପରି ସେମାନଙ୍କ ଆଗରେ ଆସି ଠିଆ ହେଇଥିଲା ରବର୍ଟ ଓ ସାଙ୍ଗରେ ଥିବା ଝିଅଟିକୁ ପରିଚୟ କରି ଦେଇଥିଲା, 'ମେର୍ ଯେ' ହେଲା ନୋରା ଯା ସହିତ ମୋର ବାହାଘର ହେଇଯାଇଛି । ନୋରା ! ବେଶ୍ ଆକ୍ଷିକି ଲାଗିଲା ପରି ଝିଅଟିଏ । ଡେଙ୍ଗା, ଗୋରା, ପତଳା—ଚିନିର କଣ୍ଢେଇ ପରି ଦେଖିବାକୁ । ଦୁଇଟା ବଡ଼ ବଡ଼ ସୁନ୍ଦର ଆକ୍ଷି ଉପରେ ଗୋଟିଏ ସରୁ ସୁନ୍ଦର ଭ୍ରୁରୁ ଆଙ୍କି ଦିଆଯାଇଛି ଇନ୍ଦ୍ରଧନୁ ପରି ।

ଝିଅଟି ସାମାନ୍ୟ ହସି ଭୀରୁ ଅଭିବାଦନ କରି କହିଲା, ''ବୋଁ ଜୁର୍'' ମାଦାମ୍ (ଶୁଭ-ପ୍ରଭାତ) । ମ୍ୟାଦାମ୍ ସୋପାର୍ଣ୍ଣୋ କହିଲେ ''ବୋଁଜୁର୍'' ଓ ଝିଅଟିକୁ ପାଖକୁ ନେଇ ତାର କପାଳ ଚୁମ୍ବନ କଲେ ।

ହଠାତ୍ ନିଦ ଭାଙ୍ଗିଗଲା । ମ୍ୟାଦାମ୍ ସୋପାର୍ଣ୍ଣୋଙ୍କର ।

ଓଲ୍ଡ୍ ହୋମ୍ ଛାତ ଉପରେ ଦେଇ ଗୋଟାଏ ବୋଇଙ୍ଗ୍ ସଶବ୍ଦରେ ଆକାଶ ବିଦୀର୍ଣ୍ଣ କରି ଉଡ଼ି ଯାଉଥିଲା । ମୋସିଓ ବେରେଟ୍ ସାମାନ୍ୟ କର ଲେଉଟେଇଲେ ଓ ନିଜର ଡାହାଣ କାନ୍ଧକୁ ହାତରେ ସଙ୍କେତ କରି ନିଦୁଆ ସ୍ୱରରେ କହିଲେ, ''କାନ୍ଧଟା କାହିଁକି ବିନ୍ଧୁଛି, ଯଦି କିଛି ମନେ ନକର ହଟ୍‌ୱ୍ୟାଟର୍ ବଟଲ୍‌ଟାକୁ ଟିକିଏ ପ୍ରସ୍ତୁତ କରିବ ସିଲ୍ ଭୁପ୍ଲେ (ପ୍ଲିଜ୍) ?''

ଭାଁଦେଲ୍ ବିଛଣା ଉପରୁ ଓହ୍ଲେଇ ଆସି ଗୋଟିଏ ପାତ୍ରରେ ପାଣି ଆଣି ହିଟର୍‌ର ସୁଇଚ୍‌ଟାକୁ ମାରିଦେଲେ ।

ବାହାରେ ଗୋଟାଏ ମେଘ-ମେଦୁର ଅପରାହ୍ନ ।

ଯା ପରେ ପରେ, ପୁଣି ଥରେ ଓହ୍ଲେଇବାକୁ ହବ ତଳକୁ ଭିକ୍ଷୁକ ପରି ଧାଡ଼ି ବାନ୍ଧି ଚା'ର ଆସର ପାଇଁ । ସେଇ ସକାଳେ ଯାହା ଦୁଇଥର ତଳକୁ ଓହ୍ଲାଇ ଥାଆନ୍ତି ମୋସିଓ ବେରେଟ୍ । ଅପରାହ୍ନର ଚା' ଓ ଡିନର୍‌ଟାକୁ ତାଙ୍କ ପାଇଁ ଉପରକୁ ନେଇ ଆସିବାକୁ ହୁଏ ଭାଁଦେଲ୍‌ଙ୍କୁ, ଡାକ୍ତର ଆସି ଗାଉଟ୍ ସନ୍ଦେହ କରି ଯାଇଛନ୍ତି ।

ବେରେଟ୍‌ଙ୍କ ପାଖରେ ହଟ୍ ୱାଟର୍ ବ୍ୟାଗ୍‌ଟା ରଖିଦେଇ ଭାଁଦେଲ୍ ତଳକୁ ଯିବାକୁ ପ୍ରସ୍ତୁତ ହେଲେ ଚା'ର ଆସରରେ ଯୋଗଦବାକୁ । ଦିନ ପରେ ଦିନ ସେଇ ସ୍ୱାଦହୀନ ଚା' ପାଣିକୁ ଇଚ୍ଛା ଥାଉ ନ ଥାଉ ପିଇବାକୁ ପଡ଼ିବ । ଏଇ ଗତାନୁଗତିକ ଜୀବନର କ୍ଲାନ୍ତି ଅବସାଦ ଯେପରି ଭାଁଦେଲ୍‌ଙ୍କୁ ହଠାତ୍ ଆଚ୍ଛନ୍ନ କରି ବସି ତାଙ୍କର ଦୁଇ ପାଦକୁ ଆହୁରି ମନ୍ଥର କରିଦେଲା ।

ଗୋଟିଏ ଏକୁଟିଆ ଟେବୁଲ୍ ଦେଖି ଚୁପ୍ ଚାପ୍ ଚା'ର ଅପେକ୍ଷାରେ ବସି ରହିଲେ ଭାଁଦେଲ୍ । ଚାରିପଟେ ସେଇ ଏକା ଲୋକମାନେ ବସି ରହିଛନ୍ତି । ସେମାନଙ୍କର ଚାଲି, ମୁହଁ, କଥା କହିବାର ଭଙ୍ଗୀ, ସବୁଦିନ ସେଇ ଏକାପରି । ସେମାନେ ଯେପରି ମୂର୍ତ୍ତିମନ୍ତ କ୍ଳାନ୍ତି ! ଦିନେ ଦିନେ ଏମିତି ବି ହୁଏ, ସେମାନେ ହଠାତ୍‌ଯେମିତି ଭାଁଦେଲ୍‌ଙ୍କର ଦୃଷ୍ଟିଶକ୍ତିର ଫୋକସ୍ ବାହାରକୁ ଚାଲିଯାଆନ୍ତି—ଅସ୍ପଷ୍ଟ ହେଇଯାଆନ୍ତି ଏବଂ ସେମାନଙ୍କର ଗତିବିଧି ଭାଁଦେଲ୍‌ଙ୍କର ମନେହୁଏ ଅଶରୀରୀମାନଙ୍କର ଯିବା ଆସିବା ପରି । ସେ ମୁହୂର୍ତ୍ତକ ପାଇଁ ଉଦ୍‌ବିଗ୍ନ ହେଇ ଉଠନ୍ତି । ଚା'ର ଆସରରୁ ଉପରକୁ ଉଠିଆସି ଯେତେବେଳେ ସେ ନିଜର ପ୍ରକୋଷ୍ଠ ବନ୍ଦ କରି ନିଅନ୍ତି ଓ ମୋସିଓ ସୋପାର୍ଣ୍ଣୋଙ୍କ ପାଇଁ ଚା' ଢାଳନ୍ତି, ସେତେବେଳେ କୁହନ୍ତି, ''କାଲିଠାରୁ ତମେ ମୋ ସହିତ ଚା' ଖାଇବାକୁ ତଳକୁ ଯିବ ମନ୍ ଆମି, ମତେ ସମସ୍ତ ଡାଇନିଂ ହଲ୍‌ଟା କେମିତି

ଅଦ୍ଭୁତ ମନେହେଲା—ଯେମିତି ଏ ହଲ୍ ନାହିଁ, ଆମେମାନେ ନାହେଁ—ଅଥଚ ଗୋଟାଏ କିଛିର ରିହର୍‌ସାଲ୍ ଚାଲିଛି ଯାହାର ଅର୍ଥ ଓ ଉଦ୍ଦେଶ୍ୟ କିଛି ବୁଝି ହଉ ନାହିଁ ।''

ମୋସିଓ ବେରେଟ୍ କହିଲେ, ''ସେ'ଟା ତମର ମନର ଭ୍ରମ ଖାଲି—ମୃତ୍ୟୁର କେବେ ରିହର୍‌ସାଲ୍ ହବାର ଶୁଣିଛ ?''

ଆଜି ଶୁକ୍ରବାର । ସେଥିପାଇଁ ସନ୍ଧ୍ୟା ହବା ପୂର୍ବରୁ ନିଜର ଖଣ୍ଡେ ଭଲ ପୋଷାକ ପିନ୍ଧି ହାତରେ ଭ୍ୟାନିଟି ବ୍ୟାଗ୍ ଧରି ମ୍ୟାଦାମ୍ ସୋପାର୍ଣ୍ଣୋ ବାହାରି ପଡ଼ିଲେ ତରତର ହେଇ । ଗନ୍ତବ୍ୟ ସ୍ଥାନ ବିଷୟରେ କୌଣସି ପ୍ରଶ୍ନ କରିବା ଅବାନ୍ତର, କାରଣ, ନିଜର ଅନେକ ଛୋଟ ଛୋଟ ଜିନିଷ କିଣି ଆଣିବା ପାଇଁ ମଝିରେ ମଝିରେ ମାର୍ସେ (ମାର୍କେଟ)କୁ ଯିବା ପାଇଁ ପଡ଼େ ।

ଷ୍ଟିକୋପ୍ଲାଷ୍ଟ୍ ରୋଲ୍‌ଟା ସରିଗଲାଣି, କିଛି ସେଫ୍‌ଟି ପିନ୍ କିଣି ଆଣି ରଖିବା ଉଚିତ୍ । ଡିଆସିଲି, ଚିଠି ଲେଖିବା ପାଇଁ ଲଫାପା, ଫାଉଣ୍ଟେନ୍ ପେନ୍ କାଳି, ଏମିତି ଅନେକ ଅନେକ ଜିନିଷର ପ୍ରୟୋଜନ ଅନ୍ତତଃ ସପ୍ତାହକେ ଥରେ ବଜାରରୁ ଆଣିବାକୁ ପଡ଼େ । ଏସବୁ ସ୍ଥୂଳ ଜିନିଷ ସବୁକୁ ବାଦ୍ ଦେଲେ ମଧ୍ୟ ମୋସିଓ ଅନ୍ୟ ଏକ ସୂକ୍ଷ୍ମ ଇଙ୍ଗିତ ବୁଝନ୍ତି । ତେଣୁ କୌଣସି ପ୍ରଶ୍ନ କରିବା ଏକାନ୍ତ ଅବାନ୍ତର ହେଇ ଉଠେ । ମ୍ୟାଦାମ୍ ବାହାରକୁ ଯିବା ପରେ ମୋସିଓ ସୋପାର୍ଣ୍ଣୋ ତାଙ୍କ ଆଖି ଆଗରେ ଗୋଟାଏ ଅଧାପଢ଼ା ବହି ଖୋଲି ଧରନ୍ତି । ବହି ପଢ଼ିଲେ ମଧ୍ୟ ସେ କିଛି ବୁଝିପାରନ୍ତି ନାହିଁଓ ବାରମ୍ବାର ମୂଳ ଧାଡ଼ିଟିକୁ ପୁଣି ଥରେ ଫେରି ଆସନ୍ତି । ଅତୀତର ସ୍ମୃତି ତାଙ୍କର ବର୍ତ୍ତମାନର ବୋଧଶକ୍ତିକୁ ବାରମ୍ବାର ପ୍ରତାରିତ କରୁଥାଏ ।

ମୋସିଓ ଅନେକ ଥର ପରି ଏଥର ମଧ୍ୟ ଫେରିଯାଆନ୍ତି ତାଙ୍କର ଅତୀତକୁ ।

ରବର୍ଟ ସେଦିନ ଆକସ୍ମିକ ଓ ନାଟକୀୟ ଭାବରେ ନୋରାକୁ ନେଇ ଘରେ ପହଞ୍ଚିଲାବେଳେ ସେମାନଙ୍କୁ ସାଦର ଅଭ୍ୟର୍ଥନା କରି ଗ୍ରହଣ କରିନବା ବ୍ୟତୀତ ସୋପାର୍ଣ୍ଣୋ ଦମ୍ପତିଙ୍କର ଅନ୍ୟ କିଛି ଉପାୟ ନଥିଲା । ଖୁବ୍ ଅଳ୍ପଦିନ ଭିତରେ ରବର୍ଟ ମଧ୍ୟ ଚାକିରୀ ପାଇଯାଇଥିଲା ଗୋଟିଏ ଜାହାଜ କମ୍ପାନୀରେ । ବେଶ୍ ମୋଟା ଅଙ୍କର ଦରମା ମଧ୍ୟ ପାଉଥିଲା ସେ । ସପ୍ତାହରେ ହାରାହାରି ଆଠଶହ ଫ୍ରାଁ । ନୋରା ପଢ଼ାଇବାକୁ ଯାଉଥିଲା ଘର ପାଖର ଗୋଟାଏ ନର୍ସରୀ ସ୍କୁଲକୁ ।

ନବବିବାହିତ ମାନଙ୍କର ପ୍ରାୟ ଯାହା ହେଇଥାଏ, ସେମାନେ ଘର ସଜେଇ ନବାକୁ ଆରମ୍ଭ କରିଦେଲେ । କଲର୍ ଟି.ଭି. ସେଟ୍ ଆସିଲା—କାନ୍ଥର ଟଙ୍ଗା ହବା ପାଇଁ ଆସିଲା ଇମ୍ପ୍ରେସନିଷ୍ଟିକ୍ ପେଣ୍ଟିଂ । ଘରର କ୍ରୋକରୀ, କଟ୍‌ଲେରୀ ବଦଳିଗଲା । ସେମାନେ କିସ୍ତିଓ୍ୱାରୀ ପରିଶୋଧ କରିବା ସର୍ତ୍ତରେ କିଣିଲେ ପ୍ୟୁଜୋ ମଟର ଗାଡ଼ି ।

ସବୁ ଠିକ୍ ଥିଲା । ଘର ଭିତରେ ମଧ୍ୟ ସେମାନଙ୍କର ସ୍ୱାଧୀନତା ଥିଲା ଅବାରିତ । ନୋରା ମଝିରେ ମଝିରେ ମ୍ୟାଦାମ୍ ସୋପାର୍ଣ୍ଣୋଙ୍କୁ କୁଇଜିନ୍ (କିଚେନ)ରେ ସାହାଯ୍ୟ କରିବାକୁ ମଧ୍ୟ ଆସୁଥିଲା । କିନ୍ତୁ ନୋରା ଯେ ଥିଲା ଜଣେ ଜର୍ମାନ୍ ଯୁବକଙ୍କର ଡାଇଭୋର୍ସି–ଏ କଥା ଭିତରେ ଭିତରେ ମ୍ୟାଦାମ୍ ସୋପାର୍ଣ୍ଣୋ ଆଦୌ ହଜମ୍ କରିପାରୁ ନଥିଲେ ।

ତା'ଛଡ଼ା ନୋରା ମଧ୍ୟ ଝିଅ ହିସାବରେ ଥିଲା ଅସମ୍ଭବ ଭାବରେ ଜିଦ୍‌ଖୋର୍ । ଚର୍ଚ୍ଚ ଯାଏନା–ସେ ସେଥିରେ ବିଶ୍ୱାସ କରେ କି ନାହିଁ କିଏ ଜାଣେ ? କିନ୍ତୁ ମଝିରେ ମଝିରେ ପରିବାରର ଖାଦ୍ୟ ରାନ୍ଧିବାର ମେନୁ ଗୋଟାଏ ପ୍ରକାରର ମୋଡ଼ ନିଏ ଯାହା ବରଦାସ୍ତକରିବା ମୋସିଓ ବା ମ୍ୟାଦାମ୍ ସୋପାର୍ଣ୍ଣୋଙ୍କ ପକ୍ଷରେ ସମ୍ଭବ ହୁଏନା । ମ୍ୟାଦାମ୍ ସୋପାର୍ଣ୍ଣୋ ସାଙ୍ଗେ ସାଙ୍ଗେ ମଙ୍ଗ ଧରି ଡଙ୍ଗାର ମୋଡ଼ ପରିବର୍ତ୍ତନ କରିବାକୁ ଉଦ୍ୟମ କରନ୍ତି କିନ୍ତୁ ନୋରା ସେଦିନ ଡିନର୍ ନ ଖାଇ ଶୋଇ ରହେ, କେବଳ କୁହେ, ''ମୁଁ ଅସୁସ୍ଥ ।'' ରବର୍ଟ ଡିନର୍ ଟେବୁଲ୍ ଉପରେ କ'ଣ ଟିକିଏ ଖାଇ ନେଇ ଚୁପ୍ ଚାପ୍ ଉଠିଯାଏ, ଏପରିକି ଚିଜ୍ ଖାଇବା ପୂର୍ବରୁ ।

ତା' ଆରଦିନ ବ୍ରେକ୍‌ଫାଷ୍ଟ ଟେବୁଲ୍ ଉପରେ ପୁଣି ଦେଖାହୁଏ । ମୋସିଓ ସୋପାର୍ଣ୍ଣୋ କଥା ଆରମ୍ଭ କରନ୍ତି, ''ଦେଖ ଏମିତି ସବୁ ପରିବାର ଭିତରେ ବେଳେ ବେଳେ ହୁଏ, ଏସବୁ କଥା ଉପରେ ଗୁରୁତ୍ୱ ନ ଦବା ହିଁ ଉଚିତ୍ । କିନ୍ତୁ ଅସଲ କଥା ହେଲା ଘରର ଋଣ ବାବଦକୁ ଦୁଇଟା କିସ୍ତିଏ ପର୍ଯ୍ୟନ୍ତ ଦିଆଯାଇ ପାରିନାହିଁ, ଏ ଘର ତ ତମମାନଙ୍କର । ଆମର ବା ରୋଜଗାର କେତେ ? ସେମାନେ ଘରର କିସ୍ତି ପରିଶୋଧ କଥା ଚିନ୍ତା କରିବା ଉଚିତ୍ ।''

କିନ୍ତୁ ସେମାନେ ଲମ୍ବା ଛୁଟିରେ ଯାଇଛନ୍ତି ମରୋକ୍‌କୋ, ମୋନାକ୍‌କୋ । ସେମାନେ ଆଣି ପିଇଛନ୍ତି ସାମ୍ପେନ୍ । ସେମାନେ କିଣିଛନ୍ତି ପିଆନୋ, କିନ୍ତୁ ଘରର କିସ୍ତି ଦବା କଥା ଦିନେ ହେଲେ ଚିନ୍ତା କରି ନାହାନ୍ତି ।

ବେଶ୍ ତା' ବି ହେଲା, କିସ୍ତି ନ ଦିଆଗଲେ ଘରଟାକୁ ରିଏଲ୍ ଇଷ୍ଟେଟ୍ ଲୋକ ପାଖରେ ବିକ୍ରୀ କରି ଦେଇ ହବ, କିନ୍ତୁ ନୋରା ଦିନ ପରେ ଦିନ ମଦ ଖାଇ ହେଇ ଉଠୁଥିଲା ଆଲ୍ କହଲିକ୍ । ଟଳି ଟଳି ଆସେ ଦେଢୁନେ ଓ ଡିନେ ଟେବୁଲ୍‌କୁ । ଦିନେ ଦିନେ ଏପରି କି ଚଫି ଜୁନେ ଟେବୁଲ୍ ଉପରେ ନୋରାର ମୁହଁରୁ ଆସେ ଆଲ୍‌କହଲ୍‌ର ଗନ୍ଧ ।

ମ୍ୟାଦାମ୍ ସୋପାର୍ଣ୍ଣୋ କିଛି କୁହନ୍ତି ନାହିଁ, ଶୋଇବାକୁ ଗଲାବେଳେ କେବଳ ଗୁଣୁ ଗୁଣୁ ହେଇ କୁହନ୍ତି ଏମାନେ ଓହ୍ଲେଇ ଯାଇଛନ୍ତି ନର୍କର ପଥରେ । କିଛିଦିନ ପରେ ଥାଏ

ଲକ୍ସୁର୍ ଦେ' ପେର୍ ଫାଦର୍ସ ଡେ' । ପରିବାରରେ ଅନେକ ହଇ-ହଲ୍ଲା ହୁଏ ସେଦିନ । ସେଟା ପୂରାପୂରି ପରିବାରର କର୍ତ୍ତା ବାପାର ଦିନ । ସେଦିନ ପିଲାମାନେ ଓ ସ୍ତ୍ରୀ ପରିବାରର ପେର୍ (ବାପା) ପାଇଁ କିଣାକିଣି କରି ଆଣିବେ ଅନେକ ଉପହାର ଓ ଚର୍ବ୍ୟଚୋଷ୍ୟ ରନ୍ଧା ରନ୍ଧି କରି ଖୁଆଇବେ । ଫରାସୀ ପରିବାରର ଏହା ଏକ ବହୁ ପ୍ରତୀକ୍ଷିତ ଉତ୍ସବ ଦିବସ । କିନ୍ତୁ ସେଦିନ ସୋପାର୍ଣ୍ଣୋ ପରିବାରର ଘର ଥିଲା ଏକାନ୍ତ ଅବହେଳିତ । ରବର୍ଟ ଆଉ ନୋରା ଯାଇଥିଲେ ଡିନର୍ ଖାଇବାକୁ ମୈଲାରୁଁକୁ । ଭୀଷଣ ଆଘାତ ପାଇଥିଲେ ମୋସିଓ ସୋପାର୍ଣ୍ଣୋ । ତା' ପରଦିନର ପେତି ଜୁନେ ଟେବୁଲ୍ ଉପରେ ସାମାନ୍ୟ ଶ୍ଳେଷୋକ୍ତି କରି କହିଥିଲେ, ''ତମେମାନେ ଗତକାଲିର ଦିନଟାକୁ ଏକାଥରକେ ଭୁଲିଗଲ ? ବୁଢ଼ା ବାପା ଆଉ କେତେଦିନ ବା ବଞ୍ଚିବ ? ତମମାନଙ୍କ ପାଖରୁ କିଏ ଚାହିଁଥିଲା ଦାମି ଦାମି ଉପହାର, ସାମାନ୍ୟ ପୁଷ୍ପଗୁଚ୍ଛଟାଏ ବି ଯଥେଷ୍ଟ ହୋଇ ଥାଆନ୍ତା, କିନ୍ତୁ ସେତକ ମଧ୍ୟ ତମେମାନେ ମନେ କଲ ଅପବ୍ୟୟ ବୋଲି !'' ସେଦିନର ପେତି ଜୁନେ ଟେବୁଲ୍ ଉପରେ ନଇଁ ଆସିଥିଲା ଗୋଟାଏ ଅତିକାୟ ଓଜନ୍‌ଦାର ପଥର, ଯାହା ସେ ପରିବାରର ସମସ୍ତଙ୍କୁ ଆତ୍ମଗ୍ଳାନିରେ ପିଷ୍ଟକରି ଦଉଥିଲା ।

କିନ୍ତୁ ତା' ପରଦିନ ହଠାତ୍ ରବର୍ଟ ଓ ନୋରା ଘୋଷଣା କରିଥିଲେ ଯେ ସେମାନେ ସେ ଘର ଛାଡ଼ି ଚାଲିଯାଉଛନ୍ତି । କାରଣ ସେମାନଙ୍କର କର୍ମସ୍ଥଳୀ ସେଠାରୁ ଟିକିଏ ଦୂର ହୋଇଯାଉଛି। କାରଣ ସେମାନେ ବୋଧହୁଏ ଏ ଘରେ ପ୍ରୀତିଭାଜନ ନୁହଁନ୍ତି । କାରଣ ସେମାନେ ସେମାନଙ୍କର ନିଜର ସଂସ୍ଥା କରିବା ଉଚିତ୍, ଇତ୍ୟାଦି ଇତ୍ୟାଦି ।

ସେଦିନ ସକାଳେ ରବର୍ଟ ଓ ନୋରା ଘର ଛାଡ଼ି ଗଲା ପରେ ମ୍ୟାଦାମ୍ ଓ ମୋସିଓ ସୋପାର୍ଣ୍ଣୋ ପଡ଼ି ରହିଲେ ଗୋଟାଏ ଘରେ, ଯାହାର କିସ୍ତି ଚାରିମାସ ହେଲା ଦିଆଯାଇ ପାରିନାହିଁ । ମୋସିଓ ବେରେତ୍ ସୋପାର୍ଣ୍ଣୋଙ୍କର ଚିର-ସହଚର ହୋଇ ରହିଲା ଦୁରାରୋଗ୍ୟ ଶ୍ୱାସ, ଓ ଆତଙ୍କ ଓ ବାର୍ଦ୍ଧକ୍ୟ ରହିଲା ମ୍ୟାଦାମ୍ ସୋପାର୍ଣ୍ଣୋଙ୍କ ଚତୁର୍ଦ୍ଦିଗରେ ଅଦୃଶ୍ୟ ପ୍ରହରୀ ହୋଇ ।

ସେଇଦିନ ଠାରୁ ଫେରି ନାହାନ୍ତି ରବର୍ଟ ବା ନୋରା ଦିନକ ପାଇଁ ।

ଚିଠି ଖଣ୍ଡେ ମଧ୍ୟ ଦେଇ ନାହାନ୍ତି ।

ରବର୍ଟ ମ୍ୟାଦାମ୍ ଓ ମୋସିଓ ସୋପାର୍ଣ୍ଣୋଙ୍କର ଏକମାତ୍ର ପୁତ୍ର ।

ସଂଧ୍ୟାରେ କେବେ କେବେ ସୋପାର୍ଣ୍ଣୋ ପରିବାରକୁ ଅତିଥି ଆସିଲେ ସେମାନେ ଅତ୍ୟନ୍ତ ଆନନ୍ଦ ଓ ଉତ୍ସାହର ସହିତ ଟେବୁଲ୍ ଉପରେ ଗିଲାସ ଓ ୱାଇନ୍‌ର

ବୋତଲରଖୁ ରଖୁ କୁହନ୍ତି, "କଥା କ'ଣ କି, ରବର୍ଟ ପିଲାଟା ଭୀଷଣ ଆମ୍ବିସସ୍ । ତେଣୁ ସେ ଯାଇ ରହିଛି ଜର୍ମାନୀରେ ବେଟର୍ ପ୍ରସ୍‌ପେକ୍ଟ୍‌ସ୍ ପାଇଁ । ସପ୍ତାହକ ତଳେ ଚିଠି ଦେଇଥିଲା, ବେଶ୍ ଗୋଟାଏ ମୋଟା ଦରମାର ଚାକିରୀ ପାଇଯାଇଛି ସେ । ସେ ତ ବରାବର୍ ଖୁବ୍ ବ୍ରିଲିଆଣ୍ଟ ପିଲା ଥିଲା । ତା'ଛଡ଼ା ନୋରା ଖଣ୍ଡେ ହୀରା ! ଆମକୁ ଏକୁଟିଆ ଛାଡ଼ି ଯିବାକୁ କୁଛ୍ କୁଛ୍ ହଉଥିଲା—ଆମେ ତାକୁ ଯୋର୍ କରି ରବର୍ଟ୍ ସାଙ୍ଗରେ ପଠେଇଚୁ ।"

ଅତିଥିମାନେ ୱାଇନ୍ ଗ୍ଲାସ୍ ହାତରେ ଧରି କୁହନ୍ତି, "ଆପଣମାନେ ଭାଗ୍ୟବାନ୍— ଏପରି ପୁଅ ଓ ଏପରି ବୋହୂ ପାଇଛନ୍ତି ।"

ସୋପାର୍ଣ୍ଣୋ ଦମ୍ପତି ଏ ପ୍ରଶଂସାର ପ୍ରତ୍ୟୁତ୍ତରରେ କୁହନ୍ତି, "ମର୍ସି, ମର୍ସି ବୁକ୍‌କୁ ।"

ଅତିଥିମାନେ ମଉଳି ଯାଆନ୍ତି ।

ସନ୍ଧ୍ୟାର ଆସର ମଉଳିଯାଏ ଫ୍ଲାୱାର୍ ଭାଜ୍ ଉପରେ ଗ୍ଲାଡ଼ିଲାର ସ୍ତବକ ।

ଡିନେ ଟେବୁଲ୍ ଉପରେ ବସନ୍ତି କୁଣ୍ଠିତ ସୋପାର୍ଣ୍ଣୋ ଦମ୍ପତି ।

ଅନିଚ୍ଛା ସତ୍ତ୍ୱେ ସେମାନେ ଗିଲାସରେ ୱାଇନ୍ ଢାଳନ୍ତି, କିନ୍ତି ୱାଇନ୍ ଢାଳିବାର ଶବ୍ଦ ସେମାନଙ୍କ କାନକୁ ଲାଗେ ଯେପରି କୌଣସି ରୋଗୀର ଅନ୍ତିମ ମୁହୂର୍ତ୍ତରେ କଣ୍ଠନଳୀ-ନିର୍ଗତ ଏକ ଆର୍ତ୍ତ ଅସହାୟ ହିକ୍‌କା ଉଠିବା ପରି ।

ସମୟ କାହାରି ଅପେକ୍ଷା ରଖେନା, ତାହା ଗଡ଼ିଚାଲେ ।

ମୋସିଓ ସୋପାର୍ଣ୍ଣୋ ସକାଳୁ ତାଙ୍କର ଧଳା ଧଳା ଦାଢ଼ି ଖିଅର ହେଲାବେଳେ ତାଙ୍କର ହାତରେ ବେପଥୁ ସୃଷ୍ଟି ହୁଏ । ମ୍ୟାଦାମ୍ ସୋପାର୍ଣ୍ଣୋ ଆପ୍ରନ୍ ପିନ୍ଧି ରୋଷେଇ ଘରେ ଠିଆ ହେଇ ରହିଲା ବେଳେ ସାଇଟିକିଆର ଯନ୍ତ୍ରଣାରେ ତାଙ୍କର ଗୋଡ଼ ପେଣ୍ଡାର ନୀଳ ସ୍ନାୟୁସବୁ ଫୁଲି ଉଠେ ମୋସିଓ ସୋପାର୍ଣ୍ଣୋ ବ୍ୟାଙ୍କରୁ ଫେରନ୍ତି କ୍ଳାନ୍ତ ଶ୍ରାନ୍ତ ହେଇ, ଗୋଟାଏ ଶୂନ୍ୟ ଘରକୁ, କାରଣ ଭାଁଦେଲ୍‌ର ସିଫଟ୍ ପରିବର୍ତ୍ତନ ହେଇଯାଇଛି। ସେ ଫେରିବ ରାତି ବାରଟା ବେଳକୁ । ସେତେବେଳକୁ ମୋସିଓ ସୋପାର୍ଣ୍ଣୋ ଶୋଇପଡ଼ିଥାନ୍ତି ଏବଂ କ୍ଳାନ୍ତି ଓ ଅବସାଦରେ ଘୁଂଘୁଡ଼ି ମାରୁଥାଆନ୍ତି । ଗୋଟାଏ ମାର୍ଜାରର ସତର୍କତା ନେଇ ମ୍ୟାଦାମ୍ ସେ ଘର ଭିତରେ ପଦଚାରଣା କରନ୍ତି ଓ ଫ୍ରିଜ୍ ଖୋଲି ତାଙ୍କର ସଂକ୍ଷିପ୍ତ ଡିନର୍ ଖାଇ ଶୋଇପଡ଼ନ୍ତି ଖଟ ଉପରେ । ଆଃ ! କିଏ ଟିକିଏ ଅଣ୍ଟାଟାକୁ ମସାଜ୍ କରିଦିଅନ୍ତା କି ?

କ୍ଳାନ୍ତି ଓ ଅବସାଦର ଅପରିହାର୍ଯ୍ୟ ପରିଣତି ଭାବରେ ନିଦ ଲାଗିଯାଏ ମ୍ୟାଦାମ୍ ସୋପାର୍ଣ୍ଣୋଙ୍କ ଆଖିରେ; କିନ୍ତୁ ନିଦ ସହିତ ପୁଣି ୧.।ସେ ରବର୍ଟର ମୁହଁ ଓ ନୋରାର

ମୁହଁ, ସିଏ ଗୋଟାଏ ଡାହାଣୀ ପରି ସୁନ୍ଦରୀ ଓ ମନୋହାରିଣୀ । କିନ୍ତୁ ମୋସିଓଙ୍କର ନିଦ ଭାଙ୍ଗିଗଲା ବେଳକୁ ରାତି ତିନିଟା ବାଜିଛି ମାତ୍ର । ସିଏ ବିଛଣାରେ ଅସହାୟ ଭାବରେ ପଡ଼ି ରହି ଅପେକ୍ଷା କରି ରହିଥାଆନ୍ତି ଉଷାର ପ୍ରଥମ କିରଣଟିକୁ ।

ସକାଳେ ବିଛଣା ଉପରେ ବସି ରହି ଚା' କରୁ କରୁ ମ୍ୟାଦାମ୍ ସୋପାର୍ଣ୍ଣୋ କହନ୍ତି, ''ଏଇ ବେଶ ମନଆମି, ଏଇ ବେଶ, କାହାର ଝମେଲା ନାହିଁ,ଆମର ମନଇଚ୍ଛା ଯାହା କିଛି କରିପାରିବା, ଏ ବୟସରେ ଆଉ ଅନ୍ୟ କାହାର ମର୍ଜି ଜଗି କିଛି କରିବା ସମ୍ଭବ ନୁହଁ ।''

ଗରମ୍ ଗରମ୍ ଚା' କପ୍‌ରେ ମୁହଁ ଲଗେଇ ଗୋଟାଏ ଦୁଇଟା ଚୁମକ୍ ନେଇ ସାରି ମୋସିଓ କୁହନ୍ତି, ''ଉଇ, ଉଇ (ହଁ, ହଁ) ।''

ତାପରେ ଦିନେ ଅକସ୍ମାତ ଆସି ପହଞ୍ଚିଲା ସେଇ ବହୁ ଆତଙ୍କିତ ଓ ଅପରିହାର୍ଯ୍ୟ ଦିବସ, ଯେଉଁଦିନ ସେମାନେ ରିଏଲ୍ ଇଷ୍ଟେଟ୍ ଡିଲର୍ ଠାରୁ ପାଇଲେ ସଲିସିଟର୍‌ର ନୋଟିସ୍ । ମୋସିଓ ସୋପାର୍ଣ୍ଣୋ ସେଦିନ ଅଫିସ୍‌ରୁ ଫେରିଲେ ଦୁଇଟା ଅବାଧ ପାଦକୁ ଘୋସାରି ଘୋସାରି । କେମିତି ସେ କହିବେ ଭାଁଦେଲ୍‌କୁ ଯେ ବାରଟା କିସ୍ତିର ବିପୁଳ ପରିମାଣ ଅର୍ଥ ଏକା ସାଙ୍ଗରେ ଦେଇ ନ ପରିଲେ ସେମାନଙ୍କୁ ଘର ଛାଡ଼ି ଚାଲିଯିବାକୁ ପଡ଼ିବ ଦୁଇମାସ ଭିତରେ ? ସେଦିନ ନୋଟିସ୍‌ଟାକୁ ପଢ଼ି ହଠାତ୍ ପାଣ୍ଡୁର ହେଇଯାଇଥିଲା ଭାଁ ଦେଲ୍‌ଙ୍କ ମୁହଁ । କିଛି ସମୟ ପରେ ସେ ମନକୁ ମନ କାନ୍ଦିଥିଲେ ଅନେକ ସମୟ ଧରି ।

ଯା ପରେ ହଠାତ୍ ସ୍ନାୟବିକ ରୋଗରେ ବିଛଣା ଧରିଲେ ମ୍ୟାଦମା ଭାଁ ଦେଲ୍ । ଅଫିସ୍‌ର କାମ ଓ ମ୍ୟାଦମ୍‌ଙ୍କର ଚିକିତ୍ସା ଭିତରେ ପିଷ୍ଟ ହେଇଗଲେ ମୋସିଓ ଭାଁଦେଲ୍ କ୍ଷ ଦିନକୁ ଦିନ ହେଇ ଉଠିଲେ ଅର୍ଥଶୂନ୍ୟ ଓ ଅଫିସ୍ କାମରେ ଅନ୍ୟମନସ୍କ ।

ରିଏଲ୍ ଇଷ୍ଟେଟ୍‌ଡିଲର୍ ପାଖରୁ ମହଲତ ପରେ ମହଲତ ମାଗି ସେମାନେ ଅବଶ୍ୟ ଆଉ କିଛି ଦିନ ତାଙ୍କ ଘରେ ରହିବାର ଅନୁମତି ପାଇଥିଲେ, କିନ୍ତୁ ଭାଁଦେଲ୍ ରୋଗଶଯ୍ୟରେ ତଥାପି ପଡ଼ି ରହିଥିବା ବେଳେ କପର୍ଦ୍ଦକ ଶୂନ୍ୟ ମୋସିଓ ସୋପାର୍ଣ୍ଣୋ ନୋଟିସ୍ ପାଇଥିଲେ କମ୍ପଲସରି ରିଟାୟାରମେଣ୍ଟର । ଗୋଟାଏ କଳାଛାଇ ନଇଁ ଆସିଲା ସୋପାର୍ଣ୍ଣୋ ପରିବାର ଉପରେ ଅକସ୍ମାତ୍ । ସତରେ କ'ଣ ଫେରିବ ରବର୍ଟ ? ସତରେ କ'ଣ ସେ ଫେରିଆସି ରିଏଲଇଷ୍ଟେଟ୍ ଏଜେଣ୍ଟକୁ ଗୋଟାଏ ଚେକ୍ ଦେଇ ଦେଇ କହିବ ଯେ ଏଣିକି ଏ ଘରର କିସ୍ତି ଠିକ୍ତୁ ଠିକ୍ ଦିଆଯିବ । ତମର ନୋଟିସ୍ ତମେ ପ୍ରତ୍ୟାହାର କର ! ନାଁ ସେସବୁ ଚଳଚ୍ଚିତ୍ରରେ ଘଟେ, କିନ୍ତୁ ଜୀବନରେ ଘଟେ ନାହିଁ ।

ଅପରିହାର୍ଯ୍ୟ ଭାବରେ ସେମାନଙ୍କୁ ସେଇ ଲଜ୍ଜାକର ପରିସ୍ଥିତି ଗ୍ରହଣ କରି ନେବାକୁ ପଡ଼ିଲା । ସେମାନଙ୍କୁ ନିବେଦନ କରିବାକୁ ପଡ଼ିଲା ସୋସିଆଲ୍ ସିକିଓରିଟି

ପାଖରେ । ଓଃ ! ସେ କି ଆତ୍ମଗ୍ଳାନି ! ହୁଏତ ରବିବାର ଦିନ ଜଣେ ଲୋକ ଆସି ପହଞ୍ଚିବ ଶହେ କି ଦେଢ଼ଶହ ଫ୍ରାଁ ଧରି ଓ ସେତକ ତା'ର ବୁଢ଼ା ଆଙ୍ଗୁଠି ଆଉ ବିଶି ଆଙ୍ଗୁଠି ଭିତରେ ଚିପି ଧରି କହିବ, ''ମନେ ରଖନ୍ତୁ ମ୍ୟାଦାମ୍ ଓ ମୋସିଓ ସୋପାର୍ଣ୍ଣୋ, ଏ ଟଙ୍କା କେବଳ ଖାଦ୍ୟ ପାଇଁ, ଏ ଟଙ୍କାରେ ଆପଣ ସିଗାରେଟ୍ ମଧ୍ୟ କିଣିପାରିବେ ନାହିଁ, ହୁଇସ୍କି, ଓ୍ୱାଇନ୍ ତ ଏକାଥରକେ ଅଚଳ । ମୁଁ ଆସିବି ପୁଣି ଆର ରବିବାର ଦିନ ।''

ଏ ସମସ୍ତ କଥା ପରେ ମଧ୍ୟ ମୋସିଓ ସୋପାର୍ଣ୍ଣୋଙ୍କୁ ହାତ ପତେଇ ଟଙ୍କାତକ ନବାକୁ ପଡ଼ିଲା । ବେରେଟ୍‌ର ସେଦିନର ସେଇ କମ୍ପିତ ଅସହାୟ ହାତ ମନେ ପଡ଼ିଯାଇ ବେଳେ ବେଳେ ମ୍ୟାଦାମ୍ ସୋପାର୍ଣ୍ଣୋଙ୍କର ବହୁ ମୁହୂର୍ତ୍ତ ଉତ୍ପୀଡ଼କ ହେଇ ଉଠେ । ଅସମ୍ଭବ ଜାଣି ମଧ୍ୟ ସେମାନେ ମନ ଭିତରେ ଶୀତ ଦିନର ଡାହାଣିଆ ଖରାପରି ବେଳେ ବେଳେ ଟିକିଏ ଆଶା ଜଳି ଉଠି ପୁଣି ଲିଭିଯାଏ । ରବର୍ଟ ! ହାୟ ରବର୍ଟ !

ତା'ପରେ ସେମାନଙ୍କୁ ଘର ଖାଲି କରିଦବାକୁ ପଡ଼ିଲା। ଘରର ସମସ୍ତ ଆସବାବ୍‌ପତ୍ର ତାଙ୍କରି ଘର ସାମ୍ନାରେ ନିଲାମ କରାଗଲା । କେବଳ ପରିଧାନ ବସ୍ତ୍ର ନେଇ ସେ ଘରୁ ବାହାରିଗଲେ ସୋପାର୍ଣ୍ଣୋ ଦମ୍ପତି । ମୁଣ୍ଡ ଉପରେ ଖୋଲା ଆକାଶ । ତା'ପରେ ସେମାନେ ଅଗତ୍ୟା ଆସିଥିଲେ ଏଇ ଓଲ୍ଡ୍ ହୋମ୍‌ରେ ଆଶ୍ରୟ ନେବାକୁ । ସେମାନେ ପ୍ରଥମେ ଯେତେବେଳେ ଆସି ପହଞ୍ଚିଥିଲେ, ସେମାନେ ବୁଝିଥିଲେ ଯେ ଜୀବନରୁ ମୃତ୍ୟୁକୁ ଯିବା ପାଇଁ ଏହା ତାଙ୍କର ସର୍ବଶେଷ ଅର୍ଗଳୀ ।

ଅସହାୟ ଭାବରେ ଅଥର୍ବ ବେରେଟ୍ ଯେତେବେଳେ ବିଛଣାରେ ଶୋଇ ଶୋଇ ଅତୀତକୁ ରୋମନ୍ଥନ କରୁଥିଲେ, ସେତେବେଳେ ମ୍ୟାଦାମ୍ ସୋପାର୍ଣ୍ଣୋ ସହରର ଗୋଟିଏ ଶସ୍ତା କ୍ୟାଫେରେ ବସି ଗୋଟିଏ ଡାକ ଲଫାପା ବନ୍ଦ କରି ତା' ଉପରେ କ୍ୟାପିଟାଲ୍ ଅକ୍ଷରରେ ଫେଲ୍ଟ୍‌ପେନ୍ ସାହାଯ୍ୟରେ ଯେଉଁ ଠିକଣା ଲେଖୁଥିଲେ ତାହା ହେଲା—

''ମ୍ୟାଦାମ୍ ବି. ସୋପାର୍ଣ୍ଣୋ

ମ୍ୟାଙ୍ଗୋଁ ପୁର୍ ଲେ' ଭିଆଇଏସ୍ ଓଲ୍ଡ୍ ହୋମ୍

ଫ୍ରାନ୍ସ୍—୩୭୦୦୦୧ ଏଲ୍ ।''

ଚିଠିଟିକୁ ପୋଷ୍ଟ ଅଫିସ୍‌ରେ ପକେଇଦେଇ ଓଲ୍ଡ୍ ହୋମ୍‌କୁ ଫେରିଆସୁଥିଲେ ମ୍ୟାଦାମ୍ ସୋପାର୍ଣ୍ଣୋ ସନ୍ଧ୍ୟାରେ ଚା' ଖାଇବା ସମୟରେ ପହଞ୍ଚିବା ପାଇଁ । ଘର ଭିତରକୁ ଆସି ଗୋଟାଏ ଛୋଟିଆ ପ୍ଲାଷ୍ଟିକ୍ ଖୋଳ ଭିତରୁ ଯା'ତୁ ସା'ତୁ ଟୁକିଟାକି

ଜିନିଷ ଟେବୁଲ ଉପରେ ଥୋଇଲେ । ମୋସିଓ ବେରେଟ୍‌ଙ୍କର ସେ ଜିନିଷସବୁକୁ ଥରେ ଆଖି ବୁଲେଇ ଦେଖିନବା ପାଇଁ ସ୍ପୃହା ମଧ୍ୟ ନଥିଲା । କିନ୍ତୁ ସେ ଏତକ ନିଶ୍ଚୟ ଜାଣନ୍ତି ଯେ ଆସନ୍ତା କାଲି ଯେତେବେଳେ ଗୋଟାଏ ଲାଲ୍ ହଣ୍ଡା ମଟର୍ ସାଇକେଲ୍‌ରେ ବିରାଟ ଶବ୍ଦକରି ଆସି ପହଞ୍ଚିବ ପୋଷ୍ଟମ୍ୟାନ୍, ସେ ନିଶ୍ଚୟ ରବର୍ଟ୍ ପାଖରୁ ଚିଠି ପାଇବେ ।

କାଲି ଶନିବାର । ହୋମ୍‌ର ଖାଇବା ପିଇବା ସାଧାରଣତଃ ସେଦିନ ଓ ରବିବାରଦିନ ଟିକିଏ ଅଧିକ ରୁଚିପୂର୍ଣ୍ଣ ହୋଇଥାଏ । ହୋମ୍‌ର ଅନ୍ତେବାସୀମାନେ ମଧ୍ୟ ତାଙ୍କର ସବୁଠାରୁ ଭଲ ପୋଷାକ ପିନ୍ଧିଥା'ନ୍ତି । ସେ ଜାଣନ୍ତି କାଲି ଚା'ପର୍ବ ପରେ ପରେ ଭାଁଦେଇ୍ ଅନେକ ସମୟ ଧରି ଯା'ତୁ ସା'ତୁ ଗପ ଜମେଇବ ଡାଇନିଂ ହଲ୍‌ରେ, ଯେ ପର୍ଯ୍ୟନ୍ତ ପୋଷ୍ଟ୍ ପିଅନ୍ ଆସି ସମସ୍ତଙ୍କ ଆଖି ସାମ୍ନାରେ ରବର୍ଟର ଚିଠି ତାକୁ ନ ଦେଇ ଯାଇଛି ।

ଏଇ ଚିଠି ଦାବା ଖେଳ ସେମାନେ ଖେଳୁଛନ୍ତି ଗତ କେତେମାସ ଧରି । କେତେବେଳେ ଚିଠି ପୋଷ୍ଟ୍ କରନ୍ତି ମ୍ୟାଦାମ୍ ସୋପାର୍ଣ୍ଣୋ ତ କେତେବେଳେ ମୋସିଓ । କେବଳ ସେତିକି ନୁହେଁ, ଚିଠିକୁ ଖୋଲିଧରି ସମସ୍ତଙ୍କ ସାମ୍ନାରେ ସେଥିରୁ ନିର୍ଦ୍ଦିଷ୍ଟ ଅଂଶ ଉଦ୍ଧାର କରାଯିବ, ଯାହା ପ୍ରମାଣ କରିବ ଯେ ରବର୍ଟ ଓ ତା'ର ସ୍ତ୍ରୀ ଅଚ୍ଚ କିଛିଦିନ ଭିତରେ ଆସି ଏମାନଙ୍କୁ ଏଇ ନର୍କପୁରୀରୁ ଉଦ୍ଧାରକରି ନେଇଯାଉଛନ୍ତି ନିଜ ଘରକୁ ।

ଥରେ ଏମିତି ଗୋଟାଏ ଚିଠି ପଢୁ ପଢୁ କିଏ ଜଣେ ଅସହିଷ୍ଣୁ ଲୋକ କହି ଉଠିଥିଲା, ''ହୁଁ ! ମୁଁ ଆସିଲାଦିନୁ ଶୁଣୁଚି ରବର୍ଟ ଆସିବ । କିନ୍ତୁ ରବର୍ଟ ପାଇ ଅପେକ୍ଷା କରିବା ଯାହା ବେକେଟ୍‌ଙ୍କର ଗୋଦୋ ପାଇଁ ଅପେକ୍ଷା କରିବା ସେଇଆ ।''

ସାରା ହଲ୍‌ଟା ଫାଟି ଉଠିଥିଲା ହସରେ । ମ୍ୟାଦାମ୍ ସୋପାର୍ଣ୍ଣୋଙ୍କର ମୁହଁ ଲାଲ୍ ପଡ଼ିଯାଇଥିଲା ବିରକ୍ତି, ଘୃଣା ଓ ଅପମାନରେ । କାଲି ରବିବାର । ଏଇ ଦିନଟି ଓଲ୍‌ଡ୍ ହୋମ୍‌ର ଅଧିବାସୀମାନଙ୍କ ପାଇଁ ବହୁ ପ୍ରତୀକ୍ଷିତ । ଛୁଟିଦିନ ବୋଲି ନୁହଁ କାରଣ ସେମାନଙ୍କର ସମଗ୍ର ସମୟତ ଛୁଟି—ଏକ ଅଖଣ୍ଡ ମଧ୍ୟାନ୍ତର । ସେଦିନ ପାଖ ଚର୍ଚ୍ଚରେ ଘଣ୍ଟାବାଜେ ସକାଳୁ ଏବଂ ସେମାନେ ସେହି ଆଜରେ ସେମାନଙ୍କର ସବୁଠାରୁ ଭଲ ପୋଷାକ ପିନ୍ଧି ନିଅନ୍ତି । ସେମାନେ ବିସ୍ମୃତ ହେଇ ଯାଆନ୍ତି ଯେ ସେମାନଙ୍କର ତଥାକଥିତ ସର୍ବୋତ୍କୃଷ୍ଟ ପରିଧାନ ବିବର୍ଣ୍ଣ ହେଇଯାଇଥାଏ ଓ ଏପରି ବିକୃତ ହେଇଯାଇଥାଏ ଯେ ସେମାନେ ପ୍ରତ୍ୟେକ ଦିଶୁଥାଆନ୍ତି ଜଣେ ଜଣେ ଲୁଗାପିନ୍ଧା ପାଳଭୂତ ପରି । ତଥାପି ତାକୁ ପିନ୍ଧିବାରେ ଥାଏ ସେମାନଙ୍କର ପରମତୃପ୍ତି । ଯୌବନ ନୁହେଁ । ଯୌବନର ସ୍ମୃତି ଟିକକ ଯଦି ଫେରିଆସି ପାରେ !

ସେମାନଙ୍କର ଅତୀତ ଜୀବନରେ ଧର୍ମ ସହିତ ବା ଚର୍ଚ୍ଚ ସହିତ କି ଘନିଷ୍ଠତା ଥିଲା ସେ କଥା ସମସ୍ତଙ୍କର ଅଗୋଚର । କିନ୍ତୁ ସେଦିନ ସକାଳ ଚା'ର ଆସର ଅପେକ୍ଷାକୃତ ସଂକ୍ଷିପ୍ତ ହେଇଯାଏ ଏବଂ ସେମାନେ ଏକାକୀ ବା ଗୋଷ୍ଠୀବଦ୍ଧ ହେଇ ରମାନା ହୁଅନ୍ତି ଚର୍ଚ୍ଚ ଆଡ଼କୁ ।

ମ୍ୟାଦାମ୍ ସୋପାର୍ଣ୍ଣୋ ଯା'ନ୍ତି ପ୍ରତି ରବିବାର । ମୋସିଓ ଅନେକ ଦିନ ଯାଇ ପାରନ୍ତି ନାହିଁ । ପୁରୁଣା ଶ୍ୱାସଟା ଦିନେ ଦିନେ ତାଙ୍କୁ ଏକାଥରକେ କାବୁ କରି ପକାଏ । କିନ୍ତୁ ମ୍ୟାଦାମ୍ ସୋପାର୍ଣ୍ଣୋଙ୍କୁ ଯିବାକୁ ପଡ଼ିବ ସକାଳର ଚା' ନ ଖାଇ ଏବଂ ସେଠିଯାଇ ବିଶପ୍‌ଙ୍କର ଗୁରୁଗମ୍ଭୀର ତର୍ଜମା ଶୁଣିସାରିବା ପରେ ତାଙ୍କୁ ବେଞ୍ଚ୍ ପାଖ ପ୍ୟାଡ୍ ଉପରେ ଆଣ୍ଠେଇ ରହି ପ୍ରାୟ ବେଶ୍ କିଛି ସମୟ ପର୍ଯ୍ୟନ୍ତ ମାତା ମେରୀଙ୍କ ଉଦ୍ଦେଶ୍ୟରେ ଦୁଇଟି ମହମବତୀ ଜାଳନ୍ତି—ଗୋଟିଏ ବେରେଟ୍ ପାଇଁ ଓ ଅନ୍ୟଟି ରବର୍ଟ ପାଇଁ । ଗୋଟିଏ ମାତ୍ର ପ୍ରାର୍ଥନା, ରବର୍ଟ ଫେରିଆସୁ—ମାତ୍ର ଥରକ ପାଇଁ ରବର୍ଟ ଫେରିଆସୁ ଆଉ ଗୋଟିଏ ଫୁଲତୋଡ଼ା ମାତ୍ର ଉପହାର ଦେଇ କହନ୍ତି, ''ବୋଁଜୁର୍ ପେର୍, ବୋଁଜୁର ପେର୍ ତମେମାନେ ଭଲଅଛ ?'' କେବଳ ଏତିକି । ଏବଂ ଏଠିକାର ଲୋକମାନେ ଦେଖନ୍ତୁ ଯେ' ମୋର ସତରେ ରବର୍ଟ ବୋଲି ଗୋଟିଏ ପୁଅ ଅଛି ଯିଏ ବିଳମ୍ବରେ ହେଲେ ମଧ ସେମାନଙ୍କର କୁଶଳ ଜିଜ୍ଞାସା କରିବାକୁ ଏଇ ମୃତ୍ୟୁପୁରୀକୁ ଆସେ ।

କିନ୍ତୁ ଚର୍ଚ୍ଚକୁ ଯିବା ବାଟରେ ମ୍ୟାଦାମ୍ ସୋପାର୍ଣ୍ଣୋ ସବୁଥରପରି ଆତଙ୍କିତ ହେଇଉଠନ୍ତି । ଗଲାବେଳେ ବାଟରେ ବସିଥାଏ ସେଇ ମୋସିଓ ବେଲୋ ଖଣ୍ଡେ ଭଙ୍ଗା ସେଡ୍ ତଳେ ଆଉ ତା' ଆଗରେ ଥୁଆ ହେଇ ରହିଥାଏ ଛୋଟ ବଡ଼ ଅନେକ କଫିନ୍‌ର ବାକ୍ସ । କେତେବେଳେ ହାତୁଡ଼ି ଧରି ଠକ୍ ଠକ୍ କରୁଥାଏ ତ କେତେବେଳେ ଗୋଟାଏ ରଞ୍ଜା ଧରି ରସ୍ ରସ୍ କରି କାଠ ଉପରୁ ଛିଲ୍‌କା ଉଠେଇ ଚାଲିଥାଏ । ଉଃ ! ସେ ଶବ୍ଦରେ ମ୍ୟାଦାମ୍ ସୋପାର୍ଣ୍ଣୋଙ୍କର ଧମନୀରେ ରକ୍ତ ସ୍ରୋତ କ୍ଷିପ୍ର ହେଇ ଉଠେ । ତାଙ୍କର ମନେହୁଏ ଯେପରି ଆସନ୍ନ ମୃତ୍ୟୁର ପ୍ରତି ପଦପାତରେ ସେ ଶବ୍ଦ ଝଂକୃତ ହେଇ ଉଠୁଚି ।

ତା'ଛଡ଼ା ଏଇ ବେଲୋ ଲୋକଟା ବି ଦେଖିବାକୁ କେମିତି । ଗାଲ ସାରା ବୋଝେଇ ଝୋଟ ପରି ଦାଢ଼ି । ବେଳେ ବେଳେ କେଜାଣି କାହିଁକି ଠୋ' ଠୋ' କରି ହସିଉଠେ । ସେ ଲୋକଟାକୁ ସେ ସହ୍ୟ କରି ପାରନ୍ତି ନାହିଁ । ତା'ର ଭଲ ଜମେ ବର୍ ସାଙ୍ଗରେ ।

ବର୍ ଚର୍ଚ୍ଚ ଯାଏନି, କାରଣ ସେ ଇହୁଦୀ କ୍ୟାଥଲିକ୍ ଗୀର୍ଜା ଭିତରକୁ ତା'ର ଯିବା ମନା । ସେ ପ୍ରତି ରବିବାର ଦିନ ବରଂ ଖଣ୍ଡେ ଦଦରା ଟୁଲ୍ ଟାଣିଆଣି ମୋସିଓ

ବୋଲୋଙ୍କର କଫିନ୍ ୱାର୍କସପ୍‌ରେ ବସି ବସି ଗପ ଜମାଏ । ବବ୍ କୁହେ, ''ତମର ଏସବୁ କଫିନ୍ ଗୁଡ଼ାକ ବଡ୍ଡ ଛୋଟ, ମୋ' ପରି ଲମ୍ବା ଲୋକ ତା' ଭିତରେ ପଶିବାକୁ ଅନେକ ଅସୁବିଧା ହବ ।'' ବେଲୋ କୁହେ, ''ନାଁ ମୁଁ ଅନେକ ଲମ୍ବାଲୋକ ଦେଖିଛି,ଟିକିଏ ହେଲେ ଅସୁବିଧା ହୁଏ ନାହିଁ, ମୃତ୍ୟୁ ସମସ୍ତଙ୍କୁ ଗୋଟାଏ ଉଚ୍ଚତାକୁ ନେଇ ଆସେ, ସମାନ କରିଦିଏ, ବଡ଼, ଛୋଟ, ଲମ୍ବା, ଧନୀ, ଗରିବ, ରାଜା ପ୍ରଜା ସମସ୍ତଙ୍କୁ ।'' ତା'ପରେ ପୁଣିଥରେ ସେଇ ପ୍ରାଣଖୋଲା ଠୋ' ଠୋ' ହସ, ଏପରି କି ଗୀର୍ଜା ଭିତର ପର୍ଯ୍ୟନ୍ତ ଶୁଣାଯାଏ । ବବ୍ ତଥାପି ଗମ୍ଭୀର ହେଇ ଗୋଟାଏ କଫିନ୍‌କୁ ଆଖିରେ ପଲକ ନ ପକେଇ ଚାହିଁ ରହିଥାଏ । କେତେବେଳେକେ କୁହେ, ''କିନ୍ତୁ ବେଲୋ, ମୋ'ର କଫିନ୍‌କୁ ଏତେ ଶକ୍ତ କାଠରେ ତିଆରି କରିବ ନାହିଁ । ମାଟି ତଳଟା ଅନେକ ଅନ୍ଧାର ଆଉ ଖୁବ୍ ସନ୍ତସନ୍ତିଆ, କିଏ ସେଠି ପଡ଼ିରହିବାକୁ ଚାହିଁବ ବେଶି ସମୟ ? କାଠ ଟା ହାଲୁକା ହେଲେ ଶୀଘ୍ର ମାଟି ଖାଇଯାଏ ଆଉ ତା' ପରେ ପରେ ମୋ'ର ସାରା ଦେହରେ ଚରି ଯିବେ କୋଟି କୋଟି ମ୍ୟାଗଟ୍—ମୋ'ର ଏଇ ଗୋଟାଏ ଦିହ ପୁଣିଥରେ ରୂପାନ୍ତରିତ ହେଇଯିବ କୋଟି କୋଟି ଜୀବନରେ । ଆଚ୍ଛା ବେଲୋ, ଏକଥା କ'ଣ ସତ ମ୍ୟାଗଟ୍‌ମାନେ ପ୍ରଥମେ ମଣିଷର ଆଖିକୁ ଖାଇବାକୁ ଆରମ୍ଭ କରି ଦିଅନ୍ତି ?''

ବେଲୋ ଖୁବ୍ ଗମ୍ଭୀର ହେଇ ଚାହିଁ ରହିଥିଲା ବବ୍ ମୁହଁକୁ । କହିଲା, ''ତମେ ଏସବୁ କାହିଁକି କହୁଛ ବବ୍ । ଗତ ସପ୍ତାହରେ ପିଟର୍ ମରିବା ପୂର୍ବରୁ ମୋ ପାଖକୁ ପ୍ରାୟ ଆସୁଥିଲା ଓ କହୁଥିଲା ଯେ, ସେ ଠିକ୍ ଜାଣି ପାରୁଛି ତା' ପଛେ ପଛେ ସବୁବେଳେ କିଏ ଜଣେ ବୁଲୁଚି । ଏପରି କି ସିଏ ସିଡ଼ିର ବାନିଷ୍ଟର ଦେଇ ଓହ୍ଲେଇବାକୁ ଭୟ କରୁଥିଲା । ଶେଷରେ ପୁଣି ସିଏ ଦୋତାଲା ଉପରୁ ତଳକୁ ଡେଇଁ ଆତ୍ମହତ୍ୟା କଲା । ମୋର ବିଶ୍ୱାସ ସିଏ ଆତ୍ମହତ୍ୟା କରି ନାହିଁ । ତାକୁ ସେଇ ଲୋକ ତଳକୁ ଠେଲି ଦେଲା ପରା !

ଇତିମଧ୍ୟରେ ଚର୍ଚ୍ଚର ସର୍ଭିସ୍ ସମାପ୍ତ ହେଇଛି ଓ ଓଲ୍‌ଡ଼ ହୋମ୍‌ର ବାସିନ୍ଦାମାନେ ଧୀରେ ଧୀରେ ଫେରୁଛନ୍ତି ମ୍ୟାଜୋକ୍ଷ ପୁର୍‌ଲେ ଭିଆଇଏସ୍ (ଓଲ୍‌ଡ଼ ହୋମ୍)କୁ ।

ସେମାନେ ଫେରିଆସି ଅନ୍ୟ ଦିନ ପରି ଘର ଭିତରକୁ ଯିବେ ନାହିଁ । ବସି ରହିବେ ଲନ୍‌ରେ ଏଠି ସେଠି, ଯେମିତି ସେମାନେ ଲନ୍‌ର ନେଳୀ ଘାସ ନ ହେଲେ ଖରା ଉପଭୋଗ କରୁଛନ୍ତି । କିନ୍ତୁ ଅସଲ ମତଲବ୍ ହେଲା ସେମାନେ ଅପେକ୍ଷା କରି ରହିଛନ୍ତି ସେମାନଙ୍କର ବନ୍ଧୁ ବାନ୍ଧବମାନଙ୍କୁ, କାଳେ କିଏ ସେମାନଙ୍କୁ ମନେ ପକେଇ ଭିଜିଟ୍ କରିବାକୁ ଆସିବ ପରା ! କାହାର କାହାର ପୁଅ-ବୋହୂ ନହେଲେ ଝିଅ-ଜୁଆଁଇମାନେ ହାତରେ କିଛି ଗୋଟାଏ ଉପହାର ଧରି ଆସନ୍ତି । କିଛି ସମୟ ଗପସପ

କରି ସାରିବା ପରେ ହାତର ମଣିବନ୍ଧରେ ଥିବା ଘଣ୍ଟାକୁ ଚାହାନ୍ତି । ଓଲ୍ଡ଼ ହୋମ୍‌ର ଅଧିବାସୀ କୁହେ, ଅନେକ ବେଳ ହେଇଗଲାଣି । ତମେମାନେ ସବୁ ଅନେକ ବିଜି ଲୋକ, କାହିଁକି ବା ସମୟ ନଷ୍ଟ କରି ଆସ । ମୁଁ ତ ବେଶ୍ ଅଛି । ତା'ପରେ ପରେ ସେମାନେ କୁହନ୍ତି ଓଭୁଆ (ସି ୟୁ ଏଗେନ୍) ।

କିନ୍ତୁ ଆସନ୍ତା ରବିବାର ପୁଣି ସେହିମାନଙ୍କୁ ଅପେକ୍ଷା କରି ବସିରହେ ଏଇ ଲୋକଟି । ସେମାନେ ନ ଆସିଲେ ପ୍ରଚଣ୍ଡ ଅଭିମାନରେ ଲୋକଟି ଘର ଭିତରକୁ ଫେରେ ଓ ସମସ୍ତଙ୍କୁ କହେ ଯେ ସେ ତା'ର ପୁଅ-ବୋହୂଙ୍କୁ ଏ ରବିବାର ଆସିବାକୁ ମନା କରି ଦେଇଥିଲା ।

ମ୍ୟାଦାମ୍ ସୋପାର୍ଣ୍ଣୋ ମନେ ମନେ ଭାବନ୍ତି, ମୋ'ର ତ ପୁଅ ନାହିଁ । ତାକୁ ଗୋଟାଏ ଡାହାଣୀ ଗିଳିଦେଲା ଗୋଟାପଣେ । କିନ୍ତୁ ତମମାନଙ୍କର ପୁଅ ଜୋଇଁ ଥାଉ ଥାଉ ତମେମାନେ କାହିଁକି ଆସି ପଡ଼ିଛ ଏଠି ସୋସାଲ୍ ସିକ୍ୟୁରିଟି ସ୍କିମ୍‌ର ଦାକ୍ଷିଣ୍ୟ ଉପରେ ନିର୍ଭର କରି ?

ମ୍ୟାଦାମ୍ ସୋପାର୍ଣ୍ଣୋ ଘର ଭିତରକୁ ଆସିବାରୁ ମୋସିଓ ବେରେଟ୍‌ଙ୍କର ସିଏସ୍ତା ବାଧାପ୍ରାପ୍ତ ହେଲା । ମ୍ୟାଦାମ୍ ବିଡ୍ ବିଡ୍ ହେଲା ପରି କହୁଥାଆନ୍ତି, 'ଆଜି ବି ଦେଖିଲି ବବ୍ ବସି ସେ ବେଲୋ ସାଙ୍ଗରେ ଗପ ଜମେଇ ଥିଲା । କ'ଣ ବା ଥାଏ ଗୋଟାଏ କଫିନ୍ ତିଆରି କରିବା ଲୋକ ସାଙ୍ଗରେ ଏତେ ଗପିବା ପାଇଁ ?'' ମୋସିଓ କେବଳ ଥରେ ଆଖି ଖୋଲି କହିଲେ, ''ହଟ୍ ଓ୍ୟାଟର୍ ବଟଲ୍‌ରେ ଟିକିଏ ଗରମ୍ ପାଣି କରିଦବ ସିଲ୍ ଭୁପ୍ଲେ ?''

ମଧ୍ୟାହ୍ନ ଭୋଜନ ସମୟ ବିଳମ୍ବ ଅଛି ।

ଆସିଥିବା ଆଗନ୍ତୁକମାନେ ଫେରିଗଲେଣି ।

ହଠାତ୍ ଗୋଟାଏ ସାଇରେନ୍ ବାଜି ଉଠିଲା । ହିଟର୍ ଉପରେ ପାଣିର ପାତ୍ର ଛାଡ଼ିଦେଇ କବାଟ ଖୋଲି ଚାଲିଗଲେ ବାହାରକୁ। ମ୍ୟାଦାମ୍ ରାଲେ କୋରିଡ଼ର୍‌ରେ ଦୌଡ଼ିଛନ୍ତି ଉନ୍ମାଦନୀ ପରି ଚିତ୍କାର କରି କରି ଏବଂ ତାଙ୍କ ପଛେ ପଛେ ଦୌଡ଼ିଛନ୍ତି କିଛି ଅନ୍ତେବାସୀ ଓ ହୋମ୍‌ର କିଛି କର୍ମଚାରୀ । ସେ କ୍ରମାଗତ ଚିତ୍କାର କରି ଚାଲିଛନ୍ତି ଗୋଟିଏ କଥା—ତାଙ୍କର ଝିଅକୁ କିଏ ଚୋରି କରି ନେଇଯାଇଛି ।

ଠିକ୍ ସମୟରେ ତାଙ୍କୁ ଧରି ନ ପକେଇଥିଲେ ସେ ଯେ କ'ଣ କରିଥାଆନ୍ତେ ସେ କଥା କେହି ଅନୁମାନ କରି ପାରିବ ନାହିଁ। ତାଙ୍କୁ ଧରି ପୁଣି ଥରେ ତାଙ୍କ ଘରକୁ ଆଣି, ଘରକୁ ତନ୍ନ ତନ୍ନ କରି ଖାନତଲାସ କଲା ପରେ ରେଡ଼ିଓ ପଛପଟୁ ତାଙ୍କ ଝିଅ ମିଳିଲା । ଚାଖଣ୍ଡେ ଉଚ୍ଚତାର ଗୋଟାଏ କନା କଣ୍ଢେଇ, ମୁଣ୍ଡ ଦୁଇପାଖକୁ ଝୁଲି ପଡ଼ିଚି ବକଟେ

ବକଟେ ଝୋଟରେ ବୁଣା ବେଣୀ । ସେଥିରେ ଯତ୍ନ କରି ବନ୍ଧାଯାଇଛି ନାଲି ରିବନ୍ । ମିସେସ୍ ରାଲେ ଶାନ୍ତ ହେଲେ ଓ ଏକାଥରକେ ଚୁପ୍ ହେଇଗଲେ ପୂର୍ବ ପରି । ଡାକ୍ତର ଆସି ତାଙ୍କର ବାହୁରେ ଫୁଟେଇ ଦେଲେ କି ଗୋଟାଏ ଥାନାଲ୍ ଛିକ୍ ଇଞ୍ଜେକ୍ସନ୍ ।

ଏଇ ମିସେସ୍ ରାଲେ ପ୍ରାୟ ସବୁ ସମୟରେ ଚୁପ୍‌ଚାପ୍ ଥାଆନ୍ତି । କାହା ସହିତ କିଛି କଥାବାର୍ତ୍ତା କେବେହେଲେ କରନ୍ତି ନାହିଁ । ସେ ଏକା ଏକା ବସି ରହିଥାଆନ୍ତି ତାଙ୍କ ରୁମ୍ ଭିତରେ ଆଉ ତାଙ୍କ ପାଖରେ ସବୁବେଳେ ଶୋଇ ରହିଥାଆନ୍ତି ଏଇ ଝିଅ ଆଉ ଗୋଟିଏ ହିପ୍‌ପୀ ପରି ବାଳ ରଖି ପୁଅ । କେତେବେଳେ ସେ ବସି ରହନ୍ତି ମଝି ସୋଫାରେ ଓ ଦୁଇ ସୋଫାରେ ବସନ୍ତି ପୁଅ ଆଉ ଝିଅ । ମନକୁ ମନ ସେମାନଙ୍କ ସାଙ୍ଗରେ କଥା କୁହନ୍ତି । ପୁଣି ବେଳେ ବେଳେ ଶାସନ କରନ୍ତି । ପୁଣି କେତେବେଳେ ସେମାନଙ୍କୁ ଗେଲ କରି ହସି ହସି ଗଡ଼ି ଯାଆନ୍ତି ।

ଅନେକ ସମୟରେ ସେ ଖାଇବା ଟେବୁଲକୁ ଆସିବାକୁ ଭୁଲି ଯାଆନ୍ତି । ତାଙ୍କର ଦେଲୁନେ ତାଙ୍କ ଘରକୁ ପଠେଇ ଦିଆଯାଏ । ପ୍ଲେଟ୍ ଆଣିବାକୁ ଗଲାବେଳେ ଦେଖାଯାଏ ତାଙ୍କର ଖାଦ୍ୟ ଥାଏ ଅଭୁକ୍ତ । ପଚାରିଲେ ସଂକ୍ଷିପ୍ତ ଉତ୍ତର ଆସେ, ''ପିଲାଙ୍କର ଦିହ ଖରାପ, ସେମାନେ ଖାଇଲେ ନାହିଁ ।''

ତାଙ୍କର ଅତୀତ ବିଷୟରେ କେହି କିଛି ଜାଣନ୍ତି ନାହିଁ । କେବଳ ଶୁଣାଯାଏ ସେ କୁଆଡ଼େ କିଛିଦିନ ଆଫ୍ରିକାରେ ରହିଯାଇଥିଲେ ଓ ସେଠୁ ଫେରି ସେ ଆସି ରହୁଥିଲେ ଭର୍ସାଇରେ ତାଙ୍କର ଏକ ପରିତ୍ୟକ୍ତ ପୈତୃକ ସାଟୋରେ । ସେଠି ସେ ଅନ୍ୟ କେତେ ଜଣକୁ ନେଇ ଗୋଟିଏ ସିଁଆସ୍ ସିର୍କଲ ଗଢ଼ିଥିଲେ । ଅନେକ ସମୟରେ ସେମାନଙ୍କର ସେସନ୍‌ସ ବସୁଥିଲା ଓ ନିଜେ ମିସେସ୍ ରାଲେ ଥିଲେ ଜଣେ ଅସାଧାରଣ, ଦକ୍ଷ ଓ ସ୍ପର୍ଶକାତର ମିଡ଼ିୟମ୍ । ତାଙ୍କର ଗଭୀର ଏକାଗ୍ରତା ଫଳରେ ପରଲୋକଗତ ଲୋକମାନେ ତାଙ୍କର ମାନସପଟରେ ଧରାଦଉଥିଲେ ଓ ସେ ସେମାନଙ୍କ ସହିତ ସହଯୋଗ ସ୍ଥାପନ କରି ପାରୁଥିଲେ । କେଉଁ ଅବସ୍ଥାରେ ସେ ଆସି ଏଇ ହୋମ୍‌ରେ ପହଞ୍ଚିଲେ ସେ ବିଷୟରେ ସମସ୍ତେ ନୀରବ ।

ହିଟର୍ ଉପରେ ପାଣି କେତେବେଳୁ ଟକ୍‌ମକ୍ ହେଇ ଫୁଟିଲାଣି । ସୁଇଚ୍‌ଟାକୁ ବନ୍ଦ କରିଦେଲେ ମିସେସ୍ ସୋପାର୍ଣ୍ଣୋ । ହଟ୍ ଓ୍ୟାଟର୍ ବ୍ୟାଗ୍‌ରେ ପାଣି ଭର୍ତ୍ତି କରୁ କରୁ ସେ ଭାବୁଥିଲେ କିପରି ଦିନକୁ ଦିନ ଅବସନ୍ନ ହେଇ ପଡୁଛନ୍ତି ମୋସିଓ ବେରେଟ୍ । ଆଖିଗୁଡ଼ାକ ରକ୍ତହୀନ ହେଇଯାଇ ଦେଖାଯାଉଛି କଷ୍ଟାର୍ଡ଼ ପରି ସାଧା ସାଧା । ତା' ଦେହରେ ମିଶି ରହିଛି ସାମାନ୍ୟ ପତଳା ହଳଦିଆ ରଙ୍ଗ ଯେମିତି ।

ହଟ୍ ଓ୍ୟାଟର୍ ବ୍ୟାଗ୍ ଠିପି ବନ୍ଦ କରି ସାରି ଭାଁଦେଇ ବ୍ୟାଗ୍‌ଟାକୁ ନେଇ ଥୋଇଲେ ବେରେଟ୍‌ଙ୍କର ଅଣ୍ଟା ଉପରେ ।

ବେରେଟ୍ ସାମାନ୍ୟ କର ଲେଉଟେଇ ବ୍ୟାଗ୍‌ଟାକୁ ଟିକିଏ ହାତରେ ଟାଣିନେଲେ ଓ ତା'ପରେ ପଚାରିଲେ, ''ଆଜି କେତେ ତାରିଖ ହେଲା ପୋତିଆମି ।'' ମ୍ୟାଦାମ୍ ସୋପାର୍ଣ୍ଣୋ ଆତଙ୍କିତ ହେଇ ଉଠିଲେ । ସେ ଠିକ୍ ଏଇ ପ୍ରଶ୍ନଟିକୁ ଆଶଙ୍କା କରୁଥିଲେ । ଯଦି ମୋସିଓ ବେରେଟ୍ ଜାଣିବାକୁ ଚାହିଁ ନାହାନ୍ତି ''ଲୁଜୁର୍-ଦେ-ପେର୍'' ଦିନଟିକୁ ତାହାହେଲେ ଏଠି ତାରିଖ ପଚାରିବାର ଆଉ କ'ଣ ମାନେ ଥାଇପାରେ ? କଥାଟାକୁ ଏଡ଼େଇ ଯିବାକୁ କେବଳ ଭାଁଦେଜ୍ କହିଲେ, ''ମୁଁ ଡାଏରୀ ଦେଖି କହୁଛି ।''

''ଲୁଜୁର୍-ଦେ-ପେର୍'' ଦିନଟି ପ୍ରତ୍ୟେକ ଫରାସୀ ପିତା ପକ୍ଷରେ ଏକ ବହୁ ଆକାଙ୍‌କ୍ଷିତ ଦିବସ । ଏ ଦିନଟିକୁ ସେମାନେ ପିତୃଦିବସ ହିସାବରେ ଅତି ସନ୍ତର୍ପଣରେ ପାଳନ କରନ୍ତି । ବାପା ନୂଆ ଲୁଗାପଟା ପିନ୍ଧେ ଏବଂ ମା' ଓ ପିଲାମାନେ ବାପାଙ୍କ ପାଇଁ ଆଣନ୍ତି ପ୍ରଚୁର ଉପହାର । କିଏ ଆଣେ ଓ୍ୟାଇନ୍‌ର ବୋତଲତ କିଏ ଆଣେ ସିଗାର୍ ବକ୍‌ସ, ଆଉ କିଏ ବାଛି ବାଛି ଆଣେ ନେକ୍‌ଟାଇ । ସାଇ ପଡ଼ିଶା ପରିଚିତ ଲୋକମାନେ କିଛି ନ ହେଲେ ଆଣନ୍ତି ଫୁଲର ତୋଡ଼ା ଓ ପରିବାରର ପ୍ରଥମ ଲୋକଟି ସହିତ କିଛି ଓ୍ୟାଇନ୍ ଟୋଷ୍ଟ କରି ଚାଲିଯାଆନ୍ତି। ଘରେ ସେଦିନ ପ୍ରଚୁର ଖାଦ୍ୟ ତିଆରି କରାଯାଏ ଏବଂ ତିଆରି କରାଯାଏ ସବୁଠାରୁ ସୁସ୍ୱାଦୁ ଡିସ୍ । ବାପାଙ୍କର ଇଚ୍ଛା ଅନୁଯାୟୀ ସେଦିନର ଅବସର ବିନୋଦନ ପାଇଁ କାର୍ଯ୍ୟସୂଚୀ କରାଯାଏ । ବାପାମାନେ ସେଦିନ କିଛି ନକରି କେବଳ ଅଳସରେ ଓ୍ୟାଇନ୍ ପିଅନ୍ତି ଓ ସୁସ୍ୱାଦୁ ଖାଦ୍ୟ ଖାଇ ଦିନଟିକୁ ବିତେଇ ଦିଅନ୍ତି । ଏ ସମସ୍ତ ପରିବର୍ତ୍ତେ ପିତାଟି ପୁତ୍ରକନ୍ୟାମାନଙ୍କର ସୁଖମୟ ଜୀବନ ପାଇଁ ଆଶୀର୍ବାଦ କରେ କେବଳ । ସେପ୍‌ଟେମ୍ବର ମାସ ଆସିଗଲେ ପ୍ରତ୍ୟେକ ଫରାସୀ ପିତା ଏଇ ଦିନଟିକୁ ପ୍ରତୀକ୍ଷା କରି ରହିଥାଏ ।

କିନ୍ତୁ କାହଁ ପୁତ୍ର, କାହିଁ ପୁତ୍ରବଧୂ, ଯେଉଁମାନେ ମୋସିଓ ବେରେଟ୍‌ଙ୍କ ପାଇଁ କିଣି ଆଣିବେ ମୂଲ୍ୟବାନ୍ ଉପହାର । କାହିଁ ସେ ସୁଯୋଗ, ଯେଉଁଥିରେ ତାଙ୍କ ପାଇଁ ରନ୍ଧା ହେଇ ପାରିବ ତାଙ୍କର ପ୍ରିୟ ଡିସ୍ ସବୁ ?

ମୁହୂର୍ତ୍ତକ ପାଇଁ ମ୍ୟାଦାମ୍ ସୋପାର୍ଣ୍ଣୋଙ୍କର ମୁହଁ ବିବର୍ଣ୍ଣ ହେଇଗଲା ।

ଆସନ୍ତା ସପ୍ତାହରେ ପ୍ରଥମ ସୋମବାର ପଡୁଛି ''ଲୁଜୁର୍-ଦେ-ପେର୍ ।''

ସେହିଦିନ ସନ୍ଧ୍ୟାବେଳେ ମ୍ୟାଦାମ୍ ସୋପାର୍ଣ୍ଣୋ ପୁଣି ଥରେ ବଜାରକୁ ଗଲେ କିଛି ଆବଶ୍ୟକୀୟ ଜିନିଷ କିଣିବାକୁ ।

ତା'ର ଦୁଇଦିନ ପରେ–

ଡା'ର ଆସର କମନ୍ ଡାଇନିଂ ରୁମ୍‌ରେ ପ୍ରାୟ ସମାପ୍ତ ହବା ଉପରେ ।

ଠିକ୍ ଏଇ ସମୟରେ ଗୋଟାଏ ଅତିକାୟ ମଟର ସାଇକଲ୍ ନେଇ ଆସିଲା ଫାକ୍‌ଟିଅର୍ (ପୋଷ୍ଟମ୍ୟାନ୍) । ସ୍ୱାଭାବିକ ଭାବରେ ସମସ୍ତେ ଟିକିଏ ଉତ୍କଣ୍ଠିତ ହୋଇ ଉଠିଲେ । କିଏ ମ୍ୟାଗାଜିନ୍‌ରୁ, କିଏ ଚେସ୍ ବୋର୍ଡ଼ରୁ ମୁହଁ ଉଠେଇ ଚାହିଁ ରହିଲେ ଫାକ୍‌ଟିଅର୍‌ର ପ୍ରବେଶ ପଥକୁ। ବାହାରର ପୃଥିବୀ ସହିତ ସଂପର୍କ ରଖିବା ପାଇଁ ଏହି ଫାକ୍‌ଟିଅର୍‌ଟି ହେଉଛି ସେମାନଙ୍କର ଏକମାତ୍ର ଗବାକ୍ଷ ।

କିନ୍ତୁ ମ୍ୟାଦାମ୍ ସୋପାର୍ଣ୍ଣୋ ଅତି ନିବିଷ୍ଟ ଭାବରେ ବସି ରହି ତଥାପି ଚା' ଖାଉଥିଲେ ଓ ମୋସିଓ ସୋପାର୍ଣ୍ଣୋ ଖଣ୍ଡେ ସିଗାର୍ ଲଗେଇ ତାଙ୍କ ଆଗରେ ଖୋଲି ଧରିଥିଲେ ସେଦିନର ସମ୍ବାଦପତ୍ର ଅତ୍ୟନ୍ତ ନିର୍ଲିପ୍ତ ଭାବରେ । ସେ କୌଣସି ସମ୍ବାଦ ଆଶା କରୁ ନଥିଲେ ।

ହଠାତ୍ ଫାକ୍‌ଟିଅର୍ ପଶି ଆସି ଘୋଷଣା କଲା, ''ମୋସିଓ ସୋପାର୍ଣ୍ଣୋ ।''

ସମସ୍ତେ ଟିକିଏ ଉତ୍କର୍ଣ୍ଣ ହୋଇପଡ଼ିଲେ ।

''ଆପଣଙ୍କର ପାଞ୍ଚହଜାର ଫ୍ରାଁର ମନିଅର୍ଡ଼ର ଆସିଛି ।''

ଡାଇନିଂ ହଲ୍‌ରେ ବସିଥିବା ସବୁ ଲୋକଙ୍କର ଆଖିର ଡୋଳା ସ୍ଥିର ହୋଇଗଲା ଯେପରି । ମୁହଁକୁ ଉଠଉଥିବା ଚା' କପ୍ ରହିଗଲା ଅର୍ଦ୍ଧପଥରେ, ଚୁରୁଟ୍ ସେମିତି ହାତରେ ଲାଗି ରହିଲା, ମୋଟ ଉପରେ ସେଠିକାର ସମସ୍ତ ଚରିତ୍ର ଫ୍ରିଜ୍ କରିଗଲେ, ଯେମିତି ହଠାତ୍ ଚରିତ୍ରମାନେ ଫ୍ରିଜ୍ କରିଯାଆନ୍ତି ଚଳଚ୍ଚିତ୍ରର ପର୍ଦ୍ଦାରେ । ପାଞ୍ଚହଜାର ଫ୍ରାଁ ! ମୋସିଓ ବେରେଟ୍ ମଧ୍ୟ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇଗଲେ ।

ହଲ୍‌ର ଦଶ ବାର ଜଣ ଲୋକ ଆସି ଘେରିଗଲେ ସେମାନଙ୍କ ଟେବୁଲ୍ ପାଖରେ । ରବର୍ଟ ପଠେଇଚି ଏ ଟଙ୍କା ଆସନ୍ତା ସପ୍ତାହରେ ମୋସିଓ ସୋପାର୍ଣ୍ଣୋଙ୍କର 'ଲୁଜୁର୍-ଦେ-ପେର୍' ଦିନର ଉତ୍ସବ ପାଇଁ । ତା' ସହିତ ମଧ୍ୟ ଏକ ନାତିଦୀର୍ଘ ଚିଠି । ବେଶ୍ ଆତ୍ମବିଶ୍ୱାସର ସହିତ ସେ ଚିଠି ଖୋଲିଲେ ମ୍ୟାଦାମ୍ ସୋପାର୍ଣ୍ଣୋ ସେଇ ଜମି ରହିଥିବା ଲୋକମାନଙ୍କ ସାମ୍ନାରେ । ବେରେଟ୍‌ଙ୍କୁ ଅଭିନନ୍ଦନ ଜଣେଇବାର ପାଳା ସରିଗଲା ପରେ, ମ୍ୟାଦାମ୍ ସୋପାର୍ଣ୍ଣୋ ଚିଠି ପଢ଼ିଲେ । ଲେଖା ଅଛି—ମନ୍ ମେର୍, ଅନେକ ଇଚ୍ଛା ଥିଲେ ମଧ୍ୟ କାମର ଚାପରେ ଯାଇ ପାରିଲି ନାହିଁ । ଘର ତିଆରି କାମ ସାରିବାକୁ ମତେ ଏଇଠି ରହିବାକୁ ପଡ଼ିବ, ତା' ନ ହେଲେ ଆଜିକାଲି କାମ ଆଗେଇ ପାରୁ ନାହିଁ । ଆଶା କରେ ତମେ ଓ ବାପା ଭଲ ଥିବ । ଆଉ ମାତ୍ର ମୋ' ପାଇଁ ମାସେ ଦୁଇମାସ ସେଠି ଅପେକ୍ଷା କରିଯାଅ ।

'ଲୁଜୁର୍-ଦେ-ପେର୍' ପାଇଁ ପାଞ୍ଚହଜାର ଫ୍ରାଁ ପଠାଇଲି । ବାପାଙ୍କ ପାଇଁ ନୂଆ ସୁଟ୍ କରେଇଦବୁ ଓ ତାଙ୍କର ବନ୍ଧୁମାନଙ୍କୁ ଡାକି ହୋଟେଲ୍‌ରେ ପାର୍ଟି ଦବୁ ସେଦିନ ।

ସେ ଟ୍ୟୁବ୍-ରୋଜ୍ ଫୁଲ ପସନ୍ଦ କରନ୍ତି । ତେଣୁ ତାଙ୍କ ପାଇଁ ଟ୍ୟୁବ୍ ରୋଜ୍‌ର ବୁକେ କିଣିଦବୁ—ମଝିରେ ମଝିରେ କିଛି ଲାଭେଣ୍ଡର୍ ଫୁଲ ଦେଇପାରୁ । ଏ ପଇସାରୁ ଗୋଟିଏ ପଇସା ସଞ୍ଚୟ କରିବାକୁ ଚେଷ୍ଟା କରିବୁ ନାହିଁ—ସବୁଯାକ ଯେପରି ସେଇଦିନ ଖର୍ଚ୍ଚ ହୁଏ ଓ ବାପା ଯେପରି ସନ୍ତୁଷ୍ଟ ହୁଅନ୍ତି । ନୋରା ତମ ପାଇଁ ଓ ବାପାଙ୍କ ପାଇଁ ତା'ର ଶୁଭେଚ୍ଛା ପଠଉଛି, ଇତ୍ୟାଦି ଇତ୍ୟାଦି x x ।

ତୁମର ସ୍ନେହର

ରବର୍ଟ

ଟଙ୍କା ଓ ଏ ଚିଠି ଦେଖି କାହାର ମନରେ ସନ୍ଦେହ ରହିଲା ନାହିଁଯେ ପ୍ରକୃତରେ ସୋପାର୍ଣ୍ଣୋ ଦମ୍ପତିଙ୍କ ରବର୍ଟ ବୋଲି ଗୋଟିଏ ପୁଅ ଅଛି ଏବଂ ସେ ଆସି ଏମାନଙ୍କୁ ନିକଟ ଭବିଷ୍ୟତରେ ତା'ର ନିଜଘରକୁ ନେଇଯିବ । ପୂର୍ବରୁ ଯେଉଁ ଲୋକମାନେ ମଝିରେ ମଝିରେ ଖୁଞ୍ଚା ଦେବାକୁ ଛାଡୁ ନଥିଲେ, ମଝିରେ ମଝିରେ ଅହେତୁକୀ ମନ୍ତବ୍ୟ କରି ଅପମାନିତ କରୁଥିଲେ ସେଇମାନେ ହିଁ ପ୍ରଥମେ ଗମ୍ଭୀର ହେଇ ଅପସରି ଗଲେ ସୋପାର୍ଣ୍ଣୋଙ୍କର ଚା' ଟେବୁଲ୍ ପାଖରୁ ।

କିନ୍ତୁ ମିସେସ୍ ସୋପାର୍ଣ୍ଣୋଙ୍କର ମୁହଁରେ ଫୁଟି ଉଠୁଥିଲା ଆତ୍ମସନ୍ତୋଷର ଏକ ପ୍ରଚ୍ଛନ୍ନ ଦୀପ୍ତି । ସୋପାର୍ଣ୍ଣୋ ଦମ୍ପତିଙ୍କର ଚା'ର ଆସର ସେଦିନ ମଉଳିଥିଲା ଅନେକ ଡେରିରେ କାରଣ ସେମାନେ ସେହି ସମୟତକ ସନ୍ତରଣ କରୁଥିଲେ ଆପାତଃ ଆତ୍ମସନ୍ତୋଷର ନାତିଷ୍ଣୋ ବାରି ପ୍ରବାହର ଏକ ସୁଇମିଂ ପୁଲ୍‌ରେ ।

ସେମାନେ କିଛି ସମୟ ପରେ ନିଜର ପ୍ରକୋଷ୍ଠକୁ ଫେରି ଆସିଲେ ।

ମୋସିଓ ସୋପାର୍ଣ୍ଣୋ କହିଲେ, ''ଭାଁଦେଜ୍, ରବର୍ଟକୁ ଭୁଲ୍ ବୁଝନାହିଁ । ନୋରା ସିନା ଆମର ମନମୁତାବକ ହେଇପାରିଲା ନାହିଁ କିନ୍ତୁ ରବର୍ଟ ମନେ ରଖିଛି । ମୁଁ ଜାଣେନା ରବର୍ଟର ଘର ତିଆରି କେବେ ଶେଷ ହବ । ମୁଁ ହୁଏତ ସେ ଘରେ ରହି ପାରିବି ନାହିଁ କିନ୍ତୁ ତମେ ନିଶ୍ଚୟ ସେ ସୁଯୋଗ ପାଇବ ।'' ମ୍ୟାଦାମ୍ ସୋପାର୍ଣ୍ଣୋଙ୍କର ଧୈର୍ଯ୍ୟ ନଥିଲା ଏ କଥାର ଜବାବ୍ ଦବା ପାଇଁ । ସେ ବ୍ୟସ୍ତ ହୋଇ ଉଠିଲେ, 'ଲୁଜୁର୍-ଦେ-ପେର୍' ଦିନଟିର ସେଲିବ୍ରେସନ୍ ପାଇଁ ।

ଅନେକ କଥା କରିବାର ଅଛି । ମୋସିଓଙ୍କ ପାଇଁ ନୂଆ ସୁଟ୍ ବରାଦ୍ ଦିଆଯିବ, ଆଗନ୍ତୁକ ଅତିଥିମାନଙ୍କର ତାଲିକା କରାଯିବ ଓ ସେହି ଅନୁସାରେ ବରାଦ୍ ଦିଆଯିବ, ଆଗନ୍ତୁକ ଅତିଥିମାନଙ୍କର ତାଲିକା କରାଯିବ ଓ ସେହି ଅନୁସାରେ ହୋଟେଲ୍‌ରେ ମଧ୍ୟ ସିଟ୍ ରିଜର୍ଭ କରାଯିବ—ପୁଣି ଯିବାକୁ ପଡ଼ିବ ଫ୍ଲୋରିଷ୍ଟ ପାଖକୁ, ଟ୍ୟୁବ୍ ରୋଜ୍ ସହିତ ଲାଭେଣ୍ଡର୍ ଫୁଲ ଦେଇ ବୁକେ ତିଆରି କରିବାକୁ, ଆଉ ତ ହାତରେ ମାତ୍ର ଚାରିଟା ଦିନ ।

ମିସେସ୍ ସୋପାର୍ଣ୍ଣୋ ସବୁ ଠିକ୍ ଠିକ୍ କରିବା ପାଇଁ ବେଶ୍ ବ୍ୟସ୍ତ ରହିଛନ୍ତି ଏଇ କିଛି ଦିନ । ବେରେଟ୍ ସହିତ ବାରମ୍ବାର ଆଲୋଚନା କରି ନିମନ୍ତ୍ରିତ ଅତିଥି ମାନଙ୍କର ନାଁ ଠିକଣା କରାଯାଇଛି । ସେଥିରୁ କିଛି ନାଁ ବାଦ୍‌ଦିଆ ଯାଇଛି । ପୁଣି ସେଥିରେ ଯୋଗ ମଧ୍ୟ କରାଯାଇଛି କାହା କାହା ନାଁ । ଭାବି ଭାବି ସେଦିନର ମେନୁ ଠିକଣା କରାଯାଇଛି ।

କାଲି ସକାଳ ପାହିଲେ 'ଲୁଜୁର୍-ଦେ-ପେର୍' ।

ପ୍ରଥମେ ଉଠିଲେ ମିସେସ୍ ସୋପାର୍ଣ୍ଣୋ ।

ମୋସିଓ ବେରେଟ୍ ଉଠିଲା ବେଳକୁ ତାଙ୍କର ପ୍ରକୋଷ୍ଠଟି ଏକ ଅଭିନବ ରୂପ ଧାରଣ କରିଥିଲା । ଘରର ଡ୍ରେପର୍‌ସବୁ ବଦଳି ଯାଇ ନୂଆ ଡିଜାଇନ୍‌ର ଡ୍ରେପର୍ ଲାଗିଛି । ରେଡ଼ିଓରୁ ଶୁଣାଯାଉଛି ମ୍ୟୁଜିକ୍ ଅତି ଆସ୍ତେ । ବେଡ୍ ହେଡ୍ ଟେବୁଲ୍ ଉପରେ ଥୁଆ ଯାଇଛି ଗୋଟାଏ ନୂଆ କ୍ୟୁବାନ୍ ସିଗାର୍ ବକ୍‌ସ ଓ ଫୁଲଦାନୀରେ ରଜନୀଗନ୍ଧାର ସ୍ତବକ ଯାହା ଏକାଧାରରେ ଶାନ୍ତି ଓ ଦୀର୍ଘ ଜୀବନର ପ୍ରତୀକ ।

ମ୍ୟାଦାମ୍ ସୋପାର୍ଣ୍ଣୋ ମୋସିଓ ବେରେଟ୍‌ଙ୍କୁ ଆଲିଙ୍ଗନ କରି ଦୀର୍ଘ ସମୟଧରି ଚୁମ୍ବନ କରି ସାରି କହିଲେ, ''ବୋଁଜୁର୍ ମନ୍ ଆମି, ମୁଁ ତୁମର ଦୀର୍ଘ ଜୀବନ କାମନା କରୁଛି ।'' ମୋସିଓ କହିଲେ, ''ମର୍ସି ବୁକ୍‌କୁ'' ।

'ଲୁଜ୍‌ର୍-ଦେ-ପେର୍' ଦିନ ମଧ୍ୟ ଘଣ୍ଟା କଣ୍ଟା ପୂର୍ବପରି ଚାଲିଲା । ପାରମ୍ପରିକ ନିତ୍ୟକର୍ମ ଓ ପ୍ରାତ୍ୟହିକ ଚା'ପାନ ସମାପ୍ତ ହଉ ହଉ ଦିନ ଢଳି ଚାଲିଲା ମଧ୍ୟାହ୍ନର ପର୍ଯ୍ୟନ୍ତ ।

ଏଇ ସମୟତକ କିନ୍ତୁ ମୋସିଓ ସୋପାର୍ଣ୍ଣୋ ତାଙ୍କର ନୂଆ ସୁଟ୍ ଓ ବର୍ଣ୍ଣିଳ ନେକ୍‌ଟାଇ ପିନ୍ଧି ଫ୍ଲାୱାର ଭାଜ୍ ପାଖର ଇଜି ଚେୟାର୍‌ରେ ବସି ରହିଲେ ଜଣେ ଅବସର ନେଇଥିବା ଗଡ୍ ଫାଦର୍ ପରି, ଯାହାର ବହୁ ପୁତ୍ର, ପ୍ରପୌତ୍ର ଓ ପୁତ୍ରବଧୂମାନେ ସାଂସାରିକ ଜଞ୍ଜାଳରେ ବ୍ୟସ୍ତ ଓ ସେମାନେ ବୋଧହୁଏ ବର୍ତ୍ତମାନ ଜଣେ ଜଣେ ହେଇ ଆସିବେ ସେମାନଙ୍କର ସସଂଭ୍ରମ ଅଭିବାଦନ ଜଣାଇବାକୁ–ନୀରବରେ କହିବାକୁ, ''ମହାଶୟ, ଆମର ଜନ୍ମ ଓ ପ୍ରତିପାଳନ ପାଇଁ ଆମେ ଆପଣଙ୍କ ନିକଟରେ ଋଣୀ, ଆମେ ଆପଣଙ୍କର ବଶ୍ୟତା ସ୍ୱୀକାର କରୁଛୁ । ଆପଣ ଅବସର ଗ୍ରହଣ କରନ୍ତୁ । ପରିଣତ ବୟସରେ ଆପଣଙ୍କର ପ୍ରତିରକ୍ଷା ଓ ପ୍ରତିପାଳନ ଆମମାନଙ୍କର ପବିତ୍ର କର୍ତ୍ତବ୍ୟ ।''

ଗମ୍ଭୀର ଆତ୍ମପ୍ରତ୍ୟୟ ନେଇ ବସିରହିଥିଲେ ମୋସିଓ ସୋପାର୍ଣ୍ଣୋ, ଯେମିତି ସେ' ଏସବୁ ଶୁଣି ମୁଗ୍ଧ ହେଇ କେବଳ କହିବେ ''ଆମେନ୍'' ଓ ସେତେବେଳେ

ତାଙ୍କ ପାଖରେ ବସି ରହିବା ଉଚିତ୍ ତାଙ୍କର ପତି-ଗରବିଣୀ ସ୍ତ୍ରୀ, ସ୍ୱାମୀଙ୍କର ଏହି ଉଷ୍ଣ ସମ୍ବର୍ଦ୍ଧନା ଉପଭୋଗ କରିବାକୁ ।

ମଧ୍ୟାହ୍ନ ପୁଣିଥରେ ଅତିକ୍ରାନ୍ତ ହେଇଗଲା ।

ସଂଧ୍ୟା ପ୍ରାୟ ଆଗତ ।

ସୋପାର୍ଣ୍ଣୋ ଦମ୍ପତି ନିଜକୁ ଯଥା ସମ୍ଭବ ସୁସଜ୍ଜିତ କରି ବାହାରିଲେ ପୂର୍ବ ନିର୍ଦ୍ଧାରିତ ଇଗଲ୍ସ୍ ନେଷ୍ଟ୍ ହୋଟେଲ୍କୁ ଯେଉଁଠାରେ ଏକାଧାରରେ ଫ୍ରେଞ୍ଚ ଓ ଇଟାଲିଆନ୍ ଡିସ୍ ଖାଇବାକୁ ମିଳିଥାଏ ଓ ସଂଲଗ୍ନ ଲା' ଆପରଟିଫ ବାର୍ ମଧ୍ୟ ଚମତ୍କାର । ସେମାନେ ସେମାନଙ୍କର ପ୍ରକୋଷ୍ଠ ବନ୍ଦକରି ବାହାରିଗଲା ବେଳକୁ 'ଜଏ' ପରଫ୍ୟୁମର ଗୋଟିଏ କ୍ଷୁଦ୍ର ଆବର୍ତ୍ତ କୋରିଡ଼ରର ବାୟୁମଣ୍ଡଳକୁ ଆମୋଦିତ କରିତୋଳିଲା ।

ହୋଟେଲ୍ ଇଗଲ୍ସ୍‌ନେଷ୍ଟ ନିଅନ୍ ଆଲୁଅର ନିମନ୍ତ୍ରଣ ନେଇ ଠିଆହେଇଛି । ଆମୋଦ କାଙ୍ଗାଳ ଜନତାର ଭୀଡ଼ରେ ଦୁଇପଟର ପେଭ୍‌ମେଣ୍ଟ ଫାଟି ପଡୁଚି ଯେମିତି । ରେସ୍ତୁରାଁରେ ପ୍ରଚୁର ଭୀଡ଼ ଜମିଛି କିନ୍ତୁ ସୋପାର୍ଣ୍ଣୋ ଦମ୍ପତିଙ୍କ ପାଇଁ ରିଜର୍ଭ ହେଇଥିବା ହଲ୍‌ର ଅଂଶଟି ଅପେକ୍ଷାକୃତ ଜନ-ବିରଳ, ବ୍ୟାଣ୍ଡରେ କ'ଣ ଗୋଟାଏ ମ୍ୟୁଜିକ୍ ଶୁଣାଯାଉଛି—ଖୁବ୍ ଫାମିଲିଆର୍ ଅଥଚ ମନେ ପଡୁନାହିଁ—ହଁ ''ମାଇଁ ଡ୍ରିମ୍ କମ୍ ଟ୍ରୁ ଅଣ୍ଡର ଦି ବ୍ରିଜେସ୍ ଅଫ୍ ସାଇନ୍ ।'' ମନେ ପଡ଼ିଗଲା ହଠାତ୍ ଭାଁଦେଲ୍‌ର ଓ ତା'ର ଚକ୍ଷୁତାରକା ଦୁଇଟି ଉଜ୍ଜ୍ୱଳ ହେଇ ଉଠିଲା । କିନ୍ତୁ କେଜାଣି କାହିଁକି ମୋସିଓ ବେରେଟ୍ ମନେ ମନେ ଭାବୁଥିଲେ, ହୁଁ—ଡ୍ରିମ୍ କମ୍ ଟ୍ରୁ—ହୁଃ ।

ଅତିଥିମାନେ ଜଣେ ଜଣ କରି ଆସିବାକୁ ଆରମ୍ଭ କଲେଣି । ସମସ୍ତେ ଫର୍ମାଲ୍ ପୋଷାକ ପିନ୍ଧିଛନ୍ତି । କାହା ହାତରେ ଫୁଲର ତୋଡ଼ା, କାହା ହାତରେ ସିଗାର୍ ବକ୍ସ ତ କାହା ହାତରେ ଇଣ୍ଡିଆନ, ଫିଲିଗ୍ରୀ । ଓ୍ୱେଟରମାନେ ସ୍ଥିର ହେଇ ଠିଆ ହେଇ ରହିଛନ୍ତି ଆଦେଶ ଅପେକ୍ଷାରେ । ବରଫରେ ଛୋଟ ଛୋଟ ବାଲିଟିରେ ଅପେକ୍ଷା କରି ରହିଛନ୍ତି ସାମ୍ପେନ୍ ବୋତଲ ସବୁ । ସାମ୍ପେନ୍ ନହେଲେ କି 'ଲୁଜୁନ୍-ଦେ-ପେର୍' ସେଲିବ୍ରେସନ୍ କରାଯାଏ ? ଅତିଥିମାନେ ପାନ ପାତ୍ର ହାତକୁ ନେଲେଣି । କିଏ ସାମ୍ପେନ୍, କିଏ ଓ୍ୱାଇନ୍ ନହେଲେ ଅବା କିଏ ସ୍କଚ୍ ! ବ୍ୟାଣ୍ଡର ବିଟ୍ କ୍ଷିପ୍ର ହେଇ ଉଠିଲାଣି । ଏକା ସାଙ୍ଗରେ ସମସ୍ତେ, ନିଜ ନିଜର ପାର୍ଟନର୍ସ ନେଇ ନାଚ ଆରମ୍ଭ କରିଦେଲେ । ଆଃ ! କେତେ ଯୁଗପରେ ଏଇ ପରିବେଶ ଭିତରେ ନାଚୁଛନ୍ତି ମୋସିଓ୍ ଆଉ ମାଦାମ୍ ସୋପାର୍ଣ୍ଣୋ ।

ଶିଥିଳ—ବକ୍ଷା ଭାଁଦେଲ୍‌ର କଟି ବେଷ୍ଟନ କରି ନାଚୁଛନ୍ତି ମୋସିଓ ବେରେଟ୍ । ହଁ, ଦିନେ ଏଇ ବେରେଟ୍ ନାଚୁଥିଲା ଟ୍ରଟ୍, ଜାଜ୍, ସବୁକିଛି ଏବଂ ସେଥିପାଇଁ ତା' ସହିତ ନାଚିବା ପାଇଁ ସହରର ଝିଅମାନେ କ୍ୟୁ କରି ଠିଆ ହଉଥିଲେ । କିନ୍ତୁ ଆଜି ଶ୍ୱାସପୀଡ଼ିତ, ଶିଥିଳ ବେରେଟ୍, ନାଚୁଛି ବଲ୍ । କିନ୍ତୁ ନାଁ, ତଥାପି ତ ତା'ର ହାତର ଉଷ୍ଣ ଆଲିଙ୍ଗନ ଶିଥିଳ ହେଉ ନାହିଁ—ତଥାପି ତ ବେରେଟ୍‌ର ହାତର ଆଙ୍ଗୁଠି ଇଙ୍ଗିତ ଦବାକୁ ଅକ୍ଷମ ହେଇ ନାହିଁ। ନାଚୁ ନାଚୁ ବର୍ଷୀୟସୀ ମ୍ୟାଦାମ୍ ସୋପାର୍ଣ୍ଣୋଙ୍କର ମୁହଁ ଉପରକୁ ଝଲକାଏ ରକ୍ତ ଉଠି ଆସିଲା—ସେ ଯେମିତି ଲାଜରେ ଏତେଟିକେ ହେଇଗଲେ । ସ୍ତିମିତ ଆଲୋକର ସୁଯୋଗ ନେଇ ଭାଁଦେଲ୍ କହିଲା, "ୟୁ ମିସ୍ ଚିଭିଅସ୍ ବୟ୍ ।" କଥାଟାର କୌଣସି ପ୍ରଭାବ ଯେପରି ପଡ଼ିଲା ନାହିଁ ବେରେଟ୍‌ଙ୍କ ଉପରେ ।

ନାଚ ସରିବା ବେଳକୁ ବେଶ୍ କିଛି ବିଳମ୍ବ ହେଇ ଯାଇଥିଲା ।

ତା'ପରେ ହାତରେ ପାନ ପାତ୍ର ତଥାପି ଧରି ଅତିଥିମାନେ ଚାଲିଲେ ଖାଇବା ଟେବୁଲ୍ ଉପରକୁ ।

ଖାଦ୍ୟର କରାଯାଇଥିଲା ବିପୁଳ ଆୟୋଜନ ।

ଆଲେକ୍‌ଜାଣ୍ଡ୍ରା ସୁପ୍, ଲବ୍‌ଷ୍ଟର୍‌ରେ ତିଆରି ପମ୍ପାଡ଼ୋର୍, ଇଲ୍ ମାଛର ଲମ୍ପ୍ରୋଇ ଓ ଇଟାଲିଆନ୍ ମାଇମୋସା ସାଲାଡ୍, ଷ୍ଟ୍ରବେରୀର ପର୍ତ୍ତୁଗୀଜ୍ ସାଲାଡ୍, କିନ୍ତୁ ଏ ସମସ୍ତ ଖାଦ୍ୟ ଭିତରେ ଯାହା ଥିଲା ସବୁଠାରୁ ଆକର୍ଷଣୀୟ ତାହାହେଲା ଇଣ୍ଡିଆନ୍ ମଟନ୍ କବାବ୍ ।

ଖୁବ୍ ହଇହଲ୍ଲା ଭିତରେ ଖାଇବାର ପର୍ବ ସମାପ୍ତ ହେଲା ।

ଅତିଥିମାନେ ପ୍ରଚୁର ଧନ୍ୟବାଦ ଦେଇ କର ମର୍ଦ୍ଦନ କରି ବିଦାୟ ନେଲେ ଓ ବେଶ୍ କିଛି ସମୟ ଧରି ଓଭୁଆ, ଓଭୁଆ, (ସି ୟୁ ଲେଟର୍) ଶବ୍ଦରେ ରେସ୍ତୁରାଁର ପ୍ରବେଶ ଦ୍ୱାର ପ୍ରତିଧ୍ୱନିତ୍ୱ ହେଲା ।

ଅତିଥିମାନେ ଯିବା ପରେ ଯେଉଁ ଦୁଇଜଣ ରହିଗଲେ ତଥାପି ସେମାନେ ହେଲେ ମୋସିଓ ଓ ମ୍ୟାଦାମ୍ ସୋପାର୍ଣ୍ଣୋ ।

ରାତି ବେଶ୍ ହେଇଗଲାଣି । ଏକ ନିର୍ଜ୍ଜନ ବୁଲ୍‌ଭାର ଫୁଟ୍ ପାଥିରେ ପାଦ ଗଣି ଗଣି ଫେରୁଛନ୍ତି ସୋପାର୍ଣ୍ଣୋ ଦମ୍ପତି । କାହାରି ମୁହଁରେ କଥା ନାହିଁ । ସେମାନଙ୍କର ଏକମାତ୍ର ଅନୁଭବ କ୍ୟୁବାନ୍ ସିଗାର୍‌ର ମିଠା ଗନ୍ଧ ।

ହୋମ୍‌ରେ ସବୁ ଚୁପ୍ ଚାପ୍ । ଏଠି ମଧ୍ୟ 'ଲୁଜୁର୍-ଦେ-ପେର୍' ସେଲିବ୍ରେଟେଡ୍ କରାଯାଇଥିବ । କିନ୍ତୁ ତା ଗୋଟାଏ ବାହାନା ମାତ୍ର । ହୁଏତ ଆଉ ଗୋଟାଏ ମେନ୍ ଡିସ୍

ଦିଆଯାଇଥିବ । ଗୋଟାଏ ଡେସେଟ୍ ଅଧିକା କରାଯାଇଥିବ । ଉତ୍ସବର ସମାପ୍ତି ଘୋଷଣା କରି ତଥାପି କେତେଟା ଲାଲ୍, ନୀଳ ବଲ୍‌ବ୍ ଜଳୁଥିଲା ଓ ଜଣେ କ୍ଳାନ୍ତ ବବୁର୍ଚ୍ଚି ଡାଇନିଂ ହଲ୍‌ରୁ ଅବଶିଷ୍ଟ ପ୍ଲେଟ୍ ଓ ଛୁରୀକଣ୍ଟା ଉଠେଇ ନେଇ ଯାଉଥିଲା ।

ମୋସିଓ ଓ ମ୍ୟାଦାମ୍ ସୋପାର୍ଣ୍ଣୋ ତାଙ୍କର ଘର ଭିତରକୁ ପଶି ଦୁଆର ଭିତରୁ ବନ୍ଦ କରିଦେଲେ । ତା'ପରେ ହଠାତ୍ ବେରେଟ୍ ଭାଁଦେଜ୍‌ର ପିଠି ଉପରେ ହାତ ରଖି କହିଲେ, ''ମନ୍ ଆମି, ଆଜି ଦିନର ସଫଳ ସେଲିବ୍ରେସନ୍ ପାଇଁ ସମସ୍ତ କ୍ରେଡ଼ିଟ୍ ତମର ହିଁ ପ୍ରାପ୍ୟ ।'' ହଠାତ୍ ମ୍ୟାଦାମ୍ ସୋପାର୍ଣ୍ଣୋ ତାଙ୍କର ଦୁଇ ହାତରେ ମୁହଁ ଘୋଡ଼େଇ ନେଇ କଇଁ କଇଁ ହେଇ କାନ୍ଦି ଉଠିଲେ । ମୋସିଓ ବେରେଟ୍ ଲକ୍ଷ୍ୟ କଲେ ଭାଁଦେଜ୍‌ର ବାଁ ହାତର ଅନାମିକା ଆଙ୍ଗୁଠିରେ ଯେଉଁଠାରେ ତାଙ୍କର ପରିଣୟର ସଂକେତ ସ୍ୱରୂପ ହୀରକ ଅଙ୍ଗୁରୀୟ ଥିଲା ତାହା ଆଉ ନାହିଁ । ତା ଜାଗାରେ ଅଛି କେବଳ ଗୋଟାଏ ବୃତ୍ତାକାର ଚିହ୍ନ—ଧଳା—ଯେମିତି ସୂର୍ଯ୍ୟ କିରଣର ଅଭାବରେ ଘାସ ସବୁ ଧଳା ହେଇଯାଆନ୍ତି । କିନ୍ତୁ ଭାଁ ଦେଜ୍ ଭାବୁଥିଲା, ଏଇ ଖୁବ୍ ଭଲ ହୀରାର ମୁଦିଟାକୁ କାହିଁକି ନେଇଥାଆନ୍ତା ସେଇ କଫିନ୍ ତିଆରି କଲାବାଲା ମୋସିଓ ବେଲୋ ।

ବେରେଟ୍ ଭାଁଦେଜ୍‌କୁ ତାଙ୍କର ପ୍ରଶସ୍ତ ବକ୍ଷ ଉପରେ ଆଉଜାଇ ଆଣି ଧରି ରଖିଲେ କିଛିକ୍ଷଣ, ଭାଁଦେଜ୍‌ଙ୍କର ବିସ୍ଫୋରିତ ଭାବପ୍ରବଣତାର ଅବସାନ ହବା ପର୍ଯ୍ୟନ୍ତ । କିଛି ସମୟ ପରେ ଭାଁଦେଜ୍ ଛାତି ଉପରୁ ନିଜକୁ ମୁକ୍ତ କରି ଦୁଇ ହାତରେ ଆଖିର ଲୁହ ପୋଛିଲେ ।

ସେମାନଙ୍କ ସାମ୍ନା କାନ୍ଥରେ ରବର୍ଟର ଗୋଟାଏ ଅଏଲ୍ ପେଣ୍ଟିଂ ହସୁଥିଲା ।

ପୁଣିଥରେ ଭାଁଦେଜ୍‌କୁ ଆଲିଙ୍ଗନ କରି ମୋସିଓ ସୋପାର୍ଣ୍ଣୋ ଘରର ଆଲୁଅ ହଠାତ୍ ବନ୍ଦ କରିଦେଲେ । କିନ୍ତୁ ତଥାପି ସେମାନେ ଜାଣନ୍ତି ଓ ବୋଧହୁଏ ରବର୍ଟ ଜାଣେ ସେମାନଙ୍କର ଏହି କୃତ୍ରିମ, ଶୀତଳ ଅସଫଳ ରତିକ୍ରିୟା, ମ୍ୟାଦାମ୍ ସୋପାର୍ଣ୍ଣୋଙ୍କର ଗର୍ଭରେ ଉଦୟ କରି ପାରିବ ନାହିଁ ଆଉ ଗୋଟିଏ ଜେମ୍‌ସ୍ କି ୱାଲ୍‌ଟର୍ ।

ଫେରାରୀ ରବର୍ଟ ରହିଗଲା ଏକ ଓ ଅନନ୍ୟ ।

ସର୍ବୋପରି ଏଇ ଓଲ୍‌ଡ୍ ହୋମ୍‌ର ସମସ୍ତ ଅଧିବାସୀ ଜାଣନ୍ତି ଯେ ଆଜି 'ଲୁଜୁର୍-ଦେ-ପେର୍' ଦିବସ ହେଲେ ମଧ ସବୁଦିନ ପରି ଆଜି ମଧ ମୃତ୍ୟୁ ସେମାନଙ୍କର ଛାତ ଉପରେ ଅବତରଣ କରିବ, କଳା କଳାର ଦୁଇ ବିରାଟ ପକ୍ଷ ନେଇ ଆସ୍ତେ ଆସ୍ତେ ନିଃଶବ୍ଦରେ ଗୋଟାଏ ଡ୍ରାକୁଲା ପରି, ଯାହାର ଦୁଇଟି ଛୋଟ ଛୋଟ ଆଖି ଅନ୍ଧାରରେ ବି ଝଟକି ଉଠେ ଦୁଇଟି ରୁବି ପଥର ପରି ଲାଲ୍ ଓ କରୁଣା ବିବର୍ଜିତ ।

●●

# କାବୁଲିଓ୍ୱାଲା

ପ୍ରକାଶ ଠିଆ ହେଇ ରହି ତା'ର ଚାରିପଟର ପରିବେଶକୁ ଆଉ ଥରେ ଦେଖି ନଉଥିଲା । ସବୁଦିନ ଠିକ୍ ଏଇ ସମୟରେ ପ୍ରକାଶ ତା'ର ପରିବେଶକୁ ଏମିତି ଭାବଲେଶ ଶୂନ୍ୟ ଆଖିରେ ଚାହିଁରହେ—ଯେମିତି ସିଏ ପ୍ରଥମ ଥର ପାଇଁ ଦେଖୁଛି ଏସବୁ ।

ଆସ୍‌ବେଷ୍ଟସ୍‌ର ବଖୁରିଆ ଘରଠାରୁ ଟିକିଏ ବାଟ ଛାଡ଼ି, କାହିଁ କେତେକାଳ ଧରି ଟ୍ରକ୍ ଟ୍ରାୟାର୍ ସବୁ ଉପରକୁ ଉପର ହେଇ ଠିଆ ହେଇ ରହିଛନ୍ତି । ଦେଖାଯାଉଛି କୁଣ୍ଡଳି ମୋଡ଼ି ଶୋଇ ରହିଥିବା ଗୋଟାଏ ଅତିକାୟ ଅଜଗର ସାପର ଆବ୍‌ଷ୍ଟ୍ରାକ୍ଟ ପେଣ୍ଟିଙ୍ଗ୍ ପରି । ମରୁଭୂମିରେ ଚେନାଏ ଘାସ ପରି ତା' ଉପରକୁ ନଇଁ ଆସିଛି ଗୋଟାଏ କିଶୋର କୃଷ୍ଣଚୂଡ଼ା ଗଛର କେଇ କେରା ସବୁଜ ଝିଲିମିଲି ପତର ।

ବାସ୍ ସେତିକି—ବାକୀଟା ଧୂ ଧୂ ବିଲ । ଖୁବ୍ ଦୂରରେ ଯୁଦ୍ଧ ପରେ ଗୋଟାଏ ପରିତ୍ୟକ୍ତ ବ୍ୟାରାକ୍ ପରି ଦିଶୁଚି ଗୋଟାଏ ଢାବାର ଜୀର୍ଣ୍ଣ ଚାଳର କିୟଦଂଶ ଓ ତା' ଆରପଟେ ଦେଖା ନଯାଉଥିଲେ ମଧ୍ୟ ଅନୁମାନ କରି ହୁଏ ଗୋଟାଏ ସ୍ୱଳ୍ପ ବ୍ୟବହୃତ ପେଟ୍ରୋଲ ପମ୍ପ, ଯାହାର ହତା ଭିତରେ କଦବା କ୍ୱଚିତ୍ ଗୋଟାଏ ଦୁଇଟା ଟ୍ରକ୍ ଠିଆ ହେଇ ହେଇ ଘୁମେଇ ପଡ଼ିଥାଆନ୍ତି ଓ ତା'ର ସାମ୍ନା ସିଟ୍‌ର ଖୋଲା ଦରଜା ଦେଇ ଦେଖି ହୁଏ ଟ୍ରକ୍ ହେଲପର୍‌ର ଅପରିଚ୍ଛନ୍ନ ଗୋଡ଼ର ବଳାଗଣ୍ଠି ଓ ତା'ର ଉପରକୁ ଗୋଟାଏ ତେଲ ଚିକିଟାଧରା ଲୁଙ୍ଗିର କିୟଦଂଶ ।

ସେଇ ବଖୁରିକିଆ ଆସ୍‌ବେଷ୍ଟସ୍ ଘର ଭିତରେ ଟିଣ ପାଟିଆ ଛନ୍ଦା ହୋଇଥିବା ଗୋଟାଏ ଖଟ ଉପରେ ବସି ରହି ପ୍ରକାଶ ଏକରକମ ଅଣନିଶ୍ୱାସୀ ହୋଇଯାଏ । ତା'ର ଦମ୍ ବନ୍ଦ ହେଇ ଆସେ ଯେମିତି । ଗୋଟାଏ କଣରେ ଗୋଟାଏ ଦୁଇଟା କଳଙ୍କି ଲାଗି ଯାଇଥିବା ଟ୍ରକ୍‌ର ରିମ୍ । କି ଗାଡ଼ିର କେଜାଣି ଗୋଟାଏ ଖୋଲା ଇଞ୍ଜିନ୍ ଯାହା ଉପରେ ତେଲ ଚିକ୍ ଚିକ୍ କରୁଚି—କେତେଟା ଟାୟାର୍ ଲିଭର୍ ଓ ଏ ପରିସ୍ଥିତିରେ ଅପରିହାର୍ଯ୍ୟ ଦୁଇ ତିନିଟା ମଇଳା କୋତରା କିରାସିନି ଢାବଲ ଯାହା ଭିତରେ ଯାବତୀୟତାର, ନଟ୍ ବୋଲ୍‌ଟ୍, ପୋଡ଼ା ବଲବ୍ ଓ ଗ୍ରୀଜ୍ ଡବାର ଝମେଲା ।

ବେଳେ ବେଳେ ପୋଡ଼ା ମୋବିଲ ଆଉ ବ୍ରେକ୍ ଅଏଲ୍‌ର କେମିତି ଗୋଟାଏ ଫୁରୁକୁଟିଆ ଗନ୍ଧ କେବିନରେ ଖେଳିଯାଏ ଓ ପ୍ରକାଶ ସେହି ସମୟତକ ଯଥାସମ୍ଭବ ତା'ର ନିଶ୍ୱାସ ବନ୍ଦକରି ରଖିବାକୁ ଚେଷ୍ଟା କରେ ।

ତା'ର ଜନ୍ମ ଜାତକରେ ବୋଧହୁଏ ଏୟା ହିଁ ଲେଖା ଥିଲା । ନହେଲେ ୟୁନିଭର୍ସିଟି କାମ୍ପସ୍‌ରୁ ବାହାରି ଆସି ତାକୁ କାହିଁକି କାମ କରିବାକୁ ପଡ଼ିଥାଆନ୍ତା ଜଣେ ମାର୍‌ଓ୍ୟାଡ଼ିର ଗୋଦାମ ରକ୍ଷକ ହେଇ ଯାହାର ଗୋଦାମରେ ଆମ୍ବାସଡ଼ର୍ ବା ଫିଆଟ୍ କାର୍ ରହେ ନାହିଁ । ବିଭିନ୍ନ ମିଲ୍‌ରୁ ବାହାରି ଆସୁଥିବା ହର୍‌ରଙ୍ଗୀ ସୁଦୃଶ୍ୟ ସୁଟ୍ ପିସ୍, ସାର୍ଟ ପିସ୍ ବା ଶାଢ଼ୀ ରହେ ନାହିଁ—ରହେ ମହାନଗରୀମାନଙ୍କର ଆବର୍ଜ୍ଜନା ଭିତରୁ ସଂଗୃହୀତ ହେଉଥିବା କଳଙ୍କି ଲଗା ଲୁହାର ଆଜେ ବାଜେ ଜିନିଷ, ଭଙ୍ଗା କାଚର ଟୁକୁରା, ଭଙ୍ଗା ତେଢ଼ା ଆଲ୍‌ମୁନିୟମ୍ ବାସନର ଭଗ୍ନାଂଶ ଓ ଟିଣ ପାତିଆ ।

ସେ' ସବୁକୁ କିଣିବାକୁ ହୁଏ ତରାଜୁରେ ମାପି ମାପି ବାରବୁଲା, ଅପରିଚ୍ଛନ୍ନ ସ୍ତ୍ରୀ ଲୋକମାନଙ୍କ ଠାରୁ ନ ହେଲେ ଅଗଣିତ ଷ୍ଟ୍ରୀଟ୍ ଅର୍‌ଚିନ୍ ମାନଙ୍କ ଠାରୁ, ଏଇ କିଣା ବିକା ଭିତରେ ଯେ କେତେବେଳେ କେମିତି ମୁନିସ୍‌ପାଲିଟି ମ୍ୟାନ୍ ହୋଲ୍ କଭର ବା' ପି.ଏଚ୍.ଡି.ର ପିତଳ ପାଣି କଳ ଆସି ନଯାଏ ତା' ନୁହଁ, କିନ୍ତୁ ସେସବୁର ରଖିବା ଜାଗା ଅଲଗା । ସେ ଖବର ନିଜେ ସେଠ୍ ରୋଷନ୍‌ଲାଲ ବୁଝନ୍ତି ।

ବିକ୍ରୀ କଲାବେଳେ ସେ ସବୁ ମାଲ୍‌କୁ ବଡ଼ ତରାଜୁରେ ମାପି ଟ୍ରକ୍‌ରେ ବୋଝେଇ କରିଦବାକୁ ହୁଏ । କିନ୍ତୁ କିଣିଲା ବେଳକୁ ଆଉ ବିକିଲା ବେଳକୁ ସେଇ ତରାଜୁର କଣ୍ଟାକୁ ଚାହିଁ ରହିବାକୁ ପଡ଼ିଥିବ ଯେମିତି ଶିକାରୀ ଚାହିଁ ରହେ ବନ୍ଧୁକ ବ୍ୟାରେଲ୍ ଆଗରେ ଥିବା ମାଛିକୁ । ସବୁ ତରାଜୁ ଯେତିକି ନବ ସେତିକି ଦବ । ଲୁହାକଣ୍ଟା, କାଚ ଟୁକୁରାରେ ଯାହା ସ୍ନେହ, ପ୍ରେମ ଇତ୍ୟାଦିରେ ସେୟା ପରା ! ନହେଲେ ଅପର୍ଣ୍ଣା କାହିଁକି... । ଗୋଟାଏ ଅଗ୍ନିଶଳାକା ଯେମିତି ପ୍ରକାଶର ହୃତ୍‌ପିଣ୍ଡ ଦେଇ ପଶି ଚାଲିଗଲା ଗୋଟାଏ ଜ୍ୱଳନ୍ତ ଉଲ୍‌କାର ବେଗରେ ।

ତାହା ଏକ ଭିନ୍ନ ପ୍ରସଙ୍ଗ । କିନ୍ତୁ ସେଠ୍ ରୋଷନ୍ ଲାଲ କହନ୍ତି ଟଙ୍କା କମେଇବାକୁ ହେଲେ ଏସବୁ ବାଜେ ଭାବପ୍ରବଣତାକୁ ସ୍ଥାନ ଦେଲେ ଚଳିବ ନାହିଁ । ଖରିଦ୍ କରିବ କମ୍ ଦାମ୍‌ରେ ଆଉ ଅପନା ମୁନାଫା ରଖି ବଜାରକୁ ଛାଡ଼ିବ ବେଶି ଦାମ୍‌ରେ । ମାଲ୍ ମାଲ୍ । ତାହା କଳଙ୍କି ଲଗା ଲୁହା ହଉ, ଗୋରୁ ଚମଡ଼ା ହଉ ନହେଲେ କେଉଁ ସୁନ୍ଦରୀ ରମଣୀର ଦିହର ଚମଡ଼ା ହଉ । ଏଇ କେତେ ପଦ କଥାରେ ରେଷନ୍‌ଲାଲ୍ ଜଟିଳ ଅର୍ଥନୀତି ତତ୍ତ୍ୱର ବୟାନ ଶେଷ କରନ୍ତି ।

କିନ୍ତୁ ସେଠୁ ପ୍ରକାଶକୁ ମଧ ଦିନେ ଆସ୍ଥାନ ଉଠେଇବାକୁ ପଡ଼ିଥିଲା । ସେ ରକ୍ଷା ପାଇ ଯାଇଥିଲା ଯେମିତି, ନହେଲେ ଆଉ କିଛିଦିନ ପରେ କଳଙ୍କିଲଗା ଲୁହାକଣ୍ଟା ଆଉ ଭଙ୍ଗା କାଚର ଟୁକୁରା ସବୁ ତା'ର ସମଗ୍ର ଆତ୍ମାକୁ ଗ୍ରାସ କରି ବସି ଥାଆନ୍ତେ । ଦିନେ ଦିନେ ମଝି ରାତିରେ ଟ୍ରକର ତାଲା-ଖୋଲିବ ଧଡ଼ଧାଡ଼ ହେଇ । ମାଲ୍ ଚାଲାଣ ହବ, ସେଇଟାଇ ତ ମାଲ୍ ଚାଲାଣ ହବାର ପ୍ରକୃଷ୍ଟ ସମୟ । ସକାଳ ହେଲା ବେଳକୁ ଟ୍ରକ୍ ପାରିହେଇ ଯାଇ ସାରିଥିବ ଜାମ୍‌ସୋଲା ଚେକ୍ ଗେଟ୍ ପୋଷ୍ଟ ।

ସେଠ୍ ରୋଷନ୍ ଲାଲ ଦିନେ କହିଥିଲେ, ପ୍ରକାଶର ଚେହେରା କୁଆଡ଼େ ଖୁବ୍ ସୁନ୍ଦର । ପୁଲିସ୍ ପୋଷାକ ପିନ୍ଧିଲେ ଚମତ୍କାର ଜବାନ୍ ପୁଲିସ୍ ସବ୍‌ନିସ୍‌ପେକ୍ଟର୍ ପରି ଦେଖାଯିବ । କାହାର ଜାଣିବାର ଜୁ ନାହିଁ ଯେ ପ୍ରକାଶ ପୁଲିସ୍ ସବ୍‌ଇନିସ୍‌ପେକ୍ଟର୍ ନୁହେଁ ।

ତାହାହେଲେ କ'ଣ ପ୍ରକାଶକୁ ନକଲି ପୁଲିସ୍ ସାଜି ଟ୍ରକରେ ଯିବାକୁ ହବ ଜାମ୍‌ସୋଲା ଘାଟଚେକ୍ ଗେଟ୍ ପାରି କରିଦବା ପାଇଁ ? ସେଠ୍ କୁହନ୍ତି ତା' ନହେଲେ ଏତେ ଗୁଡ଼ାଏ ପଇସା ଦେଇ କିଏ କାହିଁକି ବା' ପ୍ରକାଶକୁ ନୌକରୀ ଦବ କିଲୋ କିଲୋ ଲୁହା କଣ୍ଟା ଆଉ ଭଙ୍ଗା କାଚ ତଉଲିବା ପାଇଁ ବସି ବସି ? ଏ କାମ ତ ଗୋଟାଏ ମୁଲିଆ ଆସାନ୍‌ରେ କରି ପାରିବ ।

ହକ୍ କଥା । ଆଇ.ଏସ୍.ସି. ପାଶ୍ କରି ସାରି ମେଡ଼ିକାଲ୍ କଲେଜ୍‌ରେ ଭର୍ତ୍ତି ହବା ପାଇଁ ଘୁସ୍ ଦବାକୁ ପ୍ରକାଶ ବାପାଙ୍କୁ ପାଞ୍ଚଶହ ଟଙ୍କା ମାଗିଥିଲା । ବାପା କହିଥିଲେ, ମୁଁ ଟଙ୍କା ଗଛ ଲଗେଇ ନାହିଁ—ଟଙ୍କା ଗଛ ଉପରେ ଫଳେ ନାହିଁ । ଏକାଥରକେ ଓ୍ୟାଜିବ୍ କଥା, ଟଙ୍କା ଗଛ ଉପରେ ଫଳେ ନାହିଁ । କୌଣସି ମତେ କଳେବଳେ କୌଶଳେ, ତମ ସହିତ ଅହର୍ନିଶି ଲଢୁଥିବା ଷାଠିଏ କୋଟି ଲୋକଙ୍କୁ ବଞ୍ଚିତ କରି ଟଙ୍କାଟାକୁ ଆଦାୟ କରିବାକୁ ପଡ଼େ ।

ପ୍ରକାଶ ବହୁବାର ମନେ ମନେ ଦୋହରେଇ ନେଇଛି ଏଇ କଥାଗୁଡ଼ାକ, କିନ୍ତୁ ସେଥିରେ ତ କିଛି ହେଲେ ସମାଧାନ ହବାର ସମ୍ଭାବନା ନାହିଁ । ନିଜର ଅଜାଣତରେ ତା'ରହାତ ଚାଲିଗଲା ନିଜର ଛାତି ପକେଟ୍‌କୁ ଏମ୍ପ୍ଲଏମେଣ୍ଟ ଏକ୍‌ସଚେଞ୍ଜର ରେଜିଷ୍ଟ୍ରେସନ୍ କାର୍ଡ଼ ଖଣ୍ଡକର ଅବସ୍ଥିତି ଯାଞ୍ଚ କରିନବା ପାଇଁ । ଅଛି—କାର୍ଡ଼ଟା ଅଛି । କାର୍ଡ଼ଟା କୌଣସି ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦିଏ ନାହିଁ ବରଂ ନିଜକୁ ନିଜର ଦୟନୀୟ ଓ ଅସହାୟ ପରିସ୍ଥିତି ସଂପର୍କରେ ଅତ୍ୟନ୍ତ ତୀବ୍ର ଭାବରେ ସଚେତନ କରିଦିଏ ।

କିନ୍ତୁ କେତେଦିନ ଆଉ ଏମିତି ଘୁରି ବୁଲିବ ପ୍ରକାଶ । ଏଇ ତା'ର ବହୁ ପରିଚିତ ସହରରେ ହୁଏତ କଫି ବା ଚା' ଖାଇ ଖାଇ ଗପିବା ପାଇଁ, ନହେଲେ ଆଡ୍‌ଡ଼ା ଦବା

ପାଇଁ ପ୍ରଚୁର ଯାଗା ଅଛି । ଚେସ୍ କ୍ଲବ୍‌ରେ ଚେସ୍ ଖେଳି ମଧ ଅନେକ ବେକାର ସମୟ ଖର୍ଚ୍ଚ କରି ଦିଆଯାଇପାରେ, ନହେଲେ ଦେଶବନ୍ଧୁ ଲାଇବ୍ରେରୀରେ...ଧୂତ୍—ସେଗୁଡ଼ାକ ଆଉ ପଢ଼ି ଲାଭ ନାହିଁ । ପିଲାଦିନେ ପ୍ରକାଶକୁ କୁହାଯାଇଥିଲା ମହାପୁରୁଷମାନଙ୍କର ଜୀବନୀ ପଢ଼ିବା ପାଇଁ, କିନ୍ତୁ ଆଜି ଯଦି ସେମାନେ କୌଣସି ଯାଦୁ ବଳରେ ଆଉ ଥରେ ଜୀବନ ପାଇ ପୃଥିବୀକୁ ଫେରି ଆସନ୍ତେ ତାହାହେଲେ ସେମାନେ ସେମାନଙ୍କର ସହସ୍ର ସହସ୍ର ପୃଷ୍ଠା ଧରି ବକ୍ତବ୍ୟ ନିଶ୍ଚୟ ପ୍ରତ୍ୟାହାର କରି ନିଅନ୍ତେ ।

ସହରର ସେଇ ସବୁ ପରିଚିତ ସ୍ଥାନ ଯାହା ଦିନେ ପ୍ରକାଶ ପାଇଁ ଥିଲା ଅବାରିତ ତାହା କ୍ରମେ କ୍ରମେ ତା' ପାଇଁ ନିଷିଦ୍ଧ ହେଇ ଗଲାଣି । ସେଠିକି ସବୁ ଗଲେ ତ ଅନ୍ୟୁନ ତିନିଟା ହାଫ୍ କପ୍ ଚା', ବଣ୍ଡଲେ ବିଡ଼ି, ନହେଲେ ଗୋଟାଏ ପ୍ୟାକେଟ୍ ଚାରମିନାର୍‌ର ପ୍ରୟୋଜନ ଅଛି । ବନ୍ଧୁମାନେ ମଧ କାଳକ୍ରମେ ବିରଳ ହୋଇ ଆସିଲେଣି । କଦବା କ୍ୱଚିତ୍ ରାସ୍ତା ଉପରେ ଦେଖା ହେଇଗଲେ ଖାଲି ପଚାରନ୍ତି, କେମିତି ଅଛୁ ପ୍ରକାଶ, ଏକା ଥରକେ ଆଉଟ୍ ଅଫ୍ ସାର୍କୁଲେସନ୍ ହେଇଗଲୁ ଯେ ! ହାଃ ହାଃ କିଏ କହିଥିଲା— ବ୍ୟାଡ୍ ମନି ଡ୍ରାଇଭ୍‌ସ୍ ଆଉଟ୍ ଗୁଡ୍ ମନି ।

କିନ୍ତୁ ଏ ସବୁକୁ ବାଦ୍ ଦେଲେ ମଧ ସିରାଜ୍ ଖାଁ ଏଇ ସହର ଭିତରେ ବୁଲୁଚି ଗୋଟାଏ ମଣିଷ ଖିଆ ବାଘ ପରି ଛକି ଛକି । ସେଦିନ ହଠାତ୍ ହମିଦ୍‌ର ଗ୍ୟାରେଜ୍‌ରେ ପହଞ୍ଚି ଯାଇଥିଲା ଆଉ ପ୍ରକାଶକୁ କହିଥିଲା, ''ପର୍‌କାଶ୍ ବାବୁ, ସିରାଜ୍ ଇମାନ୍‌ଦାର୍ କି ସାଥି ଇମାନ୍‌ଦାରୀ କରତା ହେ । କୋଇ ବେଇମାନ୍ ସିରାଜ୍ କେ ମୁଠିଁ ସେ ଆଜ୍‌ତକ୍ ନିକଲ୍ ନେହିଁ ପାୟା ।'' ପ୍ରକାଶ କେବଳ ଅବସ୍ଥାଟାକୁ ସମ୍ଭାଳି ନବା ପାଇଁ କହିଥିଲା, ''ଖାଁ ସାହେବ୍, ନୌକ୍‌ରି ଅଭିତକ ମିଲା ନେହିଁ, ମିଲ୍‌ନେସେ ଆପକା ରୁପିୟା ପାଇ ପାଇ ଚୁକାଦେଙ୍ଗେ ।''

ସିରାଜ୍ ତା'ର ରୂପା ଗୋବଲଗା ଲାଠିଟାକୁ ଥରେ ଦୁଇଥର ମାଟି ଉପରେ ପରୀକ୍ଷା କରି ନେଇ ଥରେ କେବଳ ଚାହିଁଥିଲା ପ୍ରକାଶକୁ ଓ କହିଥିଲା, ''ଠିକ୍ ହାୟ'' । କିନ୍ତୁ ସେଦିନ ପ୍ରକାଶ ପାଖରେ ଠିଆ ହେଇ ରହିଥିଲା ହମିଦ୍ । ତା' ହାତରେ ଥିଲା ଗୋଟାଏ ଗାଡ଼ିର ହାଣ୍ଡଲ୍ ଆଉ ତା'ର ଦିହ ସାରା ଝାଳରେ ଭିଜି ଯାଇ ଦେଖା ଯାଉଥିଲା ଯେମିତି କେହି ପହିଲ୍‌ମାନ ସର୍କସର ରିଙ୍ଗ୍ ଭିତରକୁ ଆସିବା ଆଗରୁ ଖୁବ୍ ତେଲ ଦେଇ ଦିହକୁ ମର୍ଦ୍ଦନ କରେଇ ନେଇଛି । କିନ୍ତୁ ସବୁଠି ତ ହମିଦ୍ ନଥିବ । ପ୍ରକାଶ ଏଇ ଖାଁ ସାହେବମାନଙ୍କୁ ହାଡ଼େ ହାଡ଼େ ବୁଝେ ।

ପ୍ରକାଶ ସେହି ଲୁହା ପାତିଆ ଖଟ ଉପରେ ଟିକିଏ ଆଉଜି ପଡ଼ିଥିଲା । ଗୋଟାଏ ତେଲ ଚିକିଟା ତକିଆ ଉପରେ ମୁଣ୍ଡ ଦେଇ ଓ ଖଣ୍ଡେ ବିଡ଼ିରେ ନିଆଁ ଲଗେଇ

ଅହେତୁକୀ ଭାବରେ ଚାହିଁ ରହିଥିଲା କାଠର କଡ଼ିକୁ ଯାହା ଉପରେ ଛାଉଣୀ ହେଇଛି ଖଣ୍ଡ ଖଣ୍ଡ ଆସ୍‌ବେସ୍‌ଟସ୍ ସିଟ୍ । ସାପକାତି ପରି ଛାପିଛାପିକା ।

ପ୍ରକାଶ ଏଇ ଖାଁ ସାହେବମାନଙ୍କୁ ହାଡ଼େ ହାଡ଼େ ବୁଝେ ।

ଖାଁ ସାହେବ, ହଁ ଖାଁ ସାହେବ । ସେମାନେ ସିରାଜ୍ ହୁଅନ୍ତୁ, ହାଫିଜ୍ ହୁଅନ୍ତୁ ନହେଲେ ମୁଜିବର୍ ହୁଅନ୍ତୁ, ସମସ୍ତେ ଖାଁ ସାହେବ । ସମସ୍ତଙ୍କ ଦିହରେ ଛ'ସାତ ମିଟର୍ କପଡ଼ାର ପାନ୍ତଲୁନ୍, ଆଣ୍ଠୁ ତଳକୁ ଅନେକ ଝୁଲି ଆସିଥିବା କମିଜ୍, ଅଣ୍ଟା ପର୍ଯ୍ୟନ୍ତ ଲମ୍ବି ଆସି ଦିହରେ ଚିପି ହେଇ ବସିଥିବା ଓ୍ୱେଷ୍ଟ କୋଟ ପରି ଫତେଇ ଓ ସେ ଫତେଇର ଅସଂଖ୍ୟ ପକେଟ୍ ଭିତରୁ କୌଣସି ଏକ ଅଜ୍ଞାତ ସ୍ଥାନରେ ଲୁଚି ରହିଥିବା ଗୋଟାଏ ପ୍ରକାଣ୍ଡ ଓ୍ୱେଷ୍ଟ୍‌ଏଣ୍ଡ ଘଡ଼ି ଯାହାର ସାଧା ଡାଏଲ୍ ଉପରେ ବା'ର ପର୍ଯ୍ୟନ୍ତ ଅଙ୍କ ଲେଖା ରହିଥାଏ ରୋମାନ୍ ହରଫ୍‌ରେ । ତାଙ୍କର ଏଇ ଘଡ଼ିଟା ନିତାନ୍ତ ଦରକାର । ପ୍ରତିଟି ସେକେଣ୍ଡ ଟିକ୍ ଟିକ୍ ହେଇ ଚାଲି ଚାଲି ମିନିଟ୍, ଘଣ୍ଟା ହେଇ ଯାଆନ୍ତି । ସପ୍ତାହମାନେ ମିଶିଯାଇ ମାସ ହେଇ ଯାଆନ୍ତି ଓ ତା'ପରେ ଆସିଯାଏ ଖାଁ ସାହେବ୍ ମାନଙ୍କର ସୁଧ ଆଦାୟ କରିବାର ଦିନ ।

ସେଦିନ ଖାଁ ସାହେବ୍‌ମାନେ ଚାଲନ୍ତି ପହିଜ କାଟି, ତେଲଦିଆ ନିଶ ଉପରକୁ ଉଠି ଯାଇଥାଏ ତିଖ ହେଇ ଯେମିତି ନାକ ଦୁଇପଟେ ଦୁଇଟି ଚନ୍ଦ୍ର ବନ୍ଧନୀ । ମୁଣ୍ଡ ଉପରେ ଗିଲ କରା ପଗଡ଼ିର ବନାତ୍ ଉଠିଥାଏ ଯେମିତି ଜାଠ୍ ବାହିନୀର ସୁବେଦାର୍ । ଖାଁ ସାହେବ୍‌ର ଚାଲିରେ ମିର୍ଜାପୁର ପରି ଛୋଟ ସହରର ବଜାର୍ ତଫାତ୍ ହେଇଯାଏ ।

ପ୍ରକାଶ ସେତେବେଳେ କଅଁଳା ବାଛୁରୀ ପରି ଏତେ ଟିକେ ପିଲା । କେତେ ବା ତା'ର ବୟସ ହବ । ଦଶ କି ଏଗାର । ସେ ସେତେବେଳେ କେବଳ ବିସ୍ମିତ ହେଇ ଚାହିଁ ରହୁଥିଲା ଏଇ ଖାଁ ସାହେବ୍‌ମାନଙ୍କୁ ।

ଏମାନଙ୍କ ଘର କୋଠି ? ଏମାନେ କାହିଁକି ଏମିତି ଗୋବ ବସା ଚିତାଏ ଉଞ୍ଚର ଲାଠି ନେଇ ଦିନ ସାରା ବଜାର, କଚିରୀ ଆଉ ଅଫିସ୍ ପିଣ୍ଡାରେ ଲମ୍ବା ଲମ୍ବା ପାହୁଣ୍ଡ ପକେଇ ଚାଲନ୍ତି ? ସେମାନଙ୍କ ଚାଲିରେ ସିମିଟ୍ ପିଣ୍ଡା ମଚ୍ ମଚ୍ ଡାକେ ।

କିନ୍ତୁ ପୁଣି କୁଆଡ଼େ ହଠାତ୍ ଉଭାନ୍ ହେଇଗଲା ଏ ଖାଁ ସାହେବ । ଆଉ ସେଇ ଆପେଲ୍ ପରି ନାଲି ପଡ଼ି ଆସୁଥିବା ପଞ୍ଚହତା ମର୍ଦ୍ଦର ମୁହଁ ପାଖରେ ଆସି ଠିଆ ହେଲା ଆଉ ଜଣେ ଲୋକ ଯିଏ ଦୀର୍ଘତନୁ ଶୀର୍ଣ୍ଣ, ପଞ୍ଜରସାର । ମୁହଁଯାକ ବେଲ ଗଛର କଣ୍ଟା ପରି ମୁନିଆଁ ମୁନିଆଁ ଦର ପାଚିଲା ରୂଢ଼ । ସବୁବେଳେ ମୁହଁରେ ଗୋଟାଏ ଅସହାୟ ଆଉ ସବୁକିଛି ହଜେଇ ଦେଇଥିବା ଭାବ ।

ନିବାରଣ ଦା' ।

ନିବାରଣ ହାଲ୍‌ଦାର୍ । ମିର୍ଜାପୁର୍ ଏସ୍.ଡି.ଓ. ଅଫିସ୍‌ର ପୁରାତନ ନାଜିର୍ ।

ହଁ, ନିବାରଣ ଦା' ।

ସେହି ନାଁରେ ତାକୁ ସମସ୍ତେ ଜାଣନ୍ତି ଆଉ ଡାକନ୍ତି ମଧ୍ୟ । ଆଃ ! ରାତି ନ'ଟା ଦଶଟା ବେଳେ କି ଅସହାୟ ଭାବରେ ନିବାରଣ ଦା' ମିର୍ଜାପୁର ରାସ୍ତାରେ ଘୂରି ବୁଲେ । ଗରିଲାର ହାତ ପରି ଦୁଇଟା ହାତ ଝୁଲି ପଡ଼ିଥାଏ ତଳକୁ ଓ ଦୁଇଟା କ୍ଳାନ୍ତ ପାଦ ପଡୁଥାଏ ଏଠି ସେଠି । କେତେବେଳେ କେତେବେଳେ ନିବାରଣ ଦା' ଗୋଟାଏ ବରଗଛ ଗଣ୍ଡିରେ, ଗୋଟାଏ ଲାମ୍ପ ପୋଷ୍ଟରେ ନହେଲେ ପାନ ଦୋକାନର ଟିଣ କ୍ୟାବିନ୍ ଉପରେ ଭରା ଦେଇ ଠିଆ ହେଇ ରହିଥାଏ ନିଶ୍ଚଳ ହେଇ । ଯେପରି ତା'ର ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ ସବୁ କିଛି ସମାହିତ ହେଇ ଯାଇଛି । ଏକ ମୂର୍ତ୍ତିମନ୍ତ ବିପର୍ଯ୍ୟୟ । ନିବାରଣ ଦା' ମୁଣ୍ଡ ଉପରେ ଅସଂଖ୍ୟ ନକ୍ଷତ୍ର ସ୍ଥିର ହେଇ ଦେଖୁଥାଆନ୍ତି ନିବାରଣ ଦା'ର ଏଇ ପ୍ରସ୍ତରୀଭୂତ ମୁହୂର୍ତ୍ତମାନଙ୍କୁ ।

କିନ୍ତୁ ସକାଳେ ନିବାରଣ ଦା' ଥିଲା ଅନ୍ୟ ଏକ ମଣିଷ । ଖୁବ୍ ସକାଳୁ ଉଠି ସ୍ନାନାଦି ଶେଷ କରି ଗାୟତ୍ରୀ ଜପୁଥିଲା, ମଙ୍ଗଳାଷ୍ଟକ ଶୁଦ୍ଧ ଉଚ୍ଚାରଣ କରି ବୋଲି ବୋଲି ଦେବାର୍ପଣ ପାଇ ପୂଜା ଫୁଲ ଧରି ଯାଉଥିଲା ଶିବ ମନ୍ଦିରକୁ । ଅଫିସ ବାହାରିଲା ବେଳକୁ ବେକ ପାଖର ଶେଷ ବୋତାମଟି ପର୍ଯ୍ୟନ୍ତ ଅତ୍ୟନ୍ତ ସନ୍ତର୍ପଣରେ ବନ୍ଦ କରି ରଖୁଥିଲା ।

ସେ' ସମୟର ଏଣ୍ଟ୍ରାନ୍‌ସ ପାସ୍ । ଇଂରାଜୀରେ ଏକାଥରକେ ଦୋରସ୍ତ । ଡାହାଣକୁ ଢଳେଇ ଢଳେଇ ହସ୍ତାକ୍ଷର ଆଉ ବନାନ୍ କି ବ୍ୟାକରଣଗତ ଭୁଲ୍ ବାଛିବାକୁ ନାହିଁ । ନାଜିର୍ ! ଏସ୍.ଡି.ଓ. ଅଫିସର ଖାଜାଞ୍ଚି । ସବୁଯାକ ଟଙ୍କା ପଇଠ ହୁଏ ସେଇଠି । ତା'ରି ହୁକୁମରେ ଟ୍ରେଜେରୀର ମୋଟା ମୋଟା ଲୁହା ରେଲିଂର ଗାରଦ ଖୋଲିଯାଏ ଝଣ ଝଣ ହେଇ । ଟ୍ରେଜେରୀକୁ ଜଗିଥିବା ବନ୍ଧୁକଧାରୀ ଗାର୍ଡ଼ ବୁଟ୍‌ରେ ବୁଟ୍ ଠକ୍ ଠାକ୍ ବାଡ଼େଇ କଡ଼ା ସଲାମ୍ ଠୁକେ । ଟ୍ରେଜେରୀ ଅଫିସର୍ ନାଁକୁ ଖଣ୍ଡେ ଚଉକୀରେ ବସି ରହି ଅଳସରେ ସିଗାରେଟ୍ ଖାଉ ଥାଆନ୍ତି ।

ଗୋରା ସାହେବ ଡାକେ, ନାଜିର୍ କୋ ବୋଲାଓ । ନିବାରଣ ଦା' ହରେକ୍ ରକମ୍‌ର କାଗଜ ଆଉ ରେଜିଷ୍ଟର୍ ଧରି ଯାଆନ୍ତି ଗୋରା ସାହେବ କୋଠିକୁ । ପର୍ଦ୍ଦା ଠେଲି ସାହେବର ଖାସ୍ କାମରାକୁ ପଶିବା ଆଗରୁ ଖଣ୍ଡେ ବିଡ଼ିର ସଂକ୍ଷିପ୍ତ ଅବଶିଷ୍ଟାଂଶ ସେ ଦୁଇ ପୂରା ଟାଣି ନେଇ ମୁଖ ନିସୃତ ଧୂଆଁକୁ ହାତ ଦେଇ ପବନ ସହିତ ମିଶେଇ ନିଅନ୍ତି । ନିଜ ପୋଷାକକୁ ଥରେ ଦୁଇଥର ଚାହିଁ ନିଅନ୍ତି । କାମିଜ୍‌ଟାକୁ ଥରେ ଦୁଇ ଥର

ସାଉଁଳେଇ ନିଅନ୍ତି ଆଉ ବେକ ପାଖର ବୋତାମ ଉପରେ ଥରେ ଦୁଇଥର ହାତ ବୁଲେଇ ନିଅନ୍ତି । ବାସ୍ ! ସବୁଠିକ୍ ଅଛି ।

ପର୍ଦ୍ଦା ଆଡ଼େଇ ଘର ଭିତରକୁ ପଶିଲା ବେଳକୁ ଗୋରା ସାଇବ ଚଉକୀ ଉପରେ ବସି ଗୋଡ଼ ଦିଟାକୁ ଟେବୁଲ୍ ଉପରେ ଲମ୍ବେଇ ଦେଇ କ'ଣ ଗୋଟାଏ କାଗଜ ଦେଖୁଥାଆନ୍ତି । ନିବାରଣ ଦା' ଠିଆ ହେଇ ରହନ୍ତି ବଶମ୍ବଦ ପରି । ନିବାରଣ ଦା' କାଗଜ ଖସ ଖସ କରନ୍ତି, ପକେଟରୁ କଲମ କାଢ଼ନ୍ତି, ନ ହେଲେ ଡେରି ହେଲେ ଖଣ୍ଡି କାଶ ଦିଅନ୍ତି । ସାହେବ୍ ବୁଝନ୍ତି ନାଜିର୍ ଆସିଛି ।

ତା'ପରେ ନାଜିର୍ କାଗଜ ପରେ କାଗଜ, ରେଜିଷ୍ଟାର୍‌ର ପତା ପରେ ପତା ଓଲଟେଇ ଚାଲନ୍ତି ଆଉ ଡାହାଣ ହାତର କାଣି ଆଙ୍ଗୁଠିରେ ଦସ୍ତଖତ କରିବା ଜାଗା ଦେଖେଇ ଦିଅନ୍ତି ଆଉ ସାହେବ ମାରି ଚାଲନ୍ତି ଦସ୍ତଖତ ପରେ ଦସ୍ତଖତ ।

ଶେଷରେ ପଚାରନ୍ତି, ସବ୍ ଠିକ୍ ହାୟ ?

ନିବାରଣ ଦା' କୁହନ୍ତି, ହଜୁର୍ !

ସେ ଦିନର, ସପ୍ତାହର ବା' ମାସକର ଟ୍ରେଜେରୀ ହିସାବ ସବ୍ ଠିକ୍ ହାୟ !

କିନ୍ତୁ ନିବାରଣ ଦା'ର ସବୁ ହିସାବ କ'ଣ ପ୍ରକୃତରେ ଠିକ୍ ଥାଏ ? ଯଦି ଠିକ୍ ଥାଏ ତାହା ହେଲେ ପ୍ରତି ମାସର ପହିଲାରେ ସେଇ ଖାଁ ସାହେବ ତମ ଅଫିସ ଚୌକି ପାଖରେ ଠିଆ ହେଇ ତା'ର ନିଶ ମୋଡ଼େ କାହିଁକି ? ଆଉ ତମେ ଟେବୁଲ୍ ଡ୍ରୟାର୍ ଖୋଲି ତାକୁ ପ୍ରତି ଥର ନୋଟ୍ ବଢ଼େଇ ଦିଅ କାହିଁକି ?

ପ୍ରକାଶ ତା'ର ମାତ୍ର ଦଶ ବର୍ଷ ବୟସରେ ଥିଲା ଏ ଘଟଣାର ପ୍ରତ୍ୟକ୍ଷଦର୍ଶୀ ।

ପ୍ରକାଶ ସହିତ ନିବାରଣ ଦା'ର ପରିଚୟ ଥିଲା ଏକାନ୍ତ ଆକସ୍ମିକ । ସେଦିନ ପ୍ରକାଶ ସଂଧ୍ୟା ପରେ ଫେରୁଥିଲା କଚେରୀ ହତା ଭିତର ଦେଇ । କିଏ ଜଣେ ବିରାଟ ଚିତ୍କାର କରି ପାଟି କରି ଉଠିଥିଲା, ହଲ୍ଟ୍ ହୁକୁମଦାର୍ । ଚମକି ପଡ଼ିଥିଲା ପ୍ରକାଶ କିନ୍ତୁ କ'ଣ କହିବାକୁ ବା' କ'ଣ କରିବାକୁ ପଡ଼ିବ ସେ ବିଷୟରେ ପ୍ରକାଶର ସାମାନ୍ୟତମ ଧାରଣା ନଥିଲା ।

ତା'ପରେ ଯାହା ଘଟିଲା ସେଥିପାଇଁ ପ୍ରକାଶ ପ୍ରସ୍ତୁତ ନଥିଲା । ମାଛି ଅନ୍ଧାର ଭିତରେ ଗୋଟାଏ ଦୈତ୍ୟ ପରି ଦୌଡ଼ି ଆସିଥିଲା ଟ୍ରେଜେରୀର ସେଣ୍ଟ୍ରି ଗୋଟାଏ ବେୟନେଟ୍ ଉଦ୍ୟତ ବନ୍ଧୁକ ଧରି । ପ୍ରକାଶର ରକ୍ତ ବରଫ ପରି ଶୀତଳ ହେଇ ଯାଇଥିଲା । କିନ୍ତୁ ସେତେବେଳେ ପ୍ରକାଶକୁ ଯେଉଁ ହାତ ଗୁଡ଼େଇ ଧରି ଏକ ନିଶ୍ଚିତ ନିରାପତ୍ତାର ପ୍ରତିଶ୍ରୁତି ଦେଇଥିଲା ତା' ଥିଲା ନିବାରଣ ଦା'ଙ୍କର । ନିବାରଣ ଦା' ଏକ

ସ୍ଖଳିତ ଜିହ୍ୱାର ଅସ୍ଫୁଟଶବ୍ଦରେ କୌଣସି ମତେ କହିଥିଲେ, 'ଖବରଦାର ଜବର୍, ମୁଁ ନିବାରଣ' । ଉଦ୍ୟତ ବେୟନେଟ୍ ଅବନତ ହେଲା ଓ ଜବର ରୀତିମତ ଦରବାରୀ କାଇଦାର ସଲାମ୍ ଠୁକିଲା ।

କିନ୍ତୁ ପ୍ରକାଶ କେବଳ ବିସ୍ମିତ ହୋଇଥିଲା । କିଏ ଏହି ପରଦୁଃଖ କାତର ପ୍ରୌଢ଼ ଯିଏ ତାକୁ ଏହି ବିପନ୍ନ ମୁହୂର୍ତ୍ତରେ ଆଶ୍ରୟ ଦେଲେ ? ତଥାପି ନିବାରଣ ଦା'ଙ୍କର ଉଷ୍ମ ପାପୁଲି ପ୍ରକାଶର କାନ୍ଧ ଉପରେ ଆଶ୍ରିତ ଥାଏ । ଯେମିତି ତା'ର କାନ୍ଧ ଉପରେ ନିବାରଣ ଦା'ଙ୍କର ସମୁଦାୟ ଶରୀରର ଭାର ଆଶ୍ରିତ ।

ନିବାରଣ ଦା' ପଚାରିଲେ, ପଢୁଛ ?

: ଆଜ୍ଞା ହଁ ।

: କୋ' କ୍ଲାସ୍ ହେଲା ?

: କ୍ଲାସ ସେଭେନ୍ ।

ନିବାରଣ ଦା' କାହିଁକି କେଜାଣି ଅହେତୁକ ଭାବରେ ହସି ଉଠିଲେ ।

: କହିଲ ବାଳକ, ମୁଁ ପୁଞ୍ଜାଏ ମାଛ ଧରିଲି । ଇଂରାଜୀ କ'ଣ ହେବ ?

: ଆଇ କଟ୍ ଏ ସୋଲ୍ ଅଫ୍ ଫିସ୍ ।

: ବାଃ, ବାଃ—କବାଟ ଦରଆଉଜା ଥିଲା ।

: ଦି ଡୋର୍ ଓ୍ୱାଜ୍ କେପ୍ଟ ଆଜାର୍ ।

ତା'ପରେ ଯାହାହେଲା ସେଥିପାଇଁ ପ୍ରକାଶ ପ୍ରସ୍ତୁତ ନଥିଲା । ଅକସ୍ମାତ୍ ନିବାରଣ ଦା' ପ୍ରକାଶକୁ ଅବଲୀଳା କ୍ରମେ ଟେକି ନେଇ ତାକୁ କାନ୍ଧ ଉପରେ ବସେଇ ନେଲେ ଓ ଚାଲିବାକୁ ଆରମ୍ଭ କଲେ କହି କହି, ଦି ଷ୍ଟାର୍ ଅଫ୍ ମିର୍ଜାପୁର—ଦି ଷ୍ଟାର୍ ଅଫ୍ ମିର୍ଜାପୁର । ସେଇ ଏକା କଥାର ପୌନଃପୌନିକ ଉଚ୍ଚାରଣ ।

ସେଦିନ ସନ୍ଧ୍ୟାରେ ମିର୍ଜାପୁର ବଜାରର ଲୋକମାନେ ଏକ ଅଦ୍ଭୁତ ଶୋଭାଯାତ୍ରା ଦେଖିଲେ । ମାତାଲ ନିବାରଣ ଦା'ଙ୍କ କାନ୍ଧ ଉପରେ ଅତ୍ୟନ୍ତ ବିପନ୍ନ ଅବସ୍ଥାରେ ବସି ରହିଛି ଗୋଟିଏ କିଶୋର ଓ ସେହି ଏକା କଥାର ପୁନରାବୃତ୍ତି କରି କରି ନିବାରଣ ଦା' ନୈଶ ଚାରଣରେ କୁଆଡ଼େ ବାହାରିଛନ୍ତି କେଜାଣି । ଏହି ଏକକ ଶୋଭାଯାତ୍ରା ସେଦିନ ଥିଲା ଏକାଧାରରେ କରୁଣ ଓ ହାସ୍ୟୋଦ୍ଦୀପକ ।

କିନ୍ତୁ ନିବାରଣ ଦା'କୁ ବା' ବାରଣ କରିବ କିଏ ? ନିବାରଣ ଦା' କେବେହେଲେ ତହବିଲ୍ ତୋଷରପାତ୍ କରି ନାହିଁ । ଯେତେବେଳେ ଖାଁ ସାହେବଙ୍କୁ ଦବାକୁ ଯାହା ତହବିଲ୍‌କୁ କାଢ଼ି ନେଇଛି ତା' ପୁଣି ତା'ର ପର ମାସର ଦରମାରୁ ଭରଣା କରି

ଦେଇଛି । ସାରା ବଜାରରେ ନିବାରଣ ଦା'ର କାଳି ବାକୀ । କେବେ କାହାକୁ ମନା କରି ନାହିଁ । ପୁଣି ଥରେ ରୂଢ଼ଭର୍ତ୍ତି ମୁହଁରେ ବଜାର ଥଳି ଧରି ଆସି ଠିଆ ହୋଇ କହିଛି, ଆରେ ଈଶରା ତୋ'ର ସବୁଟଙ୍କା ଆର ମାସରେ ଶୁଝି ଦେବି । କିନ୍ତୁ ସେଥର ଯେଉଁ ଦିନ ଗନ୍ଧର୍ବ ମହାନ୍ତିର ଜୋଇଁ ବେଦି ଉପରୁ ଉଠି ଯାଇଥିଲା ଝିଅକୁ ସୁନା ଖଡୁ ଦିଆଯାଇ ପାରିନାହିଁ ବୋଲି ସେଦିନ ମିର୍ଜାପୁରର ଲୋକ ନିବାରଣ ଦା'କୁ ଖୋଜି ଖୋଜି ଠାବ କରିଥିଲେ ଦେଶୀ ମଦ ଭାଟିରେ ଆଉ ସେଇ ରାତି ରାତି ଟ୍ରେଜେରୀ ଖୋଲି ନିବାରଣ ଦା' ସରକାରୀ ତହବିଲ୍‌ରୁ ଗଣି ଦେଇଥିଲା ଠନ୍ ଠନ୍ ଚାରିଶହ ପଞ୍ଚମ ଜର୍ଜ ମାର୍କା ଟଙ୍କା । ପରେ ପରେ ଗନ୍ଧର୍ବ ମରିଗଲା ଓ ସରକାରୀ ତହବିଲ୍‌ର ସେଇ ଟଙ୍କା ଆଉ ପରିଶୋଧ କରି ପାରି ନଥିଲା ନିବାରଣ ଦା' ।

କଥା ଜଣାପଡ଼ିଲା ପରେ ସାହେବ ଆଗରେ ରୋକ୍ ଠୋକ୍ ମାନିଯାଇଥିଲା ନିବାରଣ ଦା', ହଜୁର ଆମ ଜାତିର ଝିଅଟାଏ ବାହା ହେଇ ପାରୁ ନଥିଲା । ମୁଁ ତହବିଲ୍‌ରୁ ଟଙ୍କା କାଢ଼ି ଦେଇ ଦେଇଛି, କସୁର୍ ମାଫ୍ କରାଯାଉ । ସାହେବ କହିଥିଲା ଠିକ୍ ଅଛି । ଏ ଟଙ୍କା ତମ ପ୍ରଭିଡେଣ୍ଟ ଫଣ୍ଡରୁ କଟାଯିବ । କିନ୍ତୁ ସାହେବ ଜାଣେ ନିବାରଣ ଦା'ର ପ୍ରଭିଡେ଼ଣ୍ଡ ଫଣ୍ଡ ଘରଟିରେ ଟଙ୍କାର ପରିମାଣ ସବୁବେଳେ ଶୂନ ।

ସେଇ ପ୍ରଥମ ପରିଚୟରୁ ନିବାରଣ ଦା' ଆଉ ପ୍ରକାଶ ପ୍ରକୃତରେ ବନ୍ଧୁ ହେଇଯାଇଥିଲେ । ସମୟ ପାଇଲେ ପ୍ରକାଶ ଦଉଡ଼ି ଯାଉଥିଲା ନିବାରଣ ଦା' ପାଖକୁ ଆଉ ସେଠି ପେଟେ ଜଳଖିଆ ଖାଇ ପ୍ରକାଶ ଶୁଣୁଥିଲା ରଘୁବଂଶ ବା ମେଘଦୂତର ଶ୍ଳୋକାବୃତ୍ତି ନହେଲେ ମାର୍ଚ୍ଚାଣ୍ଟ ଅଫ୍ ଭେନିସ୍‌ରେ ପୋର୍ସିଆର ଯୁଗାନ୍ତକାରୀ ରାୟ । ନହେଲେ ସହଜରେ ଗଣିତ କରି ପାରିବାର ଲୀଳାବତୀ ସୂତ୍ର ।

ଆଜିକାଲି ସନ୍ଧ୍ୟାବେଳେ ନିବାରଣ ଦା' ମାତାଲ ହୋଇଗଲେ ପ୍ରକାଶକୁ ଭୟ ଲାଗେ ନାହିଁ । ନିବାରଣ ଦା' ଆକଣ୍ଠ ପିଇସାରିବା ପର୍ଯ୍ୟନ୍ତ ପ୍ରକାଶ ଅପେକ୍ଷା କରେ ତା'ପରେ ତାଙ୍କୁ ଧୀରେ ଧୀରେ ନେଇ ପ୍ରାୟ ତାଙ୍କ ଘରେ ଛାଡ଼ି ଦେଇ ଆସେ ।

କିନ୍ତୁ ସେଦିନ ସନ୍ଧ୍ୟାରେ ଅକସ୍ମାତ୍ ନିବାରଣ ଦା' ଉଭାନ୍ ହୋଇଗଲେ କୁଆଡ଼େ ? ପ୍ରକାଶ ମିର୍ଜାପୁରର ସମ୍ଭବ ଅସମ୍ଭବ ସବୁ ଜାଗାରେ ଖୋଜ ନେଇଛି । କିନ୍ତୁ କୁଆଡ଼େ ଗଲା ନିବାରଣ ଦା' ? ଯେଉଁଠି ଗୋଟାଏ କାହିଁ କେଉଁ କାଳର ବରଗଛ ଆସନ ଜମେଇ ବସିଛି ପ୍ରାୟ ଅଧ ଏକର ଯାଗାରେ ତାରି ପାଖ ଦେଇ ସନ୍ତର୍ପଣରେ ଆସୁ ଆସୁ କିଏ ଜଣେ ତାକୁ ଯେମିତି ଡାକିଲା ପ୍ରକାଶ, ଏଇ ପ୍ରକାଶ !

ପ୍ରଥମେ ଚମକି ପଡ଼ିଥିଲା ପ୍ରକାଶ, କିନ୍ତୁ ନିବାରଣ ଦା'ର କଣ୍ଠସ୍ୱର କ'ଣ ଭୁଲ କରି ପାରେ ପ୍ରକାଶ । ବରଗଛ ମୂଳର ଘନ ଅନ୍ଧାର ଭିତରକୁ ଖୁବ୍ ନିରିଖେଇ

ଚାହିଁଥିଲା ପ୍ରକାଶ । ସତକୁ ସତ ନିବାରଣ ଦା' ସେଠି ନିଶ୍ଚଳ ହେଇ ଠିଆ ହେଇ ରହିଛି । ପ୍ରକାଶ ନିବାରଣ ଦା' ପାଖକୁ ଯାଇ ନିଜେ ମଧ ସେଇ ଘନ ଅନ୍ଧାରରେ ମିଶିଗଲା । ଆଜି କ'ଣ ଅନେକ ବେଶି ପିଇ ଦେଇଛି ନିବାରଣ ଦା' ? ନହେଲେ ଏଠି ଏମିତି ଚୁପ୍ ଚାପ୍ ଠିଆ ହେଇ ରହିଛି କାହିଁକି ?

ନିବାରଣ ଦା' କଣ୍ଠ ଥିଲା ଶଙ୍କା ବିଜଡ଼ିତ । ମୁଁ ତିନି ମାସ ହେଲା ଖାଁ ସାହେବମାନଙ୍କର ସୁଧ ଦେଇ ପାରିନାହିଁ ପ୍ରକାଶ । ଦିନରେ ସାହେବ ଡରରେ ସେମାନେ ଅଫିସକୁ ଯାଇପାରୁ ନାହାନ୍ତି ଅଥଚ ସନ୍ଧ୍ୟା ହେଲେ ମତେ ସହରର ଗଳି କନ୍ଦି ଖୋଜି ବୁଲୁଛନ୍ତି ।

ସେଦିନ ଅନେକ କମ ପିଇଥିଲା ନିବାରଣ ଦା' । ସେମାନେ ଭାଟି ପାଖରେ ଜଗି ରହିଛନ୍ତି ଆଉ ତା' ଛଡ଼ା ବେଶି ପିଇଦେଲେ ସେମାନଙ୍କର ମୁକାବିଲା କରିବ କେମିତି ଏଇ ଲୁଚକାଳି ଖେଳରେ । ଆଜି ପ୍ରଥମ କରି ଦେଖିଲା ପ୍ରକାଶ ଏଇ କପର୍ଦ୍ଦକହୀନ ନିବାରଣ ଦା' ଖାଁ ସାହେବମାନଙ୍କୁ ଲୁଚି ଲୁଚି ଆତ୍ମଗୋପନ କରୁଛି ।

ଠିକ୍ ଏଇ ସମୟରେଦୁଇଜଣ ଖାଁ ସାହେବ ସେମାନଙ୍କର ପାଖ ଦେଇ ରାସ୍ତା ଉପରେ ମଚ୍ ମଚ୍ ପାହୁଲ ପକେଇ ଏପଟ ସେ'ପଟ ଅନେଇ ଚାଲିଗଲେ । ନିବାରଣ ଦା'ର ହାତର ମୁଠା ପ୍ରକାଶର ବାହୁ ଉପରେ ଶକ୍ତ ହେଇ ଆସିଥିଲା ଆସନ୍ନ ବିପଦର ଆଶଙ୍କାରେ ।

ଖାଁ ସହେବମାନେ ଚାଲିଗଲେ । ଜହ୍ନ ଆଲୁଅରେ ତାଙ୍କର ସାଧା ପଗଡ଼ିର କୁଞ୍ଚ ଦେଖା ଯାଉଥାଏ ଅନେକ ଦୂରକୁ । ବେଶ୍ କିଛି ଦୂର ଯିବା ପରେ ସେମାନଙ୍କ ପଛେ ପଛେ ଅତି ସନ୍ତର୍ପଣରେ ବାହାରିଲା ପ୍ରକାଶ । ସେମାନେ ମାଛ ମାର୍କେଟରେ ମୋଡ଼ ବୁଲିଗଲେ, ଏଥର ନିବାରଣ ଦା'ର ଘରକୁ ଯିବାର ରାସ୍ତା ପରିଷ୍କାର ।

ଏକାଥରକେ ଧଇଁ ସଇଁ ହେଇ ଦୌଡ଼ି ଆସିଥିଲା ପ୍ରକାଶ ନିବାରଣ ଦା'ର ଆଶ୍ରୟସ୍ଥଳୀକୁ । ଆଉ କହିଥିଲା, ନିବାରଣ ଦା' ମୁଁ ନିଜେ ଦେଖିଛି ସେମାନେ ମାଛ ମାର୍କେଟ ମୋଡ଼ ବୁଲି ଗଲେଣି, ଆଉ ଥରେ ଏ ପଟକୁ ଆସିବାର ଆଶଙ୍କା ନାହିଁ– ଆସ ଏଇଥର ମୁଁ ତମକୁ ନେଇ ଘରେ ଛାଡ଼ି ଦେଇ ଆସେ । ପ୍ରାୟ ନିବାରଣ ଦା' ହାତ ଧରି ବାହାରକୁ ଟାଣି ଆଣି ତରତରରେ ଚାଲିବାକୁ ଆରମ୍ଭ କରିଥିଲା ପ୍ରକାଶ ।

ସେମାନେ ନିବାରଣ ଦା'ର ଘରେ ପହଞ୍ଚି ଯାଇ କବାଟ ବାଡ଼େଇ ଥିଲେ ଓ ଉତ୍କଣ୍ଠିତ ହେଇ ଅପେକ୍ଷା କରି ରହିଥିବା ନିବାରଣ ଦା'ଙ୍କ ସ୍ତ୍ରୀ କବାଟ ଖୋଲିଥିଲେ । କବାଟକୁ ସାଙ୍ଗେ ସାଙ୍ଗେ ବନ୍ଦ କରି ଦିଆଯାଇଥିଲା । ଆଃ ! କି ଶାନ୍ତି । ଆଜିର ରାତିଟା ଯେମିତି ବଞ୍ଚିଗଲା ମଣିଷ । ସେହିପରି ଅନ୍ତତଃ ମନେ ହେଇଥିଲା ପ୍ରକାଶର ସେଇ ମୁହୂର୍ତ୍ତରେ ।

ରାତି ବେଶ୍ ବିଳମ୍ବ ହେଇ ଯାଇଥିଲା ।

ନିବାରଣ ଦା' ପ୍ରତି ରାତିରେ ଫେରିବା ପରେ, ତାଙ୍କୁ କୌଣସି ମତେ ଗଣ୍ଡେ ଖୁଆଇ ଦେଇ ବିଛଣାରେ ଶୁଆଇ ପକେଇବା ଥିଲା ତାଙ୍କ ସ୍ତ୍ରୀଙ୍କର ନିତ୍ୟନୈମିତିକ କର୍ତ୍ତବ୍ୟ । ଆଜି ବି ଠିକ୍ ସେୟା ହେଲା । ମଦର ନିଶାରେ ଆହୁରି ଟଳେଇ ଯିବା ପୂର୍ବରୁ ନିବାରଣ ଦା'ଙ୍କ ପାଇଁ ଖାଇବାର ବାଢ଼ି ବସିଲେ ତାଙ୍କ ସ୍ତ୍ରୀ । ଲୋକଟା କୌଣସି ମତେ କିଛି ଖାଇ ନେଲେ ଯାଏ । ଖାଇବାର ବଢ଼ା ସରିବା ପରେ ପ୍ରକାଶ ଘରକୁ ଫେରିବାକୁ ବସିଲା । କବାଟ ପର୍ଯ୍ୟନ୍ତ ବଳେଇ ଦବାକୁ ଆସୁ ଆସୁ ନିବାରଣ ଦା'ଙ୍କ ସ୍ତ୍ରୀ କହିଲେ, ପ୍ରକାଶ ତମ ଯୋଗୁ ମୋ'ର ଏ ସଂସାର ଏଯାଏ ବଞ୍ଚିଛି ଯାହା !

ପ୍ରକାଶ ବାହାରକୁ ଯିବା ପାଇଁ କବାଟ ଖୋଲିଲା । କିନ୍ତୁ ସେଇ ଖୋଲା କବାଟକୁ ପୂରା ପୂରି ଆବୋରି ବସି ଯିଏ ଠିଆ ହେଇ ରହିଥିଲା ସିଏ ହଉଚି ଖାଁ ସାହେବ । ସମସ୍ତ ଚେଷ୍ଟା ସତ୍ତ୍ୱେ ବି ଖୋଲା କବାଟ ଆଉ ବନ୍ଦ ହେଇ ପାରିଲା ନାହିଁ କାରଣ ଗୋଟାଏ କବାଟ ଉପରେ ଖାଁର ଲୌହ ଶକ୍ତ ମୁଠିର ଚ୍ଚାବ ପଡ଼ି ଯାଇ ସାରିଥିଲା । ପ୍ରକାଶ ଓ ନିବାରଣ ଦା'ର ସ୍ତ୍ରୀ ହଠାତ୍ ପଛକୁ ଘୁଞ୍ଚିଗଲେ ।

କାହାରି ଅନୁମତି ମାଗିବା ଦରକାର ପଡ଼ିନାହିଁ । ଅତ୍ୟନ୍ତ ସ୍ୱାଭାବିକ ଭାବରେ ଘର ଭିତରକୁ ପଶିଲେ ଖାଁ ସାହେବ ଓ ତା' ପଛେ ପଛେ ଆଉ ଜଣେ ।

ସେତେବେଳକୁ ନିବାରଣ ଦା' ଆସି ଖାଇ ବସିଥିଲେ । ତାଙ୍କ ପାଖରେ ଦୁଇଜଣ ଦୈତ୍ୟ ପରି ଠିଆ ହେଇଥିଲେ ଏଇ ସୁଧଖୋର ଦାନବ ଦୁଇଜଣ ।

ସବୁଆଡ଼େ ଚୁପ୍ ଚାପ୍ ।

କାହା ମୁହଁରେ କଥା ନାହିଁ ।

ଆର ମାହାଲା ପିଣ୍ଡାରୁ ନିବାରଣ ଦା'ର ସ୍ତ୍ରୀ ଓ ପ୍ରକାଶ ଠିଆ ହେଇ ରହିଛନ୍ତି ବୋଧହୁଏ ଏକ ନିଶ୍ଚିତ ବଜ୍ରପାତର ଅପେକ୍ଷାରେ ।

ପୁସ୍ତୁ ଭାଷାର କର୍କଶ ଗଳାରେ ଭଙ୍ଗା ଭଙ୍ଗା ହିନ୍ଦୀରେ କହିଲା ଖାଁ ସାହେବ, ସୁଅର୍ କି ବଚ୍ଚା, ହମ୍ ଲୋଗୋଁକୋ ଘୁମାୟା ସାରେ ତିନ୍ ମୈନା ।

ଭାତ ଥାଳି ଉପରେ ମୁଣ୍ଡ ଝୁଙ୍କେଇ ବସିଥାନ୍ତି ନିବାରଣ ଦା' । ତା'ପରେ ଯାହା ଘଟିଲା ତା' ଅବିଶ୍ୱାସ୍ୟ !

ହଠାତ୍ ଖାଁ ସାହେବର ଠେଙ୍ଗାର ଗୋଟାଏ ଶକ୍ତ ପାହାର ବସିଲା ନିବାରଣ ଦା'ର ମୁଣ୍ଡରେ ଓ ତତ୍‌କ୍ଷଣାତ୍ ନିବାରଣ ଦା'ର ଧଳାବାଳର କେଉଁ ଅଜ୍ଞାତ ସ୍ଥାନରୁ ତାଜା ରକ୍ତ ବହି ଆସିଲା ତା'ର କପାଳ ଓ ଚିବୁକ ଦେଇ ତଳକୁ ।

ନିବାରଣ ଦା' ଚିତ୍କାର କରି ନାହିଁ ଯନ୍ତ୍ରଣାରେ । ସେ' କେବଳ ତା'ର ଦୁଇ ହାତର ଆଞ୍ଜୁଳି ଦେଇ ରକ୍ତ ଟକ ସଂଗ୍ରହ କରିନେଲା ଓ ରକ୍ତ ସବୁ ପିଇନେଲା କୌଣସି ତୃଷାର୍ତ୍ତ ପଥିକ ରାସ୍ତା କରର ପାଣି ପାଇପରୁ ପାଣି ପିଇନବା ପରି ।

ହୀନବଳ, ବିଧ୍ୱସ୍ତ ସ୍ନାୟୁ, ଭଗ୍ନ ମନୋରଥ ନିବାରଣ ଦା' କ'ଣ ତା'ର ନିଜର ଉଷ୍ଣ ରୁଧିର ପାନ କରିଯାଉଥିଲା ନିଜର ସାରା ଜୀବନବ୍ୟାପୀ ନ୍ୟୂନବୋଧ ଓ ଆତ୍ମଗ୍ଳାନିର କ୍ଷତିପୂରଣ କରିବାକୁ ।

ପ୍ରକାଶର ରୁମ ସବୁ ଟାଙ୍କୁରି ଉଠିଥିଲା । କୌଣସି କଥା ନକହି ଦୁଇଜଣଯାକ ଖାଁ ସାହେବ ଆସିଥିବା ଦୁଆର ଦେଇ ବାହାରି ଯାଇଥିଲେ । ଯେପରି ସେମାନଙ୍କର ପରିକଳ୍ପିତ ଯୋଜନା ସମାପ୍ତ ହେଇଛି ।

ନିବାରଣ ଦା' ତଥାପି କ୍ଷତର ରୁଧିରକୁ ପରମ ତୃପ୍ତିର ସହିତ ପାନ କରି ଚାଲିଥିଲେ ଓ ପ୍ରକାଶ ଓ ନିବାରଣ ଦା'ଙ୍କ ସ୍ତ୍ରୀ କେତେବେଳେ ଖୋଲା ଦୁଆର ଆଡ଼େ ଚାହିଁ ଓ କେତେବେଳେ ନିବାରଣ ଦା' ଆଡ଼େ ଚାହିଁ ରହି ହତବାକ୍ ହେଇଯାଇଥିଲେ ।

ସେଇ କିଶୋର ବୟସରୁ ଆଜି ଯାଏ ଏଇ ସ୍ୱପ୍ନର ବିଭୀଷିକା ବାରମ୍ବାର ପ୍ରକାଶ ପାଖକୁ ଫେରି ଆସି ପ୍ରକାଶର ବହୁ ରଜନୀ ନିଦ୍ରାହୀନ କରିଛି । ହଠାତ୍ ଗୋଟାଏ ଆର୍ତ୍ତ ଚିତ୍କାର କରି ବିଛଣାରୁ ଉଠି ବସେ ପ୍ରକାଶ ଯେମିତି ତାକୁ ଗୋଟାଏ ଭୂତ ମାଡ଼ି ବସିଚି । ଅବଶିଷ୍ଟ ରଜନୀ ପ୍ରକାଶ ଆଉ ଥରେ ନିବାରଣ ଦା'କୁ ସେଇ ବରଗଛର ସାନ୍ଦ୍ର ଅନ୍ଧାର ଭିତରେ ଆବିଷ୍କାର କରିବା ପରଠାରୁ, ନିବାରଣ ଦା' ଗୋଟାଏ ଆହତ ପଶୁପରି ନିଜର ରୁଧିର ଲେହନ କରିବା ପର୍ଯ୍ୟନ୍ତ ସମସ୍ତ ଘଟଣା ପୁଙ୍ଖାନୁପୁଙ୍ଖ ଭାବରେ ପୁନର୍ନିର୍ମାଣ କରେ, ଆଉ ଶେଷରେ ଏକ ଦୀର୍ଘଶ୍ୱାସ ସହ ନୀରବରେ ଉଚ୍ଚାରଣ କରେ–ନିବାରଣ ଦା', ତମ ପରି ଲୋକ କେତେ ନିର୍ଦ୍ଦୟ ଭାବରେ ବିରଳ ହେଇ ଆସୁଛନ୍ତି ଆଜିକାଲି !

ଘଟଣାର ଅନେକ ଦିନ ପରେ, ବୋଧ ହୁଏ ଦୁଇବର୍ଷ ହେବ ପରା ପ୍ରକାଶ ଦେଖିଥିଲା ଖାଁ ସାହେବ ଦୁହିଁଙ୍କୁ ଠିଆ ହବାର ଅଦାଲତ୍‌ର କାଠଗଡ଼ାରେ ଓ ତା'ର ବିପରୀତ ଦିଗରେ ସାକ୍ଷୀର କାଠଗଡ଼ା ଭିତରେ ଠିଆ ହେଇ ନିବାରଣ ଦା' ସାକ୍ଷ ଦେଇଥିଲେ–'ମୁଁ ନିୟମ କରି କହୁଛି ମୁଁ ଯାହା କହିବି ସତ୍ୟ କହିବି, ମୁଁ ସଂପୂର୍ଣ୍ଣ ସତ୍ୟ କହିବି ଓ ମୋର ସାକ୍ଷର କୌଣସି ଅଂଶ ମିଥ୍ୟା ହବ ନାହିଁ ।'

ଅଦାଲତ୍ ଜନାକୀର୍ଣ୍ଣ । ଖାଁ ସାହେବମାନଙ୍କ ହାତରେ ପାରମ୍ପରିକ ଲାଠି ନାହିଁ । ସେମାନଙ୍କର ନୀଳ ଆଖି ଫିକା ପଡ଼ିଯାଇଛି, ସେମାନେ ଠିଆ ହେଇ ରହିଛନ୍ତି ଅଧୋବଦନରେ । ଦର୍ଶକମାନଙ୍କ ମଧ୍ୟରୁ କାହାରି ଜଣେ ଦୀର୍ଘ ନିଶ୍ୱାସ ମନେ ହଉଛି ଯେପରି ଏକ ଘୂର୍ଣ୍ଣିବାତ୍ୟା ନ୍ୟାୟ ଅଦାଲତର ମଝା ଥରେଇ ବୋହି ଯାଉଛି ।

: ଆପଣ ଏ ମୁଦାଲାମାନଙ୍କୁ ଜାଣନ୍ତି ?

: ହଁ ।

: ସେଦିନର ଘଟଣା କ'ଣ ହେଲା କହି ପାରିବେ ?

: ମୁଁ ସେଦିନ ରାତିରେ ଅତ୍ୟଧିକ ମଦ ପିଇ ଦେଇଥିଲି, ଘରକୁ ଫେରୁ ଫେରୁ ଝୁଣ୍ଟି ପଡ଼ି ଗୁଡ଼ାଏ କଟା ମାଙ୍କଡ଼ା ପଥର ଉପରେ ପଡ଼ି ମୋ'ର ମୁଣ୍ଡ ଫାଟି ଯାଇଥିଲା ବୋଲି ମୁଁ ପରେ ଜାଣିଲି ।

ଦର୍ଶକମାନଙ୍କ ମଧ୍ୟରେ ଆଉ ଥରେ ଏକ ଗୁଞ୍ଜରଣର ଝଡ଼ ବୋହିଗଲା । ପ୍ରକାଶର ମନେ ହେଇଥିଲା ସେ' ଚିତ୍କାର କରି କହିବ, ମିଛକଥା, ମିଛକଥା । ନିବାରଣ ଦା' ଯେ' କ'ଣ କଲ ତୁମେ ! ପୁଣି ଥରେ ଅଦାଲତ୍ ଚୁପ୍ ହେଇଗଲା ।

ପ୍ରଶ୍ନ ହେଲା—କିନ୍ତୁ ମୁଦାଲାମାନଙ୍କୁ ତମ ଘରଠାରେ ଲୋକମାନେ ଦେଖିଛନ୍ତି ଏହା କ'ଣ ମିଛ ?

ଉତ୍ତର—ନାଁ, ତାହା ସତ, ମୋର ସ୍ତ୍ରୀଙ୍କଠାରୁ ଶୁଣିଲି ସେମାନେ ମତେ ଆହତ ଅବସ୍ଥାରେ ରାସ୍ତାରୁ ନେଇ ଘରେ ଛାଡ଼ିଦେଇ ଆସିଥିଲେ ।

ସାକ୍ଷୀର ସାମୟିକ ବିସ୍ମୃତିର ଆଳ ନେଇ ସରକାରୀ ଓକିଲଙ୍କର ପ୍ରାର୍ଥନା କ୍ରମେ ସେଦିନର ବିଚାର ଅନ୍ୟ ଦିନକୁ ମୁଲତବୀ ରହିଲା ।

ପଦାକୁ ବାହାରି ଆସି ପ୍ରକାଶ ନିବାରଣ ଦା'ର କାମିଜ୍‌ର ଆସ୍ତିନ୍ ଧରି ଜୋର୍‌ରେ ହଲେଇ ଦେଇ ପଚାରିଲା, ତମେ ଯେ' କ'ଣ କଲ ନିବାରଣ ଦା' ?

ନିବାରଣ ଦା'ଙ୍କ ଚାରିପଟେ ଅନେକ ଲୋକ ଘେରି ଯାଇଥିଲେ । ନିବାରଣ ଦା' କୌଣସି ଉତ୍ତର ଦେଇ ନଥିଲେ ।

ସେଦିନ ସନ୍ଧ୍ୟାରେ ନିବାରଣ ଦା'ର କୌଣସି ବ୍ୟତିକ୍ରମ ହେଇ ନଥିଲା । ଆକଣ୍ଠ ମଦ୍ୟପାନ କରି ସେ ବସି ରହିଥିଲେ ଗୋଟାଏ ଫାଙ୍କା ଷ୍ଟେଡ଼ିୟମର ବେଞ୍ଚ୍ ଉପରେ । ଆକାଶରୁ ଅକୃପଣ ଜ୍ୟୋତ୍ସ୍ନା ଝରି ପଡୁଥିଲା । ପ୍ରକାଶ ତାଙ୍କ ପାଖରେ ପହଞ୍ଚିଲା ବେଳକୁ ନିବାରଣ ଦା' ମନ ଖୁସିରେ କ'ଣ ଗୋଟିଏ ଗୀତର ସୁର୍ ଧରି ଗୁଣୁ ଗୁଣୁ ହଉଥିଲା ।

ପ୍ରକାଶର ସେଇ ପ୍ରଶ୍ନର ପୁନରାବୃତ୍ତି, ଆପଣ ନିବାରଣ ଦା' ଅଦାଲତରେ ମିଛ କଥା କହିଲେ କାହିଁକି ?

ନିବାରଣ ଦା' ହସିଲେ, କହିଲେ—ନିବାରଣ ହାଲ୍‌ଦାର୍ କାହାର ଧାରୁଆ ହେଇ ରହେ ନାହିଁ । ନାଁ ଶୁଣ୍ଠି ଜୟସ୍ୱାଲ୍‌ର ନାଁ ଖାଁ ସାହେବର, ନାଁ ସରକାରର....।

ତା'ପରେ ପୁଣି ନିବାରଣ ଦା' ତଳେଇ ଗଲେ ବିସ୍ମୃତିରଅତଳ ଗର୍ଭକୁ । ଆଉ ତାଙ୍କୁ ପଚାରି କିଛି ଲାଭ ନାହିଁ । ପ୍ରକାଶ ଜାଣେ ସେ ସେଇଠି ଶୋଇଯିବେ, ଯେ ପର୍ଯ୍ୟନ୍ତ ତାଙ୍କୁ ଚୈତ୍ରର ଶୀତଳ ପବନ ପୁଣି ଥରେ ପ୍ରକୃତିସ୍ଥ ନ କରିଛି ।

ତା'ପରେ ଗଭୀର ରାତିରେ ନିବାରଣ ଦା' ମନକୁ ମନ ଉଠି ଟଳି ଟଳି ଚାଲିବେ ଘର ଆଡ଼କୁ । ଆଲୋକ ବିହୀନ ରାସ୍ତାରେ ଗଛମାନେ ଓ ସେମାନଙ୍କ ଶାଖାରେ ଝୁଲୁଥିବା ବାଦୁଡ଼ିମାନେ କୁହାକୁହି ହେବେ—ଅନେକ ରାତି ହେଲା, ନିବାରଣ ହାଲ୍‌ଦାର୍ ଘରକୁ ଫେରୁଛି ।

ଆଜି ବି ଥିଲା ସେହିପରି ଏକ ରାତ୍ରି, ଯେଉଁଦିନ ଏଇ ପ୍ରାଚୀନ ସ୍ୱପ୍ନ ପ୍ରକାଶର ନିଦ୍ରାକୁ ବ୍ୟାହତ କରୁଥିଲା ବାରମ୍ବାର ।

ହଠାତ୍ ବାହାର କବାଟର କଡ଼ା ଝଣ୍ ଝଣ୍ କରି ଉଠିଲା । ପ୍ରକାଶର ନିଦ ଭାଙ୍ଗିଗଲା । ସକାଳ ହେଇ ଆସିଲାଣି, କିନ୍ତୁ ସେଇ ଅଶ୍ଳୀଳ ଝଣ୍ ଝଣ୍ ଶବ୍ଦଟା ହବାର କୌଣସି ସମ୍ଭାବନା ଦେଖାଯାଉ ନାହିଁ ।

ପ୍ରକାଶ ବିରକ୍ତିରେ ଚିତ୍କାର କରି ଉଠିଲା, କିଏ ? ଗମ୍ଭୀର ସ୍ୱରରେ ଜବାବ୍ ଆସିଲା—ସିରାଜ୍ ଖାଁ, ସିରାଜ୍ ଖାଁ !

ପ୍ରକାଶର ତନ୍ଦ୍ରା ତୁଟିଗଲା ଗୋଟାଏ ମୁହୂର୍ତ୍ତରେ ।

ପୁଣିଥରେ ସେଇ କବାଟର କଡ଼ା ବାଡ଼େଇବାର ଶବ୍ଦ । ''ପର୍‌କାଶ୍ ବାବୁ, ସିରାଜ୍ ଖାଁ ସେ ଆଜ୍‌ତକ୍ କୋଇ ଛୁପ୍ ନେଇଁ ସକା ।''

ପ୍ରକାଶ ତାର ପରିବେଶକୁ ଭଲ କରି ପର୍ଯ୍ୟବେକ୍ଷଣ କରି ନେଲା ଆଉ ଥରେ । ସେଇ ଆଳିମାଳିକା ମଟର ପାର୍ଟସ୍‌ର ଜଞ୍ଜାଳ ଭିତରେ ଗୋଟାଏ ଟାୟାର୍ ଲିଭର୍ ପଡ଼ି ରହିଛି । ଟାୟାର୍ ଲିଭର୍‌ରେ ସିରାଜ୍‌ର ପଗଡ଼ି ଉପରେ ଗୋଟାଏ ମାଡ଼ ନିବାରଣ ହାଲ୍‌ଦାର୍‌ର ରକ୍ତର ପ୍ରତିଶୋଧ ହୁଏତ ନେଇ ପାରିବ । ତା'ର ଆଖି ଦୁଇଟା ଜଳି ଉଠିଲା ମୁହୂର୍ତ୍ତକ ପାଇଁ । କିନ୍ତୁ ନିବାରଣ ଦା' ଯେ କହିଥିଲା ସେ କାହା ପାଖରେ ଋଣଗ୍ରସ୍ତ ହେଇ ରହେ ନାହିଁ ।

ବାରମ୍ବାର, ବାରମ୍ବାର କବାଟ କଡ଼ାର ସେହି ଝଣ୍‌ଝଣ୍ ଶବ୍ଦ ପ୍ରକାଶକୁ ଅତିଷ୍ଠ କରି ତୋଳୁଥିଲେ ।



# ତାମ୍ରବଳୟ

ମୁଁ ସେଦିନ ପାଟନା ଏୟାର୍‌ପୋର୍ଟରୁ ଦମ୍‌ଦମ୍ ପାଇଁ ଜାହାଜ ଧରିଲି ପ୍ରାୟ ଦିନ ଏଗାରଟା ବେଳେ । ସେଦିନ ଏକ ସାଧାରଣ ଧର୍ମଘଟ ପାଇଁ ଏୟାର୍‌ପୋର୍ଟର ସମସ୍ତ ଦୋକାନଗୁଡ଼ିକ ବନ୍ଦ ଥିଲା, ଏପରି କି ସିଗାରେଟ୍ ଦୋକାନ ପର୍ଯ୍ୟନ୍ତ । କିନ୍ତୁ ମୁଁ ସେହି ଅବଶ୍ୟମ୍ଭାବୀ ବ୍ୟକ୍ତିଟିକୁ ସେଠାରେ ନିଶ୍ଚିତ ଭାବରେ ଦେଖିବାକୁ ପାଇଥିଲି । ପ୍ରାୟ ପ୍ରତ୍ୟେକ ଥର କୁଆଡ଼େ ଗଲାବେଳେ ମୁଁ ସେଇ ଲୋକଟିକୁ ବିମାନ ବନ୍ଦରର ଲାଉଞ୍ଜ୍ ଭିତରେ, ନ'ହେଲେ ଗାଡ଼ି ପାର୍କିଂ ଯାଗାରେ ଏକ ସନ୍ଧାନୀ ଦୃଷ୍ଟିନେଇ ବୁଲୁଥିବାର ଦେଖେ । ଲୋକଟି ଦେଖିବାକୁ ତ୍ରିପଣ୍ଡ କଳା, ଖଣ୍ଡେ ଧଳାଲୁଗାକୁ ଦୋହରେଇ ଦେଇ ଫାଲ୍‌ଟା କରି ପିନ୍ଧିଥାଏ, ଦିହରେ ଖଣ୍ଡେ ଧଳା କାମିଜ । ଫାଲ୍‌ଟା ଓ କାମିଜି ଦୁଇଟି ଯାକ ଝକ୍‌ଝକ୍ ସଫା ଓ ସଦ୍ୟ ଇସ୍ତ୍ରିକରା । ତା'ର ଚିକ୍‌କଣ କରି କ୍ଷଉର କରାଯାଇଥିବା ଲଣ୍ଡିତ ମସ୍ତକରେ କେବେ କେମିତି ଖୁବ୍ ପତଳା କୁହୁଡ଼ି ପରି ଛୋଟ ଛୋଟ ଧଳା ବାଳର ଆସ୍ତରଣ ଲୋକଟିର ପ୍ରୌଢ଼ତ୍ୱର ସୂଚନା ଦିଏ । ତା'ର ଲଣ୍ଡିତ ମସ୍ତକରୁ ପଦାକୁ ବାହାରି ଆସିଥିବା ଉନ୍ନତ କପାଳ ଉପରେ ଶ୍ୱେତଚନ୍ଦନର ଗୋଟିଏ ଉଜ୍ଜ୍ୱଳ ରାମାନନ୍ଦୀ ଚିତା ସ୍ପଷ୍ଟ ବାରି ହୋଇ ଯାଉଥାଏ । ପାଦରେ ହଳେ ଶସ୍ତା ଚଟି, କିନ୍ତୁ ତାହା ବେଶ୍ ପରିଷ୍କାର ଓ ସଯତ୍ନ ପରିହିତ । ହାତରେ ଖଣ୍ଡେ ପୋର୍ଟଫୋଲିଓ ବ୍ୟାଗ୍ ।

ମୁଁ ଲୋକଟିର ନାଁ ଜାଣେ ନାହିଁ କିନ୍ତୁ ଜାହାଜକୁ କେବେ କେବେ ଅପେକ୍ଷା କରି ବସିଥିବା ବେଳେ ମୁଁ ଯେ ଲୋକଟିର ଗତିବିଧି କୌତୂହଳ ସହିତ ଲକ୍ଷ୍ୟ କରି ନାହିଁ ତା' ନୁହେଁ । କେବେ କେମିତି ଗୋଟାଏ ଶସ୍ତା ସିଗାରେଟ୍ ଖୋଳରୁ ଖଣ୍ଡେ ସିଗାରେଟ୍‌ରେ ନିଆଁ ଧରେଇ ତା'କୁ ଏକ ବଦ୍ଧମୁଷ୍ଟି ଅନ୍ତର୍ଗତ କରି ବାବାଜୀମାନଙ୍କର ଗଞ୍ଜା ସେବନ ସୁଲଭ ଠାଣିରେ ସିଏ ଗୋଟାଏ ଦମ୍ ମାରେ ଓ ତା'ପରେ ପରେ ତା' ମୁହଁରୁ ନିର୍ଗତ ଧୂମ କୁଣ୍ଡଳିକୁ ସେ ଏକ ଭାବଲେଶ ଶୂନ୍ୟ ଆଖିରେ ଚାହିଁ ରହେ । ମୁଁ ହଲପ୍ କରି କହିପାରେ ଯେ, ଏହି ବ୍ୟକ୍ତି ଅନ୍ଧାର ଥାଉ ଥାଉ ତାଙ୍କର ନିତ୍ୟକର୍ମ ସମାପନ କରି, ତିରୁପତିଙ୍କ ଫଟୋ ଆଗରେ ଧୂପ ଜଳେଇ, ପ୍ରାତଃଭୋଜନ ସାରି, ଖଣ୍ଡେ ସିଗାରେଟ୍‌ରେ ଅଗ୍ନିସଂଯୋଗ କରି ଯେତେବେଳେ ପ୍ରାତ୍ୟହିକ ଖବରକାଗଜ ଉପରେ ଆଖି ବୁଲେଇ ନେଉଥିବେ ସେତେବେଳେ ପ୍ରାୟ ସକାଳ ହବ ହବ ଅବସ୍ଥା ।

ସେଦିନ କେଜାଣି କାହିଁକି ସେ ମୋ' ଆଗକୁ ଚାଲିଆସି ନିଜେ ତାଙ୍କର ପରିଚୟ ଦେଲେ, ମିଃ. କିଛି ଗୋଟାଏ—ଏବେ ମଧ ମୋର ସେ ନାଁ ଠିକ୍ ଠିକ୍ ମନେ ପଡୁନାହିଁ । ସେ କୌଣସି ଉପକ୍ରମଣିକା ନକରି ମୋତେ ଶୁଦ୍ଧ ଇଂରାଜୀରେ କହିଲେ, ଆପଣ ନିଶ୍ଚୟ ଏଇ ଉଡ଼ାଜାହାଜର ଜଣେ ଯାତ୍ରୀ । ମୁଁ ସଂକ୍ଷେପରେ କହିଲି—''ହଁ'' । ତା'ପରେ ସେ ପୁଣି କହିଲେ, ''ଆପଣଙ୍କର ଉଡ଼ାଜାହାଜର ଟିକେଟ୍ ସହିତ ଏକଲକ୍ଷ୍ୟ ଟଙ୍କାର ଗୋଟିଏ ସ୍ୱୟଂକ୍ରିୟ ଇନ୍ସୁରାନ୍ସ୍ ପଲିସି ଅଛି ସେ କଥା ଆପଣ ଜାଣନ୍ତି ?'' ପୁନର୍ବାର ମୋର ସେହି ଏକପଦୀ ସଂକ୍ଷିପ୍ତ ଉତ୍ତର—''ହଁ, ହେଇପାରେ'' । ସେ କହିଲେ ଯେ, ''ଏତଦ୍‌ଭିନ୍ନ ଆପଣ ହୁଏ ତ ଆଉ କେତେ ଲକ୍ଷ ଟଙ୍କାର ପଲିସି ଏଇ ବିମାନବନ୍ଦରରେ ବୁଲୁଥିବା ଏଜେଣ୍ଟମାନଙ୍କ ଠାରୁ କରାଇନେଇ ପାରିଥାନ୍ତେ ?'' ମୁଁ କହିଲି, ''ହଁ, ତାହା ବି ସମ୍ଭବ'' ଓ ପ୍ରଚୁର ବିସ୍ମୟ ଓ କୌତୂହଳ ନେଇ ଲୋକଟି ଏହାପରେ କ'ଣ କହିବ ତାହାକୁ ହିଁ ଅପେକ୍ଷାକରି ରହିଥିଲି । ସେ କହିଲା, 'ଜଣେ ଲୋକ ତା'ର ଜୀବନକାଳ ଭିତରେ ଯାହା ଅର୍ଜନ କରି ପାରନ୍ତା ତା'ର ବହୁଗୁଣ ଅର୍ଥ ପାଇଁ ସେ' ହୁଏ ତ ଗୋଟାଏ ବା ଅନେକ ପଲିସି କରି ନେଇପାରେ ।'' ଏ ଉକ୍ତିର ଉତ୍ତର ନିଷ୍ପ୍ରୟୋଜନ ଭାବି ମୁଁ ନୀରବ ରହିଲି । ସେ ପୁଣି କହିଲେ, ''କେହି କେବେ କ'ଣ ମରିବାକୁ ଚାହେଁ ? ଟଙ୍କାଟା ପାଇଲେ ପାଇବେ ଆପଣଙ୍କର ବଂଶଧରମାନେ କିନ୍ତୁ ଆପଣ ?'' ଏଇ ଶେଷକଥା ପଦକରେ ତା'ର ଆଖିରୁ ଭ୍ରୂଲତା ଦୁଇଟି ଏକ ପ୍ରଶ୍ନବାଚୀ ଭଙ୍ଗୀରେ ଉପରକୁ ଉତ୍ତୋଳିତ ହୋଇଥିଲା ।

ମନୁଷ୍ୟ ଜୀବନ ସଂପର୍କୀୟ ଗୂଢ଼ତଥ୍ୟ ବା ରହସ୍ୟ ଆଲୋଚନା କରିବା ପାଇଁ ଏକ ଜନାକୀର୍ଣ୍ଣ ଉଡ଼ାଜାହାଜ ଷ୍ଟେସନ୍‌ର ଲାଉଞ୍ଜ୍ ଏକ ଅସମୀଚୀନ ସ୍ଥାନ ବୋଲି ନିଶ୍ଚୟ କରି ଲୋକଟିର ପାଖ କଟେଇ ଚାଲିଯିବା ପାଇଁ ଉଦ୍ୟତ ହେଲାବେଳେ ସେ ଲୋକଟିର ହାତରେ କ'ଣ ଗୋଟାଏ ବସ୍ତୁ ଦେଖି ମୁଁ ମୁହୂର୍ତ୍ତକ ପାଇଁ ଠିଆ ହୋଇଗଲି । ମୋ' ସହିତ କଥୋପକଥନ କରୁଥିବା ବେଳେ ସେଇ ଲୋକଟି ତା'ର ହାତରେ ଧରିଥିବା ବ୍ୟାଗ୍‌ଟି ଭିତରୁ ସେଇ ବସ୍ତୁଟିକୁ ଉଦ୍ଧାର କରି ସାରିଥିଲା । ବିଶେଷ କିଛି ଜିନିଷ ନୁହେଁ । ଗୋଟାଏ ଗୋଲାକାର ତମ୍ବା ପାତିଆ । ମୁଁ କିଛି କହିବାର ସୁଯୋଗ ପାଇବା ପୂର୍ବରୁ ସେଇ ଲୋକଟି ଖପ୍ କରି ମୋର ବାଁ ହାତର ମଣିବନ୍ଧଟିକୁ ଧରିନେଇ ତା'ର ଚାରିପଟେ ସେଇ ତମ୍ବା ପାତିଆଟିକୁ ନିପୁଣତାର ସହିତ ପିନ୍ଧେଇ ଦେଇ ସାରିଥିଲା । ଏପରି ଏକ ଆକସ୍ମିକ ପରିସ୍ଥିତିରେ ମୋର କ'ଣ କହିବା ବା କରିବା ଉଚିତ୍ ଏହି କଥା ଭାବୁ ଭାବୁ ସେ ପୁଣି କହିଲା, ''ଏହା ମନ୍ତ୍ରପୂତ, ଏହା ସଂପୂର୍ଣ୍ଣ ଭାବରେ ଆକ୍‌ସିଡ଼େଣ୍ଟ ପ୍ରୁଫ୍ । ଦାମ୍ ମାତ୍ର ପାଞ୍ଚଟଙ୍କା ।''

ଏଇ କଥାତକ କହିଲା ବେଳେ ସେଇ ଲୋକଟି ମୋ ବାଁ ହାତର ମଣିବନ୍ଧ ଉପରେ ତା'ର ହାତର ମୁଠା ତଥାପି ଅକ୍ଷୁର୍ଣ୍ଣ ରଖିଥାଏ ଓ ମଝିରେ ମଝିରେ ସାମାନ୍ୟ ଚାପ ଦେଉଥାଏ ମଧ୍ୟ । କିଛି ଇଚ୍ଛା ଓ କିଛି ଅନିଚ୍ଛା ମଧ୍ୟରେ ଅଳ୍ପ କିଛି ମୁହୂର୍ତ୍ତ ଦୋଳାୟିତ ହେଲା ପରେ ମୁଁ ମନସ୍ଥ କଲି ଯେ ପାଞ୍ଚଟି ଟଙ୍କା ଦେଇ ଏ ପରିସ୍ଥିତିରୁ ତୁରନ୍ତ ମୁକ୍ତିପାଇବା ବୁଦ୍ଧିମାନର କାର୍ଯ୍ୟ ହେବ । ସେ ଯେପରି ମୋର ମନକଥା ଜାଣି ମୋର ମଣିବନ୍ଧ ଉପରୁ ତା'ର ହାତର ଚାପ ହୁଗୁଳା କରି ଆଣିଲା । ମୁଁ ପକେଟ୍‌ରୁ ଖଣ୍ଡେ ପାଞ୍ଚଟଙ୍କିଆ ନୋଟ୍ କାଢ଼ି ତାକୁ ଦେଲି । ନୋଟ୍‌ଟିକୁ ପକେଟ୍‌ରେ ରଖି ଗୋଟିଏ ଦୃଢ଼ ତର୍ଜନି ଉତ୍ତୋଳିତ୍ କରି କେବଳ କହିଲେ, ''ହ୍ୟାଭ୍ ଫେଥ୍, ଇଟ୍ ଇଜ୍ ହଣ୍ଡ୍ରେଡ୍ ପର୍‌ସେଣ୍ଟ ଆକ୍‌ସିଡ଼େଣ୍ଟ ପ୍ରୁଫ୍ ।''

ମାଇକ୍‌ରଧାତବ ଘୋଷଣା ଶୁଣି ଉଡ଼ାଜାହାଜ ଆଡ଼କୁ ଗଲି । କେବଳ ଦୁଃଖ ଏତିକି ଏୟାର୍‌ପୋର୍ଟ୍‌ରେ ଖଣ୍ଡେ ମଧ ସିଗାରେଟ୍ କିଣି ପରିଲି ନାହିଁ । ସାଙ୍ଗରେ ଖଣ୍ଡେ ହେଲେ କାଗଜ ବା ମ୍ୟାଗାଜିନ୍ ନାହିଁ, ଅର୍ଥାତ୍ ଆସନ୍ତା ଦେଢ଼ଘଣ୍ଟା କାଳ କିଛି ନକରି ଦକ୍ଷିଣ-ପୂର୍ବ କୋଣକୁ ମୁହଁକରି ମତେ ଶୂନ୍ୟ ଆକାଶରେ ଝୁଲି ରହିବାକୁ ପଡ଼ିବ। କେଜାଣି କାହିଁକି ସେଦିନ ଜାହାଜର ଯାତ୍ରୀ ସଂଖ୍ୟା ଅପ୍ରତ୍ୟାଶିତ ଭାବରେ କମ୍ ଥିଲା, ମାତ୍ର ସାତ ଜଣ କି ଆଠ ଜଣ । ତେଣୁ ଯାତ୍ରୀମାନଙ୍କର ପରସ୍ପରଠାରୁ ଦୂରତା ଆପେକ୍ଷିକ ଭାବରେ ବେଶ୍ ବେଶି ଥିଲା । ମୁଁ ବସିଥିଲି କକ୍ ପିଟ୍ ଠାରୁ ଦୁଇଟି ସିଟ୍ ଛାଡ଼ି ଗୋଟାଏ ଉଇଣ୍ଡୋ ସିଟ୍‌ରେ ଓ ମୋର ବାଁ ପାଖ ସିଟ୍‌ରେ ମଧ ଅନ୍ୟ ଜଣେ ଭଦ୍ରବ୍ୟକ୍ତି ବସିଥିଲେ । ଅଗତ୍ୟା ସେଇ ଅଜ୍ଞାତ ବ୍ୟକ୍ତି ଉପରେ ଜଣେ ବେସରକାରୀ ଗୁଇନ୍ଦା ପରି ଗବେଷଣା ଆରମ୍ଭ କରିଦେଲି । ଏମିତି ମିଛିମିଛିକା ଗୁଇନ୍ଦାଗିରି କରିବାରେ ବେଶ୍ କିଛି ସମୟ କଟିଯାଏ ।

ଭଦ୍ର ଲୋକଙ୍କର ମୁହଁର ଚେହେରା କହେ ସେ ଉତ୍ତର ଭାରତର ଲୋକ ଓତାଙ୍କର ବୟସ ତିରିଶି ଠାରୁ ବତିଶି ଭିତରେ ହେବ । ମୂଲ୍ୟବାନ ପୋଷାକ ଓ ଓମେଗା ହାତ ଘଡ଼ି ଦେଖିଲେ ଇ ବୁଝାଯାଏ ସେ ଧନୀ ଓ ଏକ ସଂଭ୍ରାନ୍ତ ପରିବାରର ଲୋକ । ପରିଚ୍ଛଦ ମୂଲ୍ୟବାନ ହେଲେ ହେଁ ଚାକଚକ୍ୟର ଅଶ୍ଳୀଳ ଆଡ଼ମ୍ବର ନାହିଁ । ଆଟାଚିକେସ୍‌ର ନାମ ଫଳକ ଦେଖି ଯେ କେହି ଅନୁମାନ କରିପାରିବ ଯେ ଭଦ୍ରବ୍ୟକ୍ତିଙ୍କର ନାଁ ମିଃ. ଆହୁଜା । ହାତରେ ଆଙ୍ଗୁଠିର ପବଗୁଡ଼ିକ ସୁଗଠିତ ଓ ମ୍ୟାନିକିଓର କରାଯାଇଥିବା ସୁନ୍ଦର ଅମ୍ଳାନ ନଖଗୁଡ଼ିକ ଦେଖିଲେ ବୁଝାଯାଏ ଯେ ଭଦ୍ରବ୍ୟକ୍ତି ନିଜ ହାତରେ କାମ କରିବାରେ ଅନଭ୍ୟସ୍ତ । କୌଣସି ବିଜିନେସ୍ ଏକ୍‌ଜିକିଉଟିଭ୍ ହୋଇ ପାରିଥାନ୍ତି । ଯୋତାର ତଳିପା ଆଦୌ ସରିନାହିଁ ବା ଧୂଳିଧୂସର ନୁହେଁ । ତେଣୁ ଭଦ୍ରବ୍ୟକ୍ତି ଗାଡ଼ିରେ ଯିବା ଆସିବା କରିବାରେ ଅଭ୍ୟସ୍ତ ।

ପାଖରେ ପଡ଼ି ରହିଥିବା ଇକନମିକ୍ ଟାଇମ୍‌ସ୍ ସୂଚନା ଦିଏ ଯେ ସିଏ ବ୍ୟବସାୟ ସହିତ ସଂପୃକ୍ତ ଥାଇପାରନ୍ତି । କୋଟ୍‌ର ବୋତାମ୍ ଗୁଡ଼ିକରେ ଖୁବ୍ ଛୋଟ ଛୋଟ ଅକ୍ଷରରେ କ'ଣ ସବୁ ଲେଖାଯାଇଛି, ଖୁବ୍ ପାଖକୁ ନ ଯାଇ ଦେଖିଲେ ପଢ଼ିବା ସମ୍ଭବ ନୁହେଁ । ହେଇପାରେ କୋଟ୍ ଖଣ୍ଡିକ ମଧ୍ୟ ବିଦେଶରୁ ତିଆରି କରାହୋଇ ଆସିଛି । ଭଦ୍ରବ୍ୟକ୍ତିଙ୍କର ଓଠରେ ଓ ଦାନ୍ତରେ ନିକୋଟିନ୍‌ର ସ୍ପଷ୍ଟ ସ୍ୱାକ୍ଷର....।

ଠିକ୍ ଏହି ସମୟରେ ଏୟାର୍ ହୋଷ୍ଟେସ୍ ଘୋଷଣା କଲା ଯେ, ଯାତ୍ରୀମାନେ ସେମାନଙ୍କର ସିଟ୍ ବେଲ୍‌ଟ ଖୋଲି ଦେଇ ପାରନ୍ତି ଓ ଯେଉଁମାନେ ଚାହିଁବେ ଧୂମ ପାନ ମଧ କରି ପାରନ୍ତି । ଏଇ ଘୋଷଣା ପରେ ପରେ ଭଦ୍ରବ୍ୟକ୍ତି ଜଣକ ଅପ୍ରତ୍ୟାଶିତ ଭାବରେ ମୋ' ଆଗରେ ଗୋଟାଏ ଦାମୀ ସିଗାରେଟ୍ କେସ୍ ଖୋଲିଧରି କହିଲେ, ''ଆଶାକରେ ଆପଣଙ୍କର ଏ ବ୍ରାଣ୍ଡ୍ ଚଳିବ ?'' କେଉଁ ପାମର କୁହେ ଖୋଦା ନାହାନ୍ତି ବୋଲି । ''ଅତି ଆନନ୍ଦରେ ଚଳିବ'' ମୁଁ କହିଲି ଓ ଯୋଗ କଲି ଯେ, ''ଏୟାର୍‌ପୋର୍ଟର ସମସ୍ତ ଦୋକାନ ବନ୍ଦ ଥିବାରୁ ମୁଁ ସିଗାରେଟ୍ ସାଙ୍ଗରେ ଆଣି ପାରିନାହିଁ'' । ଭବିଷ୍ୟତରେ ଆହୁରି ସିଗାରେଟ୍ ପାଇବା ପନ୍ଥାଟିକୁ ସରଳ କରିଦେବା ପାଇଁ ମୁଁ ଶେଷ ପଦଟିକୁ ଜାଣି ଶୁଣି ଯୋଗ କରିଥିଲି । ସିଗାରେଟ୍ କେସ୍‌ରୁ ଖଣ୍ଡିଏ ସିଗାରେଟ୍ ନେଲାବେଳେ ଲକ୍ଷ୍ୟ କରିଥିଲି ସେଥିରେ ଉତ୍କୀର୍ଣ୍ଣ ଥିଲା ''କାର୍ନ ବେ ଷ୍ଟ୍ରୀଟ୍, ଲଣ୍ଡନ'' । ମୋର ପୂର୍ବ ଅନୁମାନରେ ସତ୍ୟତା କିଛିଧ୍ ପ୍ରମାଣିତ ହୋଇଥିବାରୁ ମୁଁ ମନେ ମନେ ଖୁସି ହେଲି ।

ଭଦ୍ରଲୋକ ଆମ ଦୁହିଁଙ୍କର ସିଗାରେଟ୍‌ରେ ଅଗ୍ନି ସଂଯୋଗ କରି ସାରିବା ପରେ ଟିକିଏ ଧୂଆଁ ଛାଡ଼ି କହିଲେ, ''ସତ୍ୟ କହିବାକୁ ଗଲେ ମୁଁ ଏଇ ଯାତ୍ରାକାଳ ଭିତରେ ଆପଣଙ୍କ ସହିତ ସାମାନ୍ୟ ଆତ୍ମୀୟତା କରିବା ପାଇଁ ଆପଣଙ୍କୁ ସିଗାରେଟ୍ ଅଫର୍ କରିଥିଲି ।'' ମୁଁ କହିଲି, ''ଗଡ୍ ଇଜ୍ ଗ୍ରେଟ୍, ନ ହେଲେ କି ଏଇ ରୁଦ୍ଧ କୋଠରୀ ଭିତରେ ସିଗାରେଟ୍ ଓ ବନ୍ଧୁ ଉଭୟେ ମିଳିବା ସମ୍ଭବ ?'' ଇତିମଧ୍ୟରେ ମିଃ. ଆଡୁକିଆ ପକେଟ୍‌ରୁ ଗୋଟିଏ ଛୋଟ ଶିଶି କାଢ଼ି ସେଥିରୁ ଦୁଇଟା ବଟିକା ଖାଇନେଇ କହିଲେ, ''ଦେଖୁଛନ୍ତି । ଟ୍ରାଙ୍କୁଲାଇଜର୍ ପିଲ୍, ମୁଁ ଭାରି ନରଭସ୍ ଲୋକ, ମୁଁ ଉଡ଼ାଜାହାଜରେ ଯିବା ଆସିବା ଆଦୌ ପସନ୍ଦ କରେ ନାହିଁ ।''

—ତାହାହେଲେ ଆପଣ ଆସନ୍ତି କାହିଁକି ?

—ସମୟ, ସମୟ, ଦି ଥିଫ୍...।

''ଆପଣଙ୍କର ଅସୁବିଧାଟା ଠିକ୍ କ'ଣ''—ମୁଁ ପଚାରିଲି । ହାତରେ ଅନେକ ସମୟ, ତା'କୁ ଠିକ୍ ଭାବରେ ବିନିଯୋଗ କରିବାକୁ ହେଲେ ଭଦ୍ରବ୍ୟକ୍ତିଙ୍କୁ ଗପ କରିବା ପାଇଁ ଉତ୍ସାହିତ କରାଯିବା ଉଚିତ୍ । ଭଦ୍ରବ୍ୟକ୍ତି ମୋର ପ୍ରଶ୍ନରେ ମତେ ସାମାନ୍ୟ କେଇ

ସେକେଣ୍ଡ ଚାହିଁ ରହି କହିଲେ, "ମୋର ସବୁବେଳେ ମନେହୁଏ ପ୍ଲେନ୍‌ଟା କେତେବେଳେ ଖସିପଡ଼ିପାରେ !"

ମୁଁ କହିଲି, "ନାଁ ନାଁ...ସେମିତି କାହିଁକି ଭାବୁଛନ୍ତି ?"

ସେ କହିଲେ, "ଏଟା ତ ଗୋଟାଏ କାଳ୍ପନିକ କଥା ନୁହେଁ—ପ୍ଲେନ୍ ଖସିପଡ଼େ ।"

ମୁଁ କହିଲି, "ପ୍ରୋବେବିଲିଟି ତ ପୁଣି ଗୋଟାଏ ଅଛି ।"

ସେ କହିଲେ, "ଏଠି ଥିଓରୀ ଅଫ୍ ପ୍ରୋବେବିଲିଟି କାମ କରେ ନାହିଁ—ଏଠି ହେଲା ଥିଓରୀ ଅଫ୍ ହ୍ୟାଜାର୍ଡ୍‌ସ୍, ଅର୍ଥାତ୍ ପ୍ରେତ୍ୟେକଟି ପ୍ଲେନ୍ ଖସିପଡ଼ିପାରେ ଓ ନପଡ଼ିପାରେ ମଧ୍ୟ । ଫିଫ୍‌ଟି-ଫିଫ୍‌ଟି ।"

ବୋଧହୁଏ ଗୋଟାଏ ପୂରା ମିନିଟ୍ ଆମେ ଦୁଇଜଣଯାକ ନୀରବରେ ବସିଥିଲୁ । ଏଇ ମିନିଟ୍ ଭିତରେ ସେ, ତାଙ୍କର ଡାହାଣ ହାତର ବୁଢ଼ା ଆଙ୍ଗୁଠିର ଟିପ ଅବଶିଷ୍ଟ ଚାରୋଟି ଆଙ୍ଗୁଠିର ଟିପ ସହିତ ବାରମ୍ବାର ସ୍ପର୍ଶ କରିବାକୁ ଲାଗିଲେ—ଅଧା ଜଳିଥିବା ସିଗାରେଟ୍‌ଟିକୁ ମୋଡ଼ିମାଡ଼ି ଆସ୍‌ଟ୍ରେରେ ଦଳିଦେଇ, ଆଉ ଗୋଟାଏ ସିଗାରେଟ୍‌ରେ ନିଆଁ ଧରାଇ ଡାହାଣ ହାତର ବୁଢ଼ା ଓ ବିଶି ଆଙ୍ଗୁଠିକୁ ନେକ୍ ଟାଇର ନଟ୍ ପାଖରୁ ଶେଷ ପର୍ଯ୍ୟନ୍ତ ଥରେ ସାଉଁଳାଇ ଆଣି ପୁଣି ଟାଇଟାକୁ ହାତରେ ଧରି ତାଙ୍କର ଚଷମାଟିକୁ ନାକ ଉପରେ ଆଡ୍‌ଜଷ୍ଟ କରିନେଲେ ।

ଜାହାଜ ସମାନ ଗତିରେ ଚାଲିଛି, ମନେ ହେଉଛି ଯେପରି ଜାହାଜଟି ଶୂନ୍ୟ ଆକାଶରେ ସ୍ଥିର ହୋଇଯାଇଛି ।

ସେ ତାଙ୍କର ହାତ ଘଡ଼ିଟିକୁ ବେଶ୍ କିଛି ସମୟ ସମୀକ୍ଷା କରି କହିଲେ, "ଆହୁରି ପଇଁତିରିଶି ମିନିଟ୍ ବାକି—ଇଟ୍‌ସ୍ ଏ ଲଙ୍ଗ୍ ଟାଇମ୍ ବଟ୍...।" ସେ ସ୍ୱଗତୋକ୍ତି କଲାପରି କଥାଟିକୁ କହିଲେ ।

ମୁଁ କଥାର ଖିଅ ଧରିଲି, "ଆମେ ଯେତେ ସମୟ ଉଡ଼ିଲେଣି ତା' ତୁଳନାରେ ପଇଁତିରିଶି ମିନିଟ୍ କ'ଣ ବା ବେଶି ସମୟ ?"

ମିଃ. ଆଡୁକିଆ ତାଙ୍କର ଡାହାଣ ହାତଟିକୁ ମୋ' ସିଟ୍ ପଛପଟେ ବୁଲେଇ ଆଣି ମୋ'ର ଡାହାଣ କାନ୍ଧ ଉପରେ ରଖିଲେ, ଯେପରି ସେ ଏହି ଶାରୀରିକ ସଂଲଗ୍ନତା ଫଳରେ କିଛିଟା ଆତ୍ମବିଶ୍ୱାସ ପାଉଛନ୍ତି । ସେ ହଠାତ୍ କହିଲେ, "ମାତ୍ର ସାତଦିନ ତଳେ ଏଇ ଫ୍ଲାଇଟ୍‌ରେ ମୋର ଜଣେ ବନ୍ଧୁ ମରିଯାଇଛନ୍ତି ।" ମୁଁ ମୋର ମୁହଁର ଭାବ ସାମାନ୍ୟ ମାତ୍ର ପରିବର୍ତ୍ତନ କରି କହିଲି, "ଗତ ଦଶବର୍ଷ ଭିତରେ ମୋର ଯେତେ ବନ୍ଧୁ, ଏଇ ଫ୍ଲାଇଟ୍‌ରେ ଯାଇଛନ୍ତି, ତା' ମଧ୍ୟରୁ ଜଣେ ହେଲେ ମଧ୍ୟ ମରିନାହାନ୍ତି ।"

—ଆପଣ ମୋତେ ଥଟ୍ଟା କରୁଛନ୍ତି ?

—ନାଁ, ମୋତେ ନୁହେଁ, ମୁଁ କହୁଛି ହାର୍ଡ୍ ଫ୍ୟାକ୍ଟସ୍ ।

—ବିଶ୍ୱାସ କରନ୍ତୁ, ମୋ'ର ଡାୟୋଷ୍ଟଲ୍ ବଢ଼ି ବଢ଼ି ଯାଉଛି ।

ମୁଁ ତାଙ୍କର ଡାହାଣ ଜଙ୍ଘ ଉପରେ ମୋ'ର ବାଁ ପାପୁଲିର ଚାପଦେଇ କହିଲି, ''ଡୋଣ୍ଟ ୟୁ ଓ୍ୱରି ?''

ସମୟ ଯେପରି ଆହୁରି ଆହୁରି ମନ୍ଥର ହେଇ ଆସୁଛି । ଘଣ୍ଟାର ମିନିଟ୍ କଣ୍ଟା ଆଗକୁ ହିଁ ଯିବାକୁ ଚାହେଁ ନା । ପ୍ଲେନ୍‌ଟା ମଧ୍ୟ ସ୍ଥିର ହୋଇ ଯାଇଛି । ମନେ ହେଉଛି ଆମେ ଯେପରି ଚାଲିଗଲୁ ବାୟୁମଣ୍ଡଳର ଉର୍ଦ୍ଧ୍ୱକୁ ଯେଉଁଠି ଗତି ନାହିଁ, କେବଳ ଭାରହୀନ ସ୍ଥିତିର ଲଘୁ ସନ୍ତରଣ ।

ଆହୁରି ପଚିଶି ମିନିଟ୍ ବାକି ।

ଠିକ୍ ଏହି ସମୟରେ ଜାହାଜ ଦିଗ ପରିବର୍ତ୍ତନ କରିବା ପାଇଁ ତା'ର ବାଁ ପଟର ବିରାଟ ପକ୍ଷକୁ ନିମ୍ନଗତି କଲା । ସମୁଦାୟ ପ୍ଲେନ୍‌ଟା ଗୋଟାଏ ମୁହୂର୍ତ୍ତ ପାଇଁ ତା'ର ଭାରସାମ୍ୟ ହରାଇ ବସିଲା । ଭଦ୍ରବ୍ୟକ୍ତି ନିଜର ଅଜାଣତରେ ମୋ'ର କୋଟ୍‌ର ଲ୍ୟାପେଲ୍‌ଟାକୁ ମୁଠାଇଧରି, ଗୋଟାଏ ବାଦୁଡ଼ି ପରି ଝୁଲି ରହିବାର ଅବସ୍ଥା । ପର ମୁହୂର୍ତ୍ତରେ ଜାହାଜ ତା'ର ପୂର୍ବ ଭାରସାମ୍ୟ ଫେରି ପାଇଲା । ମିଃ. ଆଡୁକିଆ ମୋର ଲ୍ୟାପେଲ୍ ଉପରୁ ତାଙ୍କର ମୁଠ ହୁଗୁଳା କରି ନେଇ କହିଲେ, ''ଆଇ ୟାମ୍ ରିଏଲ୍ଲି ସରି ।''

ମୁଁ କେବଳ ସାମାନ୍ୟ ସ୍ମିତହାସ୍ୟ କରି ନୀରବରେ ଘୋଷଣା କଲି ଯେ—ଏପରି ହୋଇଥାଏ, ମୁଁ କିଛି ମନେ କରିନାହିଁ ।

ଏଇ ସମୟରେ ଜାହାଜଟା ଗୋଟାଏ ଏୟାର୍ ପକେଟ୍ ଭିତରେ ପଡ଼ିଗଲା ନା' କ'ଣ—ହଠାତ୍ ଜାହାଜଟା ଅଚାନକ ପ୍ରାୟ ପନ୍ଦର କୋଡ଼ିଏ ଫୁଟ୍ ତଳକୁ ଖସିପଡ଼ି ବେଶ୍ ଆନ୍ଦୋଳିତ ହୋଇ ଉଠିଲା । ଭଦ୍ରଲୋକ ଏ ଧକ୍‌କାଟା ଚୁପ୍‌ଚାପ୍ ହଜମ କରିନେଲେ ।

କିଛି ସମୟ ପରେ ଭଦ୍ରବ୍ୟକ୍ତି କହିଲେ, ''ମୁଁ ତ ଆଗରୁ କହିଛି ମୁଁ ଟିକେ ନରଭସ୍ ଲୋକ, ଆଉ ତା'ଛଡ଼ା,....ମାଇଁ ଷ୍ଟେକ୍‌ସ୍ ଆର୍ ର୍‌ୟାଦର୍ ହାଇ...।''

ମୁଁ ପଚାରିଲି, ''ବଟ୍ ହ୍ୱାଇ ?''

ସେ କହିଲେ, ''ଆମର ଅନେକ ଗୁଡ଼ିଏ ଲୁଗାକଳ ଅଛି ବମ୍ବେ ଆଉ ଅହମ୍ମଦାବାଦ୍‌ରେ, ଯାହାର ଆୟ କୋଟି କୋଟି ଟଙ୍କା, ପ୍ରାୟ ଶହେ କୋଟି ଟଙ୍କାର ଇଣ୍ଡିଆନ୍ ଟେକ୍‌ସଟାଇଲ୍‌ସ ଆମେ ଇଂପୋର୍ଟ କରୁ ପ୍ରତିବର୍ଷ ।''

ମୁଁ ପଚାରିଲି, ''ସୋ ହ୍ୱାଟ୍ ?''

ସେ ପ୍ରଥମେ କିଛି ମୁହୂର୍ତ୍ତ ନୀରବ ରହିଲେ, ତା'ପରେ ଖଣ୍ଡେ ସିଗାରେଟ୍ କାଢ଼ି ସେଥିରେ ନିଆଁ ଧରେଇ ଧୂଆଁ ଛାଡୁଛାଡୁ ସଂକ୍ଷେପରେ କହିଲେ, ''ମୁଁ ସେଇ ବିଜିନେସ୍ ହାଉସ୍ ଗୁଡ଼ିକର ଏକମାତ୍ର ଉତ୍ତରାଧିକାରୀ ।''

କଥାଟା ଶୁଣି ମୁଁ ଯେ ଅତି ସ୍ୱଳ୍ପ ଭୋଲ୍‌ଟେଜ୍‌ର ଗୋଟିଏ ଇଲେକ୍‌ଟ୍ରିକ୍ ଧକ୍‌କା ପାଇଲି ନାହିଁ, ଏପରି ନୁହଁ । ମନେ ମନେ ଭାବିଲି ଯଦି ମୋର ସାଧ ଥାଆନ୍ତା ତା'ହେଲେ ଏହି ନରଭସ୍ ମଲ୍‌ଟିମିଲିୟନେୟାର୍ ଉତ୍ତରାଧିକାରୀଟିକି କିଡ୍‌ନ୍ୟାପ୍ କରିବା ପାଇଁ ହୁଏ ତ ପ୍ଲେନ୍‌ଟିକୁ ହାଇଜ୍ୟାକ୍ କରି ପାରିଥା'ନ୍ତି । ଯୁଗପତ୍ କରୁଣାର ଉଦ୍ରେକ ହେଲା ଯେ ଭଦ୍ରଲୋକ ତାଙ୍କର ଅନ୍ତିମ ମୁହୂର୍ତ୍ତରେ ଲୁଗାକଳ କାହିଁକି, ଗୋଟାଏ ବସ୍ତ୍ର ମଧ୍ୟ ତାଙ୍କ ସଙ୍ଗରେ ନେଇଯାଇ ପାରିବେ ନାହିଁ ।

ମୁଁ ଚୁପ୍‌ଚାପ୍ ଏଇକଥା ଭାବୁଥିଲା ବେଳେ ଭଦ୍ରଲୋକ ନିଶ୍ଚୟ ଆମୋଦିତ ହୋଇଥିବେ, ମତେ ମାଇଲ୍ଡ଼ ସକ୍ ଦେଇପାରିଛନ୍ତି ବୋଲି ।

ଠିକ୍ ଏହି ସମୟରେ ବିଶୁଦ୍ଧ ଇଂରାଜୀରେ ଏୟାର୍-ହୋଷ୍ଟେସ୍ ମାଇକ୍ ଯୋଗେ ଘୋଷଣା କଲେ ଯେ କଲିକତାରେ ବିଦ୍ୟୁତ୍ ଘଡ଼ଘଡ଼ି ସହ ପ୍ରଚଣ୍ଡ ବୃଷ୍ଟିପାତ ହେଉଛି । କ୍ୟାପ୍‌ଟେନ୍ ବସୁ ଆଶାକରୁଛନ୍ତି ଯେ, ସେ ଏହା ସତ୍ତ୍ୱେ ମଧ୍ୟ ନିର୍ବିଘ୍ନରେ ଦମ୍‌ଦମ୍ ବିମାନଘାଟୀରେ ଲ୍ୟାଣ୍ଡ୍ କରିପାରିବେ । ଏୟାର୍-ହୋଷ୍ଟେସ୍‌ଟିର ଧାତବ କଣ୍ଠସ୍ୱର ଶୁଣା ଯାଉଥାଏ ଏକ ଭୌତିକ ଦୈବୀବାଣୀ ପରି ।

ମୁହୂର୍ତ୍ତକରେ ସବୁ କିଛି ଅନ୍ଧାର ହୋଇଗଲା ଓ ଆମର ବିମାନଟି କୋଇଲା ପରି କଳାକଳା ମେଘ ଭିତରେ ଟୁବ୍ କରି ବୁଡ଼ିଗଲା । ପରେ ପରେ ବାରମ୍ବାର ଲାଲ ଆଲୁଅରେ ଲେଖି ହେଇଗଲା ଓ ଘୋଷଣା କରାଗଲା ଯେ, ଯାତ୍ରୀମାନେ ଯେତେ ଶୀଘ୍ର ପାରନ୍ତି ସେମାନଙ୍କର ସିଟ୍ ବେଲ୍‌ଟ୍ ବାନ୍ଧି ନିଅନ୍ତୁ, ତା'ପରେ ପରେ ଏକ ଅନ୍ତହୀନ ଅବତରଣ ଆଉ ଅବତରଣ । ମନେ ହେଲା ଯେପରି ଆଉ ମାତ୍ର ଅଳ୍ପ କିଛି ମହୂର୍ତ୍ତ ମଧ୍ୟରେ ଜାହାଜଟି ତଳେ ବାଜି ଚୂନା ହୋଇଯିବ ।

ଭଦ୍ରବ୍ୟକ୍ତି ତାଙ୍କ ନିଜ ଉପରେ ସମସ୍ତ ଆୟତ୍ତ ହରାଇ ବସିଲେ । ସେ ଜଣେ ହିଷ୍ଟ୍ରିୟା ରୋଗୀ ପରି ଦୁଇହାତରେ ମତେ କୁଣ୍ଢେଇ ଧରି ଚିତ୍କାର କରି ଉଠିଲେ, ''ଆପଣ ମତେ କଥା ଦିଅନ୍ତୁ ଏଇ ପ୍ଲେନ୍‌ର କୌଣସି ଆକ୍‌ସିଡ଼େଣ୍ଟ୍ ହବ ନାହିଁ....ମତେ କଥା ଦିଅନ୍ତୁ...।''

ଆକ୍‌ସିଡ଼େଣ୍ଟ୍ କଥାଟି ଶୁଣି ମୋର ଆଖି ଛାଏଁ ଛାଏଁ ମୋର ବାଁ ହାତର ମଣିବନ୍ଧ ଉପରେ ଥିବା ତମ୍ବାପାତିଆଟା ଉପରକୁ ଚାଲିଗଲା । ମୁଁ ସେହି ହତଭମ୍ବ ଅବସ୍ଥାରେ

ମଧ ତମ୍ବାପାତିଆଟାକୁ ଖୋଲିନେଇ ଭଦ୍ରଲୋକଙ୍କର ମଣିବନ୍ଧରେ ପିନ୍ଧାଇ ଦେଲି, କହିଲି–''ବିଶ୍ୱାସ କରନ୍ତୁ, ଏହା ଆକ୍ସିଡ଼େଣ୍ଟ ପ୍ରୁଫ୍ ।''

ଭଦ୍ରଲୋକ ମୋତେ ତାଙ୍କର ଧୃତରାଷ୍ଟ୍ର ଆଲିଙ୍ଗନରୁ ମୁକ୍ତ କରି ଚୁପ୍ ଚାପ୍ ହୋଇ ବସି ରହିଲେ । ମୁହୂର୍ତ୍ତକରେ ତାଙ୍କର ସମସ୍ତ ଉଦ୍‌ବିଗ୍ନତା ଉଭେଇ ଗଲା । ଜାହାଜ ଯାହା ତଳକୁ ଖସୁଥିଲା ହଠାତ୍ ମୁହୂର୍ତ୍ତକ ପାଇଁ ସ୍ଥିର ହୋଇଯାଇ ଉପରକୁ ଉଠିବାକୁ ଆରମ୍ଭ କଲା । କଳାମେଘ କାଟି ଜାହାଜ ପୁଣି ଉପରକୁ ଭାସି ଉଠିଲା ଏକ ଅଫୁରନ୍ତ ସୂର୍ଯ୍ୟକିରଣର ଉଷ୍ମ ଆଲିଙ୍ଗନ ଭିତରକୁ । ଜାହାଜଟି ଆହୁରି କୋଡ଼ିଏ ମିନିଟ୍ କାଳ ଚକ୍‌କର୍ ଦେଉଥିଲା ଆଉଥରେ ଅବତରଣ କରିବା ପୂର୍ବରୁ । ଯାତ୍ରାର ଅବଶିଷ୍ଟ ସମୟ ସେ ସିଗାରେଟ୍ ଟାଣୁଲେ, ଗୋଟିଏ କିଛି ସିନେମା ମ୍ୟାଗାଜିନ୍ ଉପରେ ଆଖି ବୁଲେଇ ଆଣୁଥିଲେ ଓ ମଝିରେ ମଝିରେ ତାଙ୍କ କୋଟ୍‌ର ଆସ୍ତିନ ଟେକି ତମ୍ବାପାତିଆକୁ ଚାହୁଁଥିଲେ । ମନେ ହେଉଥିଲା ଯେପରି ଏକ ଯନ୍ତ୍ରଣାବିଦ୍ଧ ଶିଶୁର ରାତିବିକାଳି ରାହାଧରା କାନ୍ଦଣା ହଠାତ୍ ଚୁପ୍ ହୋଇଗଲା ।

ଶେଷରେ ଯେତେବେଳେ କଣ୍ଟ୍ରୋଲ୍ ଟାୱାର୍ ନିରାପତ୍ତା ଘୋଷଣା କରି ଲ୍ୟାଣ୍ଡିଂ ପାଇଁ ଅନୁମତି ଦେଲେ; ବିମାନଟି ଏକ ଦ୍ୱିଧାଗ୍ରସ୍ତ ସନ୍ଦିଗ୍ଧ ଈଗଲ୍ ପରି ଓହ୍ଲେଇବାକୁ ଆରମ୍ଭ କଲା । ବିମାନ ଦ୍ରୁତ ଗତିରେ ଉଚ୍ଚତା ସମ୍ବରଣ କରୁଥିବା ବେଳେ ମନେ ହେଉଥିଲା ମହାନଗରୀ କଲିକତା ଯେପରି ଉପରକୁ ଉପରକୁ ଉଠି ଆସୁଛି । ମିଃ. ଆତୁକିଆଙ୍କର ମୁଖ ମଣ୍ଡଳ ଦେଖାଯାଉଥିଲା ଶାନ୍ତ ଓ ସ୍ନିଗ୍ଧ ଏବଂ ସେ ମୋ ଆଡ଼କୁ ଚାହିଁ ସ୍ମିତହାସ୍ୟ କରୁଥିଲେ ।

ଏୟାରପୋର୍ଟ୍‌ରୁ ଏକତ୍ର ଆମ୍ଭେମାନେ ପଦାକୁ ଆସିଥିଲୁ । ଲାଉଞ୍ଜ୍ ପାଖରେ ୟୁନିଫର୍ମ ପିନ୍ଧା ଓ ଲିଭରିଅଣ୍ଟା ଡ୍ରାଇଭର୍ ଆସି ତାଙ୍କୁ ସଲାମ କଲା । ମିଃ. ଆତୁକିଆ ମୋତେ ତାଙ୍କ ଗାଡ଼ିରେ ନେଇ ମୋର ଗନ୍ତବ୍ୟ ସ୍ଥାନରେ ଛାଡ଼ି ଦେବେ ବୋଲି ମତେ କହିଲେ । ମୁଁ ଯେତେବେଳେ କାର୍ ପାର୍କିଂରେ ଠିଆ ହୋଇଥିବା ଇମ୍ପାଲା ଗାଡ଼ିର ମଖମଲ୍ଲୀ କୁସନ୍ ଭିତରେ ଅନେକ ତଳକୁ ତଳେଇଗଲି, ସେତେବେଳେ ମୁଁ ମନେ ମନେ ଭାବୁଥିଲି ଯେ, ଭଦ୍ରଲୋକ ଉଡ଼ାଜାହାଜରେ ତାଙ୍କ ବିଷୟରେ ଯାହା ଯାହା ସବୁ କହିଥିଲେ ସେଥିରୁ ଗୋଟିଏ ବର୍ଣ୍ଣ ମଧ ମିଥ୍ୟା ନୁହେଁ ।

ଗାଡ଼ିରେ କିଛିବାଟ ଯିବା ପରେ ମିଃ. ଆତୁକିଆ ସାମାନ୍ୟ ଇତସ୍ତତଃ ହୋଇ କହିଲେ, ''ଆପଣ ଯଦି କିଛି ମନେ ନ କରନ୍ତି ତାହାହେଲେ ମୁଁ ଏ ତମ୍ବା ବଳାଟିକୁ ପାଖରେ ରଖି ନେବାକୁ ଭାବୁଛି । ଏହାର ମୂଲ୍ୟ ସ୍ୱରୂପ ମତେ ଯାହା ଦେବାକୁ ପଡ଼ିବ ମୁଁ ତାକୁ ଦେବା ପାଇଁ ପ୍ରସ୍ତୁତ ଅଛି ।'' ମୁଁ କହିଲି, ''ପ୍ରକୃତରେ କହିବାକୁ ଗଲେ

ଏହାର ମୂଲ୍ୟ କିଛି ନାହିଁ, ଯିଏ ମୋତେ ଦେଇଥିଲା ସେ କହୁଥିଲା ଯେ, ଏହା ଏକ ମନ୍ତ୍ରସିଦ୍ଧ'' । ସେ ପୁଣି କହିଲେ, ''କିନ୍ତୁ ଏହାର ଆଶ୍ଚର୍ଯ୍ୟ ଯାଦୁ ଅଛି । ଆଜି ପର୍ଯ୍ୟନ୍ତ କୌଣସି ଟ୍ରାଙ୍କୁଲାଇଜର୍ ମତେ ଏତେ ବେଶୀ ଶାନ୍ତ କରିଦେବା ପରି ମନେହେଉ ନାହିଁ, କିନ୍ତୁ ମତେ କେତେ ଦେବାକୁ ହେବ କୁହନ୍ତୁ ?''

ମୁଁ କହିଲି, ''ଫରଗେଟ୍ ଇଟ୍ । ଆପଣ ଏହାକୁ ସ୍ୱଚ୍ଛନ୍ଦରେ ରଖିପାରନ୍ତି ।''

ମୋର ଗନ୍ତବ୍ୟ ସ୍ଥାନରେ ମୁଁ ଓହ୍ଲେଇ ଯିବା ପରେ ମତେ ଅଜସ୍ର ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ମୋ' ହାତରେ କେଇ ଖଣ୍ଡ ଶହେ ଟଙ୍କିଆ ନୋଟ୍ ଗୁଞ୍ଜିଦେବା ପାଇଁ ମିଃ. ଆଡୁକିଆ ଯଥେଷ୍ଟ ସାଧ୍ୟସାଧନା କରିଥିଲେ । କେବଳ ହାତରୁ କାର୍ଡ଼ଟିକୁ ନେଇ ସେଥିରୁ ମୁକ୍ତି ପାଇବା ମୋ ପକ୍ଷରେ ଯଥେଷ୍ଟ ଶ୍ରମସାଧ ଥିଲା ।

ସେଇ ଘଟଣା ପରଠାରୁ ମୁଁ ଉଡ଼ାଜାହାଜରେ ଯିବା ବେଳେ ମୋର ସହଯାତ୍ରୀମାନଙ୍କୁ ମୁଁ ଅତି ମନଯୋଗ ଦେଇ ନିରୀକ୍ଷଣ କରେ । ମୁଁ ତା'ପରେ ହଜାର ହଜାର ବିଦାୟସୂଚକ ଅଙ୍ଗଭଙ୍ଗୀ ଦେଖିଥିବି, ଅନେକ ବିଦାୟସୂଚକ ଚୁମ୍ବନ ଦେବା ଦେଖିଥିବି ଓ ସେଇ ସମ ପରିମାଣରେ ଆଲିଙ୍ଗନ ଅଥବା ଅଶ୍ରୁମୁଞ୍ଚନ । କେହି କେହି ଖୁବ୍ ହସୁଥାନ୍ତି, ହସି ହସି ସେମାନଙ୍କର ମେଦୁଳ ଶରୀରର ଚର୍ବିସବୁ ତରଙ୍ଗାୟିତ ହୋଇଉଠେ । ସତେ ଯେମିତି ଆଜି ପୃଥିବୀ ସରିଯିବ ଆଉ ସେଇ ତାଙ୍କର ଶେଷହସ । ଯେଉଁମାନେ ସେମାନଙ୍କର ଅଙ୍ଗଲଗ୍ନ ତନ୍ୱୀ ସୁନ୍ଦରୀ ଚାଇନା କଣ୍ଢେଇ ମାନଙ୍କର କଟିବେଷ୍ଟନ କରିଥାନ୍ତି; ଦେଖିଲେ ମନେହେବ ସେମାନଙ୍କର ହାତର ଆଙ୍ଗୁଠି ସବୁ ଝିଅଟିର ଅନାବୃତ୍ତ କଟିଦେଶରେ ଗାତକରି ବସିଯାଇଛନ୍ତି, ହାୟ ! ଆଉଥରେ କ'ଣ ତମକୁ ଜଡ଼େଇ ଧରିବାର ସୁଯୋଗ ପାଇବି ? ଆଉ କିଏ ତା'ର ଆଣ୍ଠୁ ଉପରେ ଭି.ଆଇ.ପି. ବ୍ରିଫ୍ କେସ୍‌ଟାକୁ ଧରି ଖାଲି ବନ୍ଦ କରୁଛନ୍ତି ଆଉ ଖୋଲୁଛନ୍ତି । ହୁଏତ ଖୋଜୁଥିବା ଲାଇଟର୍‌ଟି ତାଙ୍କରି ହାତମୁଠା ଭିତରେ ଅଛି । ଆଉ ଓଠ ଉପରେ ଥରେ ଦୁଇଥର ଚାପିଦେଇ ପୁଣି ଥରେ ଫେରେଇ ନେଇଛି ତାର ମୂଳ ସ୍ଥାନକୁ । ଆଉ କାହାର ପାଟିରେ ଅଗ୍ନି ସଂଯୋଗ ନ ହୋଇଥିବା ଗୋଟାଏ ଲମ୍ବା ସିଗାରେଟ୍, ବନ୍‌ସି ଖଡ଼ାର ତେରେଣ୍ଡା ପରି ଉଠୁଛି ପଡୁଛି, ଉଠୁଛି ପଡୁଛି । ବେଳେ ବେଳେ ଲାଉଞ୍ଜଟା ଏକ ଅସହ୍ୟ ନୀରବତାରେ ଭାରାକ୍ରାନ୍ତ ହୋଇ ଉଠେ । ଯେ'ଝା ସିଟ୍‌ରେ ଗୋଡ଼ରେ ଗୋଡ଼ ଛନ୍ଦି ନିଶ୍ଚଳ ଭାବରେ ବସି ରହିଛନ୍ତି ଅପେକ୍ଷମାଣ ଯାତ୍ରୀମାନେ । ଗୋଟାଏ ପିନ୍ ପଡ଼ି ଗଲେ ବି ଶୁଣାଯିବ । ସେମାନଙ୍କର ଏଇ ସୁସଜ୍ଜିତ ଶୃଙ୍ଖଳିତ ଗୋଡ଼ ଗୁଡ଼ିକର ଧାଡ଼ିକୁ କିଏ କ'ଣ ଲୁହା ଜଞ୍ଜିର ଦେଇ ଚଟାଣ ସହିତ ବାନ୍ଧି ରଖିଛି ! ତା'ହେଲେ ସେମାନେ ଏଡ଼େ ନିଶ୍ଚଳ କାହିଁକି ! ସେମାନେ ଏତେ ଚୁପ୍‌ଚାପ୍ କାହିଁକି ?

ସେମାନେ ବସିଛନ୍ତି ଏୟାର୍‌ପୋର୍ଟ ଲାଉଞ୍ଜରେ ନା' ଆକାଶରେ ଉଡୁଥିବା ଏକ ବ୍ୟୋମଯାନର ସିଟ୍‌ରେ ?

ସାମ୍ନାରେ ଥୁଆ ଯାଇଥିବା ରେଡ଼୍‌କ୍ରସ୍ ପାଇଁ ଉଦ୍ଦିଷ୍ଟ କାଚର ସୁଦୃଶ୍ୟ ଦାନପାତ୍ରଟି ଟଙ୍କିକିଆ ଓ ପାଞ୍ଚଟଙ୍କିଆ ନୋଟ୍‌ରେ ଭର୍ତ୍ତି ହୋଇଗଲା । ଏହା କ'ଣ ଅନାବିଳ ଦାନ ନା' ଏହା ଭବିଷ୍ୟତର ଅନିଶ୍ଚିତ ମୁହୂର୍ତ୍ତଗୁଡ଼ିକ ପାଇଁ ଆର୍ଥିକ କ୍ଷତି ପୂରଣ ?

କିନ୍ତୁ ମିଃ. ସୁବ୍ରମନିୟମ୍ ତମେ ମୋର ଅନେକ ଆଗରୁ ଏହାସବୁ ଲକ୍ଷ୍ୟ କରିଥିଲ ।

କିଛିଦିନ ପରେ ଅକସ୍ମାତ୍, ପୁଣି ଥରେ ମିଃ. ସୁବ୍ରମନିୟମ୍‌ଙ୍କ ସହିତ ପାଟନା ଏୟାର୍‌ପୋର୍ଟରେ ହିଁ ଦେଖା ହୁଏ । ସେ ମୋତେ ପରିଚିତ ଦୃଷ୍ଟିରେ ଚାହିଁ କୁଶଳ ଜିଜ୍ଞାସା କଲେ । ମୁଁ ପ୍ରାଥମିକ ସମ୍ଭାଷଣ ପରେ କହିଲି; ମିଃ. ସୁବ୍ରମନିୟମ୍ ଆପଣ କ'ଣ ଏପରି ଏକ ବିରାଟ ତାମ୍ରଫଳକ ତିଆରି କରିପାରିବେ, ଯିଏ ତା'ର ଆଲିଙ୍ଗନ ଭିତରେ ଏଇ ସମଗ୍ର ପୃଥିବୀର ବଳୟକୁ ଗ୍ରାସ କରିବ, ଏହି ଗ୍ରହର ଅଧିବାସୀମାନଙ୍କୁ ଉଦ୍‌ବେଗମୁକ୍ତ କରି ପାରିବ ?

ମିଃ. ସୁବ୍ରମନିୟମ୍ ମୋ କଥାରୁ କିଛି ବୁଝି ନ ପାରି ମତେ କେବଳ ଗୋଟିଏ ଫାଙ୍କା ଦୃଷ୍ଟିରେ ଚାହିଁ ରହିଥିଲେ ।

ମାଇକ୍‌ର ସେଇ ଧାତବ ଜରୁରୀ ସ୍ୱରରେ ତୁହାକୁ ତୁହା ନିମନ୍ତ୍ରଣ । ଲାଉଞ୍ଜ୍‌ର ସୁସଜ୍ଜିତ ଗୋଡ଼ମାନେ ବର୍ତ୍ତମାନ ସେମାନଙ୍କର ଲୌହଶୃଙ୍ଖଳ ମୁକ୍ତକରି ଚଞ୍ଚଳ ହୋଇ ଉଠିଲେ, ପୃଥିବୀର ନିଶ୍ଚିତ ସ୍ଥିର ଆଶ୍ରୟ ପରିତ୍ୟାଗ କରି ସେମାନେ ଏକ ଅନିଶ୍ଚିତତା ଭିତରକୁ ପଦକ୍ଷେପ ନେଲେ ।



# ନଦୀର ନାମ ଗଣତନ୍ତ୍ର

ମୋ' ପାଇଁ ତାହା ଥିଲା ପ୍ରାତ୍ୟହିକ ଗମନାଗମନର ପଥ ।

ଏହା ପୂର୍ବରୁ ସ୍ଥାନଟି ଯେ ମୋ'ର ଦୃଷ୍ଟି ଆକର୍ଷଣ ନ କରିଚି, ତା' ନୁହେଁ; କିନ୍ତୁ ଯେତେବେଳେ ସ୍ଥାନଟି ମୋର କୌତୂହଳ ଜାଗ୍ରତ କଲା, ସେତେବେଳକୁ ଅନ୍ୟୂନ ଚାରି ପାଞ୍ଚମାସ ବିଳମ୍ବ ହୋଇ ଯାଇଥିଲା । ଦୈବାତ୍ ଅଫିସ୍‌ରୁ ଫେରିଲାବେଳେ ଠିକ୍ ସେଇ ଜାଗାରେ ହିଁ ଗାଡ଼ିରୁ ପେଟ୍ରୋଲ୍ ସରିଯାଇଥିଲା । ତେଣୁ ଡ୍ରାଇଭର୍ ଯାଇ ପେଟ୍ରୋଲ ପମ୍ପରୁ ପେଟ୍ରୋଲ ଆଣି ଫେରିବା ପର୍ଯ୍ୟନ୍ତ ସେ ଜାଗାରେ ମୋର ଖଣ୍ଡେ ସିଗାରେଟ୍ ଲଗାଇ ଏପଟ ସେପଟ ଟହଲ ମାରିବା ବ୍ୟତୀତ ଗତ୍ୟନ୍ତର ନଥିଲା ।

ଜାଗାଟା ହେଲା ପ୍ରାୟ ଭୁବନେଶ୍ୱର ଏ.ଜି. ଅଫିସ୍‌ର ସାମ୍ନାସାମ୍ନି । ଆଗରେ ରାସ୍ତା, ରାସ୍ତାର ଠିକ୍ ଆରପଟେ ଏ.ଜି. ଅଫିସ୍, ପଛପଟେ ପ୍ରାଇଭେଟ୍ ବସ୍‌ଷ୍ଟାଣ୍ଡ, ସେଠି ବସ୍, ମିନିବସ୍ ଆଉ ଟ୍ୟାକ୍‌ସିମାନଙ୍କର ଦିନରାତି ଭିଡ଼ ଆଉ ଯିବା ଆସିବା, ହକର୍‌ମାନଙ୍କର ପାଟିତୁଣ୍ଡ ଓ ଲଟେରୀ ଟିକଟ ବାଲାର ସେହି ଅପରିହାର୍ଯ୍ୟ ଘୋଷଣାର ପୌନଃପୌନିକତା । ରାଜପଥ ଦେଇ ପାହୁଣ୍ଡେ ଆଗେଇଗଲେ କ୍ଲବ୍, ଯେଉଁଠିକି ନିତିପ୍ରତି ହାକିମହୁକୁମା ଓ ସହରର ପ୍ରତିପତ୍ତିଶାଳୀ ଲୋକମାନଙ୍କର ଗମନାଗମନ । ରାଜପଥକୁ ଏକ ସମକୋଣରେ ଛେଦକରି ଯେଉଁ ରାସ୍ତା ପଶ୍ଚିମକୁ ପ୍ରସାରିତ ହୋଇଚି ତାହାର ଦୁଇ କରରେ ଏକାଧିକ ମନ୍ତ୍ରୀମାନଙ୍କର ସରକାରୀ ବାସଗୃହକୁ ଘୋଷଣା କରି ଫାଟକର ଦୁଇ ସ୍ତମ୍ଭ ଉପରେ ସମସ୍ତରାତ୍ରି ଗ୍ୟାସ୍ ଲାଇଟ୍‌ମାନ ଦେଦୀପ୍ୟମାନ ।

ଏଇ ଜାଗାଟା ଉପରେ ପ୍ରାୟ ବାରଫୁଟରେ ଚଉଦ ଫୁଟ ଜାଗା ଟାରପୂଲିନରେ ଘେରାଉ କରାଯାଇ ତା' ଉପରେ ଚାଳଛପର ହବାପରି ବାଉଁଶ ରୁଅ ସବୁ ଖଞ୍ଜାଯାଇ ଆଡ଼ ବାଗରେ ବତା ପରାଯାଇ ପୁଣି ସେହି ଟାରପୂଲିନର ତୁଳିଆ ଛାତ ଛାଆଁଣି କରାଯାଇଛି । ଏହି ବିକଳ୍ପ ପଛାରେ ତୟାର କରାଯାଇଥିବା ଘର ଭିତରେ ଆଣ୍ଠୁଏ ବହଳର ପାଳ ପକା ହୋଇ ତା'କୁ ସମତୁଲ କରିବା ପାଇଁ ଗୋଟାଏ ବଡ଼ ମୋଟା ଦରି ପକାଯାଇଛି । ସେହି ଦରି ଉପରେ ଚାରିଜଣ ଲୋକ ବସି ତାସ୍‌ର ଆଡ଼ଡ଼ା ଜମେଇଛନ୍ତି । ସେମାନଙ୍କୁ ଘେରିରହି ଦୁଇ ତିନିଜଣ ଦର୍ଶକ ମଧ୍ୟ ନିବିଷ୍ଟ ଚିତ୍ତରେ ତାସ୍

ଖେଳକୁ ଉପଭୋଗ କରୁଛନ୍ତି । ରାସ୍ତା ଉପରର ବହମାନ ଜନସ୍ରୋତ, ଟ୍ରାଫିକ୍ ବା ହକର୍ ବସ୍‌କୁ ବାଡ଼େଇ ବାଡ଼େଇ ଗନ୍ତବ୍ୟସ୍ଥଳ ଘୋଷଣା କରୁଥିବା ପିଲାମାନଙ୍କର ଅଶ୍ଳୀଳ ଚିତ୍କାର କୌଣସି ହେଲେ ସେହି କ୍ରୀଡ଼ାନିବିଷ୍ଟ କ୍ଷୁଦ୍ର ମଣ୍ଡଳୀଟିକୁ ଥରକ ପାଇଁ ମଧ ଅନ୍ୟମନସ୍କ କରିଦେବା ପାଇଁ ସମର୍ଥ ହେଉ ନାହାନ୍ତି ।

ଏମାନେ କିଏ ଓ କେଉଁ ଅବସ୍ଥାରେ ଏମାନେ ଏପରି ଏକ ବିକଳ୍ପ ଗୃହ ଏଠାରେ ତିଆରି କରିବା ପାଇଁ ସମର୍ଥ ହେଲେ, ଏହି ପ୍ରଶ୍ନ ମତେ ବିଶେଷ ଅସ୍ଥିର ନ କରୁଥିଲେ ମଧ କୌତୁହଳୀ କରୁଥିଲା । ଇତି ମଧରେ ମୁଁ ମୋର ବିଶି ଆଙ୍ଗୁଠି ଓ ମଝି ଆଙ୍ଗୁଠିର ପ୍ରଥମ ପବ ଦୁଇଟି ନିକଟରେ ଅଗ୍ନିର ଉଷ୍ଣ ଚୁମ୍ବନ ଅନୁଭବ କଲି । ସିଗାରେଟ୍‌ଟା ଅକାରଣରେ ଜଳି ଜଳି ଶେଷ ପର୍ଯ୍ୟନ୍ତ ଜଳି ଆସିଲାଣି । ବିରକ୍ତିରେ ସିଗାରେଟ୍ ମୁଣ୍ଡିଟାକୁ ତଳକୁ ଛାଟି ଦେଇ ପୁଣି ଥରେ ସେହି ତାସ୍‌ର ଆଡ୍‌ଡ଼ା ଉପରେ ମନୋନିବେଶ କଲି । ସେଠି ମଧ ନାଲି ସାଲୁ କନାରେ ଦୁଇ ତିନୋଟି ଫେଷ୍ଟୁନ୍ ଲଗାଯାଇଛି । ଗୋଟିକରେ ଲେଖା ଯାଇଚି ''ବନ୍ଦେ ମାତରମ୍'' ଓ ଅନ୍ୟ ଗୋଟିକରେ ''ଇନ୍ କିଲାବ ଜିନ୍ଦାବାଦ୍'', ତୃତୀୟଟି ଏହି ଦୁଇଟି ଠାରୁ ସାମାନ୍ୟ ଦୀର୍ଘ, କିନ୍ତୁ ମୁଁ ଠିକ୍ ପଢ଼ିପାରୁ ନାହିଁ । ଦୁଇଟି ମାତ୍ର ଘୋଷଣା ପଢ଼ିସାରିବା ପରେ ମୁଁ ସିଦ୍ଧାନ୍ତରେ ପହଞ୍ଚିବା ସ୍ୱାଭାବିକ୍ ଯେ ଏମାନେ ଯେ କେହି ହୁଅନ୍ତୁ ନାଁ କାହିଁକି ନିଶ୍ଚିତ୍ ଭାବରେ ଦେଶପ୍ରେମୀ ଓ ଏମାନଙ୍କର କାର୍ଯ୍ୟପନ୍ଥା ବିପ୍ଳବ ଅଭିମୁଖୀ ।

ଏହି ବୈପ୍ଳବିକ ଛାଉଣୀର ମାତ୍ର ଦୁଇ ତିନି ଫୁଟ୍ ଦୂରରେ ସରକାରୀ ପାଇପ୍‌ରୁ ଅବିରତ ଛୁଟୁଥିବା ଜଳସ୍ରୋତରେ ଜଣେ କିଏ ଲୋକ ତୃଷ୍ଣା ନିବାରଣ କରୁଥିଲା ବୋଧ ହୁଏ । ମୁଁ ତାକୁ ପାଖକୁ ଆସିବା ପାଇଁ ନୀରବରେ ଇଙ୍ଗିତ ଦେଲି । ସେ ମୋ ନିକଟକୁ ଆସିବା ପରେ ମୁଁ ତାକୁ ପଚାରିଲି, ''ଜାଣନ୍ତି କି—ଏଠି କ'ଣ ଚାଲିଛି ?'' ସିଏ ମୋତେ ଗଭୀର ବିସ୍ମୟରେ ଚାହିଁ ରହିଲା ଯେପରି ମୁଁ ଅନ୍ୟ କେଉଁ ଏକ ଗ୍ରହର ଅଧିବାସୀ । ତା'ପରେ କହିଲା, ''ଏଇ ଏ.ଜି. ଅଫିସ୍ ପିଅନ ଧନୁ ନାଇକକୁ ପରା ସରକାର ଡିସ୍‌ମିସ୍ କରିଦେଇଛନ୍ତି—ସିଏ ପରା ଏଠି ଧାରଣା ଦେଲାଣି ପାଞ୍ଚ କି ଛଅ ମାସ ହେବ, ଆପଣ ଜାଣି ନାହାନ୍ତି ?'' ମୁଁ ଏପରି ଏକ ଘଟଣା ବିଷୟରେ ଅଜ୍ଞ ରହିଥିବା ହେତୁ ମୁହଁରେ ଯଥା ସମ୍ଭବ ଦୁଃଖର ଛାପ ଆଣି ନାସ୍ତିସୂଚକ ଭାବରେ ଦୁଇଥର ମୁଣ୍ଡ ହଲାଇ ଦେଲି ଏପଟକୁ ସେପଟ । ସେ ଲୋକଟା ଆହୁରି ହୁଏତ କିଛି କହିଥାନ୍ତା, କିନ୍ତୁ ମୋ ତରଫରୁ ବିଶେଷ କିଛି ଉତ୍ସାହ ନପାଇ ସେ ଜାଗା ଛାଡ଼ି ଚାଲିଗଲା ।

ତଥାପି ପେଟ୍ରୋଲ୍ ଆସିପାରି ନାହିଁ । ଛାଉଣୀ ଭିତରର ଲୋକମାନେ ଏତେ ନିବିଷ୍ଟ ଚିତ୍ତରେ କ୍ରୀଡ଼ାମଗ୍ନ ଯେ ସେମାନେ ମୋର ଅଟକି ଯାଇଥିବା କାର୍ ବା ମୋର

ଅତି ନିକଟ ଉପସ୍ଥିତି ମଧ୍ୟ ଉପଲବ୍ଧି କରିପାରୁ ନାହାନ୍ତି । ପଶ୍ଚିମପଟରେ ଟାଇଁଟାଇଁ ଖରା ଛାଉଣୀ ଅଭ୍ୟନ୍ତରଟାକୁ ତାତୁଣିଆ କରିଦେଲା ପରା ! ଦୁଇଜଣ ଲୋକ ଉଠି ଆସି ଖଣ୍ଡେ ଗାମୁଛା ଓହଳେଇ ଦେଇ ଏକ ବିକଳ୍ପ ସନ୍‌ସେଡ୍ ତିଆରି କରିଦେଇ ସାରିବା ପରେ ନିର୍ବିକାର ଭାବରେ ପୁଣି ଖେଳ ପାଖକୁ ଫେରି ଯାଇ ଖେଳରେ ମନଯୋଗ ଦେଲେ । ମୁଁ ମନେ ମନେ ସତ୍ୟାଗ୍ରହ ବା ପିକେଟିଂର ଏହି ଅତ୍ୟାଧୁନିକ ସଂସ୍କରଣ 'ଧାରଣା'ଟିର କଥା ମନେ ମନେ ଚିନ୍ତା କରୁ କରୁ ଅନ୍ୟମନସ୍କ ହଇ ପଡ଼ିଥିଲି । ବାଃ ! ଚମତ୍କାର ମଧ୍ୟମ ପନ୍ଥା ! ପ୍ରାତ୍ୟହିକ ଜୀବନଯାତ୍ରା ଅକ୍ଷୁର୍ଣ୍ଣ ରଖିବା ସଙ୍ଗେ ସଙ୍ଗେ ପ୍ରତିବାଦର ଘୋଷଣା ମଧ୍ୟ ଅମ୍ଳାନ ରଖାଯାଇଛି । ପେଟ୍ରୋଲ ଆସିଗଲା । ଗାଡ଼ିରେ ବସି ଘରକୁ ଫେରୁ ଫେରୁ ହଠାତ୍ ହୋ' ହୋ' କରି ହସି ପକେଇଲି । ଏତେ ଜୋର୍‌ରେ ହସିଲି ଯେ ଏକ ଜନଗହଳି ପଥ ଅତିକ୍ରମ କରୁଥିବା ସତ୍ତ୍ୱେ ମଧ୍ୟ ଡ୍ରାଇଭରଟି ଥରେ ଦୁଇଥର ପଛକୁ ମୁହଁ ବୁଲେଇ ମୋର ଏତାଦୃଶ ଆଚରଣ ଉପରେ ସନ୍ଦିଗ୍ଧ ଦୃଷ୍ଟିପାତ କରିବାକୁ ଭୁଲି ନଥିଲା ।

ମୋ' ମନରେ ବାରମ୍ବାର ସେଇ ଧନୁ ନାୟକର ଧାରଣା ଦବା କଥାଟା ଗୁଡ଼େଇ ତୁଡ଼େଇ ହେଇ ଉଠୁଥିଲା । ପ୍ରଥମେ ଯେଉଁଦିନ ଧନୁ ନାୟକକୁ ଡିସ୍‌ମିସ୍ କରାଯାଇଥିବା, ସେଦିନ ହୁଏତ ଧନୁ ନାୟକ ତା'ର ନିକଟ କତିପୟ ସ୍ତାବକ ପରିବେଷ୍ଟିତ ହୋଇ, ବୁଦ୍ଧଙ୍କର ଧ୍ୟାନ ଗମ୍ଭୀର ମୁଦ୍ରାରେ ଆସି ସେଇଠାରେ ପଦ୍ମାସନରେ ବସିଥିବ, ତା'ର ପ୍ରଚଣ୍ଡ ପ୍ରତିବାଦ ଘୋଷଣା କରିବା ପାଇଁ । ସେଦିନ ନିଶ୍ଚୟ ତା'ର ବେକରେ ଝୁଲି ରହିଥିବ ଏକ ପ୍ରକାଣ୍ଡ ଗେଣ୍ଡୁ ଫୁଲର ହାର । ଏବଂ ତା'ପରେ ପରେ ସମୟ, ସୁବିଧା ଓ ସୁଯୋଗ ଦେଖି ଯୋଗାଡ଼ କରାଯିବ ବାଉଁଶ, ଟାର୍‌ପୁଲିନ୍, ଢାଳ, ବାଲ୍‌ଟି ପ୍ରଭୃତି ଅତ୍ୟାବଶ୍ୟକୀୟ ଉପକରଣମାନ । ହୁଏତ ଗୋଟାଏ ସପ୍ତାହ ଧରି ଚାଲିଥିବ ରିଲେ ଅନଶନ । ରାମ ନାଏକ ସକାଳୁ ଜଳଖିଆ ଖାଇସାରି ଅନଶନ କରିଥିବ ଦିନ ଗୋଟାଏ ପର୍ଯ୍ୟନ୍ତ ଏବଂ ଦିନ ଗୋଟାଏ ବେଳେ ଦାମ ନାଏକ ଖାଇପିଇସାରି ରାମ ନାଏକ ହାତରୁ ଗ୍ରହଣ କରିଥିବ ସେହି ରିଲେ ଅନଶନର ବୈପ୍ଳବିକ ଦାୟିତ୍ୱ ଯାହାର ଛୁଟି ହବ ସନ୍ଧ୍ୟା ଛଅଟାରେ, ସେ ଦାୟିତ୍ୱ ଶ୍ୟାମ ନାୟକକୁ ଦେଇ ସାରିବା ପରେ । ଯେମିତି ହାତକୁ ହାତ ଚାଲେ ଅଲିମ୍ପିକ୍ କ୍ରୀଡ଼ାର ଅନଳ ସଂକେତ ।

ପ୍ରଥମେ ପ୍ରଥମେ ସେହି କୋଳାହଳ ମୁଖରିତ ସ୍ଥାନଟିର ସମସ୍ତ କୋଳାହଳକୁ କିଛି ସମୟ ପାଇଁ ନୀରବ କରି ଦେଇ ଉଠିଥିବ ସ୍ଲୋଗାନ୍‌ର ଉଚ୍ଚକିତ ଧ୍ୱନି । ତା' ପରେ ପରେ ତା' ମଧ୍ୟ ମିଳେଇ ଯାଇଥିବ । ସ୍ତାବକମାନେ କିଛି ଦିନ ଧନୁ ନାୟକ ସହିତ ଅହର୍ନିଶ ରହିବା ପରେ ବିଦାୟ ନେଇଥିବେ ସେମାନଙ୍କର ସାଂସାରିକ

ଜଞ୍ଜାଳର ମୁକାବିଲା କରିବା ପାଇଁ । ମଝିରେ ମଝିରେ ଆସି ଧନୁ ନାୟକ ନାମକ ବ୍ୟକ୍ତିଟିକୁ ଦେଖି ଯାଉଥିବେ କେବଳ । ଧନୁ ନାୟକ ମଧ୍ୟ କେତେ ଦିନ ସେଠି ଆଉ ବସି ରହିବ ? ତାକୁ ତ ଦୁଇବେଳା ନିତ୍ୟକର୍ମ ପାଇଁ ତା'ର ଅଟଳ ଭୀଷ୍ମ ପ୍ରତିଜ୍ଞାର ସ୍ଥାନ ପରିତ୍ୟାଗ କରିବାକୁ ପଡ଼ିବଇ ପଡ଼ିବ । ତେଣୁ ସେ ମଧ୍ୟ କ୍ୟାପିଟାଲ୍‌ର ବିଭିନ୍ନ ସ୍ଥାନକୁ ଯିବା ଆସିବା କରିବାରେ କ୍ଷତି କଅଣ ଅଛି ବା ପନ୍ଦର ଦିନ ମାସକରେ ଗାଆଁଆଡୁ ଟିକିଏ ବୁଲି ଆସିଲେ କଅଣ ବା ବେଦ ଅଶୁଦ୍ଧ ହେଇଯିବ ! ଆଜିର ତାସ୍ ଖେଳୁଥିବା ବ୍ୟକ୍ତି ଓ ଦେଖଣାହାରୀଙ୍କ ଭିତରେ ନିଜେ ଭୀଷ୍ମଦେବ ଧନୁ ନାଏକ ଅଛନ୍ତି କି ନାହାନ୍ତି, ସେ କଥା ବି କିଏ କହିପାରିବ ? ଠିକ୍ ଏଇକଥା ମନକୁ ଆସିଲାବେଳେ ସ୍ଥାନ, କାଳ, ପାତ୍ର ବିସ୍ମରଣ ହୋଇ ଗାଡ଼ି ଭିତରେ ଅକସ୍ମାତ୍ ହସି ପକାଇଥିଲି ।

କିନ୍ତୁ ସେ ସ୍ଥାନକୁ ମୁଁ ଆଉ ଦିନକ ପାଇଁ ମଧ୍ୟ ବିସ୍ମରଣ ହୋଇ ନାହିଁ । ଅଫିସ୍ ଗଲାବେଳେ ଓ ଫେରିଲା ବେଳେ ସେଇତକ ବାଟ ଗାଡ଼ି ଇଚ୍ଛାକରି ଆସ୍ତେ ଆସ୍ତେ ନିଏ ଓ ସେଇ ଭୀଷ୍ମ ଶିବିରର ଅନ୍ତେବାସୀମାନଙ୍କୁ ଲକ୍ଷ୍ୟ କରିବା ପାଇଁ ଭୁଲି ନ ଥାଏ । କେବେ କେବେ ଦେଖେ ସେମାନେ ସେମାନଙ୍କର ଆସର ଚଟାପଟ୍ ଗୋଟେଇନେଇ ଶୃଙ୍ଖଳିତ ସୈନିକ ପରି ଧାଡ଼ିବାନ୍ଧି ଛାଉଣି ଆଗରେ ଠିଆହେଇ ରାତିବିକାଳି ବିଲୁଆମାନଙ୍କର 'ହୁକେ ହୋ' ପରି ତିନିଚାରି ମିନିଟ୍ ପାଇଁ ମୁଷ୍ଟି ଉତ୍ତୋଳନ କରି 'ଇନ୍ କିଲାବ୍ ଜିନ୍ଦାବାଦ୍' ପହକି ଫେରାନ୍ତି । ପରିସ୍ଥିତିଟାକୁ ଠିକ୍ ଠିକ୍ ଭାବରେ ହଠାତ୍ ଅବଧାରଣ କରିପାରିବା ପୂର୍ବରୁ ଦେଖେ ଯେ ଗୋଟିଏ ମଟରଗାଡ଼ି ଫ୍ଲାଗ୍‌ଷ୍ଟାଫର ନିଶ୍ଚିତ ଲାଞ୍ଛନ ବହନ କରି ସେଇ ରାସ୍ତା ଦେଇ ପହଁରିଯାଉଛି ଓ ସେଥିରେ ସମାସୀନ ବ୍ୟକ୍ତିଟି କେହି ଜଣେ ମନ୍ତ୍ରୀ ହେବେପରା ! ଆଉ କାରଣ ବୁଝିବା ପାଇଁ ବେଶୀଦୂର ଯିବାକୁ ପଡ଼େ ନାହିଁ । ଶନିବାର, ରବିବାର ଦେଖି ବେଳେ ବେଳେ ସେଠି ଗାଡ଼ିଟାକୁ ରଖିଦେଇ ଉଠା ଚା' ଦୋକାନରୁ କପେ କପେ ଚା' ଖାଇବା ମୋର ଏକ ପ୍ରକାରର ଅବସର ବିନୋଦନରେ ପରିଣତ ହେଲାଣି ।

ଛାଉଣି ଭିତରୁ ବେଳେ ବେଳେ ଟ୍ରାନଜିଷ୍ଟର ଜନିତ ବିବିଧଭାରତୀ ବା ରେଡ଼ିଓ ସିଲୋନ୍‌ର ମୃଦୁ ସଙ୍ଗୀତ ଭାସିଆସେ । ମଝିରେ ମଝିରେ ଦେଖାଯାଏ, ତା' ଭିତରେ ଜଣେ ମଧ୍ୟବୟସ୍କା ସ୍ତ୍ରୀଲୋକ ଆତଯାତ କରୁଛି । ଏତେଗୁଡ଼ିଏ ପୁରୁଷଙ୍କ ଭିତରେ ଏବଂ ବିଶେଷ କରି ରଣକ୍ଷେତ୍ରର ସୈନ୍ୟ ଶିବିର ଭିତରେ ଅବତୀର୍ଣ୍ଣା କିଏ ଏହି ରଣରଙ୍ଗୀନୀ ନାରୀ ? ଏହା ମୋ ପାଇଁ ଯଥେଷ୍ଟ କୌତୂହଳୋଦ୍ଦୀପକ ଥିଲା ।

ସାମାନ୍ୟ ଅନୁସନ୍ଧାନ କରିଥିଲି । କେବଳ କୌତୂହଳର ମୀମାଂସା କରିବା ପାଇଁ ଏହି ଅନୁସନ୍ଧାନ ଉଦ୍ଦିଷ୍ଟ ନ ଥିଲା । ସହରର ଆଇନ, ଶୃଙ୍ଖଳାର ଦାୟିତ୍ୱ ବହନ କରିଥିବା ଜଣେ ପୁଲିସ୍ କର୍ମଚାରୀ ପାଇଁ ଏପରି ଏକ ଅନୁସନ୍ଧାନ ଅବଶ୍ୟ କର୍ତ୍ତବ୍ୟ ।

କିଛି ସମୟ ପରେ ଜାଣିପାରିଲି ଯେ ଭଦ୍ର ମହିଳାଟି ସ୍ୱୟଂ ଧନୁର୍ଦ୍ଧର ନାୟକ ଓରଫ୍ ଧନୁ ନାୟକଙ୍କର ଦ୍ୱିତୀୟପକ୍ଷ ସ୍ତ୍ରୀ । ଏ ତଥ୍ୟ ମଧ୍ୟ ଜାଣିଲି ଯେ ଇତି ମଧ୍ୟରେ ଅସ୍ଥାୟୀ ଶିବିରଟିର ସମ୍ପ୍ରସାରଣ କରାଯାଇ ଗୋଟିଏ ଛୋଟ ରନ୍ଧନଶାଳା ତିଆରି କରାଯାଇ ପାରିଛି ଏବଂ ସେଠି ଧନୁ ନାୟକଙ୍କ ସ୍ତ୍ରୀ ପ୍ରାତ୍ୟହିକ ରନ୍ଧନକର୍ମ କରିଥାଆନ୍ତି । ଏଟା ଗୋଟାଏ ମାରାଥନ୍ ରେସ୍ । ଦୀର୍ଘ ଦୌଡ଼ରେ ଯିଏ ଜିତିଲା, ସିଏ ହେବ ବିଜୟୀ । ଧନୁର୍ଦ୍ଧର ନାୟକ ନ ହେଲେ ଖୋଦ୍ ଓଡ଼ିଶା ସରକାର । ଏଇ ପରିପ୍ରେକ୍ଷୀରେ ଧନୁ ନାୟକଙ୍କର ଏପରି ଏକ ଦୀର୍ଘ ମିଆଦୀ ଯୋଜନା ପ୍ରସ୍ତୁତ କରିବା ଯଥାର୍ଥ ।

ସମୟ ଗଡ଼ିଚାଲିଛି । ପାଖ ସରକାରୀ କଳରୁ ଅବିଶ୍ରାନ୍ତ ଝରି ଚାଲିଥିବା ପାଣିପରି । କେତେବେଳେ କେତେବେଳେ ଅତର୍କିତ ସ୍ଲୋଗାନ୍‌ର ହୁଙ୍କାର ଉଚ୍ଚାରିତ ହୋଇ ପବନରେ ଏକ ଆବର୍ତ୍ତ ସୃଷ୍ଟି କରି ପୁଣି ମିଳେଇ ଯାଉଚି । ପୁଣି କେତେବେଳେ ତାସ୍‌ମାଡ଼ର ପାଟିରେ ଶିବିରଟି ଉସବ ମୁଖରିତ ହୋଇ ନାଳିଛକା ଓ କଳାଛକାମାନେ ଟ୍ରାଫିକ୍ ଆଲୁଅର ଲାଲ ନୀଳ ସଙ୍କେତ ପରି କିଛି ସମୟ ପାଇଁ ଉଦ୍‌ଭାସିତ ହୋଇ ପୁଣି ମିଳେଇ ଯାଉଛନ୍ତି । ପୁଣି କେତେବେଳେ ଶିବିର ଅନ୍ଧାର । ଟ୍ରାନ୍‌ଜିଷ୍ଟରରୁ ଭାସିଆସୁଚି ଗୋଟାଏ ଏକଟଣା ଖେଆଲ୍‌ର ଆଳାପ ଓ ଶିବିରର ସଂପ୍ରସାରିତ ରନ୍ଧନଶାଳାର ଚୁଲୀ ଦେଇ ଏକ ଶୀର୍ଣ୍ଣ ଧୂମ୍ର କୁଣ୍ଡଳୀ କ୍ୟାପିଟାଲର ଆକାଶରେ ମିଳେଇ ଯାଉଚି । ଇତି ମଧ୍ୟରେ ଆଉ ତିନି ଚାରିବର୍ଷ ଅତିବାହିତ ହେଇଗଲାଣି ଏବଂ ସେଇଶିବିର ଭିତରେ ଗୋଟିଏ ଦିଓଟି ଛୋଟ ଶିଶୁ ଖରାକୁ ଚାହିଁ ଆଖି ମିଟ୍ ମିଟ୍ କରି ଅସହାୟ ଭାବରେ ବସି ରହିଥିବାର ଦେଖାଯାଏ । କିନ୍ତୁ ଆଶ୍ଚର୍ଯ୍ୟର କଥା, ମୁଁ କୌଣସି ଦିନ ଏହି ସଂଗ୍ରାମୀ ଧନୁ ନାୟକ ବ୍ୟକ୍ତିଟିକୁ ସେଠାରେ ଦେଖିବାକୁ ପାଇ ନାହିଁ, ବା ଦେଖିଥିଲେ ମଧ୍ୟ ତାଙ୍କୁ ଧନୁ ନାୟକ ବୋଲି ଚିହ୍ନଟ କରିପାରି ନାହିଁ । ଇଚ୍ଛା କରିଥିଲେ ଯେ ପାରି ନଥା'ନ୍ତି, ଏପରି ନୁହଁ ।

ଏଇ କିଛି ବର୍ଷ ଭିତରେ ସେଇ ଟାର୍‌ପୁଲିନ୍ ଗୁଡ଼ିକ ପରିବର୍ତ୍ତେ ସେଠାରେ ଭଲ ଓ ଭଙ୍ଗା ଇଟା ମିଶା ମିଶି ମାଟି ପେଚଦିଆ କାନ୍ଥ ଠିଆ ହୋଇ ସାରିଲାଣି ଓ ଉପର ଛାତରେ ମଧ୍ୟ ଟାର୍‌ପୁଲିନ୍ ପରିବର୍ତ୍ତେ ନଡ଼ା ଛପର ହେଇ ବେଶ୍ ଗୋଟିଏ ଛୋଟ କାଟର ଚାଳଘର ସେଠି ଠିଆ କରାଗଲାଣି । ପଛପଟକୁ ଚାଳିଆ ପରି ଗଡ଼ାଣିଆ ହୋଇଥିବା ରୋଷେଇ ଘର ଛାତକୁ ରାସ୍ତା ଉପରେ ପଡ଼ିଥିବା ପିଚୁଡ୍ରମ୍ ଦେଇ ବେଶ୍ ନିବୁଜ୍ କରି ଛପର କରି ଦିଆଗଲାଣି ।

ମୁଁ ସେଇ ଯେ ଥରେ ଅନୁସନ୍ଧାନ ଆରମ୍ଭ କରିଥିଲି, ସେଥିପାଇଁ ମଝିରେ ମଝିରେ ଇଚ୍ଛା ନକଲେ ମଧ୍ୟ ଧନୁ ନାୟକ ସଂପର୍କରେ ମତେ ସାମୟିକ ତଥ୍ୟ ସରବରାହ କରାଯାଇଥାଏ । ମୋର ସେଥିରେ କିଛି କରିବାର ନଥିଲେ ମଧ୍ୟ ମୁଁ ସେ ସମସ୍ତ ତଥ୍ୟ

ବେଶ୍ ଉପଭୋଗ କରେ ଏବଂ ସେଇଥିପାଇଁ ହୁଏତ ମତେ ଖୁସି କରିବାକୁ ମୋର ବହୁ ଗୁପ୍ତଚର ସେ ସଂପର୍କିତ ତଥ୍ୟ ସବୁ ମଧ୍ୟେ ମଧ୍ୟେ ପରିବେଷଣ କରିଥାଆନ୍ତି । ଏଇ ଧନୁର୍ଦ୍ଧର ନାୟକ ଓରଫ୍ ଧନୁ ନାୟକ ଭୁବନେଶ୍ୱରର ନିକଟବର୍ତ୍ତୀ କୌଣସି ହରିଜନ ବସ୍ତିର ବ୍ୟକ୍ତି ଏବଂ କୌଣସି ଏକ ହରିଜନ ମନ୍ତ୍ରୀଙ୍କର ସ୍ୱଜାତି ପ୍ରୀତି ବିଜ୍ଞାପିତ କରାଇବା ଉଦ୍ଦେଶ୍ୟରେ ତାଙ୍କୁ ଅଣାଯାଇ ମନ୍ତ୍ରୀଙ୍କ ଦପ୍ତର୍‌ରେ ପ୍ରଥମ ନିଯୁକ୍ତି ଦିଆଯାଇ ଥିଲା । ତା'ପରେ ପରେ ସିଏ ବହୁ ସ୍ରୋତରେ ଭାସି ତାଙ୍କର ନିଜର କରିତ୍‌କର୍ମା କୌଶଳ ହେତୁ ଶେଷରେ ଏ.ଜି. ଅଫିସ୍‌ର ପିଅନ୍ ଭାବରେ ଅବସ୍ଥାପିତ ହେଲେ । ସେଥିପାଇଁ ତାଙ୍କୁ ସରକାରୀ କ୍ୱାର୍ଟର୍ ମଧ୍ୟ ମିଳିଥିଲା, ଯାହାକୁ ଭଡ଼ା ଲଗେଇ ସେ ଅଦ୍ୟାବଧି ମାସିକ ଦେଢ଼ଶହ ଟଙ୍କା ଉପାର୍ଜ୍ଜନ କରିଥାଆନ୍ତି । ଶେଷରେ ବାରମ୍ବାର ଗାଆଁକୁ ଯିବା ଦ୍ୱାରା ଦୀର୍ଘ ଦିନ ବିନା ଛୁଟିରେ ସେ' କାର୍ଯ୍ୟରେ ଅନୁପସ୍ଥିତ ରହିଲେ ଏବଂ ଏତଦ୍‌ଭିନ୍ନ ସେ ବହୁବାର ଅଫିସ୍‌ର ବହୁ ଜିନିଷର ଅପବ୍ୟବହାର କରିବାକୁ ଲାଗିଲେ । ପୁଲିସ୍ ଅନ୍ୟୁନ ଚାରିଗୋଟି ଟାଇପ୍ ରାଇଟର୍ ଚୋରୀରେ ତାଙ୍କୁ କୋର୍ଟ୍‌କୁ ଚାଲାଣ କଲେ; କିନ୍ତୁ କୋର୍ଟ୍‌ରେ ସେ ଦୋଷୀ ସାବ୍ୟସ୍ତ ହୋଇ ପାରିଲେ ନାହିଁ । ତେଣୁ ତାଙ୍କର ସାହାସ ଦିନକୁ ଦିନ ବୃଦ୍ଧି ପାଇଲା, ଅବଶେଷରେ ଏ.ସି.ଅଫିସ୍‌ର ହାକିମ ହୁକୁମା ଓ କିରାଣିମାନେ ଏହାଙ୍କର ଉତ୍ପୀଡ଼ନରେ ଅତିଷ୍ଠ ହୋଇପଡ଼ି, ତାଙ୍କ ବିରୁଦ୍ଧରେ ଏକ ଅଭିଯୋଗ ପତ୍ର ତିଆରି କରି ଏନ୍‌କ୍ୱାରୀ କରି ତାଙ୍କୁ ଚାକିରୀରୁ ବରଖାସ୍ତ କରି ମୁକ୍ତି ପାଇଲେ । କିନ୍ତୁ ସିଏ ବି ଏହି ସ୍ୱାଧୀନ ଭାରତର ଏକ ନାଗରିକ । ବନ୍ଦେ ମାତରମ୍ ଓ ଇନ୍‌କିଲାବ୍ ଜିନ୍ଦାବାଦ୍, ଏ ଦେଶର ଆହୁରି ଅନେକ ଲୋକଙ୍କ ପରି ତାଙ୍କର ମଧ୍ୟ ଉପଜୀବ୍ୟ । ତେଣୁ ସେ ତାଙ୍କର ବରଖାସ୍ତର ପ୍ରତିବାଦ କରି ଏ.ଜି. ଅଫିସ୍ ସମ୍ମୁଖସ୍ଥ ଏହି ବିକଳ୍ପ ଛାଉଣୀରେ ଗଣତନ୍ତ୍ରର ଚିରସ୍ରୋତା ସମଶୀତୋଷ୍ଣ ସଲୀଳରେ ଅବଗାହନ କରି ଜୀବନ ଯାପନକରିବାକୁ ମନସ୍ଥ କଲେ । ଧାରଣା ଦବା ଏ ଦେଶର ଏକ ଗଣତନ୍ତ୍ର ସ୍ୱୀକୃତ ପନ୍ଥା । ସେଥିରୁ ବା' ତାଙ୍କୁ ବଞ୍ଚିତ କରିବ କିଏ ?

ଇତି ମଧ୍ୟରେ ଧନୁର୍ଦ୍ଧର ନାୟକ ଯେ ନିଶ୍ଚେଷ୍ଟ ହୋଇ ବସି ରହିଛନ୍ତି ସେ କଥା ମନେ କରିବା ଭୁଲ୍ ହେବ । ପ୍ରତିଦିନ ସକାଳୁ ଧନୁର୍ଦ୍ଧର କେତେକ ବିଧାନସଭା ସଦସ୍ୟଙ୍କ ଘରେ ଚକ୍‌କର୍ ଦେଇ ସାରି ପୁଣି କେତେ ଜଣ ମନ୍ତ୍ରୀଙ୍କ ଘରକୁ ମଧ୍ୟ ଯିବା ଆସିବା ଆରମ୍ଭ କରିଦେଇଛନ୍ତି । ଆଜିକାଲି ଯୁଗରେ ପ୍ରତ୍ୟେକ ଲୋକର କିଛି ନା କିଛି ଚାହିଦା ଥାଏ, ଯାହା ଠିକ୍ ନ୍ୟାୟସମ୍ମତ ଭାବରେ ପୂରଣ ହେଇ ପାରେ ନାହିଁ; ସେଥିପାଇଁ ବ୍ୟକ୍ତିବିଶେଷର ବିଶେଷ ବିଶେଷ ଚାହିଦାର ସୂତ୍ରଟି ଖୋଜି ବାହାର କରାଯିବା ଉଚିତ । ଯଥା: ବିଧାନସଭା ସଦସ୍ୟ ବେନାମୀରେ ହାଲ୍ ଖୋଲିଥିବା ଫରେନ୍ ଲିକର୍ ଦୋକାନକୁ ରାତିରେ ଜଗିବା ପାଇଁ ଜଣେ ମଜଭୁତିଆ ଦରଓ୍ୱାନ୍

ଦରକାର ବା ମନ୍ତ୍ରୀଙ୍କ ସହଧର୍ମିଣୀ ଅନନ୍ତବ୍ରତ ଉଦ୍‌ଯାପନ କରିବା ପାଇଁ କିଛି ଖାଣ୍ଟି ଦେଶୀ ଗାଈର ଘିଅ ଦରକାର ଅଥବା ମନ୍ତ୍ରୀଙ୍କ ପି.ଏ.ଙ୍କର ବହୁଦିନ ଧରି ବାତରୋଗରେ ପୀଡ଼ିତ ଥିବା କନ୍ୟା ପାଇଁ କିଛି କୋଚିଲାଖାଇ ତେଲର ପ୍ରୟୋଜନ । ଏସବୁ ବଜାରରେ ହଠାତ୍ ମିଳିବା ଜିନିଷ-ନୁହେଁ, ତା'ଛଡ଼ା ସେମାନେ ଆଉ କୁଆଡ଼େ ଖୋଜିବାକୁ ଯିବେ କାହିଁକି; ଯେତେବେଳେ ଏସବୁ ଖିଦ୍‌ମତ୍ କରିବା ପାଇଁ ନିଜେ ଧନୁ ନାୟକ ବନ୍ଦା ହାଜର୍ ଅଛି ?

ଏହି ସମସ୍ତ କାର୍ଯ୍ୟ ତଦାରଖ କରୁ କରୁ, ବୋଲିବା ବାହୁଲ୍ୟ ଯେ ଧନୁ ନାୟକ ସମାଜର ଏଇ ଶ୍ରେଣୀର ଲୋକମାନଙ୍କ ଭିତରେ କେବଳ ପ୍ରିୟପାତ୍ର ହୋଇଉଠିଛି ନୁହେଁ, ଅପରିହାର୍ଯ୍ୟ ହୋଇଉଠିଛି ମଧ୍ୟ । କିନ୍ତୁ ଧନୁ ନାୟକ କୌଣସି ପ୍ରତ୍ୟାଶା ନରଖି ଏପରି ସେବା ନିରବଧି କରିଯାଉଛି କାହିଁକି ? ଓହୋ ! ତା'ର ସେଇ ଡିସ୍‌ମିସାଲ୍ ଅର୍ଡ଼ର୍‌ଟା ଏପର୍ଯ୍ୟନ୍ତ ବାତିଲ୍ ହେଇ ପାରିନାହିଁ । ବଡ଼ ଅନ୍ୟାୟ କଥା ! ଗୋଟାଏ ପିଅନ୍ ଚାକିରୀ, ତାକୁ ଚାରି ଚାରିଟା ମକଦ୍ଦମାରେ ପକେଇଲା; ସେ ଓକିଲ ମୋହରିର ଖର୍ଚ୍ଚ କରି ସେଥିରୁ ଖଲାସ ହେଲା, ତା'ପରେ କଅଣ ନାଁ ଚାକିରୀରୁ ବରଖାସ୍ତ ! ଧନୁ ନାୟକକୁ ନ୍ୟାୟ ଦବାକୁ ହବ । ନ୍ୟାୟ ତ ପୁଣି ଗଣତନ୍ତ୍ରର ଅନ୍ୟ ଏକ ଅଙ୍ଗ ।

ଦୋହରା ପୋହରା ହେଇ ତଳୁ ଉପର ଯାଏଁ ଧନୁ ନାୟକର ଫାଇଲ୍ ତୁରନ୍ତ ବେଗରେ ଯିବା ଆସିବା କରୁଛି । ଜଷ୍ଟିସ୍-ଜଷ୍ଟିସ୍-ଜଷ୍ଟିସ୍ । ତାହା ପୁଣି ଅତିଶୀଘ୍ର ଦବାକୁ ପଡ଼ିବ । କିନ୍ତୁ ଫାଇଲ୍ ଏପଟ ସେପଟ କରି ଦେଖାଗଲାଯେ ଏହି ପ୍ରଶାସନିକ ବିଭାଗରେ ଆଇ.ଏ.ଏସ୍. ଅଫିସର୍‌ମାନେ ମୁଖ୍ୟ ହେଇଥିଲା ପର୍ଯ୍ୟନ୍ତ ଜଷ୍ଟିସ୍ ଦେଇହବ ନାହିଁ, ତେଣୁ ତୁରନ୍ତ ସର୍ବୋଚ୍ଚ ବିଚାରାଳୟର ଘଣ୍ଟି ବଜେଇବାକୁ ପଡ଼ିବ । ସେ ଘଣ୍ଟି ଟେଲିଫୋନ୍ ପରି, ସାଇକେଲ୍ ବେଲ୍ ପରି ବା କଲିଙ୍ଗ୍ ବେଲ୍ ପରି ଚିଁ ଚିଁ ତୁର୍‌ତୁରିଆ ଘଣ୍ଟି ନୁହଁ । ତାହା ବାଜିବ ଏକ ଗୁରୁଗମ୍ଭୀର ସ୍ୱରରେ, ଯେମିତି ବାଜୁଥିଲା ଜାହାଙ୍ଗୀର୍‌ଙ୍କର ସିଂହ ଦ୍ୱାରରେ, ଏକ ଅଭୟ ବାଣୀ ପ୍ରଚାର କରି କହୁଥିଲା— ପ୍ରଜାମାନେ, ତମେ, ମୁଁ ଆମେ ସମସ୍ତେ ଆଇନ୍ ଆଗରେ ସମାନ ।

ଧନୁ ନାୟକ ହାଇକୋର୍ଟର ରିଟ୍ ପାଇଁ ଦରଖାସ୍ତ କଲେ ଓ ସରକାରଙ୍କ ଉପରେ ତୁରନ୍ତ ନୋଟିସ୍ ଜାରି ହେଲା ଯେ ଯଦି ସରକାର ପନ୍ଦରଦିନ ଭିତରେ ଧନୁ ନାୟକର ବରଖାସ୍ତର ବୈଧାନିକତା ସମ୍ପର୍କରେ ମହାମାନ୍ୟ ହାଇକୋର୍ଟଙ୍କୁ ସନ୍ତୁଷ୍ଟ ନ କରି ପାରନ୍ତି, ତାହାହେଲେ ମଜହର ଧନୁ ନାୟକଙ୍କର ଦରଖାସ୍ତ ମଞ୍ଜୁର୍ କରାଯିବ । ଖାଲି ନ୍ୟାୟ ବିଚାର ମାଗିଲେ ହୁଏ ନାଁ, ତା'ପଛରେ ଅଛି ବହୁ ଗଳି ଆଉ ଉପଗଳି ଯାହାର ଉପଦେବତାମାନଙ୍କୁ ପଞ୍ଚମକାର ପୂଜାରେ ସନ୍ତୁଷ୍ଟ କରିବାକୁ ପଡ଼େ, ଯାହାକୁ ଗୋଟାଏ

ଶବ୍ଦରେ କୁହାଯାଏ ତଦ୍‌ବୀର୍ କରିବା । କିନ୍ତୁ ଧନୁ ନାୟକ ସେଥିପାଇଁ ବ୍ୟସ୍ତ ହବା ଉଚିତ୍ ନୁହଁ । ତା' ପାଇଁ ସେ ଦାୟିତ୍ୱ ତୁଲାଇବାକୁ ବହୁ ଲୋକ ପ୍ରସ୍ତୁତ ଅଛନ୍ତି । 'ଗିଭ୍ ଆଣ୍ଡ୍ ଟେକ୍' ତ ଏକ ପୁରାତନ ପ୍ରମାଣ ସିଦ୍ଧ ସୂତ୍ର ।

ଏବେ ଧନୁ ନାୟକ ଟିକିଏ ନିଶ୍ଚିନ୍ତ ହେଲା । ଏଇ ତଦ୍‌ବୀର୍ କାମ ହାତକୁ ନେଇଥିବା ଲୋକମାନଙ୍କର ଆହୁରି ଖିଦ୍‌ମତ୍ କରିବାକୁ ପଡ଼ିବ, ସେଥିପାଇଁ ସେ ଅପେକ୍ଷାକୃତ ଜଞ୍ଜାଳମୁକ୍ତ ରହିବା ଉଚିତ୍ । ତେଣୁ ଧନୁର୍ଦ୍ଧର ତାଙ୍କର ସ୍ତ୍ରୀ ଓ ଏଇ ଶିବିରରେ ଜନ୍ମଗ୍ରହଣ କରିଥିବା ଦୁଇଶିଶୁଙ୍କୁ ଗାଁଆକୁ ରମାନା କରିଦେଲେ । ଗାଆଁରେ ମଧ ଯାହା କିଛି ଜମିବାଡ଼ି ଅଛି, ତା' ଉପରେ ନଜର୍ ରଖିବା ଦରକାର ।

ଏଇ ମଧ୍ୟବର୍ତ୍ତୀକାଳୀନ ଅବସ୍ଥାରେ ଧନୁର୍ଦ୍ଧରଙ୍କର ଅସ୍ଥାୟୀ ଶିବିରରେ ଗୋଟିଏ ମଳିନ ଇଲେକ୍‌ଟ୍ରିକ୍ ବଲ୍‌ବ ଜଳିବାକୁ ଆରମ୍ଭ କରିଛି । ବୋଧହୁଏ କୌଣସି ପାନ ଦୋକାନରୁ ଚୋରା ଲାଇନ୍‌ର କନେକ୍‌ସନ୍ ନେଇ । ସାମ୍ନା ଦରଜା ଆଗରେ ଖଣ୍ଡିଏ ପର୍ଦ୍ଦା ଝୁଲିରହି ଘରଟିର ଚେହେରାକୁ ଆଉ ଟିକିଏ ସମ୍ଭ୍ରାନ୍ତ କରିଦେଇଛି । ମଧ୍ୟରାତ୍ରି ପର୍ଯ୍ୟନ୍ତ ସେ ଘର ଭିତରକୁ ଲୋକମାନଙ୍କର ଯିବା ଆସିବା ଲାଗିଥାଏ । ମୋ ପାଖରେ ଛାଏଁ ଛାଏଁ ଆସି ସମ୍ବାଦ ପହଞ୍ଚିଲା, ଧନୁ ନାୟକ ଲୋକ ରଖି ସେଇ ଘର ଭିତରେ ଦେଶୀ ମଦ ବିକ୍ରୀ କରୁଛି । ଏପରିକି ଗୁରୁବାର, ମାସର ଦୁଇତାରିଖ ଓ ଗାନ୍ଧୀ ଜୟନ୍ତୀ ଫାନ୍ଦୀ ଜୟନ୍ତୀ ନିରୋଳା ଡ୍ରାଇ ଡେ' ଗୁଡ଼ାକ ମଧ କିଛି ବାଦ୍ ଯାଉନାହିଁ । ଏଇ ସମ୍ବାଦ ଶୁଣୁ ଶୁଣୁ ଆହୁରି ଥରେ ଅସତର୍କ ଅବସ୍ଥାରେ ଜୋର୍‌ରେ ହସିଉଠିଲି । ସତେ ଯେପରି ଲାଇସେନ୍‌ସ କରିଥିବା ବେପାରୀମାନେ ଏଇ ଡ୍ରାଇ ଡେ' ଗୁଡ଼ାକୁ ମାନି ଚଳୁଛନ୍ତି ! ଏ ସମ୍ବାଦ ପାଇବା ପରେ ଜଣେ ପୁଲିସ୍ କର୍ମଚାରୀ ହିସାବରେ ମୋର ହୁଏତ କିଛି କାର୍ଯ୍ୟାନୁଷ୍ଠାନ କରିବା ଉଚିତ ଥିଲା, କିନ୍ତୁ ମୋ ପାଇଁ ସେତେବେଳକୁ ଧନୁ ନାୟକ ଏକ ବ୍ୟକ୍ତିବିଶେଷ ହୋଇ ନଥିଲା । ସେ ଯେପରି ହୋଇଯାଇଥିଲା ଏ ଦେଶରେ ବିକାଶୋନ୍ମୁଖୀ ଗଣତନ୍ତ୍ର-ଶତଦଳର ଏକ ପ୍ରତୀକ ।

କଚେରୀରେ ମାମଲା ଚାଲୁଛି ଏବଂ କଚେରୀର ପାଚିରି ଡେଇଁ ଯେଉଁ ଧାରାବିବରଣୀ ବାହାରକୁ ଭାସି ଆସୁଛି, ସେଥିରୁ ସ୍ପଷ୍ଟ ଇଙ୍ଗିତ ମିଳୁଛି ଯେ ସରକାରୀ ଓକିଲ କ୍ରମାଗତ ପଛଘୁଞ୍ଚା ଦେଇ ଚାଲିଛନ୍ତି । ଧନୁ ନାୟକଙ୍କର ଓକିଲ ବାରମ୍ବାର ମିସଲ୍ ଉପରେ ହାତ ବାଡ଼େଇ ଚିତ୍କାର କରୁଛନ୍ତି ଯେ ଏ ଡିସ୍‌ମିସାଲ୍ ଆକ୍ରୋଶମୂଳକ, ବିଦ୍ୱେଷମୂଳକ, ଅଭିସନ୍ଧିମୂଳକ, ନାଚରାଲ୍ ଜଷ୍ଟିସ୍ ଚାଇ-ଚାଇ-ଚାଇ । ସରକାରୀ ଓକିଲଙ୍କର ସଯତ୍ନ ରକ୍ଷିତ ଗାଉନ୍ ବାରମ୍ବାର ସ୍କନ୍ଧସ୍ଖଳିତ ହୋଇ ଭୂଲୁଣ୍ଠିତ ହେଉଛି । ଦେଖଣାହାରୀମାନଙ୍କର ଉଚ୍ଚହାସ୍ୟରୋଳ ଭିତରେ ଜଷ୍ଟିସ୍ ହାତୁଡ଼ି ପିଟି ବାରମ୍ବାର କହୁଛନ୍ତି ଅର୍ଡ଼ର୍-ଅର୍ଡ଼ର୍-ଅର୍ଡ଼ର୍ ।

ଅସ୍ଥାୟୀ ଶିବିରରେ ଧନୁ ନାୟକ ତା'ର ଖିଦ୍‌ମତ୍ କରିବାର ଯନ୍ତ୍ରକୁ ଆହୁରି ବେଗଶୀଳ କରିଛି । ଜଣେ କିଏ ସ୍ପାଇ ସେଦିନ ଆସି କାନ କୁଣ୍ଡେଇ କୁଣ୍ଡେଇ ଖବର ଦେଇଗଲା ଯେ ଧନୁ ନାୟକର ଧାରଣା ଶିବିରରେ ଫୁଲବାଣୀର ଦୁଇଜଣ ଜବାନ୍ ଆଦିବାସୀ ଝିଅ ଆସି ବସବାସ କରୁଛନ୍ତି କିଛିଦିନ ଧରି । ଲୋକମାନଙ୍କର ଯିବା ଆସିବା ଚାଲିଛି । କିନ୍ତୁ ସେ'ଟା ପ୍ରାୟ ସନ୍ଧ୍ୟା ପରେ ଏବଂ ଅଧିକାଂଶ ଲୋକଙ୍କୁ ଦେଖାଯାଏ ଯେ ସେମାନେ ଶୀତରୁ ରକ୍ଷା ପାଇବା ପାଇଁ ପ୍ରାୟ ଦିହରେ ଚାଦର ଆଉ ମୁହଁରେ ମଫ୍‌ଲର୍ ଗୁଡ଼େଇ ହେଇଛନ୍ତି । ମୁଁ ସନ୍ଧ୍ୟା ପରେ ସେଠି ଜଣେ ସ୍ପାଇ ମୁତୟନ କରିଥିଲି, ଧନୁ ନାୟକର କାର୍ଯ୍ୟକଳାପ ଉପରେ ଲକ୍ଷ୍ୟ ରଖିବା ପାଇଁ ନୁହେଁ, ଧନୁ ନାୟକର ପୃଷ୍ଟପୋଷକମାନଙ୍କର ଏକ ସଠିକ୍ ତାଲିକା ପାଇଁ । ସେ ତାଲିକା ଦେଖି ମୁଁ ବିସ୍ମିତ ହେଇ ନାହିଁ, ମୁଁ ଯାହା ଜାଣିଥିଲି ତାହା ଦ୍ୱିତୀୟଥର ପାଇଁ ପ୍ରମାଣିତ ହେଲା । ଦିନେ ଦିନେ ସନ୍ଧ୍ୟା ପରେ, ବେଶ ଟିକିଏ ରାତି ପଡ଼ିଗଲେ ଧନୁ ନାୟକ ସେଇ ଆଦିବାସୀ ଝିଅମାନଙ୍କୁ ନେଇ କେଉଁ କେଉଁ କୋଠିର ଫାଟକ ଭିତରେ ଅଦୃଶ୍ୟ ହେଇଯାଏ, ସେମାନଙ୍କର ନାଆଁ ବା ଠିକଣା ମଧ୍ୟ ମୋର ଅଗୋଚର ରହେ ନାହିଁ ।

ୟା' ଭିତରେ ବିଚାରାଳୟର ରାୟ ବାହାରି ଯାଇଛି । ଧନୁ ନାୟକକୁ ଚାକିରୀରୁ ବରଖାସ୍ତ କରିବା ଅସିଦ୍ଧ ଘୋଷଣା କରାଯାଇଛି ଓ ଏହା ମଧ୍ୟ ନିର୍ଦ୍ଦେଶ ଦିଆଯାଇଛି ଯେଧନୁ ନାୟକ ପିଛିଲା ସାତବର୍ଷର ଦରମା ପାଇବା ସଙ୍ଗେ ସଙ୍ଗେ ତା'ର ପୂର୍ବତନ କାର୍ଯ୍ୟରେ ପୁନର୍ନିଯୁକ୍ତି ପାଇବ । ଏହି ସୂତ୍ରରେ ଧନୁ ନାୟକ ହାତକୁ ପ୍ରାୟ ତିରିଶି ହଜାର ଟଙ୍କା ବକେୟା ଆସିଗଲା । ଧନୁ ନାୟକ ଚାକିରୀରେ ମାତ୍ର ଦିନକ ପାଇଁ ଯୋଗ ଦେଇ ଇସ୍ତଫା ଦେଲା, କାରଣ ଇତିମଧ୍ୟରେ ତା'ର ସଂପ୍ରସାରିତ ବ୍ୟବସାୟକୁ ଦେଖାଶୁଣା କରିବା ପାଇଁ ଲୋକ କାହାନ୍ତି ? ଧନୁ ନାୟକ ଅବଶିଷ୍ଟ ଜୀବନ ମାସିକ ସତୁରୀ ଟଙ୍କା ହାରରେ ପେନ୍‌ସନ୍ ମଧ୍ୟ ପାଇଲା । ଗଣତନ୍ତ୍ରର ପୁନଃପ୍ରତିଷ୍ଠା ହେଲା । ଫେଷ୍ଟୁନ୍ ସବୁ କାଢ଼ି ଦିଆଗଲା ।

କିନ୍ତୁ ଏ ଘଟଣାର ବହୁଦିନ ପରେ ମଧ୍ୟ ଧନୁ ନାୟକର ଅସ୍ଥାୟୀ ଶିବିର ଉଠିଲା ନାହିଁ । ଉଠେଇବ କିଏ ? ଧନୁ ନାୟକ ତଥାପି ଖିଦ୍‌ମତ୍ କରିଚାଲିଛି । ତା'ଛଡ଼ା ଧନୁ ନାୟକ ଖୋଦ୍ ହରିଜନ ଓ ତା'ର ଆଶ୍ରିତା ଦୁଇଜଣ ଖୋଦ୍ ଆଦିବାସୀ । ସେ ଶିବିରକୁ ଯେପରି ରକ୍ଷାକବଚ ଦେଇ ଗଣତନ୍ତ୍ର ଏକ କାଳସର୍ପ ରୂପ ପରିଗ୍ରହ କରି ନିଜେ ଜଗି ବସିଛି । ବହୁଦିନ ଧରି ଦୁର୍ବଳ ଉପରେ ସମାଜର ସବଳ ଶ୍ରେଣୀ ଅତ୍ୟାଚାର କରି ଆସିଛି । ଆଜି ତା'ର ବଦ୍‌ଲା ନବାର ଦିନ ଆସିଛି । ଏଇ ହରିଜନ-କମ୍-ଆଦିବାସୀ ଟୁଇନ୍ କମ୍ପ୍ଲେକ୍ସ୍ ସହରରେ ଏକ ଜଣାଶୁଣା ଦେଶୀ ମଦ ବିକ୍ରୀ ଓ ଇମ୍‌ମରାଲ୍ ଟ୍ରାଫିକ୍ ଇନ୍ ଉଇମେନ୍ କେନ୍ଦ୍ର ରୂପେ ପ୍ରସିଦ୍ଧି ପାଇ ସାରିଲାଣି । କିନ୍ତୁ ତାକୁ ତ ଦିନେ ସକାଳୁ ବୁଲ୍‌ଡୋଜର୍ ଆଣି ଭାଙ୍ଗି ମାଟିରେ ମିଶେଇ ଦିଆଯାଇ

ହୁଏନା, ଯାହାହବ ତାହା ଇନ୍‌-ଡିଉ ପ୍ରସେସ୍ ଅଫ୍ ଲ' । ପ୍ରସେସ୍ ଅଫ୍ ଲ' ଆରମ୍ଭ ହେଇ ଯାଇଛି । ସମସ୍ତଙ୍କ ମୁହଁରେ, ଏକ୍‌ଜିକିଉଟିଭ୍ ଅଫିସର୍, ଲ୍ୟାଣ୍ଡ୍ ଅଫିସର୍, ଇଷ୍ଟେଟ୍ ଅଫିସର୍ ଓ ଏକ୍‌ସ୍ ଅଫିସିଓ ଡେପୁଟି ସେକ୍ରେଟାରୀ ଟୁ ଗଭର୍ଣ୍ଣମେଣ୍ଟ ଅଫ୍ ଓଡ଼ିଶା, ପଲିଟିକାଲ୍ ଆଣ୍ଡ୍ ସର୍ଭିସେସ୍ ଡିପାର୍ଟମେଣ୍ଟ—ସମସ୍ତଙ୍କ ମୁହଁରେ ସେଇ ଗୋଟାଏ କଥା, ପ୍ରସେସ୍ ଅଫ୍ ଲ' ଆରମ୍ଭ ହେଇଯାଇଛି, ଫାଇଲ୍ ଖୋଲି ଗଲାଣି ।

ଇତି ମଧ୍ୟରେ ମଧ୍ୟ ଅନ୍ୟ କେତେଗୁଡ଼ିଏ ଘଟଣା ଘଟି ଯାଇଛି । ବିରୋଧୀ ଦଳ ଧନୁ ନାୟକଙ୍କର ଉଦାହରଣ ଦେଇ ବିଧାନ ସଭାରେ ତୁମୁଳ ପ୍ରତିବାଦ କରିଛନ୍ତି ଯେ ବର୍ତ୍ତମାନ ସରକାର ଜାଣିଶୁଣି ହରିଜନ ଓ ଆଦିବାସୀମାନଙ୍କୁ ଜମିରୁ ବେଦଖଲ କରି ତାଙ୍କୁ ବାସଶୂନ୍ୟ କରି ଦେଉଛନ୍ତି । ସାମୟିକ ଭାବରେ ପ୍ରକାଶ ପାଉଥିବା ଗୋଟିଏ ଶସ୍ତା ପତ୍ରିକାର ସଂପାଦକ ଧନୁ ନାୟକଙ୍କ ସହିତ ଏକ ସାକ୍ଷାତ୍‌କାର କରି ଧନୁ ନାୟକଙ୍କର ଏକ ବିବୃତି ପ୍ରକାଶ କରି ଲେଖିଛନ୍ତି ଯେ ସରକାର ମକଦ୍ଦମାରେ ହାରିବା ପରେ ଧନୁ ନାୟକ ଓ ତାଙ୍କର ଆଦିବାସୀ ଭଉଣୀମାନଙ୍କ ପ୍ରତି ପ୍ରତିହିଂସାପରାୟଣ ହୋଇ ଉଠିଛନ୍ତି ଏବଂ ଯଦି ସରକାର ତାଙ୍କର ଏହି ମନୋବୃତ୍ତି ପରିବର୍ତ୍ତନ ନକରନ୍ତି, ତାହାହେଲେ ତାଙ୍କର ଆଦିବାସୀ ଭଉଣୀମାନଙ୍କ ପ୍ରତି ଅଶ୍ଳୀଳ ଆଚରଣ କରିଥିବା ବହୁ ପଦସ୍ଥ ସରକାରୀ କର୍ମଚାରୀ ତଥା ବିଧାନସଭା ସଦସ୍ୟମାନଙ୍କ ନାମ ସେ ଆସନ୍ତା ଥରକୁ ପ୍ରକାଶ କରିବାକୁ ଅଗତ୍ୟା ବାଧ ହେବେ । ସର୍ବନାଶ !

ହଁ, ଫାଇଲ୍ ଖୋଲିଗଲାଣି—ଓଡ଼ିଶା ସରକାରଙ୍କର ରାଜଧାନୀରେ ଅବସ୍ଥିତ ସଚିବାଳୟର କୋଟି କୋଟି ଫାଇଲ୍ ଭିତରେ ଧନୁର୍ଦ୍ଧର ନାୟକ ଓରଫ୍ ଧନୁ ନାୟକଙ୍କର ଜମି ବେଆଇନ ଦଖଲ ଓ ତଜ୍ଜନିତ ଉଚ୍ଛେଦ ପାଇଁ ମଧ୍ୟ ଗୋଟିଏ ଫାଇଲ୍ ଖୋଲିଛି । ସେ ଫାଇଲ୍‌ଟି ଏକ ଶୀର୍ଣ୍ଣ, ସଦ୍ୟଜାତ ଶିଶୁ ପରି ନାଲିଫିତାର ରିବନ ପିନ୍ଧି କେଉଁ ଏଲ୍.ଡି. କ୍ଲର୍କର ଝୁଲଣାରେ ଶୋଇ ରହି ଝୁଲୁଛି । କିଏ ଜାଣେ, ସେ ଫାଇଲ୍ କେବେ ବଡ଼ ହେବ, କେବେ ହବ ସ୍ଫୀତୋଦର ? କିଏ ଜାଣେ ସେ ଫାଇଲ୍ ତା'ର କଚ୍ଛପ ଗତିରେ ଏକ ମହଲାରୁ ଚାରି ମହଲା ଓ ଚାରି ମହଲାରୁ ଏକ ମହଲା ଓ ମାଇଲ ମାଇଲ ଧରି ଅଙ୍କାବଙ୍କା କୋରିଡ଼ର୍ ସବୁ ଅତିକ୍ରମ କରିବାକୁ କେତେ ସମୟ ନବ ? ସେଥିରେ କିଛି ଯାଏ ଆସେ ନାହିଁ । କିନ୍ତୁ ଗଣତନ୍ତ୍ରର ସ୍ୱଚ୍ଛ ଶୀତଳ ଫଲ୍‌ଗୁଧାରାର ଅବାରିତ ଗତି ଅବ୍ୟାହତ ରହିଛି ଓ ତହିଁରେ ସେହି ନଦୀର ଅନ୍ୟତମ ଆଦିବାସୀମାନେ ଧନୁ ନାୟକ ଓ ତାଙ୍କର ଦୁଇ ସହଚରୀ, ତିନୋଟି କଳାହଂସ ପରି ଆନନ୍ଦ ମନରେ ଜଳକ୍ରୀଡ଼ା କରୁଛନ୍ତି, ଏକ ସାବଲୀଳ ଛନ୍ଦରେ, ସେମାନଙ୍କର ଋଜୁ-କୋମଳ ଗ୍ରୀବା ସଂକୋଚନ ଓ ପ୍ରସାରଣ କରି ।

●●

# ଅଭିଶପ୍ତ ଜରାୟୁ

ବୋଉ ରିକ୍ସାରୁ ଓହ୍ଲେଇଲା ।

ଅନ୍ୟଦିନ ହେଇଥିଲେ ସେ ନିଜେ ନିଜେ ଓହ୍ଲେଇ ପଡ଼ନ୍ତା, ଆଉ ହାଁ ହାଁ କରୁ କରୁ ସାଙ୍ଗରେ ଆଣିଥିବା ଦୋପଖା ଚାଉଳ ବ୍ୟାଗ୍ ନହେଲେ ପୁଞ୍ଜାଏ ନଡ଼ିଆକୁ ଟେକିବାକୁ ବସନ୍ତା ରିକ୍ସା ଉପରୁ ।

କିନ୍ତୁ ଆଜିକାଲି ଆଉ ପାରୁ ନାହିଁ । ଜଣେ କାହା ଉପରେ ଭରା ଦେଲେ ଓହ୍ଲଉଛି, ଆଉ ତେଣିକି ଚାଉଳ କି ମୁଗ କି ଶାଗ ଯିଏ ତା'ର ଆଣିବ ଆଣୁଥାଉ । ରିକ୍ସାବାଲା ହାଙ୍କିଲା ଚାରିଟଙ୍କା । ମୁଁ ତରତର ହେଇ ପାହାଚ ଦେଇ ଓହ୍ଲେଇ ଯାଇ କହିଲି, କିରେ ! ବସ୍ ଷ୍ଟାଣ୍ଡରୁ ବାପୁଜୀ ନଗର ଚାରିଟଙ୍କା କେବେ ହେଲା ? ରିକ୍ସାବାଲା କିଛି ଜବାବ ନଦେଇ ତା'ର ଗାମୁଛା ଖଣ୍ଡକୁ ବାଁ କାନ୍ଧରୁ ଓହ୍ଲେଇ ନେଇ ଡାହାଣ କାନ୍ଧରେ ଥୋଇଲା । ଅମରି ବାଡ଼ ସେପଟେ ଜଗନ୍ନାଥବାବୁ ଆକାଉଣ୍ଟାଣ୍ଟ୍ ଗୋଟାଏ ଦାନ୍ତକାଠିରେ ଦାନ୍ତକୁ ଡିହ୍ ମାରି ଚାଲିଥିଲେ, ହାତ ବନ୍ଦ କରି ଲେଣ୍ଡାଏ ଛେପ ତଳକୁ ଛାଟି ଦେଇ କହିଲେ, ଏ ବଜ୍ଜାତ୍‌ଗୁଡ଼ାଙ୍କର ମୁହଁ ଭାରି ବଢ଼ିଗଲାଣି । ଖବରଦାର ଇନ୍ଦ୍ରମଣି ବାବୁ, ପାଁ'ସୁକାରୁ ବେଶୀ ଦେବେ ନାହିଁ । କହିସାରି ମଧ୍ୟ ତାଙ୍କର ଆଖି ଦି'ଟା ଢେଗା ଢେଗା ହେଇ ବାହାରିଥାଏ ଯେପରି ସେ ନୀରବରେ କୌଣସି ଅଶ୍ଳୀଳ ଅଭିସମ୍ପାତ ତଥାପି ବର୍ଷଣ କରି ଚାଲିଛନ୍ତି ।

ମୁଁ, ରିକ୍ସାବାଲା ଓ ଜଗନ୍ନାଥବାବୁ ଉଭୟଙ୍କୁ ଡରି ଡରି ଗୋଟିଏ ଦୁଇଟଙ୍କା ନୋଟ୍ ରିକ୍ସାବାଲା ହାତରେ ଗେଞ୍ଜି ଦେଲି । ସେ ହଠାତ୍ ଗୋଟାଏ କିଛି କାମୁଡ଼ିଲା ପରି ରିକ୍ସା ଉପରେ ବସିପଡ଼ି ମତେ ତା'ର ତେଲୁଗୁ ଭାଷାରେ ଅବୋଧ୍ୟ ଗାଳିଗୁଡ଼ିଏ ଦଉ ଦଉ ରିକ୍ସା ଚଳେଇନେଲା ।

ମୁଁ ଘର ଭିତରକୁ ଗୋଟାଏ ବ୍ୟାଗ୍ ଆଉ ଗୋଟାଏ ସୁତୁଳୀ ସିଲେଇ ଅଖା ଟେକି ନେଲା ପରେ ଦେଖିଲି ବୋଉ ଘରେ ନାହିଁ । ମାନେ ଯେଉଁଠି ତା'ର ରହିବା କଥା ସେଠି ନାହିଁ । ବୁଝିପାରିଲି ସେ ସିଧା ଯାଇ ପଶିଛି ବୋହୂ ଘରେ ସରଜମିନ୍ ତଦନ୍ତ ପାଇଁ । ମୁଁ ବସ୍ତାଟିକୁ ଓ ବ୍ୟାଗ୍‌ଟିକୁ କାଛ ପାଖକୁ ଆଉଜେଇ ଦେଇ ତା'ରି ପାଖରେ ବସି ରହିଲି ।

ବୋଉ ବାହାରକୁ ଆସିଲା, ମୋ ମୁହଁ ଆଡ଼କୁ ଥରେହେଲେ ନ ଅନେଇ କହିଲା, କଅଣ କହୁଚୁ କିରେ ଇନ୍ଦୁ ? ପିଲାଟା ପରା ଓହ୍ଲେଇ ଆସିଲାଣି, ଆଜି ନହେଲେ କାଲି ସକାଳ ଓଳି । ହଇରେ ମୁଁ ଛ'ଛ'ଟା ପିଲାର ମା', ତୁ ମତେ ଦେଖଉଛୁ ଲେଡ଼ି ଡାକ୍ତର । ତା'ପରେ କହିଲା, ଚାରି ବର୍ଷ ତଳର ବେଣ୍ଟିକଟା ଧାନର ମକଚା ପୁରୁଣା ଚାଉଳ, ସୁନାଖଳା କଳାମାଟି ଜାଇ, ରଖିଦେ, ପୋଖତି ପରେ ପଥି କାମକୁ ଆସିବ ।

ମୁଁ କହିଲି, ବୋଉ, ମିସେସ୍ ମହାଶ୍ୱେତା ଦେଇ ପରା ପରୀକ୍ଷା କରି ଡେଟ୍ ଦେଇଛନ୍ତି ଆସନ୍ତା ରବିବାରକୁ... ।

କ'ଣ ଦେଇଛନ୍ତି ? ବୋଉ ପଚାରିଲା ।

ଡେଟ୍ ଦେଇଛନ୍ତି, ସମୟ କହିଛନ୍ତି ଆସନ୍ତା ରବିବାର ।

ମୁଁ ସେସବୁ କିଛି ଜାଣିନି, ପିଲା ଆଜି ରାତିରେ ନହେଲେ ଖୁବ୍ ସମ୍ଭାଳିଲେ କାଲି ସକାଳ ।

ବୋଉ ଆଉ କିଛି କହିଲା ନାହିଁ, ଗଲା ତା'ର ପୂଜା ଆରମ୍ଭ କରିବାକୁ ।

ମୁଁ ମିତା ଘରକୁ ପଶିଲି । କହିଲି, ତମେ କିଛି ଡ୍ରରି କରନାହିଁ ମିତା, ଆହୁରି ଅନ୍ତତଃ ପାଞ୍ଚ ଦିନ ଅଛି । ମୁଁ ମିସେସ୍ ମହାଶ୍ୱେତା ଦେଇଙ୍କ କଥା ଶୁଣିବି ନା ଶୁଣିବି ବୋଉର କଥା, ବିଶେଷ କରି ଏସବୁ ମ୍ୟାଟାର୍‌ରେ । ବୁଝୁନା, ଏସବୁ ବ୍ୟାପାରରେ ନିଜର ରିଲେସନ୍‌ମାନଙ୍କର ଓଭର୍ ଆଙ୍ଗ୍‌ଜାଇଟି ହବା ସ୍ୱାଭାବିକ ।

ମିତା ପ୍ରଥମେ ଚୁପ୍ ରହିଲା, ତା'ପରେ କହିଲା, ଆଜି ହଉ କି ପାଞ୍ଚଦିନ ପରେ ହଉ, ମତେ ତ ପାପର ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ । ମୁଁ ବିରକ୍ତ ହେଲି; କହିଲି, ସ୍ୱାମୀ ସ୍ତ୍ରୀର ଏକ ଅତି ସାଧାରଣ ସମ୍ପର୍କକୁ ତମେ କାହିଁକି ପାପ କହୁଚ ମିତା, ବିଶେଷ କରି ଯେତେବେଳେ ଆମର ପ୍ରଥମ ସନ୍ତାନ ତମର ଗର୍ଭରେ ।

ମିତା ତଳକୁ ଆଖି ଅବନତ କଲା, କିନ୍ତୁ ତା'ର ଦୁଇ ଆଖି ମୁହୂର୍ତ୍ତକ ପାଇଁ ଉଜ୍ଜ୍ୱଳ ହୋଇ ଉଠିଥିଲା ।

ସେଦିନ ସନ୍ଧ୍ୟାରେ ସବୁଦିନ ପରି ଆମେ ଖିଆପିଆ କରିଥିଲୁ । ଖାଲି ବୋଉ କହିଥିଲା ଯେ ସେ ଭୁବନେଶ୍ୱରର ଅଟାର ରବର ପରି ରୁଟି ଖାଇ ପାରୁ ନାହିଁ । ତେଣୁ ତା'ଙ୍କ ପାଇଁ ଚୁଡ଼ା, ଦୁଧ ଓ କଦଳୀର ଆୟୋଜନ କରାଯାଇଥିଲା । ବୋଉ ଚୁଡ଼ା କଦଳୀ ଚକଟୁ ଚକଟୁ କହୁଥିଲା, ଏଗୁଡ଼ା କି କଦଳୀ କିରେ ? ଏଥିରୁ ଯୋଉ ମଞ୍ଜି ବାହାରୁଛି ତାକୁ ପୋତି ଦେଲେ ଗଛ ହେଇ ଯିବନା କ'ଣ ?

ମୁଁ ନୀରବରେ ବୋଉର ଏ କଥାତକ ହଜମ କରିନେଲି । ବୋଉ କ'ଣ ଜାଣେନା ମୁଁ ଭୁବନେଶ୍ୱରରେ ରହୁଛି, ଯାହା ଚାରିପଟଯାକ ଖାଲି ଏକ୍ସପୋର୍ଟ ଭେରାଇଟି ଭୁସାଓ୍ୟାଲ୍ କଦଳୀ ଚାଷ ହଉଛି । ମୁଁ ତା' ପାଇଁ ପାଟକପୂରା କଦଳୀ କୁଆଡୁ ଆଣିବି ?

ଖାଇସାରି ବୋଉ ସିଧା ଗଲା ମିତା ଘରକୁ । ତାକୁ କହିଲା, ତମେ ଆସି ତଳେ ମସିଣା ପକେଇ ଶୁଅ, ଏତେବେଳେ ଖଟ ଉପରେ ଶୋଇବା ଭଲ ନୁହଁ । ବୋଉ ମିତାର ଖଟ ଉପରେ ଶୋଇ ପଡ଼ିଲା ।

ମୁଁ ଚୁପ୍ ଚାପ୍ ଆର୍ ଘରର ତକ୍ତପୋଷ ଉପରେ ଖଣ୍ଡେ ସତରଞ୍ଜି ଆଉ ଚାଦର ପକେଇ ଦେଇ ନିରାଳମ୍ବ ହେଇ ଶୋଇ ପଡ଼ିଲି । କିନ୍ତୁ ଶୋଇବା ପୂର୍ବରୁ ମୋର ଅନେକ କଥା ମନେ ପଡ଼ିଥିଲା । ଦୈତାରୀ ବାବୁ ହେଡ୍ ଆସିଷ୍ଟାଣ୍ଟ ତିନିମାସ ହେଲା ନେଲେଣି ଶହେ ବା'ର ଟଙ୍କା ତାଙ୍କର ପିଲାର ଆଡ୍‌ମିସନ ପାଇଁ, ଏ ପର୍ଯ୍ୟନ୍ତ ଫେରେଇବାକୁ ନାହାନ୍ତି । ଡେଲିଭରୀ ପରେ ବୋଉ ଯେତେବେଳେ ଗାଁକୁ ଫେରିବ ତା' ହାତରେ ପୁଣି କିଛି ଟଙ୍କା ଦବାକୁ ପଡ଼ିବ ଏବଂ ଡେଲିଭରୀ ପରେ ପରେ କ'ଣ ସବୁ କିଣାଯାଏ ପିଲା ପାଇଁ ସେସବୁ ମଧ୍ୟ କିଣିବା ପାଇଁ ପଡ଼ିବ । ଛିଃ ! ମୁଁ କ'ଣ ଯାଡୁ ସିଆଡୁ ଭାବୁଚି, ନିଜର ପ୍ରଥମ ସନ୍ତାନ ଭୂମିଷ୍ଠ ହବା ପୂର୍ବରୁ ଏସବୁ କିଏ ଭାବେ ନା କ'ଣ ?

ମୁଁ ଏକାନ୍ତ ଏକାଗ୍ରତାର ସହିତ ଶୋଇପଡ଼ିବାକୁ ଚେଷ୍ଟା କଲି ।

କିନ୍ତୁ ତା' ସମ୍ଭବ ହେଲା ନାହିଁ ।

ବୋଉ ମୋ ଘର ଭିତରକୁ ପଶିଆସି ଡାକିଲା, ଇନ୍ଦୁ, ଉଠ୍ । ବୋହୂ ଯା' ଭିତରେ ଦି'ଥର ଶୂଳ ଖାଇ ସାରିଲାଣି ।

କଞ୍ଚା ନିଦରେ ଗୋଳମାଳ ହେଇ ମତେ ଲାଗୁଥାଏ ଯେମିତି କିଏ ଶୂନ୍ୟବାଣୀ କରୁଛି । ହୁଁ-ମିସେସ୍ ମହାଶ୍ୱେତା ଦେଈଙ୍କର ଡେଟ୍ ଭୁଲ୍ ହେଇ ପାରେନା ।

ଥଟ୍ଟା କଥା ନା କ'ଣ, ସିଏ ଗାଇନାକୋଲୋଜିରେ ସ୍ପେସିଆଲାଇଜେସନ୍ କରି ଆସିଛନ୍ତି ବିଲାତରୁ ।

କିନ୍ତୁ ମତେ ଉଠିବାକୁ ହେଲା ।

ମୁଁ ଉଠି ସିଧା ଯାଉଥିଲି ମିତା ଘରକୁ । ବୋଉ କହିଲା, ସିଆଡ଼େ କୁଆଡ଼େ, ବାହାରକୁ ଯା' ଡାକ୍ତରଖାନା ନବାର ବନ୍ଦୋବସ୍ତ କରିବାକୁ । ହଁ, ସତକଥା । ମୁଁ ପ୍ରଥମେ ଖବରଟା ପାଇ ହଡ଼ବଡ଼େଇ ଯାଇଥିଲି ।

ବାହାରକୁ ବାହାରି ପଡ଼ିଲି, କିନ୍ତୁ ଯିବି କୁଆଡ଼େ ? ଏଇନା ରାତି ଗୋଟାଏ ବାଜୁଛି । ରିକ୍ସାବାଲାଟାଏ କର ଦେଇ ଚାଲିଗଲା । ପଚାରିଲି, ଏ ରିକ୍ସା, ଯିବୁ ? ରିକ୍ସାବାଲାର ହଁ, ନାହିଁକୁ ଅପେକ୍ଷା ନକରି ରିକ୍ସା ଉପରେ ଡେଇଁକରି ବସିପଡ଼ି କହିଲି, ଚଲା ଦୁଇ ନମ୍ବର । ରିକ୍ସା ଚାଲିଲା । ମତେ ଲାଗୁଥାଏ ଯେମିତି ଗୋଟାଏ ଲାଇଟ୍ ପୋଷ୍ଟର ମାଇଲିଏ ପରେ ଆଉ ଗୋଟାଏ ଲାଇଟ୍ ପୋଷ୍ଟ ପଡ଼ୁଛି । ମୁଁ କହିଲି, ଏ ରିକ୍ସା, ଜଲ୍‌ଦି ଚଲା । ରିକ୍ସାବାଲା କ'ଣ ଗୋଟାଏ କହିଲା ନା କ'ଣ, ଦି' ଗୋଡ଼କୁ ପ୍ୟାଡ଼େଲ ଉପରେ ଦେଇ ଠିଆ ହୋଇ ପଡ଼ିଲା ଓ ଖର୍‌ରର୍‌କିନି ଗୋଟାଏ ଶବ୍ଦ ହୋଇ ଚେନ୍‌ଟା ଖସିଗଲା । ଚେନ୍ ଦେଇସାରି ରିକ୍ସାବାଲା ସିଟ୍ ଉପରେ ବସିଲା ପର୍ଯ୍ୟନ୍ତ ଆଉ ଯୋର୍‌ରେ ଚଳେଇବା କଥା କହି ନାହିଁ ଥରେ ହେଲେ ।

ଅଦ୍ଭୁତ ଲାଗୁଥାଏ ନିର୍ଜନ ରାସ୍ତା ଉପରେ ଏକୁଟିଆ ବସି ରିକ୍ସାରେ ଯିବା ପାଇଁ । ଭାବୁଥାଏ, ମୋର ପ୍ରଥମ ସନ୍ତାନ କ'ଣ ହେବ, ପୁଅ ନା ଝିଅ ? ଓଃ ସେ କଥା ପଛରେ । ମିତାର କ'ଣ ହେବ ଏଇନା ? ମୁଁ ତ ସବୁ ସଜଡ଼ା ସଜଡ଼ି କରି ରଖିବାକୁ ଠିକ୍ କରିଥିଲି । ପାଖ ଘରେ କାହାର ଫୋନ୍ ଅଛି । ଆମ୍ବୁଲାନ୍‌ସର ନମ୍ବର କେତେ...ଏମିତି ଅନେକ ସବୁ । କିନ୍ତୁ ମହାଶ୍ୱେତା ଲେଙ୍କର ଡେଟ୍‌ଟା ତ ସବୁ ଗୋଳମାଳ...

ଏ ରିକ୍ସା, ରଖ ରଖ । ବୁଲା । ଆଉ ଟିକିଏ ପଛରେ କ୍ୱାଟର୍ସଟା ଛାଡ଼ି ଆସିଲୁ ଯେ ! ରିକ୍ସାବାଲା ଓହ୍ଲେଇ ପଡ଼ି ଦୁଇ ହାତରେ ହ୍ୟାଣ୍ଡଲ୍‌ଟାକୁ ଧରି ନଇଁ ପଡ଼ିଲା ଗୋଟାଏ ବନ୍ୟ ଜାନୁଆର୍ ପରି ରିକ୍ସା ବୁଲେଇବାକୁ । ବେଶ୍ କିଛି ବାଟରେ ମୁଁ ଛାଡ଼ି ଆସିଲିଣି ଅଗଣିବାବୁଙ୍କ ଘର । ଅଗଣିବାବୁ ଅଣ୍ଡର୍ ସେକ୍ରେଟେରୀ । ଘର ଆସିଯିବାରୁ ମୁଁ ପ୍ରାୟ ଡେଇଁ ପଡ଼ିଲି ରିକ୍ସାରୁ ।

ଅଗଣିବାବୁ, ଅଗଣିବାବୁ ଘରେ ଅଛନ୍ତି...ଅଗଣିବାବୁ ମୁଁ ଇନ୍ଦ୍ରମଣି ଡାକୁଛି... ବହୁତ୍ ଜରୁରୀ କାମ...ମୁଁ ଇଇନ୍-ଦ୍ର-ମଅ-ଣିଇଇ । କିଛି ସୋର ଶବ୍ଦ ନାହିଁ ।

ଫାଟକ ଖୋଲି ଭିତରକୁ ପଶିଲି । କବାଟରେ ହାତ ବାଡ଼େଇ ଡାକିବି । ହାତ ବାଡ଼େଇଲି । ତଥାପି କିଛି ଜବାବ୍ ଆସୁ ନାହିଁ । କବାଟ କଡ଼ା ଝଣ ଝଣ କରିବାକୁ ଗଲାବେଳକୁ ଦେଖିଲି ଗୋଟାଏ ବଡ଼ ତାଲା ପଡ଼ିଛି । ଓଃ ଅଗଣିବାବୁ ତାହାହେଲେ ସପରିବାର କୁଆଡ଼େ ଚାଲି ଯାଇଛନ୍ତି ମୁଁ ଜାଣି ପାରି ନାହିଁ ।

ତାହାହେଲେ ଆଉ ଆମ୍ବୁଲାନ୍‌ସକୁ ଫୋନ୍ କରିବି କୋ'ଠୁ ? ଏତେ ରାତିରେ... ତା' ଛଡ଼ା ମଧ୍ୟ ମୋର ମନେ ପଡୁ ନାହିଁ ମୋର ଆଉ କୋଉ ଚିହ୍ନାଲୋକ ଘରେ ଫୋନ୍ ଅଛି । ହଁ ଅଛି ଜ୍ଞାନ୍ ସିଂ ଔଷଧ ଦୋକାନରେ । କିନ୍ତୁ ଜ୍ଞାନ୍ ସିଂ ଘର ବା

କୋଠି, ସେ ମୋ' ପାଇଁ ଏତେ ରାତିରେ ଦୋକାନ ଖୋଲିବ କାହିଁକି ? ଏ ରିକ୍ସା ଚଲା ଛ'ନମ୍ବର ବଡ଼ ଡାକ୍ତରଖାନାକୁ ।

ରିକ୍ସା ଚାଲିଲା । କିନ୍ତୁ ରିକ୍ସାବାଲାଟା ମୋ' ସହିତ ପଦେହେଲେ କଥା କହୁନାହିଁ କାହିଁକି ? ଏଇଟା କ'ଣ ଗୋଟାଏ ଭୂତ, ମତେ ରାତି ଅଧରେ ଭୂଆଁ ବୁଲଉଛି !

ଆହା ! ମୋ'ର ଅସମୟରେ ଅଗଣିବାବୁ ଭୁବନେଶ୍ୱର ବାହାରକୁ ଚାଲିଗଲେ । ବାପା ମରିଯିବା ପରେ ମୁଁ ଯେତେବେଳେ ପ୍ରଥମେ ସେକ୍ରେଟେରିଏଟ୍ ଭିତରକୁ ପଶିଲି ସେତେବେଳେ ପ୍ରଥମେ ଏଇ ଅଗଣିବାବୁଙ୍କୁ ନେଇ ଦେଇଥିଲି 'ଦି ଗଭର୍ଣ୍ଣମେଣ୍ଟ ଇଜ୍ ପ୍ଲିଜଡ଼ ଟୁ ଆପଏଣ୍ଟ ୟୁ' ଚିଠି ଖଣ୍ଡକ । ଅଗଣିବାବୁ ଚିଠି ଖଣ୍ଡକ ଉପରେ ଆଖି ବୁଲେଇ ଦେଇ ତାଙ୍କର ଚଷମାଟାକୁ ନାକ ତଳକୁ ଟାଣି ଦେଇ ମତେ ଥରେ ଅନେଇ ଥିଲେ ଆଉ କହିଥିଲେ, ବାବୁ ସେଇ ଚଉକିରେ ବସ, ତମର ଟେବୁଲ୍ ଆସିବାକୁ ଟିକିଏ ଡେରି ହେବ, ରିକ୍ୟୁଜିସନ୍ ଯାଇଛି, ଆଉ କାମ କରିବାକୁ ଆହୁରି ଡେରି ହେବ ।

ମୁଁ ଚଉକି ଉପରେ ବସି ରହି ଏ ପଟକୁ ସେପଟକୁ ଚାହିଁ ରହିଲି । ପୁରୁଣା ଲୋକମାନେ ଟିକିଏ ଚାହିଁ ଦେଇ କିଏ କୁଆଡ଼େ ଯାଉଥାଆନ୍ତି ପୁଣି ଫେରିଆସନ୍ତି । ଅଗଣିବାବୁ ମୋ' ଆଡ଼କୁ ଖଣ୍ଡେ ଖବରକାଗଜ ମୋଡ଼ା ପୁଡ଼ିଆ ବଢ଼େଇ ଦେଇ କହିଲେ, ଆପଣଙ୍କର ପାନ ଚଳିବ ? ମୁଁ କହିଲି, ନା । ଧୀରେ ଧୀରେ ସମସ୍ତେ ଚାଲିଗଲେ । ଅଫିସ ଖାଲି ହୋଇଗଲା । ତା'ପରେ ହଠାତ୍ ମତେ ଚାହିଁ ଅଗଣିବାବୁ କହିଲେ, କିଓ, ସାଢ଼େ ଚାରିଟା ବାଜିଲା । ସମସ୍ତେ ଗଲେଣି, ତମେ କାହିଁକି ବସିଚ ? ମୁଁ କ'ଣ କହିବି ଜାଣି ପାରିଲି ନାହିଁ । ଅଗଣିବାବୁ ପୁଣି କହିଲେ, ହଉ ବସିଲଣିତ ବସ, ସାଙ୍ଗ ହୋଇ ଯିବା ।

ସାଙ୍ଗ ହେଇ ଫେରିଲାବେଳେ ମୁଁ ଦେଖିଲି ସାରା ଅଫିସଟାରେ ଆଲୁଅ ଜଳୁଚି ଆଉ ପଙ୍ଖାଗୁଡ଼ାକ ସାଇଁ ସାଇଁ ଘୂରୁଚି ଖାଲି ଟେବୁଲ ଚଉକିଗୁଡ଼ାକ ଉପରେ । ମୁଁ ଆମ ପଟର ଆଲୁଅ, ପଙ୍ଖା ବନ୍ଦ କରିବାକୁ ଗଲା ବେଳକୁ ଅଗଣିବାବୁ କହିଲେ, ଥାଉ ଥାଉ, ସେଥିପାଇଁ ପିଅନ୍‌ମାନେ ଅଛନ୍ତି । ସେଟା ସେମାନଙ୍କ କାମ । ମୁଁ ସେ କାର୍ଯ୍ୟ କରିବାରୁ ବଞ୍ଚିତ ହେଲି ।

ପଦାକୁ ଆସି ମୁଁ ଗୋଟାଏ ରିକ୍ସାକୁ ଡାକି ମୋ' ସହିତ ଅଗଣିବାବୁଙ୍କୁ ବସିବାକୁ ଅନୁରୋଧ କଲି ଓ ସିଏ ମଧ୍ୟ ବସିଲେ । ବାଟରେ କହିଲେ, ଇନ୍ଦ୍ରଜିତ୍ ବାବୁ !—ମୁଁ କହିଲି, ମୋ' ନାଁ ଆଜ୍ଞା ଇନ୍ଦ୍ରମଣି । ଓହୋ, ସେଇ ଏକା କଥା ହୋ, ଇନ୍ଦ୍ରଜିତ୍ କିଏ

ଇନ୍ଦ୍ରମଣି କିଏ ? କିନ୍ତୁ କଥାଟା ହେଲା, ତୁମର ଦରମା ହେଲା ତିନିଶହ ଚଉଷ୍ଠରୀ ଟଙ୍କା, ତେଣୁ ରିକ୍‌ସା ଅଭ୍ୟାସଟାକୁ ଛାଡ଼ । ମୋର ଚାକିରୀ ହେଲା ଅଠର ବର୍ଷ । ଏତେବର୍ଷରେ ମୁଁ ଆସି ହେଡ଼ଆସିଷ୍ଟାଣ୍ଟ ହେଲିଣି । ମତେ ଅଫିସ୍‌ରେ ସମସ୍ତେ ବଡ଼ବାବୁ ବୋଲି ଡାକନ୍ତି । ହେଲେ ମୁଁ ରିକ୍‌ସା ଚଢ଼ିପାରେ ନାହିଁ କି ଆଜିଯାଏ ସାଇକଲ ଖଣ୍ଡିଏ କରି ପାରିଲି ନାହିଁ । ବୁଝିଲ ଇନ୍ଦ୍ରମଣି ବାବୁ, ଏ ସେକ୍ରେଟେରିଏଟ୍ ଗୋଟାଏ ହାତୀ, ସେ ତମକୁ ଜୁଆନ୍ ଅବସ୍ଥାରେ ଗିଳେ, ଯେତେବେଳେ ତମେ ପଚିଲା କଇଁଥ ଆଉ ତମକୁ ପଚିଶ ବର୍ଷ ଭିତରେ ହଜମ୍ କରି ବାହାରକୁ ଫୋପାଡ଼ି ଦେଲାବେଳେ ତମେ ପୋଲା କଇଁଥ ହେଇ ବାହାରିପଡ଼ । ତମକୁ କିଏ କହିଲା ଯା ଭିତରକୁ ଆସିବାକୁ ? ମୁଁ ନିଜେ ଅନେକ ସମୟରେ ଭାବେ, ମୁଁ ପରିବା ଦୋକାନଟିଏ କରିଥିଲେ ଖୁବ୍ ସୁଖରେ ଥାଆନ୍ତି, ଗରହାକ୍ ଆଡ଼କୁ ନଅନେଇ କୁହନ୍ତି, କଖାରୁ କିଲୋ ଅଢ଼େଇ ଟଙ୍କା ।

ଦୁଇନମ୍ବର ୟୁନିଟ୍ ହୋଇ ଯାଇଥିଲା, ସେ ଓହ୍ଲେଇ ଗଲେ ।

ମୋ ରିକ୍‌ସା ପ୍ରାୟ ଡାକ୍ତରଖାନା ଫାଟକ ଭିତରକୁ ପଶୁଥିଲା ।

ଖୁବ୍ ଆଶ୍ୱସ୍ତ ହେଲି ଧଳା ଆମ୍ବୁଲାନ୍‌ସ ଗାଡ଼ିଟାକୁ ଓ ତା' ଦେହରେ ନାଲି ରଙ୍ଗର ଛକି ଚିହ୍ନ ଦେଖି ।

ପିଣ୍ଡାରେ ଗୋଟାଏ ବେଞ୍ଚ୍ ଉପରେ ଖାକି ରଙ୍ଗର ପ୍ୟାଣ୍ଟ ସାର୍ଟ ପିନ୍ଧି ଲୋକଟିଏ ଢୁଳଉଥିଲା ।

ଓ ବାବୁ—ଓ ବାବୁ ।

ଉଁ—କ'ଣ ?

ମୋର ଆମ୍ବୁଲାନ୍‌ସ ଜରୁରୀ ଦରକାର, ଡ୍ରାଇଭରବାବୁ କାହାନ୍ତି ?

ମୁଁ ଡ୍ରାଇଭର, ହେଲେ ପାଞ୍ଚଲିଟର ତେଲ ଆଣିଲେ ଆମ୍ବୁଲାନସ୍ ଯିବ, ତେଲ ନାହିଁ । ଆମ୍ବୁଲାନ୍‌ସରେ ତେଲ କାହିଁକି ନାହିଁ ? ମୋର ନିମ୍ନ ମଧ୍ୟବିତ୍ତର ମୁଣ୍ଡକୁ ମଧ୍ୟ ରକ୍ତ ଉଠିଗଲା । ଆଜ୍ଞା ତେଲ ନାହିଁ ନୁହଁ—ତେଲ ରହୁନାହିଁ । ସରକାରୀ ଅର୍ଡ଼ର । ଯିଏ ଗାଡ଼ି ନବ ସିଏ ଆଗେ ପାଞ୍ଚ ଲିଟର୍ ତେଲ ଆଣିଲେ ତା'ପରେ ଆମ୍ବୁଲାନ୍‌ସ ଯିବ ।

କିନ୍ତୁ ଏଇନା ମୁଁ ତେଲ କୋଉଥିରେ ଆଣିବି ?

ଆଜ୍ଞା, ଗାଡ଼ିରେ ଜେରିକେନ୍ ଅଛି, କହି ସେ ଜେରିକେନ୍ ଆଣିବା ଉଦ୍ଦେଶ୍ୟରେ ଉଠିବାକୁ ବସିଲା । ମୁଁ କହିଲି, ଥାଉ ଥାଉ । କାରଣ ମୁଁ ହିସାବ କରି ନେଇ ସାରିଥିଲି ଯେ ଏଠୁ ଯାଇ, ତେଲ ଆଣି, ତେଲ ପକେଇ, ଘରେ ପହଞ୍ଚି ମିତାକୁ ଆଣିବା ଅପେକ୍ଷା ରିକ୍‌ସାରେ ଗଲେ ଆହୁରି ଶୀଘ୍ର ହବ ।

ମୁଁ ପିଲାଦିନେ ପାଠ ପଢୁଥିଲାବେଳେ ମତେ ମୋ'ର ମାଷ୍ଟ୍ର ଓ ସାଙ୍ଗ ପିଲାମାନେ ସମସ୍ତେ ବୁଦ୍ଧିଆ ପିଲା ବୋଲି କହୁଥିଲେ । ମୁଁ ଠିକ୍ କରିନେଲି ଯେ ମିତାକୁ ଆଣିବା ଆଗରୁ ଇମର୍‌ଜେନ୍‌ସି ଓ୍ୟାର୍ଡ଼ର ଚାର୍ଜରେ ଥିବା ଲୋକମାନଙ୍କୁ କହିଦେଇ ଯାଇଥିଲେ ସେମାନେ ସବୁ ପ୍ରସ୍ତୁତ କରି ରଖିଥିବେ, ଯାହା ଯାହା ଦରକାର । ପ୍ରାୟ ଦୌଡ଼ି ଦୌଡ଼ି ଭିତରକୁ ଗଲି ।

ଇମର୍‌ଜେନ୍‌ସିରେ ଜଣେ ଡାକ୍ତର ଓ ତାଙ୍କର ଚଉକି ପଛଆଡ଼କୁ ଲାଗି ଜଣେ ନର୍ସ । ମୁଁ କହିଲି, ମୋର ସ୍ତ୍ରୀଙ୍କର ପେଏନ ଆରମ୍ଭ ହେଇଯାଇଛି; ଟିକିଏ ବନ୍ଦୋବସ୍ତ କରି ରଖିବେ । ନର୍ସ ପଚାରିଲେ, କାହାନ୍ତି ଆଣଙ୍କ ପେସେଣ୍ଟ ? ମୁଁ କହିଲି, ଆମ୍ବୁଲାନ୍‌ସ ତ ଚାଲୁନି, ମୁଁ ଏଇନା ଯାଉଛି ତାଙ୍କୁ ଯେମିତି ହେଲେ ରିକ୍‌ସାରେ ନେଇ ଆସିବି । ନର୍ସ ଜଣକ କହିଲେ, ଓ, ନେଇ-ଆ-ସି-ବେ !

ମୁଁ ଜବାବ୍ ଦେଲି ନାହିଁ ।

ପୁଣି ଦୌଡ଼ିଲି ରିକ୍‌ସା ପାଖକୁ—ଏ ରିକ୍‌ସାବାଲା, ବାପୂଜୀ ନଗର...

ପୁଣି ରିକ୍‌ସା ଚାଲିଲା । କିନ୍ତୁ ଲୋକଟା ପଦୁଟିଏ ହୁଁ କି ନା କହୁ ନାହିଁ କାହିଁକି ? ଏଇ ନୀରବ ବା ମୂକ ବା ଅଶରୀରୀ ରିକ୍‌ସାବାଲା ମୋର ନିଃସଙ୍ଗତାକୁ ଯେପରି ବହୁଗୁଣିତ କରୁଛି ।

ରିକ୍‌ସା କିଛିବାଟ ଗଲା ପରେ ଗୋଟାଏ ଜାଗାରେ ଧଡ଼୍‌କିନା ପଡ଼ିଲା ଗୋଟାଏ ଖାତରେ । ମୁଁ ଛେଚି ହେଇଗଲି ରିକ୍‌ସା ଉପରେ । ସାଙ୍ଗେ ସାଙ୍ଗେ ରିକ୍‌ସାକୁ କହିଲି, ଏ ଭାୟା ରିକ୍‌ସା, ୟେ ଜାଗାକୁ ୟାଦ୍ ରଖନା, ଆନେକା ଟାଇମ୍ ଇହାଁ ଉତର୍ କର ବହତ୍ ଆସ୍ତେ ସେ ରିକ୍‌ସାକୁ ଲେନା । ରିକ୍‌ସାବାଲା ମୁଣ୍ଡ ହଲେଇ ଦେଲା । ତା' ମୁଣ୍ଡ ଉପରର ଠେକା ଡାହାଣ ପଟକୁ ସ୍ପଷ୍ଟ ଢଳି ପଡ଼ିବାର ଦେଖିଲି । କିନ୍ତୁ କିଛି କହିଲା ନାହିଁ ମୁହଁ ଖୋଲି ।

ଘରେ ପହଞ୍ଚି ଦୁଆର ମୁହଁରେ ଗୋଡ଼ ଦଉ ନଦଉଣୁ ମିତାର ଉଁ...ଉଁ...ଉଁହ୍—ଯନ୍ତ୍ରଣାର ସ୍ୱର ଶୁଣିବାକୁ ପାଇଲି । ବୋଉ ଖାଲି ଘରକୁ ଦାଣ୍ଡକୁ ହଉଥିଲା । ଦେଖି ପକେଇ କହିଲା, କିରେ ଏତେ ଡେରି କ'ଣ କଲୁ—ଡାକ୍ତରଖାନା ଗାଡ଼ି କ'ଣ ଆସିଲା ନାହିଁ ? ମୁଁ ମିତା ଘର ଭିତରକୁ ଯାଉ ଯାଉ ସଂକ୍ଷେପରେ ସବୁ କଥା ବୋଉକୁ କହି, ଶେଷରେ, ମତେ ମିତାକୁ ଅଗତ୍ୟା ରିକ୍‌ସାରେ ନେଇ ଯିବାକୁ ହବ ବୋଲି କହିଲି ।

ବୋଉର କିଛି କହିବାର ନଥିଲା । ତେଣୁ ସେ ମିତାକୁ ରିକ୍‌ସା ଉପରକୁ ନବା ପାଇଁ ମତେ ସାହାଯ୍ୟ କରିବାକୁ ଆସିଲା । ଆମେ ଦୁଇଜଣ ମିତାକୁ ଆଣି ରିକ୍‌ସା ଉପରେ ରଖିଲୁ । ମିତା ରିକ୍‌ସାର ଗୋଡ଼ ରଖିବା ଲୁହା ଦସ୍ତା ଉପରେ ଗୋଡ଼କୁ ଠେସି

ନେଇ ମୋ ଉପରେ ଆଉଜି ପଡ଼ି କୌଣସିମତେ ରହିଲା । ମୁଁ ତା'ର ତଳିପେଟ ପାଖେ ମୋର ଡାହାଣ ହାତ ରଖି ତାକୁ ଆଉ ତଳକୁ ଖସି ନଯିବାକୁ ଦବା ପାଇଁ ପ୍ରାଣପଣେ ଉଦ୍ୟମ କଲି ।

ଏ ରିକ୍ସା ଚାଲିଲୁ ଛ' ନମ୍ବର ୟୁନିଟ୍ ବଡ଼ ଡାକ୍ତରଖାନାକୁ ।

ମୋର ଆଦୌ ମନେ ନଥିଲା । କିନ୍ତୁ ରିକ୍ସାବାଲା ଠିକ୍ ଜାଗାରେ ଓହ୍ଲେଇ ପଡ଼ି ଆସ୍ତେ ଆସ୍ତେ ସେଇ ଖାତ ଜାଗାଟାକୁ ପାର କଲା । ମିତା ତଥାପି ଚାପା ଯନ୍ତ୍ରଣାରେ ଶବ୍ଦ କରୁଥାଏ ଉଁ ହୁଁ-ଉଁ ହୁଁ, ଯେମିତି କୌଣସି ବନ୍ୟଜନ୍ତୁ ଗୁଳିଖାଇ ମରିବା ଆଗରୁ ତା'ର କଣ୍ଠନଳୀ ଦେଇ ଏକ ଚାପା ଅଥଚ ବିଷାଦମୟ ଆର୍ତ୍ତନାଦ କରିଥାଏ । ମୁଁ କୌଣସି ଉତ୍ତରର ଆଶା ନରଖି ବାରମ୍ବାର ସେଇ ଗୋଟାଏ କଥାର ପୁନରାବୃତ୍ତି କରି ଚାଲିଥାଏ, ମିତା, ବ୍ୟସ୍ତ ହୁଅ ନାହିଁ । ଟିକିଏ ସହିନିଅ, ମୁଁ ଡାକ୍ତରଖାନାରେ ସବୁ ବନ୍ଦୋବସ୍ତ କରିଦେଇ ଆସିଛି । ଆଉ ଦଶ ମିନିଟ୍‌ରେ ପହଞ୍ଚିବା, ତା'ପରେ ସାଙ୍ଗେ ସାଙ୍ଗେ ସହିନିଅ...।

ମିତା, ବ୍ୟସ୍ତ ହୁଅ ନାହିଁ, ଟିକିଏ ସହିନିଅ...।

ମୋ' କହିବା ମଝିରେ ମଝିରେ ପୁଣି ସେହି ଗୁଳି ମାଡ଼ ଖାଇଥିବା ପଶୁର ବିଷାଦମୟ ଯନ୍ତ୍ରଣାର ବ୍ୟାକୁଳ ସ୍ୱର ।

ମିତା, ବ୍ୟସ୍ତ ହୁଅ ନାହିଁ, ଟିକିଏ ସହିନିଅ...।

ମଝିରେ ମଝିରେ ମୋର ଡାହାଣ ବାହୁ ଉପରେ ମିତାର ହାତର ଚାପର ତାରତମ୍ୟ ହିଁ ଥାଏ ମିତାର ନିଜକୁ ବୋଧଗମ୍ୟ କରେଇ ପାରିବାର ଏକମାତ୍ର ମାଧ୍ୟମ । ମୋର ମନେ ହେଉଥାଏ, ସେ କହୁଚି, ତମେ ଯାହା କରିବାର କରୁଛ, ସେ ବିଶ୍ୱାସ ମୋର ଅଛି, କିନ୍ତୁ ମତେ ଶୀଘ୍ର ଡାକ୍ତରଖାନାକୁ ନେଇ ଚାଲ ।

...ମୁଁ ଡାକ୍ତରଖାନାରେ ସବୁ ବନ୍ଦୋବସ୍ତ କରିଦେଇ ଆସିଛି ମିତା, ଆଉ ଦଶ ମିନିଟ୍‌ରେ ପହଞ୍ଚିବା । ତା'ପରେ ସାଙ୍ଗେ ସାଙ୍ଗେ ଡେଲିଭରି ।

ପାଟିରୁ ବାହାରି ଆସୁଥିଲା, ରିକ୍ସା ଜଲଦି ଚଲା । ତା'ପରେ ପୁଣି ସେ ଶବ୍ଦ ତକ ମୁଁ ନିଃଶବ୍ଦରେ ଢୋକିନେଲି ।

ଏଇ, ଡାକ୍ତରଖାନା ଫାଟକ ଉପରେ ଗୋଲ ଗୋଲ ଆଲୁଅ ଦେଖାଗଲାଣି ଧନ୍ୱନ୍ତରିଙ୍କର ଦୁଇଟି କରୁଣାସିକ୍ତ ଆଖିପରି । ଆଉ ବ୍ୟସ୍ତ ହବାର କିଛି କାରଣ ନାହିଁ । ପହଞ୍ଚିବାକୁ ଖୁବ୍ ଜୋର୍ ଛ' ସାତ ମିନିଟ୍ ଲାଗିବ । କିନ୍ତୁ ଛ' ସାତ ମିନିଟ୍ ଯେ ଅନ୍ତତଃ ତିନିଶହ ଷାଠିଏ ସେକେଣ୍ଡ, ବା ଚାରିଶହ କୋଡ଼ିଏ ସେକେଣ୍ଡ । ଛ' ପରେ ଯେମିତି

ସହଜରେ ଆସେ ସାତ, ତିନିଶହ ଷାଠିଏ ସେକେଣ୍ଡର ଅନେକ ପରେ ଆସେ ଚାରିଶହ କୋଡ଼ିଏ ସେକେଣ୍ଡ...।

ଡାକ୍ତରଖାନାର ଫାଟକ ଭିତରେ ରିକ୍ସା ଏଥରକ ସତକୁସତ ପଶିଲା । ଇମର୍‌ଜେନ୍‌ସି ୱାର୍ଡ଼ରେ ଡାକ୍ତରଟି ପୂର୍ବ ପରି ବସିରହି ସିଗାରେଟ୍ ଟାଣୁଚି । ନର୍ସଟି ତା’ ଚାରିପଟେ ଗୋଟିଏ ବଣି ଚଢ଼େଇ ପରି ଖୁପୁରୁ ଖୁପୁରୁ ଡେଉଁଚି ।

ମୁଁ ମୋ ସ୍ତ୍ରୀଙ୍କୁ ଦୁଇହାତରେ ନିଜ ଉପରେ ଆଉଜାଇ ରଖି ପ୍ରାୟ ଧଇଁସଇଁ ହୋଇ କହିଲି, ଏଇ ଆପଣଙ୍କ ପେସେଣ୍ଟ, ଟିକିଏ ଶୀଘ୍ର ନେଇ ଚାଲନ୍ତୁ ଓ୍ୟାର୍ଡ଼କୁ, ବାଟ ସାରା ଅନେକ କଷ୍ଟ ପାଇଲାଣି ରିକ୍ସାରେ ଆସୁ ଆସୁ ।

ନର୍ସଟି କହିଲା, ଆଗ ସେଇଠି ବସାନ୍ତୁ, ମୁଁ ଦେଖେ କେଉଁଠି ଯାଗା ହୋଇ ପାରିବ କି ନାହିଁ । ଓ୍ୟାର୍ଡ଼ ତ ଫୁଲ୍ । ମୁଁ କହି ପକାଇଲି ନର୍ଭସ୍ ହୋଇ, ଆଜ୍ଞା ମୁଁ ଗଭର୍ଣ୍ଣମେଣ୍ଟ ସର୍ଭାଣ୍ଟ । ନର୍ସ କହିଲା, ଏଠିତ ସମସ୍ତେ ଗଭର୍ଣ୍ଣମେଣ୍ଟ ସର୍ଭାଣ୍ଟ । ଏଇ, ହରିଚରଣ, ଟିକିଏ କାମେଶ୍ୱରୀ ଦେବୀଙ୍କୁ ଜଲ୍‌ଦି ଖବର ଦେ, ଡେଲିଭରି କେସ୍ । ହରିଚରଣ ମୁଣ୍ଡରେ ମଫ୍‌ଲର୍‌ର ଗୋଟାଏ ଠେକୋବାନ୍ଧି ଠୁଙ୍କା ହୋଇ ବସି ଆଣ୍ଠୁ ସନ୍ଧିରେ ମୁଣ୍ଡ ଗୁଞ୍ଜିଥିଲେ । ଗଳାଖଙ୍କାର ଦେଇ ସାରିବା ପରେ କହିଲେ, ଯାଉଚି ଦିଦି ।

ମୁଁ ମିତାକୁ ଖଣ୍ଡେ ବେଞ୍ଚ ଉପରେ ବସେଇଦବା ପରେ ସେ ନିଜକୁ ପାନପିକ ପକା କାନ୍ଥ ଉପରେ ଆଉଜେଇ ଦେଇ ଧକଉ ଥିଲେ ଓ ମଝିରେ ମଝିରେ ଅସ୍ପଷ୍ଟ ଭାବରେ ସ୍ୱର ବାହାରୁଥିଲା, ଉମମ୍‌ମ୍ ହୁଁ...ଉମ୍‌ମ୍...ହୁଁ । ମୁଁ ପୁଣିଥରେ ଡାକ୍ତରବାବୁଙ୍କ ପାଖକୁ ଦୌଡ଼ିଯାଇ କହିଲି, ଆଜ୍ଞା ! ଟିକିଏ ଶୀଘ୍ର ବନ୍ଦୋବସ୍ତ କରିବା ପାଇଁ ଚେଷ୍ଟା କରନ୍ତୁ । ଡାକ୍ତରବାବୁ ଗୋଡ଼ ଦୁଇଟା ଟେବୁଲ ଉପରେ ରଖି ଚଉକିକୁ ଆଉଜି ପଡ଼ିଥିଲେ ଓ ତାଙ୍କ ମୁହଁ ପାଖରୁ ଗୋଟିଏ ଶୁଭ୍ରାକାର ଧୂମ କୁଣ୍ଡଳୀ ଧୀରେ ଧୀରେ ଦୂରକୁ ଅପସରି ଯାଉଥିଲା । କହିଲେ; ମୋର କିଛି କରିବାର ନାହିଁ । ଡକ୍ଟର କାମେଶ୍ୱରୀ ଦେବୀ ଆସୁଛନ୍ତି ।

ପ୍ରାୟ ଶହେ ହାତ ଦୂରରେ କରିଡରରେ ଠିଆହୋଇ ନର୍ସଟି ଚିତ୍କାର କରି କହିଲା, ଆଣନ୍ତୁ, ଆପଣଙ୍କ ପେସେଣ୍ଟକୁ ଆଣନ୍ତୁ ଶୀଘ୍ର । ମିତାର ଗୋଟାଏ ହାତ ମୋ କାନ୍ଧ ଉପରେ ରଖୁ ରଖୁ ଭାବୁଥିଲି, ବଡ଼ ଡାକ୍ତରଖାନା ଭିତରେ ପେସେଣ୍ଟକୁ ନବା ଆଣିବାକରିବା ମଧ୍ୟ କ’ଣ ମୋ କାମ ? ୱାର୍ଡ଼ ସାମ୍ନାରେ ପହଞ୍ଚିଲା ବେଳକୁ ଦୁଇଟା ଦୁଇଟା ଖଟ ମଝିରେ ତଳେ ଗୋଟାଏ ଗଦି ପକାହୋଇଛି ଓ ତା’ ଉପରେ ଖଣ୍ଡେ ମଇଳା ଚାଦର । ମୋର ବୁଝିବାକୁ ବିଳମ୍ୱ ହେଲା ନାହିଁ । ମୁଁ ମିତାକୁ ନେଇ

କୌଣସିମତେ ସେଠି ଶୁଆଇ ଦବାକୁ ଗଲାବେଳକୁ, ଜଣେ ପେସେଣ୍ଟର ଜଣେ ଆଟେଣ୍ଡାଣ୍ଟ ମତେ ସାହାଯ୍ୟ କରି ନଥିଲେ ମିତା ଗଦି ଉପରେ କଚାଡ଼ି ହୋଇ ପଡ଼ିଥାଆନ୍ତା ।

ମୋ କାମ ସରିଲା । ଟିକିଏ ଖୋଲା ପବନ ପାଇଁ ମୁଁ ୱାର୍ଡ଼ ବାହାରକୁ ବାହାରି ଆସିଲି । ତା' ଛଡ଼ା ସ୍ତ୍ରୀଲୋକମାନଙ୍କର ୱାର୍ଡ଼ ଭିତରେ ଜଣେ ପୁରୁଷ ଲୋକର ଉପସ୍ଥିତି କିପରି ଅସ୍ୱସ୍ତିକର ମନେହୁଏ ।

କ୍ଷୀଣ କଣ୍ଠରେ ମିତା ପ୍ରତିବାଦ କଲା—ତମେ କୁଆଡ଼େ ଯାଅନାହିଁ । ଡାକ୍ତର ଆସନ୍ତୁ ନ ଆସନ୍ତୁ । ମୁଁ କହିଲି, ନାଇଁ, ମୁଁ ଏଇ ବାହାରେ ଠିଆ ହେଇଚି ।

ମୁଁ ଠିଆ ହୋଇଛି ଆଲୋକିତ ଡାକ୍ତରଖାନା କରିଡ଼ର୍‌ରେ, କିନ୍ତୁ ମୋ ଆଖି ଆଗରେ ଅନ୍ଧାର ଠିଆ ହେଇ ରହିଛି ଗୋଟାଏ ଅତିକାୟ ଦୁର୍ଭେଦ୍ୟ କାନ୍ଥ ପରି । କୋ' ପଟୁ ଆସିବେ ଡକ୍ଟର କାମେଶ୍ୱରୀ ଦେବୀ—ଡାହାଣପଟୁ ନା ବାଁ ପଟୁ । ଦୁଇପଟେ ସମାନ ସୂଚୀଭେଦ୍ୟ ଅନ୍ଧାରର କାନ୍ଥ । ପକେଟ୍‌ରେ ହାତ ମାରିଲି । ନା ଅଛି ଡିଆସିଲି ନା ଅଛି ଚାର୍‌ମିନାର୍ ସିଗାରେଟ୍ ପ୍ୟାକେଟ୍ । ନଥାଉ । କାମେଶ୍ୱରୀ ଦେବୀ ଆସିଗଲେ ମୁଁ ଯିବି ସିଗାରେଟ୍ ଆଣିବାକୁ କୋଉଠିକି ।

ଏ ରିକ୍ସା; କୋଉଠି ସିଗାରେଟ୍ ଦୋକାନ ଖୋଲା ଅଛି ଦେଖିଲୁ ?

ନାଇଁ ବାବୁ, କୋଉଠି ଖୋଲା ନାହିଁ, ମୋ' ପାଖରେ ବିଡ଼ି ଅଛି ।

ଦେ' ।

ମୁଁ ବିଡ଼ିରେ ନିଆଁ ଲଗେଇ ଚାହିଁ ରହିଛି ସେଇ ଅନ୍ଧାରର କାନ୍ଥକୁ, ଅଥଚ ଗୋଟାଏ ଅତିକାୟ ଅଜଗର ସାପ ପରି ମସୃଣ ଓ ହିଂସ୍ର ରାତ୍ରି ଅଗ୍ରସର ହେଇ ଚାଲିଛି, ମନ୍ଥର ଗତିରେ ହେଲେ ମଧ୍ୟ ନିଶ୍ଚିତ ଭାବରେ । କିନ୍ତୁ ଡକ୍ଟର କାମେଶ୍ୱରୀ ଦେବୀ କାହାନ୍ତି ?

ବିଡ଼ିଟା ଲିଭି ଗଲାଣି ।

ଏ ରିକ୍ସା, ଆଉ ଟିକିଏ ଡିଆସିଲି ଦେ' ।

ଠିକ୍ ଏଇ ସମୟରେ କରିଡର୍‌ରେ ମୋ' ଆଡ଼କୁ ଅଗ୍ରସର ହେଉଥିଲା ଏକ ଶୋଭାଯାତ୍ରା, ଯାହାର ମଧ୍ୟମଣି ଡକ୍ଟର କାମେଶ୍ୱରୀ ଦେବୀ ଅନୁଗାମୀ ସେଇ ନର୍ସ ଓ ଦୁଇଜଣ ବେହେରା ।

ମୁଁ ବିଡ଼ିଟାକୁ ଫୋପାଡ଼ି ଦେଇ ପ୍ରାୟ ଦୌଡ଼ିଲା ପରି ଗଲି ୱାର୍ଡ଼ ଭିତରକୁ । ମିତା ! ଲେଡ଼ି ଡକ୍ଟର ଆସିଗଲେ । ମିତାର ଆଖି ବନ୍ଦ ଥିଲା । ସେ ଶୁଣିଲାକି ନାହିଁ

କେଜାଣି, କିଛି ଜବାବ୍ ଦେଲା ନାହିଁ । ଯେପରି ସେଥିରେ ତା'ର କିଛି ଯାଏ ଆସେ ନାହିଁ ।

ସେମାନେ ସମସ୍ତେ ମୋ' ଆଡ଼କୁ ଦୃକ୍‌ପାତ ନକରି ଗଲେ ମିତା ପାଖକୁ । ମିତା ଉପରେ କେବଳ ଆଖି ପକେଇ ଦେଇ କାମେଶ୍ୱରୀ ଦେବୀ କହିଲେ, ଲେବର ରୁମ୍ ରେଡ଼ି କର । ଷ୍ଟ୍ରେଚର୍‌ରେ ଦୁଇଜଣ ବେହେରା ମିତାକୁ ଲଦି ନେଇ ଚାଲିଲେ ଲେବର୍ ରୁମ୍ ଆଡ଼କୁ । ମୁଁ ସେମାନଙ୍କ ପଛେ ପଛେ ଗଲି ।

ଲେବର୍ ରୁମ୍‌ର ଲୁହା ଦସ୍ତା ଟେବୁଲ୍ ଉପରେ ମିତା ଶୋଇଛି । (ଓଃ ! ଏ ଶୀତରେ ସେ' ଲୁହା ଦସ୍ତା ଟେବୁଲ୍ ଓ ତା' ଉପରେ ରବର୍ କ୍ଲଥ୍ କି ହିମ କାକର ହେଇ ନଥିବ !) ମିତା ଆଡ଼କୁ ମୁହଁ କରି ଓ ମୋ' ଆଡ଼କୁ ପଛ କରି ଠିଆ ହେଇଛନ୍ତି କାମେଶ୍ୱରୀ ଦେବୀ ଆଉ ସେଇ ସିଷ୍ଟର ।

କାମେଶ୍ୱରୀ ଦେବୀ; ମିତା ଉପରୁ ଚାଦର ଓ ପିନ୍ଧା ଲୁଗା କାଢ଼ି ଦେଇ ଗୋଡ଼ ଦୁଇଟାକୁ ଦୁଇପଟକୁ ଓଟାରି ନେଇ କ'ଣ ପରୀକ୍ଷା କରିସାରି ସିଷ୍ଟରକୁ କହିଲେ, ଅଲ୍‌ରେଡ଼ି ଥ୍ରୀ ଫିଙ୍ଗର୍ ଡାଏଲେସନ୍ । ଏଟା କ'ଣ ପ୍ରାଇମ୍ ପାରା ? କିଏ ଆଗରୁ ଦେଖିଥିଲା ପେସେଣ୍ଟକୁ ?

ସିଷ୍ଟର୍‌ଟି ମୋ' ପାଖକୁ ଦୌଡ଼ି ଆସିଲା । ମୁଁ ଚଟ୍‌କିନା ପର୍ଦ୍ଦାଟାକୁ ଛାଡ଼ି ଦେଇ ଦୂରକୁ ଘୁଞ୍ଚି ଆସିଲି ।

ସିଷ୍ଟର୍ ପଚାରିଲା, "ପ୍ରଥମ ଗର୍ଭ ?"

ମୁଁ କହିଲି, "ହଁ" ।

ସିଷ୍ଟର୍ ପଚାରିଲା, "ଆଗରୁ କିଏ ଦେଖିଥିଲେ ପେସେଣ୍ଟକୁ ?"

ମୁଁ କହିଲି, "ମହାଶ୍ୱେତା ଦେଇ ।"

ସିଷ୍ଟର୍‌ଟି ଘର ଭିତରକୁ ପଶିଗଲା ଓ ତା'ପରେ କ'ଣ କଥାବାର୍ତ୍ତା ହେଲା ମୁଁ ଶୁଣି ନାହିଁ । ହଠାତ୍ ଦେଖିଲି; କାମେଶ୍ୱରୀ ଦେବୀ ଷ୍ଟେଥୋଟାକୁ ଦୋହୋରେଇ ଦେଇ ଗୋଟାଏ ହାତରେ ଧରି ବାହାରି ଆସୁଛନ୍ତି ଓ କହୁଛନ୍ତି, ନୋ' ନୋ' ଦ୍ୟାଟ୍ ଇଜ୍ ନଟ୍ ପସିବୁଲ୍ । ଯେତେ ଯାହା ହଉ, ଆମର ଗୋଟାଏ ପ୍ରଫେସନାଲ୍ ଏଟିକେଟ୍ ଅଛି, ମୁଁ ମହାଶ୍ୱେତାର ପେସେଣ୍ଟକୁ ହ୍ୟାଣ୍ଡଲ୍ କରିବାକୁ କିଏ ?

ମୁଁ କହିଲି, ଦେଖନ୍ତୁ ଡକ୍ଟର କାମେଶ୍ୱରୀ ଦେବୀ...

ସେ ମୋ ଆଡ଼କୁ ନ ଅନେଇ ଆଗକୁ ଆଗକୁ ଚାଲିଲେ ।

ମୁଁ କହିଲି, ମୁଁ ପେସେଣ୍ଟର ସ୍ୱାମୀ...

ସେ ତଥାପି ଆଗକୁ ଆଗକୁ ଚାଲିଲେ ।

ମୁଁ କହିଲି, ଆପଣଙ୍କର ଯାହା ଫିଜ୍...

ଡକ୍ଟର କାମେଶ୍ୱରୀ ଦେବୀ ଏଇଥର ବୁଲି ପଡ଼ିଲେ ଆହତ ନାଗିନୀ ପରି ଓ କହିଲେ, ହ୍ୱାଟ୍ ! କେତେ ଫିଜ୍ ଦେଇ ପାରିବ ? ଇମ୍ପସିବଲ୍...ଓ ସେ ଆଗକୁ ଚାଲିଲେ । ତାଙ୍କର ହାଇହିଲ୍ ଯୋତା ହସ୍‌ପିଟାଲର କରିଡ଼ର୍‌ର ବାରଣ୍ଡାରେ ପିଟି ହୋଇ ଶୁଣାଯାଉଥାଏ ଯେମିତି କେଉଁ ନିଶୂନ୍ ରାତିରେ ଗାଁ ପାଖ ମଶାଣିରେ ବସି ମନ ଖିଆଲରେ ହାଡ଼ବାଇ ହାଡ଼କୁ ହାଡ଼ରେ ପିଟି ଚାଲିଛି...ମା' ମାନେ ଡରିଯାଇ ସେମାନଙ୍କର ପିଲାମାନଙ୍କୁ ନିଜ ନିଜ ପାଖକୁ ଟାଣି ନେଉଛନ୍ତି । ଏତିକିବେଳେ ବୋଧହୁଏ ଗାଁ ଚୌକିଦାରମାନେ କାନ୍ଧରେ ନେଳୀ ବ୍ୟାଗ୍ ଝୁଲେଇ ଡାକନ୍ତି...''ବସ୍ତି ଇ...ଇ...ଇ...ଇ ଓ୍ୟାଲେ, ହୁସିଆ ଆଁ ଆ ଆର୍...ହୋ, ହ୍'' ।

ମୁଁ ତଥାପି କହିଲି, ପ୍ଲିଜ୍, ଡକ୍ଟର କାମେଶ୍ୱରୀ ଦେବୀ, ପ୍ଲିଜ୍, ଫରଗିଭ୍ ମି ! ହାଡ଼ବାଇର ହାଡ଼ରେ ହାଡ଼ ପିଟିବା ବନ୍ଦ ହେଲା ।

ଡକ୍ଟର କାମେଶ୍ୱରୀ କହିଲେ, ମୁଁ ଯାଉ ନାହିଁ, ଅପେକ୍ଷା କରୁଛି । କିନ୍ତୁ ମହାଶ୍ୱେତା ଦେଈଙ୍କୁ ଖବର ଦିଅନ୍ତୁ । ସିଏ ଆସିଲେ ଯାହା ହେବ ।

ମନେ ମନେ ଭଗବାନଙ୍କୁ ଅଶେଷ ଧନ୍ୟବାଦ ଦେଲି । ରିଏଲ୍ଲି, ଗଡ୍ ଇଜ୍ ଗ୍ରେଟ୍ । ତା'ପରେ ଦୌଡ଼ିଲି ମହାଶ୍ୱେତା ଦେଈଙ୍କ କ୍ୱାଟର୍ସ ଉଦ୍ଦେଶ୍ୟରେ । ବେଶୀ ବାଟ ନୁହଁ । ତିରିଶ୍ ଗଜ ଭିତରେ । ହଠାତ୍ ରାସ୍ତା ଉପରେ ବୁଲା କୁକୁରମାନେ ଭୁକି ଉଠିଲେ ରାତିର ନିସ୍ତବ୍‌ଧତା ବିଦୀର୍ଣ୍ଣ କରି । ମହାଶ୍ୱେତା ଦେଈଙ୍କର ଫାଟକ ଭିତରେ ପଶି ମୁଁ ଏକାଥରକେ ତାଙ୍କ ବାରଣ୍ଡାରେ । ଅଭ୍ୟସ୍ତ ଥିବା ହେତୁ ଅନ୍ଧାରରେ କଲିଂବେଲ୍ ଚିପିବା ମଧ୍ୟ ସମ୍ଭବ ହୋଇ ପାରିଲା । କେତେଥର ଆସିଛି ମିତାକୁ ଦେଖେଇବାକୁ । ଆଜି ଇଉରିନ୍ ଏକ୍‌ଜାମିନେସନ୍ ତ' କାଲିକି ପେଲ୍‌ଭିସ୍ ମେଜର୍‌ମେଣ୍ଟ । ଶେଷଥର ଆସିଥିଲି ତାଙ୍କ କହିବା ଅନୁସାରେ ପିଲାର ପୋଜିସନ୍ ଦେଖେଇବା ପାଇଁ । ସବୁଥର କହିଥିଲେ, ଠିକ୍ ଅଛି । ଇଉରିନ୍‌ରେ ଆଲ୍‌ବୁମେନ୍ ନାହିଁ । ଟକ୍‌ସିମିଆର ମଧ୍ୟ କିଛି ସିମ୍ପଟମ୍‌ସ୍ ନାହିଁ । ଶେଷଥର ମଧ୍ୟ କହିଲେ, ପିଲାର ପୋଜିସନ୍ ଠିକ୍ ଅଛି, ବ୍ୟସ୍ତ ହବାର କିଛି କାରଣ ନାହିଁ ।

ପଚାରିଥିଲି, ମ୍ୟାଡ଼ାମ୍, କେତେ ଦେବି ?

କହିଥିଲେ, ଆପଣ ଏତେଥର ଆଣିଲେଣି ଦେଖେଇବାକୁ । ଏଥରକ ଷୋଳଟଙ୍କା ଦେଇଯାନ୍ତୁ ।

ସେଇ ମୁଁ ଇନ୍ଦ୍ରମଣି ପୁଣି ଅନ୍ଧାରରେ ମହାଶ୍ୱେତା ଦେଈଙ୍କର କଲିଂବେଲ ଦେଇ ପାରିବି ନାହିଁ !

ହଠାତ୍ ବାରଣ୍ଡାଟା ଆଲୁଅ ହୋଇଗଲା ଓ ତା'ପରେ ପରେ କବାଟ ଖୋଲି ମହାଶ୍ୱେତା ଦେଈ ବାହାରି ଆସିଲେ ଗୋଟାଏ ଲାଲ ସିଲ୍କର ନାଇଟ୍ ଗାଉନ୍ ପିନ୍ଧି ।

: କିଏ ଆପଣ ? କ'ଣ ଦରକାର ଏତେ ରାତିରେ ?

: ମୁଁ ଇନ୍ଦ୍ରମଣି ମ୍ୟାଡ଼ାମ୍, ମୋ' ସ୍ତ୍ରୀ ଲେବର୍ ରୁମ୍‌ରେ...

: ମୁଁ କ'ଣ କରିବି, ଇମର୍‌ଜେନ୍‌ସି ଓ୍ୱାର୍ଡ଼ରେ ଡାକ୍ତର ଥିବେ...

: ମ୍ୟାଡ଼ାମ୍, କାମେଶ୍ୱରୀ ଦେବୀ କହିଲେ ଆପଣ ନଗଲେ ସେ ପେସେଣ୍ଟକୁ...

: କ'ଣ ଯେ' ଆପଣ କୁହନ୍ତି...ମୁଁ କ'ଣ ସ୍ପେଶାଲିଷ୍ଟ ଯେ...

: ନାହିଁ, ମ୍ୟାଡ଼ାମ୍...ଆପଣଙ୍କ ପେସେଣ୍ଟ, ଆପଣ ପ୍ରଥମେ ନ ଦେଖିଲେ ସେ ଦେଖିବେ ନାହିଁ ।

: ମୋ ପେସେଣ୍ଟ—ମୋ ପେସେଣ୍ଟ କିଏ...

ମୁଁ ଇନ୍ଦ୍ରମଣି ଆଜ୍ଞା—ସେଇ ଯେ ଲାଷ୍ଟ ଟାଇମ୍ ପିଲାର ପୋଜିସନ୍ ଦେଖେଇବାକୁ ଆଣିଥିଲି, ଆପଣ ଦୟାକରି ମାତ୍ର ଷୋଳ ଟଙ୍କା ନେଲେ...

ଖାଲି ପ୍ରଶ୍ନବାଚକ ଆଖିରେ ଅନେଇ ରହିଲେ ମ୍ୟାଡ଼ାମ ମହାଶ୍ୱେତା ଦେଈ ।

ମୁଁ କହିଲି : ଆପଣ ଦୟାକରି ଆସନ୍ତୁ, ପେସେଣ୍ଟକୁ ଦେଖିଲେ ଆପଣଙ୍କର ସବୁ ମନେ ପଡ଼ିଯିବ ।

ମହାଶ୍ୱେତା ଦେଈ ତାଙ୍କର ଦୁଇହାତ ଦେଇ କାନ ପାଖରୁ ବାଳ ସବୁ ପଛକୁ ଛାଟି ଦେଇସାରି କାନ ଉପରେ ପାପୁଲିର ଚାପ ଦେଇ କହିଲେ, ଆଚ୍ଛା ହଉ, ଚାଲ, ମୁଁ ଯାଉଛି ।

ଅଳ୍ପ ସମୟ ପରେ ମହାଶ୍ୱେତା ଦେଈ ଶାଢ଼ୀ ଇତ୍ୟାଦି ପିନ୍ଧିନେଇ ପଦାକୁ ଆସିଲେ ଓ କହିଲେ, ଚାଲ ! ତାଙ୍କ ସହିତ ଚାଲୁ ଚାଲୁ ମୁଁ ଜାଣି ପାରିଲି ଯେ ଏଇ ଅଳ୍ପ ସମୟ ଭିତରେ ମଧ ସାମାନ୍ୟ ପ୍ରସାଧନ ସାମଗ୍ରୀ ବ୍ୟବହାର କରିବାରେ କାର୍ପଣ୍ୟ କରି ନାହାନ୍ତି ସେ ।

ଖୁବ୍ ଶୀଘ୍ର ମୁଁ ଆଉ ମହାଶ୍ୱେତା ଦେଈ ମିତା ପାଖରେ ପହଞ୍ଚିଗଲୁ । ଠିକ୍ ସମୟ ଭିତରେ ମଧ ଆସିଲେ ଡକ୍ଟର କାମେଶ୍ୱରୀ ଦେବୀ । ଏଥର ଆଉ କିଛି ପ୍ରୋବ୍ଲେମ୍ ନାହିଁ । ପୁଣି ସେହି ପୋଜିସନ୍ । ମିତାକୁ ଫେସ୍ କରି ମହାଶ୍ୱେତା ଦେଈ, ଡକ୍ଟର

କାମେଶ୍ୱରୀ ଦେବୀ ଓ ସେଇ ସିଷ୍ଟର୍ । ମୁଁ ପର୍ଦ୍ଦାଫାଙ୍କ କରି ମୁହଁ ଗଳେଇଛି ଦୁଆର ବାହାରୁ ।

ମହାଶ୍ୱେତା ଦେଇ : ସେ' ମୋର ପେସେଣ୍ଟ, ମାନେ ମୁଁ ପ୍ରାଇଭେଟ୍‌ଲି ଯାଙ୍କୁ ଦେଖିଛି ନାଓ ଆଣ୍ଡ ଦେନ୍ ।

କାମେଶ୍ୱରୀ : ବଟ୍ ସି ଇଜ୍ ଆନେମିକ୍ । (କାମେଶ୍ୱରୀ ବୁଢ଼ା ଆଙ୍ଗୁଠିରେ ସମ୍ଭବତଃ ମିତାର ଆଖି ତଳପତା ତଳକୁ ଓଟାରି ଧରିଛନ୍ତି) ।

ମହାଶ୍ୱେତା : ଆଜିକାଲି ପେସେଣ୍ଟମାନେ କ'ଣ ଇନ୍‌ଷ୍ଟ୍ରକସନ୍ ଠିକ୍ ଠିକ୍ ନିଅନ୍ତି, ନା ମାନନ୍ତି ।

କାମେଶ୍ୱରୀ : ଦ୍ୟାଟ୍ ଆପାର୍ଟ୍—ମୋର ମନେ ହଉଛି, ଦି ବେବି ଇଜ୍ ଇନ୍ ଏ ଟ୍ରାନ୍‌ସ୍‌ଭର୍ସ୍ ଲାଇପୋଜିସନ୍ ।

ମହାଶ୍ୱେତା : ରିଏଲି । (ମହାଶ୍ୱେତା ମିତାର ପେଟ ଉପରେ ସାମାନ୍ୟ ଚାପ ଦେଲେ ।)

କାମେଶ୍ୱରୀ : (ପୁଣି ଥରେ ନଇଁ ପଡ଼ି) ବାଇ ନାଓ, ଇଟ୍‌ସ ଫୋର୍ ଆଣ୍ଡ୍ ହାଫ୍ ଫିଙ୍ଗର୍ସ ଡାଏଲେସନ୍ !!!

ମିତା ଉପରୁ ଆଖି ଫେରେଇ ଆଣି ଡଃ ମହାଶ୍ୱେତା, କାମେଶ୍ୱରୀ ଓ ସିଷ୍ଟର ଏକାଠି କ'ଣ କଥାବାର୍ତ୍ତା ହେଲେ । ତା'ପରେ ସେମାନେ ଏକତ୍ର ଲେବର୍ ରୁମ୍‌ରୁ ବାହରି ଆସିବାର ପ୍ରୟାସ କଲେ । ମୁଁ ପର୍ଦ୍ଦା ଛାଡ଼ିଦେଇ ଦୂରକୁ ଘୁଞ୍ଚି ଆସିଲି । ସେମାନେ ଚାଲିଯାଉଥିବା ବେଳେ କେବଳ ମହାଶ୍ୱେତା ଦେଇ କହିଲେ, ପିଲାର ଟ୍ରାନ୍‌ସଭର୍ସ ଲାଇ ପୋଜିସନ । ଆପଣ ଶୀଘ୍ର ଡକ୍ଟର ମହାଲିକ୍, ଗାଇନିକ୍ ସ୍ପେଶାଲିଷ୍ଟଙ୍କୁ ଆଣନ୍ତୁ ।

ଡକ୍ଟର ମହାଲିକ୍ କୋଉଠି ରୁହନ୍ତି ?

ମୋ' କ୍ୱାଟର୍ସର ନେକ୍‌ସ୍‌ଟ କ୍ୱାଟର୍ସ ।

ସେମାନେ ଚାଲିଗଲେ ଓ ଗଲାବେଳେ ସିଷ୍ଟରକୁ କହିଗଲେ ଅନେସ୍ଥେଶିଷ୍ଟଙ୍କୁ ରେଡ଼ି ରହିବାକୁ କହିବା ପାଇଁ ।

କିଛିବାଟ ବଳେଇଦେଇ ସିଷ୍ଟରଟି ଫେରି ଆସିଲା ।

ମୁଁ ପଚାରିଲି, ସିଷ୍ଟର ପ୍ଲିଜ୍, ଟ୍ରାନ୍‌ସଭର୍ସ ଲାଇ ପୋଜିସନ୍‌ଟା କ'ଣ ?

ସିଷ୍ଟର କହିଲା, ଆପଣ ସେଥିରେ ମୁଣ୍ଡ ପୂରଉଛନ୍ତି କାହିଁକି ? ଆପଣ ବୁଝି ପାରିବେ ନାହିଁ ।

ମୁଁ କହିଲି, ସିଷ୍ଟର ପ୍ଲିଜ୍...ପ୍ଲିଜ୍ ।

ସିଷ୍ଟର କହିଲା, ଆପଣ ସେଥିରେ ମୁଣ୍ଡ ପୂରଉଛନ୍ତି କାହିଁକି ? ଆପଣ ବୁଝି ପାରିବେ ନାହିଁ ।

ମୁଁ କହିଲି, ସିଷ୍ଟର ପ୍ଲିଜ୍...ପ୍ଲିଜ୍ ।

ସିଷ୍ଟର କହିଲା, ପିଲାଟା ହେଡ୍ ଫାଷ୍ଟ ଅର୍ଥାତ୍ ଉତ୍ତର-ଦକ୍ଷିଣ ହେଇ ରହିବା କଥା । କିନ୍ତୁ ଆପଣଙ୍କ ପିଲା ରହିଛି ପୂର୍ବ-ପଶ୍ଚିମ ହେଇ । ଆପଣ ସମୟ ନଷ୍ଟ କରନ୍ତୁ ନାହିଁ । ଶୀଘ୍ର ଯାଆନ୍ତୁ ଡକ୍ଟର ମହାଲିକ୍‌କୁ ଡାକି ଆଣିବାକୁ ।

ମୁଁ କହିଲି, ମୋ କଥାରେ ସେ ଆସିବେ କାହିଁକି ? ସିଷ୍ଟର୍ କହିଲା : ଆସିବେ । ବେହେରାକୁ ଫିଜ୍ ପଚାରି ଦେଇଦେବେ—ଆସିବେ । ତାଙ୍କର କାମ ଆସିବା ।

ମୁଁ କହିଲି : ଆପଣ ରିକ୍ୟୁଜିସନ୍ କରୁ ନାହାନ୍ତି...

ସିଷ୍ଟର କହିଲା : ସି.ଡି.ଏମ୍.ଓ.କୁ ଉଠେଇ ରିକ୍ୟୁଜିସନ କରି ଆଣିଲା ବେଳକୁ...

ମୁଁ କହିଲି : ଆଣିଲା ବେଳକୁ...?

ସିଷ୍ଟର ମୋ କଥାର ଜବାବ ନଦେଇ ବେହେରାମାନଙ୍କୁ ବରାଦ୍ କଲା ଅପରେସନ୍ ଟେବୁଲ୍ ରେଡ଼ି କରିବାକୁ, ଆନେସ୍ଥେସିଷ୍ଟ୍‌କୁ ଖବର ଦବାକୁ ଓ ଗୋଟାଏ ଅକ୍‌ସିଜେନ୍ ସିଲିଣ୍ଡର ଗଡ଼େଇ ଆଣି ରୁମ୍ ଭିତରେ ରଖିବାକୁ ।

ମୁଁ ପ୍ରାଣମୂର୍ଚ୍ଛା ପୁଣି ଦୌଡ଼ଇଲି ଡକ୍ଟର ମହାଲିକ୍‌ଙ୍କ ଘରକୁ । ରାସ୍ତା କଡ଼ର କୁକୁରମାନେ ପୁଣି ଚିତ୍କାର କଲେ ଓ ଗୋଟାଏ ଦୁଇଟା ମତେ ପାଗଳ ଭାବି ମୋ ପାଖକୁ ଲାଗି ଆସିଲେ । ମୁଁ କହିଲି, ଭାଗ୍ ।

କିନ୍ତୁ ମୁଁ ଡକ୍ଟର ମହାଲିକଙ୍କର କଲିଂବେଲ୍ ନପାଇ, ବେହେରା, ବେହେରା ବୋଲି ଚିତ୍କାର କଲି । ମୁଁ ଏତେ ଜୋର୍‌ରେ ଚିତ୍କାର କରୁଥିଲି ଯେ’ ଖୁବ୍ ଶୀଘ୍ର ମହାଲିକ୍ ନିଜେ ନାଇଟ୍ ଗାଉନ୍ ପିନ୍ଧି ବାହାରି ଆସି ପଚାରିଲେ, କଥା କ’ଣ ?

କହିଲି, ମୁଁ ବଡ଼ ବିପଦରେ ପଡ଼ିଛି ଆଜ୍ଞା, ମୋ ସ୍ତ୍ରୀର ଡେଲିଭରୀ ଆପଣ ନହେଲେ ହୋଇ ପାରିବ ନାହିଁ । ଡକ୍ଟର ମହାଶ୍ୱେତା ଦେବୀ ଓ କାମେଶ୍ୱରୀ ଦେବୀ, ଦୁହେଁ କହିଛନ୍ତି ଆପଣଙ୍କୁ ଡାକିବାକୁ । ଆପଣ ଆସନ୍ତୁ ।

ଡକ୍ଟର ମହାଲିକ୍ ଅତ୍ୟନ୍ତ ଅମାୟିକ ଲୋକ । ସେ କାଳ ବିଳମ୍ବ ନକରି ଘର ଭିତରକୁ ପଶିଲେ ପ୍ରସ୍ତୁତ ହବା ପାଇଁ । ସେ ବାହାରକୁ ଆସିବାର କିଛି ସମୟ ପରେ

ଯେଉଁ ଲୋକଟି ଖଣ୍ଡେ ମାଟିଆ ପୁଲିସ୍ ସ୍ୱେଟର୍ ପିନ୍ଧି, ନିଦ ମଳ ମଳ ଆଖିରେ ବାହାରକୁ ଆସିଥିଲା ମୁଁ ତାଙ୍କୁ ପଚାରିଲି, ବେହେରା ବାବୁ, ଡାକ୍ତରବାବୁଙ୍କର ଫିସ୍ କେତେ ?

ସେ କହିଲେ, ଦେଢ଼ଶହ ଟଙ୍କା ।

ମୁଁ ମୋ ପକେଟରୁ ଟଙ୍କା କାଢ଼ି ଗଣିଲି । ଦେଢ଼ଶହ ଟଙ୍କା ବାଦ୍ ତଥାପି ମୋ ପାଖରେ ବଳିଲା ଚଉଦ ପନ୍ଦର ଟଙ୍କାର ମଇଳା ଟଙ୍କାକିଆ ଆଉ ଦୁଇଟଙ୍କିଆ ନୋଟ୍ ସବୁ । ବେହେରାଙ୍କୁ ଟଙ୍କା ଦେଲି ଓ ସେ ଭିତରକୁ ଗଲା ।

ଖୁବ୍ ଅଳ୍ପ ସମୟ ପରେ ଡକ୍ଟର ମହାନ୍ତିକ ପଦାକୁ ଆସିଲେ ଓ ବେଶ୍ ଶୀଘ୍ର ହସ୍‌ପିଟାଲ ଆଡ଼କୁ ଚାଲିବାକୁ ଆରମ୍ଭ କଲେ । ମୁଁ ତାଙ୍କ ପଛେ ପଛେ ଆସୁ ଆସୁ ଭାବୁଥିଲି, କେଉଁଠି ନା କେଉଁଠି ଭଗବାନ୍ ମନୁଷ୍ୟକୁ ସାହାଯ୍ୟ କରନ୍ତି । ଆମେ ହସ୍‌ପିଟାଲ ଗେଟ୍ କ୍ରସ୍ କଲୁ ଓ ସେତେବେଳକୁ ହସ୍‌ପିଟାଲର କରିଡର୍‌ରେ ଅନେକ ବ୍ୟସ୍ତତା ବଢ଼ି ଯାଇଥାଏ । ଡକ୍ଟର ମହାଶ୍ୱେତା ଓ କାମେଶ୍ୱରୀ, ସିଷ୍ଟର ଓ ବେହେରାମାନେ ପ୍ରାୟ କରିଡରରେ ଦୌଡ଼ାଦୌଡ଼ି ଆରମ୍ଭ କରି ଦେଇଥାଆନ୍ତି । ହବନାହିଁ ! ଆସୁଛନ୍ତି ଡକ୍ଟର ମହାଲିକ୍; ଗାଇନିକ୍ ସ୍ପେଶାଲିଷ୍ଟ ଯେ !

ଓ.ଟି.କୁ ପଶିବା ପୂର୍ବରୁ ଅଳ୍ପ ସମୟ ପାଇଁ ବାରଣ୍ଡାରେ ଡକ୍ଟର ମହାଲିକ୍, ମହାଶ୍ୱେତା ଓ କାମେଶ୍ୱରୀ ଏକାଠି ଠିଆ ହୋଇ କ'ଣ ସବୁ ପରାମର୍ଶ କଲେ । ସେମାନଙ୍କ ଭାବଭଙ୍ଗୀ ଦେଖି ମନେ ହେଉଥାଏ, ମିକି ମାଉସ୍ ଛବିରେ ତିନିଜଣ କାର୍ଟୁନ ମଣିଷ ତରତର ହୋଇ କଥାବାର୍ତ୍ତା କରିଚାଲିଛନ୍ତି ।

ଇତି ମଧ୍ୟରେ ଅକ୍‌ସିଜେନ୍ ସିଲିଣ୍ଡର, ସାଲାଇନ୍ ଷ୍ଟାଣ୍ଡ ସବୁ ଧୀରେ ଧୀରେ ଓ.ଟି. ଭିତରକୁ ଗଡ଼ି ଗଡ଼ି ଚାଲି ଗଲେଣି ।

ସେମାନଙ୍କର କଥାବାର୍ତ୍ତା ମୁଁ ପୂରାପୂରି ଶୁଣି ପାରୁ ନଥାଏ, ତଥାପି ସେମାନଙ୍କର ଉଦ୍‌ବେଗ ହେତୁ, ଟ୍ରାନସଭର୍ସ ଲାଇ, ଫୋଏଟାଲ ଡିସଟ୍ରେସ, ଡିପ୍ ଟ୍ରାନସଭର୍ସ ଆରେଷ୍ଟ ଅଫ୍ ହେଡ୍ ଓ ଆହୁରି କିଛି ଶବ୍ଦ ଯାହା ବାହାରକୁ ଛିଟିକି ଆସୁଥାଏ, ତା'ର ବିନ୍ଦୁ ବିସର୍ଗ ମୋ ପକ୍ଷରେ ବୁଝିବା ସମ୍ଭବ ନୁହେଁ ।

ଗୋଟାଏ ସ୍କୁଟର ଆସି ପହଞ୍ଚିଲା ଓ ଜଣେ ବାବୁ ତରତରରେ ଓହ୍ଲେଇ ପଡ଼ିଲେ । ମୁଁ ବେହେରାକୁ ଇସାରା କରି ପଚାରିଲି, ଏ ବାବୁ କିଏ ? ବେହେରା କହିଲା, ଆନେସ୍ଥେସିଷ୍ଟ ଦତ୍ତବାବୁ ।

ଆସିବେ ନାହିଁ ସମସ୍ତେ ଆସିବେ । ଗୋଟି ଗୋଟି କରି ଆସିବେ । ଖୋଦ୍ ଡାକ୍ତର ମହାଲିକ୍ ଅପରେସନ କରୁଛନ୍ତି, ଆସିବେ ନାହିଁ ?

ତା'ପରେ ସମସ୍ତେ ଏକା ସାଙ୍ଗରେ ପଶିଗଲେ ଓ.ଟି. ଭିତରକୁ । ମୋ'ର ଏଠି ବି ସେଇ ଏକା କାମ । କାଚ ଝରକାରେ ନାକ ଚିପିରଖି ଭିତରକୁ ଅନେଇ ରହିବା । ଭିତରେ ପ୍ରଚୁର ଆଲୋକ ସତ୍ୱେ ମଧ ସ୍ପଷ୍ଟ ଦେଖି ହଉ ନାହିଁ ସବୁ, କାରଣ କାଚ ଝରକା ଆରପଟେ ଲାଗିଛି ସରୁ ତାର ଜାଲି । ତେବେ ଏତିକି ବୁଝା ପଡୁଛି, ମିତା ଶୋଇଚି ଟେବୁଲ୍ ଉପରେ; ଡକ୍ଟର ମହାଲିକ୍ ହାତରେ ଗ୍ଲୋଭସ ପିନ୍ଧୁଛନ୍ତି, ସିଷ୍ଟର ଗୋଟାଏ ଟ୍ରେ ଟେକି ଧରିଛନ୍ତି ଡାକ୍ତରଙ୍କ ଡାହାଣ ହାତ ପାଖରେ, ମୁଣ୍ଡ ପାଖରେଠିଆ ହୋଇଛନ୍ତି ଆନେସ୍ଥେସିଷ୍ଟ ଦତ୍ତ ଓ ଜଣେ ବେହେରା ଗୋଟାଏ ଗୋଲ ଷ୍ଟେନଲେସ ଷ୍ଟିଲ୍ ବାକସ ଭିତରୁ ଗୋଟାଏ ଲମ୍ବା କଇଁଚି ଦେଇ କ'ଣ ସବୁ କହୁଚି ।

କିନ୍ତୁ ଏସବୁ ଆଉ ଦେଖି ହେଲା ନାହିଁ । ମୁହୂର୍ତ୍ତକ ଭିତରେ ସମସ୍ତେ ଏକାପରି ହେଇଗଲେ । ଦିହରେ ଆପ୍ରନ, ମୁଣ୍ଡରେ ଧଳା ଧଳା କନା ଟୋପି ଓ ନାକ ଦଣ୍ଡି ପର୍ଯ୍ୟନ୍ତ ଧଳା କନାର ପଟି । ଖାଲି ଜୁଳୁଜୁଳୁ ହେଇ ଦେଖା ଯାଉଛି ଦୋ'ଟି କରି ଆଖି । ଏକ୍‌ସପ୍ରେସନ୍ ଠିକ୍ ବୁଝି ହଉ ନାହିଁ ।

ସମସ୍ତେ ଏକାଠି କାମ କରୁଛନ୍ତି । ଆନେସ୍ଥେସିଷ୍ଟ ଗୋଟାଏ ଷ୍ଟପ୍‌ୱାଚ୍‌କୁ ଅନେଇ ରହିଛନ୍ତି । ଡାକ୍ତର ମହାଲିକ୍‌ଙ୍କର ହାତ ଚାଲିଛି ଅନବରତ ଇଞ୍ଜିନ୍‌ର ପିଷ୍ଟନ ପରି । ନର୍ସଟି କେତେବେଳେ ଟିକିଏ ଘୁଞ୍ଚି ଆସୁଚି ତ କେତେବେଳେ ପାଖକୁ ଲାଗି ଆସୁଚି ଓ ଡକ୍ଟର ମହାଶ୍ୱେତା ଓ କାମେଶ୍ୱରୀ, ଡକ୍ଟର ମହାଲିକଙ୍କର ବିପରୀତ ପାର୍ଶ୍ୱରୁ ପେସେଣ୍ଟ ଉପରେ ନଇଁ ପଡ଼ିଛନ୍ତି, ମଝିରେ ମଝିରେ ହାତରେ କିଛି ଧରୁଛନ୍ତି ଓ ପୁଣି ଛାଡ଼ି ଦେଉଛନ୍ତି । ବାହାରକୁ ଟିକିଏ ହେଲେ ଶବ୍ଦ ଶୁଣାଯାଉ ନାହିଁ ।

କେତେ ମିନିଟ୍ କି କେତେ ଘଣ୍ଟା କି କେତେ ସପ୍ତାହ ଯା ଭିତରେ ଚାଲିଗଲାଣି ସେ କଥା ଜାଣିବାର ମୋର ଉପାୟ ନଥିଲା ।

ହଠାତ୍ ମିତା ଚାରିପଟେ ଘେରି ରହିଥିବା ବୃତ୍ତଟି ସାମାନ୍ୟ ପଛକୁ ଘୁଞ୍ଚି ଆସି ଢ଼ୁଗୁଳା ହେଇଗଲା ପରି ମନେହେଲା ଓ ମୁଁ ଦେଖି ପାରୁଥିଲି ଯେ ସିଷ୍ଟର ଗୋଟିଏ ଛୋଟ ଶିଶୁର ଗୋଡ଼ ଧରି ମୁଣ୍ଡକୁ ତଳକୁ କରି ଝୁଲଉ ଥିଲା । ଆଃ ! ଆଟ୍ ଲାଷ୍ଟ !

ଠିକ୍ ଏଇ ସମୟରେ ମହାଶ୍ୱେତା ଦେଇ ଘର ଭିତରୁ ଝଡ଼ ପରି ଆସି କବାଟ ମେଲା କରିଦେଲେ ଓ କହିଲେ : କଂଗ୍ରାଚୁଲେସନ, ପୁଅ ହୋଇଛି, କିନ୍ତୁ ଆପଣ ଶୀଘ୍ର ଯାଆନ୍ତୁ ଇମରଜେନ୍‌ସିକୁ ବ୍ଲଡ୍ ଆଣିବେ—ମନେ ରଖନ୍ତୁ 'ଏ' ଗ୍ରୁପ୍ । ମୁଁ ମହାଶ୍ୱେତା ଦେଇଙ୍କ କଥା ଅଧା ଶୁଣୁଥିଲି ଓ ଅଧା ଶୁଣୁଥିଲି ଗୋଟିଏ ଶିଶୁର ପ୍ରଥମ କ୍ରନ୍ଦନ, ଜୀବନ ଆରମ୍ଭ କରିବାର ପ୍ରଥମ ଇସ୍ତାହାର ।

ମୁଁ ଇମର୍ଜେନ୍‌ସି ଆଡ଼କୁ ଯନ୍ତ୍ରବତ୍ ଚାଲିବାକୁ ଆରମ୍ଭ କଲି । ମତେ କ୍ରସ୍ କରିବାକୁ ହବ ଦୁଇଟା ଲମ୍ୱା ଲମ୍ୱା କରିଡ଼ର୍ ଓ ଏକ ତୃତୀୟ କରିଡ଼ର୍ ଯାହା ଅପେକ୍ଷାକୃତ କମ୍ ଲମ୍ୱା ।

ଭାବୁଥିଲି, ଏଇ ତା'ହେଲେ ପୃଥିବୀର ପବନ ନେଲୁ ତୁ ତୋର ଫୁସ୍‌ଫୁସ୍ ଭିତରକୁ ! ବାସ୍ । ମଜା ପାଇବୁ । ଠିକ୍ ମୋରି ପରି ଛବିଶ ବର୍ଷ ବୟସରେ ତୁ ଆସି ହାଜର ହବୁ ଅଗଣିବାବୁ ବଡ଼ବାବୁଙ୍କ ପାଖରେ ସେକ୍ରେଟେରୀଏଟ୍ ଦ୍ୱାରା ପୋଷି ହବା ପାଇଁ... କ'ଣ କହିଲୁ ନା ? ତାହାହେଲେ କ'ଣ ହବୁ ଶୁଣେ-କ'ଣ ? ବିପ୍ଳବୀ ଛାତ୍ରନେତା, ଅମଲା ସଂଘର ବିପ୍ଳବୀ ସେକ୍ରେଟେରୀ ? ବିରୋଧୀ ଦଳର ନେତା ? ...ଅଲ ଟଲ୍ ଟକ୍‌ସ- ମୁଁ ତତେ ଜାଣିନି, ତୁ ମୋ ପୁଅଟି, ତୁ କିଛି ହବୁ ନାହିଁ । ଖୁବ୍ ଜୋର ବି.ଏ. ପାସ୍ କରି ଏଇଠିକି ଆସି ପହଞ୍ଚିବୁ ଅଗଣିବାବୁଙ୍କ ପାଖରେ ବାଧ ପୋଷାହାତୀ ପରି...ତୁ ମୋ' ପୁଅଟି, ମୁଁ ତତେ ଜାଣିନି ? ତୁ ବେଶ ଜାଣିଚୁ... ।

କିଛି ନ ବୁଝିପାରିବା ଆଖି ନେଇ ମତେ ଇମର୍ଜେନ୍‌ସିରେ ଥିବା ଡାକ୍ତରବାବୁ ଚାହିଁ ରହିଥିଲେ । ହଁ, ଠିକ୍ କଥା...ମୁଁ କୁଆଡ଼େ ଆସିଥିଲି ? ଓ, ହଁ, ସାର୍ ଶୀଘ୍ର ବ୍ଲଡ଼ ଦିଅନ୍ତୁ; 'ଏ' ଗ୍ରୁପ୍ ମଗେଇଛନ୍ତି ଓ.ଟି.ରୁ ଡକ୍ଟର ମହାଲିକ । ସାର୍, ମୋର ଗୋଟିଏ ପୁଅ ହେଇଛି ।

ଟୋକା ଡାକ୍ତରଟି କୌଣସି ଉତ୍ତର ନ ଦେଇ ଗୋଟାଏ ଦୁଇଟା, ତିନିଟା ଡ୍ର ଯାଞ୍ଚ କରିସାରିବା ପରେ ଥୋଲାଏ ଚାବି କାଢ଼ିଲେ ଓ ମନକୁ ମନ ବିଜିବିଜେଇ ହେଲା ପରି କହିଲେ, ବ୍ଲଡ଼ ଚାର୍ଜରେ ପରୀକ୍ଷିତବାବୁ, ସେ ଯେ କୋଉଠି କ'ଣ ରଖିଛନ୍ତି... ।

ଟୋକା ଡାକ୍ତର ଜଣକ ସିଟ୍ ଛାଡ଼ି ପାଖ ରୁମ୍‌କୁ ଗଲେ । ମୁଁ ତାଙ୍କର ଅନୁସରଣ କଲି ନୀରବରେ । ଇତି ମଧ୍ୟରେ ଜଣେ ବେହେରା ଦୌଡ଼ି ଦୌଡ଼ି ଆସି ପ୍ରାୟ ଚିତ୍କାର କରି କହିଲା, ସାର୍ 'ଏ' ଗ୍ରୁପର ଗୋଟିଏ ବ୍ଲଡ଼ ଦିଅନ୍ତୁ, ଇମର୍ଜେନ୍‌ସି । ଡାକ୍ତର ସାମାନ୍ୟ ବିରକ୍ତ ହେଲେ । କହିଲେ, କ'ଣ ମୋ ପକେଟରେ ଅଛି କାଢ଼ି ଦେଇଦେବି ? ଆଗରୁ ବ୍ୟବସ୍ଥା କଲେ ନାହିଁ ।

ଡାକ୍ତରବାବୁ ଡିପ ଫ୍ରିଜ ଖୋଲିଲେ । ଠିକ୍ ଏଇ ସମୟରେ ସବୁ ଲାଇଟ୍ ହଠାତ୍ ଚାଲିଗଲା । ସମସ୍ତ ଭୁବନେଶ୍ୱର ଯେପରି ବୁଡ଼ିଗଲା ଏକ ପ୍ରାଗୈତିହାସିକ ଅନ୍ଧକାର ଭିତରେ । ଏ ଅନ୍ଧକାର ଭିତରେ ମଧ୍ୟ ଡିନୋସାର୍‌ମାନେ ସେମାନଙ୍କର ସଳିଳ ଆଶ୍ରୟ ଛାଡ଼ି ସ୍ଥଳଭାଗକୁ ଆସି ପାରୁଥାଆନ୍ତି ଆସ୍ତେ ଆସ୍ତେ ସେମାନଙ୍କର ଖାଦ୍ୟର ସନ୍ଧାନରେ ।

ମୁଁ ପ୍ରାୟ ଚିତ୍କାର କରି ଉଠିଲି, ସାର୍ ଡିଆସିଲି ଅଛି ? କାଢ଼ନ୍ତୁ ।

ଡାକ୍ତରବାବୁଙ୍କ ପକେଟ୍‌ରେ ହଠାତ୍ ଡିଆସିଲିଟା ଶବ୍ଦ କରି ଉଠିଲା । ମୁଁ ତାଙ୍କ ହାତରୁ ଡିଆସିଲି ନେଇ କାଠି ଜଳେଇଲି । ଗୋଟିଏ, ଦୁଇଟା, ତିନିଟା—ଡାକ୍ତରବାବୁ ଡିପ୍ ଫ୍ରିଜ୍‌ର ଗହ୍ୱର ଭିତରେ ଗୋଟାକୁ ଗୋଟା ବୋତଲର ଲେବେଲ୍ ଦେଖି ତାକୁ ଅନ୍ୟ ପଟକୁ ରଖିଦେଇ ନୂଆ ବୋତଲ ଏକ୍‌ଜାମିନ୍ କରୁ ଥାଆନ୍ତି—'ଏ' 'ଏ', 'ଏ', ଗ୍ରୁପ୍, ନିଜେ ନିଜେ ଉଚ୍ଚାରଣ କରି ଚାଲିଥାଆନ୍ତି ଡାକ୍ତର, ପିଲାଙ୍କ ପରି, ଯେପରି ତା ନକଲେ ସେ ଗ୍ରୁପ୍‌ଟା ଭୁଲି ଯିବାର ଆଶଙ୍କା ଅଛି ।

ଶେଷରେ ଗୋଟାଏ ବୋତଲ ଉଠେଇ ଆଣିଲେ ଡାକ୍ତରବାବୁ । ମୁଁ ପର୍ ପର୍ ଆଉ ଦୁଇଟା ଡିଆସିଲିକାଠି ଜଳେଇବା ପରେ, ସେ କନ୍‌ଫର୍ମଡ୍ ହେଲେ 'ଏ' ଗ୍ରୁପ୍‌ର ବ୍ଲଡ୍ ବୋଲି । ବୋତଲଟାକୁ ଧରି ହଠାତ୍ ବାହାରି ଆସିଲେ ଡାକ୍ତରବାବୁ ସେ ଘରୁ । ବୋତଲଟାକୁ ବାହାରେ ମୋ' ହାତରେ ଦେଇ କହିଲେ, ପଇଁତିରିଶ ଟଙ୍କା ଦିଅନ୍ତୁ । ସେଇ ଅଂଧାର ଭିତରେ ମୋର ମନେପଡ଼ିଗଲା ମୋର ପକେଟରେ ଅବଶିଷ୍ଟ ଥିବା ମଇଳା ନୋଚାକୋଚା ଚଉଦ ବା ପନ୍ଦର ଟଙ୍କାର ଟଙ୍କିକିଆ ଓ ଦୁଇଟଙ୍କିଆ ନୋଟ କଥା । ମୁଁ କ'ଣ କରିବି ? ଅଗଣିବାବୁ ଏତେବେଳେ ନାହାନ୍ତି । ନହେଲେ ମୋର କି ପଇସା ଅଭାବ ହେଇ ଥାଆନ୍ତା !

ମୋର ଉପାୟାନ୍ତର ନଥିଲା ।

ମୁଁ ପକେଟରୁ ସବୁଯାକ ନୋଟ କାଢ଼ି ଧରେଇ ଦେଲି ଡାକ୍ତରବାବୁଙ୍କ ହାତରେ ଓ କହିଲି, ଲାଇଟ ଆସୁ ଗଣି ନେବେ ଓ ତା' ପରେ ପରେ ମୁଁ ପ୍ରାୟ ଦୌଡ଼ିବାକୁ ଆରମ୍ଭ କଲି । ଅନେକ ଡେରି ହେଇ ଗଲାଣି । ମତେ ଅତିକ୍ରମ କରିବାକୁ ପଡ଼ିବ ତିନିଟା କରିଡ଼ର । ଗୋଟିଏ ଛୋଟ ଓ ଦୁଇଟା ଲମ୍ବା ।

ମୁଁ ଦୌଡ଼ିଛି ସେଇ ଅଂଧାର ଭିତରେ, କରିଡ଼ର ପରେ କରିଡ଼ର । ମୋର ଦୁଇଟା ଗୋଡ଼ ଚାଲିଛି କଇଁଚି ପରି ଓ ସେଇ କଇଁଚିରେ କାଟି ଚାଲିଛି ସମୟ ଓ ଦୂରତ୍ୱ । ମୋର ଚଟିର ଶବ୍ଦରେ ପ୍ରତିଧ୍ୱନିତ ହେଇ ଉଠୁଚି ସମୁଦାୟ ଡାକ୍ତରଖାନାର ବାୟୁମଣ୍ଡଳ । ଧପ୍ ଧପ୍ ଧପ୍ ।

ମୁଁ ଅପରେସନ ଥିଏଟର ପାଖରେ ପହଞ୍ଚିଲା ବେଳକୁ ଭଗବାନ୍‌ଙ୍କ ଆଶୀର୍ବାଦ ପରି ଆଲୁଅ ଆସି ଯାଇଥିଲା । ରିଲେ ରେସରେ ଯେପରି ଜଣେ ଦୌଡ଼ାଳି ଠାରୁ ପତାକା ନେଇ ଦୌଡ଼ିବାକୁ ଅନ୍ୟଜଣେ ପ୍ରସ୍ତୁତ ହେଇଥାଏ, ଠିକ୍ ସେହିପରି ଓ.ଟି. ଦୁଆର ମୁହଁରେ ପ୍ରସ୍ତୁତ ହେଇ ଠିଆହେଇ ରହିଥିଲେ ସିଷ୍ଟର ଓ ମୁଁ ପହଞ୍ଚିବା ମାତ୍ରେ ମୋ ଠାରୁ ବ୍ଲଡ୍ ବୋତଲଟା ଝାମ୍ପି ନେଇ ସେ ଓ.ଟି. ଭିତରେ ଅନ୍ତର୍ଦ୍ଧାନ ହୋଇଗଲେ ।

ଏବଂ ମୁଁ ଓ.ଟି. କାଚ ଝରକା ଉପରେ ନାକ ଚାପି, ଭିତରର ଜାଲି ଅତିକ୍ରମ କରି ଦେଖିବାକୁ ଚେଷ୍ଟା କଲି ।

ମୋ ପୁଅଟାକୁ କୋଉଠି ରଖିଲେ କେଜାଣି ? ପ୍ରଥମ ଥର (ଯେତେବେଳେ ଡକ୍ଟର ମହାଶ୍ୱେତା ଦେଇ ମତେ ବ୍ଲଡ଼ ପାଇଁ ପଠେଇବାକୁ କବାଟ ଖୋଲିଥିଲେ), ମୁଁ ଦେଖିଥିଲି ପିଲାଟା ଦେହରେ ଅନେକ ରକ୍ତ ଲାଗିଥିଲା । ଓଃ, ମନେ ପଡୁନାହିଁ କିଏ ଗୋଟାଏ କ'ଣ ଏଇ ରକ୍ତ ବିଷୟରେ କହିଥିବା ପରି ଲାଗୁଛି, କିଏ ତ...

ଏଥର କିନ୍ତୁ ଓ.ଟି. ଭିତରେ ଥିବା ଲୋକମାନଙ୍କ ଭିତରେ କୌଣସି କର୍ମ ଚଞ୍ଚଳତା ନାହିଁ । ସମସ୍ତେ ଯେମିତି ମିତା ଚାରିପଟେ ନିଶ୍ଚଳ ହୋଇ ଠିଆ ହେଇ ରହି ପ୍ରାର୍ଥନା କରୁଛନ୍ତି । ଖାଲି ଗୋଟିଏ ଓଲଟ ବୋତଲରୁ ଗୋଟାଏ ସରୁକାଚ ନଳୀ ଦେଇ ଲାଲ ରକ୍ତ ବୋହି ଆସୁଚି ଯାହା...ଆସ୍ତେ ଆସ୍ତେ ବୋହି ଆସୁଚି ମିତାର ମଛର ଧମନୀ ଭିତରକୁ ।

ହଁ, ହଁ, ମନେ ପଡ଼ିଲା—ରୁଷିର ଅକ୍ଟୋବର ବିପ୍ଳବ ପରେ କିଏ ଜଣେ ପଚାରିଥିଲା ଲେନିନ୍‌କୁ—ବିପ୍ଳବ ହେଲା ସତ, ଜାରଶାହୀର ବିନାଶ ହେଲା ସତ, କିନ୍ତୁ ସେଥିପାଇଁ କେତେ ଅଜସ୍ର ରକ୍ତପାତ ହେଲା ! ଲେନିନ୍ ସାମାନ୍ୟ ସ୍ମିତ ହସି କହିଲେ—ଗୋଟାଏ ଶିଶୁର ଜନ୍ମରେ କେତେ ରକ୍ତସ୍ରାବ ହୁଏ ? ଯେତେବେଳେ ଗୋଟାଏ ନୂଆ ରାଷ୍ଟ୍ର ଜନ୍ମ ନେଉଛି ସେତେବେଳେ ଯେ କିଛି ରକ୍ତପାତ ହେବ, ଏଥିରେ ଆଶ୍ଚର୍ଯ୍ୟ ହବାର କ'ଣ ଅଛି... ।

ପ୍ରାର୍ଥନା କରୁଥିବା ଲୋକମାନେ ଟିକିଏ ଦୂରକୁ ଦୂରକୁ ଘୁଞ୍ଚିଗଲେ । ଡକ୍ଟର ମହାନ୍ତିକ୍ ତାଙ୍କର ଗ୍ଳୋଭ ଖୋଲିଲେ ଓ ଅନ୍ୟମାନେ ମଧ ସେମାନଙ୍କର ଆପ୍ରନ୍ ଇତ୍ୟାଦି ଖୋଲିଲେ । ବୋଧହୁଏ ବ୍ଲଡ଼ ଟ୍ରାନସ୍‌ଫ୍ୟୁଜନ ସରିଲା । ଓ.ଟି.ର ଦୁଆର ଖୋଲା ହେଲା । ମୁଁ ଦେଖିଲି ବୋତଲର ଆହୁରି ଅଧାରୁ ଉପର ରକ୍ତ ଅଛି...ହେଲେ କ'ଣ ହେଲା, ଯେତିକି ରକ୍ତ ଦରକାର ସେତିକି ଦେବେନା... ।

ଡକ୍ଟର ମହାନ୍ତିକ ହଠାତ୍ ଦୁଆର ଦେଇ ବାହାରି ଚାଲିଗଲେ । ତାଙ୍କ ପଛେ ପଛେ ଚାଲିଗଲେ ଡକ୍ଟର ମହାଶ୍ୱେତା ଓ କାମେଶ୍ୱରୀ ଦେବୀ । ତାଙ୍କ ପଛେ ପଛେ ସିଷ୍ଟର୍ ।

କିନ୍ତୁ ମତେ କେହି କାହିଁକି ପଦେ ହେଲେ କଥା କହୁ ନାହାନ୍ତି ? ମିତାର ଚେତା କେତେବେଳକୁ ଫେରିବ ? ତା' ପାଇଁ, ପିଲା ପାଇଁ କ'ଣ କ'ଣ ସବୁ ଔଷଧ ବା ପଥି ଆସିବ, ସେ' କଥା ତ ମତେ କେହିହେଲେ କହିବା ଉଚିତ୍ ।

ମୁଁ ଡାକ୍ତରଙ୍କ ପଛେ ପଛେ ଦୌଡ଼ିବାକୁ ଆରମ୍ଭ କଲି । ପଛରୁ ଜଣେ କିଏ ବଡ଼ ପାଟି କରି ଡାକିଲା, ହେ ବାବୁ ! ଶୁଣନ୍ତୁ, ଶୁଣନ୍ତୁ । ମୁଁ ପଛକୁ ଚାହିଁ ଦେଖିଲି ଜଣେ

ବେହେରା । ବେହେରାଟି ଚାଲି ଚାଲି ହୋଇ ମୋ' ପାଖକୁ ଆସିଲା । ମୋ ମୁହଁକୁ ଚାହିଁଲା, କ'ଣ ଭାବିଲା କେଜାଣି, ମୋର କାନ୍ଧ ଉପରେ ତା'ର ପାପୁଲି ଆସ୍ତେ ରଖି ପଚାରିଲା, ''ବାବୁ କୁଆଡ଼େ ଯାଉଛ ?'' ମୁଁ କହିଲି, ''ଡାକ୍ତରଙ୍କ ପାଖୁ ପେସେଣ୍ଟ କଥା ପଚାରିବାକୁ ।''

: ଆଉ ଲାଭ ନାହିଁ ।

: ଲାଭ ନାହିଁ ମାନେ ?

ବେହେରାଟି ଆଉ ମୋ ଆଡ଼କୁ ଚାହିଁ ନଥିଲା । ସେ ସୁବିଧା ଦେଖି ବିପରୀତ ଦିଗକୁ ମୁହଁ ଫେରେଇ ନେଇଥିଲା । କହିଲା, ଅପରେସନ୍ ଟେବୁଲ ଉପରେ ଆପଣଙ୍କର ସ୍ତ୍ରୀଙ୍କର ଡେଥ୍ ହୋଇଗଲା ଆଜ୍ଞା । ମୁଁ ଆଶ୍ଚର୍ଯ୍ୟ ହେଇଗଲି ଯେ ମୁଁ ହା' ହା' କରି କାନ୍ଦି ଉଠିଲି ନାହିଁ । କେବଳ ଏକ ଭାବଲେଶଶୂନ୍ୟ ଆଖିରେ ଆଗକୁ ଚାହିଁ ଦେଖିଲି । ୟେ' କ'ଣ ହେଲା ? ଡାକ୍ତର ମହାଳିକ ଆସିଲେ, ତଥାପି ମୋ ମିତାକୁ ରକ୍ଷା କରିପାରିଲେ ନାହିଁ ? କିନ୍ତୁ କାହିଁକି ସେ ମରିଗଲା ? ୟା'ର ଉତ୍ତର ମତେ କିଏ ଦବ ? ସାମ୍ନାର ଅନ୍ଧାର, ଆକାଶ, ନା ପରିତ୍ୟକ୍ତ ଏହି ଓ.ଟି.ର ବାରଣ୍ଡା ?

ଅକସ୍ମାତ୍ ଗୋଟିଏ ଶବ୍ଦରେ ଚମକି ପଡ଼ିଲି । ଦୁଇଜଣ ବେହେରା ପ୍ରଚଣ୍ଡ ଶବ୍ଦ କରି ଅକ୍ସିଜେନ୍ ସିଲିଣ୍ଡର ଆଉ ସାଲାଇନ ଷ୍ଟାଣ୍ଡରୁ ଓ.ଟି.କୁ ବାହାରକୁ ଆଣି ଲମ୍ବା କରିଡ଼ର ଦେଇ ଗଡ଼େଇ ଗଡ଼େଇ ନଉଛନ୍ତି । ମୁଁ ଆଉଥରେ ଓ.ଟି.ର କବାଟ ଖୋଲି ଚାହିଁଲି ।'ଅପରେସନ୍ ଟେବୁଲ୍ ଉପରେ ମିତା ଶୋଇ ରହିଛି ଏକ ପ୍ରଶାନ୍ତ ନିଦ୍ରାରେ । ତା'ର ମୁହଁ ଉପରେ ଘୋଡ଼େଇ ଦିଆଯାଇଚି ଗୋଟିଏ ଧଳା ଚାଦର ।

ପୁଣି ବାହାରକୁ ଆସି ବାରଣ୍ଡାରେ ଠିଆ ହେଲି ।

ମୋ' ପାଖରେ କେହି କୁଆଡ଼େ ନାହାନ୍ତି । ବେହେରାମାନେ ସିଲିଣ୍ଡରକୁ ଟାଣି ଟାଣି କରିଡ଼ରର ମୋଡ଼ ବୁଲିଗଲେଣି ।

କେତେବେଳେ ଚଟି ଫଟ୍ ଫଟ୍ କରି ଆସିଲା ସିଷ୍ଟର । ତା' ହାତରେ ଗୋଟାଏ ସିରିଞ୍ଜ । ମୋ ପାଖ ଦେଇ ଗଲାବେଳେ ଟିକିଏ ଠିଆ ହେଲା, ଆଉ କହିଲା ''ବର୍ତ୍ତମାନ ନିଜକୁ ଟିକିଏ ଶକ୍ତ କରନ୍ତୁ । ବର୍ତ୍ତମାନ ଠାରୁ ଠିକ୍ ବାରଘଣ୍ଟା ପରେ ଛୁଆକୁ ଟିକିଏ ଫୁଟା ପାଣି ଥଣ୍ଡା କରି ଦେବେ । ତା' ପରେ ପରେ ତାକୁ ଫିଡ୍ କରିବାକୁ ପଡ଼ିବ । ଯଦି ଆପଣଙ୍କର କେହି ଚିହ୍ନା ପରିଚୟ ବା ବନ୍ଧୁ ବାନ୍ଧବ ଲୋକଙ୍କର ନିକଟରେ ପିଲା ହେଇଥାଏ, ତାହାହେଲେ ସେ ବ୍ରେଷ୍ଟ୍ ଫିଡ୍ କରିପାରିଲେ ଭଲ, ନହେଲେ ଫିଡ଼ିଂ ବଟଲ୍‌ରେ ଲାକ୍ଟୋଜେନ୍ ଦବାକୁ ପଡ଼ିବ ।''

ସିଷ୍ଟରଟି ଚାଲିଗଲା ।

ମୁଁ ପୁଣି ଏକା ହେଇଗଲି । ପ୍ରକୃତରେ ଏକା ହେଇଗଲି ।

ଦୁଇଜଣ ବେହେରା ବିପରୀତ ଦିଗରୁ ନେଳି ପୋଷାକ ପିନ୍ଧି ଆସିଲେ ଏବଂ ଓ.ଟି. ରୁମ୍ ଭିତରେ ପଶିଲେ । ତା'ର ମାତ୍ର ଅଳ୍ପ ସମୟ ପରେ ଗୋଟିଏ ଷ୍ଟ୍ରେଚରରେ ଧଳା ଚାଦର ଘୋଡ଼େଇ ହେଇଥିବା ମିତାକୁ ଆଣି ବାରଣ୍ଡାରେ ରଖିଦେଲେ । ଜଣେ ବେହେରା ଟିକିଏ ପାଖକୁ ଆସି କହିଲା, ''ଆପଣ ଏଠି ଠିଆ ହେଇ ରହିଲେ ଚଳିବ ନାହିଁ । ଆଉ ଦୁଇଘଣ୍ଟା ଭିତରେ ଶବ ପଚିଯାଇ ଦୁର୍ଗନ୍ଧ ବାହାରିବ । ଆପଣ ଶବ ସତ୍କାରର ବ୍ୟବସ୍ଥା କରନ୍ତୁ ।''

ସେମାନେ ଚାଲିଗଲେ ।

ମୁଁ ପୁଣି ଏକୁଟିଆ ହେଇଗଲି ।

ଡାକ୍ତରଖାନା ଏ ଯାଏଁ ଉଠି ତା'ର ପ୍ରଥମ ହାଇଟିଏ ମଧ ମାରି ନାହିଁ । ସିଷ୍ଟରଟି ଖାଲି ସିରିଞ୍ଜ୍ ଧରି ଫେରୁଥିଲା । କହିଲା, ଆପଣ ଟିକିଏ ଦମ୍ଭ ଧରନ୍ତୁ, ଏଇନା ଆପଣଙ୍କୁ ବେବିକୁ ନେଇ ଯିବାକୁ ହେବ । ଖୁବ୍ ଜୋର୍ ସକାଳ ପର୍ଯ୍ୟନ୍ତ ଆମେ ଅପେକ୍ଷା କରିବୁ, ତା'ପରେ ଓ.ଟି. ଖାଲି କରିବାକୁ ପଡ଼ିବ ।

ସିଷ୍ଟର ଚାଲିଗଲା ।

ମୁଁ ପୁଣି ଏକୁଟିଆ ।

ମୋତେ ଘରକୁ ଯିବାକୁ ପଡ଼ିବ । କିନ୍ତୁ ମୋର ମା'ର ସ୍ତନ ତ ଦୁଗ୍ଧଶୂନ୍ୟ । ମୁଁ ଏଇନା କୁଆଡ଼େ ଯିବି ଏକ ଦୁଗ୍ଧବତୀ ନାରୀର ସନ୍ଧାନରେ ? ଆଉ ଜଣେ ବେହେରା ଆସିଲା । କହିଲା, ଆଜ୍ଞା କ୍ଷିତୀଶବାବୁ ଖବର ପଠାଇଛନ୍ତି । ଆଉ ଘଣ୍ଟାକରେ ତାଙ୍କର ଡିଉଟି ଅଫ୍, ବ୍ଲଡ଼ ବାବଦରେ ଆପଣଙ୍କୁ ଦବାକୁ ପଡ଼ିବ ଆଉ ଷୋଳଟଙ୍କା ।

ବେହେରା ଚାଲିଗଲା ।

ମୁଁ ପୁଣି ଏକା ।

ପୂର୍ବ ଦିଗରେ ସିନ୍ଦୂରା ଫାଟି ଫାଟି ଆସୁଛି । ଆକାଶ ରକ୍ତପରି ଲାଲ । ଆଉ ଗୋଟିଏ ଦିନ ଜନ୍ମ ନଉଛି ।

ଅନେଇଲି ମିତାର ଷ୍ଟ୍ରେଚର ଆଡ଼େ । ତା' ଧଳା ଚାଦର ଉପରେ ଦୁଇ ଚାରିଟା ମାଛି ଆସି ଚକ୍କର ଦେଇ ବସିବାର ଜାଗା ଠଉରେଇବାର ମତଲବରେ ଅଛନ୍ତି । ମୁଁ ଯାଇ ମିତାର ଦେହ ଉପରେ ଖାଲି ପାପୁଲିଟାକୁ ଥରେ ଦୁଇଥର ଚଳେଇ ନେଇ ମାଛି ଘଉଡ଼େଇ ଦେଲି ।

ପୁଣିଆସି ଠିଆ ହେଲି ମୋର ପୂର୍ବ ନିର୍ଦ୍ଧାରିତ ସ୍ଥାନରେ ।

ଓଠ ଗୁଡ଼ାକ ଫାଟି ଗଲାଣି । ଖଣ୍ଡେ ସିଗାରେଟ୍ ଲଗେଇଲେ ଚଳନ୍ତା, କିନ୍ତୁ କେହି କୁଆଡ଼େ ନାହାନ୍ତି । ଏପରିକି ସେ ରିକ୍ସାବାଲା ବି ପଇସା ନନେଇ କୁଆଡ଼େ ଚାଲିଗଲା ।

ସିଷ୍ଟରଟି ପୁଣି କରିଡ଼ର ଆଡ଼କୁ ଆସୁଚି ।

ମତେ ଟପି ସିଧା ଚାଲିଗଲା ଓ.ଟି. ଭିତରକୁ ଓ ଗୋଟାଏ ଲୁହାର ଚକ ଲଗା କ୍ରାଡ଼ଲକୁ ଆଣି ମୋ ଆଗରେ ରଖିଦେଲା, କହିଲା, ''ଆଉ ଜଣେ ପେସେଣ୍ଟ ପାଇଁ ଓ.ଟି. ଖାଲି ହବ, ବେବିକୁ ନେଇ ଆସି ଏଇ ଓ୍ୱାର୍ଡ଼ରେ ରଖି ଦଉଛି । ଆପଣ ନେଇଯିବେ, ବାହାରେ ରଖିଲେ ଥଣ୍ଡା ଲାଗିବ ।''

ମୁଁ ଦେଖିଲି, ମେଞ୍ଚାଏ ଧଳା ଚାଦର ଭିତରୁ ବାହାରି ରହିଛି ଗୋଟିଏ ଲାଲ୍ ଟୁକ୍ ଟୁକ୍ ମୁହଁ, ଆଖି ବୁଜି ଦେଇଛି ।

...ମୁଁ ତତେ ଜାଣିନି ? ...ମୁଁ ପରା ତୋ ବାପା ! କିନ୍ତୁ ତୁ ଜାଣିନୁ ତୋ'ର ମା' ମରିଗଲା...ଏଇ ତକ ମନେ ମନେ କହି ମୁଁ ଭୋ ଭୋ ହେଇ ମୁହଁକୁ ଦୁଇ ପାପୁଲିରେ ଘୋଡ଼େଇ କାନ୍ଦି ପକେଇଲି ।

ସିଷ୍ଟର ମୋ କାନ୍ଧ ଉପରେ ଚାପ ଦେଇ କହିଲା, ଛି, ପୁଅ ପିଲା ହେଇ ଏମିତି ଭାଙ୍ଗି ପଡୁଛନ୍ତି କ'ଣ ?

ମୁଁ ଚୁପ୍ ହେଲି ।

ସିଷ୍ଟର ଚକ ଲଗା କ୍ରାଡ଼ଲଟାକୁ ଓ୍ୟାର୍ଡ଼ ଭିତରକୁ ନେଇ ରଖିଦେଲା ।

ସିଷ୍ଟର ଚାଲିଗଲା ।

ମୁଁ ପୁଣି ଏକୁଟିଆ ।

ମୋ ଆଗରେ ଉଠି ଆସୁଥିବା ସୂର୍ଯ୍ୟ, ପଛରେ ମୋର ନବଜାତ ଦାୟାଦ, ମୋର ବାଁ ପଟେ ମିତାର ଶବ ଓ ମୋର ଡାହାଣ ପଟେ ଓ.ଟି.-ଏକଧାରାରେ ମିତାର ମଶାଣି ଓ ମୋ ପୁଅର ଏନ୍ତୁଡ଼ିଶାଳ ।

ମୁଁ କୁଆଡ଼େ ଯିବି ? କାହାକୁ କହିବି ? କିଏ ଶବ ସତ୍କାର କରିବ ? ରିକ୍ସାରେ ବସି ପୁଅକୁ ଆଣ୍ଠୁ ଉପରେ ରଖି ନେବି କୁଆଡ଼େ ? ମୁଁ ଜାଣେନା-ମୁଁ ନିରୁପାୟ । ମୁଁ ସତରେ ଜାଣେନା । ହଠାତ୍ ଓ୍ୱାର୍ଡ଼ ଭିତରକୁ ପଶିଯାଇ ଚାଦର ସହିତ ପୁଅକୁ ଉଠେଇ ଆଣିଲି ଦୁଇ ହାତରେ । ବାରଣ୍ଡାରେ ସୂର୍ଯ୍ୟଙ୍କୁ ମୁହଁ କରି ଠିଆ ହେଲି ।

''ଏଇ ବ୍ରାହ୍ମ ମୁହୂର୍ତ୍ତରେ'', ମୁଁ ସ୍ୱଗତ ଚିତ୍କାର କରି ଉଠିଲି, ଦାନ୍ତରେ ଦାନ୍ତ ଚିପି, ''ମୁଁ ସୂର୍ଯ୍ୟଙ୍କ ଶପଥ ନେଇ କହୁଛି; ମୋର ସନ୍ତାନର ଶପଥ ନେଇ କହୁଛି, ତମେ

ତିନିଶହ ଚଉସ୍ତରୀ ଟଙ୍କା ପାଉଥିବା ଲୋକମାନେ ଯଦି ବିବାହ କର, ତାହା ହେଲେ ତମେମାନେ ଜରାୟୁବିହୀନ ନାରୀର ସନ୍ଧାନ କର ।''

''ମୁଁ ତମମାନଙ୍କୁ ଜାଣେ, ମୁଁ ତମମାନଙ୍କୁ ହାଟ ବଜାରକୁ ଖାଲି ବଜାର ମୁଣି ନେଇ ଫେରିବାର ଦେଖିଚି, ତମମାନଙ୍କୁ ବସ୍ ରେଲରେ ଝୁଲି ଝୁଲି ଯିବାର ଦେଖିଚି, ତମମାନଙ୍କୁ ନୂଆ ପଇସା ଷ୍ଟେକରେ ନିର୍ଲଜ ରମି ଖେଳିବାର ଦେଖିଚି-ତେଣୁ ମୁଁ ତମମାନଙ୍କୁ ସ୍ମରଣ କରାଇ ଦଉଛି, ତମର ସ୍ତ୍ରୀମାନେ ଜରାୟୁବିହୀନ ହୁଅନ୍ତୁ ବା ତମେମାନେ ନିର୍ବୀର୍ଯ୍ୟ ହୁଅ । ପୃଥିବୀରେ କ୍ଲୀବମାନଙ୍କର ସଂଖ୍ୟା ବୃଦ୍ଧି କର ନାହିଁ ।''

ଗୋଟାଏ ଲାଲ ପେଣ୍ଡୁ ପରି ସୂର୍ଯ୍ୟ ଚକ୍ରବାଳ ଉପରକୁ ଡେଇଁ ପଡ଼ିଥିଲା ।

ମୋର ପ୍ରଶ୍ନ ତଥାପି ଥିଲା ଅମୀମାଂସିତ ।

ମୁଁ କୁଆଡ଼େ ଯିବି ?

('ସୁଚରିତା' ଲେଖକ ବିଶେଷାଙ୍କ ୧୯୮୦)



# ଗୋଟିଏ ହୋଟେଲର ନକ୍ସା

ଶୀଲୁ ଗବାକ୍ଷ ଦେଇ ବାହାରକୁ ଚାହିଁ ରହିଥିଲା । ସାତ୍‌ନା ସହରର ଉପକଣ୍ଠରେ ସୁନୀଳ ପ୍ରାକୃତିକ ଶାନ୍ତ ପରିବେଶକୁ ଉପଭୋଗ କରୁ କରୁ ସେ ସମ୍ପୂର୍ଣ୍ଣ ଅନ୍ୟମନସ୍କ ହୋଇ ପଡ଼ିଥିଲା । ତା'ର ନଅବର୍ଷର ଦୁଇଟି ଆୟତ ଆଖିରେ ଥିଲା ଗୋଟିଏ ସୁଦୂର-ପ୍ରସାରୀ ଭାବ, ଯାହା ସାଧାରଣତଃ ସେ ବୟସର ଶିଶୁର ଆଖିରେ ଦେଖିବାକୁ ମିଳେନା । ଅଳ୍ପ କିଛି ସମୟ ପରେ ଘର ଭିତରେ ଗୋଟିଏ ଛୋଟ ଘଣ୍ଟି ବାଜିଉଠି ଶୀଲୁକୁ ମନେପକାଇ ଦେଲା ଯେ ପରିବାରର ମଧ୍ୟାହ୍ନ ଭୋଜନ ପ୍ରସ୍ତୁତ ହୋଇ ଯାଇଚି ଏବଂ ବର୍ତ୍ତମାନ ସମସ୍ତଙ୍କୁ ଖାଇବା ଟେବୁଲ୍ ପାଖରେ ଏକତ୍ରିତ ହବାକୁ ହବ ।

ମିଃ ଧରିଆଙ୍କର ପରିବାରରେ ଲୋକ ମାତ୍ର ଚାରିଜଣ । ମିଃ ଧରିଆ, ତାଙ୍କ ସ୍ତ୍ରୀ ମିସେସ୍ ଧରିଆ, ସେମାନଙ୍କର ଏକାମାତ୍ର ସନ୍ତାନ ଶୀଲୁ ଓ ସେମାନଙ୍କର ଲାହୋର ଅବସ୍ଥାନ ସମୟରେ ତାଙ୍କ ସଙ୍ଗରେ ଆଣିଥିବା ପରିଚାରିକା ଜାରିନା । ମିଃ ଧରିଆଙ୍କର ଖାଇବାର ଟେବୁଲ୍ ଦାମୀ ମେହୋଗାନୀ କାଠରେ ତିଆରି ଓ ଖୁବ୍ ଲମ୍ବା । ଟେବୁଲର ଆଦ୍ୟ ଅଂଶରେ ବସନ୍ତି ମିଃ ଧରିଆ ଓ ଠିକ୍ ବିପରୀତ ପ୍ରାନ୍ତରେ ବସେ ଶୀଲୁ ଓ ଟେବୁଲ ମଝିରେ ମିସେସ୍ ଧରିଆ ବସି ଭୋଜନ ପାତ୍ରଗୁଡ଼ିକୁ କେତେବେଳେ ପୁଅ ଆଡ଼କୁ ବା କେତେବେଳେ ତାଙ୍କର ସ୍ୱାମୀ ଆଡ଼କୁ ବଢ଼େଇ ଦେଇ ସମସ୍ତଙ୍କର ଖାଇବାର ତଦାରଖ କରୁଥାଆନ୍ତି । ଜାରିନା ତା'ର ଛୋଟ ଛୋଟ ପାଦରେ ରୋଷେଇଘର ଓ ଖାଇବା ଟେବୁଲର ଦୂରତ୍ୱ ଭିତରେ ଗୋଟିଏ ଛୋଟ ସୁନ୍ଦର ଚଢ଼େଇ ପରି ଫୁର୍‌ଫୁର୍ ହୋଇ ଏପଟ ସେପଟ ଦଉଡ଼େ । ଏହା ସେମାନଙ୍କର ଦୈନନ୍ଦିନ ମଧ୍ୟାହ୍ନ ଭୋଜନର ଅଲଙ୍ଘନୀୟ ବ୍ୟବସ୍ଥା ।

ଟେବୁଲର ଲେ-ଆଉଟ ଖୁବ୍ ଖୁଣ୍ଟିନାଣ୍ଟି ଭାବରେ ପରୀକ୍ଷା କରିଥାଆନ୍ତି ମିସେସ୍ ଧରିଆ । ଧୋବ ଫରଫର୍ ଟେବୁଲ୍ କ୍ଲଥ ଉପରେ ଫାଓ୍ୱାର୍‌ଭାଜ୍, ଖାଇବା ପ୍ଲେଟ ଓ ଛୁରୀ କଣ୍ଟାଚାମଚ କାଇଦା ଦୂରସ୍ତ ଭାବରେ ସଜା ହୋଇ ରହିଥାଏ । ଖାଇବା ଘଣ୍ଟି ବଜେଇବା ଆଗରୁ ମିସେସ୍ ଧରିଆ ତାଙ୍କର ଡାହାଣ ହାତର ପିଠି ପଟ ଦେଇ ପ୍ଲେଟ ଓ କଟ୍‌ଲେରୀ ପ୍ରଭୃତି ଯଥୋଚିତ ଉଷ୍ଣ ଅଛି କି ନାହିଁ ପରୀକ୍ଷା କରିନେଇଥାଆନ୍ତି ଏବଂ ତତ୍‌ସଙ୍ଗେସଙ୍ଗେ ଲୁଣ ଦାନି ଆଉ ଗୋଲମରିଚ-ଦାନିକୁ ଦୁଇତିନିଥର ତାଙ୍କର ବାଆଁ ପାପୁଲି ଉପରେ ଝାଡ଼ି ନେଇଥାଆନ୍ତି । ଏ ବ୍ୟବସ୍ଥା ମଧ୍ୟ ଏକ ଦୀର୍ଘ ଅଭ୍ୟାସବଶତଃ

ପୂର୍ବବତ୍ ଅଲଂଘନୀୟ । ମିଃ ଓ ମିସେସ୍ ଧରିଆ ୟୁନାଇଟେଡ୍ ନେସନ୍‌ର କର୍ମଚାରୀ ହିସାବରେ ତାଙ୍କରି ଚାକିରି ଜୀବନର ପ୍ରାରମ୍ଭରୁ ନ୍ୟୁୟର୍କ, ଲଣ୍ଡନ, ମସ୍କୋ, ପ୍ୟାରିସ ପ୍ରଭୃତି ବହୁ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଜାଗାମାନଙ୍କରେ ଦୀର୍ଘଦିନ ଅବସ୍ଥାନ କରିଛନ୍ତି । ବିମାନ ବନ୍ଦରରୁ ବିମାନ ବନ୍ଦର ଓ ହୋଟେଲରୁ ହୋଟେଲ ବୁଲି ବୁଲି ଶେଷକୁ ମିଃ ଧରିଆ ଏତେ କ୍ଳାନ୍ତ ହୋଇପଡ଼ିଛନ୍ତି ଯେ ସେ ଅବଶେଷରେ ସ୍ୱଇଚ୍ଛାରେ ମଧ୍ୟପ୍ରଦେଶରେ ଅବସ୍ଥିତ ଏଇ ଛୋଟ ସାତ୍‌ନା ସହରଟିକୁ ତାଙ୍କର ଅବଶିଷ୍ଟ ଚାକିରି କାଳର କାର୍ଯ୍ୟସ୍ଥାଳୀରୂପେ ବାଛି ନେଇଛନ୍ତି । ଏଇ ବେଶ୍ ଭଲ-ହାତର ପାପୁଲି ପରି ଛୋଟ ଗୋଟିଏ ସହର । ପଶ୍ଚିମପଟେ ପ୍ରକୃତି ଅକୁଣ୍ଠିତ ଭାବରେ ସବୁଜିମା ଢାଳି ଦେଇଯାଇଛି ଚକ୍ରବାଳରେ ଆଖି ମିଶିଲା ପର୍ଯ୍ୟନ୍ତ-ଆଉ ପୂର୍ବପଟେ କିଛି ବାଟ ଛାଡ଼ି ଫ୍ୟାକ୍‌ଟରୀର ଲମ୍ବା ଚିମନି ଆକାଶକୁ ମୁଣ୍ଡଟେକି ସୈନିକ ହାତର ବେୟନେଟ୍ ପରି ସ୍ଥିର ନିଶ୍ଚଳ ହୋଇ ଛିଡ଼ା ହୋଇଛନ୍ତି । ଟିକିଏ ଦୂରରେ ଥିବା ବେଶ୍ ଭଲ; କାରଣ ଫ୍ୟାକ୍‌ଟରୀର ପୁଙ୍ଗାର ବିକଟ ଚିତ୍କାର ଏଠିକି ଅନେକ ନରମ ଶୁଣାଯାଏ, ଆଉ ଚିମ୍‌ନିର କଳା କଳା ଧୂଆଁ ଦେଖାଯାଏ ଯେପରି କିଛି କଳା ବାଦଲ ଲଘୁପକ୍ଷରେ ଆକାଶ ବୁକୁରେ ବିଚରଣ କରୁଛନ୍ତି ।

ମିଃ ଧରିଆ ଚଉକିକୁ ସାମାନ୍ୟ ଆଗକୁ ଝୁଙ୍କେଇ ଆଣି ମଧ୍ୟାହ୍ନ ଭୋଜନରେ ବସିବା ବେଳେ ଏକ ଯନ୍ତ୍ର-ଚାଳିତ ରୀତିରେ ଗିଲାସରୁ ନ୍ୟାପ୍‌କିନ୍ ଆଣି କୋଳ ଉପରେ ପକାନ୍ତି ଓ ସୁପ୍ ଚାମୁଚ୍‌ଟିକୁ ଡାହାଣ ହାତରେ ଧରି ବାଆଁ ହାତର ବୁଢ଼ା ଆଙ୍ଗୁଠିଟିକୁ ପ୍ଲେଟର ଫନ୍ଦ ଉପରେ ଆସ୍ତେ ଚାପ ଦିଅନ୍ତି । ପ୍ରଥମ ଚାମୁଚ୍‌ସୁପ୍ ଉପରକୁ ଟୋଳି ଆଣିବା ବେଳେ କେବେକେବେ ମିଃ ଧରିଆଙ୍କର ମୁହଁ ସ୍ୱଚ୍ଛ ସୁପ୍‌ରେ ପ୍ରତିବିମ୍ବିତ ହୋଇଯାଏ । ସୁପ୍ ଚାମୁଚ୍ ସେହିପରି ଅର୍ଦ୍ଧୋତ୍‌ଥିତ ଅବସ୍ଥାରେ ଥାଏ ଏବଂ ମିଃ ଧରିଆ ତାଙ୍କର ନିଜର ପ୍ରତିବିମ୍ବ ଉପରୁ ମୁହଁ ଫେରେଇନେଇ ଲମ୍ବା ଟେବୁଲର ଅପର ପ୍ରାନ୍ତରେ ବସିଥିବା ଶୀଲୁକୁ ଚାହାନ୍ତି । ଶୀଲୁ ସେତେବେଳକୁ ହୁଏତ ଗୋଟାଏ ଦୁଇଟା ଚାମୁଚ୍ ସୁପ୍ ଖାଇ ନେଇଥାଏ । ମିଃ ଧରିଆ ଯଥେଷ୍ଟ ସତର୍କ ଥାଆନ୍ତି, ଯେପରି ଶୀଲୁକୁ ସିଏ ଅନୁଧ୍ୟାନ କରୁଛନ୍ତି ବୋଲି ଶୀଲୁ ଘୁଣାକ୍ଷରରେ ମଧ୍ୟ ଜାଣି ନପାରେ । ଟେବୁଲ୍‌ର ଅନ୍ୟ ପ୍ରାନ୍ତରେ ସୁଶ୍ରୀ ଆୟତ-ଆଖି ଶୀଲୁକୁ ଦେଖି ମିଃ ଧରିଆଙ୍କର ମନେ ହୁଏ, ଯେପରି ସିଏ ପୋର୍ସିଲେନ୍‌ରେ ତିଆରି ଗୋଟିଏ ଛୋଟ ଚାଇନା କଣ୍ଢେଇକୁ ପ୍ରତ୍ୟକ୍ଷ କରୁଛନ୍ତି । ଏଡ଼େ ସୁନ୍ଦର ? ଅଥଚ ଏତେ ଭଙ୍ଗୁର ! ମିଃ ଧରିଆ ଅନ୍ୟମନସ୍କ ହୋଇ ପଡ଼ନ୍ତି ଏବଂ ମୁହୂର୍ତ୍ତକ ପାଇଁ ତାଙ୍କର ମନେହୁଏ ଯେପରି ଶୀଲୁ ତାଙ୍କ ଠାରୁ ଦୂରକୁ ଅନେକ ଅନେକ ଦୂରକୁ ଚାଲିଯାଉଛି ଏବଂ ତା'ପରେ ଗୋଟିଏ ଛୋଟ ଶ୍ୱେତ ବିନ୍ଦୁ ହୋଇଯାଇ ହଠାତ୍ କିପରି ମିଶିଯାଇଛି ଅନନ୍ତ ଶୂନ୍ୟତା

ଭିତରେ । ଏ ବୃତ୍ତାନ୍ତ ମିସେସ୍ ଧରିଆ ବା ଜ୍ୱାରିନ୍ନାକୁ ଅଛପା ରହେ ନାହିଁ । ଜ୍ୱାରିନ୍ନା ଗୋଟିଏ ଜାଗାରେ ସ୍ଥିର ହେଇ ଠିଆ ହେଇଯାଏ, ଯେପରି ତା'ର ସାମାନ୍ୟତମ ଗତି, ଚଞ୍ଚଳତା, ମିଃ ଧରିଆଙ୍କର ସ୍ୱପ୍ନ ଭାଙ୍ଗି ଦବ । ମିସେସ୍ ଧରିଆ ଅନୁଚ୍ଚ କଣ୍ଠରେ ତାଙ୍କର ସ୍ୱାମୀଙ୍କୁ ମନେ ପକେଇ ଦିଅନ୍ତି ଯେ ଚାମୁଚରେ ଉତ୍ତୋଳିତ ସୁପ୍ ଥଣ୍ଡା ହେଇଗଲାଣି । ଘୋର ଅନିଚ୍ଛା ସତ୍ତ୍ୱେ ମିଃ ଧରିଆ ସୁପ୍‌ଟକ ଗଳାଧଃକରଣ କରନ୍ତି, କାଳେ ତାଙ୍କର ବୀତସ୍ପୃହତା ସଂକ୍ରମିତ ହୋଇ ଶୀଲୁକୁ ମଧ୍ୟ ବିମର୍ଷ କରିଦେବ ।

ମିଃ ଧରିଆ ଯଦି ଆଲିଗଡ଼ ବିଶ୍ୱବିଦ୍ୟାଳୟ ପରିସର ଭିତରେ ତାଙ୍କର ଛାତ୍ରାବସ୍ଥାରେ ଜାହାନ୍ନାରା ବୋଲି ଗୋଟିଏ ସୁନ୍ଦରୀ ଝିଅକୁ ଦେଖିବ ତାକୁ ବିବାହ କରିବେ ବୋଲି ବଦ୍ଧ-ପରିକର ହେଇ ନଥାଆନ୍ତେ, ତାହାହେଲେ ବୋଧହୁଏ ଆଜି ଧରିଆ ପରିବାରର ଛାତକୁ, ଆତଙ୍କ, ଉତ୍କଣ୍ଠା, ଅନିଶ୍ଚିତତା ପ୍ରଭୃତି ଦୁଃସ୍ୱପ୍ନମାନେ ସେମାନଙ୍କର ଲକ୍ଷ୍ମୀଛଡ଼ା କଳା କଳା ପକ୍ଷୀ ଦେଇ ଢାଙ୍କି ରଖି ନଥା'ନ୍ତେ ।

ମଧ୍ୟାହ୍ନ ଭୋଜନ ପରେ ମିଃ ଧରିଆଙ୍କର ଭାରୀ ଭାରୀ ଜୋତା ଚଟାଣ ଉପରେ ଘୋଡ଼ା ଟାପୁ ପରି ଶବ୍ଦ କରି ମିଳେଇଯାଏ ଦାଣ୍ଡ ଦୁଆରେ । ତା'ପରେ କାର୍ ଇଞ୍ଜିନ୍‌ର ମୃଦୁଗୁଞ୍ଜନ ଅଳ୍ପ କେତେ ସେକେଣ୍ଡ୍ ଭିତରେ ନୀରବ ହୋଇଯାଏ । ମିସେସ୍ ଧରିଆ କୌଣସି ଏକ କାଗଜ ବା ମ୍ୟାଗାଜିନ୍ ଧରି ତାଙ୍କର ଆଖି ଉପରେ ଚଷମାଟାକୁ ରଖିଥାଆନ୍ତି । ଚାରିଆଡ଼େ ଚୁପ୍‌ଚାପ୍ । ସମସ୍ତେ ଯେପରି କାନ୍‌ପାତି ଅତି ସତର୍କତାର ସହିତ ଅପେକ୍ଷାକରି ରହିଛନ୍ତି, କେତେବେଳେ କେଉଁ ମୁହୂର୍ତ୍ତରେ ଗୋଟାଏ ଅଶୁଭ ଶକୁନ ଘର ଭିତରକୁ ପଶି ଆସିବ । ସେମାନଙ୍କର ଅପେକ୍ଷମାଣ-ଶକୁନ କାଛବାଡ଼ ବା ଅବରୁଦ୍ଧ-ଦ୍ୱାରର ବାରଣ ମାନେ ନାହିଁ । ସେ ସର୍ବବ୍ୟାପୀ, ସଦା-ଜାଗ୍ରତ ଓ ତା'ର ମୃଗୟାରେ ସେ' ଥରକ ପାଇଁ ମଧ୍ୟ ବ୍ୟର୍ଥ ହୁଏ ନାହିଁ ।

ଠିକ୍ ଏତିକିବେଳେ ଜ୍ୱାରିନ୍ନା ଶୀଲୁକୁ ଆସି ସ୍ମରଣ କରେଇଦିଏ ଯେ ସେମାନଙ୍କର ଖେଳିବାର ସମୟ ଆସିଯାଇଛି । ସେ ଗୋଟାଏ ଅଦ୍ଭୁତ ପ୍ରକାରର ଖେଳ । ସେ'ଟା ଖେଳ କି ଏକ ନିଷ୍ଠୁର ବାସ୍ତବତା, ତାହା ମଧ୍ୟ ନିର୍ଣ୍ଣୟ କରିବା ସମ୍ଭବ ନୁହେଁ । ସେମାନେ ଦୁଇଜଣ ବେଶ୍ କିଛିଦିନ ଧରି ଗୋଟାଏ ବହୁତଳ ବିଶିଷ୍ଟ ହୋଟେଲ୍ ତିଆରି କରିବାରେ ବ୍ୟସ୍ତ । ଦିନେ ସେତେବେଳର ଛଅ ସାତ ବର୍ଷର ଶିଶୁ ଶୀଲୁ ଉପଲବ୍ଧି କରିଥିଲା ଯେ ପୃଥିବୀ ବକ୍ଷରେ ଛୋଟ ଛୋଟ ରଙ୍ଗିନ୍ ପ୍ରଜାପତି ପରି ବିଚରଣ କରୁଥିବା ଲକ୍ଷ ଲକ୍ଷ ଶିଶୁଙ୍କ ପରି ତା' ପକ୍ଷରେ ଖେଳି ବୁଲିବା ସମ୍ଭବ ନୁହେଁ ଏବଂ ସେହି ହେତୁରୁ ଏକ ସର୍ବଜନ-ସୁଲଭ ଶିକ୍ଷାପଦ୍ଧତି ଦେଇ ପାଠ ପଢ଼ିବା ବା ଏକ ସ୍ୱାଭାବିକ ଜୀବନଯାପନ କରିବା ମଧ୍ୟ ତା' ପକ୍ଷରେ ସମ୍ଭବ ନୁହଁ । ସେଦିନ ହତାଶାର ଏକ ସୁଗଭୀର ଅନ୍ଧ-କୂପ ଭିତରୁ ଶିଶୁ ଶୀଲୁର ଚୈତନ୍ୟକୁ ପୁନରୁଦ୍ଧାର

କରିବାର ଏକ ଆକଣ୍ଠ ପ୍ରଚେଷ୍ଟାରେ ଜାରିନା କହିଥିଲା, ''ଶୀଲୁ, କିଛି ହେଇ ନାହିଁ ତମର, କେବଳ ତମର ସ୍ୱାସ୍ଥ୍ୟ ଦୃଷ୍ଟିରୁ ତମର ଖେଳିବା ବୁଲିବାକୁ ଡାକ୍ତର ଆକଟ କରିଛନ୍ତି । ତମେ ସାଇକଲ୍ ଚଳେଇ ପାରିବ ନାହିଁ ସତ, କିନ୍ତୁ ଜାଣ ଶୀଲୁ, ତମେ ଗୋଟାଏ ଘୂର୍ଣ୍ଣାୟମାନ ଚଉକୀରେ ବସି (ତମର ଡ୍ୟାଡ଼ିଙ୍କର ଅଫିସ ଚଉକୀ ଯେମିତି) ଗୋଟାଏ ବିରାଟ ହୋଟେଲ ଚଳେଇ ପାରିବ ।''

ଶୀଲୁର ଆଖିରେ ସେଦିନ ଟିକିଏ କ୍ଷୀଣ ଆଶା ସ୍ମିତହାସ୍ୟ ଆକାରରେ ଝିଲ୍‌ମିଲ୍ କରି ଉଠିଥିଲା । ସତେ ତ ! ଖୁବ୍ ଚମତ୍କାର କଥା । ସେଇ ମୁହୂର୍ତ୍ତରୁ ସେମାନେ ଆଉ କାଳ ବିଳମ୍ବ କରି ନାହାନ୍ତି । ସେମାନେ ଧମାଧମ୍ ଲାଗିଯାଇଛନ୍ତି ହୋଟେଲ୍ ତିଆରି କରିବାରେ । ମିଃ ଧରିଆଙ୍କର ଅର୍ଥର ଅଭାବ ନଥିଲା କେବେ, ତେଣୁ ହୋଟେଲ୍ ପାଇଁ ଜାଗା କିଣିବା ବା ଆବଶ୍ୟକୀୟ ସିମେଣ୍ଟ, ଇଟା ଲୁହାଛଡ଼ କିଣିବା ପାଇଁ ସେ ଦୁହିଁଙ୍କୁ କିଛିମାତ୍ର ସମୟ ଅପେକ୍ଷା କରିବାକୁ ପଡ଼ି ନାହିଁ । ଆଜି ନିଆଁ ଖୋଳା, କାଲି ପ୍ଲିନ୍ଥ୍ ଏବଂ ତା' ଆରଦିନ ଆକାଶକୁ ମୁଣ୍ଡଟେକି ଠିଆ ହେଲାଣି କୁଣ୍ଢେ ମୋଟର କଂକ୍ରିଟ୍ ସ୍ତମ୍ଭ ସବୁ । ସମୁଦାୟ ଘରଟା ପାଇଁ ନକ୍‌ସା ମଧ୍ୟ ତିଆରି କରାଯାଇଛି । ଶୀଲୁ ଅନେକ ସମୟ, ସମୟ କଟାଇବା ପାଇଁ ରଙ୍ଗ ବାକ୍‌ସ ଧରି ଛବି ଆଙ୍କେ । ବସି ବସି ଛବି ଆଙ୍କି ଆଙ୍କି ସେ ସେଇ ପିଲାଦିନୁ ଜଣେ ପ୍ରତିଭାବାନ୍ ଚିତ୍ର-ଶିଳ୍ପୀର ପରିଚୟ ଦେଇଥିଲା । ଯେଉଁଦିନ ଏଇ ହୋଟେଲ୍ ପ୍ରସ୍ତାବ ଉତ୍‌ଥାପିତ ହୁଏ, ଠିକ୍ ସେଇଦିନ ରାତିରେ ଶୀଲୁ ତା'ର ପ୍ରସ୍ତାବିତ ହୋଟେଲ୍‌ର ଏକ ରେଖାଙ୍କିତ ଖସଡ଼ା ତିଆରି କରେ । ଫର୍ଦ୍ଦ ପରେ ଫର୍ଦ୍ଦ ବ୍ଲୁପ୍ରିଣ୍ଟ୍ । ଶେଷ ପର୍ଯ୍ୟନ୍ତ ହୋଟେଲରେ କୋ'ଠି କି ରଙ୍ଗ ଦିଆଯିବ, ତା'ର ଖସଡ଼ା ପର୍ଯ୍ୟନ୍ତ ତିଆରି କରାଯାଇଚି । ହୋଟେଲର କାମ ଖୁବ୍ ଦ୍ରୁତଗତିରେ ଆଗେଇ ଚାଲିଛି ଯଦିଓ ଜାରିନା ପାଇଁ, ଶୀଲୁ ପାଇଁ ହୋଟେଲ ତିଆରିର ମନ୍ଥର ଗତି କ୍ଳାନ୍ତିକର ହେଇ ପଡୁଛି । ହୋଟେଲଟା ତ ଗୌଣ । ମୁଖ୍ୟ କଥାଟା ହେଲା ହୋଟେଲ ତିଆରି ପରେ ହୋଟେଲଟାକୁ ଚଳେଇବା । ତେଣୁ ହୋଟେଲ୍ ତିଆରିରେ ବିଳମ୍ବ ଅସହ୍ୟ ହେଇ ଉଠିଲାଣି । ଅବଶ୍ୟ ଇତିମଧ୍ୟରେ ମିଃ ଧରିଆଙ୍କର କାର୍ଯ୍ୟକ୍ଷେତ୍ର ପ୍ୟାରିସ୍‌ରୁ ଲଣ୍ଡନ ଓ ଲଣ୍ଡନରୁ ସାତ୍‌ନାକୁ ସ୍ଥାନାନ୍ତରିତ ହେଇଛି । କିନ୍ତୁ ସେଥିରେ ହୋଟେଲ୍ ନିର୍ମାଣର କୌଣସି କାର୍ଯ୍ୟସୂଚୀ ବ୍ୟାହତ ହୋଇ ନାହିଁ । ଯଦିଓ ହୋଟେଲର, ମେଢ଼ିଆ ପତ୍ତନ ପଡ଼ିଥିଲା ପ୍ୟାରିସ୍‌ରେ ଓ ତା'ର ଲିଣ୍ଟେଲ୍ ସବୁ ଢଳେଇ ହେଇଥିଲା ଲଣ୍ଡନରେ । ତା' ଛାତ ସାତ୍‌ନା ସହରରେ ପକେଇବା ପାଇଁ ସ୍ୱପ୍ନ-ବିଳାସୀ ଦୁଇବନ୍ଧୁ ଜାରିନା ଓ ଶୀଲୁର ସାମାନ୍ୟ ତମ ଅସୁବିଧା ହେଇ ନାହିଁ ।

ହୋଟେଲ୍‌ଟା ହୋଟେଲ୍ ପରି ହବ । ପ୍ରତି ବାଥ୍‌ରୁମ୍‌ରେ ମାର୍ବଲ ଟାଇଲ୍‌ର ଟବ୍ ରହିବ । ୱାଲ-ଟୁ-ୱାଲ୍ କାର୍ପେଟିଙ୍ଗ୍ ହବ । ପଛପଟେ ରହିବ ଗୋଟାଏ ସୁଇମିଙ୍ଗ୍

ପୁଲ୍, ଯାହାର ପାଣିର ଉତ୍ତାପ ଇଚ୍ଛା ଅନୁଯାୟୀ ନିୟନ୍ତ୍ରିତ କରି ହଉଥିବ । ବାଆଁପଟେ ରହିବ ଟେନିସ୍ କୋର୍ଟ୍ ଏବଂ ସେଥିରେ ଫ୍ଲଡ୍ ଲାଇଟ୍ ଲାଗି ରାତିରେ ଖେଳିବାର ସୁବନ୍ଦୋବସ୍ତ ଥିବ । ପ୍ରତି ରୁମ୍‌ରେ ଟେଲିଫୋନ୍, ଯାହା ଯୋଗେ ସେମାନେ ରୁମ୍ ସର୍ଭିସ ବା ରିସେପ୍‌ସନିଷ୍ଟ ସହିତ କଥାବାର୍ତ୍ତା ହୋଇପାରୁଥିବେ । ଭି.ଆଇ.ପି. ରୁମ୍‌ଗୁଡ଼ିକରେ ରହିବ ଟେଲିଭିଜନ ଓ ଏକ ସ୍ୱତନ୍ତ୍ର ଟେଲିଫୋନ୍, ଯେଉଁ ଟେଲିଫୋନ୍‌ରେ ସେମାନେ ପି.ବି.ଏକ୍ସ. ଭିତର ଦେଇ ନଯାଇ ନିଜ ନିଜର ଲଙ୍ଗ୍ ଡିଷ୍ଟାନସ୍ କଲ୍ ବୁକ୍ କରି ପାରିବେ । ଯାହାଦ୍ୱାରା ହୋଟେଲର ଅନ୍ତେବାସୀମାନଙ୍କର ପ୍ରାଇଭେସି ରକ୍ଷା କରାଯାଇପାରିବ ।

ଜରିନ୍ନା ଓ ଶୀଲୁ ଅନେକ ବଡ଼ ବଡ଼ ହୋଟେଲ ଦେଖିଛନ୍ତି । ତେଣୁ ଗୋଟାଏ ଭଲ ଧରଣର ହୋଟେଲ ତିଆରି କରିବାପାଇଁ ସେମାନଙ୍କର ବେଶ କିଛି ଧାରଣା ଅଛି । ତା' ଛଡ଼ା ଜାରିନ୍ନାକୁ ଛାଡ଼ିଦେଲେ ମଧ ସେ ତା'ର ଡ୍ୟାଡ଼ି ଆଉ ମାମିଙ୍କୁ ମଧ ଏଇ ହୋଟେଲ-ହୋଟେଲ ଖେଳରେ ସଂଶ୍ଳିଷ୍ଟ କରି ସାରିଲାଣି । ଦିନେ ଦିନେ ଖାଇବା ଟେବୁଲ ଉପରେ ନ୍ୟାପକିନ ଟାଣି କୋଳରେ ବିଛେଇବା ପୂର୍ବରୁ ଶୀଲୁ ପଚାରେ, ''ଡ୍ୟାଡ଼ି, ଯଦି କେହି ବୋର୍ଡ଼ରୁ ତା' ରୁମ୍‌ର ଚାବି ହଜେଇ ଦିଏ, ତାହାହେଲେ କଅଣ ହବ ?'' ଡ୍ୟାଡ଼ି କଟାକ୍ଷରେ ମିସେସ୍ ଧରିଆଙ୍କୁ ଥରେ ମାତ୍ର ଚାହିଁନେଇ ଜବାବ୍ ଦିଅନ୍ତି, ''କାହିଁକି, ତମ ହୋଟେଲର ଗୋଟାଏ ମାଷ୍ଟର କି' ଥିବା ଉଚିତ୍, ଯେଉଁଥିରେ ସବୁ ଘର‌ର ଚାବି ଖୋଲିପାରିବ ।'' ଖାଇ ସାରିଲା ବେଳକୁ ଦେଖାଯାଏ ମିଃ ଧରିଆ ତାଙ୍କର ଚଷମା ଖୋଲି ରୁମାଲରେ ଆଖି ପୋଛୁଛନ୍ତି । ତାଙ୍କ ଆଖିରେ କଅଣ ଗୋଟାଏ ଗୁଣ୍ଡ ପଡ଼ିଗଲା ବୋଧହୁଏ ।

ଇତି ମଧ୍ୟରେ ଟେନିସ୍ କୋର୍ଟ୍, ସୁଇମିଙ୍ଗ୍ ପୁଲ ଓ ଆଉ କେତେଟା ବାହାରର କାମ ଛାଡ଼ି ଦେଲେ ହୋଟେଲ ତିଆରି ପ୍ରାୟ ସଂପୂର୍ଣ୍ଣ ଏବଂ ଆସନ୍ତା ଶୁକ୍ରବାର ଦିନ ଆନୁଷ୍ଠାନିକ ଭାବରେ ସେ ହୋଟେଲ ଉଦ୍‌ଘାଟନ କରାଯିବ । ନାଁ ହବ ''ହୋଟେଲ ଅଲମ୍ପିଆ'' । ଶୀଲୁର ଉତ୍ସାହର ଅନ୍ତ ନାହିଁ । ଗୋଟାଏ ବଡ଼ ପରିବାରର ମୁଖିଆ ଲୋକ ପରି ଶୀଲୁ ଘୂରିବୁଲୁଚି ଘରର ଗୋଟାଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ । ଜାରିନ୍ନାକୁ ତାଗିଦ୍ କରାହଉଛି ହୋଟେଲର ମନୋଗ୍ରାମ୍ ଛପା ହୋଇ ପେପର ନ୍ୟାପ୍‌କିନ୍ ଆଉ ପ୍ଲେଟସବୁ ଆସି ଗଲାଣି କି ନାହିଁ । ପୋଷ୍ଟାଲ ଡିପାର୍ଟମେଣ୍ଟ ପି.ବି.ଏକ୍ସ. ଇନଷ୍ଟଲ କଲାଣି କି ନାହିଁ ଏବଂ ସ୍ତୁପ୍ କମ୍ପାନୀକୁ ଅର୍ଡ଼ର ଦିଆଯାଇଥିବା ଭ୍ୟାକ୍ୟୁମ୍ କ୍ଲିନର ସବୁ ଆସିଗଲାଣି କି ନାହିଁ । ଜାରିନା ବି ଖେଳର କଦର ଜାଣେ, ସେ ଠିକେ ଠିକେ ଜବାବ୍ ଦେଇଯାଏ, ''ହଁ, ମନୋଗ୍ରାମ୍ ଛପେଇ ଦେଢ଼ହଜାର ପ୍ଲେଟ ଓ ଦଶ ହଜାର ନ୍ୟାପ୍‌କିନ୍ କାଲି ସନ୍ଧ୍ୟାରେ ଡେଲିଭରି ଆସିଯାଇଛି, ଅବଶିଷ୍ଟ ଆସନ୍ତା ଶନିବାର

ବେକକୁ ଆସିଯିବ—ଅନେକଥର ରିମାଇଣ୍ଡ୍ କରି କରି ପୋଷ୍ଟାଲ୍ ଡିପାର୍ଟମେଣ୍ଟ ଶୁଣୁ ନାହିଁ । କାଲି ଆପଣ ଥରେ ପି.ଏମ୍.ଜି.କୁ ଟେଲିଫୋନ୍ କରନ୍ତୁ ନା, ସେମାନଙ୍କର ମଜା ବାହାରିଯିବ । ମାତ୍ର ଦୁଇଟା ଭ୍ୟାକୁମ୍ କ୍ଲିନର ଟେଷ୍ଟିଙ୍ଗ୍ ପାଇଁ ଆସିଛି, ଆପ୍ରୁଭ ହେଲେ ବାକିତକ ସାଙ୍ଗେ ସାଙ୍ଗେ ଡେଲିଭରି ଆସିବ, ଲୋକାଲ ଅଫିସରେ ଷ୍ଟକ୍ ମହଜୁଦ୍ ଅଛି ।''

ତଦାରଖ କରିବାକୁ ଅନେକ ଏପଟ ସେପଟ ହୋଇ ବେଳେବେଳେ ଶୀଲୁ ତା'ର ଡାହାଣ ହାତର ବଦ୍ଧ-ମୁଷ୍ଟି ଉପରେ ଚିବୁକ ରଖି ଶୂନ୍ୟକୁ ଚାହିଁରହି ହୋଟେଲର ଖୁଣ୍ଟିନାଣ୍ଟି ଡିଟେଲ କଥା ସବୁ ଚିନ୍ତାକରେ । ସାତ୍‌ନାର ପୂର୍ବ ପଟର ନୀଳ ବନାନୀ ଉପରେ ଛାଇ ନଇଁ ଆସେ । ତଥାପି ଶୀଲୁ ଗବାକ୍ଷ ଦେଇ ବାହାରକୁ ଚାହିଁ ରହିଥାଏ । ସବୁଆଡ଼ ଚୁପ୍‌ଚାପ୍ । ଟ୍ଵାରିନା ବୋଧହୁଏ କୋ'ଘରେ ବସି ସିଲେଇ ଫିଟି ଯାଇଥିବା ଡ୍ରେପରର କଣାଗୁଡ଼ାକ ସିଲେଇ କରିନଉଛି । ମାମୀଙ୍କୁ ହବୋଧହୁଏ କଅଣ ଗୋଟାଏ ବହି ପଢୁଂପଢୁ ସାମାନ୍ୟ ତନ୍ଦ୍ରା ଲାଗିଯାଇଛି । ମିଃ ଧରିଆ ତଥାପି ଅଫିସରୁ ଫେରି ନାହାନ୍ତି । ଗୋଟାଏ ବିରାଟ ହଲ ଭିତରେ ଏକୁଟିଆ ଚୁପ୍‌ଚାପ ବସିରହି ଶୀଲୁ ଏକ ନୀରବ ସୂର୍ଯ୍ୟାସ୍ତ ଉପଭୋଗ କରୁଛି । ତା' ଚାରିପଟେ କେହି ନାହିଁ, କେବଳ ଗୋଟାଏ ଅତିକାୟ ପିଆନୋ, ଡ୍ରାଗନ୍‌ର ଦାନ୍ତପରି ଈଷତ୍ ହଳଦିଆପଡ଼ି ଆସୁଥିବା ଦାନ୍ତ ଦେଖେଇ ହସୁଛି । ଘର ଭିତରର ଏଇ ଶାନ୍ତ କୋଳାହଳବିହୀନ ବାତାବରଣକୁ ସହସା ବିଦୀର୍ଣ୍ଣ କରି ଏକ ବିକଟ ସ୍ଵରରେ ବାଜି ଉଠିଲା କଲିଙ୍ଗ୍ ବେଲ ।

ଘର ଭିତରକୁ ପଶି ଆସିଲେ ଡକ୍ଟର ଜ୍ୟାନ୍‌ରିଆ । ଏ'ଟା ତାଙ୍କର ରୁଟିନ୍ ଚେକ୍ । ପ୍ରତି ପନ୍ଦର ଦିନରେ ଥରେ ତାଙ୍କୁ ଆସି ଶୀଲୁକୁ ଦେଖିଯିବାକୁ ପଡ଼େ । ଶୀଲୁ ତା'ର ହୋଟେଲର ସ୍ଵପ୍ନରୁ ଏକ ନିଷ୍ଠୁର ବାସ୍ତବତାକୁ ଫେରି ଆସିଲା । ବର୍ତ୍ତମାନ ଆରମ୍ଭ ହବ ଗତାନୁଗତିକ ସ୍ଵାସ୍ଥ୍ୟ ତନଖି । ପ୍ରଥମଟା ଖୁବ୍ ସହଜ, ଆଖିପତା ତଳେ ଡଃ ଜ୍ୟାକିରିଆ ବୁଢ଼ା ଆଙ୍ଗୁଠି ରଖି ଟିକିଏ ତଳକୁ ଟାଣିନେଇ କହିବେ, ''ଶୀଲୁ, ଇଉ ଆର ଡୁଇଙ୍ଗ ଫାଇନ ।'' ତା'ପରେ ଶୋଇବାକୁ ପଡ଼ିବ, କେତେବେଳେ ପିଠିପଟ, କେତେବେଳେ ଛାତିପଟ । ଷ୍ଟେଥୋଟାକୁ ଲଗେଇରଖି କଅଣ ଯେ ଏତେ ସମୟ ଶୁଣନ୍ତି ଡାକ୍ତର ? ତା'ପରେ ରକ୍ତ ନିଆଯିବ । ହରେକ ରକମର ସ୍ଲାଇଡ଼ର ରକ୍ତର ଆଞ୍ଚୁଡ଼ା ଦାଗ କରାଯିବ ଆଉ ତାକୁ ସବୁ ପାଟିରେ ଫୁଙ୍କି ଶୁଖେଇ ମଝିରେ କାଗଜ ପ୍ୟାକିଙ୍ଗ ଦେଇ ଗୁଡ଼େଇ ପୁରାଯିବ ସେଇ ଚମଡ଼ା ବ୍ୟାଗଟା ଭିତରେ । ତା'ପରେ ଗୋଟାଏ ଲମ୍ବାନଳୀରେପୁଣି ରକ୍ତ—କଅଣ ତ ସବୁ କହନ୍ତି କାଉଣ୍ଟ କରାଯିବ ନା କଅଣ । ତା'ପରେ ନିଶ୍ଚେଷ୍ଟ ହୋଇ ଶୋଇରହ । ଆଣ୍ଠୁ, କହୁଣି, ହାତ, ବେକ, ପାଦ ସବୁଠି ଲାଗିଛି ରବର ନଳୀ । କିନ୍ତୁ ଭାରି ଭଲ ଲାଗେ ଯେତେବେଳେ ହାତରେ ଗୋଟାଏ

ରବର ନଳୀ ଗୁଡ଼େଇ ଗୋଟାଏ ବଲ୍ ଭଳିଆ ଜିନିଷ ଚିପି ଚିପି ପବନ ଭର୍ତ୍ତି କରନ୍ତି । ଆଉ ଗୋଟାଏ କଅଣ ପେଚ ଢିଲାକରି କୃପଣ ପରି ପବନ ଛାଡ଼ନ୍ତି । ଓଃ ! ଅନେକ ଝମେଲା । ଇଏ ଚାଲିବ ଘଣ୍ଟା ଘଣ୍ଟା ଧରି । ଡଃ ଜ୍ୟାକିରିଆ କଅଣ ବୁଝୁଛନ୍ତି ଯେ ଏଇଟା ବୋର୍ଡ଼ରମାନଙ୍କ ପାଇଁ ଆଫଟରନୁନ ଟି' ଟାଇମ ! ଆଉ ତା' ଛଡ଼ା ଆଜି ସବୁଗୁଡ଼ାକ ଭି.ଆଇ.ପି. ରୁମ୍ ଭର୍ତ୍ତି । ଶୀଲୁ ବିଛଣାରେ ଶୋଇରହି ଡଃ ଜ୍ୟାକିରିଆଙ୍କ ଆଡ଼କୁ ଅନାଇ ଡାକିଲା, "ଜ୍ଞାରିନା, କଅଣ କରୁଚୁ ? ସାତଶହ ବାର-ତେର-ଚଉଦ-ପନ୍ଦର ରୁମ୍‌ରେ ଚାହା ଠିକ୍ ଠିକ୍ ଦିଆହେଇଚି କି ନାହିଁ ଦେଖ । ଆଉ ଶୁଣ, ରହିମକୁ କହିବୁ ସେଠିକି ନିଜେ ଚା' ନେଇ ଯିବା ପାଇଁ—ଷ୍ଟୁପିଡ଼ ରାମେୟା ଯେମିତି ସେଠିକି ନ ଯାଏ ।"

ମିସେସ୍ ଧରିଆ ଓ ଡଃ ଜ୍ୟାକିରିଆ ଉଭୟ ସ୍ମିତହାସ୍ୟ ବିନିମୟ କରନ୍ତି । ଶୀଲୁ ଆଖିକୁ ଆହୁରି ବଡ଼ ବଡ଼ କରି କୁହେ, "ହଁ ଡକ୍ଟର, ତମକୁ ଆମ ହୋଟେଲରେ ଆମେ ରିଟେନର୍ କରି ରଖିବୁ । ଆପଣଙ୍କର ଯାହା ଫିସ୍ ଆମେ ଦବୁ । ଗଲା ସପ୍ତାହରେ ଥୁମ୍ବାରୁ ଜଣେ ନିଉକ୍ଲିୟର ସାଇଣ୍ଟିଷ୍ଟ ଆସିଥିଲେ । ରାତି ଏଗାରଟା ବେଳେ ତାଙ୍କର ହାର୍ଟ ଆଟାକ୍ ହେଲା । କମ୍ ଖୋଜିଛୁ ଆମେ ଜଣେ ଡାକ୍ତର ! ଡଃ ଜ୍ୟାକିରିଆ କହନ୍ତି, ମୋଷ୍ଟ ଉଏଲ୍‌କମ୍ । ଖାଲି ଗୋଟିଏ ଫୋନ୍ କଲେ ଇ ହେଲା, ମୁଁ ଆସି ତୋ' ହୋଟେଲରେ ହାଜର୍ ।"

ଚେକ୍-ଅପ୍ ପାଳା ସରିଲା । ବର୍ତ୍ତମାନ ଶୀଲୁ ଟେବୁଲ ପାଖରେ କପେ ଦୁଧ ଧରି ବସିଛି ଏବଂ ପାଖରେ ଗୋଟାଏ ଷ୍ଟୁଲରେ ବସି ରହିଛି ଜ୍ଞାରିନା । କେତେ ଚିଠି । ଡନ୍‌ଲପ୍ କମ୍ପାନୀକୁ ଦୁଇଗ୍ରୋସ ଟେନିସ୍ ବଲପାଇ ଅର୍ଡ଼ର୍ ଯିବ । ସ୍ମିଥ୍ କମ୍ପାନୀର କଟଲେରୀସବୁ ରଙ୍ଗ ଛାଡ଼ି ଯାଉଛି, ତାକୁ ରିମାଇଣ୍ଡ୍ କର । ସ୍ରଫ୍ କମ୍ପାନୀକୁ ଲେଖ କାର୍ପେଟ ପାଇଁ । ଗୋଟାଏ ଭେଟରନାରୀ ଡାକ୍ତର ପାଇଁ ଷ୍ଟେଟ୍‌ସମ୍ୟାନ୍‌କୁ ଆଡ଼ଭାଟାଇଜ୍‌ମେଣ୍ଟ ପଠାଅ, ଯା' ତା' ମାଂସ ଆଣି ହୋଟେଲ ଭିତରେ ଭର୍ତ୍ତି କରି ଦେଉଛନ୍ତି । ଏମିତି କଅଣ ହୋଟେଲ ଚଳେ ନା କଅଣ ?

ସନ୍ଧ୍ୟା ଆଠଟା ବାଜିଲା । ମିଃ ଧରିଆ ଫେରି ଆସିଲେଣି । ଡିନର୍ ପାଇଁ ଟେବୁଲ୍ ପ୍ରସ୍ତୁତ ହୋଇ ସାରିଲାଣି । କିନ୍ତୁ ଶୀଲୁ ପୋର୍ଟ୍‌ତଳେ ଜ୍ଞାରିନା ସାଙ୍ଗରେ ଗପି ଚାଲିଛି । ପ୍ଲମ୍ବର ଆସିଲା କି ନାହିଁ, ବାଥରୁମ୍‌ର ହଟ୍ ଆଣ୍ଡ କୋଲଡ୍ ସାୱାରରେ ସବୁବେଳେ ଗରମପାଣି ଆସୁଚି । କାଲି ପ୍ରଫେସର ଭେଙ୍କଟରମଣ ପୂରା ପୋଡ଼ି ଯାଇଥାନ୍ତେ । ଆଉ ତା' ଛଡ଼ା ହୋଟେଲରେ ଗୋଟାଏ ଫାଷ୍ଟ-ଏଡ୍-ବକ୍ସ ନଥିବ ? ଗୋଟାଏ ବର୍ଣ୍ଣଲ, ଗୋଟାଏ ଆଇଓଡେକ୍ସ ଶିଶି, ଗୋଟାଏ ରିଲାକ୍‌ସିଲ, ଟିକିଏ ତୁଳା, ଦି'ଖଣ୍ଡ ବ୍ୟାଣ୍ଡେଜ—ଏତିକି ରହିବନି ?

ଆଉ ଜାରିନା, କାଲି ଇଣ୍ଡିଆନ୍ ଅକ୍‌ସିଜେନ୍ କମ୍ପାନୀକୁ କେବଲ କରି ଜଣେଇ ଦିଅ ଦୁଇଟା ଅକ୍‌ସିଜେନ ସିଲିଣ୍ଡର ପାଇଁ । ଏଠିକାର ଡାକ୍ତରଖାନାର ଯାହା ଅବସ୍ଥା– ସେମାନଙ୍କ ଉପରେ ଡିପେଣ୍ଡ୍ କରାଯାଏନା ।

ଏଇ ହୋଟେଲ-ହୋଟେଲ ଖେଳରେ ମିଃ ଓ ମିସେସ୍ ଧରିଆଙ୍କର ଆନନ୍ଦର ଅନ୍ତ ନାହିଁ–ଦୁଃଖର ମଧ୍ୟ ସୀମା ନାହିଁ । ଶୀଲୁର ବୁଦ୍ଧି କେଡ଼େ ପ୍ରଖର, କଳ୍ପନା କେଡ଼େ ଉର୍ବର ! କାହିଁକି ସେମାନଙ୍କ ପରିବାରରେ ଏକ ଶିଶିର-ସିକ୍ତ ରଜନୀଗନ୍ଧା ପରି ଫୁଟିଲା ଶୀଲୁ, ଯାହା କାଲି ପ୍ରତ୍ୟୁଷର ପ୍ରଥମ ସୂର୍ଯ୍ୟକିରଣରେ ମ୍ଳାନ ହୋଇଯିବ । ସେଦିନ କଥା ମିଃ ଧରିଆଙ୍କର ମନେପଡ଼େ, ଯେଉଁଦିନ ସିଏ ପ୍ୟାରିସର ଡାକ୍ତରଖାନାରେ ଗଭୀର ଉତ୍କଣ୍ଠାର ସହିତ ପଦଚାରଣ କରୁଥିଲେ ଶୀଲୁର ବ୍ଲଡ଼ ରିପୋର୍ଟକୁ ଅପେକ୍ଷା କରି । ଡକ୍ଟର ବୋଭାଲୋ ବେଶ୍ ଚିନ୍ତିତ ହେଇ ତାଙ୍କର କକ୍ଷକୁ ପ୍ରବେଶ କଲେ ଏବଂ ମିଃ ଧରିଆଙ୍କୁ କହିଲେ, ''ମିଃ ଧରିଆ, ମୁଁ ଭଗବାନ୍‌ଙ୍କ ପାଖରେ ପ୍ରାର୍ଥନା କରୁଛି । ମୋର ଏ ଡାଇଗ୍‌ନୋସିସ୍ ଭୁଲ୍ ହଉ ।''

ସେଦିନ ଧରିଆ ଦମ୍ପତି ପ୍ରଥମ ଥର ପାଇଁ ଜାଣିଲେ ଯେ, ତାଙ୍କର ପୁଅ ଶୀଲୁ ହିମୋ-ଫିଲିଆ ରୋଗୀ । ଶୀଲୁର ଶରୀରରେ କୌଣସି ଦିନ ପ୍ରାକୃତିକ ଭାବରେ ରେଡ୍ ବ୍ଲଡ଼ କରପୋସ୍ୟୁଲ ତିଆରି ହବ ନାହିଁ । ତାକୁ କେବଳ ବଞ୍ଚି ରହିବାକୁ ପଡ଼ିବ କୃତ୍ରିମ ବ୍ଲଡ୍ ଟ୍ରାନ୍‌ସ୍‌ଫ୍ୟୁଜନ୍ ଦ୍ୱାରା । ଶିଶୁ ଅବସ୍ଥାରେ ଏଇ ଟ୍ରାନ୍‌ସ୍‌ଫ୍ୟୁଜନ୍ ହୁଏତ ପ୍ରୟୋଜନ ପଡ଼ିବ ତିନିଚାରି ମାସରେ ଥରେ, କିନ୍ତୁ ଶୀଲୁର ଶରୀର ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଏଇ ବ୍ଲଡ୍ ଟ୍ରାନ୍‌ସଫ୍ୟୁଜନ୍‌ର ବିରତି କାଳ ସଂକ୍ଷିପ୍ତରୁ ସଂକ୍ଷିପ୍ତତର ହେଇ ଆସିବ । ମିଃ ଧରିଆ ଏଇ ରୋଗ ବିଷୟରେ ଯଥେଷ୍ଟ ଲିଟ୍‌ରେଚର ଅଧ୍ୟୟନ କରିଛନ୍ତି । ସେ ଜାଣନ୍ତି ଯେ, ଏ ରୋଗରେ ଆକ୍ରାନ୍ତ ଶିଶୁ ବାର ଚଉଦ ବର୍ଷରୁ ବେଶି ବଞ୍ଚିବା ସମ୍ଭବ ନୁହେଁ । ଏହି ବୟସ ସୀମା ବୋଧହୁଏ ପୃଥିବୀରେ ତିନି ଚାରିଜଣ ରୋଗୀ ଅତିକ୍ରମ କରିପାରିଛନ୍ତି । ସେ ମଧ୍ୟ ଜାଣନ୍ତି ଯେ ସ୍ୱାମୀ ସ୍ତ୍ରୀଙ୍କର ଅସମ ବ୍ଲଡ୍ ଗ୍ରୁପିଙ୍ଗ୍ ଏଇ ଅସହାୟ ଶିଶୁ ପାଇଁ ଦାୟୀ । ସେହି ହେତୁ ଧରିଆ ଦମ୍ପତି ଅନ୍ୟ ଏକ ଶିଶୁକୁ ତାଙ୍କର ସଂସାର ଭିତରକୁ ଆଣିବା ପାଇଁ ଚିରଦିନ ପାଇଁ ବଞ୍ଚିତ ହେଇଛନ୍ତି ।

ସେଦିଦ ମିଃ ଧରିଆ ଘରକୁ ଫେରିଆସି ଶୀଲୁକୁ କୋଳକୁ ଟେକି ନେଇ କହିଥିଲେ, ''ବାବା, ବାହାରେ ଖେଳାବୁଲା କରିବା ପାଇଁ ଡାକ୍ତର ମନା କରିଛନ୍ତି ।'' ବାସ ସେତିକି, ଏବଂ ସେଦିନ ଏକ ରୁଦ୍ଧ କୋଠରୀ ଭିତରେ ମିଃ ଓ ମିସେସ୍ ଧରିଆ ପରସ୍ପରକୁ ଆଲିଙ୍ଗନା ବଦ୍ଧ ଅବସ୍ଥାରେ ହା-ହା କରି ଶ୍ରାବଣର ଆକାଶ ପରି ଉଚ୍ଚସ୍ୱରରେ କାନ୍ଦିଥିଲେ ଅନେକ ସମୟ ।

କିନ୍ତୁ ଶୀଲୁ ପାଇଁ ତା' ଆରଦିନର ସକାଳ ଥିଲା ଏକ ସାଧାରଣ ସକାଳ, ଯେକୌଣସି ଦିନର ସକାଳ ପରି । ପୌଷର ଖରା ତା'ର ଉଷୁମ ଛିଭରେ ପୃଥିବୀକୁ ଏକ ଛୋଟ ମାର୍ଜାର-ଶିଶୁ ପରି ଚାଟିଚୁଟି ଉଷୁମ କରି ଆଣୁଥିଲା । ଝାଙ୍କେ ଧଳାପାରା ହଠାତ୍ ଡେଣା ବାଢ଼େଇ ସୁନୀଳ ଆକାଶକୁ ଉଡ଼ିଗଲେ । ଦୁଇଟା ଶୁଖିଲା, ମାଟିଆ ପଣସପତ୍ର ବୃନ୍ତଚ୍ୟୁତ ହୋଇ ପବନରେ ହଲିହଲି ତଳେ ପଡ଼ିଗଲେ । ଝରକା ଆରପଟେ ହାତ-ପାଆନ୍ତାରେ ଗୋଟାଏ ଚିତ୍ରିତ ପ୍ରଜାପତି ଏକାଗ୍ର ଚିତ୍ତରେ ବସିରହି ତା'ର ଦୁଇ ବିଶାଳ-ପକ୍ଷୀକୁ ଖୋଲୁଚି, ବୁଜୁଚି—ଖୋଲୁଚି ବୁଜୁଚି । କିନ୍ତୁ ହାୟ ଶୀଲୁ । ତମପାଇଁ ସେ ପୃଥିବୀ ନିଷିଦ୍ଧ । ତମେ ଚିରଦିନ ଏଇ ଗବାକ୍ଷ ଦେଇ ବାହାର ପୃଥିବୀକୁ ଦେଖି ଦେଖି ଏକ ନିଶ୍ଚିତ ମୃତ୍ୟୁକୁ ଅପେକ୍ଷା କରି ଏଇ ରୁଦ୍ଧ କୋଠରୀ ଭିତରେ ବସି ରହିବ । ମୃତ୍ୟୁ ! ତମେ ଯେତେବେଳେ ଏଇ ନିରପରାଧ ସୁକୁମାର ନଧର ଶିଶୁ ଉପରେ ତମର ନିଷ୍ଠୁର ପଞ୍ଝା ସଙ୍କୁଚିତ କର ସେତେବେଳେ ତମ ଆଖିରେ ତମେ କଅଣ ଦେଇ ଅନ୍ଧ ପୁଟଳି ବାନ୍ଧ ? ତମର ପଞ୍ଝାର ସ୍ପର୍ଶ ଶକ୍ତି ଲୋପ କରିବାକୁ ତମେ କି ଅଞ୍ଜନ ବ୍ୟବହାର କର ?

କିନ୍ତୁ ଶୀଲୁ ବୁଝେନା ଯେ ଅନ୍ୟମାନଙ୍କ ପରି ତା'ର ଦେହରେ କ୍ଷତଜନିତ ସାମାନ୍ୟତମ ରକ୍ତସ୍ରାବ ହେଲେ ଅୟୁତ ଅୟୁତ ଆର୍.ବି.ସି. ନଷ୍ଟ ହୋଇଯାଏ, ଯାହାର ପ୍ରାକୃତିକ କ୍ଷତିପୂରଣ ଶୀଲୁର ଶରୀରରେ ଘଟେନା । ତେଣୁ ଶୀଲୁ ପ୍ରଥମେ ପ୍ରଥମେ ଅନ୍ୟ ଶିଶୁମାନଙ୍କ ପରି ଖେଳବୁଲ କରିବାକୁ, ସାଇକେଲ ଚଢ଼ିବାକୁ ଖୁବ୍ ଜିଦ୍ କରୁଥିଲା । କିନ୍ତୁ ଧୀରେ ଧୀରେ ଏଇ ନିଷେଧାଜ୍ଞା ତା'ର ଦିହସୁହା ହେଇଗଲାଣି । ସେ କେବଳ ଏତିକି ବୁଝେ ଯେ ସେ ଅସୁସ୍ଥ ଏବଂ ଏଥିପାଇଁ ସେ ସାଧାରଣ ଶିଶୁପରି ଖେଳବୁଲ୍ କରିପାରିବ ନାହିଁ । ତେଣୁ ଚିର-ସହଚରୀ ଝାରିନା ସହିତ ଏଇ ହୋଟେଲ-ହୋଟେଲ ଖେଳ, ଏଇ ଆକାଶ-କୁସୁମ ତୋଳିବାର ଆତ୍ମ-ପ୍ରତାରଣା ।

ହୋଟେଲ୍ ଚାଲିଚି ପୂରା ଦମ୍‌ରେ । ସାତଶହ ବେଡ୍ ବିଶିଷ୍ଟ ଏଇ ହୋଟେଲରେ ତିଳ ଧାରଣ କରିବା ପାଇଁ ସ୍ଥାନ ନାହିଁ । ବୋର୍ଡ଼ରମାନେ ଫେରି ଯାଉଛନ୍ତି । ଶୀଲୁର ଗର୍ବର ସୀମା ନାହିଁ—ହୋଟେଲ ମ୍ୟାନେଜ୍ କରିଜାଣିଲେ ହୁଏ । ଲୋକମାନଙ୍କୁ ଆରାମରେ ରଖିବାକୁ ପଡ଼ିବ—ସେମାନେ ଆସିଛନ୍ତି ପଇସା ଖର୍ଚ୍ଚ କରିବାକୁ, ତମ ସାଙ୍ଗରେ ଝକ୍‌ଝକ୍ କରିବା ପାଇଁ ନୁହଁ । ୟା' ଭିତରେ ହୋଟେଲରେ ଆଉ ଦୁଇଜଣ ଲେଡ଼ି ରିସେପ୍‌ସନିଷ୍ଟ ମୁକରୀର ହେଇ ସାରିଲେଣି । ଜଣେ ବୋର୍ଡ଼ରମାନଙ୍କର ଟ୍ରେନ୍ ଆଉ ପ୍ଲେନରେ ଜାଗା ରିଜରଭେସନ୍ କରିବା ଆଉ ଜଣେ କେବଳ ରହିବ ଖବର ଦବା ପାଇଁ । ବମ୍ବେ ମେଲ କେତେଟାରେ ଛାଡ଼େ ? ନେପାଳର ଆଫ୍‌ଟରନୁନ୍ ଫ୍ଲାଇଟ୍ କେତେବେଳେ ? ସିଟି କଲେଜ ପ୍ରିନ୍‌ସପାଲ୍‌ଙ୍କ ନମ୍ବର କେତେ ? ସୁପର ମାର୍କେଟ ରବିବାରରେ ବନ୍ଦଥାଏ ନାଁ ଖୋଲା ? ଗୋଟାଏ ମେସେଜ ନିଅନ୍ତୁ, କେବ୍‌ଲ କରି

ପଠେଇ ଦେବେ ନ୍ୟୁୟର୍କକୁ । କ୍ୱେରି-କ୍ୱେରି-କ୍ୱେରି, ହଜାର ପ୍ରଶ୍ନ । ତା'ର ଠିକ୍ ଠିକ୍ ଜବାବ୍ ଦବାକୁ ହବ ।

ଶୀଲୁର ଜୀବନ ଦିନ ପରେ ଦିନ ଜାରିନା, ଆଉ ତା'ର ହୋଟେଲକୁ ନେଇ ଗଡ଼ି ଚାଲିଯାଏ । ଧରିଆ ଦମ୍ପତିଙ୍କର ଜୀବନରେ ଯେପରି ଗୋଟଏ ଦିନରେ ଗୋଟାଏ ଯୁଗ ବିତି ଯାଉଛି । ବ୍ଲଡ୍ ଟ୍ରାନ୍ସ୍‌ଫ୍ୟୁଜନ୍‌ର ସେଇ ଅବଶ୍ୟମ୍ଭାବୀ ଫ୍ରିକ୍ୱେନ୍‌ସି ବଢ଼ିଚାଲିଛି । ଡଃ ଜ୍ୟାକିରିଆ ପ୍ରାୟ ପ୍ରତିଦିନ ଆସୁଛନ୍ତି ଚେକ୍-ଅପ୍ ପାଇଁ । ଟ୍ରାନସ୍‌ଫ୍ୟୁଜନ୍ ପ୍ରାୟ ପନ୍ଦର ଦିନରେ ଥରେ ପ୍ରୟୋଜନ ପଡୁଛି ।

ଶୀଲୁ କ୍ଳାନ୍ତ ଦେଖାଯାଉଛି । ତା'ର ଆଖିପତା ତଳେ ଗୋଟାଏ ପେଜୁଆ ରଙ୍ଗର ପଲେପ । ତା'ର ରଙ୍ଗ ଧୀରେ ଧୀରେ କେମିତି ଗମରା ଗହମପରି ହେଇ ଆସିଲାଣି । ସେ ସମସ୍ତଙ୍କୁ କୁହେ ଯେ ତା'ର ଅନେକ କାମ ପଡୁଛି । ଏତେବଡ଼ ହୋଟେଲଟାକୁ ମ୍ୟାନେଜ୍ କରିବା କଅଣ ସହଜ ? ମଣିଷ କ୍ଳାନ୍ତ ହେଇ ପଡ଼ିବନି ? ମିଃ ଧରିଆ ଓ ମିସେସ୍ ଧରିଆ ଖାଇବା ଟେବୁଲ ଉପରେ ବସି ଶୀଲୁ କଥାର ଜବାବରେ କୁହନ୍ତି, ''ଟ୍ରୁ, ଭେରି ଟ୍ରୁ ।'' ମିଃ ଧରିଆଙ୍କର କଣ୍ଠନଳୀରେ କଅଣ ଗୋଟଏ ଅଟକି ଯାଏ । ସେ ଚଷମାଟାକୁ ବାଁ ହାତରେ କାଢ଼ିନେଇ ସଫାକରିବା ବାହାନରେ ଆଖି ମଧ୍ୟ ପୋଛି ନିଅନ୍ତି । ଆଜିବି ଆଖିରେ ଗୋଟାଏ କଅଣ ଗୁଣ୍ଡ ପଡ଼ିଗଲା ବୋଧହୁଏ । ଆଜିକାଲି ଶୀଲୁର ଉପସ୍ଥିତିରେ କେତେବେଳେ ମିଃ ଧରିଆ ବା କେତେବେଳେ ମିସେସ୍ ଧରିଆଙ୍କର ଆଖିରେ ପ୍ରାୟତଃ ଗୁଣ୍ଡ ପଡ଼ିଥାଏ ।

ଶୀଲୁକୁ ଡାକ୍ତର ଉପଦେଶ ଦେଇଛନ୍ତି ବେଡ୍‌ରେଷ୍ଟ୍ ପାଇଁ । ଏତେ ଟିକିଏ ବି ହଲଚଲ୍ ହବ ନାହିଁ । ସେଇ ଶୋଇବା ଅବସ୍ଥାରେ ଶୀଲୁର ହାତରେ ଫୋଡ଼ା ଚାଲିଛି ଅସଂଖ୍ୟ ପ୍ରିକ୍ । ଶୀଲୁର ଧମନୀ ଭିତରକୁ ଭର୍ତ୍ତି କରାଯାଉଛି ଲିଟର ଲିଟର ରକ୍ତ । କିନ୍ତୁ ତଥାପି ଶୀଲୁ ଅବସନ୍ନ, ଶୀଲୁ କ୍ଳାନ୍ତ ଓ ଶୀଲୁର ଆଖିତଳେ ସେଇ ପେଜୁଆ ରଙ୍ଗର ପଲେପ ।

କିନ୍ତୁ ହୋଟେଲର କାମ ବନ୍ଦ ନାହିଁ । ଶୀଲୁର ବିଛଣା ପାଖରେ ଜାରିନା ହୋଟେଲର ଟିକିନିଖି ସବୁ ଖବର ଆଣି ଦଉଛି, ଚିଠି ଡିକ୍‌ଟେସନ୍ ନଉଛି ଏବଂ ହୋଟେଲର ଟଙ୍କା ପ୍ରତିଦିନ ନେଇ ଲିଅନ୍ ବ୍ୟାଙ୍କ୍‌ରେ ଜମା ଦଉଛି । ଆଜିକାଲି ଜାରିନା କେମିତି ମନମୋଟି ହେଇଗଲାଣି, ଡାକିଲେ ହଠାତ୍ ପାଖକୁ ଆସେ ନାହିଁ । ଏତେ ସମୟ କଅଣ କରେ ସିଏ ? ପାଖକୁ ଆସିଲେ ଦେଖାଯାଏ ସବୁବେଳେ ଜାରିନାର ଆଖିଦି'ଟା ଲାଲ୍ ଲାଲ୍ । ତା' ଆଖିରେ ବି ଗୁଣ୍ଡ ପଡୁଚି ନା କଅଣ ?

ସେଦିନ ସକାଳେ ଶୀଲୁ ନିସ୍ତେଜ୍ ହୋଇ ଶୋଇ ରହିଛି । ହୋଟେଲ କଥା ବୁଝିବାକୁ ଆଉ ଯେମିତି ସ୍ପୃହା ତା'ର ନାହିଁ, କିପରି ଅସ୍ୱସ୍ତି ଅନୁଭବ କରୁଛି । ମିସେସ୍

ଧରିଆ ବିଛଣା କରରେ ବସିରହିଛନ୍ତି । ମିଃ ଧରିଆ ଅଫିସ ନ ଯାଇ ଡକ୍ଟର ଜ୍ୟାକିରିଆଙ୍କର ଆଗମନକୁ ଉତ୍କଣ୍ଠାର ସହିତ ଅପେକ୍ଷା କରୁଛନ୍ତି । ଜ୍ଞାରିନ୍ନା ଗୋଟାଏ ଦୁଆର ବନ୍ଧକୁ ଆଉଜି ଠିଆ ହେଇ ରହିଛି । କେତେ ସମୟ ହେଲାଣି କେଜାଣି ? ଆଜି କ'ଣ ଲଞ୍ଚ୍ ଟେବୁଲ୍ ଲେ' ଆଉଟ୍ କରାହେବନି ? ସମୟ ଯେପରି ସ୍ଥିର ହେଇଯାଇଛି ଖାଁ ଖାଁ ଖରାଦିନ ଦ୍ୱିପହରର ସମୟହୀନ ସମୟ ପରି । ଠିକ୍ ଏଇ ସମୟରେ ମୃତ୍ୟୁ ଏକ ଅତିକାୟ ବାଦୁଡ଼ିର କଳା ଡେଣା ବିସ୍ତାର କରି ଓହ୍ଲାଉଥିଲା ଧରିଆ ପରିବାରର ଛାତ ଉପରେ । ତା'ର ସ୍ପର୍ଶରେ ଧରିଆ ପରିବାରର ଛାତ ପାଣିପରି ତରଳ ହେଇଗଲା ଏବଂ ମୃତ୍ୟୁ ଯେତେବେଳେ ଶ୍ରୀଲୁ ଧରିଆର ଏଗାର ବର୍ଷର ଶୀର୍ଣ୍ଣ, ରକ୍ତହୀନ, ଅସହାୟ ଶରୀର ଉପରେ ଅବତରଣ କଲା, ସେତେବେଳେ ଘଣ୍ଟାରେ ବାଜିଥିଲା ତିନିଟା ପଇଁଚାଳିଶ ମିନିଟ୍ ।

ସଂଲଗ୍ନ ଘରେ କଫିନ୍ ପ୍ରସ୍ତୁତ ହୋଇ ସାରିଥିଲା । ଜ୍ଞାରିନ୍ନା ଘରର ଛାତ ଉପରକୁ ଚାଲିଗଲା । ସେଠାରୁ ସେମାନଙ୍କର ବହୁତଳ ବିଶିଷ୍ଟ ହୋଟେଲ ଅଲିମ୍ପିଆ ସ୍ପଷ୍ଟ ଦେଖାଯାଏ । ଆଜି ବି ଠିଆ ହେଇ ହେଇ ଜ୍ଞାରିନ୍ନା ସେ ହୋଟେଲକୁ ପ୍ରତ୍ୟକ୍ଷ କରୁଥିଲା । ଜ୍ଞାରିନ୍ନାର ଅନେକ କାମ ବାକୀ ଅଛି । ହୋଟେଲର ବେହେରା, ଅର୍ଡ଼ରଲୀ, ବବୁର୍ଚ୍ଚି ସମସ୍ତଙ୍କୁ ହୋଟେଲ ଛାଡ଼ି ଚାଲିଯିବା ପାଇଁ ଏକ ମାସ ନୋଟିସ୍ ଦିଆଯିବ । ସେମାନଙ୍କର ଦରମା ଓ ଗ୍ରାଚୁଇଟି ହିସାବ କରାଯିବ ଏବଂ ଠିକ୍ ମାସକ ପରେ ହୋଟେଲର କର୍ମଚାରୀ ଓ ବୋର୍ଡ଼ର୍ ସମସ୍ତେ ହୋଟେଲ ଖାଲିକରି ଚାଲିଯିବେ । ବଡ଼ ବଡ଼ ଅକ୍ଷରରେ ଗୋଟାଏ ବୋର୍ଡ଼ର୍ ସମସ୍ତେ ହୋଟେଲ ଖାଲିକରି ଚାଲିଯିବେ । ବଡ଼ ବଡ଼ ଅକ୍ଷରରେ ଗୋଟାଏ ବୋର୍ଡ଼ରେ ଲେଖାଯିବ "ହୋଟେଲ୍‌ର ମାଲିକ ଶ୍ରୀଲୁ ଧରିଆଙ୍କର ମୃତ୍ୟୁରେ ହୋଟେଲ୍ ଅଲିମ୍ପିଆ ଚିରଦିନ ପାଇଁ ବନ୍ଦ ହୋଇଗଲା । ଆମର ପ୍ୟାଟ୍ରନମାନଙ୍କର ଅସୁବିଧା ପାଇଁ ଆମେ ଅତ୍ୟନ୍ତ ଦୁଃଖିତ ।"

ଜ୍ଞାରିନ୍ନାର ମନେହେଲା ଯେପରି ସେହି ଅନ୍ତିମ ଦିବସରେ ସିଏ ସେହି ବୋର୍ଡ଼ ପାଖରେ ଠିଆ ହେଇ ରହିଛି । ତା' ଉପରକୁ କାହିଁ କେତେ ଉପରକୁ ଉଠିଛି ବହୁତ ତଳ ବିଶିଷ୍ଟ ହୋଟେଲ ଅଲିମ୍ପିଆ ଏବଂ ହୋଟେଲର ପ୍ରସ୍ଥାନ ଦ୍ୱାରା ଦେଇ ସର୍ବଶେଷ ବୋର୍ଡ଼ର ଜଣକ ଖଣ୍ଡେ ଭି.ଆଇ.ପି. ଆଟାଚି ଧରି ବାହାରି ଯାଉଯାଉ ହୋଟେଲର ଏକମାତ୍ର ଅବଶିଷ୍ଟ କର୍ମଚାରୀ ଜ୍ଞାରିନ୍ନା ହାତରେ ତାଙ୍କ ରୁମ୍‌ର ଚାବିଟାକୁ ଦେଇଗଲେ । ଜ୍ଞାରିନ୍ନା ଆଖି ଆଗରେ ହୋଟେଲର ଭି.ଆଇ.ପି. ଟ୍ୟାକ୍‌ସି ଏକୁଟିଆ ବୋର୍ଡ଼ରଟିକୁ କୋଳରେ ନେଇ ରାସ୍ତା ମୋଡ଼ରେ ଅଦୃଶ୍ୟ ହୋଇଗଲା ।

*(ଶାରଦୀୟ ସଂଖ୍ୟା 'ଝଙ୍କାର' ୧୯୭୭)*



# ସୁବର୍ଣ୍ଣମୟୀ ଉପାଖ୍ୟାନ

ସେହି ସେହି ସମୟମାନଙ୍କରେ ସମାନ୍ତବାଦକୁ ଏକ ଅବକ୍ଷୟମାନ ସାମାଜିକ ବ୍ୟବସ୍ଥା ବୋଲି ଚିନ୍ତା ମଧ୍ୟ କରାଯାଉ ନଥିଲା । ତାହା ପ୍ରତିଷ୍ଠିତ ଥିଲା ଏକ ଗତାନୁଗତିକ କୃଷିଭିତ୍ତିକ, ଅପରିବର୍ତ୍ତନୀୟ ସାମାଜିକ ପରମ୍ପରା ଉପରେ । ସେହି ବ୍ୟବସ୍ଥାରେ ଯେତେବେଳେ ଶତକଡ଼ା ପଞ୍ଚାନବେ ଲୋକ ଭୂମିହୀନ ରହିବା ଅବସ୍ଥାକୁ କେହି ଆଶ୍ଚର୍ଯ୍ୟ ମଣୁ ନଥିଲେ, ସେତେବେଳେ ଗଜରାଜପୁର ମୌଜାର ଜମିଦାର ଶ୍ରୀଲୋକନାଥ ରାୟଙ୍କର ବିପୁଳ ସମ୍ପତ୍ତି, ବିପୁଳାୟତନ ପ୍ରାସାଦ ଓ ମାଇଲ ମାଇଲ ବ୍ୟାପୀ ଧାନବିଲର ମାଲିକାନା କାହିଁକି ବା କାହାକୁ ଆଶ୍ଚର୍ଯ୍ୟ ବୋଧ ହୋଇଥାଆନ୍ତା ?

ଶ୍ରୀଲୋକନାଥ ରାୟ ଏକ ବିରାଟ ଅବିଭକ୍ତ ହିନ୍ଦୁ ପରିବାରର ସର୍ବମୟ କର୍ତ୍ତା ଏବଂ ତାଙ୍କର ହୁକୁମ୍‌ରେ ଖାଲି ଗଜରାଜପୁର କାହିଁକି, ଆଖ ପାଖ ପାଞ୍ଚ ଛଅ ଖଣ୍ଡି ମଉଜାର ଲୋକମାନଙ୍କର ଜୀବନଯାତ୍ରା ନିୟନ୍ତ୍ରିତ ହେଉଥିଲା । ବେଶ୍ କିଛି ସଂଖ୍ୟାର ଲୋକ ରାୟ ପରିବାରର କୋଠିଅ, ମୂଲିଆ ଓ ହଳିଆ ରୂପେ ମୁତୟନ ଥିଲେ ମଧ୍ୟ ବହୁ ଅଧିକ ସଂଖ୍ୟକ ଲୋକ ତାଙ୍କର ଭାଗଚାଷୀ ଥିଲେ । ସେ ଅଞ୍ଚଳର କୌଣସି ନ୍ୟାୟ ନିଶାପ ବା ଯାନିଯାତ୍ରା ରାୟଙ୍କର ଆଶୀର୍ବାଦଭିନ୍ନ ଘଟିତ ହବା ସମ୍ଭବପର ନଥିଲା ।

ତେଣୁ ଲୋକନାଥ ରାୟ ତାଙ୍କର ଏକମାତ୍ର ଦୁହିତା ସୁବର୍ଣ୍ଣ କୁମାରୀ ଦେବୀଙ୍କୁ ବିବାହ ଦବା ପାଇଁ ଯେ ନିକଟରେ କୌଣସି ବନ୍ଧୁ ଘରର ସନ୍ଧାନ ପାଇ ନଥିଲେ, ଏହା ମଧ୍ୟ ଅତ୍ୟନ୍ତ ସ୍ୱାଭାବିକ କଥା । ତାଙ୍କର ପ୍ରଥମ ସର୍ତ୍ତ ଥିଲା ଯେ ତାଙ୍କର ବନ୍ଧୁ ତାଙ୍କ ପରି ପ୍ରଭୁତ ବିତ୍ତଶାଳୀ ନହେଲେ ମଧ୍ୟ ଅନ୍ୟୂନ ସ୍ୱଚ୍ଛଳ ଅବସ୍ଥାର ଲୋକ ହେଇଥିବା ଉଚିତ୍, ଯାହାଙ୍କର ବଂଶ ପରମ୍ପରା ତାଙ୍କୁ ରାୟ-ପରିବାରର ବୁନିଆଦି ସହିତ ସମସ୍କନ୍ଧ କରିପାରିବ । ପ୍ରଥମ ସର୍ତ୍ତ ପୂରଣ ହେଇ ସାରିବା ପରେ ଜାମାତାର ରୂପ ଗୁଣ ଓ ବିଦ୍ୟା ପରବର୍ତ୍ତୀ ପର୍ଯ୍ୟାୟର କଥା । ତେଣୁ ତାଙ୍କୁ ସୁଦୂର ଅଗରପଡ଼ାର ମର୍ଦ୍ଧରାଜବଂଶ ସହିତ ବନ୍ଧୁ ବାନ୍ଧିବାକୁ ପଡ଼ିଥିଲା । ଜାମାତା ପ୍ରତାପ ମର୍ଦ୍ଧରାଜ ଦେଖିବାକୁ ସୁପୁରୁଷ ଥିଲେ ଓ ରେଭେନ୍‌ସା କଲେଜରେ ଆଇ.ଏ. ପର୍ଯ୍ୟନ୍ତ ପଢ଼ି ଉଚ୍ଚ ଶିକ୍ଷିତ ମଧ୍ୟ ଥିଲେ । ଏବଂ ସେମାନଙ୍କର ମୌରସୀ ସମ୍ପତ୍ତିର ବାର୍ଷିକ ଆୟ ସେମାନଙ୍କର ଖର୍ଚ୍ଚ ତୁଳନାରେ ଯଥେଷ୍ଟ ଅଧିକ ଥିଲା । କଟକ ସହରରେ ଅଧ୍ୟୟନ

କରୁଥିବା ବେଳେ ପ୍ରତାପ ମର୍ଦ୍ଦରାଜ ଏକ ସ୍ୱତନ୍ତ୍ର ଗୃହ ଭଡ଼ା ନେଇ ଦାସଦାସୀମାନଙ୍କ ଗହଣରେ ରହି ଏକ ଅଭିଜାତ ଗୃହର ସନ୍ତାନର ଏପରି ପ୍ରଚୁର ପରିଚୟ ଦେଇଥିଲେ ଯେ ତାଙ୍କର ଓ ତାଙ୍କ ବଂଶର ମର୍ଯ୍ୟଦା ଓ ଖ୍ୟାତିର ପରାକାଷ୍ଠା ଓଡ଼ିଶାର ବିଭିନ୍ନ ଅଭିଜାତ ପରିବାରକୁ ଅଜଣା ନଥିଲା । ପ୍ରବଳ ପ୍ରତାପୀ ଲୋକନାଥ ରାୟଙ୍କର ଏକମାତ୍ର ଅଲିଅଳ କନ୍ୟା ସୁବର୍ଣ୍ଣ କୁମାରୀଙ୍କର ବିବାହ ପ୍ରସ୍ତାବ ଯେତେବେଳେ ମର୍ଦ୍ଦରାଜ ପରିବାରର କର୍ଣ୍ଣଗୋଚର ହେଲା, ସେ ପ୍ରସ୍ତାବକୁ ସେମାନେ ଅତ୍ୟନ୍ତ ଆନନ୍ଦ ସହକାରେ ସ୍ୱାଗତ କରିଥିଲେ; ସୁବର୍ଣ୍ଣମୟୀଙ୍କ ପାଇଁ ନୁହେଁ, ସୁବର୍ଣ୍ଣମୟୀଙ୍କର ପଛେ ପଛେ ଆସିବାର ସମ୍ଭାବନା ଥିବା ପ୍ରଭୂତ ପରିମାଣର ଯୌତୁକର ଆଶାରେ ।

ବିବାହ ସମୟରେ ଲୋକନାଥ ରାୟଙ୍କର ଆୟୋଜନରେ ସାମାନ୍ୟତମ ତ୍ରୁଟି ବା କାର୍ପଣ୍ୟ ପରିଲକ୍ଷିତ ହୋଇ ନଥିଲା ଏବଂ ଭୂରି ଭୋଜନ ପରେ ବିବାହ ଭୋଜୀରୁ ଫେରୁଥିବା ଆଖପାଖ ପାଞ୍ଚଖଣ୍ଡ ଗାଁର ଲୋକେ ଯେତେବେଳେ ଧନ୍ୟ ଧନ୍ୟ କହି ନିଜ ନିଜ ଗାଁକୁ ଫେରୁଥିଲେ ସେତେବେଳେ ସୁବର୍ଣ୍ଣମୟୀଙ୍କୁ ବିଦାୟ ଦବା ପାଇଁ ଲୋକନାଥ ରାୟ ଏକାଧାରରେ ବ୍ୟସ୍ତ ଓ କୁଣ୍ଠିତ ହୋଇ ପଡୁଥିଲେ। ମୃତଦାର ଲୋକନାଥ ରାୟ ଏକାଧାରରେ ବ୍ୟସ୍ତ ଓ କୁଣ୍ଠିତ ହୋଇ ପଡୁଥିଲେ । ମୃତଦାର ଲୋକନାଥ ରାୟଙ୍କର ସ୍ନେହହୀନ, ଏକୁଟିଆ ଜୀବନରେ ସୁବର୍ଣ୍ଣମୟୀ ସହିତ ଯାଇଥିବା ପ୍ରଭୂତ ପରିମାଣର ସ୍ୱର୍ଣ୍ଣାଳଙ୍କାର ଓ ଅନ୍ୟାନ୍ୟ ଯୌତୁକ ଦ୍ରବ୍ୟ ମର୍ଦ୍ଦରାଜ ପରିବାରକୁ ଆଶାତୀତ ଭାବରେ ଆମୋଦିତ କରିଥିଲା । ରାଜକନ୍ୟା ଓ ଅର୍ଦ୍ଧେକ ରାଜ୍ୟ, ଏହାହିଁ ପ୍ରତାପ ମର୍ଦ୍ଦରାଜଙ୍କ ପରି ଯୋଗ୍ୟ ଜାମାତାଙ୍କର ନ୍ୟାର୍ଯ୍ୟ ପ୍ରାପ୍ୟ ଥିଲା ।

କିନ୍ତୁ ଏହି ନାଟକର ନାୟିକା ସୁବର୍ଣ୍ଣମୟୀଙ୍କର ଏ ସମସ୍ତ ବ୍ୟାପାରରେ ଜ୍ଞାନ ଅଳ୍ପ କିଛି ଥିଲେ ହେଁ ସଚେତନତା ଥିଲା ତତୋଽଧିକ ସ୍ୱଳ୍ପ । ତାଙ୍କ ପିତା ଲୋକପାଥ ରାୟଙ୍କର ସଂପତ୍ତି ବା ଦେଇଥିବା କନ୍ୟାସୁନା ବା ତାଙ୍କର ଭାବୀ ପତିଙ୍କର ଆର୍ଥିକ ଓ ପଠନ ଯୋଗ୍ୟତା ସଂପର୍କରେ ସୁବର୍ଣ୍ଣମୟୀ ସଂପୂର୍ଣ୍ଣ ଅଜ୍ଞ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ତତ୍‌କାଳୀନ ସମାଜ ପରମ୍ପରା ଅନୁଯାୟୀ ସୁବର୍ଣ୍ଣମୟୀ, ପିତାଙ୍କ ଆଦେଶରେ ଏକ ଅଜଣା ଅଶୁଣା ଅନ୍ଧକୂପ ଭିତରକୁ ଲମ୍ଫ ପ୍ରଦାନ କରିଥିଲେ । କିଏ ତାଙ୍କର ସ୍ୱାମୀ, ସିଏ କେଉଁଣ ସ୍ଥାନରେ ଅବସ୍ଥାନ କରନ୍ତି, ତାହା ତାଙ୍କର ଅଗୋଚର ଥିଲା ।

ସେ କେବଳ ଶିବିକା ଭିତରେ ବସି ଗୋଟିଏ ଦାସୀ ସାହଚର୍ଯ୍ୟରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ସୁଦୀର୍ଘ ପଥ ସ୍ଥାନାନ୍ତରିତ ହେଉଥିଲେ । ତାଙ୍କ ଆଗରେ କିଏ କିଏ ଯାଉଥିଲେ ବା ତାଙ୍କ ପଛେ ପଛେ କେତୋଟି ମାଲବାହୀ ଶକଟ ଅନୁଧାବନ କରୁଥିଲେ, ସେ କଥା ଜାଣିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ବେଳେବେଳେ ଶୃଙ୍ଖଳା

ଠୋ' ଠୋ' ଧାନକ୍ଷେତ ବା କେତେବେଳେ ବଣଲଟା ଓ ପୁଣି କେତେବେଳେ ଛାୟାଘନ ଆମ୍ବତୋଟା ଭିତର ଦେଇ ତାଙ୍କର ଶିବିକା ଚାଲିଥିଲାବେଳେ ଶିବିକା ଦ୍ୱାରକୁ ସାମାନ୍ୟ ଉନ୍ମୁକ୍ତ କରି ସୁବର୍ଣ୍ଣମୟୀ ତାଙ୍କର ଅନିଶ୍ଚିତ ଭବିଷ୍ୟତ କଥା ଚିନ୍ତାକରି ଅନ୍ୟମନସ୍କ ହୋଇ ଉଠୁଥିଲେ । କେତେ ସମୟ ପରେ ଶିବିକା-ବାହକମାନେ ସାମାନ୍ୟ ବିଶ୍ରାମ ନେଇ ପୁଣି ଶିବିକା କାନ୍ଧ ଉପରକୁ ଟେକି ଏକ ନୂତନ୍ ଉତ୍ସାହରେ ଯୌଥ କଣ୍ଠରେ ଡାକୁଥିଲେ, ''ହୁମର ଭାଇରେ—ଚାଲ ଜୋରେ, ହୁମର ଭାଇରେ ଚାଲ୍ ଜୋରେ'' ଏବଂ ଶିବିକା-ବାହକମାନଙ୍କର ଏଇ ଯୌଥ ଏକତାଳୀ ଉଚ୍ଚାରଣ ଗ୍ରାମ ସୀମାନ୍ତମାନଙ୍କରେ ଅସଂଖ୍ୟ ନରନାରୀଙ୍କର କୌତୁହଳକୁ ଉଦ୍ଦୀପ୍ତ କରୁଥିଲା । ଅଗରପଡ଼ା ପହଞ୍ଚିବା ପାଇଁ ଥିଲା ଦୁଇଦିନର ରାସ୍ତା ଓ ତାହା ଶିବିକା-ନିବଦ୍ଧ ସୁବର୍ଣ୍ଣମୟୀଙ୍କ ପାଇଁ ସ୍ୱାଭାବିକ ଭାବେ ଅତ୍ୟନ୍ତ କ୍ଳାନ୍ତିକର ଥିଲା ।

ଗନ୍ତବ୍ୟ ସ୍ଥାନରେ ପହଞ୍ଚିବାବେଳକୁ ନବ ବିବାହିତ ଦମ୍ପତିଙ୍କୁ ସ୍ୱାଗତ୍ କରିବା ପାଇଁ ସଜ୍ଜିତ ତୋରଣ, ଆଲୋକ ସଜ୍ଜା ଓ ବାଦ୍ୟରୋଳ ଭିତରେ ମର୍ଦ୍ଦରାଜ ପରିବାର ସେମାନଙ୍କର ସାଧ ଅନୁଯାୟୀ ପ୍ରଚୁର ଆୟୋଜନ କରିଥିଲେ । କିନ୍ତୁ ନବବଧୂ ସୁବର୍ଣ୍ଣମୟୀଙ୍କର ତାହା ଦେଖିବାର ଅବକାଶ ମଧ ନଥିଲା । ସେ ଗୋଟିଏ ନାତିପ୍ରଶସ୍ତ ପ୍ରକୋଷ୍ଠରେ ଅହରହ ମର୍ଦ୍ଦରାଜ ପରିବାରର ଅନ୍ତେବାସୀ ତଥା ସାଇ, ପଡ଼ିଶାର ଅସୁମାରୀ ସ୍ତ୍ରୀ ଲୋକମାନଙ୍କ ଦ୍ୱାରା ବେଷ୍ଟିତା ହୋଇ ବନ୍ଦିନୀ ଥିଲେ ଓ ଥରକୁ ଥର ତାଙ୍କର ମୁହଁ, ଗୋଡ଼ହାତ ଓ ବେକରେ ଲଗେଇଥିବା ବିଭିନ୍ନ ଅଳଙ୍କାର ସବୁ ତନଖି କରାଯାଉଥିଲା । ମଝିରେ ମଝିରେ ଦିଆଯାଉଥିବା ଅସଂଖ୍ୟ ଟିପ୍ପଣୀ ସବୁକୁ ଏକାଠି କଲେ ତା'ର ସାରମର୍ମ ହେବ, ଯେ ବାପ ଝିଅକୁ ଯାହା ଦେଇଛି, ତାହା ଖାଣ୍ଟି ଜୟପୁରୀ ସୁନା ଓ ଝିଅଟି ତାଙ୍କର ଏକମାତ୍ର ଝିଅ ନ ହେଇଥିଲେ ଏତେ ପ୍ରଚୁର ପରିମାଣର ଗହଣା ଦବା ସଚରାଚର ଦେଖିବା ଦୁର୍ଲଭ । ଏଇ ସୁବର୍ଣ୍ଣ ପ୍ରାଚୁର୍ଯ୍ୟ ଭିତରେ ସମବେତ ଅନିସନ୍ଧିତ୍ସୁମାନେ ଗୋଟିଏ କଥା ଅନୁଭବ କରୁଥିଲେ ମଧ ଉଚ୍ଚାରଣ କରିପାରି ନଥିଲେ, ତାହା ହେଲା ସୁବର୍ଣ୍ଣମୟୀ ଥିଲେ ଈଷତ୍ କୃଷ୍ଣକାୟା ଓ ପ୍ରାୟ ଅସୁନ୍ଦରୀ କହିଲେ ଅତ୍ୟୁକ୍ତି ହେବ ନାହିଁ ।

କିନ୍ତୁ ଯଥା ସମୟରେ ମଧୁଶଯ୍ୟା ରାତ୍ରିର ସମସ୍ତ ବାହ୍ୟ ସାଜସଜ୍ଜା ସତ୍ତ୍ୱେ ଏକ କମ୍ପିତ ପ୍ରଦୀପ ଶିଖାର କ୍ଷୀଣ ଆଲୋକରେ ସୁବର୍ଣ୍ଣମୟୀଙ୍କର ମଳିନ ରୂପ, ଚତୁର ପ୍ରତାପ ମର୍ଦ୍ଦରାଜଙ୍କର ଆଖିକୁ ଏଡ଼ାଇ ଯାଇ ପାରି ନଥିଲା । ମର୍ଦ୍ଦରାଜ ପରିବାରକୁ ବଡ଼ବୋହୂ ହେଇ ଆସିବାର ଦାୟିତ୍ୱ ନେଇ ପ୍ରତାପ ମର୍ଦ୍ଦରାଜ ସେଦିନ ରାତିରେ ସୁବର୍ଣ୍ଣମୟୀଙ୍କୁ ଏକ ସଂକ୍ଷିପ୍ତ ଉପଦେଶ ଶୁଣାଇ ଥିଲେ ସତ, କିନ୍ତୁ ସୁବର୍ଣ୍ଣମୟୀଙ୍କର ଅନୂଢ଼ା ଜୀବନର ଏକ ବହୁ ପ୍ରତୀକ୍ଷିତ ରାତ୍ରି ସେଦିନ ବିଡ଼ମ୍ବିତ ହୋଇଥିଲା ।

କିନ୍ତୁ ସୁବର୍ଣ୍ଣମୟୀଙ୍କ ଜୀବନରେ ଯେ ଏହି ଘଟଣା ନୂତନ କରି ଘଟିଲା ଏପରି ନୁହେଁ । ତାହା ଥିଲା ତତ୍‌କାଳୀନ ସାମନ୍ତବାଦୀ ମୂଲ୍ୟବୋଧର ଏକ ଅପରିହାର୍ଯ୍ୟ ପରିଶିଷ୍ଟ । ଅନେକ ସୁନ୍ଦରୀ, ଅନିନ୍ଦ୍ୟ ସୁନ୍ଦରୀ ସୁବର୍ଣ୍ଣମୟୀମାନଙ୍କର ମଧୁଶଯ୍ୟା ରାତ୍ରି ମଧ୍ୟ ବିଡ଼ମ୍ବିତ ହୋଇଛି । ତାହା ଥିଲା ସମସାମୟିକ ସ୍ୱୀକୃତ ପରମ୍ପରା ।

ପ୍ରତିଟି ସଂଭ୍ରାନ୍ତ ବଂଶରେଗୋଟିଏ ଚଉପାଢ଼ୀ ବା ବାହାର ଘର ଥିଲା ଏକ ଆନୁଷ୍ଠାନିକ ଅଙ୍ଗ । ଦେଶ ବିଭେଦରେ ତାହାର ନାମାନ୍ତର ଥାଇପାରେ, କିନ୍ତୁ ସର୍ବତ୍ର ତାହାର ମୂଳ ଉଦ୍ଦେଶ୍ୟ ଥିଲା ଏକ ଓ ଅଭିନ୍ନ । ପରିବାରର ପରିସର ଠାରୁ ସାବଧାନ ଦୂରତ୍ୱ ଭିତରେ ଏକ ଘର ରହିଥିବା ଉଚିତ; ଯାହାର ପ୍ରୟୋଜନ ବହୁବିଧ । ଗୃହର ଅଧିଷ୍ଠାତା ଦେବତାଙ୍କର ଯାନିଯାତ୍ରା ସମୟରେ ବ୍ୟବହୃତ ବିମାନ, ପାଲିଙ୍କି ଓ ଅନ୍ୟାନ୍ୟ ଆୟ ଅଳଙ୍କାର ଗଚ୍ଛିତ ରହିବାର ପ୍ରୟୋଜନକୁ ଛାଡ଼ିଦେଲେ ମଧ୍ୟ ଜମିଦାର ତାଙ୍କର ପାର୍ଶ୍ୱଚରମାନଙ୍କୁ ଘେନି ଗ୍ରାମରେ ଗୋଷ୍ଠୀ ବିବାଦ ତଥା ବ୍ୟକ୍ତିଗତ ବିବାଦ ସବୁ ମୀମାଂସା କରିବାକୁ ମଧ୍ୟ ଏକ ଅପେକ୍ଷାକୃତ ପ୍ରଶସ୍ତ ସ୍ଥାନର ପ୍ରୟୋଜନ । ତେଣୁ ସେହିପରି ସ୍ଥାନରେ ଗୃହର ନାରୀ ଓ ଶିଶୁମାନଙ୍କର ଉପସ୍ଥିତି ଯେ ଅବାଞ୍ଛିତ ଏହା ଅବଶ୍ୟମ୍ଭାବୀ ।

ପ୍ରାୟ ପ୍ରତ୍ୟହ ଗ୍ରାମର କିଛି ନା କିଛି ବିବଦମାନ ସମସ୍ୟା ଥାଏ । ତେଣୁ ପ୍ରତାପ ମର୍ଦ୍ଦରାଜ ସେଥିପାଇଁ ସନ୍ଧ୍ୟା ସମୟଟିକୁ ନିର୍ଦ୍ଧାରିତ କରି ଥାଆନ୍ତି । ଠାକୁରଙ୍କର ଆଳତୀ 'କାମ ବଢ଼ିଗଲେ, ଚଉପାଢ଼ୀ ଉପରେ ଆସର ଜମେ । ଯୋଡ଼ହସ୍ତ ବାଦୀ-ବିବାଦୀମାନଙ୍କର ଉକ୍ତି ଶୁଣି ରାୟ ଘୋଷଣା କଲାବେଳକୁ ରାତି ଢେର୍ ହୋଇଯାଇଥାଏ । ଯେଉଁଦିନ ଏଇ ଗ୍ରାମ୍ୟ ଅଦାଲତରେ ବିଚାରଣା ପାଇଁ ଯଥେଷ୍ଟ ମାମଲା ନଥାଏ । ସେଦିନ ଗୋଟିଏ ପ୍ରେଟ୍ରୋମାକ୍ସର ଉଜ୍ଜଳ ଆଲୋକରେ ଚାଲେ ପଶାଖେଳ—ଶେଷ ବାଜି ଜମିଦାର ଜିତିବା ପର୍ଯ୍ୟନ୍ତ—ଏକ ନଳୀଦ୍ୱାରା ଜମିଦାରଙ୍କର ମୁଖ—ବିବରଯୁକ୍ତ ଗୁଡ଼ାଖୁ ହୁକ୍‌କାର ଦିକି ଦିକି ନିଆଁ ନିର୍ବାପିତ ହବା ପର୍ଯ୍ୟନ୍ତ ।

ଏ ଯାବତ୍ ସବୁକିଛି ପ୍ରକାଶ୍ୟ, ସବୁକିଛି ଆବଶ୍ୟକୀୟ ଓ ବୋଧହୁଏ ସବୁକିଛି କରଣୀୟ, କିନ୍ତୁ ତା'ପରେ ଯେତେବେଳେ ରାତ୍ରି ସାମାନ୍ୟ ଗଭୀର ହୋଇଆସେ, ଯେତେବେଳେ ଆଲୋକର ତେଜ ମଳିନ ପଡ଼ି ଆସେ, ସେଇ ସ୍ତିମିତ ଆଲୋକରେ ଅନେକ ବୋତଲ ଖୋଲିବାର ଶବ୍ଦ ଭାସି ଆସେ ଓ ଏକ ଗ୍ରାମ୍ୟ ନିଶାର୍ଦ୍ଧର ଅଖଣ୍ଡ ନୀରବତାକୁ ସହସା ବିଦୀର୍ଣ୍ଣ କରି ଶୁଣାଯାଏ କେଉଁ ନୂପୁର ବିଳାସିନୀମାନଙ୍କର କୁଣ୍ଠିତ କିଙ୍କିଣି । ସେତେବେଳକୁ ପ୍ରତୀକ୍ଷମାଣା ସୁବର୍ଣ୍ଣମୟୀମାନଙ୍କର ତନ୍ଦ୍ରାଚ୍ଛନ୍ନ ଆଖିର କଜ୍ଜଳଗାର ବିବର୍ଣ୍ଣ ହୋଇଯାଇ ଥାଏ ଓ ଶ୍ଳଥ କବରୀର ବକୁଳମାଳ ହୋଇଥାଏ ନିଷ୍ପ୍ରଭ ।

ଏଇଆ ହିଁ ହବା ଉଚିତ । ତେଣୁ ଏଥିରେ ପ୍ରତାପ ମର୍ଦ୍ଦରାଜଙ୍କ ସମ୍ପର୍କରେ କେହି ଆଶ୍ଚର୍ଯ୍ୟ ହେବାର କିଛି ନଥିଲା, ଆଉ ସୁବର୍ଣ୍ଣମୟୀଙ୍କ କ୍ଷେତ୍ରରେ ଏହାର ବ୍ୟତିକ୍ରମ ମଧ କାହିଁକି କିଏ ଆଶା କରନ୍ତା ? ଲୋକନାଥ ରାୟଙ୍କ ପରିବାରରେ ଏତାଦୃଶ ଆଚରଣର ମଧ ଭୂରି ଭୂରି ଦୃଷ୍ଟାନ୍ତ ଦେଖିବାକୁ ମିଳେ; କିନ୍ତୁ ଅନୂଢ଼ା ସୁବର୍ଣ୍ଣମୟୀଙ୍କ ପାଇଁ ଦାସୀ ପୋଇଲୀମାନଙ୍କଠାରୁ ଏ ସମ୍ପର୍କୀୟ ଗୋପନ ସମ୍ବାଦ ପାଇବା ଓ ନିଜର. ବିବାହିତ ଜୀବନରେ ଏହାକୁ ପ୍ରତ୍ୟକ୍ଷ କରିବା ଭିତରେ ପ୍ରଭେଦ ଥିଲା ଆକାଶ-ପାତାଳ । କିନ୍ତୁ କହିବେ କାହାକୁ ? ପ୍ରକାଶ୍ୟ ଦିବାଲୋକରେ ନବବିବାହିତା ବଧୂର ସ୍ୱାମୀଙ୍କ ସହିତ ମିଳାମିଶା ବା କଥୋପକଥନ ନିଷିଦ୍ଧ, ସନ୍ଧ୍ୟା ନଇଁ ଆସିଲେ ଚଉପାଢ଼ୀରେ ବସି ନିଶାପ କରିବା ବା ପଶା ଖେଳିବା ଏକ ଜମିଦାରୋଚିତ କର୍ତ୍ତବ୍ୟ ଓ ରାତ୍ରିର ଆନ୍ତରିକତା—ଯାହା ନବବିବାହିତ ଦମ୍ପତିମାନଙ୍କର ଏକାନ୍ତ ନିଜସ୍ୱ—ତାହା ବିଡ଼ମ୍ବିତ ।

ଏହିପରି ହୁଏତ ଦିନ ପରେ ଦିନ ଅନେକ କାଳ ଗଡ଼ି ଚାଲିଥାଆନ୍ତା, ଯଦି ଦିନେ ପ୍ରତାପ ମର୍ଦ୍ଦରାଜ କୌଣସି ଜରୁରୀ କାର୍ଯ୍ୟରେ କଲିକତା ବାହାରି ନଥାଆନ୍ତେ । କଲିକତା ! କାହିଁ କେତେବାଟ ! ସେକଥା ସୁବର୍ଣ୍ଣମୟୀଙ୍କର ଅନୁଭବକୁ ଆସୁନଥିଲା । ଏତିକି ସାନ୍ତ୍ୱନା ଯେ କଲିକତା ରାମାନା ହବା ପୂର୍ବରୁ ପ୍ରତାପ ସୁବର୍ଣ୍ଣମୟୀଙ୍କ ପାଇଁ ଅନେକ ନୂଆ ନୂଆ ଜିନିଷ ଆଣିବେ ବୋଲି ସ୍ତୋକ ବାକ୍ୟ ଶୁଣେଇଥିଲେ ଓ ତାହା, କହିବା ବାହୁଲ୍ୟ, ସୁବର୍ଣ୍ଣମୟୀଙ୍କ ପାଇଁ ଯଥେଷ୍ଟ ଆଶାର ସଞ୍ଚାର କରିଥିଲା । କିନ୍ତୁ କଅଣ ହେଲା ପ୍ରତାପ ମର୍ଦ୍ଦରାଜଙ୍କର ? କୁଆଡ଼େ ରହିଲେ ସିଏ ? କଣ୍ଟ ଦିନ ଗଡ଼ିଯାଇ ମାସ ପରେ ମାସ ଅତିକ୍ରାନ୍ତ ହେଲେ ମଧ **ପ୍ରତାପ ମର୍ଦ୍ଦରାଜଙ୍କର କୌଣସି ସମ୍ବାଦ** ନାହିଁ—ଚିଠି ମଧ ନାହିଁ ।

ପ୍ରତାପ ମର୍ଦ୍ଦରାଜଙ୍କର ଏପରି ଆକସ୍ମିକ ଭାବରେ ନିରୁଦ୍ଦେଶ ହବା ଅଗରପଡ଼ା ମାହାଲ ଓ ବିଶେଷ କରି ମର୍ଦ୍ଦରାଜ ପରିବାର ଭିତରେ ଏକାଧାରରେ ଏକ ଚାଞ୍ଚଲ୍ୟ ଓ ଅସହାୟତାବୋଧ ସୃଷ୍ଟି କରିଥିଲା । ପ୍ରତାପଙ୍କର ସାନଭାଇ ହରିହର ମର୍ଦ୍ଦରାଜ ପରିବାରର ହାଲ ଧରିଥିଲେ, ଯେ ପର୍ଯ୍ୟନ୍ତ ପ୍ରତାପ ଫେରିନାହାନ୍ତି । କାରଣ ଜମିଦାରୀର ଦୈନନ୍ଦିନ କାର୍ଯ୍ୟ ନ ତୁଲାଇଲେ ନ ଚଳେ । ଅନଭିଜ୍ଞ ହରିହର ବେଳେ ବେଳେ ସୁବର୍ଣ୍ଣମୟୀଙ୍କୁ କୌଣସି ବିଷୟ ପଚାରିଲେ ସୁବର୍ଣ୍ଣମୟୀ କେବଳ ନୀରବ ରହନ୍ତି ଓ କଦବା କ୍ୱଚିତ୍ କଥା କହିଲେ ସେଇ ଏକା କଥାକୁ ଦୋହରାନ୍ତି, "ମୁଁ କଅଣ ଜାଣେ ? ମତେ ଗଲାବେଳେ ପଦେ ହେଲେ ତ କିଛି କହିଗଲେ ନାହିଁ ।"

ଏହି ସମୟ ଭିତରେ ଅଗରପଡ଼ାର ଲୋକମାନେ ନୀରବ-ଦର୍ଶକ ନଥିଲେ । ସେମାନେ ନାନା ସମୟରେ, ନାନା କୌଶଳରେ ପ୍ରତାପ ମର୍ଦ୍ଦରାଜଙ୍କ ସମ୍ପର୍କୀୟ

ଗୋପନ ସମ୍ବାଦ ସବୁ ପରିବାର ମହଲରେ ଯଥା ସମୟରେ ପରିବେଷଣ କରୁଥିଲେ । ତା'ର ସଂଗୃହୀତ ସାରାଂଶ ହେଲା ପ୍ରତାପ ମର୍ଦ୍ଦରାଜ କଲିକତାରେ ଗୋଟିଏ ଘର କିଣି, ରକ୍ଷିତା ରଖି, ମଦ୍ୟପାନ ଓ ଜୁଆଖେଳରେ ସମୟ ଅତିବାହିତ କରୁଛନ୍ତି । କିନ୍ତୁ କେହି କେବେ ପ୍ରଶ୍ନ କରିନାହିଁ ଯେ ଏତେ ପ୍ରଭୂତ ଅର୍ଥ ଏକ ସମୟରେ ପ୍ରତାପ ମର୍ଦ୍ଦରାଜଙ୍କର ହସ୍ତଗତ ହେଲା କିପରି ? ଏ ସମ୍ପର୍କରେ ସୁବର୍ଣ୍ଣମୟୀଙ୍କୁ ପ୍ରଶ୍ନ କଲେ ସୁବର୍ଣ୍ଣମୟୀ ନୀରବ ରହନ୍ତି କେବଳ । ସୁବର୍ଣ୍ଣମୟୀଙ୍କର ଏହି ଅଖଣ୍ଡ ନୀରବତା ସତ୍ତ୍ୱେ ଓ ଜମିଦାରୀ ବା ଗୃହକର୍ମର ଦାୟିତ୍ୱ ନବାର ନିର୍ଲିପ୍ତତା ସତ୍ତ୍ୱେ, ଯାହା ତାଙ୍କୁ ମଝିରେ ମଝିରେ ସହ୍ୟ କରିବାକୁ ପଡୁଥିଲା, ତାହା ଏ ଅବସ୍ଥାରେ ପ୍ରାୟ ପ୍ରତ୍ୟେକ ଗୃହବଧୂଙ୍କୁ ସହିବାକୁ ପଡ଼ିଥାଏ । ତା' ହେଲେ ଯେ ସ୍ୱାମୀଙ୍କର ଏଇ ଆକସ୍ମିକ ଗୃହତ୍ୟାଗ ଓ କଲିକତାରେ ଏକ ଅସାମାଜିକ ଜୀବନ ଯାପନ ପାଇଁ ଏକମାତ୍ର ସୁବର୍ଣ୍ଣମୟୀ ଦାୟୀ । ଏଥିରେ ମଧ୍ୟ କେବେହେଲେ ପ୍ରତିବାଦ କରି ନାହାନ୍ତି ସୁବର୍ଣ୍ଣମୟୀ । ତାଙ୍କର ଜନ୍ମଗ୍ରହଣ କରିବା, ଗୃହଯୋଗ୍ୟା ହବା, ବିବାହ କରି ସ୍ଥାନାନ୍ତରିତ ହବା ପରି, ଏହାକୁ ମଧ୍ୟ ସେ ବିନା-ପ୍ରତିବାଦରେ ଗ୍ରହଣ କରି ନେଇଥିଲେ ।

ପ୍ରତାପ ମର୍ଦ୍ଦରାଜ ନିଖୋଜ ହବା ପରେ ସୁବର୍ଣ୍ଣମୟୀଙ୍କର ପିତା ଲୋକନାଥ ରାୟ ଥରେ ଅଗରପଡ଼ା ଆସି ସ୍ୱେଚ୍ଛାଭରଣା, ବିମର୍ଷ ହତଶ୍ରୀ ସୁବର୍ଣ୍ଣମୟୀଙ୍କୁ ସଙ୍ଖୁଳି ଯିବା ପରେ ତାଙ୍କର କନ୍ୟାକୁ ଥରେ ତାଙ୍କ ଘରକୁ ନବା ପାଇଁ ପ୍ରସ୍ତାବ ଉତ୍ଥାପନ କରିଥିଲେ । ହରିହର ମଧ୍ୟ ସେଥିରେ ସମ୍ମତି ଦେଇଥିଲେ ।

ଯଥାସମୟରେ ସୁବର୍ଣ୍ଣମୟୀ ଯେଉଁ ବାଟେ ବାଟେ ଆସିଥିଲେ ଠିକ୍ ସେହି ବାଟେ ବାଟେ ପିତ୍ରାଳୟକୁ ସବାରି ଯୋଗେ ଫେରିଗଲେ । କିନ୍ତୁ ଫେରିଲାବେଳେ ଆସିବା ବେଳର ସେ ବିଷୟ ସମ୍ଭାର ତାଙ୍କର ଅନୁଗମନ କରୁ ନଥିଲା । ଶିବିକାରେ ତାଙ୍କର ବ୍ୟକ୍ତିଗତ ପିନ୍ଧା ଲୁଗାପାଇଁ ଗୋଟିଏ ପେଟିକା ଭିନ୍ନ ଅବଶିଷ୍ଟ ଥିଲା ଗୋଟିଏ ମାତ୍ର ହାତବାକ୍ସ—ଯେଉଁଥିରେ ତାଙ୍କର ଅଳଙ୍କାରାଦି ଗଲାବେଳେ ସାଙ୍ଗରେ ଦିଆଯାଇଥିଲା । ଫେରିଗଲାବେଳେ ସୁବର୍ଣ୍ଣମୟୀଙ୍କର ମାନସିକ ଅବସ୍ଥା ଥିଲା ଅପେକ୍ଷାକୃତ ନିରୁଦ୍‌ବିଗ୍ନ ଓ ନିର୍ଲିପ୍ତ । ସୁବର୍ଣ୍ଣମୟୀ କେବେ କୌଣସି କଥାରେ ଲିପ୍ତ ହବାର ସୁଯୋଗ ପାଇ ନଥିଲେ ଏବଂ ପ୍ରତାପ ମର୍ଦ୍ଦରାଜ ନିରୁଦ୍ଦିଷ୍ଟ ହବା ପରେ ଆଉ ତାଙ୍କର ଉଦ୍‌ବିଗ୍ନ ହବାର ମଧ୍ୟ କୌଣସି ହେତୁ ନଥିଲା । ସେ ଜାଣିଥିଲେ ଯେ ତାଙ୍କର ସ୍ୱାମୀ ତାଙ୍କୁ ବର୍ଜ୍ଜନ କରିଛନ୍ତି ଓ ଶ୍ୱଶୁରାଳୟରେ ବା ପିତ୍ରାଳୟରେ କୁତ୍ରାପି ସେ ଖାଦ୍ୟାଭାବ ହେତୁ ପୀଡ଼ିତା ହେବେ—ଏ ଆଶଙ୍କା ତାଙ୍କର ନଥିଲା । ତେଣୁ ସେ ନିଜକୁ ସର୍ବତୋଭାବେ ଅଦୃଷ୍ଟ ହାତରେ ଅର୍ପଣ କରିଦେଇଥିଲେ ।

ସୁବର୍ଣ୍ଣମୟୀ, ପିତ୍ରାଳୟକୁ ଫେରିବା ପରେ ରାୟ ପରିବାରର ଲୋକେ ଯେଉଁ ସୁବର୍ଣ୍ଣମୟୀଙ୍କୁ ପ୍ରତ୍ୟକ୍ଷ କଲେ, ସେ ଯେପରି ଅନ୍ୟ ଏକ ସୁବର୍ଣ୍ଣମୟୀ; ଯେପରି ସେ କୈଶୋରରୁ ଯୌବନକୁ ପାଦ ଦଉ ଦଉ ହଠାତ୍ ବାର୍ଦ୍ଧକ୍ୟ କବଳିତ ହୋଇ ପଡ଼ିଛନ୍ତି । କେଉଁ ଅପଦେବତାର ଅଭିଶାପରେ ସୁବର୍ଣ୍ଣମୟୀଙ୍କର ଜନ୍ମଲିପିରୁ ଯୌବନକାଳଟାକୁ କିଏ ଯେପରି ପୋଛି ଦେଇଛି ।

କିନ୍ତୁ ସମୟ କାହାକୁ ଅପେକ୍ଷା ନକରି ଗଡ଼ି ଚାଲିଲା । ସକାଳର ନିତ୍ୟକର୍ମ ସାରି ସୁବର୍ଣ୍ଣମୟୀ ଯେତେବେଳେ ଠାକୁର ପୂଜା କରି ବସନ୍ତି, ସେତେବେଳକୁ ଖରା ଉଠିଗଲାଣି ଦୋପୁରିଆ ଚାଳ ଛାଆଣି ଘରର ମଥାନ ଉପରକୁ । ଦ୍ୱିପ୍ରହରରେ ଆହାର ସମାପ୍ତ କରି ସେ ଯେତେବେଳେ କୋଳ ଉପରେ ଭାଗବତ ପୋଥି ଖୋଲିଧରି ବସନ୍ତି, ସେତବେଳକୁ ଖରା ପ୍ରାୟ ନଇଁ ଆସିଲାଣି । ତା'ପରେ ଚାହୁଁ ଚାହୁଁ ତାଳଗଛର ମଥାନରୁ ଶେଷ ଖରାଟିକକ ଫିକ୍‌କିନା ଉଭେଇଯାଏ । ସୁବର୍ଣ୍ଣମୟୀଙ୍କ ଜୀବନର ଅବଶିଷ୍ଟ ପ୍ରତିଟି ଦିନ ଠିକ୍ ଅନ୍ୟ ଦିନମାନଙ୍କ ପରି, କ୍ଳାନ୍ତିକର, ମଛର ଓ ଗତାନୁଗତିକତାର ପୌନଃପୌନିକତା କେବଳ । ସମୟ ଗଡ଼ିଚାଲିଚି—ସୂର୍ଯ୍ୟ-ଚନ୍ଦ୍ରଙ୍କର ପରିବ୍ରାଜନରେ ମାର୍ଜାର ଶିଶୁମାନଙ୍କର ଆଖିର ସଂକୋଚନ ଓ ପ୍ରସାରଣରେ । ଏଇପରି ଭାବରେ କାଲିପରି ବା ସବୁଦିନ ପରି ପଇଁତ୍ରିଶଟି ବର୍ଷ ଅତୀତ ହୋଇଯାଇଛି । ଏଇ ସମୟ ଭିତରେ ସୁବର୍ଣ୍ଣମୟୀ କେଉଁଠି ଅବସ୍ଥାନ କରିବା ଉଚିତ, ବା ଫେରିଯିବା ପାଇଁ ଶ୍ୱଶୁରାଳୟରୁ ସମ୍ବାଦ ଆସିବା ଉଚିତ କି ନାହିଁ, ସେ ବିଷୟରେ ସେ ନିଜେ ବା ଉଭୟପକ୍ଷର ମୁରବୀମାନେ, କୌଣସି ଗୁରୁତ୍ୱ ଆରୋପ କରିବା ଦୂରେ ଥାଉ, ଚିନ୍ତା ମଧ କରି ନାହାନ୍ତି ।

କିନ୍ତୁ ଏଇ ପଇଁତ୍ରିଶ ବର୍ଷ ଭିତରେ ପୃଥିବୀରେ ଅନେକ କିଛି ଓଲଟ ପାଲଟ ହୋଇଯାଇଛି । ସାମନ୍ତବାଦ କେବଳ ପୁରୁଣା ହୋଇ ଯାଇଛି ନୁହଁ । ତାହା ତାହାର ପ୍ରୟୋଜନୀୟତା ହରେଇ ବସିଛି । ଜମିଦାରୀ ଉଚ୍ଛେଦ ହୋଇଛି ଓ ଏହି ସଂସ୍ଥାରେ ବର୍ଦ୍ଧିତ ଲୋକନାଥ ରାୟମାନେ ଇହଲୀଳା ସମ୍ବରଣ କରିଛନ୍ତି । ଯେଉଁମାନେ ବଞ୍ଚି ରହିଛନ୍ତି, ସେମାନେ ବଞ୍ଚିଛନ୍ତି ଅତୀତର ଏକ ମୂକସାକ୍ଷୀ ରୂପେ କେବଳ । ଏକର ଏକର ଜମି ପଡ଼ିଆ ପଡ଼ି ରହିଛି ଓ ଦୋପୁରିଆ ଚାଳଘର ସବୁ ଛପର ଅଭାବରୁ ଭାଙ୍ଗିରୁଜି ଯାଇଛି । ତାକୁ ଆଉ ଥରେ ମଜଭୂତ କରି ଠିଆ କରେଇବାର ସ୍ପୃହା ବା ସାମର୍ଥ୍ୟ ନାହିଁ, ବରଂ ଜମିଦାର ପରିବାରମାନେ ଭାଙ୍ଗି ଯାଇଥିବା ଅଂଶଗୁଡ଼ିକରୁ ନିଜର ଆସ୍ଥାନ ସଂକୁଚିତ କରିଆଣି, ଏକ ଅପେକ୍ଷାକୃତ ସଂକୀର୍ଣ୍ଣ ଅଥଚ ନିରାପଦ ସ୍ଥାନକୁ ଉଠି ଆସିଲେଣି । ଯେଉଁମାନେ ବଂଶ ପରମ୍ପରା ଅନୁଯାୟୀ ଗତ ପାଞ୍ଚ ପୁରୁଷ କିଛି କରି ନଥିଲେ, ସେମାନେ ଏବେ ଆଖପାଖ ସହରକୁ ଯାଇ ସ୍କୁଲ, କଲେଜରେ ପାଠ ପଢ଼ାପଢ଼ି କରି ନିଜ ନିଜର ଜୀବିକା ଅର୍ଜନ କଲେଣି : ଆଉ ହବ ନାହିଁ—ଜେ'

ପା' ଅମଳର ସେଇ ବିଲ ଗଣ୍ଡାକ ଉପରେ ନିର୍ଭର କରି ଜୀବନ ନିର୍ବାହ କରିବା ଆଉ ସମ୍ଭବ ନୁହେଁ ।

ସୁବର୍ଣ୍ଣମୟୀ ସେଇ ସମୟର ଲୋକ ହେଲେ ମଧ ତାଙ୍କର କିଛି ପରିବର୍ତ୍ତନ ହେଇ ନାହିଁ । କ'ଣ ବା ପରିବର୍ତ୍ତନ ହୁଅନ୍ତା ? ତାଙ୍କର ଅତୀତରୁ କିଛି ହଜେଇବାର ଆଶଙ୍କା ନାହିଁ ବା ଆଜିର ଦୁନିଆରୁ କିଛି ପାଇବାର ଆଶା ନାହିଁ । ଦୀର୍ଘ ପଇଁତିରିଶି ବର୍ଷ ସୁବର୍ଣ୍ଣମୟୀଙ୍କ ବାଳ ଉପରେ ଆଉ କେଇଟା ଧଳା ସିଆର କାଟି ଦେଇଛି ଓ ତାଙ୍କର ଦୁଇ ଆଖି ଚାରିପଟର କୃଷ୍ଣକାୟ ବୃତ୍ତ ଦୁଇଟିକୁ ସାମାନ୍ୟ କୃଷ୍ଣତର କରି ଦେଇଛି ମାତ୍ର । ଲୋକନାଥ ରାୟଙ୍କର ଦୁଇ ପୁଅ ଗାଁରେ ରହୁ ନାହାନ୍ତି—ଜଣେ କଟକରେ ପୁଲିସ ଡିପାର୍ଟମେଣ୍ଟରେ ଓ ଅନ୍ୟ ଜଣେ ପୁରୀ କଲେକ୍ଟରୀଏଟ୍‌ରେ କଅଣ ଚାକିରୀ କରନ୍ତି । ମଝିରେ ମଝିରେ ଗାଁକୁ ଆସନ୍ତି—ଶୁଣନ୍ତି ତଳ ସାହାଲାଟା ଗତ ବର୍ଷାରେ ଭୁଷୁଡ଼ି ପଡ଼ିଲା, ଶୁଣନ୍ତି ଠାକୁରାଣୀରେ ଗାଈ ବଳଦ ସବୁ ନିପାତ ହେଇଗଲେ । ସେମାନେ ନିକଟ ଭବିଷ୍ୟତରେ ଚାକିରୀରୁ ପେନ୍‌ସନ୍ ପାଇବେ; କିନ୍ତୁ ସମସ୍ତେ ସହରରେ ଘର କରି ରହିବାକୁ ଚେଷ୍ଟା କରୁଛନ୍ତି । ଗାଁକୁ ଫେରିଆସିବାକୁ ନାକ ଟେକୁଛନ୍ତି । ଗାଁରେ ବିଜୁଳି ଆଲୁଅ ନାହିଁ କି ବାଥ୍‌ରୁମ୍ ନାହିଁ । ସେଠି ସେମାନେ ଚଳିପାରିବେ ନାହିଁ, ଏପରି କି ଗାଁର ବୁଢ଼ା-ବୁଢ଼ୀମାନଙ୍କର ସହରରେ ଜନ୍ମହେଇ ଚଳୁଥିବା ନାତି ନାତୁଣିମାନଙ୍କର ମୁହଁ ମନେ ନାହିଁ କି ନାଆଁ ମଧ ଜାଣନ୍ତି ନାହିଁ । କଦବା କ୍ୱଚିତ ସେମାନେ ଗାଆଁକୁ ଆସିଲେ କେବେ କେବେ ଗାଆଁର ଦହି, ଦୁଧ ନ ହେଲେ ଟିକିଏ ଘରମରା ଘିଅ ଖାଇ କୁହନ୍ତି, ''ଏ ଜିନିଷ ଆଉ କୁଆଡ଼େ ଆମ ସହରରେ ଦେଖିବାକୁ ମିଳୁଚି !'' ନ ହେଲେ ଦିନ ଦି'ଟା ରହି ଗଲାବେଳେ ଚାଉଳ, ଚୁଡ଼ା, ନଡ଼ିଆ ଚାରଣ୍ଡା, ବସ୍ତାରେ ବାନ୍ଧି ଚମ୍ପଟ୍, ଏମାନଙ୍କର ପୋଷାକ ବି ଅଲଗା । ନଳୀ ପ୍ୟାଣ୍ଟ୍ ଆଉ ଛିଟ ହାଓ୍ୟାନି ।

ଆଗପରି ଜମିଦାର ଘରେ ଆଉ କଚିରୀ ବସେ ନାହିଁ । କେବେ କେମିତି ଏମାନେ ସବୁ ସାହି ଟୋକାଙ୍କ ସାଙ୍ଗେ ଏକାଠି ହେଇ ସମାଜ ସଂସ୍କାର ବିଷୟ କଥାବାର୍ତ୍ତା ହୁଅନ୍ତି । କଥାବାର୍ତ୍ତା ହୁଅନ୍ତି ନଳକୂଅ, ତାଇଚୁଙ୍ଗ୍ ଧାନ ଆଉ ଗୋବର ଗ୍ୟାସ୍ ପ୍ଲାଣ୍ଟ୍ କଥା, କିନ୍ତୁ ଗାଆଁ ଲୋକମାନଙ୍କ ଭିତରୁ ଅନେକେ ଜାଣନ୍ତି ଯେ ଏମାନେ ଉଷୁନା ଧାନ କୋ' କିଆରୀରେ ଫଳେ, ଅରୁଆ ଧାନ କୋ' କିଆରୀରେ ଫଳେ ଜାଣନ୍ତି ନାହିଁ । ପଚାରିଲେ କହିବେ, ''କିହୋ ପରିଡ଼ା, ଆମେ କୋ' ଗାଆଁରେ ରହୁଚୁ ଯେ ଜାଣିବୁ ।'' ଗଣତନ୍ତ୍ର କଥାଟା ଗାଆଁରେ ଜଣାଥିଲା ବ୍ରିଟିଶ୍ ସରକାର ଅମଳରୁ; କିନ୍ତୁ ଏବେ ଯୋ' କଥା ବେଶି ଶୁଣିବାକୁ ମିଳୁଚି ତା' ହେଲା ସମାଜବାଦ ।

ଏ କଥା ଖାଲି ଲୋକନାଥ ରାୟଙ୍କ ଗ୍ରାମରେ ନୁହଁ–ପ୍ରତାପ ମର୍ଦ୍ଦରାଜଙ୍କ ଗ୍ରାମର ଅବସ୍ଥା ମଧ୍ୟ ତଦ୍ରୂପ । ପ୍ରତାପ ମର୍ଦ୍ଦରାଜଙ୍କୁ ଗାଁ'ର ଲୋକେ ପ୍ରାୟ ଭୁଲିଗଲେଣି କହିଲେ ଚଳେ ଏବଂ କଲିକତାରେ ତାଙ୍କର ବସ୍ତି ରହିଥିବା କଥା ମଧ୍ୟ ଠିକ୍ ଠିକ୍ କୁହାଯାଏ ନା । ଠାକୁରଙ୍କ ବିମାନ ସହିତ ଚଉପାଢ଼ୀରେ ଚାଲିଥିବା ଅନ୍ୟ ସମସ୍ତ ଆନୁଷଙ୍ଗିକ କାର୍ଯ୍ୟକଳାପର ମଧ୍ୟ ଅବସାନ ଘଟିଲାଣି । କାରଣ ବହୁଦିନରୁ ସଜଡ଼ା ହେଇ ନଥିବା ଚଉପାଢ଼ୀର ଚାଳ ପୁରାପୁରି ଭୁଷୁଡ଼ି ପଡ଼ିଲାଣି; କୁଆଡ଼େ ସବୁ ଉଇ ଖାଇ ଖତରିଗଲାଣି ଠାକୁରଙ୍କ ବିମାନ–ଖାଲି ଯାହା କଙ୍କାଳଟା ପଡ଼ି ରହିଛି । ସେଦିନ ପ୍ରତାପ ମର୍ଦ୍ଦରାଜଙ୍କର ପୁତୁରା ଆଉ ପୁତୁରାବୋହୂମାନେ ଆସିଥିଲେ ଗାଁରେ ଝାମୁଯାତ୍ରା ଦେଖିବାକୁ । ବଡ଼ ପୁତୁରା-ବୋହୂ ପ୍ୟାଣ୍ଟ୍ ପିନ୍ଧି ଆଖିରେ କଳା ଚଷମା ଲଗେଇ ଦେଖୁଥିଲା ଝାମୁଆମାନେ କିମିତି ଡହଡହ ରଡ଼ନିଆଁ ଉପରେ ବେତ ହଲେଇ ହଲେଇ ଚାଲିଯାଉଛନ୍ତି । ତାଙ୍କୁ ଦେଖିଲେ ମନେ ହଉଥାଏ ସେମାନେ ଯେମିତି ସେଇ ନିଆଁର ଧାସରେ ପୋଡ଼ିଯାଉଛନ୍ତି । ସେମାନେ ଅଳ୍ପ ସମୟ ପରେ ଗାଁ' ଛାଡ଼ି ପଳେଇଲେ, କାରଣ ଗାଁ'ରେ ଏଅର୍‌କଣ୍ଡିସନ୍ ମେସିନ୍ ଲାଗି ନାହିଁ–ଗଲାବେଳେ ଠାକୁରଙ୍କ ବିମାନରୁ ଝଡ଼ି ପଡ଼ିଥିବା କୁନ୍ଦା କାଠର କଦମ ଫୁଲକୁ ସାଙ୍ଗରେ ନେଇଗଲେ; କହିଲେ, ''ଚମତ୍କାର ହେଇଛି–ଓଡ଼ିଶାର ଏ ପ୍ରାଚୀନ ଶିଳ୍ପ ଆଉ ଦେଖିବାକୁ ମିଳିବ ନାହିଁ । ଏଥିରେ ଚମତ୍କାର ଟେବୁଲ ଲ୍ୟାମ୍ପ ତିଆରି କରିହବ ।''

ହାୟ ! ରାଧାରମଣ ଜୀଉ ! ତମର ଛତିଶିବାଟୀ ସମ୍ପତ୍ତି କିଏ କୁଆଡ଼େ ମାରି ଖାଇଗଲେ, ଏଇନେ ତମେ ପଡ଼ିଚ ମର୍ଦ୍ଦରାଜ ରାୟଙ୍କ ଖଳା ଘର ପାଖରେ–ସକାଳେ ଖଣ୍ଡେ ମିଶିରିଭୋଗ, ଆଉ ସନ୍ଧ୍ୟାରେ ଟିକିଏ ସୁଜିକ୍ଷିରୀ ଖାଇ । ତମର ଶଙ୍ଖ, ଭେରୀ, କାହାଳୀ ଘଣ୍ଟର ଆଳତୀ କୁଆଡ଼େ ଗଲା ? ଏଇନେ ସଞ୍ଜ ବେଳେ ବିଲେଇ ବେକବନ୍ଧା ଝୁମୁକା ଶବ୍ଦ ପରି ତମ ପାଖରେ ହାତଘଣ୍ଟିଟାକୁ ଟିକିଏ କିଏ ହଲେଇ ଦିଏ । କୁଆଡ଼େ ଗଲା ତମର ଛତ୍ରି, ଦ୍ରାସ, ଆଲଟ ? ତମର ସୁନାର ବଇଁଶୀ କିଏ ଚୋରିକରି ନେଲା ଯେ ସେ ବଇଁଶୀ ସଢ଼ୁଚି କଚିରୀ ମାଲଖାନା ଭିତରେ ଗତ ପାଞ୍ଚବର୍ଷ ହେଲା ? ଶୁଣାଯାଉଛି, ଏବେ କୁଆଡ଼େ ସରକାର ନିଲାମ କରିଦେବେ ତାକୁ ଏବଂ ଶେଷରେ ତମର ବିମାନର କୁନ୍ଦା ଶିଶୁକାଠର କଦମ୍ବ କଢ଼ି କାହାର ଡ୍ରଇଂରୁମ୍‌ରେ ଟେବୁଲ୍ ଲ୍ୟାମ୍ପକୁ ମୁଣ୍ଡରେ ମୁଣ୍ଡେଇ ଠିଆ ହେଇ ରହିବ !

ଯେ, ଚାଲିଛି ଗୋଟାଏ ଛକାପଞ୍ଝା ଡୁଡୁ ଖେଳ, ସାମନ୍ତବାଦ ଆଉ ସମାଜବାଦ ଭିତରେ । କିନ୍ତୁ ବହୁବେଳୁ ସାମନ୍ତବାଦର ପାହି ଛାଡ଼ିଗଲାଣି । ସାମନ୍ତବାଦର ସବୁ ଖେଳାଳୀମାନେ ଗୋଟିକ ପରେ ଗୋଟିଏ ମରି ସାରିଲେଣି । ସାମନ୍ତବାଦ କେବଳ ଖେଳୁଚି କା'ରେ । ସମାଜବାଦର ଖେଳାଳୀମାନେ ନିର୍ବିଘ୍ନରେ, ନିଧଡ଼କ୍‌ରେ ପାହି

ତେଇଁ ପଳାତକ ସାମନ୍ତବାଦର ନିଜସ୍ୱ ଘରେ ପ୍ରବେଶକରି ବଳାତ୍କାର ପୂର୍ବକ ନେଇ ଆସୁଛନ୍ତି, କେତେବେଳେ ବିମାନର କୁନ୍ଦା କଦମ୍ବ କଢ଼ି ତ କେତେବେଳେ ପ୍ରତାପ ମର୍ଦ୍ଦରାଜଙ୍କର ପିତଳ ହୁକ୍କା, ନ ହେଲେ କେତେବେଳେ ସଙ୍ଗାସାଇତା ତାଳପତ୍ର ପୋଥି-ଯାଦୁଘରେ ସାଇତି ରଖିବା ପାଇଁ ।

କିନ୍ତୁ ଏ ଛକା ପଞ୍ଝା ଖେଳ ଭିତରେ ସୁବର୍ଣ୍ଣମୟୀ ନାହାନ୍ତି । ସେ ଲୋକନାଥ ରାୟଙ୍କ ପରିବାର ଭିତରେ ତାଙ୍କର ପେଟୁଆ ଧାନ କୋଠି ପରି । ନ ହେଲେ ଦାଣ୍ଡ ଦୁଆରେ କାହିଁ କୋ'କାଳୁ ପଡ଼ିଥିବା ଅକର୍ମଶିଳା ପଥର ଖଣ୍ଡକ ପରି, ନ ହେଲେ ତାଙ୍କର ଦୋପୁରିଆ ପାଞ୍ଚପୁରୁଷୀ ଆଟୁ ଘରର ମୋଟା ମୋଟା ଶାଳ କାଠର ଶେଣୀପରି ସ୍ଥାବର ହେଇଯାଇଛନ୍ତି । ଅକର୍ମା ପରି ବହୁବର୍ଷ ପଡ଼ି ରହିବା ଭିତରେ କେଉଁଠି କେମିତି ଘୁଣ ଧରିଯାଇଛି ହୁଏତ; ନହେଲେ ସମସ୍ତ ମୌଳିକ ଗୁଣ ରହିଛି ଅପରିବର୍ତ୍ତନୀୟ । ସକାଳର ନିତ୍ୟକର୍ମ ସରିଲେ ସୁବର୍ଣ୍ଣମୟୀ ତାଙ୍କର ସେଇ ଜେ'ମା କାଳର ପୁରୁଣା ଲୁହା ହାତ-ବାକ୍ସ ଖଣ୍ଡକ ଦରମେଳା କରି ତା' ଭିତରୁ କେତେବେଳେ କେମିତି ଓଟାରି ଆଣନ୍ତି କଣ୍ଠା ଖଣ୍ଡେ ନହେଲେ ଭାଗବତ ପୋଥି । ଆଉ ତାକୁଇ ଦିନସାରା ଗୁଣୁଗୁଣୁ ହେଇ ପୁଣି ସନ୍ଧ୍ୟା ହେଲେ ସାଇତି ଦିଅନ୍ତି ତାଙ୍କର ହାତବାକ୍ସ ଭିତରେ ।

ଏଇ ଦୀର୍ଘଦିନ ଭିତରେ ସୁବର୍ଣ୍ଣମୟୀ ରାୟ ପରିବାରରେ ଓ ମର୍ଦ୍ଦରାଜ ପରିବାରରେ ଏକ ଜୀବନ୍ତ କିମ୍ବଦନ୍ତୀରେ ପରିଣତ ହେଇସାରିଲେଣି । ସେଇ ଯେ ପଇଁତ୍ରିଶ ବର୍ଷ ତଳେ ଗୋଟାଏ ଆଖି ଦେଖିଲା ପରି ବାହାଘର ହେଇଥିଲା ଯେଉଁଥିରେ ଆଖପାଖ ପାଞ୍ଚ ଛ' ଖଣ୍ଡ ଗାଁର ଲୋକେ ଗୋଟାଏ ମନେ ରହିଲା ପରି କାନିକା, ମାଛ ଆଉ କ୍ଷୀରୀ ଭୋଜୀ ଖାଇ ଫେରିଥିଲେ, ସେଇ ଯେ ନୂଆବୋହୂଙ୍କୁ ଅଗରପଡ଼ାର ସାଇପଡ଼ିଶାର ମାଇପେ ଆସି ଦେଖିଥିଲେ ଦିହସାରା ସୁନା ଛାଇ ହେଇଯାଇଛି, ସେ' କଥା ଆଜି ମଧ କେହି ପାସୋରି ଯାଇ ନାହାନ୍ତି । ସେ କାଳର ଭୋଜୀ ଖାଇଥିବା ଲୋକେ, କି ବେକ, ମୁହଁ ଦରାଣ୍ଡି ଗହଣା ପରଖିଥିବା ଲୋକେ କିଏ କୁଆଡ଼େ ଗଲେଣି; ତେବେ ମୁହଁରୁ ମୁହଁ ହେଇ ସେ ସମୟର ସୁବର୍ଣ୍ଣମୟୀଙ୍କର ଐଶ୍ୱର୍ଯ୍ୟ ଆଜିଯାଏ ଏଇ ସମାଜବାଦୀ ଯୁଗର ପିଲାଙ୍କ ସ୍ମୃତି ଭିତରେ ଜାଜ୍ଜ୍ୱଲ୍ୟମାନ ରହିଚି । କିନ୍ତୁ କୁଆଡ଼େ ଗଲା ସେଇ ସବୁ ସୁନା ଗହଣା—କୁଆଡ଼େ ଗଲା ସେ ଐଶ୍ୱର୍ଯ୍ୟ ? ଏ ବିଷୟ ନେଇ କେବେ କେମିତି କଥାବାର୍ତ୍ତା ହେଲେ, ସେଇ ଅନିବାର୍ଯ୍ୟ କଥାଟି ପ୍ରାୟ ପୁନଃ ପୁନଃ ଉଚ୍ଚାରିତ ହେଇଥାଏ, "କୁଆଡ଼େ ଆଉ ସବୁ ଯିବ ? ଘରେ ପଶି ତ ଚାରି ପାଞ୍ଚମାସ ଯାଇଚି କି ନାହିଁ ଘଇତାକୁ ଖାଇଲା, ସେଦିନରୁ ତ କେବେ କେହି ତାକୁ ଗହଣା ଲଗେଇବାର ଦେଖି ନାହିଁ—ପୁରେଇଥିବ ତ ବାକ୍ସ ଭିତରେ,

ଆଉ କୁଆଡ଼େ ଯିବ ? କାହାକୁ ଦେଲା ନା ନେଲା ?'' କଥାରୁ କଥା ମେଳେ । ବୁଢ଼ାବୁଢ଼ୀମାନଙ୍କର ତରୁଣମାନଙ୍କୁ କେଉଁ ସମୟରେ କିଛି ହେଲେ କହିବାର ନଥାଏ । କାରଣ ତରୁଣମାନେ ବର୍ତ୍ତମାନ ସମୟ ବିଷୟରେ ଯାହା ଜାଣନ୍ତି ବୁଢ଼ାମାନେ ତା'ର କାଣିଚାଏ ସୁଦ୍ଧା ଜାଣନ୍ତି ନାହିଁ । ତେଣୁ ସବୁ ସମୟର ବୁଢ଼ାବୁଢ଼ୀମାନଙ୍କର ସେଇ ଗୋଟିଏ ମାତ୍ର ବକ୍ତବ୍ୟ—ତାଙ୍କ ସମୟରେ ଦୁନିଆ କଅଣ ଥିଲା । ତେଣୁ କଥା ଗଡ଼ି ଚାଲେ—କେମିତିକିଆ ସୁବର୍ଣ୍ଣମୟୀ ବାହା ହେଇ ଆସିଥିଲା—କେତେ କେତେ ଜାଗାରୁ ତା' ବାହାଘରରେ ବାଣ ଫୁଟେଇବାକୁ ବାଣ ତିଆରି କରାହେଇ ଆସିଥିଲା—କେତେଦିନରେ କେତେ ଖଣ୍ଡ ଶଗଡ଼ ନେଇ ବରଯାତ୍ରୀମାନେ କନ୍ୟାକୁ ନେଇ ଘରେ ପହଞ୍ଚିଲେ ଓ ସେ ସମୟରେ ସୁବର୍ଣ୍ଣମୟୀ କେତେ ଗହଣା ପିନ୍ଧିଥିଲା—ଯାହାକୁ ଦେଖି ଅପରପକ୍ଷର ଲୋକଙ୍କର ଆଖିଗୁଡ଼ାକ କୁଆଡ଼େ ତାଳୁରେ ଖୋସି ହେଇ ଯାଇଥିଲା ।

ଶତକଡ଼ା ଚାରିଭାଗ ସତ୍ୟ ସହିତ ଛୟାନବେ ଭାଗ କଳ୍ପନା ମିଶି ଯାଇ ଯାହା ହଉ ନ ହଉ ବୁଢ଼ାବୁଢ଼ୀଙ୍କ ସାଙ୍ଗରେ ଗଜରାଜପୁର ଓ ଅଗରପଢ଼ାର ଅପେକ୍ଷାକୃତ କମ୍ ବୟସ୍କ ଲୋକମାନଙ୍କର ସନ୍ଧ୍ୟାଟା ଜମେ ବେଶ୍ । ପିଲାମାନେ ଆଁ କରି ଗପ ଶୁଣିଯାଉଥାଆନ୍ତି ଏବଂ ସେମାନଙ୍କର ନିଜସ୍ୱ କଳ୍ପନା ଡେଣା ମେଲେ । ଏଁ ! ଏତେ ସୁନା ପୁଣି ଗୋଟାଏ ବାହାଘରରେ ? କିଏ କହେ, ଗୋଟାଏ ଡାକୋଟା ବିମାନ କିଣି ହବ ଆଜିକାଲି—ଆଉ କିଏ କହେ ଦୁଇଥର ରାଉଣ୍ଡ ଦି ୱାରଲ୍ଡ଼ ଟ୍ରିପ କରିହବ । ଆଉ କିଏ କହେ, ଆରେ ବୁଢ଼ୀ କି କହ—ସବୁ ଯିବଟି—ଆଜିକାଲି ଯୋ' ଗୋଲ୍ଡ଼ କଣ୍ଟ୍ରୋଲ୍ ଅଡ଼ର ହେଲାଣି—ମିଛେ ମିଛେ ସରକାର କାହିଁକି ସୁନାତକ ନେବେ ! ସୁବର୍ଣ୍ଣମୟୀଙ୍କର ନାତି ବୟସର ପିଲା କହନ୍ତି, ''ଶଳା ! ଗୋଟାଏ ମାରାଥନ୍ ରେସ୍ ନେଇଛି—ସ୍ୱାମୀ, ପୁତୁରା ସମସ୍ତଙ୍କୁ ଖାଇ ଆମକୁ ଖାଇଲେ ବୁଢ଼ୀ ମନ ଶାନ୍ତି—ଶଳା, କିଛି କାଢ଼ି ଦେଲେ ମୁଁ ପାରାଦ୍ୱୀପରେ ଗୋଟାଏ ଟ୍ରଲର୍ ଏଇ ସିଜିନ୍‌ରେ ପକେଇ ଦିଅନ୍ତି । ପ୍ରନ୍ ଟୁ' ଡ଼େ' ସେଲ୍‌ସ ଆଉଟ୍ ସାଇଡ଼୍ ଆଟ୍ ଦି ରେଟ୍ ଅଫ୍ ହଣ୍ଡ୍ରେଡ଼ ଏଇଟି ରୁପିଜ୍ ଏ କିଲୋ ।'' ହଣ୍ଡ୍ରେଡ଼ ଏଇଟି ରୁପିଜ୍' କଥାଟା ଉଚ୍ଚାରଣ କଲାବେଳେ ଟୋକାଟାର ଆଖିସବୁ ଖୁବ୍ ଗୋଲ ଗୋଲ୍ ଓ ବଡ଼ ହେଇଯାଇଥାଏ ।

କିନ୍ତୁ ଏ ସମସ୍ତ କଳ୍ପନା ଜଳ୍ପନା ନିଜର ଆତ୍ମୀୟସ୍ୱଜନମାନଙ୍କ ଦ୍ୱାରା ସୁବର୍ଣ୍ଣମୟୀଙ୍କର ପରିହାସଜନିତ ହେଲେ ମଧ୍ୟ ଆଶୁ-ମୃତ୍ୟୁ କାମନା ସବୁ ଚାଲିଥାଏ ତାଙ୍କର ଅଗୋଚରରେ । କିନ୍ତୁ ଗୋଟିଏ କଥା ଧୀରେ ଧୀରେ ସୁବର୍ଣ୍ଣମୟୀଙ୍କ ଆଗରେ ସ୍ପଷ୍ଟ ହୋଇ ଆସୁଥାଏ—ତା' ହେଲା ଯେ ଗଜରାଜପୁର ରାୟପରିବାରର ଯେତେ ଲୋକ ଅବଶିଷ୍ଟ ଘରେ ରହୁଛନ୍ତି, ସେମାନଙ୍କର ଦୈନନ୍ଦିନ ଗ୍ରାସାଚ୍ଛାଦନ ଧୀରେ ଧୀରେ ଯେପରି କଷ୍ଟସାଧ୍ୟ ହେଇ ଉଠିଲାଣି । ଆଜିକାଲି କିଏ ବା ଗାଁ'ରେ ରହେ ?

ସ୍ଥାୟୀ ଅଧିବାସୀ କହିଲେ ବିଧବା ନଣନ୍ଦ ମନୋରମା ଓ ବିଧବା ଯା' ତିଳୋତ୍ତମାଙ୍କୁ ହିଁ ବୁଝାଏ । ତିଳୋତ୍ତମାଙ୍କର ତିନିପୁଅ ପ୍ରାୟ ସହରରେ ରୁହନ୍ତି, ମଝିରେ ମଝିରେ ବଡ଼ପୁଅ ଆଦିତ୍ୟ ଗାଁକୁ ଆସି ଭଲମନ୍ଦ ବୁଝାବୁଝି କରିଦେଇ ଯାଆନ୍ତି । ସେମାନଙ୍କର ପିଲାମାନେ ମଧ୍ୟ ସହରରେ, କେବଳ ଗାଁରେ ଥାଏ ତିଳୋତ୍ତମାଙ୍କର ନାତୁଣୀ ଅପର୍ଣ୍ଣା । ଅପର୍ଣ୍ଣା ବାର-ତେର ବର୍ଷର ଝିଅ । ସିଏ ଗାଁ'ର ମାଇନର ସ୍କୁଲରେ ପାଠ ପଢ଼ନ୍ତି । ଏମାନଙ୍କ ଛଡ଼ା ଗୋଟିଏ ମାତ୍ର କୋଠିଆ । ହଳେ ହଡ଼ା ବଳଦ ଖାଲି ପତିଆରାକୁ ଦାଣ୍ଡରେ ବନ୍ଧା ଦେଇ ରହିଥାଆନ୍ତି । ଆଦିତ୍ୟ ମଝିରେ ଯାହା ଆସନ୍ତି ସେଥିରେ ପ୍ରକୃତରେ ବୁଝାବୁଝି କରିବାର କିଛି ନଥାଏ । କେବଳ ସୂଚେଇ ଦେଇ ଯାଆନ୍ତି ଯେସବୁ ହଳିଆ କୋଠିଆମାନେ ନିଜକୁ ଭାଗଚାଷୀ କହି ଶହେ କି ଦୁଇଶହ ମକଦ୍ଦମା କଲେଣି ଓ ସେଇ ମକଦ୍ଦମାରେ ଯାହା ଖର୍ଚ୍ଚ ତାକୁ ବାଦ୍ ଦେଲେ ମଧ୍ୟ ଦଉଡ଼ି ଦଉଡ଼ି ତାଙ୍କର ଗୋଡ଼ ଚାନ୍ଦି ଫିଟିଗଲାଣି । କେବେ କେବେ କୁହନ୍ତି, ସେ ଆଉ ଏତେ ଗାଆଁକୁ ଆସି ପାରିବେ ନାହିଁ ବରଂ ତାଙ୍କ ମା' ତିଳୋତ୍ତମାଙ୍କୁ ସେ ସାଙ୍ଗରେ ସହରକୁ ନେଇଯିବେ ।

ସୁବର୍ଣ୍ଣମୟୀ ସବୁ ଶୁଣନ୍ତି ଓ ସବୁଦିନ ପରି ନୀରବ ରୁହନ୍ତି । ଏକେତ ଏସବୁ ସମସ୍ୟା ସମାଧାନ କରିବା ତାଙ୍କର ସାମର୍ଥ୍ୟ ବାହାରେ, ଦ୍ୱିତୀୟତଃ ସେତ ଏଠିକି କେବଳ ତାଙ୍କ ମୃତ ପିତା ଲୋକନାଥ ରାୟଙ୍କର ନିର୍ଦ୍ଦେଶରେ ସ୍ଥାନାନ୍ତରିତ ହେଇଛନ୍ତି । କିନ୍ତୁ ତାଙ୍କର ଏହି ଅସହାୟତା ବା' ଆପାତଃ ନିଶ୍ଚେଷ୍ଟତା ରାୟ ପରିବାରର ଅନ୍ତେବାସୀମାନଙ୍କ ଦ୍ୱାରା ଅର୍ଥାନ୍ତର କରାଯାଇଥାଏ ତାଙ୍କର ଅବର୍ତ୍ତମାନରେ । ସୁବର୍ଣ୍ଣମୟୀଙ୍କର ଅବର୍ତ୍ତମାନରେ କୁହାଯାଏ, "ଗୋଟାଏ ମୁଖଲଜ୍ଜା ନାହିଁ, ଗୋଟିଏ ଝିଅ ବୋଲି ସୁନାରେ ଛାଅଣି କରି ବାପା ବାହା କରିଥିଲେ, ବାପାଘରେ ସଧବା ଥାଉ ଥାଉ ରହିଲାଣି ପଇଁତ୍ରିଶି ବର୍ଷ, ହେଲେ ଗୋଟାଏ କାଣି କଉଡ଼ି କାଢ଼ିବ ନାହିଁ ।" କେତେବେଳେ କେମିତି ନାତୁଣୀ ଅପର୍ଣ୍ଣା ଆସି ଗେହ୍ଲେଇ ହେଇ କହେ, "ବଡ଼ ଜେଜେମା, ତମର ସେ ବାକ୍ସଟା ଭିତରେ କଅଣ ଅଛି ?" ସୁବର୍ଣ୍ଣମୟୀ ଟିକିଏ ସ୍ମିତ ହସି ଅପର୍ଣ୍ଣାକୁ ଅନାନ୍ତି ଆଉ କୁହନ୍ତି, "ତା' ଭିତରେ ମୋ' ଆୟୁଷ ଅଛି ଲୋ, ଆୟୁଷ ଅଛି—ମୁଁ ନମରି ଯାହା ବଞ୍ଚି ରହିଛି ।"

ଅପର୍ଣ୍ଣା ଆସି କଥାଟାକୁ ଯେ ପୂରାପୂରି ନିଜର କୌତୁହଳ ହେତୁ ପଚାରିଥିଲା ଏପରି ନୁହଁ । ଛୋଟ ପିଲାଟିର କୌତୁହଳଟାକୁ ପରୋକ୍ଷରେ ଜାଗ୍ରତ କରେଇ ଦେଇଥିଲେ ତିଳୋତ୍ତମା । ତେଣୁ ସୁବର୍ଣ୍ଣମୟୀଙ୍କର ଏହି ପ୍ରହେଳିକାମୟ ଉତ୍ତର ଯେ ତିଳୋତ୍ତମାଙ୍କର କାନରେ ପଡ଼ିବ, ଏଥିରେ ଆଶ୍ଚର୍ଯ୍ୟ ହବାର ମଧ୍ୟ କିଛି ନାହିଁ । ଏଇ ଉତ୍ତର ତୁଣ୍ଡରୁ ଦି'ତୁଣ୍ଡ ହେଇ ବାରମ୍ବାର ତର୍ଜମା କରାଯାଇଛି ଏବଂ ତର୍ଜମାର କମ୍ପାସ

ପ୍ରତିଥର ଯେଉଁ ଆଡ଼କୁ ମୁହାଁଇଛି, ତାହା ହେଲା ପର୍ଯ୍ୟାପ୍ତ ଗୁପ୍ତଧନ । କିନ୍ତୁ ଏକଥା ତ ଆଉ ତୁଣ୍ଡ ଖୋଲି ପଚରା ଯାଏନା । ସମୟ ଓ ସୁଯୋଗ ଉଣ୍ଡି ତିଳୋତ୍ତମା, ଏପରିକି ବିଧବା ପିଇସୀ ମନୋରମା ପର୍ଯ୍ୟନ୍ତ ଚେଷ୍ଟା କରିଛନ୍ତି—କହିଛନ୍ତି, "ତମେ କାହିଁକି ମିଛଟାରେ ଉଠ୍‌ବସ୍ ହଉଚ ମ ! ମତେ କୁଞ୍ଚିକାଠିଟା ଦିଅ, ଭାଗବତ ବହିଖଣ୍ଡିକ ନେଇ ଆସୁଚି ।"—ନା, ସୁବର୍ଣ୍ଣମୟୀ ବାରଣ୍ଡାର କାଠ ଖୁଣ୍ଟକୁ ଧରି କୁଛେଇ କୁଛେଇ ଉଠି ଠିଆ ହେଇଛନ୍ତି ଆଉ ତାଙ୍କ ବଖରା ଆଡ଼କୁ ଗଲାବେଳେ କୁହନ୍ତି, "ଜୀବ ଥେଲା ପର୍ଯ୍ୟନ୍ତ କରୁଥିବି—ଜୀବ ଗଲେ ଗଲା ।" ଏ ଉକ୍ତି ମଧ ତିଳୋତ୍ତମା ଓ ମନୋରମାଙ୍କ ପାଇଁ ପ୍ରହେଳିକାମୟ ହୋଇ ରହିଯାଏ । ଶେଷ ପର୍ଯ୍ୟନ୍ତ ସୁବର୍ଣ୍ଣମୟୀ ଗାଧୋଇ ଗଲାବେଳେ କି ପୋଖରୀପାଣି ଗଲାବେଳେ ନଣନ୍ଦ ଭାଉଜ ଦି' ଜଣଯାକ କାଛ ଖୁରୀ, ଶେଯତଳ ପର୍ଯ୍ୟନ୍ତ ଅଣନିଶ୍ୱାସୀ ହେଇ ଖୋଜି ଦେଇଛନ୍ତି, କିନ୍ତୁ ସବୁ ଫେଲ୍ । ଦେଖିଲା ବେଳକୁ ସୁବର୍ଣ୍ଣମୟୀ ଓଦାଲୁଗା ବଢ଼େଇ ହେଇ କୂଅ ମୂଳରୁ ଗୋଟିଏ ଗୋଟିଏ ପାଦ ଗଣି ଗଣି ଫେରୁଛନ୍ତି । ତାଙ୍କର ଡାହାଣ ହାତରେ ମଜାମଜି ହେଇ ଚକ୍‌ଚକ୍ କରୁଥିବା ପିତଳ ଲୋଟାରେ ଲୋଟାଏ ପାଣି ଆଉ ବାଁ ହାତରେ ସେଇ ଅନିବାର୍ଯ୍ୟ କୁଞ୍ଚିକାଠି । ସେମାନେ ଶେଷକୁ ଏହି ଗୁପ୍ତଚର କାମରେ ଅପର୍ଣ୍ଣାକୁ ବାରମ୍ବାର ମୁତୟନ କରିଛନ୍ତି, କିନ୍ତୁ କହିବା ବାହୁଲ୍ୟ ଅପର୍ଣ୍ଣା ମଧ ଫେଲ ମାରିଚି । ସୁବର୍ଣ୍ଣମୟୀଙ୍କ ଭାଗରେ ପଡ଼ିଛି ତାଙ୍କ ବାପେ ରହୁଥିବା ବଖରା ଓ ସେ ଶୋଇଲାବେଳେ କି ଶୀତ କି ଗ୍ରୀଷ୍ମ ସବୁବେଳେ କବାଟ କିଳି ଶୋଇ ଥାଆନ୍ତି ।

ଏହି ସମୟରେ ଏକ ଅପୂର୍ବ ସୁଯୋଗ ଉପସ୍ଥିତ ହେଲା । ସୁବର୍ଣ୍ଣମୟୀ ହଠାତ୍ ଗୁରୁତର ଶ୍ୱାସ ରୋଗରେ ଆକ୍ରାନ୍ତ ହେଲେ ଓ ବେଳେବେଳେ ଧଇଁ ପେଲି ପେଲି ଅନେକ ସମୟ ଧରି ଅଚେତା ହେଇ ରହିଲେ । ସେହି ଅସହାୟ ଅବସ୍ଥାରେ ମଧ ଅପର୍ଣ୍ଣା କର୍ତ୍ତୃକ ଚେଷ୍ଟା ଅବ୍ୟାହତ ରଖା ଯାଇଛି । କିନ୍ତୁ ଦେଖାଯାଇଛି ଯେ ଅଚେତ ଥିବା ସମୟତକ କୁଞ୍ଚିକାଠି ଉପରେ ଯେଉଁ ବଜ୍ରମୁଷ୍ଟିର ଚାପ ପଡ଼ିଥାଏ ତାକୁ ଖୋଲିବା, ଅପର୍ଣ୍ଣା କାହିଁକି, ବୟସ୍କ ଲୋକମାନଙ୍କ ପକ୍ଷରେ ମଧ ସମ୍ଭବ ନୁହେଁ ।

ସ୍ଥାନୀୟ କବିରାଜ ପ୍ରଭୃତିଙ୍କର ଆୟୁର୍ବେଦୀ ଔଷଧ କିଛି କାଟୁ କରୁ ନାହିଁ । ଏବେ ବୋଧହୁଏ ସହରର କୌଣସି ବଡ଼ ଡାକ୍ତରଖାନାକୁ ତାଙ୍କୁ ନିଆହବା ଉଚିତ୍, ଏକଥା ଭଲଭାବରେ ସମସ୍ତେ ଉପଲବ୍ଧି କରୁଥିଲେ ମଧ କିଏ ମୁଣ୍ଡ ପକେଇବ ? ଖର୍ଚ୍ଚ କିଏ ବହନ କରିବ ? ମୃତ ବୀରବର ରାୟଙ୍କର ତିନିଜଣଯାକ ପୁଅ, ଆଦିତ୍ୟ, ସତ୍ୟ ଆଉ ମହିମା ସମସ୍ତେ ସହରରେ ରହୁଥିଲେ ମଧ କେହି ଭରସି କରି କଥାଟାକୁ ଉତ୍‌ଥାପନ କରୁ ନାହାନ୍ତି, ଅଥଚ ସୁବର୍ଣ୍ଣମୟୀଙ୍କର ସ୍ୱାସ୍ଥ୍ୟର ଦ୍ରୁତ ଅବନତି ଘଟୁଛି ।

ଠିକ୍ ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ରାୟ ପରିବାରର ସମସ୍ତ ସମସ୍ୟାର ସମାଧାନ କରିଦେଇ ବିଧି ପ୍ରେରିତ ପରି ସ୍ୱର୍ଗତ ଲୋକନାଥ ରାୟଙ୍କର ଦୁଆର ମୁହଁରେ ଉପସ୍ଥିତ ହେଲେ ଗୋବର୍ଦ୍ଧନ ମର୍ଦ୍ଦରାଜ । ଗୋବର୍ଦ୍ଧନ ତିଳୋତ୍ତମାଙ୍କୁ ଯଥାବିଧି ପ୍ରଣାମ କରି ତାଙ୍କର ପରିଚୟ ଦେଲେ । ଗୋବର୍ଦ୍ଧନ ହେଉଛନ୍ତି ପ୍ରତାପ ମର୍ଦ୍ଦରାଜଙ୍କର ସାନଭାଇ ହରିହର ମର୍ଦ୍ଦରାଜଙ୍କର ଦ୍ୱିତୀୟ ପୁତ୍ର, ଯିଏ ପିତାଙ୍କ ମୃତ୍ୟୁ ଅନ୍ତେ ଭୂ-ସମ୍ପତ୍ତିର ଯାହାକିଛି ଅବଶିଷ୍ଟ ଅଛି, ତା'ର ଦେଖାଶୁଣା କରନ୍ତି ଅଗରପଡ଼ା ଗାଁରେ ରହି । ଗୋବର୍ଦ୍ଧନ ଯଥେଷ୍ଟ ସମୀହ କରି କଥାଟାକୁ ଆରମ୍ଭ କଲେ । କହିଲେ, ''ଆମେ ଖବର ପାଇଲୁ, ବଡ଼ମା'ଙ୍କର ଦିହ କୁଆଡ଼େ ଖୁବ୍ ଖରାପ । ଏତେ ବର୍ଷ ଧରି ଆମେମାନେ ତାଙ୍କର କିଛି କରିପାରିଲୁ ନାହିଁ । ମଉସା ସେଇ ଯେ ନେଇ ଆସିଥିଲେ, ଆଉ ଦିନେ ସେ ଅଗରପଡ଼ା ଦେଖିଲେ ନାହିଁ—ହେଲେ ଖବର ପାଇ ମତେ ମାଆ, ପି'ସୀ ଆଉ ରମେଶ ଭାଇନା ପଠେଇଛନ୍ତି । ଆପଣମାନେ ଯଦି ଅନୁମତି ଦିଅନ୍ତେ, ତାହାହେଲେ ଆମେ ବଡ଼ମା'ଙ୍କୁ ଗାଁକୁ ନେଇଯାଇ ଶେଷ ଜୀବନରେ ତାଙ୍କର ସେବା କରିବାର ସୁଯୋଗ ଅନ୍ତତଃ ପାଆନ୍ତୁ ।'' ଯୋଗକୁ ସେଦିନ ଶନିବାର, ଆଉ ଆଦିତ୍ୟ ମଧ୍ୟ ଆସି ପହଞ୍ଚିଥାଆନ୍ତି ଘରେ । ଆଦିତ୍ୟ ଯେମିତି ସରଗର ଚାନ୍ଦ ପାଇଲେ, କହିଲେ, ''ବୁଝିଲେ ଗୋବର୍ଦ୍ଧନବାବୁ, ଜିନିଷ ହେଲା ଆପଣଙ୍କର—ଆପଣ ଆଜି ଆସନ୍ତୁ, ଆପଣଙ୍କର ଯେବେ ଇଚ୍ଛା ଆପଣଙ୍କର ଜିନିଷ ଆପଣ ନେବେ ।''

ଗୋବର୍ଦ୍ଧନ ବାବୁ ଆଶ୍ୱସ୍ତ ହେଲେ ଓ ସୁବର୍ଣ୍ଣମୟୀ ଦେବୀଙ୍କୁ ପୁନଃସ୍ଥାନାନ୍ତରିତ କରିବାର ଆୟୋଜନ ଆରମ୍ଭ ହେଲା । ଅବଶ୍ୟ ମନ ଧରିବାକୁ ସୁବର୍ଣ୍ଣମୟୀଙ୍କର କାନରେ କଥାଟା ପକାଯାଇଥିଲା । ସୁବର୍ଣ୍ଣମୟୀ ଧଇଁ ପେଲି ପେଲି କହିଥିଲେ, ''ଆରେ, କାହିଁକି ବୁଢ଼ୀଟାକୁ ବିଲେଇ ପିଲା ପରି ଏପଟ ସେପଟ କରୁଚ, ଆଉ କଅଣ ମୁଁ ବଞ୍ଚିବି ?'' ଯାତ୍ରା କରିବାର ଆୟୋଜନ ଭିତରେ ସୁବର୍ଣ୍ଣମୟୀଙ୍କର ଏଇ କ୍ଷୀଣ ପ୍ରତିବାଦ ପାଣି ଫୋଟକା ପରି କୁଆଡ଼େ ମିଳେଇ ଯାଇଥିଲା । ଅଗରପଡ଼ାରେ ପହଞ୍ଚିଲା ବେଳକୁ ସୁବର୍ଣ୍ଣମୟୀଙ୍କ ପିଣ୍ଡରେ ଯେ ତଥାପି ପ୍ରାଣ ଥିଲା, ତା'ର କାରଣ, ଏଥରକ ସେ ସ୍ଥାନାନ୍ତରିତ ହୋଇଥିଲେ ରେଳଗାଡ଼ି ଯୋଗେ, ଯାହା ମାତ୍ର ତିନିଘଣ୍ଟାର ବାଟ । ହାତରେ କୁଞ୍ଚିକାଠି ଧରି ରେଳରୁ ଓହ୍ଲେଇ ଶଗଡ଼ରେ ବସିଲା ବେଳକୁ ସୁବର୍ଣ୍ଣମୟୀ କହିଲେ ''ଗୋବର୍ଦ୍ଧନ, ବଡ଼ କଥାଟାଏ କଲ—ମଲା ବେଳକୁ ବୁଢ଼ୀକୁ ରେଳଗାଡ଼ିରେ ଚଢ଼େଇ ଦେଲ ହେଲେ ।''

ଘରେ ପହଞ୍ଚିଲା ବେଳକୁ ସୁବର୍ଣ୍ଣମୟୀଙ୍କୁ ପାଛୋଟି ନବା ପାଇଁ ଘର ଦାଣ୍ଡ ଦୁଆରେ ନଣନ୍ଦ ଚିତ୍ରାଙ୍ଗଦା ଦେବୀ ଓ ଯା' ପ୍ରତିଭା କୁମାରୀଙ୍କ ବ୍ୟତୀତ ଆଉ କେହି ନଥିଲେ । ଆଉ କିଏ ବା ଥାଆନ୍ତା ? ଦିଅର ଆଉ ନଣନ୍ଦଙ୍କ ପିଲାମାନେ, ନାତିମାନେ,

ସବୁତ ସହରରେ ପାଠ ପଢୁଛନ୍ତି, ଚାକିରୀ କରୁଛନ୍ତି । ଇତିମଧ୍ୟରେ ସୁବର୍ଣ୍ଣମୟୀ ଅଗରପଡ଼ା ଘରର ମାନଚିତ୍ର ମଧ୍ୟ ବିସ୍ମୃତ ହେଇଥିଲେ, ତାଙ୍କର ଦୁଇବାହା ଧରି ଚିତ୍ରାଙ୍ଗଦା ଓ ପ୍ରତିଭାକୁମାରୀ ତାଙ୍କୁ ଘର ଭିତରକୁ ନବାବେଳେ ସେଇ ଦୂର ଅତୀତରେ କୋ' ଘର କଅଣ ଥିଲା, କୋ' ଘର ଭାଙ୍ଗିଗଲାଣି, କୋ' ଘରେ ସୁବର୍ଣ୍ଣମୟୀଙ୍କ ଶାଶୁ ବସି ପରିବା କାଟୁଥିଲେ ଇତ୍ୟାଦିର ଗୋଟିଏ ଧାରାବିବରଣୀ ଦେଇ ଯାଉଥାଆନ୍ତି । ଶେଷ ପର୍ଯ୍ୟନ୍ତ ପ୍ରତାପ ମର୍ଦ୍ଦରାଜ ରହୁଥିବା ଘରଟି ତାଙ୍କ ରହିବା ପାଇଁ ନିର୍ଦ୍ଦିଷ୍ଟ କରାଯାଇଥିଲା । ଖଟ ଉପରେ ସୁବର୍ଣ୍ଣମୟୀଙ୍କ ବେକ ତଳେ ପ୍ରଭୂତ ପରିମାଣର ତକିଆ ଦେଇ ଶୁଆଇ ଦେବା ପରେ ସୁବର୍ଣ୍ଣମୟୀ ପ୍ରଥମ ଥର ପାଇଁ ତୁଣ୍ଡ ଖୋଲି କହିଲେ, ''ଗୋବର୍ଦ୍ଧନ, ମୋ ହାତ ବାକ୍ସଟା ଗାଡ଼ିରୁ ଓହ୍ଲେଇଲ କି ନାହିଁ–ସିଏ ମୋ ଜୀବନ ।'' ଗୋବର୍ଦ୍ଧନ ତୁରନ୍ତ ଜବାବ୍ ଦେଲେ, ''ହଁ ବଡ଼ମା, ମୁଁ ନିଜେ ପରା ଧରି ଧରି ତମ ପଛେ ପଛେ ଚାଲିଛି ।''

ରାୟ ପରିବାର ପରି ମର୍ଦ୍ଦରାଜ ପରିବାରର ଅବସ୍ଥା ମଧ୍ୟ ତଦ୍ରୂପ । କିନ୍ତୁ ଏଇ ଦୁରବସ୍ଥା ଭିତରେ ସୁବର୍ଣ୍ଣମୟୀଙ୍କୁ ଆଣିବା ପଛରେ ଗୋପନ ଉଦ୍ଦେଶ୍ୟ ନଥିଲା, ଏପରି ନୁହେଁ । ତା' ଛଡ଼ା ଏଇ ଗଚ୍ଛିତ ଅର୍ଥକୁ ମର୍ଦ୍ଦରାଜ ପରିବାର ମନେ କରୁଥଲେ ସେମାନଙ୍କର ନ୍ୟାର୍ଯ୍ୟ ପ୍ରାପ୍ୟ ହିସାବରେ : ଆମ ଘରର ବୋହୂ, ହକ୍ ବାହା ହେଇ ଆସିଚି, କେହି କିଛି ମାଗି ଯାଚି ଯାଇ ନଥିଲା । ଯୁକ୍ତିଟା ପ୍ରକାଶ୍ୟରେ ନ ହେଲେ ମଧ୍ୟ ନେପଥ୍ୟରେ ଥିଲା ଏହିପରି । ଏହା ଭିନ୍ନ ମଧ୍ୟ ମର୍ଦ୍ଦରାଜ ପରିବାର ସପକ୍ଷରେ ଅନ୍ୟ ଏକ ବଳିଷ୍ଠ ଯୁକ୍ତି ଥିଲା । ତା' ହେଲା ଏହି-ଯେ ହରିହର ମର୍ଦ୍ଦରାଜଙ୍କର ନିଜ ନାତି ଶ୍ରୀଯୁକ୍ତ ସୁରଜିତ୍ ମଉଜ୍ (ଯାହା ସୁରଜିତ୍‌ଙ୍କର ମର୍ଦ୍ଦରାଜ ସଂଜ୍ଞାର ସ୍ୱକୃତ ନବୀକରଣ) ଡାକ୍ତରୀ ପାଶ୍ କରି ବର୍ତ୍ତମାନ ଏକ ଉଚ୍ଚ ସରକାରୀ ଚାକିରୀରେ କଟକରେ ମହଜୁତ୍ । ତେଣୁ ତାଙ୍କ ହେତୁ ବା ତାଙ୍କ ଜରିଆରେ ଅନ୍ୟମାନଙ୍କ ଦ୍ୱାରା ସର୍ବ-ଉତ୍କୃଷ୍ଟ ଡାକ୍ତରୀ ସାହାଯ୍ୟ ସୁବର୍ଣ୍ଣମୟୀଙ୍କୁ ମିଳିବା କେବଳ ସମ୍ଭବ୍ ନୁହଁ, ଏକପ୍ରକାର ନିଶ୍ଚିତ ।

ସତକୁ ସତ ସୁବର୍ଣ୍ଣମୟୀ ଆସିବା ପରେ ପରେ ସୁରଜିତ୍ ଥରେ ଡାକରା ପାଇ ଗାଁକୁ ଆସିଥିଲେ ଓ ଷ୍ଟେଥୋ ଯୋଗେ ସୁବର୍ଣ୍ଣମୟୀଙ୍କୁ ଢେର ସମୟ ଯାଏ ପରୀକ୍ଷା କରି ସାରି ଘୋଷଣା କରିଥିଲେ ଯେ ସୁବର୍ଣ୍ଣମୟୀ ଭୋଗୁଥିବା ରୋଗର ନାଁ ହେଲା ବ୍ରୋଙ୍କିଆଲ୍ ଆଜ୍‌ମା ଏବଂ ଏହା ନିରାମୟ ହେବା ପାଇଁ ଆଜି ପର୍ଯ୍ୟନ୍ତ ଡାକ୍ତରୀ ଶାସ୍ତ୍ରରେ କୌଣସି ଔଷଧ ଉଦ୍‌ଭାବନ ହେଇ ନାହିଁ । ଫେରିଗଲା ବେଳେ ପରିବେଷ୍ଟିତ ଆତ୍ମୀୟ ସ୍ୱଜନମାନଙ୍କୁ ଶେଷବାଣୀ ଶୁଣାଇ ଯାଇଥିଲେ ଯେ ଅଧୈର୍ଯ୍ୟ ହବାର କିଛି

କାରଣ ନାହିଁ । କାରଣ ବ୍ରୋଙ୍କିଆଲ ଆଜ୍‌ମାରେ ଭୋଗୁଥିବା ଲୋକମାନେ ସାଧାରଣତଃ ଦୀର୍ଘଜୀବୀ ହୋଇଥାଆନ୍ତି ।

ଆଁ ! ଦୀର୍ଘଜୀବୀ ! ମାନେ କେତେ ଦୀର୍ଘ ? ମନକୁ ମନ ଭାବୁଥିଲେ ଗୋବର୍ଦ୍ଧନ । କିନ୍ତୁ ରୋଗର ଉପସମ ପାଇଁ ସୁରଜିତ ମଉଜ୍ ଯେଉଁ ଦୀର୍ଘ ପ୍ରେସ୍‌କ୍ରିପ୍‌ସନ ଦେଇଯାଇଥିଲେ ସେ ଔଷଧ ଆଣିବାକୁ ଯାଇ ଗୋବର୍ଦ୍ଧନଙ୍କୁ ଖର୍ଚ୍ଚ କରିବାକୁ ପଡ଼ିଥିଲା ପ୍ରାୟ ଅଠାବନ ଟଙ୍କା । ସୁବର୍ଣ୍ଣମୟୀଙ୍କ ଘୋର ଅନିଚ୍ଛା ସତ୍ତ୍ୱେ ତାଙ୍କୁ ସମୟ ଓ ଅନୁପାନ ଅନୁଯାୟୀ ଗଳାଧଃକରଣ କରିବାକୁ ପଡ଼ିଲା ସବୁଯାକ ଔଷଧ ।

ପୁଣି ସମୟ ଗଡ଼ି ଚାଲିଲା, ରେଲ୍ ଚକର ଘୂର୍ଣ୍ଣନରେ, ଏରୋପ୍ଲେନ୍‌ମାନଙ୍କର ପ୍ରପେଲରର ଗତିରେ ଓ ବେତାର କେନ୍ଦ୍ରର କାଛଘଣ୍ଟାର ଶବ୍ଦରେ । କିନ୍ତୁ ସୁବର୍ଣ୍ଣମୟୀ ରହିଗଲେ ଗୋଟାଏ ଅବସ୍ଥାରେ, ଯାହାକୁ କୁହାଯାଏ ସ୍ଥିତାବସ୍ଥା । ତାଙ୍କର ସ୍ୱାସ୍ଥ୍ୟର ନା ହଉଛି ଉନ୍ନତି ବା ଅବନତି । ତାଙ୍କର ଦୈନନ୍ଦିନ କାର୍ଯ୍ୟସୂଚୀ ଅବ୍ୟାହତ ରଖିଛନ୍ତି ସୁବର୍ଣ୍ଣମୟୀ—ଖାଲି ବେଳେ ବେଳେ ଆସୁଚି ସେଇ ପୁରୁଣା ରୋଗର ଆକ୍ରମଣ । ଔଷଧ ଖାଇଲେ ଉପସମ ନ ହଉଚି, ତା' ନୁହଁ, କିନ୍ତୁ ପୂରାପୁରି ଭଲ ହବାର କୌଣସି ସୂଚନା ନାହିଁ ।

ପ୍ରଥମେ ପ୍ରଥମେ ସୁବର୍ଣ୍ଣମୟୀଙ୍କ ପ୍ରତି ମର୍ଦ୍ଦରାଜ ପରିବାରର ଯେଉଁ ଉଦ୍‌ବେଗ ଥିଲା ପରି ମନେ ହେଉଥିଲା ତାହା କମିଯାଇଛି ଅନେକ ପରିମାଣରେ । କିଏ ବା କେତେ ଜଗି ବସିଥିବ । ଡାକ୍ତର ତ କହିଗଲେ, ଏ ରୋଗ ଭଲ ହୁଏ ନାହିଁ । କାଛରେ ଟଙ୍ଗା ହେଇଥିବା ବାରୋମିଟରର ବାୟୁମଣ୍ଡଳର ଉତ୍ତାପ ରେକର୍ଡ଼ କଲାପରି ସୁବର୍ଣ୍ଣମୟୀଙ୍କର ଶ୍ୱାସର ଗ୍ରାଫ୍, କେତେବେଳେ ଉର୍ଦ୍ଧ୍ୱମୁଖୀ ତ କେତେବେଳେ ନିମ୍ନମୁଖୀ ପୁଣି କେତେବେଳେ ଏକ ସାମନ୍ତରାଳ ରେଖା । ତା' ଉପରେ କାହାର ଅକ୍ତିଆର ଅଛି ?

କିନ୍ତୁ ପ୍ରାୟ ଛଅମାସ କାଳ ଅତିବାହିତ ହୋଇ ଯାଇଥିଲେ ମଧ ସୁବର୍ଣ୍ଣମୟୀଙ୍କର ଔଷଧ କିଣା ଓ ଡାଏଟ୍‌ର ସାମାନ୍ୟ ବ୍ୟତିକ୍ରମ ଘଟି ନାହିଁ ଓ ଇତିମଧ୍ୟରେ ଗୋବର୍ଦ୍ଧନ ହାତରୁ ବେଶ୍ କିଛି କଞ୍ଚା ପଇସା ଖସି ଯାଇଛି । ଗୋବର୍ଦ୍ଧନ ଅନନ୍ୟୋପାୟ ହେଇ ଖର୍ଚ୍ଚ କରି ଚାଲିଛନ୍ତି, ଯଦିଓ ତାଙ୍କର ସବୁବେଳେ ମନେ ହେଉଛି, ସେ ବୋଧହୁଏ ଗଜରାଜପୁରର ଜଣେ ରୋଗିଣୀକୁ କିଣିଛନ୍ତି ଅନେକ ଅର୍ଥ ବ୍ୟୟ କରି । କିନ୍ତୁ ଠିକ୍ ସେତିକିବେଳେ ଗଜରାଜପୁରର ତିଳୋତ୍ତମା ଓ ମନୋରମା ଭାବୁଥିଲେ ସେମାନେ ବୋଧହୁଏ ସୁବର୍ଣ୍ଣମୟୀଙ୍କୁ ଛାଡ଼ିଦେଲେ ଅନେକ ଶସ୍ତାରେ ।

ଠିକ୍ ରାୟ ପରିବାର ପରି ମର୍ଦ୍ଦରାଜ ପରିବାର ମଧ୍ୟ ଅନେକ ଚେଷ୍ଟା କରିଛନ୍ତି ସୁବର୍ଣ୍ଣମୟୀଙ୍କର ହାତବାକ୍ସ ଭିତରକୁ ଉଙ୍କି ମାରିବା ପାଇଁ । କିନ୍ତୁ ତାହା ସମ୍ଭବ ହୋଇ ନାହିଁ, କାରଣ ସୁବର୍ଣ୍ଣମୟୀ । ସେ ଗଜରାଜପୁର ହେଉ ବା ଅଗରପଡ଼ା ହେଉ ତାଙ୍କର ମୌଳିକ ଚରିତ୍ର ପରିବର୍ତ୍ତନର କୌଣସି ଆଶା ନାହିଁ; ବିଶେଷ କରି ଏ ବୟସରେ । ସେ ବାରମ୍ବାର ହାତବାକ୍ସ ଭିତରୁ ମଠାଲୁଗା, ନ ହେଲେ ଭାଗବତ ବହି କାଢ଼ି ଆଣିବା ପାଇଁ ଚିତ୍ରାଙ୍ଗଦା ଓ ପ୍ରତିଭାମୟୀଙ୍କର ଅତର୍କିତ ଚେଷ୍ଟାକୁ ପ୍ରତିହତ କରିଛନ୍ତି ।

ଅମାପ ଖର୍ଚ୍ଚ ସତ୍ତ୍ୱେ ମର୍ଦ୍ଦରାଜ ପରିବାର ବୀତସ୍ପୃହ ହୋଇ ପଡ଼ିଥିଲେ ମଧ୍ୟ ଆଶା ହରେଇ ବସି ନାହାନ୍ତି । କିନ୍ତୁ ବେଳେବେଳେ ସେମାନଙ୍କର ସନ୍ଦେହ ହବାର ଏକମାତ୍ର କାରଣ ହେଲା—କାହିଁକି ରାୟ ବଂଶ ଏତେ ସୁବିଧାରେ ସୁବର୍ଣ୍ଣମୟୀଙ୍କୁ ଛାଡ଼ିଦେଲେ । ତାହାହେଲେ କଅଣ ସବୁ ଫାଙ୍କା—କିଛି ନାହିଁ । ଯଦି ସେଇଆ ହିଁ ହୁଏ ତାହାହେଲେ ହାତର କୁଞ୍ଚିକାଠି ଛାଡ଼ିବା ପାଇଁ ସୁବର୍ଣ୍ଣମୟୀ ଏତେ କୁଣ୍ଠିତ କାହିଁକି ? ପୁଣି ଥରେ ସାମୂହିକ ଆଶା ଜାଗରୂକ ହୁଏ । ଶ୍ୱାସରୋଗୀମାନେ ହେଇପାରନ୍ତି ଦୀର୍ଘଜୀବୀ, ଅମର ତ ନୁହନ୍ତି ।

କଥାଟା ଏକାବେଳକେ ସତ । ଶ୍ୱାସରୋଗୀମାନେ ଦୀର୍ଘଜୀବୀ, କିନ୍ତୁ ଅମର ନୁହନ୍ତି । ସତକୁ ସତ ଦିନେ ସୁବର୍ଣ୍ଣମୟୀ ବିଛଣା ଧରିଲେ । ତୁହାକୁତୁହା ଧଇଁ ଉଠିଲା । କେତେବେଳେ ସୁବର୍ଣ୍ଣମୟୀ ଧଇଁରେ ଅତିଷ୍ଠ ହୋଇ ବସି ରହିଲେ, ତ କେତେବେଳେ ମୁହଁମାଡ଼ି ଅଚେତ ହେଇ ପଡ଼ି ରହିଲେ, କିନ୍ତୁ ବିଛଣା ଛାଡ଼ି ତଳକୁ ଓହ୍ଲେଇବାକୁ ଆଉ ଶକ୍ତି ସଞ୍ଚୟ କରିପାରିଲେ ନାହିଁ । ଦୀର୍ଘ ଦୁଇଦିନ ଧରି ବିଛଣାରେ ତାଙ୍କୁ ପ୍ରାକୃତିକ କ୍ରିୟା କର୍ମ କରିବା ପାଇଁ ବେଡ୍-ପ୍ୟାନ୍ ଇତ୍ୟାଦି ଯୋଗାଇ ଦିଆଗଲା । ଅନଭ୍ୟସ୍ତ ସୁବର୍ଣ୍ଣମୟୀ ବିଛଣା ଉପରେ ଏ ସମସ୍ତ କୃତ୍ରିମ ବ୍ୟବସ୍ଥା ବ୍ୟବହାର କରିବା ହେତୁ ନିଜର ଅଦୃଷ୍ଟକୁ ପ୍ରଭୂତ ପରିମାଣରେ ଅଭିଶାପ ଦେଲେ । କିନ୍ତୁ ତଥାପି ସୁବର୍ଣ୍ଣମୟୀ କୃଷ୍ଣପକ୍ଷ ଚତୁର୍ଥୀ ଦିବା ଛଅ ଘଟିକା ସମୟରେ ଇହଲୀଳା ସମ୍ବରଣ କଲେ ଓ ଆଶ୍ଚର୍ଯ୍ୟ କଥା ଯେ, ସେତେବେଳକୁ ତାଙ୍କର ଡାହାଣ ହାତର ବଦ୍ଧମୁଷ୍ଟି ଭିତରେ ତଥାପି ମଧ୍ୟ ଆବଦ୍ଧ ଥିଲା ସେହି ବହୁ ଆକାଂକ୍ଷିତ କୁଞ୍ଚିକାଠିଟି ।

ସୁବର୍ଣ୍ଣମୟୀ ତଥାପି ସଧବା ଥିଲେ ଓ ପ୍ରତିଦିନ ନିୟମିତ ଭାବରେ ସ୍ନାନାଦି ସାରି କପାଳ ଉପରେ ଏକ ବିରାଟ ସିନ୍ଦୁରଟୋପା ଧାରଣ କରୁଥିଲେ । କାରଣ ପ୍ରତାପ ମର୍ଦ୍ଦରାଜ ଜୀବିତ କି ମୃତ ଏକଥା କୌଣସିଦିନ ସାବ୍ୟସ୍ତ କି ସମାହିତ ହେଇ ନଥିଲା । ତେଣୁ ସୁବର୍ଣ୍ଣମୟୀଙ୍କର ମୃତ ଦେହକୁ ଶ୍ମଶାନ ଉଦ୍ଦେଶ୍ୟରେ ନେଲାବେଳେ ଅହିଅ ଡେଙ୍ଗୁରା ବାଜିଥିଲା ଓ ପ୍ରଭୂତ ପରିମାଣରେ ଖଇ କଉଡ଼ି ରାସ୍ତାରେ ବିଞ୍ଚା ହେଇଥିଲା । ଶ୍ମଶାନକୁ ନବା ସମୟରେ ମଧ୍ୟ ସୁବର୍ଣ୍ଣମୟୀଙ୍କର ମୃତ ଦେହରେ ଡାହାଣ ପାପୁଲିଟି

ଭିତରେ ଯାହା ଝୁଲି ରହିଥିଲା, ତାହା ହେଲା ସେହି ଅତିପ୍ରିୟ କୁଞ୍ଚିକାଠି । ତାହା ମାଲଭାଇଙ୍କର ସାମୂହିକ ଚେଷ୍ଟାରେ ମୁଷ୍ଟିମୁକ୍ତ କରାଯାଇଥିଲା ।

ମାଲଭାଇମାନେ ଅତ୍ୟନ୍ତ ନିର୍ମମ । ସେମାନେ ଯଦି ଶବାଧାରରେ ଶୋଇ ରହିଥିବା ବ୍ୟକ୍ତିର ଜୀବିତାବସ୍ଥାରେ ଥିବା ଭାବାବେଗ ପାଇଁ ଚିନ୍ତିତ ହୋଇ ପଡ଼ନ୍ତେ, ତାହାହେଲେ ସେମାନେ ମାଲଭାଇ ହୋଇ ଥାଆନ୍ତେ କାହିଁକି ? ଆଗରୁ ଚାବିଟିକୁ ମୁଷ୍ଟିମୁକ୍ତ କରାଯାଇଥିଲା ଓ ଗୋଟିଏ ଗୁଆକାତି ସଂଯୁକ୍ତ କରି ସୁବର୍ଣ୍ଣମୟୀ ପିନ୍ଧିଥିବା ମଣିବନ୍ଧର ଦୁଇପଟ ସୁନାକାଚକୁ କାଟି ଦିଆଗଲା । ନାକର ନୋଥ ଟିକକ ପାଇଁ ଗୁଆକାତି ଅନାବଶ୍ୟକ, ତେଣୁ କିଏ ଜଣେ ଗୋଟାଏ ଝାଙ୍କରେ ତାକୁ ନାସାରନ୍ଧ୍ର ମୁକ୍ତ କଲା, ରକ୍ତର ସାମାନ୍ୟତମ ଅପବ୍ୟୟ ମଧ୍ୟ ହୋଇ ନାହିଁ । ତା' ପରେ ଯଥା ସମୟରେ ଦାହକ୍ରିୟା ସମାପ୍ତ ହେଲା ।

ଯଥା ସମୟରେ ଓ ଯଥାରୀତି ସୁବର୍ଣ୍ଣମୟୀଙ୍କର ଦଶାହ ଓ ଏକାଦଶାହ ପାଳିତ ହୋଇଥିଲା ଓ ସେଥିରେ ଗ୍ରାମର ଅଧିକାଂଶ ଲୋକଙ୍କୁ ଆପ୍ୟାୟିତ କରାଗଲା । ସେଥିରେ ମର୍ଦ୍ଦରାଜ ପରିବାର ତାଙ୍କର ସାମାଜିକ ପ୍ରତିଷ୍ଠା ଦୃଷ୍ଟିରୁ କୌଣସି କାର୍ପଣ୍ୟ କରି ନଥିଲେ ।

ଏକାଦଶାହ ପରେ ଆସିଥିଲା । ସେହି ବହୁ ଆକାଂକ୍ଷିତ ମୁହୂର୍ତ୍ତ । ସେହି ମୁହୂର୍ତ୍ତ ପାଇଁ ଗୋବର୍ଦ୍ଧନ ବହୁ ସାବଧାନତା ଅବଲମ୍ବନ କରିଥିଲେ । ଏ ସମସ୍ତ ସମୟ ଚାବିକାଠିଟିକୁ ନିଜର ଅକ୍ତିଆରରେ ରଖିବା ଛଡ଼ାମଧ୍ୟ ସେ ତାଙ୍କର ଭାଇମାନଙ୍କୁ (ରମେଶ ଓ କୃତିବାସ) ଆଗରୁ ଖବର ଦେଇଥିଲେ, ଯେପରି କେହି ପରେ ତାଙ୍କୁ ଦୋଷ ଦବାର ସୁଯୋଗ ନପାଏ ।

ସେଦିନ ରାତି ପ୍ରାୟ ଦଶଟା । ମର୍ଦ୍ଦରାଜ ପରିବାରର ବାହାର କବାଟ ଉତ୍ତମ ରୂପେ କିଳାଯାଇ କୌଣସି ଆଗନ୍ତୁକର ଆକସ୍ମିକ ଉପସ୍ଥିତକୁ ସୁଚାରୁ ରୂପେ ନିଷିଦ୍ଧ କରାଯାଇଛି । ଘର ଭିତରେ ଗୋଟିଏ ଲଣ୍ଠନ୍‌ର ମଳିନ ଆଲୋକକୁ ଘେରି ବସିଛନ୍ତି ଗୋବର୍ଦ୍ଧନ, ରମେଶ ଓ କୃତିବାସ । ଚିତ୍ରାଙ୍ଗଦା ଓ ପ୍ରତିଭା କୁମାରୀ ଦୁଆର ମୁହଁରେ ଠିଆ ହୋଇଛନ୍ତି ଏକ ଦ୍ୱୈତ କର୍ତ୍ତବ୍ୟର ନିର୍ଦ୍ଦେଶରେ । ସେମାନେ ଅତର୍କିତ ଭାବରେ ଘର ଭିତରକୁ ପଶି ଆସିବାକୁ ଚେଷ୍ଟିତ କୌଣସି ଆଗନ୍ତୁକ, ଶିଶୁ ବା କିଶୋରକୁ ବାରଣ କରିବା ସଙ୍ଗେ ସଙ୍ଗେ ବାକ୍ସର ପ୍ରତ୍ନତାତ୍ତ୍ୱିକ ପୁନରୁଦ୍ଧାର କାର୍ଯ୍ୟ ଦେଖିବାରୁ ମଧ୍ୟ ବଞ୍ଚିତ ହେବେ ନାହିଁ ।

ବାକ୍ସ ଖୋଲାଗଲା । ଯାହାସବୁ ପ୍ରାଥମିକ ଆବିଷ୍କାର ତାହା ଉଣା ଅଧିକେ ଜଣାଥିଲା । ତିନିଖଣ୍ଡ ଭାଗବତ ପୋଥି—ଖଣ୍ଡେ ମଠାଲୁଗା—ତା' ତଳକୁ ଗୋଟିଏ

କୋଥଳି, ଯେଉଁଥିରେ ଅତ୍ୟନ୍ତ ସନ୍ତର୍ପଣରେ ତୁଳସୀମାଳୀ, ରୁଦ୍ରାକ୍ଷମାଳା ଓ କିଛି ନିର୍ମାଲ୍ୟ ଗଚ୍ଛିତ ଅଛି । ତା' ତଳକୁ ବଡ଼ଦାଣ୍ଡରୁ କିଣା ଖଣ୍ଡେ ଜଗନ୍ନାଥ-ବଳଭଦ୍ର-ଶୁଭଦ୍ରାଙ୍କର ଟିଣ ବନ୍ଧେଇ ଫଟ । ତା' ତଳେ ଦୁଇଖଣ୍ଡ ନୂଆ ଗାମୁଛା । ତା' ତଳେ କିଛି ରୂପା ଟଙ୍କା—ଭିକ୍ଟୋରିଆ ମୁଣ୍ଡ ଥାଇ । ବୋଧହୁଏ ସତରଟା କି ଅଠରଟା । ତା' ତଳେ—ତା' ତଳେ ? ଆଉ କିଛି ନାହିଁ ? ଗୋବର୍ଦ୍ଧନଙ୍କର ଆଙ୍ଗୁଠିର ନଖ ଗୁଡ଼ାକ ଲୁହା ଟ୍ରଙ୍କତଳେ ରାମ୍ପୁଡ଼ି ହୋଇଯାଇ କିପରି ଗୋଟାଏ ଧାତବ ଶବ୍ଦ ସୃଷ୍ଟିକଲା ।

ଟ୍ରଙ୍କର ଢାଙ୍କୁଣୀ ଦିହରେ କେଇଟା ଖୋପରେ କିଛି କାଗଜ ଗେଞ୍ଜା ହେଇଥିଲା । ସେଗୁଡ଼ାକ ମଧ୍ୟ ତନଖି କରାଗଲା । ଖଣ୍ଡେ କାଗଜ ହେଲା ସୁବର୍ଣ୍ଣମୟୀଙ୍କ ବିବାହ ଉପଲକ୍ଷେ କେଉଁ ଅନାମିକା କବିଙ୍କ ଲିଖିତ ଖଣ୍ଡେ ବାହାଘର ଗୀତ । ଅନ୍ୟଟି ହେଲା ପ୍ରତାପ ମର୍ଦ୍ଦରାଜଙ୍କ ଯୁବକ ବେଳର ହଳଦିଆ ପଡ଼ି ଆସିଥିବା ଖଣ୍ଡେ ଫଟ । ଆଉ ଖଣ୍ଡେ କାଗଜ, ଯାହା ଆଜିକି ବୟାଳିଶିବର୍ଷ ତଳର—ପ୍ରତାପ ମର୍ଦ୍ଦରାଜଙ୍କ ହାତଲେଖା ଖଣ୍ଡେ ଚିଠି ।

ପ୍ରିୟତମା ସୁବର୍ଣ୍ଣମୟୀ,

ମୁଁ ତମର ଯୋଗ୍ୟ ସ୍ୱାମୀ ନୁହଁ । ମୁଁ ଆଜି ଯାଉଛି ଏକ ଅଜଣାର ସନ୍ଧାନରେ । ଯଦି କେବେ ପ୍ରଚୁର ଅର୍ଥ ନେଇ ଫେରି ପାରିବି—ଫେରିବି, ନ ହେଲେ ତମେ ତମର ମୁଣ୍ଡର ସିନ୍ଦୂର ପୋଛିଦବ । ତମର ସ୍ୱୀକୃତି ନ ଥିଲେ, ତମ ପ୍ରଭୂତ ଅଳଙ୍କାର ସବୁ ନବାବେଳେ ମୋର ମନେ ହେଇଥାଆନ୍ତା ମୁଁ ଜଣେ ଦସ୍ୟୁ; କିନ୍ତୁ ତମେ ମୋତେ ସେଥିରୁ ଆଜି ମୁକ୍ତି ଦେଇଛ । ତମକୁ ଅଜସ୍ର ଧନ୍ୟବାଦ । ମୋର ଗଭୀର ଚୁମ୍ବନ ଗ୍ରହଣ କରିବ । ମୋ ରାଣ, ଏ ଚିଠି କାହାକୁ ଦେଖାଇବ ନାହିଁ ।

ବିଦାୟ ।

। ଇତି ।

ତୁମର ହତଭାଗ୍ୟ ସ୍ୱାମୀ

ପ୍ରତାପ ମର୍ଦ୍ଦରାଜ

ଏହା ଯେ ପ୍ରତାପ ମର୍ଦ୍ଦରାଜଙ୍କର ନିଜର ହସ୍ତଲିପି ଓ ସ୍ୱାକ୍ଷର, ଏଥିରେ ସମବେତ ପର୍ଯ୍ୟବେକ୍ଷଣକାରୀ ମାନଙ୍କର କାହାର ତିଳେମାତ୍ର ସନ୍ଦେହ ନ ଥିଲା ।

*('ଝଙ୍କାର' ୨୯ଶ ବର୍ଷ, ଦଶମ ସଂଖ୍ୟା)*

●●

# ମଧ୍ୟରାତ୍ରିର ଅତିଥି

ହଠାତ୍ ଟେଲିଫୋନ୍ ବାଜି ଉଠିଲା ।

ନିଦ ଭାଙ୍ଗିଗଲା ବୋଧହୁଏ ପ୍ରଥମ ଗୋଟାଏ ଦୁଇଟା ରିଙ୍ଗ୍‌ରେ । ରାତି ପ୍ରାୟ ଗୋଟାଏ ବାଜିବ, ରାତ୍ରିର ଗଭୀରତା ହେତୁ ଟେଲିଫୋନ୍‌ର ରିଙ୍ଗ୍‌ପରି ଏକ ନିତ୍ୟ ନୈମିତ୍ତିକ ପରିଚିତ ଶବ୍ଦ ଅତ୍ୟନ୍ତ ଜରୁରୀ ମନେ ହୁଏ, ମନେହୁଏ ଯେପରି ଗୋଟାଏ ଫାୟାର୍ ବ୍ରିଗେଡ୍ ତା'ର ପିତଳ ଘଣ୍ଟି ବଜେଇ ବଜେଇ ଅତି ଦ୍ରୁତଗତିରେ ରାସ୍ତା ଉପରେ ଚାଲିଯାଉଛି ।

ରିସିଭର୍‌ଟାକୁ ତରତରରେ ଉଠେଇ ନେଇ ମାଉଥ୍‌ପିସ୍ ପାଖରେ କହିଲି, 'ହ୍ୟାଲୋ' ! କିନ୍ତୁ ସେଇ ପରିବେଶ ଭିତରେ ମୋର ନିଜର ସ୍ୱର ମୋ କାନକୁ କିପରି ଖାପ୍‌ଛଡ଼ା ମନେ ହେଲା । ଆରପଟୁ କିଏ କହିଲା, 'ଇଜ୍ ଦ୍ୟାଟ୍ ବିନୋଦ୍ ? କ୍ୟାପ୍‌ଟେନ୍ ହିଅର୍ ।' ମୁଁ ଟିକିଏ ରହିଗଲି । ଅତି ସ୍ପଷ୍ଟ ଉଚ୍ଚାରଣ ଏବଂ କହିବାର ଭଙ୍ଗୀରୁ ମନେହଉଛି ଭଦ୍ରଲୋକଙ୍କର ଇଂରାଜୀ କଥନ ଶୈଳୀ ବେଶ୍ କାଇଦା ଦୁରସ୍ତ, ପ୍ରତିଟି ଶବ୍ଦ ଯେପରି ଜିଭ ଉପରେ ଗଡ଼ିଗଡ଼ି ଆସୁଛି ଏକ ସାବଲୀଳ ଗତିରେ । ତା' ଛଡ଼ା, କ୍ୟାପ୍‌ଟେନ୍ ! ଓ ମୋର ଏଇ ପଞ୍ଚାଶୋତ୍ତର ବୟସରେ ମତେ ସମ୍ବୋଧନ କରୁଛି 'ବିନୋଦ' ! ଏ ସମସ୍ତ କଥା ମୋ ପାଇଁ ବେଶ୍ ରହସ୍ୟମୟ ହୋଇ ଉଠିଥିଲା । ଏବଂ ଏଇ କ୍ୟାପ୍‌ଟେନ୍ ବ୍ୟକ୍ତିଟିକୁ ଯଥାଯଥ ଭାବେ ଚିହ୍ନଟ କରିବାକୁ ଚେଷ୍ଟା କରୁକରୁ ମୋର ପାଲ୍‌ଟା ଜବାବ୍ ଦବା ପାଇଁ କିଛି ସେକେଣ୍ଡ ବିଳମ୍ବ ହୋଇ ଯାଇଥିଲା, କିନ୍ତୁ ଷ୍ଟେନ୍‌ଗନ୍ କି ବିଳମ୍ବ ସହ୍ୟ କରେ ? ପୁଣିଥରେ ଆରମ୍ଭ ହେଲା ଫାୟାରିଂ, 'ଓଲ୍‌ଡ୍ ବୟ ! ସକ୍‌ସେସ୍ ହ୍ୟାଜ୍ ଗନ୍ ଇନ୍‌ଟୁ ଇୟୋର୍ ହେଡ୍, ତୁ ଯା ଭିତରେ ଭୁଲିଯାଇଛୁ କ୍ୟାପ୍‌ଟେନ୍ ଦାସ୍‌କୁ ?

ମୁଁ ଯେପରି ଆକାଶରୁ ପଡ଼ିଲି । କ୍ୟାପ୍‌ଟେନ୍ ଦାସ୍ ! ତରତରରେ କହିଲି, 'କ୍ୟାପ୍‌ଟେନ୍, ଆଇ ଆପୋଲଜାଇଜ୍...କିନ୍ତୁ ମତେ ଆଉ କହିବାକୁ ନ ଦେଇ ସେପଟୁ ଆଦେଶ ଆସିଲା 'ଲୁକ୍, ମୁଁ ଗୋଟାଏ ଅସୁବିଧାରେ ପଡ଼ିଯାଇଚି—ତୁ ଏଇ ମୁହୂର୍ତ୍ତରେ ଷ୍ଟେସନ୍‌କୁ ଆସି ମତେ ରେଲ୍‌ଓ୍ୱେ ପୋଲିସ୍ ଷ୍ଟେସନ୍‌ରେ ଦେଖା କର—ରିମେମ୍ବର, ଦିସ୍ ଇଜ୍ ଆନ୍ ଇମର୍‌ଜେନ୍‌ସି ।' ବାସ୍ ସେତିକି, ତା'ପରେ ରିସିଭର୍‌ଟା କ୍ରାଡ୍‌ଲ୍‌ରେ ରଖିବାର ଶବ୍ଦ ଶୁଣାଗଲା ।

କ୍ୟାପ୍ଟେନ୍ ଦାସ ! ଆମେ ଥିଲୁ କଲେଜ ଜୀବନରେ ସହପାଠୀ । କିନ୍ତୁ ସିଏ ଥିଲା ଅନ୍ୟ ଧାତୁରେ ଗଢ଼ା, ତେଣୁ ସେ' ଯାଇ ଏଅର୍‌ଫୋର୍ସରେ ଯୋଗ ଦେବା ପରେ (ତାହା ମାତ୍ର ତିନିମାସ ପାଇଁ) ଜୀବନରେ ପାଞ୍ଚଛ' ଥର ତା' ବିଷୟରେ ହୁଏତ ବନ୍ଧୁ ମହଲରେ ଆଲୋଚନା ହେଇଥିବ, କିନ୍ତୁ ମୁହାଁମୁହିଁ ଦେଖା ହୋଇ ନାହିଁ ଥରକ ପାଇଁ ମଧ । ତଥାପି ସେ ଥିଲା ଯଥେଷ୍ଟ ଜୀବନ୍ତ ଚରିତ୍ର, ଯାହାକୁ ଏତେ ଦୀର୍ଘଦିନର ବ୍ୟବଧାନରେ ମଧ ଭୁଲିବାର ନୁହେଁ—ମୁଁ ଭୁଲିନାହିଁ ମଧ—କେବଳ ଟେଲିଫୋନ୍ ଜରିଆରେ ତା'ର ସ୍ୱରଟାକୁ ଚିହ୍ନଟ କରିବାରେ ଅସୁବିଧା ହେଇଥିଲା ଯାହା ।

ଆଉ ମତେ ଏଇ ସହରରେ ଆବିଷ୍କାର କରିବା ପାଇଁ କ୍ୟାପ୍ଟେନ୍‌କୁ (ଆମେ ପିଲାବେଳେ ତାକୁ ଏଇ ନାଆଁରେ ଡାକୁଥିଲୁ) ବିଶେଷ ଅସୁବିଧା ନ ହେଉଥିବାର କଥା । କାରଣ ମୁଁ ଏଇ ସହରରେ ଗତ ତିରିଶି ବର୍ଷ ଧରି ପ୍ରାୟ ସ୍ଥାୟୀ ହେଇଯାଇଛି । ଡାକ୍ତରୀ କରିବାକୁ ହେଲେ ପ୍ରାୟ ସହରର ସବୁ ସ୍ତରର ଲୋକଙ୍କ ସହିତ ପରିଚିତ ହବାକୁ ପଡ଼ିଥାଏ ଓ ତା' ଛଡ଼ା ବର୍ତ୍ତମାନ ମୁଁ ଏଇ ସହରର ମେୟର୍ । ମେୟର୍ ଥାଇ ମଧ ଘଣ୍ଟାଏ ଦୁଇ ଘଣ୍ଟା ଏବେବି ଅବୈତନିକ ଡାକ୍ତରୀ କରିବାକୁ ପଡ଼େ । ଡାକ୍ତରୀ ବ୍ୟବସାୟଟା ହିଁ ସେଇୟା ।

କ୍ୟାପ୍ଟେନ୍ କହିଛି ଇମରଜେନ୍‌ସି, ତେଣୁ ସମୟ ନଷ୍ଟ ନ କରି ମୁଁ ନୈଶ ପୋଷାକ ପରିବର୍ତ୍ତନ କରି ବାହାରକୁ ଯିବା ପୋଷାକ ବଦଳେଇବାକୁ ଆରମ୍ଭ କଲି । ଡ୍ରାଇଭର୍‌କୁ ଉଠେଇ, ଗାଡ଼ି ବାହାର କରିବା ପାଇଁ କହିଲି । ମତେ ନିଜେ ଯିବାକୁ ହବ, କ୍ୟାପ୍ଟେନ୍ ପାଇଁ କେବଳ ଡ୍ରାଇଭର୍ ଓ ଗାଡ଼ି ପଠେଇଦବା ଯେପରି ତା'ର ବ୍ୟକ୍ତିତ୍ୱକୁ ଅବମାନନା କରିବା ହୁଅନ୍ତା ।

ନିଜର ପ୍ରସ୍ତୁତି ଯନ୍ତ୍ରଚାଳିତ ପରି କରି ଯାଉଥିଲେ ମଧ କଲେଜ ଜୀବନର ସ୍ମୃତି ଆଖି ଆଗରେ ଚଳଚ୍ଚିତ୍ର ପରି ଖୋଲି ଯାଉଥାଏ । ଏଇ କ୍ୟାପ୍ଟେନ୍‌ର ଥିଲା ଏକ ଲମ୍ବା ଚଉଡ଼ା ନାଆଁ, ତେଣୁ ତାକୁ ସଂକ୍ଷେପରେ ସମସ୍ତେ ଡାକୁଥିଲେ 'କ୍ୟାପ୍ଟେନ୍' ବୋଲି । ଆଉ ତା' ଛଡ଼ା ତା'ର ଚେହେରା ମଧ ଥିଲା ଲମ୍ବା ଆଉ ଗୋରା, କ୍ୟାପ୍ଟେନ୍ ଉପାଧିର ଯୋଗ୍ୟ । ସୁନ୍ଦର ଟେନିସ୍ ଖେଳିପାରେ, ଭଲିବଲ୍ ମଧ ଭଲ ଖେଳେ ଓ କଲେଜ ସ୍ପୋର୍ଟସ୍‌ରେ ପୋଲ୍ ଭଲ୍ଟ୍, ସଟ୍‌ପୁଟ୍ ଓ ଜାଭେଲିନ୍ ଥ୍ରୋ ପ୍ରଭୃତି କେତେଗୁଡ଼ାଏ ପ୍ରାଇଜ୍ ତା' ପାଇଁ ଥୁଆ । ବେଶ୍ ବୁଦ୍ଧିଦୀପ୍ତ ମୁହଁ, ଉଜ୍ଜ୍ୱଳ ଆଖି—ଆଉ ପ୍ରକୃତରେ ମଧ କ୍ୟାପ୍ଟେନ୍ ଥିଲା ଯଥେଷ୍ଟ ବୁଦ୍ଧିମାନ୍, କିନ୍ତୁ ତା'ର ବିକେନ୍ଦ୍ରିତ ପ୍ରତିଭାକୁ ସେ ପାଠପଢ଼ାରେ ଯଥାଯଥ ବିନିଯୋଗ କରିପାରୁ ନଥିବାରୁ ତା'ର ବ୍ରିଲିଆଣ୍ଟ୍ ହବାର ପ୍ରଚୁର ସମ୍ଭାବନା ସତ୍ତ୍ୱେ ଛାତ୍ର ହିସାବରେ ସେ ଥିଲା ଆଭ୍‌ରେଜ୍ ।

ସେ ସମୟର କଥା । ଆମେ କ୍ୟାପ୍‌ଟେନ୍‌ର ସବୁ ସହପାଠୀମାନେ, ଛାତ୍ରଜୀବନ ସରିବା ପରେ ପ୍ରକୃତ ଜୀବନକୁ କିପରି ସାମ୍ନା କରିବୁ, ଏଇ କଥା ଚିନ୍ତା କରୁଥିବା ବେଳେ କ୍ୟାପ୍‌ଟେନ୍‌ର ସେସବୁ ନେଇ ମୁଣ୍ଡ ଖେଳେଇବାର ମୋଟେଇ ପ୍ରୟୋଜନ ନଥିଲା । ବି.ଏ. ପାଶ୍ କରି ସାରି (ମାତ୍ର ସ୍ୱଳ୍ପ ସମୟ ଏଆର୍ ଫୋର୍ସ୍ କେରିଅର୍ ପରେ) ସିଏ ସିଧା ଚାଲିଯାଇଥିଲା ବିଲାତ୍, ବାର୍-ଆଟ୍-ଲ' କରିବା ପାଇଁ । କ୍ୟାପ୍‌ଟେନ୍‌ର ବାପା ଥିଲେ ତତ୍‌କାଳୀନ ଆଇ.ଜି.ଅଫ୍ ପୁଲିସ୍, ତେଣୁ ପୁଅକୁ ବାରିଷ୍ଟର୍ କରିବା ପାଇଁ ବିଲାତ୍ ପଠାଇବା ସେ ପରିବାର ପାଇଁ ଥିଲା ଏକ ଅତ୍ୟନ୍ତ ମାମୁଲି ଘଟଣା । କ୍ୟାପ୍‌ଟେନ୍ ବିଲାତ୍ ଚାଲିଯିବା ପରେ ବେଶ୍ କିଛିଦିନ ଧରି ତା'ର ବନ୍ଧୁ ମହଲରେ ତା' ବିଷୟରେ ଆଲୋଚନା ହେଉଥିଲା, ଅର୍ଥାତ୍ ଆମେମାନେ ଅନେକ ତାକୁ ମିସ୍ କରୁଥିଲୁ ବୋଲି କୁହାଯାଇପାରେ । ଦିନେ ଦିନେ କ୍ୟାପ୍‌ଟେନ୍ କଲେଜ୍ ଆସୁଥିଲା ଗୋଟାଏ ଅତିକାୟ ବି.ଏସ୍.ଏ. ମଟର ସାଇକେଲ୍‌ରେ ତ ଆଉ ଦିନେ ଦିନେ ଆସୁଥିଲା ଗୋଟାଏ ପ୍ରକାଣ୍ଡ ଅଷ୍ଟିନ୍ ଗାଡ଼ିରେ । ସେ ଥିଲା ଫ୍ଲାଇଙ୍ଗ୍ କ୍ଲବ୍‌ର କୃତୀ ଛାତ୍ର, ତେଣୁ ସେ ତା'ର ବନ୍ଧୁମାନଙ୍କୁ ଟାଇଗର୍ ମଥ୍ ଜାହାଜରେ ଓଡ଼ିଶାର ଆକାଶରେ ଜୟ୍ ରାଇଡ୍ ଦେଇଛି ବହୁବାର । କିଏ ତା' ସହିତ ଫୋର୍ସଡ୍ ଲ୍ୟାଣ୍ଡିଂ କରିଚି ଦିଘାରେ ତ ଆଉ କିଏ ପୁରୀର ସମୁଦ୍ର ବେଳାରେ । ସେ ସମୟରେ ଆମପରି ମଧ୍ୟବିତ୍ତ ବା ନିମ୍ନ-ମଧ୍ୟବିତ୍ ପରିବାରର ସନ୍ତାନମାନଙ୍କ ପାଇଁ କ୍ୟାପ୍‌ଟେନ୍‌ର ସାହଚର୍ଯ୍ୟ ଥିଲା ଅତି ମାତ୍ରାରେ ଥ୍ରିଲିଙ୍ଗ୍ । ତେଣୁ କ୍ୟାପ୍‌ଟେନ୍‌ର ଅବର୍ତ୍ତମାନରେ ତା' ସମ୍ପର୍କରେ ଆମମାନଙ୍କର ବ୍ୟକ୍ତିଗତ ଅନୁଭୂତି ରୋମନ୍ଥନ କରୁକରୁ ବେଶ୍ କିଛି ଦିନ ଚାଲିଯାଇଥିଲା ଏବଂ ଯାହା ହେଇଥାଏ, କିଛିଦିନ ପରେ ତାରୁଣ୍ୟର ଏଇ ସ୍ମୃତି ବିଳାସ ଦିନେ ମଳିନ ପଡ଼ି ଯାଇଥିଲା ।

କ୍ୟାପ୍‌ଟେନ୍‌ର ବିଲାତ ଜୀବନ ବିଷୟରେ ଯାହା କିଛି ମଝେ ମଝେ ଶୁଣିବାକୁ ମିଳୁଥିଲା, ତା' ଭିତରୁ କେତେ ସତ କେତେ ମିଛ, ସେ କଥା ନିର୍ଭୁଲ ଭାବରେ ଅନୁମାନ କରିପାରିବା ସମ୍ଭବପର ନ ଥିଲା । କେବେ କେବେ ଶୁଣାଯାଏ କ୍ୟାପ୍‌ଟେନ୍ ହର୍ସ ରେସ୍‌ରେ ଓ ଫୁଟ୍‌ବଲ୍ ପୁଲ୍‌ରେ ପ୍ରଚୁର ଅର୍ଥ ଗ୍ୟାମ୍ବଲ କରୁଛି ତ ପୁଣି କେବେ କେବେ ଶୁଣାଯାଏ ସେ ଜଣେ ଶ୍ୱେତାଙ୍ଗୀ ତରୁଣୀର ପ୍ରେମରେ ପଡ଼ିଯାଇଛି । ପୁଣି ବେଳେବେଳେ ଗୁଜବ୍ ଉଠେ କ୍ୟାପ୍‌ଟେନ୍ ଆଉ ଫେରୁ ନାହିଁ । ସେ ଜଣେ ପ୍ରଚୁର ବିତ୍ତଶାଳୀ ବିଧବାକୁ ବିବାହ କରି ଲଣ୍ଡନରେ ସେଟ୍‌ଲ କରିଗଲା । ଏଇସବୁ ଖବର ଯେତେବେଳେ ମଝିରେ ମଝିରେ ଆସିଯାଏ, ସେତେବେଳେ କିଛି ସମୟ ପାଇଁ କ୍ୟାପ୍‌ଟେନ୍ ସମ୍ପର୍କିତ ଚର୍ଚ୍ଚା ବନ୍ଧୁ ମହଲରେ ଗୋଟିଏ କ୍ଷୁଦ୍ର ଆଲୋଚନାର ଆବର୍ତ୍ତ ସୃଷ୍ଟି କରିଦେଇ ପୁଣି ଶାନ୍ତ ହୋଇଯାଏ । କିନ୍ତୁ ପ୍ରାୟ ଚାରିବର୍ଷ ପରେ କ୍ୟାପ୍‌ଟେନ୍

ଭାରତବର୍ଷକୁ ଫେରିଆସେ କ୍ରିଷ୍ଟିନ ନାମ୍ନୀ ଗୋଟିଏ ସୁନ୍ଦରୀ ତରୁଣୀକୁ ସଙ୍ଗରେ ଧରି । କ୍ରିଷ୍ଟିନ ଲଣ୍ଡନର କୌଣସି ହସ୍‌ପିଟାଲ୍‌ରେ ଥିଲା ନର୍ସ ଓ ହେପାଟାଇଟିସ୍ ପୀଡ଼ିତ କ୍ୟାପ୍‌ଟେନ୍ ସେଠାରେ ସାମୟିକ ଆତିଥ୍ୟ ସ୍ୱୀକାର କରି କ୍ରିଷ୍ଟିନର ପାଣି ପ୍ରାର୍ଥନା କରିଥିଲା । ଏଇ କ୍ରିଷ୍ଟିନର ପିତା ଥିଲେ ଇଟାଲୀୟ ଓ ମାତା ଫ୍ରେଞ୍ଚ୍, ତେଣୁ କହିବା ବାହୁଲ୍ୟ ଯେ' ସେ ଏକାଧାରରେ ପିତାର କୌଳିନ୍ୟ ଓ ମାତାର ସୌନ୍ଦର୍ଯ୍ୟର ଉତ୍ତରାଧିକାରିଣୀ ଭାବେ ହେଇ ଉଠିଥିଲା ଅସାମାନ୍ୟ ସୁନ୍ଦରୀ, ଚିନିର କଣ୍ଢେଇପରି । ସେମାନେ ଆସି ପ୍ରଥମେ ରହିଥିଲେ କଲିକତା ରେଡ୍ ରୋଡ୍‌ରେ ତାଙ୍କର ପୈତୃକ ଫ୍ଲାଟ୍‌ରେ । ଦୀର୍ଘ ଚାରିବର୍ଷ ଧରି ଅଜସ୍ର ପୈତୃକ ଅର୍ଥ ଶ୍ରାଦ୍ଧ କରି ସାରି କ୍ୟାପ୍‌ଟେନ୍‌ର ବିଲାତରେ ଏକମାତ୍ର ଆଚିଭମେଣ୍ଟ ଥିଲା କ୍ରିଷ୍ଟିନକୁ ବିବାହ କରିବା, କାରଣ ତିନିବର୍ଷର ପୁନଃପୌନିକ ଚେଷ୍ଟା ସତ୍ତ୍ୱେ ମଧ୍ୟ ସେ ବାରିଷ୍ଟରି ପାଶ୍ କରିପାରି ନଥିଲା । ତା'ର ବେପରୁଆ ମୁହୂର୍ତ୍ତଗୁଡ଼ିକ କଟୁଥିଲା ଷ୍ଟୋହର୍ସମାନଙ୍କ ଉପରେ ବାଜି ଲଗେଇବାର ବ୍ୟର୍ଥତାରେ ଓ ଫାଷ୍ଟ ସୋସାଇଟି ଉଇମେନମାନଙ୍କ ସହିତ ଲଘୁଚପଳ ପରିହାସରେ । କିନ୍ତୁ ସେଥିପାଇଁ ସାମାନ୍ୟତମ ଅନୁଶୋଚନା ନ ଥିଲା କ୍ୟାପ୍‌ଟେନର । ସେ କଲିକତା ଫେରିଆସି କହୁଥିଲା, ବାରିଷ୍ଟରି ପାଶ୍ ନକଲେ ହେଭେନ୍‌ସ ଡୋଣ୍ଟ ଫଲ । ଜୀବନରେ ସ୍ୱଚ୍ଛନ୍ଦରେ ଚଳିବା ପାଇଁ ନିଶ୍ଚୟ କିଛିନା କିଛି କରାଯାଇ ପାରିବ, ଟଙ୍କା ଆସିବ ଠିକ୍, ଓନ୍‌ଲି ସମ୍‌ବଡ଼ି ହାଜ୍ ଟୁ ଡୁ ଦି ଥିଙ୍କିଙ୍ଗ୍ ।

ମୋର ଏଇ ଅନ୍ୟମନସ୍କ ଅବସ୍ଥାରେ ମୁଁ କିଛି ପାଉ ନାହିଁ । ପ୍ରଥମ କଥା ହେଲା ଓ୍ୱାର୍ଡ୍‌ରୋବ ଖୋଲିବାର ଚାବି । ସେଟା ମିଳେନା, ତା'ପରେ ସକ୍‌ସ, କେଉଁଆଡ଼େ ଯେ ସେମାନେ ପଡ଼ିଥାଆନ୍ତି, ସେମାନଙ୍କୁ ଏଇ ମଧ୍ୟରାତ୍ରିରେ ଠିକ୍ ଠିକ୍ ଠଉର୍ କରି ଚିହ୍ନଟ କରିବା ମଧ୍ୟ ଏକ ଦୁଃସାଧ୍ୟ ବ୍ୟାପାର । ମୋ ସ୍ତ୍ରୀ ତଥାପି ଶୋଇ ରହିଛନ୍ତି, କାରଣ ଏଇ କ୍ୟାପ୍‌ଟେନ୍ ବ୍ୟକ୍ତିଟି ସମ୍ପର୍କରେ ସେ କିଛି ଜାଣନ୍ତି ନାହିଁ । ତେଣୁ ମୋର ଏଇ ବ୍ୟସ୍ତତା ପାଇଁ ସେ ସମ୍ପୂର୍ଣ୍ଣ ନିସ୍ପୃହ । କିନ୍ତୁ ବିଭିନ୍ନ ଜିନିଷ ଆହରଣ କରିବାରେ ମୋର ଏଇ ଅସାଫଲ୍ୟ ତାଙ୍କ ପାଇ ବେଶ୍ ହାସ୍ୟକର ପରିସ୍ଥିତି ହେଉଥିବ, ତାହା ମୁଁ ଅନୁମାନ କରିପାରୁଛି । ଯାହାହଉ, ଯାହା କିଛି ପାଇଲି, ସେଥିରେ ନିଜକୁ ସାମାନ୍ୟ ଭଦ୍ର ଅବସ୍ଥାକୁ ଆଣିସାରି ମୁଁ ତରତରରେ ସିଡ଼ି ଓହ୍ଲେଇ ଚାଲିଲି ଗାଡ଼ି ପାଖକୁ । ଯିବା ସମୟରେ ମୁହୂର୍ତ୍ତକ ପାଇଁ ଫ୍ରିଜଟାକୁ ଖୋଲିଧରି ତଦାରଖ୍ କରି ନେଇଥିଲି, କିଛି ଫଳ ଓ କିଛି ଟିଣ ଖାଦ୍ୟ ମହଜୁଦ୍ ଅଛି । କିଛି ସୋଡ଼ାବୋତଲ ଫ୍ରିଜ୍‌ରେ ରଖିଦେଲି ମାତ୍ର ।

ଡ୍ରାଇଭର୍ ଗ୍ୟାରେଜରୁ ଗାଡ଼ି କାଢ଼ି ସାରିଥିଲା ଓ ଗାଡ଼ିର ଆଲୋକ ମଧ୍ୟରାତ୍ରିର ସାନ୍ଦ୍ର ଅନ୍ଧକାର କାଟି ରାସ୍ତାଟାକୁ ଜୀବନ୍ତ କରି ତୋଳିଲା । କିଛି ଅଳ୍ପ ରାସ୍ତା ନୁହଁ, ଷ୍ଟେସନ ପହଞ୍ଚିବା ପୂର୍ବରୁ ଆମକୁ ଅନ୍ୟୂନ ସାତମାଇଲ ରାସ୍ତା ଅତିକ୍ରମ କରିବାକୁ

ପଡ଼ିବ । ଶୂନ୍‌ଶାନ୍ ଟ୍ରାଫିକମୁକ୍ତ ରାସ୍ତା ଉପରେ ମୁଁ ଗାଡ଼ିରେ ଆବେଗଶୂନ୍ୟ ହୋଇ, ବସି ରହିଥିଲି ।

ହଁ, ଠିକ୍ ତା ପରେ ପରେ କ୍ୟାପ୍‌ଟେନ ସତକୁ ସତ ଗୋଟାଏ ବିରାଟ ଯୋଜନା ହାତକୁ ନେଇଥିଲା । ବରାହ ନଗରରେ ତାର ପ୍ରଚୁର ଭୂସମ୍ପତ୍ତିରୁ କେବଳ କୋଡ଼ିଏ ଏକରର ଖଣ୍ଡେ ପ୍ଲଟ ଛଡ଼ା ବାକୀ ସବୁ ସେ ବିକ୍ରୟ କରି ଦେଇଥିଲା । ହାତରେ କିଛି ମୋଟା ଧରଣର ପୁଞ୍ଜି ପ୍ରୟୋଜନ, ନହେଲେ ବ୍ୟାଙ୍କରୁ ଟଙ୍କା ଆଣିହବ କେମିତି ? ତା'ପରେ ଆରମ୍ଭ କରାଯାଇଥିଲା ଯୋଜନା ସ୍କିମ୍ ଏଷ୍ଟିମେଟ୍, ବ୍ଲୁ ପେପର୍ ହ୍ୱାଇଟ୍ ପେପର ଓ ଯୋଜନାର ରୈଖିକ ଚିତ୍ରର ଅସୁମାରୀ ବ୍ଲୁପ୍ରିଣ୍ଟ ।

ଛଅ ଏକର ଜମିରେ ଲାଗିବ କେବଳ ବାରଶହ ସାଗୁଆନ ଚାରା ଓ ସେମାନେ ମାଟି ଆଉ ପବନ ଖାଇ ବିନା ପରିଶ୍ରମରେ ତିରିଶ ବର୍ଷ ପରେ ପ୍ରସ୍ତୁତ ହୋଇ ଯାଇଥିବେ ମାର୍କେଟ୍ ପାଇଁ । ଆଜିର କଲିକତା ବାହାରେ ସାଗୁଆନ କ୍ୟୁବିକ ଫୁଟ ପଞ୍ଚାଅଶି ଟଙ୍କା, ସେତେବେଳକୁ ସାଗୁଆନ ହୋଇ ଯାଇଥିବ ନିଆଁ ଦାମ—ଗୋଟାଏ ଫର୍ଚୁନ । ତା'ପରେ ଗୋଟାଏ ଏକର ଜମିରେ ପୋଲ୍‌ଟ୍ରି ଫାର୍ମିଙ୍ଗ । କଲିକତାର ଗୋଟିଏ ପଡ଼ାର ଚାହିଦା ମଧ୍ୟ ଯୋଗେଇ ହବ ନାହିଁ । ସେ ଗୋଟାଏ ସାଇକ୍‌ଲ । ବର୍ଷକୁ ବର୍ଷ ଉତ୍ପାଦନ କ୍ଷମତା ହ୍ରାସ ହୋଇ ଆସୁଥିବା କୁକୁଡ଼ାମାନଙ୍କୁ ଛଟେଇ କରି ବିକ୍ରି କରି ଦିଆଯିବ ବଜାରରେ ଏବଂ ସେମାନଙ୍କ ଜାଗାରେ ଆଉ ତିନିହଜାର ଠାରୁ ଚାରିହଜାର କୁକୁଡ଼ା ତିଆରି ହୋଇ ଯାଇଥିବେ ଅଣ୍ଡା ଦବାର ପିକ୍ ପିରିଅଡ଼ରେ, ଆଉ ତା' ଛଡ଼ା ସବୁବେଳେ ପ୍ରାୟ ଦଶହଜାର କୁକୁଡ଼ାଛୁଆ ମହଜୁଦ ଥିବେ, ଯେଉଁମାନେ ଅଣ୍ଡା ଦବାର ପିକ୍ ପିରିଅଡ଼ ଭିତରେ ଯାଇ ଭବିଷ୍ୟତରେ ବଜାରରେ ବିକ୍ରି ହେବେ । ଏ ଯୋଜନା ତ ନିଜେଇ ଲାଭବାନ, ତା ଛଡ଼ା କୁକୁଡ଼ା ଡ୍ରପିଙ୍ଗ ସବୁ ହବ ଏ ଯୋଜନାର ଗୋଟାଏ ଫ୍ରିନଜ ବେନିଫିଟ । ଖୁବ୍ ପୁଷ୍ଟିକର ସାର ! ଆଉ ଗୋଟାଏ ପର୍ଯ୍ୟାପ୍ତ ଏରିଆରେ ରହିବେ ଅଷ୍ଟ୍ରେଲିଆର ଧଳା ଘୁଷୁରୀ । ସେମାନେ ବାହାରକୁ ଯିବା ଦରକାର ନାହିଁ—ଖାଲି ଗୋଟାଏ ଜାଗାରେ ପଡ଼ିପଡ଼ି ଫିଡ଼ ଖାଇ ଦେହରେ ଚର୍ବି ଜମା କରୁଥିବେ ଅଥଚ ଗୋଟାଏ ସିଜନ୍‌ରେ ସେମାନେ ଦେବେ ଆଠଟା ଠାରୁ ଦଶଟା ପର୍ଯ୍ୟନ୍ତ ଛୁଆ । ଦେ ମଲ୍‌ଟିପ୍ଲାଇ ସୋ ଫାଷ୍ଟ ! କେବଳ ଏତିକି ନୁହଁ, ଗ୍ରାମଫେଡ଼୍ ଛେଳି ଆଉ ପ୍ରାୟ ଗୋଟାଏ ଏକରର ପୋଖରୀ ମାଛ ଚାଷ ପାଇଁ, ସବୁ ଏ ଯୋଜନାର ଅନ୍ତର୍ଭୁକ୍ତ । ପ୍ରତ୍ୟେକଟା ସ୍କିମ୍ ସେଲଫ ସପୋର୍ଟିଙ୍ଗ । ପ୍ରାୟ ଏକବର୍ଷ ଭିତରେ ଏ ସମସ୍ତ ସ୍କିମ୍ ଏଷ୍ଟିମେଟ୍ ତିଆରି ସରିବା ପରେ ବ୍ୟାଙ୍କରୁ ଋଣ ଆସିଥିଲା ପ୍ରାୟ ପାଞ୍ଚଲକ୍ଷ ଟଙ୍କା । ଏ ସମସ୍ତ ଯୋଜନା ପାଇଁ ପର୍ସନାଲ ସୁପରଭିଜନ ନହେଲେ ନଚଳେ । ତେଣୁ ସେଇ ଜମି ଉପରେ ମଧ୍ୟ ତିଆରି ହୋଇଥିଲା ଗୋଟିଏ ଛୋଟ

ଏଥାର୍ କଣ୍ଡିସନ୍‌ଡ଼ ବଂଳୋ । ସପ୍ତାହକରେ ଅନ୍ତତଃ ଚାରିଦିନ ସେଠି ଆସି ରହିବାକୁ ହବ ।

ଏଇ ଯୋଜନା ସବୁ ଚାଲିଥିଲାବେଳେ କ୍ୟାପଟେନ୍ ଆଉ କ୍ରିଷ୍ଟିନ ସନ୍ଧ୍ୟା ବେଳେ ବସି ରହନ୍ତି ତାଙ୍କର ରେଡ୍ ରୋଡ୍ ଘରର ବାଲକନି ଉପରେ ଆଉ ଅଦୂର ଭବିଷ୍ୟତରେ ତାଙ୍କର ଅସାମାନ୍ୟ ସ୍ୱାଚ୍ଛନ୍ଦ୍ୟର ସ୍ୱପ୍ନ ଦେଖନ୍ତି । ସାମ୍ନା ଟେବୁଲରେ ରଖା ହୋଇଥାଏ ହ୍ୱାଇଟ ହର୍ସର ବୋତଲ ଓ ସୋଡ଼ା ସାଇଫନ । ରାତ୍ରିଭୋଜନ ସମୟ ହେଲେ କ୍ୟାପଟେନ୍ କ୍ରିଷ୍ଟିନର କଟିବେଷ୍ଟନକରି ଉଠେଇ ନେଇଯାଏ ଡାଇନିଂ ଟେବୁଲକୁ । ରାତିରେ ଶୋଇବାକୁ ଗଲାବେଳେ ସେମାନଙ୍କ ଆଖିରେ ସ୍ୱପ୍ନ ଥାଉ ଏକ ନୂତନ ଐଶ୍ୱର୍ଯ୍ୟମୟ ସକାଳର ।

ଏଇ ମିକ୍ସଡ୍ ଫାର୍ମିଙ୍ଗ କମ୍ପ୍ଲେକସ୍ ପାଇଁ ବ୍ୟାଙ୍କ ଟଙ୍କା ଦବାକୁ କୁଣ୍ଠିତ ହୋଇ ନାହିଁ ଆଦୌ । ପ୍ରଚୁର ଭୂସମ୍ପତ୍ତି ଓ ତା ଛଡ଼ା ରେଡ୍‌ରୋଡ୍‌ରେ ଫାଇଭଷ୍ଟୋରି ମ୍ୟାନସନର ସ୍ୱତ୍ୱାଧିକାରୀ କ୍ୟାପଟେନକୁ ଟଙ୍କା ଦବାକୁ କେଉଁ ବ୍ୟାଙ୍କ ଅବା କୁଣ୍ଠିତ ହୋଇଥାନ୍ତା ? ଯୋଜନା ଅନୁଯାୟୀ କାମ ଆରମ୍ଭ ହୋଇଯାଇଛି ଏବଂ ଅଗ୍ରାଧିକାର ଦିଆଯାଇ ବରାହନଗର ପ୍ଲଟ ଉପରେ ବଙ୍ଗଳୋର କାମ ସମାପ୍ତ ହୋଇଛି ଓ ସେଠିକି ଅବିଳମ୍ବେ ସ୍ଥାନାନ୍ତରିତ ହୋଇଛନ୍ତି କ୍ୟାପ୍‌ଟେନ୍ ଓ କ୍ରିଷ୍ଟିନ । ଆରମ୍ଭ କରାଯାଇଛି ପୋଖରୀ ଖୋଳିବା କାମ ଓ ପୋଲଟ୍ରି ଫାରମିଙ୍ଗ ପାଇଁ ମେସଜାଲିର ଘର । ଧଳା ୟର୍କସାୟାର ଘୁଷୁରୀ ସରକାରୀ ଫାର୍ମରୁ ଯଥା ସମୟରେ ପହଞ୍ଚି ଯାଇଛି । ଧାଡ଼ି କଟା ହୋଇ ସାଗୁଆନ ଚାରା ସବୁ ପୋତା ହୋଇଯାଇଛି ଏବଂ ବିପୁଳ ଉତ୍ସାହର ସହ କ୍ୟାପଟେନ୍ ଦମ୍ପତ୍ତି ତଦାରଖ କରୁଛନ୍ତି ବୁଲି ବୁଲି ଏ ପ୍ରାନ୍ତରୁ ସେ ପ୍ରାନ୍ତ ।

ବରାହ ନଗରର ଆକାଶରେ ସନ୍ଧ୍ୟା ଆସେ—ଏକ ଶାନ୍ତ ନୀରବ ସନ୍ଧ୍ୟା । ଟେବୁଲ ଉପରେ ଥୁଆ ହୁଏ ହ୍ୱାଇଟ୍ ହର୍ସ ଓ ସୋଡ଼ା ସାଇଫନ୍, କିନ୍ତୁ ଯେମିତି କିଛି ଗୋଟାଏ ଅସମ୍ପୂର୍ଣ୍ଣ ରହିଯାଏ । ବରାହ ନଗରର ସନ୍ଧ୍ୟା ଝରା ବାଂଶପତ୍ରର ମର୍ମର ଶୁଣାଇପାରେ, କିନ୍ତୁ ତାହା କଲିକତାର ସନ୍ଧ୍ୟାପରି ଉଦ୍ଦାମ ଓ ଚପଳଛନ୍ଦା ହୋଇପାରିବ କେମିତି ? କ୍ୟାପ୍‌ଟେନ୍ ଦମ୍ପତିଙ୍କର ସମସ୍ତ ଉତ୍ସାହ ସତ୍ତ୍ୱେ ଆସନ୍ନ ସନ୍ଧ୍ୟାରେ ସେମାନେ ହୋଇପଡ଼ନ୍ତି ଉଦାସୀନ ।

ଏଇ ଗ୍ରାମ୍ୟ ପରିବେଶର ଅଳସ ମନ୍ଥର ଗତି ଦୁହିଁଙ୍କ ପାଇଁ କ୍ରମେ କ୍ରମେ ଅସହ୍ୟ ହୋଇ ଉଠେ । ଦିନେ କ୍ରିଷ୍ଟିନ କୁହେ, 'ବନି, (ସେଇ ନାଆଁରେ କାପ୍‌ଟେନ୍‌କୁ ଡାକୁଥିଲା କ୍ରିଷ୍ଟିନ), ଏଠିତ କେବଳ ଅପେକ୍ଷା କରିବା ଛଡ଼ା ଆଉ କିଛି ନାହିଁ, ତେଣୁ ଜଣେ ମ୍ୟାନେଜରକୁ ଏଇ ବୋରିଙ୍ଗ୍ କାମ ଦେଇଦେଇ କଲିକତା ଚାଲିଗଲେ କେମିତି ହୁଅନ୍ତା ?' ଆଃ ! କ୍ରିଷ୍ଟିନ ଯେପରି କ୍ୟାପ୍‌ଟେନର ଅନ୍ତରର ବାଣୀ କହୁଛି ! ସଙ୍ଗେ

ସଙ୍ଗେ ସେମାନେ ପୁଣିଥରେ ଚାଲିଆସନ୍ତି ତାଙ୍କର କଲିକତାର ରେଡ୍ ରୋଡ୍ ମ୍ୟାନସନକୁ । ସପ୍ତାହକରେ ଥରେ ଯାଇ ତଦାରଖ କରି ଆସିଲେ ଯଥେଷ୍ଟ । ବରାହନଗରର ଅମ୍ନିସସ୍ ପ୍ରୋଜେକ୍ଟର ଏଆର୍ କଣ୍ଡିସନ୍ଡ୍ ବଂଗ୍ଲୋରେ ରହେ ମାସିକ ଛଅଶହ ଟଙ୍କା ଦରମାର ମ୍ୟାନେଜର୍ ଶ୍ୟାମଳ ମିତ୍ର ।

କିନ୍ତୁ କଲିକତାର ଷ୍ଟାଣ୍ଡାର୍ଡ଼ ଅଫ୍ ଲିଭିଙ୍ଗ୍, କଲିକତାର ରେସକୋର୍ସ, କଲିକତାର କ୍ୟାବାରେ ମୁଖରିତ ବାର୍ ପାଇଁ ପ୍ରଚୁର ଅର୍ଥର ପ୍ରୟୋଜନ । କ୍ୟାପ୍‌ଟେନ ତା'ର ଶେଷ କପର୍ଦ୍ଦକ ବାଜି ଲଗେଇ ସାରିଛି । ଯେ' ଗୋଟାଏ ପ୍ରକାରର ଘୋଡ଼ା ଦୌଡ଼, ଯେଉଁଥିରେ ସବୁଠାରୁ ଆସ୍ତେ ଦୌଡ଼ୁଥିବା ଘୋଡ଼ାଟିର ଜିତ୍ ହବ । ଆଗେ କ୍ୟାପ୍‌ଟେନ କପର୍ଦ୍ଦକଶୂନ୍ୟ ହେଇଯିବ ନା ତା' ଆଗରୁ ତା'ର ବରାହ ନଗର ଫାର୍ମ ପ୍ରଫିଟ୍ ଦେଖେଇବାକୁ ଆରମ୍ଭ କରିବ ? କିନ୍ତୁ କଲିକତାର ଫାଷ୍ଟ ଲାଇଫ କ୍ୟାପଟେନ୍‌କୁ ସେ ସୁଯୋଗ ଦେଇ ନଥିଲା । କ୍ୟାପଟେନ୍ ଧୀରେ ଧୀରେ ନିଜର ସ୍ଥିତି ପାଇଁ ବରାହ ନଗରର ଆସେଟ ପୁଞ୍ଜି ସବୁ ବିକ୍ରୟ କରିବାକୁ ଆରମ୍ଭ କରିଥିଲା । ଛ' ବର୍ଷ ପରେ ଯେତେବେଳେ ଯୋଜନା ଅନୁଯାୟୀ ଫାର୍ମର ବିପୁଳ ଲାଭର ସମ୍ଭାବନା ସେତେବେଳକୁ ବରାହନଗର ଫାର୍ମ ଏକ ଲକ୍ଷ୍ମୀଛଡ଼ା ବିପର୍ଯ୍ୟସ୍ତ ପ୍ରଶସ୍ତ ଭୂଖଣ୍ଡ ମାତ୍ର । ଯେଉଁ ସତ୍ୟକୁ ସେମାନେ ଜାଣିଶୁଣି ପ୍ରତ୍ୟକ୍ଷ କରିନାହାନ୍ତି ଏତେଦିନ, ତା' ହେଲା ସେମାନେ ବ୍ୟାଙ୍କର ଋଣ ଟଙ୍କାରେହିଁ କେବଳ ଚଳି ଆସିଛନ୍ତି ଗତ ଛଅବର୍ଷ ।

ଦାରିଦ୍ର୍ୟ ମନୁଷ୍ୟକୁ ଅନେକ କିଛି କରିପାରେ, ବିଶେଷ କରି ଯେତେବେଳେ କ୍ୟାପ୍‌ଟେନ ଓ କ୍ରିଷ୍ଟିନର ପ୍ରେମରେ ଭଟ୍ଟା ପଡ଼ି ଆସିଲାଣି । କ୍ରିଷ୍ଟିନ 'ହୋମ୍'କୁ ଯିବାକୁ ଚାହିଁଥିଲା, ଟୁ ସି ହର୍ ପିପଲ ଓଭର ଦେଆର୍ । କ୍ରିଷ୍ଟିନର ବିଲାତ ଯିବା ପାଇଁ ଟିକେଟର ଟଙ୍କା ଯୋଗାଡ଼ କରିବାକୁ ମଧ୍ୟ କ୍ୟାପ୍‌ଟେନକୁ ପ୍ରବଳ ଉଦ୍ୟମ କରିବାକୁ ପଡ଼ିଥିଲା ଓ ଦମ୍‌ଦମ୍ ବିମାନ ଘାଟୀରେ ଯେତେବେଳେ କ୍ରିଷ୍ଟିନ ସିଡ଼ି ଦେଇ ଜାହାଜକୁ ଉଠୁଥିଲା, ସେତେବେଳେ କ୍ୟାପଟେନ୍ ହୁଏତ ଜାଣି ନଥିଲା ଯେ ସେ ଶେଷଥର ପାଇଁ ଦେଖୁଛି ତା'ର ଡାର୍ଲିଂ କ୍ରିଷ୍ଟିନକୁ । ତା'ପରେ କ୍ରିଷ୍ଟିନ ହୁଏତ ଚିଠି ଦେଇଛି, କିନ୍ତୁ କୌଣସି ନା କୌଣସି ବାହାନାରେ ସେ ଭାରତବର୍ଷ ଫେରି ଆସିବାକୁ ଏଡ଼ି ଦେଇଛି ବାରମ୍ବାର । ରେଡ୍ ରୋଡ୍‌ର ପଞ୍ଚତଳ ବିଶିଷ୍ଟ ମ୍ୟାନସନ ବ୍ୟାଙ୍କର କବ୍‌ଜାରେ ଏବଂ ସେଥିପାଇଁ ସେଥିରୁ ଆସୁଥିବା ସମସ୍ତ ଭଡ଼ା ଟଙ୍କା ଚାଲିଯାଇଛି ବ୍ୟାଙ୍କର ସୁଧ ବାବଦକୁ କହିଲେ ଚଳେ । ଇତିମଧ୍ୟରେ ବରାହ ନଗର ଏଆର୍ କଣ୍ଡିସନ୍ଡ୍ ବଂଗ୍ଲୋ ଓ ତା'ର ଚତୁଃପାର୍ଶ୍ୱର ଜମିସବୁ ବିକ୍ରି ହେଇଯାଇଛି ପାଣି ମୂଲ୍ୟରେ ଏବଂ ପ୍ରତି ସନ୍ଧ୍ୟାରେ ଏକ ଦୁର୍ନିବାର ଅଭ୍ୟାସର ଆମନ୍ତ୍ରଣରେ କ୍ୟାପଟେନ୍ ବୁଡ଼ି ଯାଇଛି ହୁଇସ୍କି ଓ ସୋଡ଼ାର ଗଭୀର ଅତଳକୁ ।

ମୁଁ ଶୁଣିଛି ଏହାପରେ ମଧ୍ୟ କ୍ୟାପଟେନ ଆଉଥରେ ଆଣ୍ଠୁ ସିଧାକରି ଠିଆ ହବାକୁ ଚେଷ୍ଟା କରିଥିଲା ଗୋଟାଏ ବିରାଟ ଲିଜ ହୋଲ୍ଡ଼ ଜମି ଉପରେ ଇଟାଭାଟି କରି, କିନ୍ତୁ ତା' ମଧ୍ୟ ସେ ବର୍ଷର ପ୍ରଳୟଙ୍କରୀ ବନ୍ୟାରେ ଧୋଇ ହୋଇଯାଇଛି କ୍ୟାପଟେନକୁ ଆଉ ଗୋଟିଏ ଧକ୍କା ଦେଇ । ଏହାପରେ କେହି କେହି ବନ୍ଧୁ ତାକୁ କୌଣସି ପ୍ରାଇଭେଟ ଫାର୍ମରେ ଚାକିରି ନବାକୁ ପ୍ରବର୍ତ୍ତାଇଛନ୍ତି, ଏପରିକି ଯୋଗାଡ଼ କରି ଦେଇଛନ୍ତି ମଧ୍ୟ, କିନ୍ତୁ କ୍ୟାପଟେନ୍ ତା'ର ସେଇ ବେପରୁଆ ମିଜାଜରେ ସବୁ କିଛି ଅଫର୍‌କୁ ଗୋଡ଼ରେ ଆଡ଼େଇ ଦେଇ ବାରମ୍ବାର ନିଜ ଗୋଡ଼ରେ ଠିଆ ହବାକୁ ଚେଷ୍ଟା କରିଛି । କିନ୍ତୁ ଛୋଟକାଟର କିଛି ବ୍ୟବସାୟ କରିବା ତା' ପକ୍ଷରେ ସମ୍ଭବ ନୁହେଁ, ତା'ର ପ୍ରୟୋଜନ ବିଗ ମନି ।

ଷ୍ଟେସନ ଆସି ଯାଇଥିଲା । ମୁଁ ଗାଡ଼ିରୁ ଓହ୍ଲେଇ ରେଲୱେ ପୁଲିସ ଷ୍ଟେସନକୁ ଗଲି । କିନ୍ତୁ ସେଠି ଗୋଟାଏ କାଠ ଚୌକିରେ ବସି ରହି ଯେଉଁ ବ୍ୟକ୍ତିଟି ଶସ୍ତା ସିଗାରେଟ ଅନ୍ୟମନସ୍କ ହେଇ ଟାଣି ଚାଲିଛି ସେଇ ଲୋକ କଅଣ କ୍ୟାପଟେନ୍ ! ମୁଣ୍ଡର ବାଳ ସବୁ ରୂପାପରି ଧଳା । ସ୍ୱାସ୍ଥ୍ୟହାନି ଫଳରେ ମୁହଁଟା ଅସ୍ୱାଭାବିକ ଭାବରେ ପତଳା ଦେଖା ଯାଉଛି, ଦିହରେ ପ୍ରାୟ ଅପରିଚ୍ଛନ୍ନ ପୋଷାକ । କିନ୍ତୁ ତା'ର ବେପରୁଆ ସିଗାରେଟ ଟଣା ଦେଖିଲେ ଯେ କେହି କହିବ ଯେ ଯେ ସେଇ କ୍ୟାପଟେନ, ଯିଏ ଅଦୃଷ୍ଟ ସହିତ ପଞ୍ଝା ଲଢ଼େଇ କରି ବାରମ୍ବାର ପ୍ରତିହତ ହେଇଛି, ସତ; କିନ୍ତୁ ଶେଷ ପରାଜୟ ସ୍ୱୀକାର କରି ନାହିଁ ବା ଆଣ୍ଠୁ ଭାଙ୍ଗି ସନ୍ଧିସର୍ତ୍ତରେ ସ୍ୱାକ୍ଷର କରିପାରି ନାହିଁ ।

ମତେ ଦେଖି, କ୍ୟାପଟେନ୍ ବସିଥିବା ଟେବୁଲର ବିପରୀତ ଦିଗରେ ବସିଥିବା ପୁଲିସ ଇନସ୍‌ପେକ୍ଟର ସମ୍ଭ୍ରମର ସହିତ ଠିଆ ହୋଇପଡ଼ି ଟୋପି କାଢ଼ି ଅଭିବାଦନ ଜଣାଇଥିଲେ । ଠିକ୍ ଏଇ ସମୟରେ କ୍ୟାପଟେନ୍ ମତେ ଦେଖିପାରି 'ଓଲଡ଼ ବୟ, ହାଉ ଆର୍ ଇଉ' କହି ଏକ ହାର୍ଦ୍ଦିକ କରମର୍ଦ୍ଦନ କରିବାକୁ ଉଠି ଆସିଲା । କ୍ୟାପଟେନ୍‌ର କରମର୍ଦ୍ଦନ ଥିଲା ଯଥେଷ୍ଟ ଉଷ୍ଣ । ତା'ପରେ ପରେ ଆଉ ସମୟ ନଷ୍ଟ ନ କରି କ୍ୟାପଟେନ୍ ପୁଲିସ୍ ଇନ୍‌ସପେକ୍ଟରକୁ ଲକ୍ଷ୍ୟ କରି କହିଲା, ''ନାଓ ଇନସପେକ୍ଟର, ମେ ଆଇ ଗୋ ?'' ଇନ୍‌ସପେକ୍ଟର ସାମାନ୍ୟ ମସ୍ତକ ଅବନତ କରି ସମ୍ମତି ଜ୍ଞାପନ କଲେ ଓ ଆମେ ଦୁଇଜଣ ଯାକ ଥାନା ଭିତରୁ ପଦାକୁ ଆସି ଗାଡ଼ିରେ ବସିଲୁ । ସୋଫର୍ ଗାଡ଼ି ଷ୍ଟାର୍ଟ କଲା । ମୁଁ ସୋଫରକୁ କହିଲି, ''ଘରକୁ ଯିବା'' । କିନ୍ତୁ ଗତ କେତେ ମିନିଟ୍ ଭିତରେ ଘଟିଥିବା ସମସ୍ତ ଘଟଣା ମୋ ପାଇଁ ଏକ ପ୍ରହେଳିକା ହୋଇ ଉଠିଥିଲା ।

କିଛି ସମୟ ପାଇଁ ମୁଁ ଓ କ୍ୟାପ୍‌ଟେନ୍ ନୀରବରେ ବସି ରହିଥିଲୁ, ଯେପରି କେମିତି କଥାଟା ଆରମ୍ଭ କରାଯିବ, ତାହା ଆମେ ଦୁଇଜଣଯାକ ବୁଝିପାରୁ ନାହୁଁ । କିନ୍ତୁ ଅଳ୍ପ ସମୟ ପରେ କ୍ୟାପଟେନ୍ କହିଲା, ''ମୁଁ ଆସୁଚି ତୋ ପାଖକୁ ଆସାନସୋଲରୁ, ବାଟରେ କେଉଁଠି ଯେ ପର୍ସଟା ହଜିଗଲା ସେକଥା ମୁଁ ଜାଣେନା । ତାପରେ ଏଠି ଟିକଟର ଝମେଲା, ମୁଁ ଅନେକ କହିଲି, ମୋର ନମ୍ବର ମନେ ନାହିଁ, ଫାଷ୍ଟକ୍ଲାସର ସବୁ ବର୍ଥର ଟିକଟ କରା ହୋଇଥିଲା କି ନାହିଁ ଚେକ୍ କଲେ ଜଣାପଡ଼ି ପାରିବ, କିନ୍ତୁ ସେତକ ପରିଶ୍ରମ କରିବାକୁ ସମସ୍ତେ କୁଣ୍ଠିତ । ବାଧହୋଇ କହିଲି, ମୁଁ ତୋ ପାଖକୁ ଆସିଛି । ଦ୍ୟାଟ୍ ସର୍ଭଡ଼୍ ମାଇଁ ପର୍ପସ ଭେରି ୱେଲ । ରେଷ୍ଟ ଅଫ୍ ଦି ଷ୍ଟୋରି ୟୁ ନୋ ।'' ମୁଁ ସଂକ୍ଷିପ୍ତ ଟିପ୍‌ପଣୀ କଲି, ''ମୁଁ ଦୁଃଖିତ ଯେ ମୋର ଅତିଥିଙ୍କୁ ମୋ ପାଖକୁ ଆସିବା ପାଇଁ ଏତେ ଏମ୍ବାରାସ୍‌ଡ଼ ହବାକୁ ପଡ଼ିଲା ।'' କିନ୍ତୁ ସେତକ କଥା କ୍ୟାପ୍‌ଟେନ୍ ଠିକ୍ ଶୁଣିଛି କି ନାହିଁ ମୁଁ କହି ପାରିବି ନାହିଁ, କାରଣ ସେତେବେଳେ ପାଟିରେ ପାଇପର ନାଡ଼ାଟାକୁ ଧରି ପ୍ରଭୁତ ପରିମାଣର ଧୂମ ଉଦ୍‌ଗୀରଣ କରୁ କରୁ ବାହାରକୁ ଲକ୍ଷ୍ୟ କରି କହିଲା, ''ବାଃ ଏଇ କିଛି ଦିନ ଭିତରେ ତୋର ସହରତ ବେଶ୍ ସୁନ୍ଦର ହୋଇ ଯାଇଚି, କ୍ୱାଇଟ୍ ମଡ଼ର୍ଣ୍ଣ ।''

ଆମେ ଆସି ଘରେ ପହଞ୍ଚିଲା ବେଳକୁ ପ୍ରାୟ ରାତି ଦୁଇଟା ବାଜିବ । କ୍ୟାପ୍‌ଟେନ୍‌କୁ ମୁଁ ଗେଷ୍ଟରୁମ୍‌କୁ ନେଇଗଲି । ଏତେ ରାତିରେ ଆସି ମୋର ଆତିଥ୍ୟ ଉପରେ ଅନୁପ୍ରବେଶ କରିଥିବା ହେତୁ କ୍ୟାପ୍‌ଟେନର ସାମାନ୍ୟତମ ଅନୁଶୋଚନା ଥିବା ପରି ମନେ ହେଲା ନାହିଁ । ସେ ସାଙ୍ଗେ ସାଙ୍ଗେ ଗୋଟାଏ କଅଣ ଇଂଲିଶ ଟିଉନ୍ ହମ୍ କରି କରି ବାଥରୁମ୍‌କୁ ପଶିଗଲା ଓ ବାଥରୁମ୍‌ରୁ ବାହାରିଲା ବେଳକୁ ତାର ଟେବୁଲ ଉପରେ ହୁଇସ୍କି, ସୋଡ଼ା ଓ ସାମାନ୍ୟ କିଛି ଖାଦ୍ୟ ପ୍ରସ୍ତୁତ କରି ରଖା ଯାଇଥିଲା । ଏତେ ରାତିରେ ଆଉ କାହାକୁ ନିଦରୁ ନ ଉଠେଇ ମୁଁ ନିଜେ ସବୁକିଛି ତଦାରଖ କରୁଥିଲି । କ୍ୟାପଟେନ୍ ବାଥରୁମ୍‌ରୁ ଆସି ଚେଞ୍ଜ୍ କରୁ କରୁ ସେ ସୋଡ଼ା, ହୁଇସ୍କିକୁ ଲକ୍ଷ୍ୟକରି କହିଲା, ''ବା ! ଯାହାହେଉ ତୋର ଗୋଟାଏ ଇମାଜିନେସନ୍ ଅଛି—ଭେରି ଗୁଡ୍ ।'' କିନ୍ତୁ ପର ମୁହୂର୍ତ୍ତରେ ଦୁଇଟା ଗ୍ଲାସରେ ମୁଁ ହୁଇସ୍କି ଢାଳିଲା ବେଳେ କ୍ୟାପଟେନ୍ ପ୍ରାୟ ଆର୍ତ୍ତଚିତ୍କାର କରି ଉଠିଲା, ''ହ୍ୱାଟ୍, ଡିପ୍ଲୋମାଟ୍ ! ତୁ ଏପରି ଶସ୍ତା ହୁଇସ୍କି କେବେ ଠାରୁ ଖାଇବାକୁ ଆରମ୍ଭ କଲୁ ?'' ମୁଁ କହିଲି, ତୁ ତ ଜାଣୁ ମୁଁ ଏକାଥରକେ କାଜୁଆଲ ଡ୍ରିଙ୍କର । ଆଉ ତା' ଛଡ଼ା ଆଜିକାଲି ବଜାରରେ ସ୍କଚ୍ କେବଳ ଦୁର୍ମୂଲ୍ୟ ନୁହଁ, ଦୁଷ୍ପ୍ରାପ୍ୟ ମଧ ।'' ଏତକ ଟିପ୍‌ପଣୀ କ୍ୟାପ୍‌ଟେନ୍ ପ୍ରତି ସାମାନ୍ୟ ସାନ୍ତ୍ୱନାପ୍ରଦ ହେଲାପରି ମନେ ହେଲା । କ୍ୟାପ୍‌ଟେନ୍ ତାର ପ୍ରଥମ କିସ୍ତି ଡ୍ରିଙ୍କଟା ଅବିମିଶ୍ରିତ ନିଟ୍ ଖାଉଥିଲା ବେଳେ ମୁଁ ଲକ୍ଷ୍ୟ କରୁଥିଲି କ୍ୟାପଟେନ୍‌ର

ପୋଷାକପତ୍ରକୁ । ବୋଧହୁଏ ତାର ଟ୍ରାଉଜର ଓ ସାର୍ଟ୍ ପ୍ରେସ୍ କରାଯାଇ ନାହିଁ ଗୋଟାଏ ସପ୍ତାହ ଧରି, ତାର ମୁଣ୍ଡର ବାଳ କଟାଯାଇ ନାହିଁ ମାସ ମାସ ଧରି, ଏବଂ ସିଏ ସାଙ୍ଗରେ ଯେଉଁ ସୁଟକେଶଟିକୁ ଆଣିଛି, ତାର ଗୋଟିଏ ପଟ ଲକ୍ ଖରାପ ହୋଇଯାଇ ବେଶ୍ କିଛି ଅଂଶ ଉପରକୁ ମେଲା ହୋଇ ରହିଛି ଏବଂ ତାର ହାତରେ ଧରିଥିବା ପୋର୍ଟଫୋଲିଓର ଜିପର୍‌ଟା ଅଧାବାଟ ଯାଏ ଯାଇ ବାକୀ ଅଂଶଟା ଖୋଲା ରହିଛି । ମୁଁ ସେଦିନର କ୍ୟାପ୍‌ଟେନ୍ ଓ ଆଜିକାର କ୍ୟାପ୍‌ଟେନ୍‌କୁ ମନେ ମନେ ତଉଲ କରୁ କରୁ ସମସ୍ତ ପରିସ୍ଥିତିଟା ମତେ ଅତ୍ୟନ୍ତ ଗ୍ଲାନିକର ମନେ ହଉଥିଲା ! କିନ୍ତୁ କ୍ୟାପ୍‌ଟେନର ବ୍ୟବହାରରେ ମୁଁ ସାମାନ୍ୟତମ ଆତ୍ମଗ୍ଲାନିର ସୂଚନା ମଧ୍ୟ ପାଇ ନଥିଲି । ସେ ତା'ର ଦ୍ୱିତୀୟ ଡ୍ରିଙ୍କ୍‌ଟା ନିଜେ ଫିକ୍‌ସ କରୁ କରୁ କହିଲା, "ଦେଖ, ମୋର ସମୟ ଅନେକ କମ୍, ତେଣୁ ତତେ ମୋର ପ୍ଲାନ୍‌ଟା ସଂକ୍ଷେପରେ କହିବାକୁ ହେଲେ ମତେ ରାତିରେ ଟିକିଏ ଓଭରଟାଇମ୍ କାମ କରିବାକୁ ପଡ଼ିବ । ତେଣୁ, ତୁ ଆପାତତଃ ବିଶ୍ରାମ କରିପାରୁ । କିନ୍ତୁ ଲେଟ୍ ଦି ହୁଇସ୍କି ଲାଇ ଓଭର, ଲେଷ୍ଟ ଆଇ ନିଡ୍ ଇଟ୍ ।" ମୁଁ "ମୋଷ୍ଟ ୱେଲକମ୍" କହି କ୍ୟାପଟେନକୁ ବେଡ୍ ଲାଇଟ୍ ସୁଇଚ୍‌ଟା ଚିହ୍ନେଇ ଯଥାଶୀଘ୍ର ରୁମରୁ ବାହାରିଗଲି । ବାହାରି ଯାଉ ଯାଉ ପଛରୁ କ୍ୟାପଟେନର ସ୍ୱର ଶୁଣିବାକୁ ପାଇଲି "ବେଡ୍‌ଟି ଆଟ୍ ସେଭେନ୍ ।" ପାଇପଟା ତଥାପି ତା'ର ଦାନ୍ତର ଜାବ ଭିତରେ ଥିଲା ପରା !

ମୁଁ ଚାଲିଆସି ବିଛଣାରେ ପଡ଼ିଗଲି । ଯଦିଓ କ୍ଳାନ୍ତି ଅନୁଭବ କରୁଥିଲି, ତଥାପି କେଜାଣି କାହିଁକି ନିଦ ହେଲା ନାହିଁ । ବିଛଣାରେ ଏପଟ ସେପଟ ହୋଇ ଅନେକ ଥର ଗଡ଼ାଗଡ଼ି କଲି, ଶେଷରେ କ୍ୟାପଟେନ୍ ଚେଇଁ ରହିଥିବ ବୋଲି ଆସ୍ତେ ଆସ୍ତେ ତା ରୁମ୍ ଆଡ଼କୁ ଗଲି ଓ ପର୍ଦ୍ଦା ଫାଙ୍କରେ ଦେଖିଲି କ୍ୟାପଟେନର ଶୋଇବାର ସାମାନ୍ୟତମ ସୂଚନା ମଧ୍ୟ ନାହିଁ । ବିଛଣା ଉପରେ ଟେବୁଲ୍ ଉପରେ ଏଠି ସେଠି ଅନେକ କାଗଜପତ୍ର ସବୁ ବିଛାଡ଼ି ହୋଇ ପଡ଼ିଛି ଓ ଟେବୁଲ ଉପରେ ପଡ଼ିଚି ଗୋଟାଏ ବ୍ଲୁ ପ୍ରିଣ୍ଟ, ଯାହା ଉପରେ ଗୋଟାଏ ପେନ୍‌ସିଲ ଧରି ଗଭୀର ଏକାଗ୍ରତାର ସହିତ ସେ ଚିହ୍ନିତ କରି ଚାଲିଚି ବାରମ୍ବାର । ମୁଁ ପୁଣି ଥରେ ଫେରିଗଲି ମୋର ବେଡ୍ ରୁମ୍‌କୁ । ବିଛଣାରେ ପଡ଼ିରହି କ୍ୟାପଟେନ୍ ସମ୍ପର୍କରେ ବହୁ ପୁରାତନ ସ୍ମୃତିକୁ ପୁନର୍ବାର ରୋମନ୍ଥନ କଲି । ଏଇ କ୍ୟାପ୍‌ଟେନ୍, ଜୀବନର ପ୍ରତ୍ୟୁଷରେ ଯିଏ ଉଦୟ ହୋଇଥିଲା ଶିଶୁ ସୂର୍ଯ୍ୟପରି ବହୁ ସମ୍ଭାବନାରେ ଗର୍ଭବତୀ ହୋଇ, ସେ ମଧ୍ୟାହ୍ନ ହଉ ନହଉଣୁ ଯେପରି କେଉଁ ଅପଦେବତାର ଅଭିଶାପରେ ହେଲା କେତୁଗ୍ରସ୍ତ । ଏଇ କ୍ୟାପଟେନ୍, ଯିଏ ସବୁଠାରୁ ଥିଲା ୱେଲ୍ ଡ୍ରେସଡ଼ ବୟ, ତାକୁ ପୁଣି ଘୁରି ବୁଲିବାକୁ ପଡ଼ିଲା ଏଇ ଅପରିଚ୍ଛନ୍ନ ପୋଷାକରେ, ଛିଣ୍ଡା ସୁଟ୍‌କେଶ ଓ ବ୍ରିଫ୍‌କେଶର ବୋଝ ବୋହି ବୋହି ।

କ୍ୟାପ୍‌ଟେନର ଆଦେଶ । ଠିକ୍ ସକାଳ ୭ଟା ବେଳେ ମୁଁ ନିଜେ ଟ୍ରେ'ରେ ଦୁଇକପ୍ ଚା ନେଇ ପଶିଲି ତାର ଶୋଇବା ଘରକୁ । ସେହିକ୍ଷଣି ନିଦରୁ ଉଠୁଥିଲା ସେ । ମୁଁ ଆଶ୍ଚର୍ଯ୍ୟ ହେଲି ଦେଖି ଯେ ସେ ତାର ପରିଧାନ ପରିବର୍ତ୍ତନ ନକରି ସେଇ ଟ୍ରେନ୍ ଯାତ୍ରାର ପୋଷାକରେ ଶୋଇ ଯାଇଥିଲା । କିଏ ଜାଣେ କ୍ୟାପଟେନ୍‌ର ଦଦରା ସୁଟ୍‌କେଶ ଭିତରେ କିଛି ଚେଞ୍ଜ୍ ପାଇଁ ଲୁଗାପଟା ଅଛି କି ନାହିଁ ? କିନ୍ତୁ କାଲି ରାତିରେ, ଚେଞ୍ଜ୍ ଦରକାର ହବ କି ନାହିଁ, ଏଇ ସାମାନ୍ୟ ଲୌକିକ ପ୍ରଶ୍ନ ପଚାରି ନପାରି ଥିବାରୁ ମନେ ମନେ ନିଜକୁ ଶତ୍ ଧିକ୍‌କାର କଲି । କ୍ୟାପଟେନ୍ ଉଠିପଡ଼ି ହାତର ନେଡ଼ିରେ ଆଖି ଦୁଇଟାକୁ ମକଚି ନେଲା ଥରେ ଦୁଇଥର, ତାପରେ ସିଗାରେଟ୍‌ରେ ନିଆଁ ଧରେଇ, ଟ୍ରେ ଉପରୁ ଚା କପ୍‌ଟାକୁ ନେଇ ଗୋଟାଏ ଲମ୍ବା ଚୁମୁକ ଦେଲା କପ୍‌ରେ ଓ କହିଲା, ''ୱାଣ୍ଡରଫୁଲ୍ ଟି !'' ଚା କପ୍‌ରେ ଆଉ ଗୋଟିଏ ଚୁମୁକ ଦେଲା କ୍ୟାପଟେନ୍ ଓ ପରେ ପରେ କହିଲା, ''ଚା'ଟା ବୋଧହୁଏ ଗୋଲଡ଼ନ୍ ଲିଫ୍‌ଟି ?'' ମୁଁ ନୀରବରେ ମୁଣ୍ଡ ଟୁଙ୍ଗାରି ସମ୍ମତି ଜଣାଇଲି । କିନ୍ତୁ କ୍ୟାପଟେନ ସେଥିରେ ଦୁଇଗୁଣ ଉତ୍ସାହିତ ହୋଇ କହିଲା ଯେ ମୋର ଇମ୍‌ପୋର୍ଟେଡ ଭେରାଇଟି ନୀଳଗିରିଟି' ପ୍ରକୃତରେ ବ୍ୟବହାର କରିବା ଉଚିତ୍, କ୍ୱାଲିଟି ଅନେକ ଭଲ । ତାପରେ ଚା ବିଷୟରେ ନାତିଦୀର୍ଘ ବକ୍ତୃତା—ଦାର୍ଜିଲିଂଟି', ଆସାମଟି' ଓ ନୀଳଗିରିଟି'ର ପାର୍ଥକ୍ୟ ଓ ସାମଞ୍ଜସ୍ୟ । ଚା ତୋଳିବାରେ ସର୍ବାଧୁନିକ ନୋ-ହାଉ, କଟ୍, କର୍ଲ ଆଣ୍ଡ ଟ୍ୱିଷ୍ଟ, ପ୍ରସେସିଂ, କେଉଁଟା ଫ୍ଲେଭର ଦିଏତ କେଉଁଟା କଲର ଦିଏ ଓ ପୁଣି କେଉଁଟା ଉଚିତ ଷ୍ଟ୍ରେଙ୍ଗଥର ଲିକ୍ୟର୍ ତିଆରି କରିଥାଏ । ଶେଷରେ କହିଲା, ''ମୁଁ ଯେତେବେଳେ ଆସାମର ଗୋଟିଏ ଟି ଗାର୍ଡ଼ନ କିଣିବାକୁ ନେଗୋସିଏଟ୍ କରୁଥିଲି, ଏସବୁ ସେତେବେଳେର ଏକ୍‌ସପର୍ଟାଇଜ୍ ।''

କ୍ୟାପଟେନ୍ ପୁଣି କପ୍‌ରୁ ଦ୍ୱିତୀୟ କପ୍ ଚା' ଢାଳିଲା ଓ କହିଲା, ''ମୋର ସମୟ କମ୍, ଲେଟ୍ ମି କମ୍ ଟୁ ଦି ପଏଣ୍ଟ ।'' ମୁଁ ବାଧ୍ୟ ଛାତ୍ରପରି ଶୁଣିବାକୁ ଚୁପ୍‌ଚାପ ବସି ରହିଲି । କ୍ୟାପଟେନ୍ ସେଇ ବିରାଟ ବ୍ଲୁପ୍ରିଣ୍ଟଟାକୁ ଟେବୁଲ ଉପରକୁ ଆଣି ତାକୁ ଦୁଇ ପାପୁଲିରେ ସମାନ କରୁ କରୁ ମତେ ଯାହା କହିବାକୁ ଆରମ୍ଭ କଲା, ସେଥିରୁ ବୁଝିଲି ଯେ କ୍ୟାପଟେନ୍ ଯେତେବେଳେ ଗୋଟାଏ ପଏଣ୍ଟକୁ ଆସିବାକୁ ମତେ ନିୟନ୍ତ୍ରଣ କଲା, ସେତେବେଳେ ସେ ମିନ୍ କରୁଥିଲା ଟୁ ଏ ଭିଷ୍ଟା !

ଫର୍ଦ୍ଦ ପରେ ଫର୍ଦ୍ଦ ଏଷ୍ଟିମେଟ୍, ଫର୍ଦ୍ଦ ପରେ ଫର୍ଦ୍ଦ ଷ୍ଟାଟିଷ୍ଟିକ୍‌ସ୍ । ଅସଲ ଉଦ୍ଦେଶ୍ୟ ହେଲା ଓଡ଼ିଶା ଅନେକ ପଛରେ ପଡ଼ିଯାଇଛି, ତେଣୁ କ୍ୟାପଟେନ୍ ପଞ୍ଜାବ ବା ହରିଆନା ପରି ଓଡ଼ିଶାରେ ମଧ୍ୟ ଶ୍ୱେତ ବିପ୍ଳବ ଆଣିବାକୁ ଚାହେଁ । ତେଣୁ ତା' ପାଖରେ ମହଜୁଦ ଜର୍ସି, ହୋଲଷ୍ଟିନ ଗାଈର ସମସ୍ତ ଖବର । କେତେ ଲିଟର ଦୁଧରେ

କେତେ ଦାମ—ଡ୍ରାଇ ପିରିୟଡ୍ କେତେ—ସେମାନେ ଅଧିକରୁ ଅଧିକ ଦୁଗ୍ଧବତୀ ହବା ପାଇଁ ଘରର ଟେମ୍ପରେଚର୍ କେତେ ହବା ଦରକାର—ଫିଡ୍‌ର ଦାମ କେତେ ପଡ଼ିବ ପର୍ ଆନିମଲ୍ ପର୍ ଆନମ୍ ଇତ୍ୟାଦି ଇତ୍ୟାଦି । ଦୁଧର ବଜାରରେ ଦାମ୍ କେତେ ଏବଂ ଟ୍ରାନସ୍‌ପୋର୍ଟରେ କେତେ ଖର୍ଚ୍ଚ ହବ, ଏବଂ ବ୍ୟାଙ୍କରୁ ଆଣିଥିବା ଋଣରେ କେତେ ପର୍‌ସେଣ୍ଟ ଇନଟରେଷ୍ଟ ! ପ୍ରତ୍ୟେକଟି ହିସାବ କ୍ୟାପ୍‌ଟେନ୍‌ର ମୁହେଁ ମୁହେଁ । ସେଇଟା ବଡ଼ କଥା ନୁହଁ—ଅସଲ କଥା ହେଲା ବ୍ୟାଙ୍କର ଆଠଲକ୍ଷ ଟଙ୍କାର ଲୋନ୍ ପାଇଁ ତାର ପ୍ରୟୋଜନ ଦଶଜଣ ଡାଇରେକ୍ଟର, ଯେଉଁମାନେ ସ୍କିମ୍ ଆରମ୍ଭରୁ ଦଶହଜାର ଟଙ୍କା ଦେଲେ ଚଳିଯିବ, କିନ୍ତୁ ସ୍କିମ୍ ପରେ ଯେଉଁ ଡାଇରେକ୍ଟରମାନେ ଆସିବେ, ସେମାନଙ୍କୁ ଦବାକୁପଡ଼ିବ ପନ୍ଦରହଜାର । ତା'ଛଡ଼ା ମଧ୍ୟ ଫ୍ରିନ୍‌ଜ ବେନିଫିଟ୍ ଅଛି, ବର୍ତ୍ତମାନ ଇନଭେଷ୍ଟର୍‌ମାନେ ଆଜୀବନ ଦୁଇ ଲିଟରକରି ଦୁଧ ପାଇବେ ଫ୍ରି । ଶେଷରେ କହିଲା ସେ, ଟଙ୍କାଟା କିଛି ବଡ଼ କଥା ନୁହେଁ—ସେ ଆଜି ଯାଇ ରିଜର୍ଭ ବ୍ୟାଙ୍କର ରିଜିଓନାଲ ଡାଇରେକ୍ଟରଙ୍କୁ ଦେଖା କରୁଚି ଲୋନ୍ ପାଇଁ, ଦିନ ବାରଟା ବେଳେ । କିନ୍ତୁ କଥା ହେଲା, ଲୋକମାନଙ୍କୁ ଏ ସ୍କିମ୍ ସହିତ ଇନଭଲ୍‌ଭ କରେଇବା ହେଲା ତାର ଅସଲ ଉଦ୍ଦେଶ୍ୟ । ପୁଣି ତାର ଚିଫ ମିନିଷ୍ଟରଙ୍କ ସହିତ ଆପଏଣ୍ଟମେଣ୍ଟ ଦିନ ଦଶଟା ତିରିଶିରେ, କାରଣ ଏଇ ଯୋଜନା ପାଇଁ ରାଉରକେଲାରେ ସେ ପଚାଶ ଏକର ଜାଗା ଲିଜ ମାଗିଚି ସବ୍‌ସିଡାଇଜ୍‌ଡ୍ ରେଟ୍‌ରେ ।

ମୋର ଅଜାଣତରେ ମୋ ମୁହଁରୁ ବାହାରିଗଲା, "ପିଫ୍‌ଟି ଏକର୍‌ସ !"

କ୍ୟାପଟେନ୍ କହିଲା, "ଇଉ ଫୁଲ, ମେନ ଥିଙ୍ଗ୍ ହେଲା ଗ୍ରୀନ—ସେମାନଙ୍କର ପ୍ରାଣ—ସେମାନଙ୍କୁ ଏଲିଫ୍ୟାଣ୍ଟ ଗ୍ରାସ କିମ୍ବିଓ୍ୱାରି ଚାଷ କରି ନଦେଲେ ପ୍ରଡ଼କ୍‌ସନ ଫଲ୍ କରିଯିବ । ସେଇଥିପାଇଁ ତ ଅଷ୍ଟ୍ରେଲିଆ, ସୁଇଜରଲ୍ୟାଣ୍ଡ ସହିତ ଭାରତବର୍ଷ କାହିଁକି ଯେକୌଣସି ଦେଶ ଡେଆରି ପ୍ରଡ଼କ୍ଟରେ ହାରି ଯାଉଛି ।" ମୁଁ ଜବାବ ତ ଦେଲି ନାହିଁ ଓ କଥା ମଝିରେ ଅଯଥା କୌତୁହଳ ପ୍ରକାଶ କରିଥିବା ପାଇଁ ମଧ୍ୟ ଦୁଃଖିତ୍ ହେଲି ମନେ ମନେ ।

ବର୍ତ୍ତମାନ କ୍ୟାପ୍‌ଟେନ ଆରମ୍ଭ କଲା ତା'ର ଅସଲ ଯୋଜନା । ସେ ଓଡ଼ିଶାର ପ୍ରତିଟି ଜିଲ୍ଲାରେ ରଖିବାକୁ ଚାହେଁ ଗୋଟିଏ ଗୋଟିଏ ଛୋଟ ୟୁନିଟ୍ ଓ ତା'ର ହେଡ୍ ଅଫିସ୍ କରିବାକୁ ଚାହେଁ ରାଉରକେଲା, ଦି ଓନ୍‌ଲି ଇଣ୍ଡରଷ୍ଟ୍ରେଟ୍ ସିଟି ଅଫ୍ ଓଡ଼ିଶା । ଯୋଗାଯୋଗ, ସରବରାହ ସବୁ ଅଙ୍କ କଷା ହୋଇ ରଖାଯାଇଛି । ଦୁଇବର୍ଷ ଭିତରେ ତାକୁ ଓଡ଼ିଶାରେ ଶ୍ୱେତ ବିପ୍ଳବ ଆଣିବାକୁ ପଡ଼ିବ । କିନ୍ତୁ କଥାଟା ହେଲା, ସେ' ଏପରି ଗୋଟାଏ ଆଇଡ଼ିଆ, ଗୋଟାଏ ଲାଭଜନକ ସ୍କିମ୍ ସେ' ମାରୁଓ୍ୱାଡ଼ି ବା ପଞ୍ଜାବୀମାନଙ୍କ

ହାତରେ ଛାଡ଼ିଦବାକୁ ଚାହେଁନା । ଆମ ନିଜ ଲୋକ ରହିବେ ଓ ସେଇ ସୂତ୍ରରେ ସିଏ ମୋର ସ୍ୱୀକୃତି ଚାହେଁ ମୁଁ ଜଣେ ଡାଇରେକ୍ଟର ହେବି କି ନାହିଁ ।

ମୁଁ କହିଲି, ''ଆଇଡ଼ିଆଲ୍, ତମେ ପ୍ରାଥମିକ ଲିଜ୍‌ଟା ପକ୍କା କରି ନିଅ, ତା'ପରେ ମୁଁ ବୋଧହୁଏ ଦଶହଜାର ଟଙ୍କା ଇନ୍‌ଭେଷ୍ଟ କରିପାରିବି ।'' ମୋର କଥା ନ ସରୁଣୁ କ୍ୟାପ୍‌ଟେନ ଆଉଥରେ ପାଇପ୍ ଭର୍ତ୍ତି କରି ନେଇ ଅଗ୍ନି ସଂଯୋଗ କରୁ କରୁ କହିଲା, 'ଆଇଡ଼ିଆଲ ସେଲ୍ସ । ଆଣ୍ଡ ଆଇ ନୋ' ଏନି ଇଣ୍ଟେଲିଜେଣ୍ଟ ମ୍ୟାନ୍ ଉଇଲ ଜମ୍ପ ଫର୍ ଇଟ୍ ।' ମୁଁ ନୀରବ ରହିଲି ।

ମଣିବନ୍ଧରେ ଗୋଟାଏ ଶସ୍ତା ଘଣ୍ଟାକୁ ଚାହିଁ ଦେଇ କ୍ୟାପ୍‌ଟେନ୍ କହିଲା, 'ଇଟ୍ ଇଜ୍ ଆବାଉଟ୍ ଟାଇମ୍, ମୁଁ ବାଥ୍‌ରୁମ୍‌ରେ ଖୁବ୍ ଜୋର୍‌ରେ ଦଶମିନିଟ୍ ନେବି । ଗିଭ୍ ମି ଏ ସ୍ମଲ ବ୍ରେକ୍‌ଫାଷ୍ଟ, ଆଫଟର୍ ଅଲ୍ ଆଇ ହାଭ ଟୁ କିପ୍ ଦି ଆପଏଣ୍ଟମେଣ୍ଟ ଆଟ୍ ଟେନ୍ ଥାର୍ଟି ।'

କ୍ୟାପ୍‌ଟେନ ବାଥରୁମ୍‌କୁ ଗଲା ଓ ମୁଁ ଗଲି ବ୍ରେକ୍‌ଫାଷ୍ଟର ଆୟୋଜନରେ ।

ବେଶ୍ କାଇଦା ଦୁରସ୍ତ ଭାବରେ ବ୍ରେକ୍‌ଫାଷ୍ଟ ଟେବୁଲର ଆୟୋଜନ କରାଯାଇଥିଲା, କାରଣ ମୋର ସ୍ତ୍ରୀଙ୍କର ଜାଣିବାକୁ ଅବଶିଷ୍ଟ ନଥିଲା ଯେ ନିତାନ୍ତ ଅନ୍ତରଙ୍ଗ ବନ୍ଧୁ, ନ ହେଲେ ଭଦ୍ରଲୋକ କାହା ପାଇଁ ରାତି ଦୁଇଟାବେଳେ ହୁଇସ୍କିର ବୋତଲ ଖୋଲନ୍ତି ନାହିଁ । ପ୍ରକୃତରେ ଦଶମିନିଟ୍ ଭିତରେ କ୍ୟାପ୍‌ଟେନ ପ୍ରସ୍ତୁତ ହେଇଯାଇଥିଲା । ବ୍ରେକ୍‌ଫାଷ୍ଟ ଟେବୁଲକୁ ଆସିବା ବେଳେ ମୁଁ ପରିଚୟ କରି ଦେଇଥିଲି ମୋର ସ୍ତ୍ରୀ ଓ ଦୁଇ ପୁଅଙ୍କ ସହିତ । କ୍ୟାପଟେନ୍ ସ୍ତ୍ରୀଙ୍କୁ ଦୁଇହାତ ଯୋଡ଼ି ନମସ୍କାର କରି କହିଲା, 'ମୁଁ ଏପରି ଭାବରେ ଆପଣଙ୍କ ଘରେ ଅବେଳରେ ଅନୁପ୍ରବେଶ କରିଥିବାରୁ ଏକାଧାରରେ ଦୁଃଖିତ ଓ ଆନନ୍ଦିତ ମଧ, କାରଣ ତା' ନକରିଥିଲେ ମୁଁ ଜାଣିପାରି ନ ଥାନ୍ତି ଯେ ବିନୋଦ ଏପରି ଜଣେ ସୁନ୍ଦରୀ ଓ ସୁରୁଚିସମ୍ପନ୍ନା ମହିଳାଙ୍କୁ ବିବାହ କରିଛି ।' ମୋର ସ୍ତ୍ରୀ ନିଜର ପ୍ରଶଂସା ଶୁଣି ପ୍ରକୃତରେ ନିଜକୁ ସୁନ୍ଦରୀ ଓ ସୁରୁଚିସମ୍ପନ୍ନା ମନେ କରି ବିନୟ ଗୁଣରେ ଅଧୋମୁଖି ହେଲେ ଓ ତା'ପରେ ସେ ମୋର ପୁଅମାନଙ୍କ ଉଦ୍ଦେଶ୍ୟରେ କହିଲା, 'ୟଙ୍ଗ୍ ଡେଭିଲ୍ସ ।' ଓ ନିଜର ଆନ୍ତରିକତା ପ୍ରକାଶ କରିବା ପାଇଁ ସେମାନଙ୍କର ମସ୍ତକରେ ନିଜ ହାତର ଲଘୁସ୍ପର୍ଶ ଦେଲା ।

ମୋର ବ୍ରେକ୍‌ଫାଷ୍ଟ ଟେବୁଲର କନା ଯଥେଷ୍ଟ ଶୁଭ୍ରଥିଲା ଓ ତା'ଉପରେ ମହଜୁଦ୍ ଥିଲା ଇଲେକ୍‌ଟ୍ରିକ୍ ଷ୍ଟୋଭ୍‌ରେ ସେକି ହେଇଥିବା ପତଳା ପତଳା ଦଶଖଣ୍ଡ ପାଉଁରୁଟିର ସ୍ଲାଇସ, ମହଜୁଦ ଥିଲା ଦୁଧ, କର୍ଣ୍ଣଫ୍ଲେକ୍‌ସ, ଦୁଇଦୁଇଟା ଅଣ୍ଡାର ପୋଚ ଓ ବଟର, ଜାମ୍, ଜେଲି । କିନ୍ତୁ ବସୁବସୁହିଁ କ୍ୟାପଟେନ ଟିପ୍‌ପଣୀ କଲା 'ପରିଜ୍ ହେଲା

ସବୁଠାରୁ ହୋଲ୍‌ସମ, କର୍ଣ୍ଣଫ୍ଲେକ୍‌ସ ତା'ର ଗୋଟାଏ ତୃତୀୟ ଶ୍ରେଣୀର ଇମିଟେସନ୍ ।' ଏ କଥା କହୁ କହୁ ଥରେ ନମିତା ଆଡ଼େ ଅନେଇ ନେଇ କହିଲା, 'ଭୁଲ୍ ଆପଣଙ୍କର ନୁହଁ, ଭୁଲ ଏଇ ଲୋକଟାର ଇନ୍‌କରିଜବ୍‌ଲ ଅଭ୍ୟାସ ।' କୌଣସି ଫର୍ମାଲିଟି ନାହିଁ, ସେ ସିଧା ଆକ୍ରମଣ କଲା ଅଣ୍ଡାର ପୋର୍‌କୁ ଏବଂ ପୁଣି କହିଲା, 'ଚାଳିଶି ବର୍ଷ ପରେ ଆଉ ଯୋକ୍ ଚଳେନା—କୋଲେଷ୍ଟ୍ରଲ୍ ପ୍ରୋବ୍ଲେମ୍ ହେଇଯାଏ, ତେଣୁ...' ଚାମୁଚରେ ଅଣ୍ଡାର ଯୋକ୍ ଦୁଇଟାକୁ ସ୍କୁପ୍ କରିନେଇ ସେ ସିଧା ଖୁଆଇ ଦେଲା ମୋର ଦୁଇଟି ଡାସ୍‌ହାଉଣ୍ଡ କୁକୁରଙ୍କୁ । ବେଶ୍ ଚାରିଖଣ୍ଡ ଟୋଷ୍ଟ ଦୁଇଟି ଅଣ୍ଡାର ଅଲବୁମେନ ଓ ଜ୍ୟାମ ଜେଲି ଦେଇ (ନୋ' ବଟର୍) ସେ ତା'ର ବ୍ରେକ୍‌ଫାଷ୍ଟ ସମାପ୍ତ କରି ପୁନରାୟ କହିଲା, 'ଆପଣଙ୍କର ଦୟାରୁ ଏ ପିଗ୍ ଚଳିଯାଉଛି, (ପାଇପ୍‌ର ନାଡ଼ାଟା ମୋରି ଆଡ଼କୁ ସାଙ୍କେତିକ ଭାବରେ ଥରେ ଦୁଇଥର ହଲେଇ ଦେଲା), ଥାଙ୍କ୍‌ସ୍ ଫର୍ ଦି ଲଭ୍‌ଲି ବ୍ରେକଫାଷ୍ଟ । ମୋର ସ୍ତ୍ରୀ ବିନୟରେ ଏତେ ଟିକେ ହେଇଗଲେ । କ୍ୟାପ୍‌ଟେନ୍ ଉଠିଲା ଓ ଓ୍ୟାସ ବେସିନ୍ ପାଖରେ ହାତ ଧୋଉ ଧୋଉ ମୁଁ ଓ ନମିତା ପ୍ରାୟ ଏକ ସମୟରେ ଦେଖିଲୁ ଯେ କ୍ୟାପଟେନର ଜୋତାର କାଣି ଆଙ୍ଗୁଠି ରହିବା ଜାଗା ପାଖରେ ତାଳି ପଡ଼ି ସିଲେଇ ହେଇଛି ପ୍ରାୟ ଗୋଟାଏ କ୍ୟାରମ୍ ଗୋଟି ଆକାରର ।

ବ୍ରେକ୍‌ଫାଷ୍ଟ ଟେବୁଲରୁ ଲିଭିଂ ରୁମ୍‌କୁ ଆସୁ ଆସୁ ଅତି ମାମୁଲି ଭାବରେ କ୍ୟାପଟେନ୍ କହିଲା, 'ବିନୋଦ, ତୁ ଯଦି କିଛି ମନେ ନ କରୁ ତାହାହେଲେ ଆଇ ଉଇଲ ଟର୍ ୟୁ ଫର୍ ଏ ହଣ୍ଡ୍ରେଡ଼ ବକ୍‌ସ ।' ମୁଁ କହିଲି, 'ନୋ ପ୍ରୋବ୍ଲେମ୍, ଓ ତତ୍‌କ୍ଷଣାତ୍ ଫେରିଯାଇ ନେଇଆସି ଦେଇ ଦେଲି ମଧ୍ୟ । ସେ ଟଙ୍କାଟାକୁ ନେଇ କୌଣସି ଦ୍ୱିଧା ନ କରି ତା'ର ହିପ୍ ପକେଟରୁ ପର୍ସ ବାହାର କରି, ସେଥିରେ ଥିବା ଗୁଡ଼ାଏ ଅପରିଷ୍କାର ଜୀର୍ଣ୍ଣ କାଗଜ ପତ୍ର ଭିତରେ ଗୁଞ୍ଜି ଦେଇ ପୁଣି ହିପ୍ ପକେଟକୁ ଫେରେଇ ନେଲା । ପର୍ସଟାକୁ ଦେଖି ମୁଁ କିପରି ଅସ୍ୱସ୍ତି ଅନୁଭବ କଲି, ନ ଦେଖି ପାରିଥିଲା ପରି ମୁହଁ ବୁଲେଇ ଦେଲି ଅନ୍ୟ ଆଡ଼କୁ ।

କାନ୍ଥ ଘଣ୍ଟା ସ୍ମରଣ କରେଇ ଦେଲା, ସମୟ ହେଲା ସାଢ଼େ ନଅ । କ୍ୟାପ୍‌ଟେନ କହିଲା, 'କାହାକୁ ଗୋଟେ ରିକ୍‌ସା ପାଇଁ ପଠା ।' ମୁଁ କହିଲି, 'ନା, ମୋର ଡ୍ରାଇଭର୍ ଯାଇ ତତେ ଛାଡ଼ିଦେଇ ଆସିବ ।' ଅନେକ କଷ୍ଟରେ ସେ ଏ ପ୍ରସ୍ତାବରେ ସମ୍ମତ ହେଲା । ପୂର୍ବରୁ ସେ ତା'ର ସମସ୍ତ କାଗଜପତ୍ର ବ୍ରିଫ୍ କେଶ୍‌ରେ ପୁରେଇ ଦେଇ ସାରିଥିଲା, ଆଉ ମାତ୍ର ଖଣ୍ଡେ ସୁଟ୍‌କେଶ ।

ବାହାରକୁ ଆସିଲୁ । ମୋ ସ୍ତ୍ରୀ ପୋର୍ଟିକୋ ପାଖରେ ଛିଡ଼ା ହୋଇ ରହିଥିଲେ ବିଦାୟ ଦେବାକୁ । ଡ୍ରାଇଭର୍ ସୁଟକେଶ ଓ ପୋର୍ଟଫୋଲିଓ ବ୍ୟାଗ ନେଇ ଆଗସିଟରେ

ରଖିଲା । ସୁଟକେଶର ଗୋଟାଏ ପଟ ଲକ ଉପରକୁ ଉଠି ଊର୍ଦ୍ଧ୍ୱବାହୁହୋଇ ରହିଥିଲା । ବ୍ୟାଗର ଜିପର ତଥାପି ଅଧା ଖୋଲା ରହି ବହୁ ଅସଜଡ଼ା କାଗଜପତ୍ରର ଜଞ୍ଜାଳ ବାହାରକୁ ଦୃଶ୍ୟମାନ ହଉଥିଲା । କ୍ୟାପ୍‌ଟେନ୍ ଆମକୁ ଧନ୍ୟବାଦ ଦେଇ କହିଲା, 'ସି ଇୟୁ ଲେଟର୍ ।' ମୋର ଦୁଇପୁଅ ଯୌଥ କଣ୍ଠରେ କହି ଉଠିଲେ, 'ଅଙ୍କଲ, ବାଇ ବାଇ ।'

ତା'ର ମେରୁଦଣ୍ଡ ତଥାପି ଥିଲା ସିଧା, ତା'ର ଚାଲି ତଥାପି ଥିଲା ଆର୍ମି ଲୋକର ଚାଲିପରି । କିନ୍ତୁ କେବଳ ତା'ର ମୁଣ୍ଡର ଧଳା ପଡ଼ି ଆସୁଥିବା ବାଳ ଓ ଆକ୍ ଚାରିପଟର କଳା କଳା ବୃତ୍ତ କହି ଦେଉଥିଲା ଯେ ସେ ଆଜି ପ୍ରୌଢ଼, ଯିଏ ଯୌବନର ଅଭ୍ୟାସକୁ ଅନୁକରଣ କରି ଚାଲିଛି ମାତ୍ର । କିନ୍ତୁ ଏ କଥାକୁ ଯେପରି ମାନସିକ ସ୍ତରରେ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହଁ କ୍ୟାପ୍‌ଟେନ । କ୍ୟାପ୍‌ଟେନ ପଛସିଟ୍‌ରେ ବସି ଶୂନ୍ୟଗର୍ଭା ପାଇପଟାକୁ ମୁହଁରେ ଲଗେଇଲା ।

ଗାଡ଼ି ଯେତେବେଳେ ଷ୍ଟାର୍ଟ କରି ଆଗକୁ ଚାଲିଲା, ମୁଁ ଆଟେନ୍‌ସନ୍‌ରେ ଠିଆ ହେଇ ରହିଲି । ମନେ ହେଲା, ଅର୍ମି ବ୍ୟାଣ୍ଡ ବାଜୁଚି ଓ କ୍ୟାପ୍‌ଟେନ ବୋଧହୁଏ ତା'ର ମିଲିଟାରୀ ସର୍ଭିସରୁ ଚିର ବିଦାୟ ନଉଛି । ମୁଁ ସତକୁ ସତ ମୋର ଡାହାଣ ହାତର ଦୁଇ ଆଙ୍ଗୁଠି ଏକତ୍ରିତ କରି ସାଲ୍ୟୁଟ ପାଇଁ ମୋର ଡାହାଣ କାନ ପାଖକୁ ଉଠେଇଲି । ମନେ ମନେ ସ୍ୱଗତଃ ଉଚ୍ଚାରଣ କଲି, କ୍ୟାପଟେନ୍, ଏ ଦେଶର ଗାଭୀମାନେ ପ୍ରଭୁତ ପରିମାଣରେ ଦୁଗ୍ଧବତୀ ହୁଅନ୍ତୁ, ତମର ଯୋଜନା ସଫଳ ହଉ, ତମର ଜୀର୍ଣ୍ଣ ନୌକାରେ ସୌଭାଗ୍ୟର ମୌସୁମୀ ଲାଗୁ ଓ ଏ ଦେଶରେ ତମର ପରିକଳ୍ପିତ ଶ୍ୱେତ ବିପ୍ଳବ ସମ୍ଭବ ହଉ ।

କିଛିବାଟ ଯାଇ ଗାଡ଼ିଟା ମୋଡ଼ ବୁଲି ଅଦୃଶ୍ୟ ହୋଇଗଲା । ମୁଁ ଭାବୁଥିଲି, କ୍ୟାପ୍‌ଟେନ ହଠାତ୍ ପର୍ସଟା କାଢ଼ି ଦେଖେଇବା କ'ଣ ଇଚ୍ଛାକୃତ ? ସେ କ'ଣ ଇଙ୍ଗିତରେ ବୁଝେଇ ଦବାକୁ ଚାହୁଁଥିଲା, 'ମୋର ପର୍ସ ହଜିଥିବା କଥା ପୁରାପୁରି ମିଛ, ତୋ ଆଖିରେ ଦେଖି ପାରୁଛୁ ତ କ୍ୟାପ୍‌ଟେନ ଇଜ ଡାଉନ୍ ଆଣ୍ଡ ଆଉଟ୍ ! ହ୍ୱାଇ ପ୍ରିଟେଣ୍ଡ୍ !'

*(ଜୀବନରଙ୍ଗ : ପୂଜାସଂଖ୍ୟା ୧୯୭୯)*



# ଲୁଚୁକାଳି

ମୁଁ ସେମାନଙ୍କ ଗହଣକୁ ଗଲାବେଳକୁ ସେମାନଙ୍କର କେତେ ସମୟ ଧରି ଆଲୋଚନା ଚାଲିଥିଲା ତାହା ମୁଁ ଜାଣେ ନାହିଁ ।

ତଥାପି ସରି ଆସୁଥିବା ହୁଇସ୍କିର ବୋତଲ ଓ ଆସ୍‌ଟ୍ରେ ଉପରେ ଜମି ରହିଥିବା ପ୍ରଭୂତ ପରିମାଣର ଚୁରୁଟ୍‌ର ଝଡ଼ାଗୁଳ ଓ ଖଣ୍ଡିଆ ସିଗାରେଟ ଏକ ସୁଦୀର୍ଘ ଆଲୋଚନାର ନିଶ୍ଚିତ ସୂଚନା ଦଉଥିଲା । ମତେ ଆନୁଷ୍ଠାନିକ ଭାବରେ ପରିଚୟ କରେଇ ଦିଆଯିବା ପରେ ବସିବା ପାଇଁ ଗୋଟିଏ ସୌଖୀନ୍ ସୋଫା ଉପରକୁ ଇଙ୍ଗିତ କରାଯାଇଥିଲା । ଅବଶ୍ୟ ସେମାନଙ୍କ ପାଇଁ ମୋର ପରିଚୟ ଥିଲା ସମ୍ପୂର୍ଣ୍ଣ ଅର୍ଥହୀନ, ମୁଁ ସେମାନଙ୍କ ପାଇଁ ଥିଲି ଅନେକ ସ୍ଥାନୀୟ ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ମାତ୍ର ।

କିନ୍ତୁ ସେମାନେ ଥିଲେ ଫିଲ୍ମ୍ ପ୍ରଡ୍ୟୁସର୍ ଶେଠ୍ ଆଲୁଓ୍ୱାଲିଆ, ଡାଇରେକ୍ଟର ମିଃ ଭର୍ଗିଜ୍, କ୍ୟାମେରାମ୍ୟାନ ମିଃ ପିଣ୍ଟୁ ଓ ଆଉ ଦୁଇ ତିନିଜଣ ସେହି ଗୋଷ୍ଠୀର । ଉପସ୍ଥିତ ଏକମାତ୍ର ମହିଳା ସଭ୍ୟା ଥିଲେ ଡାଇଭୋର୍ସି ମିସ୍ ସୋଫିଆ । ଏହି କ୍ରମରେ ମତେ ପରିଚୟ କରେଇ ଦିଆଯାଇଥିଲା ଓ ମିସ୍ ସୋଫିଆଙ୍କୁ ପରିଚୟ କରେଇଦବା ବେଳେ ସୌଜନ୍ୟର ଦାବୀରେ ମୁଁ ତାଙ୍କ ଆଡ଼କୁ ଚାହିଁଥିଲି । ସେ ସ୍ମିତ ହସି ତାଙ୍କର ବାମ ହସ୍ତର ପାପୁଲି ଉତ୍ତୋଳିତ କରି ମୋ ଉଦ୍ଦେଶ୍ୟରେ ମୃଦୁ ଆନ୍ଦୋଳିତ କରିଥିଲେ ଥରେ ଦୁଇଥର । ତାଙ୍କର ଅପର୍ଯ୍ୟାପ୍ତ ଆୟତନର ପାପୁଲିଟି ଯଥେଷ୍ଟ ଶୁଭ୍ର ଓ ଉଜ୍ଜ୍ୱଳ ଦେଖାଯାଉଥିଲା ଓ ତାହା ଉପରେ ହସ୍ତରେଖାଗୁଡ଼ିକ ଦେଖାଯାଉଥିଲେ ଭାରତବର୍ଷର ମାନଚିତ୍ର ଉପରେ ପ୍ରବାହିତ ନଦୀ ପରି ସୁଦୀର୍ଘ, ସୁଗଭୀର ଓ ରହସ୍ୟମୟ । ମୋର ମନେହେଲା ବୋଧହୁଏ ଭଦ୍ରମହିଳା ତାଙ୍କ ହାତର ରେଖାଗୁଡ଼ିକ ଅଧିକ ଆକର୍ଷଣୀୟ କରିବା ପାଇଁ କିଛି ଗୋଟାଏ ରଙ୍ଗ ଦେଇ ଡାଇ କରିଛନ୍ତି ।

ପ୍ରାଥମିକ ଲୌକିକ ପରିଚୟ ପର୍ବ ସରିଯିବା ପରେ ଘର ଭିତରଟା ଏକା ଥରକେ ଚୁପ୍‌ଚାପ୍ ହେଇଗଲା, ଯେମିତି କେହି ଆଗରୁ ଚାଲିଥିବା ଆଲୋଚନାର ଖିଅ ଠିକ୍ ଭାବରେ ଧରି ପାରୁ ନାହାନ୍ତି । ଡାଇରେକ୍ଟର ଭର୍ଗିଜ ହଠାତ୍ ତାଙ୍କର ବାଁ ହାତର ବୁଢ଼ା ଆଙ୍ଗୁଠି ଓ ତର୍ଜନୀ ଦେଇ ଗୋଟାଏ ଚିଜ୍ ପକୋଡ଼ାକୁ ପ୍ଲେଟ ଉପରୁ ଏକ ଲଘୁ ଭଙ୍ଗୀରେ ଉଠେଇ ନେଇ ଆଖି ପାଖରେ ବୁଲେଇ ବୁଲେଇ କିଛି ସମୟ ନିରୀକ୍ଷଣ

କଲେ ଓ ତା'ପରେ ବେଶ କିଛି ଦୂରରୁ ତାକୁ ନିର୍ଭୁଲ ଭାବରେ ନିଜର ମୁଖ ଗହ୍ୱର ଭିତରକୁ ଫୋପାଡ଼ି ଦେଇ ତାଙ୍କର ଦୁଇ କାନ୍ଧରେ ସାମାନ୍ୟ ସ୍ରଗ୍ ଦେଇ ଯେପରି ସେହି ଅସ୍ୱସ୍ତିକର ନୀରବତାର ମୁକ୍ତି ପାଇବାକୁ କହିଲେ, ''ସୋ ଦ୍ୟାଟ୍ସ୍ ଦ୍ୟାଟ୍ ।''

ଯେମିତି ଗୋଟାଏ କିନାରା ପାଇଗଲେ ମିସ୍ ସୋଫିଆ । କହିଲେ, ''ଷ୍ଟ୍ରେଞ୍ଜ୍ ଭାରତବର୍ଷ, ବିଶେଷ କରି ଓଡ଼ିଆ ଗରିବ ଦେଶ ବୋଲି ଆନ୍ତର୍ଜାତିକ ଖ୍ୟାତି ପାଇ ସାରିଲାଣି, ଅଥଚ ଏଠି ଗୋଟାଏ ଗରିବ ଗାଁ ମିଳୁ ନାହିଁ ?'' ମିସ୍ ସୋଫିଆଙ୍କର ଓଡ଼ିଆ ଉଚ୍ଚାରଣ ଶୁଣି ମନେ ହଉଥିଲା ଯେପରି ସେ ଅର୍ଦ୍ଧଶତାବ୍ଦୀ ତଳେ ଓଡ଼ିଆରେ କହିପାରୁଥିଲେ, ବର୍ତ୍ତମାନ ବହୁ କଷ୍ଟ ସ୍ୱୀକାର କରି ଓଡ଼ିଆ କହିବାକୁ ଆପ୍ରାଣ ପରିଶ୍ରମ କରୁଛନ୍ତି । ମିଃ ଆଲୁଓ୍ୟାଲିଆ ଠିକ୍ ପ୍ରୌଢ଼ତ୍ୱର ସୀମାରେଖାରେ । ସେ ଏକ ଦିଗରେ ବାର୍ଦ୍ଧକ୍ୟର ଅଲଂଘନୀୟ ଆକର୍ଷଣକୁ ପ୍ରତିହତ କରିବା ପାଇଁ ଯେପରି ଯୌବନର ଶେଷ ମାଇଲ୍ ଖୁଣ୍ଟିକୁ ଜାବୁଡ଼ି ଧରିଛନ୍ତି । ସେ କହିଲେ, ''ସୋଫିଆ, ଏଟା ସ୍ଲୋଗାନର ଦେଶ, ହାମେ ଦେଖତେ ଦେଖତେ ବହୁତ୍ ସାଲ୍ ହୋଗୟା । ଯେତେ ସବୁ ବକ୍‌ବାଜ୍ ।'' ମିଃ ଭର୍ଗିଜ କହିଲେ, ''କଥାଟା ସେମିତି ନୁହଁ, ଭାରତବର୍ଷ ବା ଓଡ଼ିଶାରେ ପଭର୍ଟି ନାହିଁ କହି ହେବ ନାହିଁ—ତେବେ ଅଥର୍‌ର ଇଣ୍ଟେନସନ୍ ହେଲା ଅବ୍‌ଜେକ୍ଟ, ପଭର୍ଟି । ସେପରି ଗାଁ ତ ମୁଁ—ଓ୍ୱେଲ'' ପୁଣି କାନ୍ଧଟାକୁ ସ୍ରଗ କଲେ ମିଃ ଭର୍ଗିଜ । ''ହ୍ୱାଟ୍‌ଏଭର୍ ଆଇ ଆମ୍ ଓ୍ୱର୍ଥ—ଦେଖିଲି ନାହିଁ ।'' ଏତକ କହିସାରି ତାଙ୍କର ଗିଲାସରେ ଥିବା ମଦ୍ୟର ଅବଶିଷ୍ଟାଂଶ ଗଳାଧଃକରଣ କଲେ ।

ମିଃ ଭର୍ଗିଜ୍ ବେଶ୍ ଲମ୍ବା ଚଉଡ଼ା ଲୋକ । ଦେଖିବାକୁ ଗୋରା ଓ ତାଙ୍କର ଚିବୁକରେ ସଯତ୍ନ ବର୍ଦ୍ଧିତ କିଛି କୃଷ୍ଣ ଶ୍ମଶ୍ରୁ କୁହେ ଯେ ସେ ଜଣେ ମହାରାଷ୍ଟ୍ରର ଲୋକ ବା ପାର୍ଶୀ ଗୋଷ୍ଠୀର ଲୋକ ହେଇଥିବା ସମ୍ଭବ । କିନ୍ତୁ ତାଙ୍କ ମୁହଁରୁ କିଛି କିଛି ଓଡ଼ିଆ ଭାଷା ଶୁଣି ମୁଁ ସାମାନ୍ୟ ବିସ୍ମିତ ହୋଇଥିଲି । ଏଥର ମିଃ ଭର୍ଗିଜଙ୍କର ବକ୍ତବ୍ୟଟା ଥିଲା ମୋ' ଉଦ୍ଦେଶ୍ୟରେ; ''ଆଚ୍ଛା ମିଃ, ଆଇ ଫର୍‌ଗେଟ୍,'' ଜଣେ କିଏ କହିଲା ମିଃ ଦାସ; ''ଦ୍ୟାଟ୍‌ସ ରାଇଟ୍, ଆଚ୍ଛା ମିଃ ଦାସ୍, ଆପଣ ଏପରି ଗୋଟିଏ ଲୋକେସନ ଆମକୁ ଦେଖେଇ ଦେଇ ପାରିବେ ?''

ମୁଁ କହିଲି, ''ମିଃ ଭଗିଜ୍, ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦଉଛି, ଆପଣ ପ୍ରଥମେ ମତେ କହନ୍ତୁ ତ ଆପଣ ଏପରି ଓଡ଼ିଆ ଶିଖିଲେ କେମିତି ?'' ଭର୍ଗିଜ କହିଲେ, ''କାହିଁକି, ଆଇ ଆମ୍ ବର୍ନ ଆଣ୍ଡ ଏଜୁକେଟେଡ୍ ହିଅର୍, ଗତ ଦଶବର୍ଷ ବମ୍ବେ ଫିଲ୍ମ ଇନ୍‌ଷ୍ଟିଚିଉଟ୍‌ରୁ ପାଶ୍ କରି ସେଇଠି ରହିଯାଇଛି ।'' ମିଃ ମହାପାତ୍ର, ଯିଏ ମତେ ସେଇ ଆସରକୁ ନେଇ ଯାଇଥିଲେ, କହିଲେ, ''ଆରେ ଆପଣ ଜାଣନ୍ତି ନାହିଁ, ମିଃ

ଭର୍ଗିଜ୍‌ଙ୍କ ଘର ପରା କଟକ ସୁତାହାଟରେ—ଏଇଠି ପଢୁଥିଲେ ଷ୍ଟୁଆର୍ଟ ସାଇନ୍‌ସ କଲେଜରେ । ମୁଁ କହିଲି, ''ନାଁ ମୁଁ ଜାଣିନାହିଁ, ମୋରତ ଆଗରୁ ପରିଚୟ ନଥିଲା ।''

ମିଃ ଭର୍ଗିଜ କହିଲେ, ''ନାଇସ ମିଟିଙ୍ଗ୍ ୟୁ, କିନ୍ତୁ କମ୍ ଟୁ ବିଜିନେସ, ଆପଣ ଗୋଟିଏ ଲୋକେସନ ଆମକୁ ଦେଖେଇ ଦେଇ ପାରିବେ ତ ?''

ମୁଁ କହିଲି, ''ଦେଖନ୍ତୁ ମିଃ ଭର୍ଗିଜ, ମତେ କ'ଣ କରିବାକୁ ହବ ମୁଁ ଜାଣେ ନାହିଁ, ମିଃ ମହାପାତ୍ର ମୋର ବନ୍ଧୁ, ମୁଁ ତାଙ୍କରି ଅନୁରୋଧରେ ଆପଣମାନଙ୍କୁ ସାହାଯ୍ୟ କରିବାକୁ ଆସିଛି କେବଳ ।''

''ଆପଣ ଜାଣନ୍ତି ନାହିଁ, ଓଃ ହୋଲି କାଓ'', ଏତିକି କହି ସୋଫା ଉପରକୁ ତାଙ୍କର ପିଠିଟାକୁ ଆଉଜେଇ ଦେଲେ ମିଃ ଭର୍ଗିଜ ଅସହାୟ ଭାବରେ ।

ମିସ୍ ସୋଫିଆ କ'ଣ କହିବାକୁ ଆରମ୍ଭ କରୁଥିଲେ, ଠିକ୍ ଏଇ ସମୟରେ କବାଟ ଖୋଲି ହୋଟେଲ ବୟ ପଶି ଆସିଲା । ତତ୍‌କ୍ଷଣାତ୍ ମିଃ ଆଲୁଓ୍ୟାଲିଆ ଅର୍ଡ଼ର କଲେ ଗୋଟିଏ ବ୍ଲଡ଼ି ମେରି, ଦୁଇଟା ହୁଇସ୍କି, ଗୋଟିଏ ରମ୍, ତା'ପରେ ମୋ ଆଡ଼କୁ ଚାହିଁ କହିଲେ, ''ଦାସ୍‌ବାବୁ କିଛି ଗୋଟିଏ....।'' ମୁଁ କହିଲି, ''ନାଁ ମୁଁ ପିଏ ନାହିଁ ।''

ମିସ୍ ସୋଫିଆ କହିଲେ, ''ବିଅର ଚଳିବ ବୋଧେ ଆପଣଙ୍କର ?

ମୁଁ କହିଲି, ''ନାଁ, ମୁଁ ଖାଏ ନାହିଁ ।''

''କାହିଁକି ? ପ୍ରୋହିବିସନ୍ ?'' କହିଲେ ମିଃ ଭର୍ଗିଜ ।

ମୁଁ କ'ଣ ଗୋଟିଏ କହିବାକୁ ଯାଉଥିଲି, ହଠାତ୍ ମିଃ ପିଣ୍ଟୁ, ଯିଏକି ଏ ଯାବତ୍ କାନ ପାଖରେ ଗୋଟିଏ ପକେଟ ଟ୍ରାଞ୍ଜିଷ୍ଟର ଚାପି ଧରିଥିଲେ, ଚିତ୍କାର କରି ଉଠିଲେ, ''ମେରେ ଦିଏଛେ, ଗାଭାସ୍କର ଆବାର ସେଞ୍ଚୁରୀ କୋର୍‌ଲୋ ।''

ଛୋଟ ପିଲାଙ୍କ ପରି ଠିଆ ହୋଇପଡ଼ି ଦୁଇହାତରେ ତାଳି ମାରିଲେ ମିସ୍ ସୋଫିଆ, କିନ୍ତୁ ସେଇ ଅବସରରେ ସେ ତାଙ୍କର କଟି ଦେଶ ଭାରତ ନାଟ୍ୟମ୍ ମୁଦ୍ରାରେ ସାମାନ୍ୟ ଆନ୍ଦୋଳିତ କରିବାକୁ ଭୁଲିଯାଇ ନଥିଲେ । ମିଃ ଆଲୁଓ୍ୟାଲିଆ ତାଙ୍କର ଓଠ ସାମାନ୍ୟ ମେଲା କରି ଅପଲକ ଦୃଷ୍ଟିରେ ଚାହିଁ ରହିଥିଲେ ସୋଫିଆଙ୍କୁ, କିନ୍ତୁ ମିଃ ଭର୍ଗିଜ ଏଇ ଅବସରରେ ସୋଫିଆର ଶାଢ଼ୀରୁ ପୁଳାଏ ଧରି ନେଇ ତାଙ୍କୁ ଟାଣି ବସେଇ ଦେଇଥିଲେ କାଉଚ୍ ଉପରେ ।

ମୁଁ କହିଲି, ''ଆପଣମାନଙ୍କର କ'ଣ ପ୍ରୟୋଜନ କୁହନ୍ତୁ ।''

ମୋ କଥାର ଜବାବ୍ ଦବାକୁ ସୋଫିଆ ପୁଣି କ'ଣ କହି ଆସୁଥିବା ବେଳେ ମିଃ ଭର୍ଗିଜ୍, ସୋଫିଆଙ୍କର ଜଙ୍ଘ ଉପରେ ଦୁଇଥର ହାତ ବାଡ଼େଇ କହିଲେ, ''ଓ୍ୱେଟ୍ ଏ

ମିନିଟ୍ ଗାର୍ଲ, ମୁଁ ତାଙ୍କୁ ବୁଝେଇ ଦଉଛି ।'' ସୋଫିଆ 'ଏକ୍ସକ୍ୟୁଜ୍ ମି' କହି ଅନତି ଦୂରରେ ରୁମ୍‌ର ଟଏଲେଟ୍‌ରେ ଆତ୍ମଗୋପନ କଲେ ।

ମିଃ ଭର୍ଗିଜ୍ ଅନୁଷ୍ଠାନିକ ଭାବରେ ଟେବୁଲ୍ ଉପରେ ରଖାଯାଇଥିବା ପାଇପ୍‌ଟିକୁ ଉଠେଇ ସେଥିରେ ଯତ୍ନ ସହକାରେ ଟୁବାକୋ ଭର୍ତ୍ତି କଲେ, ଗୋଟିଏ ଛୋଟ ଷ୍ଟିଲ୍‌ର ଚାମୁଚ୍‌ରେ ଟୁବାକୋ ସବୁକୁ ଚପାଚପି କରି ସମତଳ କରିବା ପରେ ଦିଆସିଲିରେ ଅଗ୍ନି ସଂଯୋଗ କଲେ ଓ ପ୍ରଥମେ ଦୁଇ ତିନିଥର ପାଇପ୍‌ର ନାଡ଼ୀରେ ଦ୍ରୁତ ଟାଣ ଦେଇ ଯେତେବେଳେ ପାଇପ୍‌ର ଟୁବାକୋ ଗୋଟିଏ କ୍ଷୁଦ୍ର ଅଗ୍ନି ପିଣ୍ଡୁଳା ପରି ଜଳି ଉଠିଲା ସେତେବେଳେ କହିଲେ, ''ମିଃ-ଏଃ''—''ମୁଁ କହିଲି ଦାସ୍''—''ହଁ, ମିଃ ଦାସ୍, ପ୍ରତି ଫିଲ୍ଡ଼ରେ ଲୋକେସନ୍‌ଟା ଅତ୍ୟନ୍ତ ଇମ୍ପଟାଣ୍ଟ । ଏ ବହିର ଉଦ୍ଦେଶ୍ୟ, ଏ ଦେଶର ଦାରିଦ୍ର୍ୟକୁ ନେକେଡ୍‌ଲି ମାନେ ଅତି ନଗ୍ନ ଭାବରେ ଦେଖେଇବା, କିନ୍ତୁ ଏ ଯାଏ ଆମ୍ଭେମାନେ ସେମିତି ଗୋଟିଏ ଗାଁ ପାଇଲୁ ନାହିଁ ।''

ପାଇପ୍‌ରେ ପୁଣି ମୁହଁ ଲଗେଇଲେ ଭର୍ଗିଜ । ମିସ୍ ସୋଫିଆ ଟଏଲେଟ୍‌ରୁ ଫେରିଆସି ତଳକୁ ମୁହଁକରି ତାଙ୍କ ଶାଢ଼ୀର ଭାଙ୍ଗ ସଜାଡୁ, ସଜାଡୁ କହିଲେ, ''ସେଥିପାଇଁ ମିଃ ଭର୍ଗିଜ୍‌ଙ୍କର ବମ୍ବେରୁ ଫ୍ଲାଇ କରି ଆସିବା ହେଲା ଏଥରକୁ ମିଶେଇ ତିନିଥର ।''

ମିଃ ଆଲୁଓ୍ୱାଲିଆ ତାଙ୍କର ହୁଇସ୍କିରେ ଆଉଟିକିଏ ସୋଡ଼ା ଢାଳୁ ଢାଳୁ କହିଲେ, ''ଗରିବ ଗାଁଓ ଦେଖି ନାହୁଁ ନୁହଁ, ଲେକିନ ଏମିତି ଗାଁଓ ହେଇଥିବ ଯେଉଁଠି ଖାଲି ମୁର୍ଦ୍ଦା ଆଉ ମୁର୍ଦ୍ଦା... ।'' ହଠାତ୍ ମିଃ ପିଣ୍ଟୁ କହି ଉଠିଲେ, ''ମାନେ ମତେ ଯେମିତି ଆଉ କ୍ୟାମେରା ସରେଇବାକୁ ପଡ଼ିବ ନାହିଁ ।''

ମିଃ ଭର୍ଗିଜ କହିଲେ, ''ଇଫ୍ ପସିବଲ ପ୍ଲିଜ୍ ହେଲପ୍ ଅସ୍, ଆମର ମହୁରତ୍ ମାତ୍ର ଦୁଇଟା ଦିନ ରହିଲା ।'' ମୁଁ ମିଃ ଭର୍ଗିଜଙ୍କ ଉଦ୍ଦେଶ୍ୟରେ ଚାହିଁଲି, କିନ୍ତୁ ତାଙ୍କୁ ଦେଖି ପାରିଲି ନାହିଁ, କାରଣ ଉଦ୍‌ଗୀରିତ ଧୂମ କୁଣ୍ଡଳୀରେ ତାଙ୍କର ମୁହଁ ସମ୍ପୂର୍ଣ୍ଣ ଆଚ୍ଛନ୍ନ ହେଇ ଯାଇଥିଲା ।

ମୁଁ କିଛି ଉତ୍ତର ଦେବା ପୂର୍ବରୁ ସ୍ୱଗତରେ କହିଲି, ଓଡ଼ିଶାର ଗୋଟିଏ ଅତି ଦରିଦ୍ର ଗାଁ ତ ଆଉ ଏକ ଥ୍ରିଷ୍ଟାର ହୋଟେଲର ମେନୁରେ ନାହିଁ ଯେ ଟିକ୍‌ମାର୍କ ଦେଇଦେଲେ ବୟ ଗୋଟିଏ ଗରିବ ଗାଁକୁ ପ୍ଲେଟରେ ରଖି ତମ ଟେବୁଲରେ ହାଜର୍ କରିଦବ ! ପ୍ରକାଶ୍ୟରେ କହିଲି, ''ମିଃ ଭର୍ଗିଜ, ଆଇ କ୍ୟାନ୍ ମୋଷ୍ଟ ସଟେନ୍‌ଲି ହେଲପ୍ ୟୁ ଆଉଟ୍ ।''

ମିଃ ଭର୍ଗିଜ କହିଲେ, ''ଆଇ ସି, ୟୁ ସ୍ପିକ୍ ଗୁଡ୍ ଇଂଲିଶ୍ !''

ମିଃ ମହାପାତ୍ର କହିଲେ, ''ଆପଣଙ୍କୁ କହିନାହିଁ ଭର୍ଗିଜ ସାହେବ, ମିଃ ଦାସ୍ ବିଲାତରୁ ବାର୍ ଆଟ ଲ ପାସ୍ କରି ଆସିଛନ୍ତି ଆଉ ବାହା ହେଇଛନ୍ତି ଜଣେ ଆଇରିସ୍ ଲେଡ଼ି ।''

ମିଃ ଭର୍ଗିଜ ନିଜକୁ ସାମାନ୍ୟ ଅପ୍ରତିଭ ମନେକଲାପରି କହିଲେ, ''ହାଉ ଫାର ।''

ମୁଁ କହିଲି, ''ଏଇ ଛ' ସାତ କିଲୋମିଟର ଭିତରେ—ବେଶୀ ଦୂର ନୁହଁ ।''

ଆସନ୍ତା କାଲି ସକାଳ ଆଠଟାରେ ଯିବାର ସ୍ଥିରୀକୃତ ହେଇ ଆସର ଭାଙ୍ଗିବାର ପ୍ରସ୍ତାବ ହେଲା । ମୁଁ ଜାଣେ, ଖଣ୍ଡେ ତନ୍ତ ଲୁଗା, ପଞ୍ଜାବୀ ଓ ଜହର ଜ୍ୟାକେଟ୍ ପିନ୍ଧି ମୁଁ ସେ ଆସରରେ କିପରି ବିସଦୃଶ ଦେଖା ଯାଉଥିବି । ମୁଁ ଫେରିଲା ବେଳେ ଆଲୁଓ୍ୟାଲିଆ, ଭର୍ଗିଜ, ସୋଫିଆ ଓ ଏପରିକି ପିଣ୍ଟୁ ପର୍ଯ୍ୟନ୍ତ ମୋର ମଦ୍ୟପାନ ନ କରିବା ସମ୍ପର୍କରେ ଯଥେଷ୍ଟ ସନ୍ଦିହାନ ଥିଲେ, ନହେଲେ ମତେ ବାରମ୍ବାର ପିଇବା ପାଇଁ ଏତେ ଅନୁରୋଧ ସେମାନେ କରିଥାଆନ୍ତେ କାହିଁକି ?

ମୁଁ ସେମାନଙ୍କୁ ନମସ୍କାର କରି ଫେରିଲା ବେଳେ ମିଃ ଭର୍ଗିଜ ମୋର ଯୋଡ଼ ହସ୍ତକୁ ତାଙ୍କର ଦୁଇ ହାତରେ ଧରିନେଇ କହିଲେ, ''ମୁଁ ଜାଣି ନଥିଲି ୟୁ ଆର୍ ସୋ ହାଇଲି ଏଜୁକେଟେଡ଼୍—କ୍ଷମା କରିବେ ।'' ମୁଁ କହିଲି, ''ଦ୍ୟାଟ୍ ହାର୍ଡ଼ଲି ମାଟାର୍ସ୍ ।'' ମୋର କଟିଦେଶକୁ ଇଚ୍ଛାକୃତ ଭାବରେ ଲାଗିରହି ଯେ ମିସ୍ ସୋଫିଆ ମତେ ବିଦାୟ ସମ୍ବର୍ଦ୍ଧନା ଜଣାଇଛନ୍ତି ସେଥିରେ ମୁଁ ଟିକିଏ ହେଲେ ଆଶ୍ଚର୍ଯ୍ୟ ହେଇ ନଥିଲି ।

ହୋଟେଲରୁ ଫେରିଲା ବେଳେ ଦାମୀ କାର୍ପେଟ୍ ଉପରେ ଗୋଡ଼ ଭିତରକୁ ପଶି ଯାଉଥିବା ପରି ଲାଗୁଥିଲା, ଯେମିତି ସମୁଦ୍ର କୂଳ ବାଲିରେ ଲାଗେ । ଚାଲିବାକୁ ଟିକିଏ ଅଧିକା ଶ୍ରମ ସ୍ୱୀକାର କରିବାକୁ ପଡୁଥିଲା, କିନ୍ତୁ ମୁଁ ଏକ ଦାର୍ଶନୀକ ଭଙ୍ଗୀରେ ଘଟଣାଟାକୁ ଗ୍ରହଣ କରି ନେଇ ଭାବୁଥିଲି, ଆଉ କିଛି ନହେଉ, କିଛି ଅନିଚ୍ଛାକୃତ ବ୍ୟାୟାମ ତ ହୋଇଗଲା ।

ତା' ଆରଦିନ ସକାଳୁ ନିର୍ଦ୍ଧାରିତ ସମୟରେ ଗୋଟାଏ ଓ୍ୱାଗନେଟ୍ ମୋ' ଘର ସାମ୍ନାରେ ହାଜର ହେଇଥିଲା ଓ ମୁଁ ସେ ଗାଡ଼ି ଭିତରକୁ ଉଠି ଯାଇଥିଲି । ସେମାନେ ସମସ୍ତେ ଓ ଆଉକିଛି ଲୋକ ଉପସ୍ଥିତ ଥିଲେ ତା ଭିତରେ ଓ ସେମାନଙ୍କ—ଭିନ୍ନ ବହୁ ବିଭିନ୍ନ ପ୍ରକାରର ଯନ୍ତ୍ରପାତି ମଧ ତା ଭିତରେ ରଖା ଯାଇଥିଲା । କିନ୍ତୁ ମୋର ନିର୍ଦ୍ଧାରିତ ସ୍ଥାନ ରଖାଯାଇଥିଲା ସାମ୍ନା ସିଟର ବାଁପଟ ଉଚ୍ଚଣ୍ଡୋ ସିଟରେ । ମୋ' ପାଖରେ ମିସ୍ ସୋଫିଆ, ତାଙ୍କ ପାଖରେ ଡାଇରେକ୍ଟର ଭର୍ଗିଜ ସାହେବ୍ ଓ ତାଙ୍କ ପରେ ଡ୍ରାଇଭର । ପଛରେ ଅନ୍ୟମାନେ ।

ଗାଡ଼ି ଅଳ୍ପ କିଛିବାଟ ପିଚୁ ରାସ୍ତାରେ ଯିବାପରେ ବାଁ ପଟର ନାଲିମାଟି ସଡ଼କ ଧରିଲା । ମିସ୍ ସୋଫିଆ ତାଙ୍କର ବାଁ ହାତରେ ରୁମାଲ ନେଇ ନାକ ପାଖରେ ଦେଲେ । ବାଁ ହାତଟି ଉପରକୁ ଉଠିଯିବା ଫଳରେ, କଚା ରାସ୍ତାରେ ଆନ୍ଦୋଳିତ ଗାଡ଼ି ଭିତରେ ଏକ ଅବଶ୍ୟମ୍ଭାବୀ ପରିସ୍ଥିତି ସୃଷ୍ଟି ହେଲା; ଯାହା ଫଳରେ ମିସ୍ ସୋଫିଆଙ୍କର ମାଂସଳ ଶରୀର ମୋ ଦେହରେ ବାରମ୍ବାର ବାଜି ପୁଣି ନିଜ ସ୍ଥାନକୁ ଫେରିଗଲା । ମୁଁ ଯଥାସମ୍ଭବ ସଙ୍କୁଚିତ ହେଇ ବସିବାକୁ ଚେଷ୍ଟା କଲି, କିନ୍ତୁ ମୋ ବାଁ ପଟେ ଓ୍ୟାଗେନ୍‌ଟ୍‌ର ଲୁହା କବାଟ ସଙ୍କୁଚିତ ହେବାର ନୁହେଁ । ମାତ୍ର ଅଳ୍ପ ସମୟ ଭିତରେ ଅନୁଭବ କରିପାରିଲି ଯେ ମୁଁ ସଙ୍କୁଚିତ ହେଇଯାଇ ପରିସ୍ଥିତିକୁ ପରିବର୍ତ୍ତନ କରିବାର ପ୍ରୟାସ ଏକ ବିଡ଼ମ୍ବନା ମାତ୍ର ।

ଗାଁ ଦାଣ୍ଡରେ ଧୂଳି ଉଡ଼େଇ ଯେତେବେଳେ ଗାଡ଼ି ପ୍ରାୟ ଗ୍ରାମର ମଧ୍ୟସ୍ଥଳରେ ପହଞ୍ଚିଲା ସେତେବେଳେ ମୁଁ ଗାଡ଼ି ରଖିବାକୁ ସଙ୍କେତ ଦେଲି ଓ ଆମ୍ଭେମାନେ ସମସ୍ତେ ସେହିଠାରେ ହିଁ ଗାଡ଼ିରୁ ଓହ୍ଲେଇ ପଡ଼ିଲୁ ।

ପ୍ରଥମରୁ ହିଁ ମନେହେଲା ଆମ୍ଭେମାନେ ଯେମିତି ଗୋଟାଏ ଜନ୍ତାରେ ପଡ଼ିଯାଇଚୁ, କାରଣ ଆମକୁ ଘେରି ଯାଇଥିଲେ ପ୍ରାୟ ଶହେ ଜଣ ହବ ଲଙ୍ଗଳା ପିଲା । ମିସ୍ ସୋଫିଆ ଯେତେବେଳେ ତାଙ୍କର ଶାଢ଼ୀରୁ ଧୂଳି ଝାଡୁଥାନ୍ତି ସେତେବେଳେ ଉର୍ମିଳ ଆପ୍ରାଣ ଚେଷ୍ଟା କରୁଥାଆନ୍ତି ପିଲାମାନଙ୍କୁ ଘଉଡ଼େଇ ଦବାକୁ । କେତେବେଳେ କଟୁ ଭର୍ତ୍ସନାରେ ବା କେତେବେଳେ ଏକ ଶଙ୍କା ସୃଷ୍ଟିକାରୀ ଅଙ୍ଗଭଙ୍ଗୀରେ ! କିନ୍ତୁ ସେହି ସମବେତ ଶିଶୁ ମଣ୍ଡଳି ଯେପରି ଏକ ରବରରେ ତିଆରି ଗୋଲାକାର ବସ୍ତୁ, ଯାହାର ଏକ ଅଂଶ ସ୍ଫୀତ ହୋଇ ଦୂରକୁ ଚାଲିଗଲେ ତା'ର ବିପରୀତ ଅଂଶଟି ନିକଟତର ହେଇ ଆସୁଥାଏ ସେଇ ଗାଁର ଆମୋଦପ୍ରମୋଦ କାଙ୍ଗାଳ ଶିଶୁମାନଙ୍କ ପାଇଁ ପ୍ରାୟ ଆମ୍ଭେମାନେ ସମସ୍ତେ ହେଇ ପଡ଼ିଥାଉ ଜଣେ ଜଣେ ପ୍ରଦର୍ଶନୀର ବସ୍ତୁ । କିମ୍ଭୂତ କିମାକାର ଟୋପି, ଆଖିରେ ଗଗଲ୍‌ସ ଓ ବେକରୁ ଝୁଲୁଥିବା କ୍ୟାମେରା, ବାଇନୋକୁଲାର ପ୍ରଭୃତି ବିଭିନ୍ନ ବସ୍ତୁ ଦେଖି ସେମାନଙ୍କର ମନେ ହଉଥିବ ଯେପରି ଆମ୍ଭେମାନେ କୌଣସି ଏକ ଯାନରେ ଅନ୍ୟ ଏକ ଗ୍ରହରୁ ଆସି ଓହ୍ଲେଇ ପଡ଼ିଚୁ ପୃଥିବୀରେ । ବହୁ ସାଧ ସାଧନା କରି, ଗାଁର ଜଣେ ଦୁଇଜଣ ପ୍ରାପ୍ତବୟସ୍କ ଲୋକଙ୍କର ସାହାଯ୍ୟ ନେଇ ମୁଁ ସେହି ଅବାଞ୍ଛିତ ଶିଶୁ ବ୍ୟୁହ ଭେଦକରି ପାରିବାରେ ସମର୍ଥ ହୋଇଗଲି । ନିକଟସ୍ଥ ଏଲ୍.ପି. ସ୍କୁଲର ଜୀର୍ଣ୍ଣ ଛାତ ତଳେ ଆମର ବ୍ୟବହାରିକ ବସ୍ତୁ ସବୁ ରଖିଦେଇ ଆମେ ବାହାରିଥିଲୁ ଗ୍ରାମ ପରିକ୍ରମାରେ, ଓଡ଼ିଶାର ଏକ ଅଖ୍ୟାତ ପଲ୍ଲୀରେ ଦାରିଦ୍ର୍ୟକୁ ଆବିଷ୍କାର କରିବା ପାଇଁ ।

ଗାଁ ଦାଣ୍ଡର ଧୂଳିରେ ବଳାଗଣ୍ଠି ପର୍ଯ୍ୟନ୍ତ ପାଦ ପଶିଯାଉଥାଏ । ଆମମାନଙ୍କର ଗତି ସ୍ୱାଭାବିକ ଭାବରେ ମନ୍ଥର ଥାଏ, କିନ୍ତୁ ମିସ୍ ସୋଫିଆଙ୍କର ଗତି ଥାଏ ମନ୍ଥରତର । ସେ ଦୁଇ ହାତରେ ନିଜର ଶାଢ଼ୀ ଟେକିଧରି ଯେପରି ଟିପେଇ ଟିପେଇ ଚାଲୁଥାଆନ୍ତି, ମୋର ମନେ ହଉଥାଏ ଯେପରି କୌଣସି ରେସ୍‌କୋର୍ସର ସଯତ୍ନବର୍ଦ୍ଧିତ ରେସ୍ ହର୍ସ କୌଣସି କର୍ଦ୍ଦମାକ୍ତ ପଥରେ କଦମ୍ ଚାଲୁଛି ।

ମୁଁ ଜନାନ୍ତିକରେ ମିଃ ପିଣ୍ଟୁକୁ ପଚାରିଲି, ''ଆଚ୍ଛା ଏଇ ମିସ୍ ସୋଫିଆ ଆପଣଙ୍କ ୟୁନିଟ୍ ସହିତ କିପରି ସଂପୃକ୍ତ ?'' ମିଃ ପିଣ୍ଟୁ କହିଲେ, ''ସିଏ ହେଲେ ପ୍ରଧାନ ଅଭିନେତ୍ରୀ ଅର୍ଥାତ୍ ଏକ ଅନାହାରଜନିତ ମୃତ୍ୟୁ ମୁଖରେ ପଡ଼ିବାକୁ ଯାଉଥିବା ଗୋଟିଏ ପରିବାରର ସ୍ତ୍ରୀ ଓ ମା–ତାଙ୍କର ସମସ୍ତ ସୁଟିଂ ଏଇ ଗାଁରେ ।''

ମିଃ ଆଲୁଓ୍ୱାଲିୟା କହିଲେ, ''ଇସ୍ ! ୟେ ଗାଓଁ ମେ ଇତ୍‌ନା ଧୂଳି !''

ମୁଁ କହିଲି, ''ଆଲୁଓ୍ୱାଲିୟା ସାହେବ୍ ! ଗାଁରେ ମ୍ୟୁନିସିପାଲିଟି କି କର୍ପୋରେସନ ନଥାଏ । ଏଠିକାର ଧୂଳି ପବନରେ ଆସି ଜମେ, ପୁଣି ପବନରେ ଉଡ଼ିଯାଏ–ବର୍ଷାଦିନେ ଏଇ ଧୂଳି ଚକଟି ହେଇ କାଦୁଅ ହୋଇଯାଏ; ଯାହାପାଇଁ ଗାଁକୁ ମଟର ଆସିପାରେ ନାହିଁ ।''

ଆମେ ଗାଁ ଆଡ଼କୁ ଯାଉଥିଲାବେଳେ କତିପୟ ଲଙ୍ଗଳା ପିଲା ଆମ ଆଗେ ଆଗେ ଯାଉଥିଲେ ଯାହା, ଗାଁର କେହି ଅଧିବାସୀ ଆମେ କାହିଁକି ଆସିଚୁ ଏକଥା ପଚାରିବାକୁ ଆସିନଥିଲେ । କେଉଁଠି କେମିତି କାଁ ଭାଁ କେହି ଠିଆହେଇ ରହିଥିଲେ ବି ସେମାନେ କେବଳ ଆମର ଏଇ କ୍ଷୁଦ୍ର ଶୋଭାଯାତ୍ରାଟିକୁ କୌତୂହଳୀ ହେଇ ଚାହିଁ ରହିଥିଲେ । ସେମାନଙ୍କର ଯେପରି କେଉଁଠାରେ କିଛି ଘଟିଲେ ଯାଏ ଆସେ ନାହିଁ । ତେଣୁ ଆମକୁ ପାଟିକରି ଆମର ଆସିବାର ଉଦ୍ଦେଶ୍ୟ ଘୋଷଣା କରିବାକୁ ପଡ଼ିଲା । ମିଃ ମହାପାତ୍ର କହିଲେ, ''ଆମେ ସବୁ ଆସିଚୁ ଦେଖିଯିବା ପାଇଁ, ଏଇ ଗାଁରେ ଫିଲ୍ମ ସୁଟିଂ କରାଯିବ–ତମ ଗାଁ ବାଲାଏ ମଧ୍ୟ ସେଇ ଚଳଚ୍ଚିତ୍ରରେ ଉଠିଯିବ ।''

କଥାଗୁଡ଼ାକ ପବନରେ ଉଡ଼ିଯିବା ପରି ଲାଗିଲା । ଜଣେ ଆଉ ଜଣକୁ ମୁହଁ ଫେରେଇ ଅନେଇଲା । ବୁଢ଼ାବୁଢ଼ୀ ସବୁ ଯେଉଁମାନେ ପିଣ୍ଡା ଉପରେ ନହେଲେ ଏରୁଣ୍ଡି ବନ୍ଧରେ ବସି ରହିଥିଲେ ସେମାନେ ସେମିତି ନିଶ୍ଚଳ ହେଇ ବସି ରହିଲେ ।

ଆମେ କୌଣସି ଏକ ପିଣ୍ଡା ଉପରକୁ ଉଠିଲୁ ଓ 'ବାବୁ ଆମେ ଟିକିଏ ଘର ଭିତରକୁ ଯାଉଚୁ' କହି ଘର ଭିତରକୁ ଗଲୁ । ବଖରାଏ ଘର–ପୁଣି ଆଉ ବଖରାଏ । ତାକୁ ଡେଇଁ ପଡ଼ିଲେ ମେଲା ବାରି । କିଛି ଦୂର ଛାଡ଼ି ଗୋଟାଏ କୟାଁ ଗଛ, ଘର ଭିତରେ କିଏ ଜଣେ ହେଁସ ଘୋଡ଼ି ହୋଇ ଶୋଇଥିଲା । ଆମ ଡାକରେ କର

ଲେଉଟାଇ ଶୋଇଲା, କିନ୍ତୁ ଉଠିଲା ନାହିଁ । ଗୋଟାଏ ଘର, ତା'ପରେ ଗୋଟାଏ । ସବୁଠି ଏକା କଥା । କେହି ଆମକୁ ଘର ଭିତରକୁ ଡାକୁ ନାହିଁ ବା ଘର ଭିତରକୁ ନୂଆଣିଆ ଚାଳ ତଳେ ମୁଣ୍ଡ ଗଳେଇ ଡାକିଲା ବେଳକୁ କେହି ମଧ ମନା କରୁ ନାହିଁ ।

ଚାଳ ବୋଧହୁଏ କେଇବର୍ଷ ହେବ ଛପର ହୋଇ ନାହିଁ । ତା' ତଳର ବାଉଁଶ ସବୁ ଘୁଣ ଧରି ଗଲାଣି । କ'ଣ ସବୁ ଭିଡ଼ିଦେଲେ ଛିଣ୍ଡିଯିବେ ଗୁଲି ସୂତା ପରି ଟକ୍ ଟକ୍ । ମେଲା ଦାଣ୍ଡ, ମେଲା ବାରି—ମଝିରେ ମଝିରେ ଚାଳର ରନ୍ଧ୍ର ଦେଇ କୋଉଠି କେମିତି ଝଲକାଏ ଖରା ଆସି ନେସି ହୋଇଯାଇଛି କାନ୍ଥିନିରେ ।

ମିଃ ଭର୍ଗିଜ ପାଇପ୍‌ଟାକୁ ମୁହଁରେ ଦେଇ ଗୋଡ଼ ତଫାତ୍ କରି ଠିଆହୋଇ ଜୀର୍ଣ୍ଣ ଚାଳ ଗୁଡ଼ିକୁ ଲକ୍ଷ୍ୟ କରୁଥିଲେ ଓ ବେଳେ ବେଳେ ପଛକୁ ଚାହିଁ ଗୋଟାଏ ବିରାଟ ଥୁଣ୍ଟା ଶିମିଳି ଗଛକୁ ଚାହୁଁଥିଲେ ଓ ଚାହୁଁଥିଲେ ଚକଡ଼ାଏ ଗାଁ ଟପିଗଲେ ସୀମାହୀନ ଧାନ ବିଲର ସଦ୍ୟକଟା ହୋଇ ଯାଇଥିବା ଥୁଣ୍ଟା ଥୁଣ୍ଟା ମୂଳ ନଡ଼ାକୁ । ସେ ବୋଧହୁଏ ମନେ ମନେ ଭାବୁଥିଲେ ଦାରିଦ୍ର୍ୟର ପରିବେଶ ଠିକ୍ ଠିକ୍ ଫୁଟିବ କି ନାହିଁ । କେତେବେଳେକେ ମତେ ପାଖକୁ ଡାକି କହିଲେ, ''ଓ୍ୱଣ୍ଡରଫୁଲ୍ ମିଃ ଦାସ—ଆଇ ଆମ୍ ଗ୍ରେଟଫୁଲ ଟୁ ୟୁ—ଆଉ ଦେଖୁଛନ୍ତି, ଏଇ ପାଖରେ ଯାଇଚି ଇଲେକ୍‌ଟ୍ରିକ୍ ଲାଇନ୍, ସୁଟିଂର କୌଣସି ଅସୁବିଧା ହେବ ନାହିଁ ।'' ମୁଁ କିଛି ଉତ୍ତର ଦେଲି ନାହିଁ ।

ଏ ଗାଁକୁ ମୁଁ କେବେ ଆସି ନାହିଁ—ଏ ଗାଁର ନାଁ ମଧ ମୁଁ ଜାଣେ ନାହିଁ । ଅନେକ ନାମହୀନ ଗାଁ ଭିତରୁ, ଯାଉ ଯାଉ ବାଟରେ ପଡ଼ିଥିବା ଗୋଟାଏ ଗାଁ କେବଳ । ମୁଁ ସେମାନଙ୍କ ସାଙ୍ଗରେ ପ୍ରାୟ ସମସ୍ତ ଗାଁଟି ବୁଲି ଆସିଛି । ମେଲା ମେଲା ଗୁମ୍‌ଟି ଗୁମ୍‌ଟି ଦୁଆରବନ୍ଧସବୁ ନାଁ ନଥିବା ଲୋକମାନଙ୍କର । ତା' ଭିତରେ କିଛି ମାଟିହାଣ୍ଡି, ମାଠିଆ ଆଉ କୁଲା ବାଉଁଶିଆକୁ ଛାଡ଼ିଦେଲେ ଅବଶିଷ୍ଟ ଯାହାଅଛି ତା ହେଲା ଚେପା ତେଢ଼ା କେଇଖଣ୍ଡ ଟଉ ବାସନ । ଏଇ ଶୂନ୍ୟଗର୍ଭା ଘର ଗୁଡ଼ିକର ପୃଷ୍ଠାପଟରେ ଟଉ ବାସନ ଗୁଡ଼ାକ ଦେଖାଯାଉଛି ଏମାନଙ୍କର ଉତ୍କଟ ଦାରିଦ୍ର୍ୟକୁ ଉପହାସ କଲାପରି ।

ସେଇ ଘରଗୁଡ଼ିକ ଭିତରେ କେଉଁଠି କେମିତି ଲୋକମାନେ ଘୋଡ଼ି ହୋଇ ଶୋଇ ରହିଛନ୍ତି । କାହିଁକି ? କିଏ ତା'ର ଉତ୍ତର ଦବ ? କିଏ ହୁଏତ ମାସ ମାସ ଭୋଗୁଛି ପାଳିଜ୍ୱରରେ । ଆଉ କାହାର ହୁଏତ କିଛି କରିବାର ନାହିଁ—ପୁଣି ଆଉ କିଏ ଖାଇବାକୁ ପାଉ ନାହିଁ ତିନି ଓଳି ହେଲା । ଡିସେମ୍ବର ମାସରେ ଗାଁ ଦାଣ୍ଡରେ ନହେଲେ ବାରିପଟେ ଜମା ହୋଇ ରହିଛି ଆଣ୍ଟୁଏ ଉଚ୍ଚର ଧାନ କଳେଇ ନହେଲେ କୋଳଥ ଗଦା—କେତେବେଳେ କିଏ ମକଚି ଦେଲେ ନହେଲେ ଦୁହିଁଦେଲେ କୋଡ଼ିଏ ପଚିଶ ଗୌଣି ହୁଏତ ଝଡ଼ି ପଡ଼ିବ । ଗାଁ ଦାଣ୍ଡରେ ଗୋଟାଏ କି ଦୁଇଟା କଙ୍କାଳସାର ବଳଦ, ଆଠ

ଦଶଟା ଛେଳି, ନହେଲେ ପାଞ୍ଚ ଛ'ଟା କୁକୁଡ଼ା ଏଠିସେଠି କ'ଣ ଖୁମ୍ପୁଛନ୍ତି ଆଉ ନଖରେ ବାରମ୍ବାର ଶୁଖିଲା ଭୂଇଁକୁ ବିଦାରୁଛନ୍ତି ।

ଏଇ ଥିଲା ଗାଁ । ମୁଁ ମନେ ମନେ ଗାଁର ସବୁ ଜିନିଷର ଗୋଟାଏ ଇନ୍‌ଭେଣ୍ଟରି ନେଇ ସାରିଥିଲି । ସମୁଦାୟ ଗାଁଟାକୁ ବୋଧହୁଏ ତିନିଶହ କି ଚାରିଶହ ଟଙ୍କାରେ କିଣି ନେଇ ହୁଅନ୍ତା । ସେଇ ଗାଁର ପରିବେଶ ଭିତରେ ମିସ୍ ସୋଫିଆଙ୍କର ପରିଧାନ ଓ ପ୍ରସାଧନ ଦେଖାଯାଉଥାଏ ସହରରେ ଗୋଟାଏ ହେଞ୍ଜଡ଼ାର ପରିଧାନ ପରି ଅଶ୍ଳୀଳ ଓ ବିରକ୍ତିକର । ଶିମିଳି ଗଛ ମୂଳରେ ଥାପନା ହେଇଛନ୍ତି ଗାଁ ମଙ୍ଗଳା । ଆଜି ବୋଧହୁଏ କିଏ ତାଙ୍କୁ ମାଜଣା କରି ଖଣ୍ଡେ କଳା ଶାଢ଼ୀ ପିନ୍ଧେଇଚି, ସିନ୍ଦୂରନାଶି କରିଚି । ଗାଁରେ ସର୍ବ ମଙ୍ଗଳକର୍ତ୍ତ୍ରୀ ଏଇ ଫୁଟିକିଆ କୁତାମଚଣ୍ଡୀ ପିତଳ ମୁଖାରେ ସିନ୍ଦୂର ଟିପା ପିନ୍ଧି ଟହ ଟହ ହୋଇ ହସୁଛନ୍ତି । ହାୟ !

ମୁଁ କିଛି ସମୟ ପାଇଁ ଭାବୁ ଭାବୁ ଅନ୍ୟମନସ୍କ ହୋଇ ପଡ଼ିଥିଲି ।

ମିଷ୍ଟର ପିଣ୍ଟୁ ପ୍ରାୟ ଉର୍ଦ୍ଧ୍ୱଶ୍ୱାସ ହୋଇ ମୋ ପାଖରେ ଆସି ପହଞ୍ଚି କହିଲେ, "ଆପ୍‌ନି ଏଖାନେ ମିଃ ଦାସ—ଆପଣଙ୍କୁ ସେଠି ସମସ୍ତେ ଅପେକ୍ଷା କରି ବସିଛନ୍ତି ।" ମୁଁ ମିଃ ପିଣ୍ଟୁ ସହିତ ଆଗେଇଲି ।

ଗୋଟାଏ ଘର ସାମ୍ନାରେ ଫିଲ୍ମ ୟୁନିଟ୍‌ର ପ୍ରାୟ ସମସ୍ତ ଲୋକ ଅର୍ଦ୍ଧବୃତ୍ତାକାରରେ ଘେରି ଯାଇଥିଲେ ଏବଂ ସେମାନଙ୍କ ପଛେ ପଛେ ଗାଁର କିଛି ଲୋକ ଓ ଶିଶୁମାନେ । ଘଟଣାଟା ହୃଦୟଙ୍ଗମ କରିବାକୁ ମୋର ସାମାନ୍ୟ ବିଳମ୍ବ ହୋଇଥିଲା । ଗୋଟାଏ ଛୋଟ ଘର ଭିତରେ ବସି ରହିଥିଲା ଜଣେ ବୃଦ୍ଧ । ସଂପୂର୍ଣ୍ଣ ଅସ୍ଥି କଙ୍କାଳସାର । ତା' ସାମ୍ନାରେ ଗୋଟାଏ ମାଟି ପାତ୍ରରେ ଥୁଆ ହୋଇଥିଲା କିଛି ପାଣି । ଅନୁମାନ କଲି ତା'ର ହୁଏତ କେହି ନାହାନ୍ତି । ସେଥିପାଇଁ ପ୍ରୟୋଜନ ବେଳେ ପାଣିଟା ମିଳିବା ପାଇଁ ଆୟୋଜନ କରାଯାଇଛି । ମୁହଁ ଉପରେ ଅନେକ ଦିନର ଧଳା ଧଳା ରୁକ୍ଷ ସବୁ, ଗୋଟାଏ ଗାଲର ଗହ୍ୱର ଭିତରୁ ଅସଂଖ୍ୟ ଛୁଞ୍ଚିର ମୁନ ପରି ପଦାକୁ ବାହାରି ରହିଛି ।

ମିଃ ଭର୍ଗିଜ କହିଲେ ମୋ କାନ ପାଖରେ, "ମିଃ ଦାସ, ଏଇ ଲୋକଟା ବେମାର ପଡ଼ିଛି ଅନେକ ଦିନୁ—ପ୍ରାୟ ସମସ୍ତେ ତା'ର ଜୀବନର ଆଶା ଛାଡ଼ି ଦେଇଛନ୍ତି । ଦେଖୁ ନାହାନ୍ତି ତା'ର ସାମାନ୍ୟ ହଲଚଲ ହବାର ଶକ୍ତି ମଧ୍ୟ ଆଉ ନାହିଁ ।" କିନ୍ତୁ ଗାଁର ଗୋଟାଏ ମୃତ୍ୟୁକୁ ଅପେକ୍ଷା କରି ବସିଥିବା ଲୋକ ପାଇଁ ଏତେ କୌତୁହଳର ହେତୁ ମୁଁ ବୁଝି ପାରିଲି ନାହିଁ ।

ତାପରେ ଅବଶ୍ୟ ଅନେକ ସୟମ ଧରି ମତେ ପୂରା ଗପଟାକୁ ଶୁଣେଇଥିଲେ ମିଃ ଭର୍ଗିଜ ଏବଂ ଶେଷରେ କହିଥିଲେ ଯେ ଚଳଚ୍ଚିତ୍ରର ଅନ୍ତିମ ସିନ୍‌ରେ ବୁଢ଼ାବାପର

ମୃତ୍ୟୁଟା ହଉଚି ସବୁଠାରୁ ଇମ୍ପଟାଣ୍ଟ ସିନ୍, ଖୁବ୍ ନ୍ୟାଚୁରାଲ ହବା ଦରକାର । ମିଃ ଭର୍ଗିଜ ଗପି ଚାଲିଥିଲେ, ''କେବଳ ଏଇ ସିନ୍ ପାଇଁ ଆମକୁ ବହୁତ ପଇସା ଦେଇ ଜଣେ ପୋଖତ ଅଭିନେତା ଆଣିବାକୁ ପଡୁଚି—ମିଃ ଆଲୁଓ୍ୱାଲିୟା ତ ଖୁବ୍ ଉତ୍ସାହିତ ହେଇଛନ୍ତି—ଯଦି ଆମର ସୁଟିଙ୍ଗ ସମୟ ଭିତରେ ଆମକୁ ଏଇ ଲୋକଟା ଗୋଟାଏ ସୁଯୋଗ ଦିଏ ତାହେଲେ ୟା'ଠାରୁ ବେଶୀ ନ୍ୟାଚୁରାଲ୍ ଆକ୍ଟିଂ କିଏ କରି ପାରିବ ?''

ମିଃ ଭର୍ଗିଜଙ୍କର ସମସ୍ତ ସିରିଅସ୍‌ନେସ୍ ସତ୍ତ୍ୱେ ମୁଁ ହଠାତ୍ ହସି ପକେଇଲି ।

ଭର୍ଗିଜ ମୋ ମୁହଁକୁ ବିସ୍ମୟରେ ଚାହିଁ ରହିଲେ କେବଳ ।

ମୁଁ କହିଲି, ''ଭର୍ଗିଜ ସାହେବ, ଲୋକଟା ସୁଯୋଗ ଦବ କ'ଣ ? ମୃତ୍ୟୁ ଅବଧାରିତ ସତ୍ୟ, କିନ୍ତୁ ତାକୁ ତ୍ୱରାନ୍ୱିତ ବା ବିଳମ୍ବିତ କରିବାର ଶକ୍ତି କାହାର ନାହିଁ—ବରଂ କୁହନ୍ତୁ, ମୃତ୍ୟୁ ଆପଣଙ୍କୁ ସୁଯୋଗ ଦବ କି ନାହିଁ ।'' ଭର୍ଗିଜ ସାହେବ ତଥାପି ମୋ ମୁହଁକୁ ନିରର୍ଥକ ଦୃଷ୍ଟିରେ ଚାହିଁ ରହିଲେ, ଯେପରି ସେ ମୋ କଥାଟାର ମର୍ମ ଠିକ୍ ଭାବରେ ବୁଝି ପାରିଲେ ନାହିଁ ।

ସେତେବେଳକୁ ମିଃ ଭର୍ଗିଜଙ୍କ ନିର୍ଦ୍ଦେଶରେ ଲାଇଟ୍ ୟୁନିଟ୍ ରେଡ଼ି ହେଇ ସାରିଥିଲା । ଭର୍ଗିଜ ସାହେବ ଉଠି ଯାଇ ପୁଣି ଥରେ ସେଇ ବୁଢ଼ା ଦୁଆର ମୁହଁରେ ଠିଆ ହେଲେ ଓ କହିଲେ, ''ଷ୍ଟାର୍ଟ'' । ହଠାତ୍ ବହୁ କ୍ୟାଣ୍ଡଲ ପାଓ୍ୱାରର ଆଲୋକରେ ବୁଢ଼ା ନିଜେ ଓ ତା'ର ଦୀନ କୁଡ଼ିଆଖଣ୍ଡକ ଉଦ୍‌ଭାସିତ ହେଇ ଉଠିଲା । କିନ୍ତୁ ବୁଢ଼ା ସେମିତି ବସି ରହିଥିଲା ନିର୍ଲିପ୍ତ ଭାବରେ । ତା'ର ଆଖିପତା ମଧ୍ୟ ଥରକ ପାଇଁ ତଳକୁ ପଡ଼ିଲା ନାହିଁ । ଯାହା ଆଖି ବୋଲି ମନେ ହଉଥିଲା ତା ଜାଗାରେ ସ୍ପଷ୍ଟ ଦେଖିହେଲା ସାମାନ୍ୟ ନୀଳମିଶା ଗୋଟିଏ ସାଦା ପର୍ଦ୍ଦା । ହଠାତ୍ ଯେମିତି ବୁଢ଼ାର ମୁହଁଟା ଅତି ଭୟଙ୍କର ଦେଖାଗଲା । ମନେହେଲା, ଯେପରି ଧୃତରାଷ୍ଟ୍ରର ଅନ୍ଧ ପୁତୁଳି କିଏ ଅକସ୍ମାତ ଖୋଲିଦେଲା ପରି ।

ମିଃ ଭର୍ଗିଜ୍ କହିଲେ, ''ଆଇଡ଼ିଏଲ୍'' । କ୍ୟାଟ୍‌ରାକ୍ଟ୍ ଥିଲେ ପ୍ରଚୁର ଆଲୋକ ସତ୍ତ୍ୱେ ମଧ୍ୟ ସବ୍‌ଜେକ୍ଟର ସ୍ୱାଭାବିକ ଅଭିନୟ ବ୍ୟାହତ ହୁଏ ନାହିଁ । ମିଃ ଭର୍ଗିଜ୍ କହିଲେ, ''କଟ୍'' ଓ ତା'ପରେ ଆଲୋକ ଲିଭିଗଲା । ଯେପରି ମନେହେଲା ମୁହୂର୍ତ୍ତକ ଭିତରେ ବୁଢ଼ାଟା ଠେଲି ହେଇଗଲା ଗୋଟାଏ ଅନ୍ଧକାରର ଗହ୍ୱର ଭିତରକୁ ।

ମିଃ ଭର୍ଗିଜ୍ ଅନେକଟା ମନକୁମନ କହୁଥାନ୍ତି, ''ବାଃ, ଚମତ୍କାର, ଏଠି ସୁଟିଙ୍ଗ ଚାଲିବ ପ୍ରାୟ ଦଶଦିନ ଧରି । ଦଶଦିନ, ଠୁ ଲଙ୍ଗ୍ ଏ ଟାଇମ୍ । ଖାଲି ଗୋଟାଏ ସ୍ପେଆର କ୍ୟାମେରା ଏଇ ଘର ସାମ୍ନାରେ ଫିକ୍‌ସ୍‌ଡ଼ କରି ରଖିଲେ କାମ ଖତମ୍ । ଜଣେ କିଏ ଚବିଶ ଘଣ୍ଟା ଏଠି ରହିବା ଦରକାର । ଟିକିଏ ଇସାରା ପାଇଲେ

କ୍ୟାମେରାମ୍ୟାନ ଆସି ହାଜର୍ । ଏଥର ପିଣ୍ଟୁ ଉଦ୍ଦେଶ୍ୟରେ ସାମାନ୍ୟ ବଡ଼ ପାଟିରେ ରହିଲେ ଭର୍ଗିଜ, "ମିଃ ପିଣ୍ଟୁ, ତମର ସଟ୍‌ଟା ହବ ଏକାଥରକେ ଫ୍ରଣ୍ଟାଲ୍, କୌଣସି ସ୍ଲାଣ୍ଟ୍ ଦବା ଦରକାର ନାହିଁ । ଯେଉଁ ପୋଜିସନ୍‌ରେ ବୁଢ଼ା ବସିଛି ସେଇଠି କାଛକୁ ଲାଗି ସେ ଟଳି ପଡ଼ିବ । ଶେଷ ସଟ୍‌ଟା ହବ ତା'ର ସେଇ ଫିଟାଲ୍ ପୋଜିସନ୍‌ରେ ନିଶ୍ଚଳ ହେଇ ପଡ଼ିରହିଥିବାର ସଟ୍ । କଳା କଳା ଫଟା ଓଠ ଆଉ ପେଚୁଆ ଆଖି ଉପରେ ଗୋଟାଏ କ୍ଲୋଜ୍‌ଅପ୍ ନେଇପାର ଇଚ୍ଛା କଲେ ।"

ସେ' ଦିନର ସରଜମିନ୍ ପର୍ଯ୍ୟବେକ୍ଷଣ ସମାପ୍ତ କରି ଆମେମାନେ ଓ୍ୱାଗନେଟ୍‌ରେ ଫେରିଆସୁଥିଲୁ । ଠିକ୍ ବସିବା ଆଗରୁ ପୁଣି ଥରେ ଆମମାନଙ୍କୁ ଲଙ୍ଗଳା ପିଲାମାନେ ଘେରିଯାଇଥିଲେ । ମିଃ ଭର୍ଗିଜ ତାଙ୍କର କୋଟ୍ ପକେଟ୍‌ରୁ ଗୋଟାଏ ଦଶଟଙ୍କିଆ ନୋଟ୍ ବାହାର କରି ଗୋଟିଏ ପିଲାକୁ ଦେଉ ଦେଉ କହିଲେ, "ଚିଲ୍‌ଡ୍ରେନ୍, ଯାଅ ଟଫି ଖାଇଦବ" ଓ ତା' ପରେ ପରେ ମୋ ଉଦ୍ଦେଶ୍ୟରେ କହିଲେ, "ମିଃ ଦାସ, ଆମେ ଯେତେବେଳେ ଏଠି ଦଶଦିନ ରହିବୁ ସୁଟିଂ ପାଇଁ ଏମାନଙ୍କ ସହିତ କମ୍ୟୁନିକେସନ ନକଲେ ଚଳିବ କେମିତି ?" ମୁଁ ଦେଖିଥିଲି କିପରି ଗୁଡ଼ାଏ ଫୁଙ୍ଗୁଳାଦିହ ପିଲାଙ୍କର ଗୋଟାଏ ଆବର୍ତ୍ତ ଧୂଳି ଉଡ଼େଇ କୋଳାହଳ କରି ଦୂରକୁ ଦୂରକୁ ଅପସରି ଯାଉଥିଲା ।

ନାଳିଧୂଳିର ରାସ୍ତାରେ ଗାଡ଼ି ଫେରୁଥିଲା—ପିଚୁରାସ୍ତା ଆଉ ଅଳ୍ପ ବାଟ ଅଛି ।

ମିଃ ଭର୍ଗିଜ୍ କହିଲେ, "ମନେ ଅଛି ସୋଫିଆ, ବୁଢ଼ାର ମୃତ୍ୟୁ ପରେ ପରେ ତମକୁ ଯାଇ କାନ୍ଦି କାନ୍ଦି ଲୋଟି ପଡ଼ିବାକୁ ହେବ ତା' ଉପରେ । ସୋଫିଆ କିଛି ଉତ୍ତର ଦେଲେ ନାହିଁ, ଖାଲି ତାଙ୍କର ଓଠଟା କିପରି ମୋଡ଼ି ହେଇ ବିକୃତ ହେଇଗଲା । ମିଃ ଆଲୁଓ୍ୱାଲିଆ ତାଙ୍କର ଟୋପିଟାକୁ କାଢ଼ି ନାକ ପାଖରେ ଥରେ ଦୁଇଥର ଆନ୍ଦୋଳିତ କରି ପୁଣି ଫେରେଇ ନେଲେ ମୁଣ୍ଡ ଉପରକୁ ।

ମାତ୍ର ଦୁଇଦିନ ପରେ ଆମେମାନେ ପୁଣିଥରେ ସେହି ରାସ୍ତାଦେଇ ଗାଁକୁ ଫେରୁଥିଲୁ । ଆଜି ରାତିରେ ମହୁରତ୍ ଓ ସାଙ୍ଗେ ସାଙ୍ଗେ କାଲିଠାରୁ ଆରମ୍ଭ ସୁଟିଙ୍ଗ୍ ।

ମୁଁ ତ ସେ ଗାଁଟାକୁ ଆଦୌ ଚିହ୍ନି ପାରିଲି ନାହିଁ । ଗାଁ ଚାରିପଟ ଯାକ କୌରବର ଛାଉଣୀ ପରି ଅନେକ ଛୋଟବଡ଼ ତମ୍ବୁ ପଡ଼ିଯାଇଛି । ପ୍ରତି ତମ୍ବୁରେ ଇଲେକ୍‌ଟ୍ରିକ୍ ଲାଇଟ୍ ପାଖରେ ଦୁଇଟା ଘୋଡ଼ା ବନ୍ଧା ହୋଇ ଘାସ ପାକୁଳି କରୁଛନ୍ତି । ଏକଟଣା ଘର୍ ଘର୍ ଶବ୍ଦ କରି ଚାଲିଛି ଗୋଟାଏ ବିରାଟ ଜେନେରେଟର୍ ।

ଗାଁରେ ଓହ୍ଲେଇ ମିଃ ଭର୍ଗିଜ ପ୍ରଥମେ ଯାଇଥିଲେ ସେଇ ବୁଢ଼ାର ଘର ପାଖକୁ । ବୁଢ଼ା ସେମିତି ବସି ରହିଥିଲା ଓ ଚାହିଁ ରହିଥିଲା ତା'ର ପେଚୁଆ ପେଚୁଆ ଆଖିରେ

ଭାବଲେଶଶୂନ୍ୟ ଭାବରେ । ମିଃ ଭର୍ଗିଜ ପାଖରେ ଠିଆ ହୋଇଥିବା ଲୋକମାନଙ୍କୁ ଇଙ୍ଗିତ କରି ପ୍ରଶ୍ନ କରିଥିଲେ ବୁଢ଼ା ବିଷୟରେ । କିଏ ଜଣେ ତା' ଭିତରୁ କହିଲା, "ପାଣି ପିଇବା ଛାଡ଼ି ଦେଲାଣି ବୁଢ଼ା, ଆଉ ବେଶୀ ସମୟ ନୁହଁ ।"

ଆମେ ଫେରି ଆସିଥିଲୁ ଆମର ନିର୍ଦ୍ଧାରିତ ତମ୍ବୁକୁ । ବେଶ ପରିଚ୍ଛନ୍ନ ତମ୍ବୁ, ତଳେ କାର୍ପେଟ ବିଛା ହେଇଛି ଓ ତା' ଉପରେ ପର୍ଯ୍ୟାପ୍ତ ପରିମାଣର ଟେବୁଲ ଚଉକି ପଡ଼ିଚି । ଏକାବେଳକେ ହଇଚଇ ବ୍ୟାପାର । କିଛି ଥଟ୍ଟା କଥା ନୁହଁ, କୋଡ଼ିଏ ଲକ୍ଷ ଟଙ୍କା ବଜେଟ୍ ଫିଲ୍ମର ମହୁରତ ! ଟିକିଏ ଦୂରରେ ଆଉ ଗୋଟାଏ ତମ୍ବୁରେ ପ୍ରଚୁର ଭୋଜନ ସାମଗ୍ରୀ ତିଆରି କରାଯାଇଥିବାର ନିର୍ଭୁଲ ପ୍ରମାଣ ମଧ୍ୟ ମିଳୁଛି ।

ମାତ୍ର ସଂଧ୍ୟା ସାତଟା ।

ଟେବୁଲ ଉପରକୁ ଆସିଗଲା ସ୍କଚ୍ ହୁଇସ୍କିର ବୋତଲ ଆଉ ସୋଡ଼ା । ସୋଡ଼ାର ସିଞ୍ଜିନୀରେ ଫୁଲି ଫୁଲି ଉଠିଲା ଗିଲାସ ସବୁ । ବାରମ୍ବାର ତାଗିଦ୍ କରୁ ଥାଆନ୍ତି ମିଃ ଭର୍ଗିଜ, "ପ୍ଲିଜ୍, ଆଜି ଅନ୍ତତଃ କେହି ଗିଲାସ ଖାଲି ରଖ ନାହିଁ । ମୁଁ ଏ ବାବଦରେ ଅନେକ ସୁପରଷ୍ଟିସସ୍; ଗିଲାସ ଖାଲି ରହିଲେ ବକ୍ସ ଅଫିସ୍ ମଧ୍ୟ ଖାଲି ହେଇଯିବ ।" ମିଃ ଆଲୁଓ୍ୱାଲିଆ କାଳବିଳମ୍ବ ନକରି ତାଙ୍କର ଗ୍ଲାସରେ ପୁଣି ଥରେ ହୁଇସ୍କି ଢାଳି ନେଲେ ।

ମୁଁ ସେଠାରେ ଜଣେ ନୀରବ ଦର୍ଶକ ଭାବରେ ବସି ରହିଥିଲି ।

ସୋଡ଼ା ବୋତଲ ଖୋଲିବା, ହୁଇସ୍କି ଗିଲାସରେ ଢାଳିବା ଓ ତାକୁ ଧୀରେ ପିଇବାର କ୍ଲାନ୍ତିକର ପୌନପୌନିକତାରେ ମୁଁ ମଝିରେ ମଝିରେ ଧୈର୍ଯ୍ୟ ହରେଇ ବସୁଥିଲି । ହାତଘଣ୍ଟାକୁ ଚାହିଁଲି, ସାଢ଼େ ଆଠଟା । ପଲ୍ଲୀ ଗାଁରେ ଏଇ ସମୟ ମନେ ହେଉଛି ନିଶାର୍ଦ୍ଧ ପରି । ମୁଁ ଥରେ ତମ୍ବୁ ବାହାରକୁ ଯାଇଥିଲି ଅଣ୍ଟା ସଳଖି ନବା ପାଇଁ । ଗାଁଟା ଏକାଥରକେ ଚୁପ୍‌ଚାପ୍, ଆଲୋକର କ୍ଷୀଣତମ ସୂଚନା ମଧ୍ୟ ନାହିଁ । ଅନ୍ଧାର ଯେପରି ଗୋଟାଏ ଅତିକାୟ କଳା କରେଇ ପରି ସମୁଦାୟ ଗାଁଟାକୁ ମାଡ଼ି ବସିଚି । ଗୋଟାଏ କିଛି ଜନ୍ତୁ ପତ୍ର ଖସ୍ ଖସ୍ କରି ମତେ ଦେଖି ଦୂରକୁ ଚାଲିଗଲା । ବିଲୁଆଟାଏ ହବ ପରା !

ପୁଣି ଥରେ ତମ୍ବୁ ଭିତରକୁ ଫେରିଲି । ଟେବୁଲ୍ ଉପରେ ପ୍ରଚୁର ଚିକିନ୍ ଫ୍ରାଇର ସମାରୋହ । ସେତେବେଳକୁ ମିଃ ଭର୍ଗିଜ୍ କହୁଛନ୍ତି, "ଷ୍ଟେଡ଼ି ସୋଫିଆ, ଷ୍ଟେଡ଼ି । ଇଭିନିଂ ଇଜ୍ ଓନ୍ଲି ୟଙ୍ଗ ।" ଭର୍ଗିଜ୍‌ଙ୍କର ମୁହଁ ଦେଖାଯାଉଥିଲା କେମିତି ଟିକିଏ ଝାଳୁଆ ଝାଳୁଆ । ମିଃ ଆଲୁଓ୍ୱାଲିଆ ତାଙ୍କର ମୁଣ୍ଡରୁ ଟୋପିଟି କାଢ଼ି ଦେଇଛନ୍ତି ତାଙ୍କର ଚନ୍ଦା ମୁଣ୍ଡ ଉପରେ କିଛି ଶୀତଳ ପବନର ସ୍ପର୍ଶ ପାଇଁ । ମିଃ ପିଣ୍ଟୁ ମଝିରେ

ମଝିରେ ପଶି ଆସି ଗିଲାସରେ ଗୋଟାଏ ଚୁମୁକ୍ ମାରି ଖଣ୍ଡେ ଚିକିନ୍ ଫ୍ରାଇ ଧରି ପୁଣି କୁଆଡ଼େ ଉଭାନ୍ ହେଇ ଯାଉଛନ୍ତି ।

ମିଃ ଭର୍ଗିଜ୍ ପାଟିରେ ମାଂସତକ ଓଟାରି ନେଇ ବୋନ୍‌ଟାକୁ ହାତରେ ଧରିଛନ୍ତି । ଦୁଇଟି ସରୁ ହାଡ଼ ଦୁଇପଟୁ ଆସି ଗୋଟିଏ ଜଏଣ୍ଟରେ ଏକତ୍ରିତ ହେଇଛନ୍ତି । ମିଃ ଭର୍ଗିଜ୍ ଡାକିଲେ, ''ସୋଫିଆ, କମ୍, ପୁଲ୍ ଦିସ୍ ଲକ୍‌କି ବୋନ୍ ।'' ସୋଫିଆ ଓ ଭର୍ଗିଜ୍ ଦୁଇଦିଗରୁ ଦୁଇଟି ସରୁ ହାଡ଼କୁ ଯଥା ସମ୍ଭବ ଶକ୍ତି ପ୍ରୟୋଗ କରି ଟାଣିବାକୁ ଲାଗିଲେ । ଟକ୍‌କିନା ଭାଙ୍ଗିଗଲା ହାଡ଼ଟା; ପଡ଼ି ଯାଉ ଯାଉ ଗୋଟାଏ ଚଉକିର ହାତ ଧରି ନେଇ ନିଜକୁ ସମ୍ଭାଳି ନେଲେ ସୋଫିଆ । ହାଡ଼ର ଜଏଣ୍ଟଟି ଥିଲା ଭର୍ଗିଜ୍‌ଙ୍କ ହାତରେ । ମିଃ ଭର୍ଗିଜ୍ କହିଲେ, ''ମୁଁ ତୁମକୁ କହୁଛି ସୋଫିଆ, ଆଇ ଆମ୍ ଲକ୍‌କି— ମୁଁ ସେ ସଟ୍‌ଟା ନବାର ଅପର୍‌ଚୁନିଟି ପାଇବି ଇ ପାଇବି ।''

ଠିକ୍ ଏତିକି ବେଳେ ଟିକିଏ ଦୂରରେ ବୋଧହୁଏ କ'ଣ ଗୋଳମାଳ ହେଲାପରି ଶୁଣାଗଲା । କେହି ବୋଧହୁଏ କାହାକୁ ନାଁ ଧରି ଡାକିଲା । ମୁଁ ବାହାରକୁ ଚାହିଁଲି । ଗୋଟାଏ ଦୁଇଟା ଲଣ୍ଠନ ଧରି କିଏ ଯେମିତି ଦ୍ରୁତ ଗତିରେ ଯିବା ଆସିବା କରୁଥିଲେ । ଲଣ୍ଠନ୍‌ରେ ସେମାନଙ୍କର ଲମ୍ବା ଲମ୍ବା ଗୋଡ଼ର ଛାଇ ଦେଖାଯାଉଥିଲା । ଭିତରର ବିରକ୍ତିକର ପରିବେଶରୁ ରକ୍ଷା ପାଇବାକୁ ଗୋଟାଏ ସୁବିଧା ପାଇ ମୁଁ ବାହାରକୁ ଗଲି । ସିଆଡୁ ଜଣେ କିଏ ଦୌଡ଼ି ଦୌଡ଼ି ଆମ ଆଡ଼କୁ ଆସୁଥିଲା । ମତେ ଦେଖି କହିଲା, ''ବାବୁ, ସେଇ ବୁଢ଼ା ମରିଗଲା—ଗାଁ ଲୋକେ କାନ ଫାନ ଫୁଙ୍କାଫୁଙ୍କି କରୁଛନ୍ତି । ସିଏ ତ ପାଚିଲା ଆମ୍ବପରି ଖାଲି ନଟକି ରହିଥିଲା... ।''

ମୁଁ ପୁଣିଥରେ ତମ୍ବୁ ଭିତରକୁ ଫେରିଲି ।

ମିଃ ଭର୍ଗିଜ୍ ତାଙ୍କର ଦୁଇଗୋଡ଼କୁ ଟେବୁଲ ଉପରକୁ ଟେକିଦେଇ ଗୋଟାଏ ଫର୍କରେ ଖଣ୍ଡେ ଚିକିନ୍ ଫ୍ରାଇ ଉଠେଇ ନେଇ ପାଟିରେ ପୂରଉଥିଲେ । ମୁଁ କହିଲି, ''ମିଃ ଭର୍ଗିଜ୍, ଆପଣ ସୁଯୋଗଟା ପାଇଲେ ନାହିଁ ଆଉ—ସେଇ ବୁଢ଼ାଟି ମରିଗଲା ।''

ପ୍ରଥମେ କିଛି ମୁହୂର୍ତ୍ତ ସ୍ଥିର ହେଇ ରହିଗଲେ ମିଃ ଭର୍ଗିଜ, ତା'ପରେ ହଠାତ୍ ଚିତ୍କାରକରି ଉଠିଲେ, ''ହ୍ୱାଟ୍'' । ଭର୍ଗିଜ୍‌କୁ ସେଇ ମୁହୂର୍ତ୍ତରେ ଦେଖି ମନେହେଇଥିଲା ଯେପରି ଗୋଟାଏ ବିରାଟ ଶ୍ୱେତ ଗଧିଆ ଶିକାର ଖସିଗଲା ବୋଲି ଝିଙ୍କାରି ଉଠିଲା । ବାସ୍ ସେତିକି । ତା'ପରେ ଭର୍ଗିଜ୍‌ଙ୍କର ଆଖିଗୁଡ଼ାକ ବଡ଼ ବଡ଼ ହେଇ ଉଠିଲା—ମୁହଁ ଉପରକୁ ଚହଟି ଗଲା ଝଲକାଏ ରକ୍ତ । କିଏ ଯେପରି ତାଙ୍କର ଶ୍ୱାସନଳୀ ରୁଦ୍ଧ କରି ଦଉଛି । ମିଃ ଭର୍ଗିଜ୍ ଖୁବ୍ ଚେଷ୍ଟା କରୁଛନ୍ତି ଚଉକୀ ଉପରେ ସିଧା ହୋଇ ବସି

ପଡ଼ିବାକୁ, ତାଙ୍କ ମୁହଁ ଦେଇ ଗୋଟାଏ ଗଁ ଗଁ ଶବ୍ଦ ବାହାରୁଛି, ଯେପରି ସେ ଆପ୍ରାଣ ଚେଷ୍ଟା କରୁଛନ୍ତି ପାଟିରୁ ଚିକିନ୍ ପିସ୍ ଖଣ୍ଡକ କାଢ଼ି ପକେଇବା ପାଇଁ । ଉପସ୍ଥିତ କେହି ହେଲେ କିଛି ଠିକ୍ କରି ପାରୁ ନାହାନ୍ତି କ'ଣ କରାଯିବା ଉଚିତ୍ ।

ଠିକ୍ ଏତିକିବେଳେ ଇଲେକଟ୍ରିକ୍ ଆଲୁଅ ଥରେ ଦୁଇଥର ଧପ୍ ଧପ୍ ହେଇ ଲିଭିଗଲା ଏକାଥରକେ ଓ ସମଗ୍ର ତମ୍ବୁ ବୁଡ଼ିଗଲା ନିରନ୍ଧ୍ର ଅନ୍ଧକାର ଭିତରେ । କିଏ ଜଣେ ଚିତ୍କାର କରି ଉଠିଲା, ''ଟର୍ଚ୍ଚ, ଟର୍ଚ୍ଚ'' । ପୁଣିଥରେ ଶୁଣାଗଲା ଭର୍ଗିଜ୍‌ଙ୍କର ଗଁ ଗଁ ଶବ୍ଦ—ତା'ପରେ ଗୋଟାଏ ତୀକ୍ଷ୍ଣ ଆର୍ତ୍ତନାଦ ଏବଂ ଗୋଟାଏ ମଣିଷ ତଳେ କଚାଡ଼ି ହେଇ ପଡ଼ିବାର ଶବ୍ଦ ।

ଟର୍ଚ୍ଚ ଆସିଥିଲା, କିନ୍ତୁ ସେତେବେଳକୁ ଅନେକ ବିଳମ୍ବ ହେଇ ଯାଇଥିଲା । ଭର୍ଗିଜ୍‌ଙ୍କର ମୃତ ଦେହ ତଳେ ପଡ଼ିରହିଥିଲା ଓ ତାଙ୍କର ଆଖିଗୁଡ଼ାକ ତା'ର କୋଟର ଭିତରୁ ବାହାରି ଆସିଥିଲା ଅନେକ ପଦାକୁ, ଯେପରି ତାଙ୍କର ଶ୍ୱାସନଳୀ ରୁଦ୍ଧକରି ତାଙ୍କୁ କେହି ହତ୍ୟା କରିଛି । ପରୀକ୍ଷା କରିବାର କିଛି ପ୍ରୟୋଜନ ନଥିଲା, ତଥାପି ମୁଁ ଭର୍ଗିଜ୍‌ଙ୍କର ଛାତି ଓ ନାଡ଼ି ପରୀକ୍ଷା କରି ନେଇଥିଲି ମନ ବୁଝିବା ପାଇଁ ।

ତା'ପରେ ଟର୍ଚ୍ଚ ଆଲୁଅ ସାହାଯ୍ୟରେ ଭର୍ଗିଜ୍‌ଙ୍କର ଦେହକୁ ଜିପ୍ ଉପରକୁ ନେଇ ଜିପ୍ ରମାନା ହେଇଥିଲା, ସହରକୁ ଦ୍ରୁତ ଗତିରେ ।

ମୁଁ ସେଇ ନିରନ୍ଧ୍ର ଅନ୍ଧକାର ଭିତରେ ବସିରହି ଚିନ୍ତା କରୁଥିଲି ।

ଭର୍ଗିଜ୍‌ଙ୍କର ଦେହକୁ ଓହ୍ଲେଇ ଦିଆଯିବ ଗୋଟାଏ ଷ୍ଟ୍ରେଚର୍ ଉପରେ । କିଏ ଜଣେ ଡାକ୍ତର ଷ୍ଟେଥୋ ଲଗେଇ ମୁହୂର୍ତ୍ତକ ପାଇଁ ଛାତି ପରୀକ୍ଷା କରିନେଇ ତଳକୁ ମୁହଁ ପୋତି ମୁଣ୍ଡ ହଲେଇବେ । ତା'ପରେ କଫିନ୍‌ରେ ବରଫ ଭର୍ତ୍ତି ହେଇ ଭର୍ଗିଜଙ୍କ ଶବକୁ ସେଥିରେ ଶୁଆଇ ଦେଇ କଫିନ ଯିବ ଏଆର୍‌ପୋର୍ଟ୍ । ଶାନ୍ତାକ୍ରୁଜ ବିମାନ ବନ୍ଦରରେ ଜାହାଜ ଭିତରୁ କଫିନ କାଢ଼ି ଖୋଲିଲା ବେଳକୁ ତା' ଭିତରେ ଯିଏ ଶୋଇ ରହିଥିବେ ସିଏ ଏକଦା ଥିଲେ ଫିଲ୍ମ ଇନ୍‌ଷ୍ଟିଚ୍ୟୁଟରୁ ପାସ୍ କରିଥିବା ବିଖ୍ୟାତ ଫିଲ୍ମ ଡାଇରେକ୍ଟର ମିଃ ଭର୍ଗିଜ୍ ।

କେତେ ସମୟ ଧରି ମୁଁ ସେଠି ବସି ରହିଥିଲି ମୁଁ ଜାଣେନା ।

ଗାଁର ଆକାଶରେ ସକାଳର ଆଲୁଅ ସାମାନ୍ୟ ଫିଟି ଫିଟି ଆସୁଥିବା ପରି ଲାଗୁଥାଏ ।

ମୋରି ପରି ସେହି ତମ୍ବୁ ଭିତରେ କ୍ଳାନ୍ତ ଓ ହତବାକ୍ ହେଇ ବସି ରହିଥିଲେ ଫିଲ୍ମ ୟୁନିଟ୍‌ର ଅନେକ ଷ୍ଟାଫ୍ । ମିଃ ପିଣ୍ଟୁ ଅହେତୁକ ଭାବରେ ଗୋଟାକ ପରେ ଗୋଟାଏ ସିଗାରେଟ୍ ଟାଣି ଚାଲିଥିଲେ ।

ଗାଁ ଆଡୁ କିଏ ଜଣେ ଦୁଇଜଣ ଲୋକ ଧୀରେ ଧୀରେ ପାଦଗଣି ଆମ ଆଡ଼କୁ ଆସୁଥିବାର ଦେଖାଗଲା । ସେମାନେ ମଧ୍ୟ ଯଥେଷ୍ଟ ବିମର୍ଷ ଜଣା ଯାଉଥିଲେ । ସେମାନେ ଆସି ଆମର ତମ୍ବୁ ପାଖରେ ଅଧୋମୁଖ ହୋଇ ଠିଆ ହେଲେ । କ'ଣ ଯେପରି କହିବାକୁ ଚାହିଁ ସେମାନେ ଭରସି ପାରୁ ନଥିଲେ । ମୁଁ ପଚାରିଲା ଆଖିରେ ସେମାନଙ୍କ ଆଡ଼କୁ ଚାହିଁଲି କେବଳ । ତାଙ୍କ ମଧ୍ୟରୁ ଜଣେ କହିଲା, ''ଆଜ୍ଞା, ସେ ବୁଢ଼ାଟାର କାନ ଫାନ ଫୁଙ୍କା କରିବାରୁ ବଞ୍ଚିଗଲା ଆଜ୍ଞା, ଅଜ୍ଞାନ ହୋଇ ଟଳି ପଡ଼ିଥିଲା—ସକାଳୁ ମୁହଁରେ ପାଣି ଦବାରୁ ଟେପାଏ ପିଇଲା ଆଜ୍ଞା ।''

ବେଶ ଉତ୍ତେଜିତ ଗଳାରେ କହି ଉଠିଲେ ପିଣ୍ଟୁ, ''ଅଥଚ ଓଇ ବୁଢ଼ୋଟାର ଜନ୍ୟେ ମାରାଗେଲେନ ମିଃ ଭର୍ଗିଜ୍ !''

ମୁଁ ଶାନ୍ତ କଣ୍ଠରେ କହିଲି, ''ଉତ୍ତେଜିତ ହେବେ ନାହିଁ ମିଃ ପିଣ୍ଟୁ, କେହି କାହା ଯୋଗୁଁ ମରେ ନାହିଁ । ଅବଧାରିତ ମୃତ୍ୟୁକୁ ତ୍ୱରାନ୍ୱିତ ବା ବିଳମ୍ବିତ କରି ନିୟନ୍ତ୍ରଣ କରିବାର ଶକ୍ତି କାହାର ନାହିଁ । ଆମ ପୁରାଣରେ ଗୋଟିଏ ଆଖ୍ୟାୟିକା କହୁଛି ଶୁଣ...''

ସମସ୍ତେ ମୋ ମୁହଁକୁ ଚାହିଁ ରହିଲେ ।

ମୁଁ ଆରମ୍ଭ କଲି ।

''ଥରେ କୌଣସି କାରଣରୁ ବିଷ୍ଣୁ ମହାଦେବଙ୍କୁ ଦେଖା କରିବାକୁ ଯାଇଥିଲେ । ତାଙ୍କର ବାହନ ଗରୁଡ଼ ପକ୍ଷୀ ବାହାରେ ଅଳିନ୍ଦରେ ବିଷ୍ଣୁଙ୍କ ଅପେକ୍ଷାରେ ବସି ରହିଥିଲେ । ଠିକ୍ ଏଇ ସମୟରେ ଯମରାଜା ମଧ୍ୟ ମହାଦେବଙ୍କ ନିକଟକୁ ଯିବା ପାଇଁ ଆସି ସେଠାରେ ପହଞ୍ଚିଲେ । ହଠାତ୍ ଯମରାଜା ଭିତରକୁ ଯିବା ପୂର୍ବରୁ ସେହି ଅଳିନ୍ଦର ଏକ କଣରେ ଗୋଟିଏ ଅତି ଛୋଟ ଚଢ଼େଇକୁ କିଚିରି ମିଚିରି ହୋଇ ଏପଟ ସେପଟ ଫୁର୍‌ର୍ ଫୁର୍‌ର୍ ହୋଇ ଉଡ଼ି ବୁଲୁଥିବାର ଦେଖି ବେଶ୍ ବିସ୍ମିତ ହେଲା ପରି ମନେ ହେଲେ ।

ଯମ ଚାଲିଯିବା ପରେ ଗରୁଡ଼ ଛୋଟ ଚଢ଼େଇଟି ଉପରେ ଯମରାଜାଙ୍କ ଦୃଷ୍ଟି ପଡ଼ିଥିବା ଜାଣି ମନେ ମନେ ଆତଙ୍କିତ ହୋଇ ପଡ଼ିଲେ । ଛୋଟ ଚଢ଼େଇଟି ପାଇଁ ତାଙ୍କର ଦୟା ହେଲା । ଚଢ଼େଇଟିକୁ ନିରାପଦ ସ୍ଥାନକୁ ନେଇଯିବା ଉଦ୍ଦେଶ୍ୟରେ ତାକୁ ନିଜ ପିଠିରେ ବସେଇ ଆଖି ପଲକରେ ବହୁ ଯୋଜନ ପଥ ଅତିକ୍ରମ କରି ଚଢ଼େଇଟିକୁ ଗୋଟିଏ ଗଛର କୋରଡ଼ରେ ଛାଡ଼ି ଦେଇ ପୁଣି ତାଙ୍କର ପୂର୍ବ ସ୍ଥାନକୁ ଫେରି ଆସିଲେ ।

ଯମରାଜ ମହାଦେବଙ୍କ ସହ ଦେଖା କରି ସାରି ଫେରିଲା ବେଳେ ପୁଣି ଥରେ ଅଳିନ୍ଦର ସେଇ ଜଣକୁ ଲକ୍ଷ୍ୟ କଲେ । ଗରୁଡ଼ ଯଥାସମ୍ଭବ ନିରପରାଧର ଅଭିନୟ କରି ପଚାରିଲେ, ''ମହାଶୟ, ସେଇ ଛୋଟ ଚଢ଼େଇଟିକୁ ଆପଣ ଗଲାବେଳେ ଲକ୍ଷ୍ୟ କଲେ ଓ ଆସିଲା ବେଳେ ପୁଣି ଖୋଜୁଛନ୍ତି କାହିଁକି ? ମୋର କୌତୂହଳ ଦୂର କରନ୍ତୁ ।'' ଯମରାଜା ସାମାନ୍ୟ ଇତସ୍ତତଃ ହେଇ କହିଲେ, ''ନା, ସେଇ ଚଢ଼େଇଟିର ଆଉ ମାତ୍ର କେଇ ମୁହୂର୍ତ୍ତ ପରେ ବହୁ ଯୋଜନ ଦୂରରେ ଗୋଟିଏ ଗଛ କୋରଡ଼ରେ ସର୍ପାଘାତରେ ମରିବାର ଥିଲା । ଏତେ ଛୋଟ ଚଢ଼େଇ ଏତେ ଅଳ୍ପ ସମୟ ଭିତରେ ଏତେ ଯୋଜନ ପଥ କିପରି ଅତିକ୍ରମ କରିବ ମୁଁ ସେଇ କଥା ଭାବି ଆଶ୍ଚର୍ଯ୍ୟ ହଉଥିଲି । ଭାବୁଥିଲି, କେଉଁଠି କ'ଣ କିଛି ଭୁଲ ହୋଇଗଲା କି ?

ଗରୁଡ଼ ନିଜର ହାତ ମୁଣ୍ଡ ଉପରେ ରଖି ନିଜର ଚଞ୍ଚୁ ଅବନତ କଲେ ।

ସକାଳ ହେଇ ଆସୁଥିଲା ।

ମୋତେ ଘେରି ବସିଥିବା ଶ୍ରୋତୃମଣ୍ଡଳୀ ଗରୁଡ଼ପକ୍ଷୀ ପରି ମୁଣ୍ଡରେ ହାତ ରଖି ଅଧୋମୁଖ ହେଇ ବସିଥିଲେ । ଜୀବଜଗତର ମୃତ୍ୟୁ ନିୟନ୍ତ୍ରଣ କରୁଥିବା ସେହି ଅଦୃଶ୍ୟ ଦେବତାଙ୍କ ଉଦ୍ଦେଶ୍ୟରେ ମୁଁ ସମ୍ମାନ ପ୍ରଣାମ ଜଣାଇଲି ।

*('ସୁଚରିତା' ନବବର୍ଷ ଲେଖକ ବିଶେଷାଙ୍କ ।। ଜାନୁୟାରୀ ୧୯୮୦)*



# ରମାନାଥ, ଦଶପଇସି ଓ ସ୍ୱାଧୀନତା

ଟେବୁଲ ତଳେ ।

ଗୋଟାଏ ହାତ ପତାଯାଇଛି, ''ଦିଅ'' ।

ଆଉ ଗୋଟାଏ ହାତ ତା' ଉପରେ ଗଣୁଛି ଏକ, ଦୁଇ, ତିନି—ତିନିଟା ଟଙ୍କା ଅତି ଆସ୍ତେ ଆସ୍ତେ, ଶବ୍ଦ ହେବ ନାହିଁ । କେହି ଜାଣିବେ ନାହିଁ ।

ତିନିଟା ଟଙ୍କା ଉପରେ ମୁଦି ହୋଇ ଆସିଲା ପ୍ରୌଢ଼ ରମାନାଥଙ୍କର ଗ୍ରନ୍ଥିଳ ହାତଟା ! ଯେମିତି ଖୁବ୍ ଜୋରରେ ସେ ଧରି ରଖିବାକୁ ଚାହାନ୍ତି ସେଇ ତିନିଟା ଟଙ୍କା, ତିନିଶହ ପଇସା । ଆସ୍ତେ ଆସି ପକେଟ୍‌ରେ ପଶିଲା ହାତଟା । ଓଃ ! ଚିତ୍କାର କରି ଉଠିଲେ ଯେମିତି ଟଙ୍କା ତିନିଟା, ତଳେ ଗୋଟାଏ ଦଶ ପଇସି ସାଙ୍ଗରେ ସଂଘର୍ଷରେ ଆସି ।

ଦାତା ଓ ଗ୍ରହୀତା ଦୁହେଁ ପରସ୍ପରକୁ ଚାହିଁଲେ । ଦୁହିଁଙ୍କର ନୀରବ ସମ୍ମତି । ଦାତା ଫେରିଗଲେ ହୃଷ୍ଟ ଚିତ୍ତରେ । ତାଙ୍କର ଫାଇଲ ଆଉ ଚିପି ହୋଇଯିବ ନାହିଁ ଫାଇଲର ପାହାଡ଼ ତଳେ । ସିଧା ଚାଲିଯିବ ହାକିମଙ୍କ ପାଖକୁ ।

ରମାନାଥବାବୁ କାମ କରି ଚାଲିଛନ୍ତି । ଖାଲି ଫାଇଲ ଆଉ ଫାଇଲ, ଖାଲି ନାଲି ଫିତା, ଏଠି ଦେଖ, ସେଠି ଦେଖ, ତାକୁ ଉତାର ତାକୁ ନକଲ କର । ନିଜର କିଛି କରିବାର ନାହିଁ । ସେ କଳପରି ଖାଲି ଉତାରି ଯିବେ, ଆଉ ସେଇଥିପାଇଁ ସେ ନିଜକୁ ଭଡ଼ା ଦେଇଛନ୍ତି । ମସ୍ତିଷରେ ଯେମିତି କଳଙ୍କି ଲାଗିଗଲାଣି କେଉଁ ଦିନରୁ ।

ଘଣ୍ଟାରେ ପାଞ୍ଚ ବାଜିଲା । ଆହୁରି ଗଦା ଗଦା ଫାଇଲ ବାକୀ । ଅସମ୍ଭବ ! ଆଜି ଆଉ କାମ କରିହେବ ନାହିଁ । କାଲି ବରଂ ସକାଳୁ ଅଫିସ ଆସିବେ । ଚପରାଶିଟା ଗୋଟାଏ କାଚ ଗ୍ଲାସରେ ଥୋଇ ଦେଇଗଲା ଗିଲାସେ ନାଲି ଚା' । ସବୁକାମ ଛାଡ଼ିଦେଇ ରମାନାଥ ଆରମ୍ଭ କଲେ ଚା' ଖାଇବାକୁ । ଢକ ଢକ କରି ପିଇଗଲେ ଏକାଥରକେ; ଆଉ ଟିକିଏ ଗରମ ହୋଇଥିଲେ ଭଲ ହୋଇଥାନ୍ତା । କଳାକାଠ ପଡ଼ିଗଲାଣି ମୁହଁଟା ଏକାଥରକେ । ପାଞ୍ଚଦିନର ରାଢୁଆ ରାଢୁଆ ରୁଢ଼ଗୁଡ଼ାକ ଯେମିତି ସିପି ଯାଇଛନ୍ତି ମୁହଁ ସାଙ୍ଗରେ । ଖଣ୍ଡେ ଚାରମିନାର ସିଗାରେଟ୍‌ରେ ନିଆଁ ଧରେଇ ଚପରାଶିକୁ ଚାବି ମୁଠାଟାକୁ ଧରେଇ ଦେଇ ରମାନାଥ ବାହାରି ପଡ଼ିଲେ ଘରକୁ ।

ସେଇ ପୁରୁଣା ରାସ୍ତା ଆଉ ପୁରୁଣା ମୁହଁ ସବୁ । ସରବତ୍ ଦୋକାନ, ପାନ ଦୋକାନ ଆଉ ବହି ଦୋକାନ । ଆରେ ! ନିକୁର ବହି କିଣା ହବାର ଥିଲା ତ ! ଉଠିଲେ ରମାନାଥ ବହି ଦୋକାନକୁ ।

—ସାଧୁବାବୁ ! ଖଣ୍ଡେ ଇତିହାସ ସହଚର ମିଳୁ ।

—ଆରେ ରମାନାଥବାବୁ ଯେ, ଖୁବ୍ ସହଜ ସହଜ ।

(ବହି ଥାକରୁ ଧୂଳି ଝାଡୁ ଝାଡୁ ସାଧୁବାବୁ କହିଲେ)

—ହଁ ଭାଇ, ଘରେ ଟିକିଏ କାମ ଅଛି ।

ବହି ଧରିଲେ ରମାନାଥ । ପକେଟରେ ହାତ ପୂରାଇ ଫେରାଇ ଆଣିଲେ ପୁଣି । ଖାଲି ଗୋଟାଏ ଲଙ୍ଗଳା ଆଠଣି ଆଉ ଗୋଟାଏ ଦଶପଇସି, ବାକିତକ ସବୁ ଚା' ଆଉ ପାନରେ ଗଲାଣି ସରି ।

—କାଲି ଦାମ ଦେଇଦେବି ।

—ଆଗକାର ଷାଠିଏ ପଇସା ଥିଲା ।

—ହଉ, ସବୁ ଏକାଥରକେ ଛିଣ୍ଡେଇ ଦେବି ଯେ, ପାହାଚ ଓହ୍ଲାଇ ଆସି ଚାଲିଛନ୍ତି ରମାନାଥ । ହାତରେ ନିକୁର ସେହି ''ଇତିହାସ ସହଚର'' ଖଣ୍ଡକ । ଦୂରରୁ ଆସୁଛି କାବୁଲିବାଲାଟା ଲମ୍ବ ଲମ୍ବ ପାହୁଣ୍ଡ ପକେଇ । ଆଖି ପିଛୁଳାକେ ପିଠି କରିଦେଲେ ରମାନାଥ, ଏ ବାଟେ ନୁହଁ, ଆରବାଟେ ।

ବୁଲା ବାଟରେ ଘୁରି ଘୁରି ଆସି ଘରେ ପହଞ୍ଚିଲେ ରମାନାଥ । 'ନିକୁ' 'ନିକୁ' ଡାକି ଘରକୁ ପଶିଲେ । ନିକୁ ପାଇଁ ଆଣିଛନ୍ତି ଗୋଟାଏ ବିରାଟ ଉପହାର, ଖଣ୍ଡେ ''ଇତିହାସ ସହଚର'' । ଆଉ ତାକୁ ମାଷ୍ଟ୍ରେ ବେଞ୍ଚ୍ ଉପରେ ଠିଆ କରେଇ ପାରିବେ ନାହିଁ ।

ରେବତୀ ବସି ବସି ସଞ୍ଜ ବଳୁଥିଲେ । ରମାନାଥ ଘରକୁ ପଶୁ ନପଶୁଣୁ ରେବତୀ କହିଲେ ''ଏଇନେ ଥିଲା ନିକୁ । କୋଉଦିନୁ ଲଗେଇଥିଲା—ଆଜି ମୋଠୁଁ ଦଶ ପଇସା ନେଇ ଯାଇଛି ପ୍ରଦର୍ଶନୀ ଦେଖିବାକୁ, କହି ଯାଇଛି ରାତିକି ଫେରିବ ।

ସତେ ତ, ନିକୁକୁ ପ୍ରଦର୍ଶନୀକୁ ନିଆହୋଇ ପାରି ନାହିଁ ଥରେ ହେଲେ ମଧ୍ୟ । କହୁଥିଲା, ତା'ର ସବୁ ସାଙ୍ଗ ପିଲାଏ ଯାଇଁ ଦଶଥର ଚକ୍କର ଦେଇ ଆସିଲେଣି । ରମାନାଥ ଜୋତା ହଳକ ଗୋଡ଼ରେ ଗଳେଇ କହିଲେ ମୁଁ ଯାଏ ଦେଖେ କୁଆଡ଼େ ଗଲା । ଯଦି ହବ ତ ମୁଁ ବି ଟିକେ ମୁହଁ ମାରିଦେଇ ଆସିବି ।

ପିମ୍ପୁଡ଼ି ଧାର ପରି ଲୋକ ଲାଗିଛନ୍ତି ପ୍ରଦର୍ଶନୀକୁ । କାହିଁ ଦିଲ୍ଲୀ କାହିଁ ବମ୍ବେରୁ ସବୁ ଦୋକାନ ଆସିଛି । ଭିତରେ ପଶିବାକୁ ଦଶ ପଇସାର ଟିକଟ, ବହୁ ଦୋ' ଦୋ' ପାଞ୍ଚ ପରେ ଦଶପଇସା ଦେଇ ଭିତରକୁ ପଶିଲେ ରମାନାଥ, ଲୋକସବୁ ଭେଣ୍ଟା ହୋଇ ପ୍ରଦର୍ଶନୀ ଭିତରଯାକ ବୁଲୁଛନ୍ତି । ବଡ଼ଲୋକର ବୋହୂ ଝିଅ ସବୁ ଦଳ ଦଳ ହୋଇ ରଙ୍ଗରଙ୍ଗି ଶାଢ଼ୀ ପିନ୍ଧି ପ୍ରଜାପତି ପରି ଉଡ଼ି ବୁଲୁଛନ୍ତି ଏ ଦୋକାନରୁ ସେ ଦୋକାନ । ଏଠି ସେଠି ଦଳେ ଦଳେ କଲେଜ ଛାତ୍ର ନଳୀ ପ୍ୟାଣ୍ଟ ପିନ୍ଧି ସିଗାରେଟ୍ ଟାଣୁଛନ୍ତି ।

ନିକୁ କାହିଁ ? ନିକୁ କାହିଁ ? ଖୋଜୁଛନ୍ତି ରମାନାଥ, ନଜର ପଡ଼ିଗଲା ନିକୁ ଉପରେ । ଚଙ୍ଗ୍ ଚଙ୍ଗ୍ ହୋଇ ବୁଲୁଛି ଏ ପଟକୁ ସେପଟ ଗହଳି ଭିତରେ । ମନରେ ଦକା ନାହିଁ ଟିକେ ହେଲେ । ଦିହରେ ସେଇ ମଳିଆ ଜଙ୍ଘିଆ ଆଉ କମିଜ ଖଣ୍ଡିକ । ଛନ୍‌ଛନ୍ ହେଇ ପଳାଉଛି ଥରେ ୟାଡ଼କୁ ତ ପୁଣି ସିଆଡ଼କୁ—ମନ ଯେମିତି ଥୟ ଧରୁନାହିଁ ଏଡ଼େ ବିରାଟ ପ୍ରଦର୍ଶନୀ ଭିତରେ ।

'ନିକୁ' 'ନିକୁ' ଡାକିଲେ ରମାନାଥ । ଡାକ ଶୁଣୁ ଶୁଣୁ ଦଉଡ଼ି ଆସିଲା ନିକୁ ବାପା ପାଖକୁ । ଯେମିତି ତାକୁ ଟିକିଏ ହୁବ ମିଳିଗଲା ବାପା ପାଖରେ, ତା ଛଡ଼ା ମନ ଭିତରେ ଗୋଟାଏ ନୀରବ ଆଶା (ବାପାଙ୍କ କହିଲେ କ'ଣ କିଣେଇ ଦେବେ ପରା) ରମାନାଥ ଚାଲିଲେ ଦୋକାନରୁ ଦୋକାନ, ବଡ଼ ନରମ ସେ ଚାଲି, ଯେମିତି ଅତି ଛୋଟ ସିଏ । ତାଙ୍କର ଏ ଉତ୍ସବରେ ଭାଗ ନାହିଁ ଏତେ ଟିକିଏ, କେମିତି ଟିକିଏ ଆଖି ପକେଇ ଦେଇ ବାହାରକୁ ଚାଲିଗଲେ ରକ୍ଷା, ନିକୁ ବି ବାପା ଚାଲି ସଙ୍ଗରେ ତାଳ ପକେଇ ଚାଲୁଛି ଖୁପୁରୁ ଖୁପୁରୁ ଡେଇଁ ଡେଇଁ ।

—ବାପା ବନ୍ଧୁକ କିଣିବି, ହଁ ।

—କାହିଁ, କୋଠି ବିକା ହେଉଛି ?

କଥା ପଦକ ବାହାରୁ ନ ବାହାରୁଣୁ ନିକୁ ରମାନାଥଙ୍କୁ ଟାଣି ଟାଣି ନେଇଗଲା ସେଇ ମନୋହରୀ ଦୋକାନକୁ । ରମାନାଥ ଗୋଟାଏ ଖେଳନା ବନ୍ଧୁକ ଆଣି ପରୀକ୍ଷା କରୁଥିଲେ, ଷ୍ଟେନଲେସ୍ ଷ୍ଟିଲ୍ ଆଉ ଦାମୀ କାଠର, ସେଥିରେ ପୁଣି ମିନାକରା, ରଙ୍ଗ ଛାଡ଼ିବନି । ଦେଖିବାକୁ ଖୁବ୍ ସୁନ୍ଦର ହେଇଛି ରିଭଲଭର ଭଳି । ଟ୍ରିଗର ଟିପିଲେ ରମାନାଥ—ଢୋ...ଢୋ...ଫୁଟି ଉଠିଲା ଏକାଥରକେ...ନିକୁ ମନରେ ଆଶା ଉଙ୍କି ମାରୁଛି—ଏଇ କିଣି ଦେଲେ ବାପା, ନିକୁ ଆଖିରେ ପଶୁ ପକ୍ଷୀର ଦୁନିଆଁ । ପାରା ଉଡ଼ି ଯାଉଛନ୍ତି ପଲକୁ ପଲ । ହଳଦୀ ବସନ୍ତ, ବଣି, କାଉ—ସାହୀର ସେଇ କାଳିଆ ଭୁଷୁଣ୍ଡା କୁକୁର ଦି'ଟା ।

''ଦାମ୍ କେତେ ?'' ରମାନାଥ ପଚାରିଲେ ।

ଦୋକାନୀର ପ୍ରଥମେ ଗୋଟାଏ ମଧୁର ମୁଖବନ୍ଧ, ଭଲ ଷ୍ଟିଲର ଖେଳନା-ବନ୍ଧୁକ ଆଜ୍ଞା, ଫୁଟିଲେ ଭଲ ଶବ୍ଦ ହୁଏ, ପିଲା ଖେଳିବା ପାଇଁ ଭଲ ଖେଳନା, ତା'ପରେ ଅସଲ କଥାଟା ''ଟଙ୍କାଏ ଷାଠିଏ ମୋଟେ'' ରମାନାଥଙ୍କ ହାତରୁ ପ୍ରାୟ ଖସି ପଡ଼ିଲା ସେଇ କୁନି ବନ୍ଧୁକଟା । ଟଙ୍କାଏ ଷାଠିଏ–ଆଉ ଇତିହାସ ସହଚର ମୋଟେ ଅଶୀପଇସା, ଥାଉ ନିକୁ, କାଲି କିଣିବା, ମୋ ପାଖରେ ଅବିକା ପଇସା ନାହିଁ । ତୋ ପାଇଁ ଖଣ୍ଡେ 'ଇତିହାସ ସହଚର' ଆଣିଛି । ଆଜି ଘରକୁ ଗଲେ ଦେଖିବୁ କେମିତି ନୂଆ ବହି ।

ପିଲାଟା ଖେଳନା ପାଇଁ ଅଳି କରୁଛି । ବାପର ଛାତି ପଡଉନି ସଫା ସଫା ମନା କରି ଦବାକୁ । ଏ ସବୁ କ'ଣ ମନା କରିହୁଏ ?

ନିକୁ ବୁଝିଲା 'କାଲି'ର ଅର୍ଥ । ସେ 'କାଲି' ଆଉ ଆସିବ ନାହିଁ କେବେହେଲେ, ଏଗୁଡ଼ା ସବୁ ଠକେଇ । ମନଟା କେମିତି ମରିଗଲା ନିକୁର । ରମାନାଥ ନିକୁକୁ କଣେଇ କଣେଇ ଅନେଇଲେ । ମୁହଁଟି ଶୁଖି ଯାଇଛି ଏକାଥରକେ । ଆରେ ଏ କ'ଣ କରୁଛି ନିକୁ ? ହାତରେ ଦି'ଟା କୁନି ବନ୍ଧୁକ ଧରିଛି । ଖେଳନା ବନ୍ଧୁକ ଦୁଇଟାକୁ ଟ୍ରିଗର ଚିପି ଚିପି କ'ଣ ପରୀକ୍ଷା କରୁଛି । ଏଇ ଆସ୍ତେ ନିକୁ ମୁଠା ଟାଣ କଲା ଗୋଟାଏ କୁନି ବନ୍ଧୁକ ଉପରେ । ତା'ପରେ ପକେଟରେ ପୂରେଇ ଦେଲା ଆଖି ପିଛୁଳାକେ । ନିକୁ ଚୋରୀ କରୁଛି ? ହଁ ଚୋରୀ ନୁହଁ ତ ଆଉ କ'ଣ ? କରୁ !

ବାପ ପାଖରେ ସେଠି ନୀତି ଆଉ ଅନୀତି ବିଚାର କରିବାର ସମୟ ନାହିଁ । ନିଜର ଅଜ୍ଞାତରେ ରମାନାଥଙ୍କର ଆଖି ଉଠିଗଲା ଦୋକାନୀ ଆଖି ଉପରକୁ । ରକ୍ଷା, ଦୋକାନୀ ସେପଟେ କ'ଣ ସଜାଡୁଛି, ଜିନିଷପତ୍ର ଦେଖିବାର ଜୁ' ନାହିଁ ଏତେ ଟିକେ । ନିରୀହ ବାଳକ ପରି ଆର କୁନି ବନ୍ଧୁକଟାକୁ ଫେରାଇଦେଲା ନିକୁ, ଯେମିତି ନବାର ମନ ନାହିଁ ମୋଟେ ।

ଘରକୁ ଫେରୁଛନ୍ତି ଦୁଇଜଣ ଯାକ । ନିକୁ ମନ ଦୁକୁ ଦୁକୁ ହଉଛି । ସେହି ପାଖ ପକେଟ ଉପରେ ଆସି ହାତଟା ପଡ଼ି ଯାଉଛି ବାରମ୍ବାର, ରମାନାଥ ଚାଲିଛନ୍ତି । ସେ ଯେମିତି ଜାଣନ୍ତିନି କିଛି, ନିକୁ କିଛି କରିନାହିଁ । ମନରେ ସେହି ଗୋଟାଏ କଥା ଘୂରେଇ ତୁରେଇ ହଉଛି । ନିକୁ ମୋର ପୁଅ । ଚୋରିକଲା ଖେଳନାଟାଏ, ଟଙ୍କାଏ ଷାଠିଏ ପଇସା । ଆଉ କ'ଣ କରନ୍ତା ? ସେ ତା'ରି ପୁଅ ତ : ତା'ରି ଗୁଣ ! ଲାଞ୍ଚ କ'ଣ ? କାବୁଲିବାଲାକୁ ଦେଖି ପଳେଇବା କ'ଣ ? ଆଉ ଚୋରୀ କ'ଣ ? ଓଃ, ନିକୁ ଚୋରୀ ଆରମ୍ଭ କଲାଣି । ସେ ବାପା ହୋଇ ବାରଣ ତ କରି ପାରିଲା ନାହିଁ । ପ୍ରଶ୍ରୟ

ଦେଲା ବରଂ । ଏଟା ପୁଣି ଅଭ୍ୟାସରେ ପଡ଼ିଗଲେ ବାପା ମା'ଙ୍କର ''ସୁନାମ''ର ଅନ୍ତ ନାହିଁ । କ'ଣ ବା ସେ କରିପାରି ଥାନ୍ତେ । ଦୋକାନୀ ଆଗରେ ତ ପୁଅକୁ ପଦାରେ ପକାଇ ହୁଅନ୍ତା ନାହିଁ । ଘରେ ଯାଇ ଉପଦ୍ଦେଶ ଦେବେ ତାହାହେଲେ । ନା, ଉପଦେଶରେ ଏ ପିଲା ବଦଳିବା କଥା ନୁହଁ, ପିଟିବେ, ଖୁବ୍ ପିଟିବେ । ଲାଭ କ'ଣ ? ଯାହା ହବାର ହେଲାଣି, ତା'ର କୁନି ବନ୍ଧୁକଟାଏ ଦରକାର । ସାଙ୍ଗ ପିଲା ସବୁ ଆଣି ଢୋ ଢା ଫୁଟାଉଛନ୍ତି । ସେ ନ ଫୁଟାଇବ କାହିଁକି ? ପଇସା ନାହିଁ । ଚୋରୀ କରିବଇ କରିବ, ଉପଦେଶ ସବୁ ଫମ୍ପାକଥା । ନିଜର କରିବା–ଅଧିକାର କରିବା–ମନୁଷ୍ୟର ଆଦିମ ଇଚ୍ଛା ଓ ପ୍ରବୃତ୍ତି । ତା' ଆଗରେ ଶସ୍ତା ଉପଦେଶ ଆଉ ପବିତ୍ର ସାଧୁତାର ଆଦର୍ଶ ଖାଲି ପାଣିରେ ଗାର ପକେଇବା କଥା । ବେଗର ଅହିଂସା ଯାହା ଗରିବର ସାଧୁତା ସେଇୟା ।

ଏପଟ ସେପଟ.... ।

ପିତା ଓ ଶାସକ ।

ନିଜେ ବିଚାରକ ପୁଣି ନିଜେ ଆସାମୀ, ନିଜକୁ ନିଜେ ବିଚାର କରୁଛନ୍ତି ସେ । ସେ କାହିଁକି ପ୍ରଶ୍ରୟ ଦେଲେ ? ନିକୁ ବନ୍ଧୁକ ମୂଲ୍ୟ ତ ସେ ଦେଇ ପାରିଥାନ୍ତେ । ସେ କାହିଁକି କୁଣ୍ଠାବୋଧ କଲେ ? ଘରର ଛୋଟ ଅଗଣା ଭିତରେ ବୁଲୁଛନ୍ତି ଏପଟ୍ ସେପଟ୍ କାହିଁ କେତେବେଳୁ । ଭାବିଲେ ରେବତୀକୁ କହିବେ । ମୂଲ୍ୟ ନାହିଁ କିଛି । ସେ ତ କିଛି କରି ପାରିବ ନାହିଁ, ଖାଲି ମନ ଦୁଃଖ କରିବ । ଥାଉ ।

ତା' ଆରଦିନ ସକାଳ ।

ପୁଣି ସେହି ଅଫିସ ଯିବାକୁ ହେବ ।

କାମିଜ୍‌ଟାକୁ ଦିହରେ ଗଳେଇଲେ ରମାନାଥ । ପିନ୍ କଣ୍ଟା ଦେଇ 'ଦୁଃସ୍ଥ' ପଟିଟାକୁ ଖୁବ୍ ଜୋର୍‌ରେ ମାରି ଦେଲେ କାମିଜର ହାତରେ । ଯେମିତି ସେ ତାଙ୍କର ପ୍ରତି ଅଙ୍ଗ ଭଙ୍ଗୀରୁ ପ୍ରକାଶ କରିବାକୁ ଚାହାନ୍ତି, ସେ ଦୁଃସ୍ଥ । ସେ ଦରିଦ୍ର । କାହିଁ, ପନ୍ଦର ଦିନ ହୋଇଗଲା ଅମଲା ସଂଘର ନୀରବ ପ୍ରତିବାଦ । ଲକ୍ଷ କୋଟି ଅମଲାଙ୍କର ଆର୍ତ୍ତଚିତ୍କାର–''ଆମେ ଦୁଃସ୍ଥ । ଆମ ପିଲାପିଚିକାଙ୍କୁ ବଞ୍ଚିବାକୁ ଦିଅ ।'' କାହିଁ ? ଦରମା କମିଶନ ତ ବସିଲା । ଲମ୍ବା ଇସ୍ତାହାର ପ୍ରକାଶ ପାଇଲା । ଅଥଚ କାର୍ଯ୍ୟକାରୀ ହେଲା କାହିଁ ? ଆଗରୁ ଖାଲି ଚିତ୍କାର ଆଉ ଆସ୍ଫାଳନ । ରୁହ–ରୁହ–ଅପେକ୍ଷା କର–ଦରମା କମିଶନ ବସିଛି–ସରକାର ତୁମ କଥା ବୁଝୁଛନ୍ତି । ବିରାଟ ଗିରିରାଜର ଗର୍ଭ ଯନ୍ତ୍ରଣା–ଚିତ୍କାରରେ ଫାଟି ଯାଉଛି ଧରଣୀ–ଅଥଚ ପ୍ରସୂତି ଶଯ୍ୟା–ଧାରରେ ନିରୀହ ମୂକ ମୂଷିକ ଶିଶୁଟିଏ ।

ଇସ୍, କି ଠକେଇ !

ବାହାରେ ସେଇ ପୁରୁଣା ଚଲା ରାସ୍ତାରେ ମୁହଁ ପୋତି ଚାଲିଛନ୍ତି ରମାନାଥ । ହଠାତ୍ ତାଙ୍କର ମନେହେଲା–ଯେପରି ତାଙ୍କର ଚିର ପରିଚିତ ଆବହାଓ୍ୱାରେ କ'ଣ ପରିବର୍ତ୍ତନ ଆସିଛି । ଘର ସଜ୍ଜା ଚାଲିଛି ଦେବଦାରୁ ପତ୍ରରେ, ରାସ୍ତାରେ କରେ କରେ କନା ପତାକା ବନ୍ଧାଯାଇଛି, କାହିଁକି ? ଟିକିଏ ବୁଝିନେଇ ଚମକି ପଡ଼ିଲେ ରମାନାଥ । ସତରେ ଆଜି ଅଗଷ୍ଟ ଚଉଦ । କାଲି ଭାରତର ସେହି ଐତିହାସିକ ଦିବସ–ଅଗଷ୍ଟ ପନ୍ଦର । ପଚିଶ ବର୍ଷର ସ୍ୱାଧୀନ ଭାରତବର୍ଷ । ତାଙ୍କର ଅଲକ୍ଷ୍ୟରେ ସେହି ପୁରାତନ ପୃଥିବୀ ତା'ର କକ୍ଷରେ ବୁଲି ଆସିଲାଣି ବର୍ଷକୁ ତିନିଶହ ପଁଷଠି ଥରରେ ନ'ହଜାର ଏକଶପଞ୍ଚାଅଶି ଥର । ଆଉ ସେ ମଧ୍ୟ ତାଙ୍କର ସେହି ଚଲାବାଟରେ ଅଫିସକୁ ଗଲେଣି ଓ ଫେରିଲେଣି ନ ହଜାର ଏକଶହ ପଞ୍ଚାଅଶି ଥର ।

ଲକ୍ଷ୍ୟ କରି ପାରିନାହାନ୍ତି ମୋଟେ ।

କାଲି ଅଗଷ୍ଟ ପନ୍ଦର ।

ସେ ସେହି ମାଛିମରା ଭୋକିଲା କିରାନୀ ।

ତାଙ୍କର ମାନ ନାହିଁ, ସମ୍ମାନ ନାହିଁ । ତାଙ୍କ ପୁଅର ଶିକ୍ଷା ଦୀକ୍ଷା ସମ୍ଭବ ନୁହଁ । ଆଉ ସେ କାବୁଲିବାଲା ତାଙ୍କର ପିଛା ଛାଡ଼ି ନାହିଁ ।

ସ୍ୱାଧୀନ ଭାରତ କାହିଁ ?

ଅଛି କେବଳ କୁତ୍ସିତ ପୁଞ୍ଜିବାଦୀ ଅର୍ଥନୀତିର ଅଇଁଠା ଭାରତ ।

ଅଜାଣତରେ ସେ ଗୁମୁରି ଉଠିଲେ, ''ଜୟ ସ୍ୱାଧୀନ ଭାରତ !''

କାହିଁ ଛାତି ଫଟେଇ କଥାଟା କହି ହେଉନାହିଁ । କିଏ ଯେମିତି ଗଳା ଚିପି ଧରିଛି । ମନଟା ବିଷେଇ ଗଲା କେମିତି ।

ଆଗରେ ଗୋଟିଏ ଶୋଭାଯାତ୍ରା ଯାଉଛି । ମାହାରୀମାନଙ୍କର । ଦେଉଳରେ ପଶି ଠାକୁରେ କିଛି ଦେଇ ନାହାନ୍ତି । ଅଲଣା ଆଶୀର୍ବାଦ ମଧ୍ୟ ନୁହଁ । ପୁଣି ସେହି ଚାଉଳ ପାଇଁ ଚିତ୍କାର ।

''ଆମକୁ ଖାଇବାକୁ ଦିଅ... ।''

ଦଳେ କହୁଛନ୍ତି– ''ଚାଉଳ ଦର ।''

ଆଉ ଦଳେ କହୁଛନ୍ତି– ''... କମାଇ ଦିଅ ।''

ଏମାନେ କ'ଣ ମଣିଷ ଚିତ୍କାର କରୁଛନ୍ତି ?

ଏମାନେ ସବୁ ମ୍ୟୁନିସପାଲିଟି ଗାଡ଼ିଖାନାର ବେସରକାରୀ କୁତ୍ସିତ ଆବର୍ଜନା । କରନ୍ତୁ—ଚିତ୍କାର କରନ୍ତୁ ।

ଜୟ, ସ୍ୱାଧୀନ ଭାରତ ।

ସେ' କରନ୍ତୁ । ଦୋକାନରେ ବସିଛି ସେଇ ପେଟା ମାରଓ୍ୱାଡ଼ିଟା, ମୁହଁରେ ହୁକା ଗୁଞ୍ଜିଦେଇ କଣେଇ କଣେଇ ଅନେଇ ହସୁଛି । ନୂଆ ଲୁଗାରେ ଦୋକାନଟି ପୁରି ଉଠିଛି । ଲୁଗା କଣ୍ଟ୍ରୋଲ ଜାରୀ କରିବାକୁ ସରକାର ଏପର୍ଯ୍ୟନ୍ତ ଭାବି ସ୍ଥିର କରିପାରି ନାହାନ୍ତି । ଅତି ଜଟିଳ ସେ ସମସ୍ୟା ।

ଜୟ, ସ୍ୱାଧୀନ ଭାରତ ।

ଅଫିସ ହୋଇଗଲା । ତାଙ୍କର ସାଙ୍ଗ ଦୁଇଜଣ 'ଦୁଃସ୍ଥ' ପଟିବାନ୍ଧି ଠିଆ ହୋଇଛନ୍ତି ସେଠି । କିଏ ଗୋଟିଏ ଲୋକ ବୁଝାଉଛି ସେମାନଙ୍କୁ । ରମାନାଥବାବୁ କାନ ଡେରିଲେ :

'ଆପଣମାନେ ସବୁ ଅବୁଝା ହେଲେ ହେବ ? ସରକାରଙ୍କୁ ପ୍ରଥମେ ବଞ୍ଚାଇବାର ଚେଷ୍ଟା କରନ୍ତୁ । ଏ ପଟରେ ବିଶାଳ ତେଲେଙ୍ଗାନା ଅନାଇଛି । ସେ ପଟେ ମୁଲକି— ପାଖକୁ ଲାଗି ପାକିସ୍ଥାନ ପରି ବିରୋଧୀ ଅନେକ ଶକ୍ତ ପଡ଼ୋଶୀ—ତିନି ତିନିଟା ସମସ୍ୟା ଏକାଥରକେ, କ'ଣ କରାଯିବ କୁହନ୍ତୁ ?'

ଇସ୍, ପୁଣି ସେଇ ଠକେଇ କଥା । ପାଣିରେ ସର ପକେଇଦେବେ ଏମାନେ । ଏକା ଦିନକେ ଖବରକାଗଜ ଉପରେ ମୁହଁ ବନ୍ଦ ଆଦେଶ । ଏକା ଦିନକେ ଶହେ ଚଉରାଳିଶ—ଏକା ଦିନକେ ମନ୍ତ୍ରୀଙ୍କର ଦରମା ଦୁଇଗୁଣ । ଏକାଦିନକେ ସାଧାରଣ ନିରାପତ୍ତା ଆଇନ ।

ଅଥଚ ଭୂସଂସ୍କାର ବିଲ୍ ବିଚାର ହେଉଛି—ଦରମା କମିଶନ ବସୁଛି—ବିଚାର କରାଯାଉଛି—ରହ—ଥୟଧର ।

ଜୟ, ସ୍ୱାଧୀନ ଭାରତ ।

ଏଇ ଖବରକାଗଜ ଆସିଗଲା ।

ଅମଲା ସଂଘର ଦାବୀ ଉପରେ ପ୍ରେସ୍‌ନୋଟ୍ ।

''ଦେଶର ଏପରି ଜଟିଳ ପରିସ୍ଥିତିରେ ଅମଲା ସଂଘର ଏପରି କାର୍ଯ୍ୟକଳାପ ସରକାର ପସନ୍ଦ କରିପାରୁ ନାହାନ୍ତି । ଅମଲା ସଂଘ ତାଙ୍କର ଆତ୍ମଘାତୀ ନୀତି ପ୍ରତ୍ୟାଖ୍ୟାନ ନ କଲେ ବିପଦ ଅଛି । ଏ ଅବସ୍ଥାରେ ସରକାର ଆନ୍ତରୀଣ ଗୋଳମାଳ ପାଇଁ କଠୋର ଶାସନ ଚାଲୁ ରଖିବାକୁ ପଛାଇବେ ନାହିଁ ।

ଜୟ, ସ୍ୱାଧୀନ ଭାରତ ।

ସାଙ୍ଗେ ସାଙ୍ଗେ ଅଫିସ୍ ଭିତରେ ଗୋଟାଏ ଚାପା ସ୍ୱର ଖେଳିଗଲା ଏ ମୁଣ୍ଡୁ ସେମୁଣ୍ଡ ଯାଏ । ସମସ୍ତେ ପ୍ରସ୍ତୁତ ।

କିଏ ଜଣେ ଆସ୍ତେ କହିଲେ 'କଲମ ଛାଡ଼, କଲମ ଛାଡ଼ । ଏହା ଛଡ଼ା ଆଉ ଅନ୍ୟ ଉପାୟ କିଛି ନାହିଁ ।'

ରମାନାଥ ସ୍ଥାଣୁପରି ବସି ରହିଛନ୍ତି ।

ତାହାହେଲେ ଅମଲା ସଂଘର ଏ ଦାବୀ ଭୁଲ ? ସେମାନେ ଦୁଃସ୍ଥ ନୁହନ୍ତି ? ଏଇଟା ତାହାହେଲେ ଆନ୍ତରୀଣ ଗୋଳମାଳ ? ଜନମତ କ'ଣ ସରକାର ମତ ନୁହଁ ?

ଭାବୁଥିଲେ ରମାନାଥ ।

ଏଇ ଜନତା, ଅମଳା, ଆଉ ମୂଲିଆର ଭିତରୁ, ଆବର୍ଜନା ଭିତରୁ ତାଙ୍କ ସରକାରର ଜନ୍ମ । ଅଥଚ ସେମାନେ ମଇଳା, କୁତ୍ସିତ, ଅଦରକାରୀ, ଆଉ ଆଜି ଯେଉଁମାନେ ସରକାରରେ ରହି ମନମୁଖୀ ଶାସନ କରୁଛନ୍ତି ସେମାନେ ସବୁ ଶୁଭ୍ରପୂତ ପଦ୍ମଫୁଲ !

ରମାନାଥ ଗ୍ରନ୍ଥିଳ ହାତ ଦୁଇଟାକୁ ଜଣା ପକେଟ ଭିତରେ ପୂରାଇ ଖୋଜୁଥିଲେ ସ୍ୱାଧୀନତା ଆଉ ହଜି ଯାଇଥିବା ଦଶପଇସି ।



# ଗୋଟିଏ କବିତାର ମୃତ୍ୟୁ

ଟ୍ରେନ୍‌ରେ ଶୋଇ ରହି ଆଖିକୁ ନିଦ ଆସୁ ନଥିଲା ।

ପଦ୍ମଲାଭପୁର ପଲ୍ଲୀ ଗାଁ ସମ୍ପର୍କରେ ବହୁ ସ୍ମୃତି ମୋ' ମନ ଭିତରେ ଭିଡ଼ ବାନ୍ଧିବାକୁ ଆରମ୍ଭ କରିଥିଲେ ।

ପଦ୍ମଲାଭପୁର ଥିଲା ଆମର ସାତ ପୁରୁଷର ଚାଷ ଗାଁ' । ବକଟେ ବୋଲି ଗାଁ । ସର୍ବମୋଟ ଷାଠିଏ କି ସତୁରୀ ଘର । ସେଥିରୁ ଅଧିକାଂଶ ଘର ହେଲେ ପ୍ରଧାନ, କିଛି ଘର ସାହୁ, ଗୋଟାଏ ଦି'ଟା ଘର କେଉଟ । ବାକି ଅଛି ଶଅର, ଗାଁ' ମୁଣ୍ଡରେ ଟିକିଏ ଅଲଗା ହେଇ ରହିଛନ୍ତି ଟଇଲା ଦାଡ଼ରେ । ସେଥିପାଇଁ ପ୍ରଧାନ ରାସ୍ତାରୁ ବଙ୍କା କଷିଗଛ ପାଖରେ ଗାଁ' ରାସ୍ତାକୁ ମୁହାଁଇଲାବେଳେ କାହା କାହା ପିଣ୍ଡାରେ ଛେଳି ଗୋଟାଏ ଦି'ଟା ବନ୍ଧା ହେଇଥାଆନ୍ତି, ନ ହେଲେ କାହା ବାରିରେ ଛୁଆ ଲଗା କୁକୁଡ଼ାଟାଏ ଏଇଟା ସେଇଟା ଠୁକୁଥାଏ ଆଉ କ୍ କ୍ କ୍ ହେଇ ଛୁଆମାନଙ୍କୁ ପାଖକୁ ଆସିବାକୁ ଡାକୁଥାଏ ।

ମତେ ଦଶ ବାର ବର୍ଷ ବୟସ ହବା ଦିନଠାରୁ ମୁଁ ବାପାଙ୍କ ସାଙ୍ଗରେ ମଝିରେ ମଝିରେ ଅନେକ ଥର ଯାଇଛି ସେ ଗା'କୁ । ଆମର ସେଠି ଚାଳିଶି ପଚାଶ ମାଣ ଅଉଲ ନମ୍ବର ଜମି, ଲକ୍ଷ୍ମୀପ୍ରସାଦ ବିଶରେ । ସେ ଖଣ୍ଡମଣ୍ଡଳରେ ଲକ୍ଷ୍ମୀପ୍ରସାଦ ବିଶ ଜମିର ନାଁ ଡାକ ଖୁବ୍, କାରଣ ସେ ଜମିରେ ନା ଅଛି ଧୋଇ ନା ଅଛି ମରୁଡ଼ି । ଯଦି କୋଉସାଲ ଇନ୍ଦ୍ର ପାଚିଲା ନାହିଁ, ତାହାହେଲେ ସେ ଜମି ପାଣି ପାଏ ବିଲ ପାଖଦେଇ ବହିଯାଇଥିବା ଚିରସ୍ରୋତା ଝରଣାରୁ, ଯାହା ସପ୍ତଶଯ୍ୟା ପାହାଡ଼ରୁ ବାହାରି ଯାଇ ପଡ଼ିଛି ହାତୀଖିଆ ଯୋରରେ ।

ବାପା ସିନା ହାତଚାଷ ଛାଡ଼ିଦେଲେ, ନହେଲେ ଆମ ଜେଜେବାପାଙ୍କର ଥିଲା ହାତଚାଷ ଓ ସେଥିପାଇଁ ସେଠି ମଧ୍ୟ ଥିଲା ଚାଷଘର ଆଉ କୋଠିଘର ଓ ଗୋଟାଏ ବିସ୍ତୀର୍ଣ୍ଣ ଖଳାବାରି । ପୁଣି ଜେଜେବାପା ଥିଲେ ସହଜେ ବଡ଼ଚାଷୀ ଓ ତା' ଉପରେ ସରବରାକାର । ସେଥିପାଇଁ ମୋର ପିଲାବେଳେ, ଜେଜେବାପାଙ୍କର ପୌତ୍ର ଭାବରେ ମୋର ସେ ଗାଁରେ ଥିଲା ପ୍ରଚୁର ସ୍ୱାଧୀନତା, ଏପରିକି ତିନିଖୁଣ ମାଫ୍ ।

ଆଃ ! ସହରରୁ ଯାଇ ଚମତ୍କାର ଲାଗୁଥିଲା ସେଇ ପଲ୍ଲୀ ଗାଁ'ର ପରିବେଶରେ କିଛି ଦିନ କଟେଇ ଆସିବା ପାଇଁ । ଯେପରି ମନେ ହଉଥିଲା, ମୋର ଫୁସଫୁସରେ ମୁଁ କିଛି ତାଜା ପବନ ସଂଗ୍ରହ କରି ନେଇଛି ।

ମିଛର ତାଳରେ ଟ୍ରେନର ବର୍ଥ ଉପରେ ମୋର ଅର୍ଦ୍ଧନିମୀଳିତ ଆଖିରେ ସାମାନ୍ୟ ସ୍ୱପ୍ନର ସ୍ପର୍ଶ ଲାଗି ଆସିଥିଲା ବୋଧହୁଏ । ତା' ନହେଲେ ମତେ ସେଇ ପଲ୍ଲୀ ଗାଁ ଏତେ ସୁନ୍ଦର ଲାଗିଥାଆନ୍ତା କାହିଁକି ?

ଦିଗନ୍ତ ବ୍ୟାପି ଧାନର ଓଜନରେ ଶୋଇ ଯାଇଥିବା ହଳଦିଆ ହଳଦିଆ ପାଚିଲା ଧାନର କ୍ଷେତ । ଗାଁ ଲୋକଙ୍କର ଅସମ୍ଭବ ତତ୍ପରତା, ରାତି ନ ପାହୁଣୁ ସେମାନେ ଯାଇ ହାଜର ବିଲରେ । ପବନରେ ପାଚିଲା ଧାନର ବାସ୍ନା, ଖଳା ବାରିରେ ହାତୀପରି ଠାଆକୁ ଠାଆ କଳେଇ ଗଦା । ଅଦୂର ଦିଗନ୍ତରେ ଧ୍ୟାନଗମ୍ଭୀର ମୁଦ୍ରାରେ ସପ୍ତଶଯ୍ୟା ପାହାଡ଼; ଆଉ ସନ୍ଧ୍ୟା ହେଇ ଆସିଲେ ଶୁଣିହବ କୁଳୁକୁଳୁ ଶବ୍ଦ କରି ବହି ଯାଉଥିବା ସେଇ ଚିରସ୍ରୋତା ଝରଣାର ଗୀତ ।

ସନ୍ଧ୍ୟା ଗାଁ'ଟାକୁ ଏକାଥରକେ ଚୁପ୍‌ଚାପ୍ କରିଦିଏ । କଳେଇ ଗଦା ମାରିସାରି ଆମ ଘର ସାମ୍‌ନାରେ ଚିକ୍‌କଣ ହେଇ ଲିପାପୋଛା ହୋଇଥିବା ଖଳାବାରିରେ ବସିପଡ଼ନ୍ତି ଦାମ, ବୀର, ଈଶ୍ୱରା, ଆଉ କେତେ କିଏ । ସେମାନେ ଜଣ ଜଣ କରି ତାଙ୍କ ବିଲର କଳେଇ ହିସାବ ଦିଅନ୍ତି, ଆଉ ନିଜ ନିଜ ଭିତରେ ଗପ କରିବାକୁ ଆରମ୍ଭ କରିଦିଅନ୍ତି । ମୋ' ପାଇଁ ସେ ଗପ-ସପର ଅବଶ୍ୟ କୌଣସି ତାତ୍ପର୍ଯ୍ୟ ନଥାଏ, କାରଣ ସେସବୁ ଗପ ହେଇ ଉଠେ ଖୁବ୍ ତାତ୍ତ୍ୱିକ । ଏ ସାଲ ମାଟି କେମିତି ପାଗିଥିଲା, ଧାନ ଫୁଲ ଉଡ଼େଇବାର ସମୟ କାହିଁକି ଗଡ଼ିଗଲା, ଗର୍ଭଣା ସଂକ୍ରାନ୍ତିକୁ ଧାନରେ ପର୍ଯ୍ୟାପ୍ତ କ୍ଷୀର ହେଇଥିଲା କି ନାହିଁ, କାର୍ତ୍ତିକ ଝଡ଼ିରେ କେତେ ଧାନ ଝଡ଼ି ପଡ଼ିଲା, କୋଉ ବିଲର ମାଟିର ବନ୍ଧ ଭାଙ୍ଗିଗଲାଣି ଇତ୍ୟାଦି ଇତ୍ୟାଦି । ମୁଁ ଖଣ୍ଡେ ଆଲୁଆନ ଘୋଡ଼ିହୋଇ ଚୁପ୍‌ଚାପ ବସି ରହିଥାଏ ଓ ମଳିନ ଲଣ୍ଠନ ଆଲୁଅରେ ସେମାନଙ୍କର ନିରୀହ, ସରଳ ମୁହଁଗୁଡ଼ିକର କଥା କହିବାର ଭଙ୍ଗୀ ଓ ତାହା ସହିତ ଛନ୍ଦ ରଖି ମାଂସପେଶୀର ବିଭିନ୍ନ ପରିବର୍ତ୍ତନକୁ ଲକ୍ଷ୍ୟ କରୁଥାଏ କେବଳ । ସେମାନେ ଅନେକ ସମୟ ପର୍ଯ୍ୟନ୍ତ ଗପ କରୁଥା'ନ୍ତି । ଅତୀତ ସାଲମାନଙ୍କର ଫସଲ କଥା ରୋମନ୍ଥନ କରୁଥାଆନ୍ତି ଓ ବେଳେ ବେଳେ ନିଜ ନିଜ ଭିତରେ ପରସ୍ପରର ସ୍ମୃତିଶକ୍ତିକୁ ଆକ୍ଷେପ କରି ତର୍କ କରି ଉଠନ୍ତି । ସେତେବେଳକୁ ମୁଁ ଶୋଇ ପଡ଼ି ସାରିଥାଏ ।

ଅନ୍ଧାର ଥାଉ ଥାଉ ନିଦ ଭାଙ୍ଗିଯାଏ । ଏକାଥରକେ ତିନି ତିନିଟା ବେଙ୍ଗଳା ପକେଇବା ଆରମ୍ଭ କରି ଦେଇଥାନ୍ତି । ପ୍ରଚଣ୍ଡ ଶୀତ, ବାହାରେ ବଳଦମାନଙ୍କର ଧାନ

ଉପରେ ବୁଲିବାର ଖସ୍ ଖସ୍ ଶବ୍ଦ ଓ ସେମାନଙ୍କ ଚାଳକମାନଙ୍କର ସେମାନଙ୍କ ପ୍ରତି ଉଦ୍ଦିଷ୍ଟ ଶ୍ଳୀଳ ଅଶ୍ଳୀଳ ସମ୍ବୋଧନର ପ୍ରଚୁର ଆକର୍ଷଣ ସତ୍ତ୍ୱେ, ମତେ ତଥାପି ପାଳ ବିଛଣାରେ ଗାଳେଇ କରି ଶୋଇ ରହିବାକୁ ପଡ଼େ ଅନେକ ସମୟ । ଶୀତରେ ତଥାପି ମଜା ଥରି ଉଠୁଛି । କିନ୍ତୁ ଅଳ୍ପ ସମୟ, ଅଳ୍ପ ସମୟ ପରେ ପଦ୍‌ଲା'ପୁର ଗାଆଁର ଅଳସ ମଛର ଜୀବନ ଯାତ୍ରା ସହିତ ଛନ୍ଦ ରଖି ପୂର୍ବ ଆକାଶରେ ଟହ ଟହ ହସି ଉପରକୁ ଉଠେ ସୂର୍ଯ୍ୟ, ଆସ୍ତେ ଆସ୍ତେ ।

ସକାଳର କଅଁଳ ଖରାରେ ଘୋଡ଼ିଘାଡ଼ି ହେଇ ପିଣ୍ଡା ଉପରେ ବସି ଭାରି ଭଲ ଲାଗେ ଏଇ ବଳଦମାନଙ୍କର ବୃତ୍ତାକୃତି ଶୋଭାଯାତ୍ରା ଦେଖିବାକୁ । ଲମ୍ବା ଲମ୍ବା ହେଇ ଛାଇ ଲମ୍ବି ଯାଇଥାଏ ଦାମର, ଈଶ୍ୱରାର, ଆଉ ଆମମାନଙ୍କର, ବଳଦମାନଙ୍କର ଲମ୍ବା ଲମ୍ବା ଗୋଡ଼ର ଓ ମୋର ସବୁଠାରୁ ପ୍ରିୟ ମେରୀ ଖୁଣ୍ଟର । କଳେଇ ଗଦା ଗତ ରାତିର ଶିଶିର ବିନ୍ଦୁ ଉପରେ ସୂର୍ଯ୍ୟକିରଣ ପଡ଼ି ହୀରା ପରି ଚକ୍ ଚକ୍ କରୁଥାଏ । ମୁଁ କହେ, ''ଈଶ୍ୱର, ଏଇ ମେରୀ ଖୁଣ୍ଟ ପାଖରେ ବନ୍ଧା ହେଇଥିବା ବଳଦଟାକୁ ବଦଳ କରିଦିଅ, ତାକୁ ବହୁତ କମ୍ ବୁଲିବାକୁ ପଡୁଚି ହଉ ସବାଶେଷ ବଳଦଟା ବୁଲୁଚି ଅନେକ ବେଶି ।'' ଈଶ୍ୱର ବଳଦ ପଛରେ ହାତ ଦେଖେଇ ଦିଏ ଗୋବର ଧରିବା ପାଇଁ ଆଉ ଗୋବର ଲେଣ୍ଡାକୁ ଧାନ ଅରା ବାହାରକୁ ଛାଡ଼ିଦେଇ କୁହେ, ''ବାବୁ, ମେରିଆ ବଳଦକୁ ସବୁଠୁ ବେଶି କଷ୍ଟ, ସବୁ ବଳଦ ମେରୀ ଖୁଣ୍ଟ ପାଖରେ ଲାଗି ପାରିବେ ନାହିଁ; ବୁଢ଼ା ବଳଦ ହେଲେ ପାରିବ ଯାଇଁ ।'' ସେ ତଥ୍ୟ ମୁଁ ବୁଝେ ନାହିଁ । କିନ୍ତୁ ବିଶ୍ୱାସ କରିବାକୁ ପଡ଼େ । ମୁଁ ସେମିତି ପିଣ୍ଡାରେ ବସି ରହି ଏକାଗ୍ର ଚିତ୍ତରେ ଚାହିଁ ରହିଥାଏ ଆବର୍ତ୍ତିତ ବଳଦମାନଙ୍କୁ ଓ ସେମାନଙ୍କ ମୁହଁ ପୂରେଇ ମେଞ୍ଚାଏ କଳେଇ ମୁହଁରେ ନେଇ ପାକୁଳି କରିବାର ବିଡ଼ମ୍ବିତ ଚେଷ୍ଟାକୁ, ଯେ ପର୍ଯ୍ୟନ୍ତ କହ୍ନେଇ ଆସିନାହିଁ । କହ୍ନେଇ ଆମ ଭାଗଚାଷୀ ଦାମର ପୁଅ, ମୋ' ଠାରୁ ବର୍ଷେ ଦୁଇବର୍ଷ ବଡ଼ ହବ ପରା !

ଟ୍ରେନଟା ହଠାତ୍ କେଁ କେଁ ହେଇ ଆର୍ତ୍ତନାଦ କରି, ଗୋଟାଏ ଝାଙ୍କ ଦେଇ ନିଶ୍ଚଳ ହେଇଗଲା । ଓଃ ! ଏଇ ତାଳଚେର ଟ୍ରେନଟାର ଲଲାଟରେ ସବୁଦିନ ଅନିବାର୍ଯ୍ୟ ବିଳମ୍ବ ବୋଧହୁଏ ଲେଖା ଅଛି । ମୋର ଅର୍ଦ୍ଧ ଜାଗରଣ ଓ ଅର୍ଦ୍ଧ ସୁଷୁପ୍ତିର ମଧୁର ସ୍ୱପ୍ନ ବାଧାପ୍ରାପ୍ତ ହେଲା । ମୁଁ ଉଠି ବସି ବିରକ୍ତିରୁ ନିଜକୁ ରକ୍ଷା କରିବା ପାଇଁ ଗୋଟାଏ ସିଗାରେଟରେ ନିଆଁ ଧରେଇଲି ଓ ପୋଡ଼ା ଦିଆସିଲି କାଠିଟାକୁ ଝରକା ବାଟେ ଫିଙ୍ଗିଦେଲି ବାହାରକୁ—ମାନସିକ ବିରକ୍ତିବୋଧର ଆଂଶିକ ଅଭିବ୍ୟକ୍ତି । ମୁଁ ଏଇ ଲକ୍ଷ୍ମୀଛଡ଼ା ତାଳଚେର ଟ୍ରେନ୍‌ର ଗୋଟାଏ ଫାଷ୍ଟକ୍ଲାସ୍ ପ୍ରକୋଷ୍ଠର ଏକକ ଯାତ୍ରୀ, ନହେଲେ ଟ୍ରେନ୍ ଏମିତି ରହିଯିବା ପରେ ଯାତ୍ରୀମାନଙ୍କର ଯେଉଁ ଟିପ୍‌ପଣୀ ହୁଏ, ତାହା

ହୁଏତ ମତେ ଅନ୍ୟମନସ୍କ କରି ପାରି ଥାଆନ୍ତା । ସିଗାରେଟ୍‌ର ଧୂଆଁ ଊର୍ଦ୍ଧ୍ୱମୁଖୀ ହେଇ ପୁଣି ଥରେ ପଙ୍ଖାର ପବନ ପ୍ରତିହତ ହେଇ ମିଳେଇ ଯାଉଚି କୁଆଡ଼େ ।

ହଁ, କହ୍ନେଇ ! କହ୍ନେଇ ଆସିଲେ ମୁଁ ଟାଣିଲି ତାକୁ ଧରି ବନସୀ ଖଡ଼ାରେ ମାଛ ଧରିବାକୁ ସୁଲେଇ ନାନୀ ପୋଖରୀକୁ । ପରେ ମୋର କୌତୂହଳ ସମାହିତ ହୋଇଥିଲା, ଯେତେବେଳେ ମୁଁ ଶୁଣିଥିଲି, କୋଉ ସୁଲେଇ ନାନୀ ଭୂଆଷୁଣୀ, ଶାଶୁର ଅତ୍ୟାଚାରରେ ଏଇ ପୋଖରୀରେ ବୁଡ଼ି ଆତ୍ମହତ୍ୟା କରିଥିଲା କେବେ କେତେ ବର୍ଷ ତଳେ । ଆଉ ସେଇ ଦିନଠୁ ଏ ପୋଖରୀର ନାଆଁ ନାନୀ ପୋଖରୀ ହୋଇଗଲା । ଦିନସାରା ଯେତେ ମାଛ ମାରିବ ମାର—ମାଛ ବୋଇଲେ କ'ଣ—କେରାଣ୍ଡି, ଚେଙ୍ଗ, ଗଡ଼ିଶା, ନହେଲେ କେତେବେଳେ କେମିତି ଫଳି ନ ହେଲେ ଶେଉଳ । ରାତି ହେଲେ ପୋଖରୀ କୂଳକୁ ଯିବା ମନା । କହ୍ନେଇ କୁହେ, ରାତି ହେଲେ ସୁଲେଇ ନାନୀ ବାହାରେ । ତା'ର ହାତର ଗହଣା ଚକ୍ ଚକ୍ କରୁଥାଏ, ଆଉ ତା'ର ସିନ୍ଥିରେ ସିନ୍ଦୂର । ପୋଖରୀ କୂଳରେ ଗୋଡ଼ ଲମ୍ବେଇ ବସି ଘଷିମାଜି ହେଇ ବହେ ବେଳଯାଏ ଗାଧାଏ । ସେତେବେଳେ ପୋଖରୀ କୂଳକୁ ଚାଲିଯାଇ ଅନେକ ଲୋକ ଭେଟଣା ହେଇଯାଇ ଝାଡ଼ା ବାନ୍ତିରେ ମରିଛନ୍ତି ।

କିନ୍ତୁ କହ୍ନେଇ ସବୁ ଠିକ୍ କରି ଦେଇ ଆସେ—ବନସୀ ଖଡ଼ା, ତେରଣ୍ଡା, ଆଉ ଜିଆ, କିନ୍ତୁ ମାଛ ମାରିବା ପାଇଁ ବେଶି ସମୟ ମୋ' ସହିତ ରହିପାରେ ନାହିଁ । ଦାମ ପ୍ରଧାନର ବଡ଼ ପୁଅ କହ୍ନେଇ ପ୍ରଧାନ । ଧାନ ଅମଳ ବେଳେ ସେ ତା'ର ବାପାକୁ ସାହାଯ୍ୟ ନ କରି କେମିତି ପୋଖରୀ କୂଳରେ ମାଛ ଧରିବାର ବିଳାସରେ ସମୟ କାଟି ପାରିବ ?

କହ୍ନେଇ କହେ, ''ବାବୁ, ମୁଁ ଆସୁଚି, ବାଆ ଯିବ ପଖାଳ ଖାଇବାକୁ । ବାଆ ଆସିଲେ ମୁଁ ଫେର ଆସିଯିବି ଯେ !'' କହ୍ନେଇର ବାଆ ପଖାଳ ଖାଇ ଫେରି ଆସିବା ପର୍ଯ୍ୟନ୍ତ ମୋର ଧୈର୍ଯ୍ୟ ନଥାଏ । ଯେତିକି ମାଛ ମରାହେଲା, ସେତିକି ନେଇ ମୁଁ ଫେରିଆସେ, ଆମର ଚାଷ ଘରକୁ । ସେତେବେଳେ କହ୍ନେଇର ବୋଉ ଦହି, ଘରମରା ଘିଅ ଧରି ପହଞ୍ଚି ଯାଇଥାଏ ଆମ ଚାଷଘରେ ଆମର ମଧ୍ୟାହ୍ନ ଭୋଜନକୁ ଅଧିକ ରୁଚିପୂର୍ଣ୍ଣ କରିବାକୁ । ମୋର ଖାଳେଇରେ ହାସ୍ୟକର ପରିମାଣର ମାଛ ଦେଖି ତା'ର ପାନଖିଆ ନାଲି ନାଲି ଦାନ୍ତ ଦେଖେଇ ହସିଦିଏ ଗୋଟାଏ ପ୍ରାଣଖୋଲା ହସ, ଆଉ କୁହେ, ''ଆମ ବାବୁ, କେତେ ମାଛ ମାରି ଆଣିଛନ୍ତି ଲୋ ମା'—ମୁଁ ନଉଚି ଘରୁ ଭାଜି ପଠେଇ ଦେବି ।'' ମୋର ମାଛମରା ବାପାଙ୍କ ପାଇଁ ଥାଏ ଏକ ସ୍ୱାଗତଯୋଗ୍ୟ ନିଷ୍କୃତି—'ଯାଉ, କିଛି ସମୟ ଅନ୍ତତଃ ଚୁପ୍‌ଚାପ୍ ବସି ରହିବ, ନହେଲେ ପିଲାଟା ସବୁବେଳେ ବଜର ବଜର ହଉଥିବ । ପୁଣି କହ୍ନେଇ ମାଆର ଉକ୍ତି ବାପାଙ୍କ ପାଇଁ ଥାଏ

ଅତ୍ୟନ୍ତ ପ୍ରୀତିପଦ, କାରଣ ସେଥିରେ ମୋ ପ୍ରତି ତାର ଭରି ରହିଥାଏ ଏକ ମାତୃସୁଲଭ ଅନାବିଳ ମମତା ।

ମଧ୍ୟାହ୍ନ ଭୋଜନ ପୂର୍ବରୁ ମୁଁ ବି ବସି ବସି କହ୍ନେଇର କରାମତି ଦେଖୁଥାଏ । କହ୍ନେଇ କେମିତି ପାଞ୍ଚଣ ଧରି ଚାଲିଚି ବଳଦଙ୍କ ପଛେ ପଛେ । ହୁର୍‌ର ହୁର୍‌ର କରି କେତେବେଳେ କାହା କଙ୍କାଳରେ ଅଙ୍ଗୁଳି ମାରି ଦଉଛି ତ କାହା ପିଠିକୁ ଦଉଛି ପାଞ୍ଚଣରେ ଗୋଟାଏ ଶକ୍ତ ପାହାର । ପୁଣି ସେଇ ପାଞ୍ଚଣ ଆଗରେ ମକଚି ହେଇ ଯାଇଥିବା ପାଳକୁ ଅଲଗା କରି ଆଉଜେଇ ଦଉଚି ଗୋଟାଏ କରକୁ ।

ସାରା ଦ୍ୱିପ୍ରହର କିଛି ନା କିଛି ଲାଗି ରହିଥାଏ । ଉଷ୍ଣ ପୌଷର ରୌଦ୍ରରେ ବସି ବସି ଅଳସ ଆଖିରେ ଚାହିଁ ରହିବାକୁ ଭଲ ଲାଗେ । ପାଳ ସବୁ ଅଲଗା କରିଦେଇ ଧାନ ସବୁ ଗୋଟେଇ ଗାଟେଇ ଏକାଠି ହୁଏ ଛୋଟ ଛୋଟ କୁଢ଼ରେ । ଆଉ ତା'ପରେ ଗୋଟାଏ କୁଲା ଧରି ତା' ଉପରେ ପବନ ପିଟିପିଟି ଚଷୁର ଶେଷ ଗୁଣ୍ଡ ଟିକକ ମଧ ଉଡ଼େଇ ଦେବାର ଚେଷ୍ଟା କରାଯାଏ । ପୁଣିଥରେ କୁଲା କୁଲା କରି ପାଛୁଡ଼ାଯାଏ, ଅବଶ୍ୟ ସେ କାର୍ଯ୍ୟଟିକୁ ପ୍ରାୟ ସ୍ତ୍ରୀ ଲୋକମାନେ କରିଥାଆନ୍ତି । ତା'ପରେ କୁଢ଼ କୁଢ଼ ଶୁଦ୍ଧ ସୁବର୍ଣ୍ଣପରି ଧାନ, ମହ ମହ ଧାନର ବାସ୍ନା ।

ତା'ପରେ ଈଶ୍ୱରା କି ଦନେଇ ଆସନ୍ତି ହାତରେ ଗୋଟାଏ ଗଉଣୀ ଧରି । ଚଟାପଟ୍ ପୂରା ହଉଥାଏ ଗଉଣୀ ଧାନରେ; ଆଉ ଖାଲି ହେଇ ଯାଉଥାଏ ଆଉ ଗୋଟିଏ ଜାଗାରେ, ଆଉ ଦନେଇ ଡାକି ଚାଲିଥାଏ କ୍ରମାଗତ ଭାବରେ ଅବିରତ, "ରାମ୍, ରାମ୍, ଦୁଇ, ଦୁଇ, ତିନି, ତିନି...କୋଡ଼ିଏ ହେଲେ ଯାଇ ମୂଠାଏ ଧାନରେ ଗୋଟାଏ ଶଙ୍କୁ ରଖାଯାଏ । ଶଙ୍କୁ ପରେ ଶଙ୍କୁ ବଢ଼ି ବଢ଼ି ଚାଲେ ଓ ସେତେବେଳକୁ ସ୍ୱଳ୍ପାୟୁ ପୌଷ ଅପରାହ୍ନର ସୂର୍ଯ୍ୟ ପଶ୍ଚିମ ଆକାଶରେ ତଳକୁ ଖସି ଯାଉଥା'ନ୍ତି ଆସ୍ତେ ଆସ୍ତେ । ସାମାନ୍ୟତମ ଚାଞ୍ଚଲ୍ୟରହିତ । ଆସ୍ତେ, ଆସ୍ତେ, ଲୋକମାନେ ଝାଡ଼ିଝୁଡ଼ି ହେଇ ଖଳା ବାରିରେ ନ ହେଲେ ପିଣ୍ଡା ଉପରେ ବସି ଅଳସ ଗପସପ ଆରମ୍ଭ କରିଦିଅନ୍ତି ।

ପଦ୍ମଲାଭପୁର ଗାଁରେ ଅନ୍ୟ ଏକ ଦିନର ସମାପ୍ତି ହୁଏ ।

ସମୟର ସୁଅରେ ଭାସିଗଲା ପରି ମୋର ପିତୃବିୟୋଗ ହେଇଛି ଓ ପଦ୍ମଲା'ପୁର ଗାଁ'ର ଅନେକ ବୁଢ଼ାବୁଢ଼ୀ ଲୋକ ଏଇ ଶୀତରେ ନ ହେଲେ ଗତ ଶୀତରେ ଟଳି ପଡ଼ିଛନ୍ତି ।

ବାପାଙ୍କ ଅନ୍ତେ ମୋ'ର ସହରରେ କାମ ସତ୍ତ୍ୱେ ମତେ ବାରମ୍ବାର ଫେରି ଆସିବାକୁ ପଡ଼ିଚି ଏଇ ଗାଁକୁ । ବେଳେ ବେଳେ ଜମି କଥା ବୁଝାସୁଝା କରିବାକୁ; କିନ୍ତୁ

ତାହା ବହୁ ସମୟରେ ପଦ୍‌ଲା’ପୁରରେ କେଇଟା ଦିନ କଟେଇ ଦେଇଯିବା ପାଇଁ ଥାଏ ଗୋଟାଏ ବାହାନା । ଭାରି ଭଲଲାଗେ ଏଇ ଚୁପ୍ ଚାପ୍ ଗାଁ’ । ଏଠି ଟ୍ରେନ୍‌ର ଝକ୍ ଝକ୍ ନାହିଁ, ଟିଣ ଟ୍ରାନ୍‌ଜିଷ୍ଟରରୁ ପ୍ରବାହରତ ଅଶ୍ରାବ୍ୟ ରାଜନୈତିକ ନେତାମାନଙ୍କର ବିରକ୍ତିକର ବିଜ୍ଞପ୍ତି ନାହିଁ ।

ଏଠିକି ବା ଖବର କାଗଜ ଆସିବ କାହିଁକି ? ଏଡ଼ିକି ଖଣ୍ଡେ ତାହାଳୀ, ସେଥିରେ ଅଳ୍ପ କିଛି ଲଙ୍ଗଳା ପିଲା । କଦବା କ୍ୱଚିତ୍ ଯଦି ଚିଠି ଆସେ, ତାହାହେଲେ ବଙ୍କା କଷି ଗଛ ପାଖରେ ପୋଷ୍ଟପିଅନ ଚିଠି ବଢ଼େଇ ଦେଇଯାଏ କେଉଁ ପିଲାକୁ, ଆଉ ସେ ପିଲା ଚିଠିଧରି ଅଣନିଃଶ୍ୱାସୀ ହେଇ ଦଉଡ଼େ ଗାଁ’ ଅବଧାନଙ୍କ ପାଖକୁ ଓ ଗାଁ ଅବଧାନ ନାକ ତଳକୁ ପ୍ରଚକ୍ଷୁ ଖସେଇ ଆଣି ଚିଠିର ଠିକଣା ଓ ତାହାର ବକ୍ତବ୍ୟ ଉଦ୍ଦିଷ୍ଟ ବ୍ୟକ୍ତିଟିକୁ ଶୁଣେଇ ଦେଇଥା’ନ୍ତି । ତା’ପରେ ପୁଣି ଆରମ୍ଭ ହେଇଯାଏ ସେଇ ଐକ୍ୟବଦ୍ଧ କୋଳାହଳ—ଦୁଇ ଦୁଗୁଣେ ଚାରିପଣ, ତିନି ଦୁଗୁଣେ ଛଅପଣ... ।

ଏବେ କହ୍ନେଇ ଆସି ମୋ’ ପାଖରେ ଠୁଙ୍କା ହୋଇ ବସେ, ଧାନର ହିସାବ ଦିଏ, ରାମ୍, ରାମ୍, ଦୁଇ, ଦୁଇ କହି ଧାନ ମାପିଦିଏ; ଯେମିତି ବାପାଙ୍କ ପାଖରେ କରୁଥିଲା କହ୍ନେଇ ବାପ । କହ୍ନେଇର ଝିଅ ନାଲି ଲୁଗା ପିନ୍ଧି ଅନେକ ସଙ୍କୋଚରେ ପାଖକୁ ଆସି ମୁଣ୍ଡିଆ ମାରେ । ଗଲା ସାଲ ସେଇ ଗାଁର ବଟ ପ୍ରଧାନ ପୁଅ ସୁରିଆ ସାଙ୍ଗରେ ବାହାଘର ହେଇଯାଇଛି ତା’ର । ବାପ ଘରକୁ ଆସିଛି ପୁଆଣି ହେଇ । ଲକ୍ଷ୍ମୀ ଗଲାପରେ ମୁଁ ପଚାରେ, ‘‘ଲକ୍ଷ୍ମୀ ଭଲରେ ଅଛି ତ ?’’ କହ୍ନେଇର ସେଇ ଅନାସକ୍ତ ଉତ୍ତର, ‘‘ବାହା ହେଲା ଝିଅର ଭଲମନ୍ଦ କ’ଣ—ଆସିଚି ଯେ ଗଲାବେଳକୁ ଚାରି ପାଞ୍ଚ କୋଡ଼ି ଟଙ୍କାର ଜିନିଷ ନ ଦେଲେ ପୁଆଣି ଝିଅକୁ ଶାଶୁ ଘରକୁ ଛାଡ଼ିବି କେମିତି ? ଏ ସାଲ ଫସଲ କଥା ତ ଆପଣଙ୍କୁ ଜଣା ।’’ ମୁଁ କହେ, ‘‘ବ୍ୟସ୍ତ ହେଲେ କ’ଣ ହବ, ମୁଁ ପଛକେ ଏଥର ବିହନ ଧାନ ସହିବି—ଆଉ ତମର କେତେ ଧାନ କରଜ ରଖିବ ରଖ, ଆରବର୍ଷ ଫେରେଇ ଦବ ।’’

ଦିବାକର ଅସ୍ତ ଯାଆନ୍ତି ଓ ପଦ୍‌ଲା’ପୁର ଗାଁର ଚାରିପଟେ ଖାଲି ଝିଙ୍କାରିର ଝିଁ ଝିଁ ସ୍ୱର, କେତେବେଳେ କେତେବେଳେ ବିଲୁଆମାନଙ୍କର ପହରିକିଆ ବୋବାଳି ।

ପୁଣି ସକାଳ । ପ୍ରସୂତି ଯନ୍ତ୍ରଣାରେ କେଉ ଗର୍ଭବତୀ ନାରୀ ଚିତ୍କାରରେ ଗଗନ ପବନ ପ୍ରକମ୍ପିତ ହେଉଥାଏ ଓ ମୁରବୀମାନେ ତା’ ପାଟିରେ ବାପ ଅଜା ଅମଳର ଗଙ୍ଗା ପାଣି ଟିକେ ଦେଇ ଦେଇ ପିଣ୍ଡାରେ ଆସି ମୁହଁ ଶୁଖେଇ ଠୁଙ୍କା ହେଇ ବସି ରହନ୍ତି । ଦି’ଚାରିଟା ନିରାଶିଆ ହରିବୋଲ ଶବ୍ଦ ଭିତରେ ଶବ ଉଠେ ଗାଁ ମଶାଣି ପଦାକୁ । ତା’ ପରଦିନ ସେମିତି ଲୋକମାନେ ବସି ରହନ୍ତି ଆଉ ଆଖି ପତା ଉପରେ ବାଆଁ ହାତର

ପାପୁଲି ଘୋଡ଼େଇ ଆକାଶକୁ ନିଘା କରନ୍ତି–ପାଣି ପଡ଼ିବ କି ନାହିଁ । ସୂର୍ଯ୍ୟ ଉଠି ଆସନ୍ତି ମଝି ଆକାଶକୁ ଆଉ ବିଲ ମଝିରେ କନ୍ହେଇ ପ୍ରଧାନମାନଙ୍କର ଛାଇ ସଙ୍କୁଚିତ ହେଇ ହେଇ ଗୋଡ଼ ପାଖକୁ ଲାଗି ଆସେ । କନ୍ହେଇ ପ୍ରଧାନ ଘରକୁ ଫେରି ଗୋଡ଼ ହାତରେ ପାଣି ପକେଇଦେଇ କୁହେ, ''ମତେ ତୋରାଣି କଂସାଟା ଆଗ ଦବୁଟି, ଏ ଖରାରେ ହଂସା ଉଡ଼ିଗଲାଣି ମୋର ।'' କନ୍ହେଇର ସ୍ତ୍ରୀ ଚକ୍ ଚକ୍ କରୁଥିବା ପିତଳ ଖଡୁ ବାହିଏ ପିନ୍ଧିଥିବା ହାତରେ ତୋରାଣି କଂସାଏ ଥୋଇଦିଏ । କନ୍ହେଇ କଂସାରେ ଯେ ମୁହଁ ଲଗାଏ, କଂସାକଯାକ ତୋରାଣି ଏକା ନିଶ୍ୱାସରେ ଟେଣ୍ଡି ନିଏ ପେଟକୁ, ଆଉ ତା'ପରେ କଂସାଟାକୁ ତଳେ ଥୋଇ ଦେଇ ଗୋଟାଏ ଲମ୍ବା ଏଉଡ଼ି ମାରେ, ଆଉ କୁହେ, ''ଓହୋ !'' ଚାହୁଁ ଚାହୁଁ ଦି' ପହରଟା ଓହ୍ଲେଇ ଆସେ ଆଉ ପଦ୍‌ଲା'ପୁର ଗାଁ ଦାଣ୍ଡରେ ଧୂଳି ଉଡ଼େଇ ଫେରନ୍ତି ଗାଈ ପଲ–ପଛେ ପଛେ ଦି'ଟା ଗାଈଜଗା ପିଲା । ତାଙ୍କ ପଛରେ ବଡ଼ କାଠ ଗୋଛାଟାଏ ଧରି ପୁନିଆ ସଅର ।

ଏଇଥିଲା ପଦ୍‌ଲା'ପୁର ଗାଁ'ର ଦୈନନ୍ଦିନ ସହଜ, ସରଳ, ନିରାଡ଼ମ୍ବର ଜୀବନଯାତ୍ରା; କିନ୍ତୁ ତଥାପି ଗାଁ, କାଛି ତଇଲାର ସୋରିଷ କ୍ଷେତରେ ଉଡ଼ି ବୁଲୁଥିଲେ ଅନେକ ପ୍ରଜାପତି ଓ ମହୁମାଛି; ତଥାପି ଗୋଠରୁ ଫେରି ଗାଈମାନେ ବାଛୁରୀମାନଙ୍କୁ ଚାଟୁଥିଲେ ଅନେକ ସମୟଧରି ଓ ତଥାପି ରାମଲୀଳାରେ ଲକ୍ଷ୍ମଣ ପାର୍ଟ କରୁଥିବା ଛୁଞ୍ଚିମୁହାଁ ଟୋକା ନାରଣ ଆମ୍ବତୋଟାର ଚିକ୍‌ତଣ୍ଡୁଳିତ ଜ୍ୟୋତ୍ସ୍ନାରେ ଛପି ଛପି ଆସି ସାହି କନକର ପିଛା ଧରୁଥିଲା ଓ ଆସ୍ତେ ଆସ୍ତେ ଡାକୁଥିଲା, ହେଇ–ହେ ଏଇ...'' । କନକ ଥରେ ଛାତି ଉପରର ଲୁଗାକୁ ଉପରକୁ ଟାଣି ନେଇ ପଛକୁ ଚାହିଁ ମୁରୁକି ହସା ଦେଇ ପାଦ ପକଉଥିଲା ସଅଳ ସଅଳ । ସେ ଘରକୁ ଫେରିଆସି ଘଷିମାଜି ହେଇ ଗାଧୋଇସାରି, କାଛଖୁରାର ଦର୍ପଣରେ ମୁହଁ ଦେଖି ଆଖିରେ କଜଳ ନାଉଥିଲା, ଆଉ ତା' ଆଖି ଖୁସିରେ ଝିଲ୍ ମିଲ୍ ହେଇ ଉଠୁଥିଲା ।

ମୁଁ ସେମିତି ଗୋଟାଏ ସମୟରେ ପଦ୍‌ଲା'ପୁର ଗାଁରୁ ପାଦ ଗଣି ଗଣି ଫେରୁଥିଲି ସହରକୁ ମୋର ଅନିଚ୍ଛା ସତ୍ତ୍ୱେ । ମୋ' ପଛେ ପଛେ ଏକ କ୍ଷୁଦ୍ର ଶୋଭାଯାତ୍ରାରେ ଚାଲୁଥିଲେ କନ୍ହେଇ, ଈଶ୍ୱରା, ପୁନିଆ ଆଉ ଗାଁର ପୁରୁଖା ପୁରୁଖା ଲୋକମାନେ ମତେ ପ୍ରଧାନ ରାସ୍ତା ପର୍ଯ୍ୟନ୍ତ ବଳେଇ ଦବା ପାଇଁ ଓ ମଝିରେ ମଝିରେ ଅନୁନାସିକ ସ୍ୱରରେ କହୁଥିଲେ ଯେ ଆମ ଗାଁ ଓ୍ୟାର୍ଡ ମେମ୍ବର ଗାଁ ପାଇଁ କିଛି କରିପାରୁ ନାହିଁ । ରାସ୍ତାରେ ମାଟି ପଡ଼ିବା ଦରକାର । ଶଅର ସାହିରେ ଆଉ ଗୋଟିଏ କୂଅ ଦରକାର– ପୋଖରୀଟା ଉଝଲା ହେବା ଦରକାର–ସବୁ ଗାଁକୁ ବିଜୁଳୀବତୀ ଆସିଗଲାଣି; ଅଥଚ ଆମ ଗାଁକୁ ଆସିପାରୁ ନାହିଁ । ମୁଁ ସବୁଥର ସେଇ ଏକା ପ୍ରତିଶ୍ରୁତି ଦିଏ, ''ଦେଖେ, କଅଣ ହେଇପାରିବ । ମତେ ରାସ୍ତା ଧରେଇ ଦେଇ ସେମାନେ ବାହୁଡ଼ି ଯାଆନ୍ତି । ମୁଁ

ବସେ ତିଣ ଓଟ ଶଗଡ଼ରେ । ଶଗଡ଼ ପଛରେ, କିଏ ଚିନାବାଦାମ ବସ୍ତାଏ, କିଏ ସୋରିଷ କିଛି, କିଏ ଗଣ୍ଡେ କୋଳଥ ଥୋଇ ଦିଅନ୍ତି । ଶଗଡ଼ ଚାଲେ ଧୀର ମନ୍ଥର ଗତିରେ, ପଦ୍‌ଲା'ପୁରର ଜୀବନଯାତ୍ରାର ଛନ୍ଦ ସହିତ ଛନ୍ଦ ରଖି । ସେଥର ଲକ୍ଷ୍ୟ କରିଥିଲି, ବଙ୍କା କଷି ଗଛ ପାଖରେ କିଏ ଜଣେ କ୍ୟାବିନ୍ ଖଣ୍ଡେ ପକେଇ ସେଥିରେ ପାନ, ସିଗାରେଟ୍, ଗୁଡ଼ାଖୁ, ରିବନ୍, ଆଉ ଶସ୍ତା ଅତର ପ୍ରଭୃତି ଅନେକ ମନୋହରୀ ଜିନିଷ ରଖିଛି, ଆଉ ସେଇ କ୍ୟାବିନ୍‌ର ଜଙ୍କିଲଗା ଟିଣ କାନ୍ଥରେ ମରାହେଇଛି କେଉଁ ଗୋଟାଏ ସିନେମାର ବିଜ୍ଞାପନ—ହେମାମାଳିନୀର ଗୋଟାଏ ବ୍ଲୋ-ଅପ୍ ସାଇଜର ଫଟ । ଶଗଡ଼ରେ ଆସୁଥିବା ବେଳେ ଗୋଟାଏ ସ୍କୁଟର୍ ରିକ୍‌ସାରେ କିଏ ଜଣେ ଆବେଗମୟ ବକ୍ତୃତା ଦେଇ ଦେଇ, ଧୂଳି ଉଡ଼େଇ ମତେ ଅତିକ୍ରମ କରି ଯାଇଥିଲା । ଯେଉଁ କେତୋଟି ଅସଂଲଗ୍ନ ଶବ୍ଦ ମୋର କାନରେ ପଡ଼ିଥିଲା, ମନେ ହେଲା ଏହା ନିଶା ନିବାରଣ କାର୍ଯ୍ୟ ସମ୍ପର୍କିତ ବୋଧହୁଏ ।

ପୁଣି ଥରେ ଟ୍ରେନ୍‌ଟା ରହିଗଲା । ହାତ ଘଣ୍ଟାକୁ ଦେଖିଲି । ପ୍ରାୟ ଗୋଟାଏ ବାଜିବ । ପ୍ଲାଟ୍‌ଫର୍ମ ଶୂନ୍‌ଶାନ୍, ଏପରିକି ଚାହା ବିକାଳି ହକରମାନେ ମଧ୍ୟ ଶୋଇ ଯାଇଛନ୍ତି । ଗୋଟାଏ କିଏ ବୁଲି ବୁଲି ତାଳପତ୍ରର ହାତପଙ୍ଖା ବିକୁଚି । ଖଣ୍ଡେ ହାତପଙ୍ଖା କିଣିଲି । ପ୍ରୟୋଜନ ଥାଉ ବା' ନ ଥାଉ ବାପାଙ୍କ ସାଙ୍ଗରେ ଆସୁଥିଲା ବେଳେ ବାପା ଅଣାଏ ଦି'ଅଣା ପଇସା ଦେଇ ହାତପଙ୍ଖା ପ୍ରାୟ କିଣିଥାନ୍ତି । ମୁଁ ଏଥର ପଦଲା'ପୁର ଯାଉଛି ବୋଧହୁଏ ପାଞ୍ଚବର୍ଷ ପରେ । ସେଥିପାଇଁ ସାଙ୍ଗରେ ଅନେକ ସାମଗ୍ରୀ ନେଇ ଯାଉଛି । କହ୍ନେଇ ପାଇଁ ଦି'ଖଣ୍ଡ ପୁରୁଣା ଗରମ କୋଟ୍, କହ୍ନେଇ ଝିଅ ପାଇଁ ଖଣ୍ଡେ ଘର ପିନ୍ଧା ଶାଢ଼ୀ, ତା'ର ନାତୁଣୀ ପାଇଁ କିଛି ଖେଳନା, ଆଉ ଯେତେ ସମ୍ଭବ ସେତେ ବୋତଲ ଆଉ ଠିପି ଥାଇ ଖାଲି ମୋବିଲ ଟିଣ । ଖାଲି ବୋତଲ ଆଉ ଟିଣ ପାଇ ସେମାନେ କୃତକୃତ୍ୟ ହେଇଯାଆନ୍ତି ଓ ସବୁ ଚିଠିରେ ତାଗିଦା ଥାଏ ସେହି ପଦାର୍ଥରୁ ଯେପରି ମୁଁ ପର୍ଯ୍ୟାପ୍ତ ପରିମାଣରେ ନେଇଥାଏ ।

ମୁଁ ଏସବୁ ଜିନିଷ ନେଇ ନିଜେ ଋଣମୁକ୍ତ ହବାର ଚେଷ୍ଟା କରିଥାଏ କେବଳ । କାରଣ ସେମାନେ ଅକାଳେ ସକାଳେ ମୋ' ଘରକୁ ଆସିଲେ ପଣସଟାଏ, ଆମ୍ବ ବସ୍ତାଏ, ଦେଶୀ କଦଳୀ କାନ୍ଦିଟାଏ, ବାରି ସୂର୍ଯ୍ୟମୁଖୀ କଞ୍ଚାଲଙ୍କା, କାନ୍ଧିଆ ଦି'ପୁଞ୍ଜା ଆଣିବାରେ କାର୍ପଣ୍ୟ କରି ନଥାନ୍ତି । କାରଣ ସେମାନେ ଜାଣନ୍ତି ମୁଁ ଗାଁ'କୁ ଗଲେ ସଦ୍ୟତୋଳା ନେଉଟିଆ ଶାଗରେ ପ୍ରଚୁର କଞ୍ଚାଲଙ୍କା ଦଳି ଖାଇଥାଏ ଓ ତହୁଁ ପ୍ରଚୁର ପରିମାଣର କାନ୍ଧିଆ ଓ ବରକୋଳି ଖାଇଥାଏ । ଛୋଟ ବିଲମାଛରେ କାନ୍ଧିଆ ରସ ଦେଇ ଠୁକ୍‌ଠୁକା, ନ ହେଲେ ଛତୁପୋଡ଼ା ହେଲା ମୋର ପ୍ରିୟ ଖାଦ୍ୟ । ଏହି ଖାଦ୍ୟ ସହରର କୌଣସି ଫାଇଭ୍ ଷ୍ଟାର୍ ହୋଟେଲରେ ମଧ୍ୟ ଦୁଷ୍ପ୍ରାପ୍ୟ ।

ଗତ ପାଞ୍ଚବର୍ଷ ଧରି ଆସିପାରି ନାହିଁ ଅନେକ କାମର ଚାପରେ; କିନ୍ତୁ ଯାହା ଚିଠିରୁ ଓ ହିସାବରୁ ବୁଝୁଛି ପ୍ରତିବର୍ଷ ଧାନର ପରିମାଣ କମି କମି ଯାଉଛି । ଦେଶର ବହୁ ଜାଗାରେ ଏଗ୍ରିକଲଚରାଲ କଲେଜ ଖୋଲିଛି, ନୂଆ ନୂଆ ଅମଳକ୍ଷମ ଧାନ ବାହାରିଛି, ସରକାର ଉନ୍ନତ ବିହନ ଓ ସାର ଯୋଗାଇ ଦଉଛନ୍ତି; ଅଥଚ ଧାନର ଉତ୍ପାଦନ କମିଯିବା କଥା ମତେ ବେଶ୍ ଆଶ୍ଚର୍ଯ୍ୟ କରିଛି । ଏତେ ବାଟରେ ଜମି ରଖି ତାକୁ ବୁଝା ସୁଝା କରିବା ଆଉ ବୋଧହୁଏ ସମ୍ଭବ ହବ ନାହିଁ, କିନ୍ତୁ ଜମି ବା' ନବ କିଏ ? ମୁଁ ଯେତେଥର ଜମି ଛାଡ଼ିଦବା କଥା ଉଠେଇଚି, କହ୍ନେଇ ସବୁବେଳେ ମୁଣ୍ଡ କୁଣ୍ଡେଇ କୁଣ୍ଡେଇ କହିଚି, ''ବାବୁ, ଆପଣଙ୍କ ଜମି ନବାକୁ ଏ ଗାଁରେ ମୁଣ୍ଡ କାହାର ଅଛି ? କାହା ହାତରେ ଏତେ ପଇସା ଅଛି ?'' ତାହାହେଲେ କ'ଣ ପାଣି ମୂଲ୍ୟରେ ସାତପୁରୁଷର ଜମି ହାତଛଡ଼ା କରିଦେବି ? ଟ୍ରେନ୍‌ରେ ବସି ବସି ଏଇ କଥା ହିଁ ମନକୁ ଆସୁଥିଲା ବାରମ୍ବାର ।

ଷ୍ଟେସନରେ ଓହ୍ଲେଇ ଦେଖିଲି ଶଗଡ଼ ଆସି ନାହିଁ ବା କେହି ପରିଚିତ ମୁହଁ ମଧ ଦେଖିବାକୁ ପାଇଲି ନାହିଁ । ଦି'ଟା ସ୍କୁଟର ରିକ୍‌ସା ଠିଆହେଇ ରହିଛି । ମତେ ଦେଖି ମୁଁ କୁଆଡ଼େ ଯିବି ବୋଲି ପଚାରିଲେ ସେମାନେ ଓ ତା' ଭିତରୁ ଜଣେ ମତେ ପଦଲା'ପୁର ନେଇଯିବା ପାଇଁ ରାଜି ହେଇ ସ୍କୁଟରରେ ଷ୍ଟାର୍ଟ ଦେଲା । ମୁଁ ନାଲି ରାସ୍ତାରେ ଧୂଳି ଉଡ଼େଇ ପହଞ୍ଚିଲି ପଦଲା'ପୁରରେ ।

ଏବର୍ଷ ମୋର ଚାଷ ଘର ଖଣ୍ଡକ ମଧ ଛପର କରାହେଇ ନାହିଁ । ଗାଁରେ କହ୍ନେଇ, ଇଶ୍ୱରା କି ପୁନିଆ କେହି ହେଲେ ନଥିଲେ । କିନ୍ତୁ ସେମାନେ ଯାଇଥିଲେ କୁଆଡ଼େ ? ସମସ୍ତେ କଅଣ ଏକାଥରକେ ଗଲେ କୁଣିଆ ଘର ? ଖାଲି ପଦେ କଥା, ସେମାନେ ଟାଉନ୍‌କୁ ଯାଇଛନ୍ତି । ଗାଁ' ଲୋକଙ୍କ ସାଙ୍ଗରେ ବସି ଚାଷବାସ, ଗାଁ' କଥା ଗପ କରିବା ଛଡ଼ା ମୋର ଆଉ କିଛି ଉପାୟାନ୍ତର ନଥିଲା । ଗୋଟାଏ ସମ୍ବାଦ ପାଇଲି ଯେ ସେଠିକାର ବିଲ ପାଖ ଦେଇ ବହି ଯାଉଥିବା ଚିରସ୍ରୋତା ଝରଣାଟା ପ୍ରାୟ ଶୁଖିଗଲାଣି ତିନିବର୍ଷ ହେଲା । ବୋଧହୁଏ କ'ଣ ସବୁ ମଇଳା ପଚାପତ୍ର କି ଆଉ କ'ଣ ଆବର୍ଜ୍ଜନା ପଡ଼ି ପଡ଼ି ତା'ର ମୁହଁ ବନ୍ଦ ହେଇଗଲାଣି; କିନ୍ତୁ କେହି ଗାଁବାଲା ପାହାଡ଼ ଉପରକୁ ଯାଇ ସେ ବିଷୟ ବୁଝିବାର ମସୁଧା କରୁନାହାନ୍ତି । ଅକ୍ଷିତୃତୀୟା ଗଲାଣି, ହେଲେ ଏ ପର୍ଯ୍ୟନ୍ତୁ ବିଲକୁ ଧାନ ଅନୁକୂଳ ହେଇ ନାହିଁ । ମୁଁ ବେଶ୍ ଆଶ୍ଚର୍ଯ୍ୟ ହୋଇଥିଲି ଏ ସମ୍ବାଦରେ ।

ମୋର ପୁଣି ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା କରିବାକୁ ହବ । ପ୍ରାୟତଃ ମୁଁ ପହଞ୍ଚିଲେ ଏଇ କହ୍ନେଇ ଫହ୍ନେଇ ସବୁ ବନ୍ଦୋବସ୍ତ କରିଦିଅନ୍ତି ଚାଉଳ, ମୁଗ, ଏପରିକି

ବାସନକୁସନ ଆଉ ଛାଳ, କାଠ ପର୍ଯ୍ୟନ୍ତ । ବହୁବାର ଏଇ ଲକ୍ଷ୍ମୀ ଆସି ମୋ ପାଇଁ ରନ୍ଧାରନ୍ଧି କରିଦେଇ ଯାଏ । ଆଜି କାହାକୁ ନ ପାଇ ଲକ୍ଷ୍ମୀକୁ ଆସିବାକୁ ଖବର ଦେଲି । ଲକ୍ଷ୍ମୀ ଆସିଲା, ଆସି ମୁଣ୍ଡିଆ ମାରି ଗୋଟାଏ ଖୁଣ୍ଟ ଉହାଡ଼ରେ ନିଜକୁ ଲୁଚେଇ ରଖି ଖାଲି ଠିଆହେଇ ରହିଲା । ଲକ୍ଷ୍ମୀ ତ କେବେ ମତେ ଏତେ ଆଡ଼ ହେଇ ଠିଆ ହୁଏ ନାହିଁ, ଏଇ କଥା ଭାବୁଚି, ସ୍ପଷ୍ଟ ଶୁଣିପାରିଲି ଲକ୍ଷ୍ମୀ ଠିଆ ହେଇରହି କାନ୍ଦୁଚି । ମୁଁ ଡାକିଲି, ''ଲକ୍ଷ୍ମୀ'' ! ଜବାବ୍ ନାହିଁ । ପୁଣି ଥରେ କହିଲି, ''କିଲୋ, କଥା କ'ଣ, ସେମିତି ଠିଆଟା ହେଇ କାନ୍ଦୁଚୁ କାହିଁକି ?'' ତଥାପି ଜବାବ୍ ନାହିଁ । ଏଥରକ ଯେମିତି ଲକ୍ଷ୍ମୀର କୋହ ଉଠିଲା ତୁହାକୁ ତୁହା ।

ପାଖରେ ବସିଥିଲା ବୁଢ଼ା ସନିଆ ପ୍ରଧାନ । କେତେବେଳକେ କହିଲା, ''ବାବୁ, ତମେ ତ ଆସୁ ନାହଁ ଗାଁ'କୁ, ଆଉ ଖବର କ'ଣ ଜାଣିବ ? ତା' ଘର ଲୋକ ସୁରିଆ ତାକୁ ପଚାରୁ ନାହିଁ—ସବୁବେଳେ ଯାଇ ମଦ ପିଇ ପଡ଼ିଛି ଟାଉନ୍‌ରେ । ଥରେ ଆସିଥିଲା, ଯା'କୁ ମାରିଲା ହଗାନଗା ମାଡ଼ । ଯା' ପେଟରେ ପିଲାଟା ଭାଙ୍ଗିଗଲା !''

—''କିନ୍ତୁ ଟାଉନ୍‌ରେ କ'ଣ କରୁଛି ସୁରିଆ ?'' ମୁଁ ପଚାରିଲି ।

—''ଆଉ କ'ଣ କରିବ, ସେଇ ମଦ ବ୍ୟବସାୟ । ମଦ ତ ଦୁନିଆ ବ୍ୟାପିଗଲା ବାବୁ । ବିଲ ପଡ଼ିଆ ପଡ଼ିଲା, ଆଉ ହଳ ହଡ଼ା ମଧ ଯେ ଯାହାର ବନ୍ଧା ବିକା କରି ସାରିଲେଣି—ଗାଁ' ସତ୍ୟାନାଶ ହେଇଗଲା !''

ମୁଁ ଗମ୍ଭୀର ହେଇ ଲକ୍ଷ୍ମୀକୁ ଘରକୁ ଚାଲିଯିବାକୁ କହିଲି । ଲକ୍ଷ୍ମୀ ଆସ୍ତେ ଆସ୍ତେ ଚାଲିଗଲା । ଯାହା ସବୁଦିନ ଲକ୍ଷ୍ମୀକୁ ମାନେ—ତା'ର ଅଣ୍ଟାରେ ରୁପା ଗୋଠ ନଥିଲା କି ପାଦରେ ନଥିଲା ପାଉଁଜି—କେମିତି ଶ୍ରୀହୀନ ଦେଖା ଯାଉଥିଲା । ପାଖ ଗୁଡ଼ିଆ ଦୋକାନରୁ କିଛି ବରା ଆଉ ଚା' ଜରିଆରେ ମୋର ଆକାଂକ୍ଷିତ ମଧ୍ୟାହ୍ନ ଭୋଜନ ଶେଷ କଲି ।

ଅପରାହ୍ନ ନଇଁ ପଡ଼ିଲା ବେଳକୁ କହ୍ନେଇ ଆସିଲା, ଆଉ ମୋ' ପାଖକୁ ଆସି ସେମିତି ବସିଲା ପିଣ୍ଡା ଉପରେ ଠୁଙ୍କା ହେଇ । 'କେବେ ଆସିଲେ ?' ଆଗରୁ ଚିଠି ଦେଲେ ନାହିଁ ? ଏସବୁ କୌଣସି କୁଶଳ ବାର୍ତ୍ତା ନାହିଁ କହ୍ନେଇ ମୁହଁରେ । ସେ କେବଳ ଗମ୍ଭୀର ହେଇ ବସି ରହିଛି, ଯେମିତି ତା' ମନରୁ ସବୁଯାକ ସରାଗ କିଏ ପୋଛି ନେଇଛି ।

ମୁଁ କେତେବେଳେକେ କହିଲି, ''ଶୁଣିଲି ଏଥର ଅକ୍ଷୟ ତୃତୀୟାକୁ କୁଆଡ଼େ ଅନୁକୂଳ ହେଇ ନାହିଁ ବିଲକୁ ?'' ଏଇ ଗୋଟିଏ ପ୍ରଶ୍ନର ଉତ୍ତରରେ କହ୍ନେଇ ଏକାଥରକେ ବାଢ଼ି ଆସିଲା ଅନେକ ଅଭିଯୋଗ । ''ଝର ପାଣି ତ ଶୁଖିଲା, ମାଟିର

ବନ୍ଦ ତ ଭାଙ୍ଗିଗଲାଣି, ଯେଉଁଠି ଭରଣେ ଫଳୁଥିଲା, ଏଇନା ଅଧେ କି ଚଉଠେ ଆମଦାନୀ ହଉଛି । ତାଳବଣି ପାଖ କିଆରି ଖଣ୍ଡ ଈଶରା ଦି' ବର୍ଷ ହେଲା କରୁନି, ଗାଈ ପଶି ଦୁନିଆ ଧାନ ଖାଉଛନ୍ତି, ଖତ ଗାଡ଼ିକ ତ ହେଲା ଦି'କୋଡ଼ି ଦଶଟଙ୍କା—ଆଉ ଏ ଗାଁରେ ଚାଷ ହଳ ନାହିଁ । ଚାଷ ଭାଙ୍ଗିଗଲା । ଲୋକେ ଗାଈଗୋରୁ ବିକ୍ରୀ କରି ଦେଲେଣି'' ଇତ୍ୟାଦି ଇତ୍ୟାଦି ।

ମୁଁ ପଚାରିଲି, ''ଲୋକେ ଚଳୁଛନ୍ତି କେମିତି ?''

—''ଲୋକଙ୍କର କଅଣ ଅଭାବ ଅଛି ? ମଦ ବ୍ୟବସାୟ କରି ଦିନକୁ ପାଞ୍ଚ କୋଡ଼ି ଛ' କୋଡ଼ି ଟଙ୍କା କମାଉଛନ୍ତି । ଚାଷରୁ କ'ଣ ମିଳିବ ତାଙ୍କୁ ?''

ମୁଁ କହିଲି, ''ଶୁଣିଚି, ସୁରିଆ କୁଆଡ଼େ ଟାଉନରେ ରହି ମଦ ବ୍ୟବସାୟ କରୁଚି; ତା ବୋଲି ତ ଆଉ ସବୁ ଲୋକ କରୁ ନାହାନ୍ତି !''

କହ୍ନେଇ କହିଲା, ''ବୋଇଲ, ସୁରିଆ ସିନା ଯାଇ ଟାଉନ୍‌ରେ ମଦ ବିକୁଚି, ଗାଁ ଲୋକେ ପରା ମଦ ରାନ୍ଧୁଛନ୍ତି । ପ୍ରତି ଘର ପିଛା ମଦ ରନ୍ଧା ଚାଲିଛି—ଆଉ ଟିକିଏ ଯାଉ ଦେଖିବେ ବିଲ ଚାରିପଟ ଯାକ ଠଆକୁ ଠାଆ ଭାଟି ନିଆଁ ଜଳିବ ।'

ମୁଁ ପଚାରିଲି, 'ଖୁବ୍ ଲାଭ ହେଉଛି ମଦ ରନ୍ଧାରେ ?'

—'ବାବୁ, ଲାଭ କଥା କାହିଁକି କହୁଛନ୍ତି, ଦଶଟଙ୍କା ପୋଚରେ ଖର୍ଚ୍ଚ କଲେ ମଦ ବିକ୍ରୀ ହବ ଅଶୀ ଟଙ୍କାର । ହଳ ନାହିଁ, ଚଳ ନାହିଁ, କଣ୍ଟ୍ରାକ୍ଟର ଜିପ୍ ପଠେଇ ଘରୁ ଘରୁ ନେଇ ଚାଲିଯିବ । ଆଉ ଟଙ୍କା ବି ନଗଦା ନଗ୍‌ଦି । ସିଏ ଏକ୍‌ସାଇଜ୍‌ବାଲାଙ୍କୁ ଧରିଚି', ସେମାନେ ଏ ଗାଁକୁ ଆସିବେ ନାହିଁ; ଯଦି ଆସିବେ, ତାହାହେଲେ ଆଗରୁ ଖବର ଦେଇ । ସେଦିନ ମଦରନ୍ଧା ବନ୍ଦ ।'

ସନ୍ଧ୍ୟା ହେଇ ଆସିଥିଲା; କିନ୍ତୁ ଆଗପରି ଆଉ ମୋର ଖଳା ବାଡ଼ିରେ ଲୋକଙ୍କର ଭିଡ଼ ନଥିଲା । ଠିକ୍ ରାସ୍ତା ଆରପଟେ କାହାଘରୁ ଖୁବ୍ ଉଚ୍ଚ ସ୍ୱରରେ ଗୋଟାଏ କ'ଣ ଓଡ଼ିଆ ସିନେମା ସଙ୍ଗୀତ କାହାର ଟ୍ରାନ୍‌ଜିଷ୍ଟରରୁ ବାଜିଉଠିଲା । ଲୋକମାନେ ଯେମିତି ଗୋଟାଏ ଗୋଟାଏ ଛାୟାମୂର୍ତ୍ତି ପରି ଅତି ସନ୍ତର୍ପଣରେ ଯିବା ଆସିବା କରୁଛନ୍ତି । ଏପରିକି ଗାଁ ଦାଣ୍ଡରେ ଗାଁ ପିଲାଙ୍କର ସରି ଆସୁଥିବା ଖେଳର କୋଳାହଳ ମଧ୍ୟ ଶୁଣିବାକୁ ମିଳି ନଥିଲା ।

କହ୍ନେଇ ମୋ' ପାଖରୁ ଉଠିଯିବା ପୂର୍ବରୁ ମୁଁ ତାକୁ କହିଥିଲି 'କହ୍ନେଇ, ମୋ'ର ଝିଅ ବାହାଘର ଆଗରେ, ମୋର ଟଙ୍କା ଦରକାର । ଆଉ ତା' ଛଡ଼ା ମୁଁ ଏତେ ବାଟରେ ରହି ଆଉ ଜମି ଜମା କଥା ବୁଝାବୁଝି କରିପାରିବି ନାହିଁ । ଲୋକ ବୁଝ, କାଲି ବିକି

ଦେଇ ଚାଲିଯିବି ।' ଏଇ କଥାତକ କହିଲାବେଳେ ମୋର ନିଜର କଣ୍ଠସ୍ୱରକୁ ମୁଁ ନିଜେ ଚିହ୍ନିବା ସମ୍ଭବ ନଥିଲା ।

କହ୍ନେଇ କହିଲା, 'ବାବୁ, ସାତପୁରୁଷର ଜମି ପଡ଼ିଚି ତ ପଡ଼ିଚି, କାହିଁକି ହାତଛଡ଼ା କରିବ ? ଭରଣେ ହଉ ଚଉଠେ ହଉ, ଧାନ ତ ମିଳୁଚି ।'

ମୋର କଣ୍ଠସ୍ୱର ଯଥେଷ୍ଟ ଦୃଢ଼ଥିଲା, ମୁଁ କହିଲି, 'କହ୍ନେଇ, ଏଇ କଥା ମତେ ତମେ ଅନେକଥର କହିଚ, ଆଉ ନୁହଁ, ଯାହା ଦର ହଉ ପଛେ ମୁଁ ବିକିବି, ଘରକୁ ଯିବି ।'

—'ହଉ ମୁଁ ଲୋକ ଆଉ ଦର ଠିକଣା କରେ ।' ଏଇକଥା କହି କହ୍ନେଇ ଉଠି ଚାଲିଗଲା । ପୁନିଆ ସେଇଠି ଗୋଟାଏ ଖୁଣ୍ଟକୁ ଆଉଜି ବାଁ ଗୋଡ଼ ବୁଢ଼ା ଆଙ୍ଗୁଠି ନଖରେ ମାଟି ପିଣ୍ଡାରେ ଗାର କାଟୁଥିଲା । କେତେବେଳେକେ କହିଲା, ବାବୁ, ଆଜି ଦିନରେ ତ ଆପଣ କିଛି ଖାଇ ନାହଁ, ମୁଁ ଗୋଟିଏ ଗଞ୍ଜା ପୋଷିଛି, ତାକୁ ବନେଇ ଦେଇ ମୁଁ ଆପଣଙ୍କ ପିଣ୍ଡାରେ ରାନ୍ଧି ଦଉଚି; ଆଉ ସାହୁ ଦୋକାନରୁ ପୁରୀ କି ରୁଟି ଦି'ଖଣ୍ଡ କିଣି ଆଣିଲେ ଚଳିଯିବ ।'

ରାତ୍ରି ଭୋଜନର ଯେତେବେଳେ ଅନ୍ୟ କୌଣସି ବିକଳ୍ପ ନଥିଲା, ମୁଁ ବାଧ ହେଇ ପୁନିଆ କଥାରେ କେବଳ ମୁଣ୍ଡ ହଲେଇ ମୋର ସ୍ୱୀକୃତି ଜ୍ଞାପନ କଲି ଓ ଯନ୍ତ୍ରଚାଳିତ ପରି ପକେଟ୍‌ରୁ ଖଣ୍ଡେ ଦଶଟଙ୍କିଆ ନୋଟ୍ କାଢ଼ି ପୁନିଆ ଆଡ଼କୁ ବଢ଼େଇ ଦେଲି । ପୁନିଆ ପାଦେ ପଛକୁ ଘୁଞ୍ଚିଯାଇ କହିଲା, ''ବାବୁ ! ମୁଁ ଆପଣଙ୍କର ଏତେ ଦିନର ଚାଷୀ, ମୋର ଘର ପୋଷା କୁକୁଡ଼ାଟାଏ ପାଇଁ ମୁଁ ଆପଣଙ୍କଠୁ ଟଙ୍କା ନେବି ?'' ମୋର ପାଳଟା ପ୍ରତିବାଦ କରିବାକୁ ଧୈର୍ଯ୍ୟର ପ୍ରଚୁର ଅଭାବ ଥିଲା ସେତେବେଳେ । ଯେଉଁ ଯାନ୍ତ୍ରିକ ପ୍ରକ୍ରିୟାରେ ଟଙ୍କାଟା ପକେଟରୁ ବାହାରିଥିଲା, ଠିକ୍ ସେହିପରି ପକେଟ୍‌କୁ ଫେରିଗଲା । ପୁନିଆ ବୋଧହୁଏ ଗଲା କୁକୁଡ଼ା ତିଆରିର ତଦ୍‌ବୀର କରିବାକୁ । କହ୍ନେଇ ତ ସେଠି ରହିବାର କଥା ନୁହଁ, ସେ ଯାଇଛି ଜମିର ଦର ଓ ଗରାକ ଠିକଣା କରିବାକୁ । ତା' ହାତରେ ମାତ୍ର ଗୋଟାଏ ରାତିର ସମୟ । ଆଉ ତା'ଛଡ଼ା ଏତେ ଗୁଡ଼ାଏ ଜମି ଜଣେ ବା କିଏ କିଣିବ ? ତିନି ଚାରିଜଣ ମିଶି କିଛିଟା କିଣି ନେଇପାରନ୍ତି ହୁଏତ । ପୁଣି ରାତାରାତି ଟଙ୍କା ତ ଯୋଗାଡ଼ କରିବାକୁ ପଡ଼ିବ !

କିଏ ଗୋଟାଏ ପୁଣି ଟ୍ରାନ୍‌ଜିଷ୍ଟରର ଭଲ୍ୟୁମ୍ ବଢ଼େଇ ଦେଲା । ଘୃଣା ଓ ବିରକ୍ତିରେ ଏକାଥରକେ ଚିତ୍କାର କରି ଉଠିଲି, ''କିଏ ହୋ ତୁମେ ସେଠି ରେଡ଼ିଓ ବଜଉଚ— ସିଆଡ଼େ ନେଇ ବଜାଅ ।'' ମୋର ଉଚ୍ଚାରିତ ବକ୍ତବ୍ୟ ଯଥେଷ୍ଟ ଘୃଣାବ୍ୟଞ୍ଜକ ହେଇଥିବ ନିଶ୍ଚୟ, କାରଣ ଟ୍ରାନ୍‌ଜିଷ୍ଟରର ସ୍ୱର ସମ୍ପୂର୍ଣ୍ଣ ନୀରବ ହୋଇଗଲା ।

ରାତି ବୋଧହୁଏ ସାଢ଼େ ଆଠଟାକୁ ବଳିଯିବଣି ।

ଆମ ଚାଷ ଘରର ପିଣ୍ଡାରେ ମୁଁ ଏକୁଟିଆ ବସି ରହିଛି ଘୋର ଅନ୍ଧକାରର ଆଭରଣ ଭିତରେ, ଯେପରି ମୋର ସାତ ପୁରୁଷର ଭିଟାମାଟିର ଅନ୍ତନାଡ଼ୀ ସହିତ ମୋର ନାଭି ବିଯୁକ୍ତ ହବାର ସେଇ ଚରମ ମୁହୂର୍ତ୍ତଟିର ପ୍ରତୀକ୍ଷାରେ । ସେ କଅଣ ଏକ ଯନ୍ତ୍ରଣା ମୁହୂର୍ତ୍ତ ନା ଏକ ପରମ୍ପରା, ଏକ ଅନିବାର୍ଯ୍ୟ ବଂଶାନୁଗତ୍ୟରୁ ନିଜକୁ ଛିନ୍ନ କରି ମୁକ୍ତ ହବାର ପରମ ଉପଭୋଗ୍ୟ ମୁହୂର୍ତ୍ତ ?

ଦୂରର ଗଛପତ୍ର ସହିତ ସପ୍ତଶଯ୍ୟା ପାହାଡ଼ର ରୂପ ମଧ୍ୟ ଅନ୍ଧକାରରେ ଦେଖାଯାଉ ନାହିଁ । ବିଦାୟ, ସପ୍ତଶଯ୍ୟା, ବିଦାୟ । କାଲି ପ୍ରତ୍ୟୁଷରୁ ସେଇ ବିଦାୟ ମୁହୂର୍ତ୍ତ । ମୋର ଚାରିପଟେ ଯେମିତି ଗୋଟାଏ ଥମ୍ ଥମ୍ ଭାବ ରାତ୍ରିର ଗଭୀରତା ସହିତ ଯେମିତି ବୃଦ୍ଧି ପାଉଛି ସେହି ଅସ୍ୱସ୍ତି ଅଧିକାରୁ ଅଧିକ । ଏତେବେଳେ କିଛି ଗୋଟାଏ ହବା ଉଚିତ୍ । ଏଇ କଳୁଷିତ, ସନ୍ଦିଗ୍ଧ ଓ ଅନୁତାପଗ୍ରସ୍ତ ନୀରବତା ଯେମିତି ଗୋଟାଏ ଅତିକାୟ ପ୍ରସ୍ତର ଖଣ୍ଡ ପରି ମୋର ଛାତି ଉପରେ ମାଡ଼ି ବସିଛି ! ଓଃ ! କିଛି ଗୋଟାଏ ହବା ଉଚିତ୍ । ସମ୍ମିଳିତ କଣ୍ଠରେ ଚାଟଶାଳୀର ପିଲାମାନେ ପଣିକିଆ ଘୋଷିବା ଉଚିତ୍ । ନହେଲେ ଖୁଦୁରୁକୁଣି ଶେଷ ପାଳିରେ ଭାଲୁକୁଣୀକୁ ବିସର୍ଜନ ପାଇଁ ଉଠେଇବା ପୂର୍ବରୁ ଗାଁ'ର କୁଆଁରୀ ଝିଅମାନେ ହୁଳହୁଳି ଦେଇ ଉଠିବା ଉଚିତ୍ । ନ ହେଲେ ଗାଈମାନେ ଦୁଗ୍ଧବତୀ ସ୍ତନର ବେଦନାରେ ହମ୍ବା ରଡ଼ି ଦେଇ ସେମାନଙ୍କର ଶାବକମାନଙ୍କୁ ଡାକିବା ଉଚିତ୍ । ନ ହେଲେ, କିଛି ନ ହେଲେ, ଟାଉନ୍‌ର ସେହି ମଦ ବେପାରୀ ସୁରିଆ ଆସି ଲକ୍ଷ୍ମୀର ଚୁଟି ଧରି ଚିତ୍କାର କରି କହିବା ଉଚିତ୍, ''ବାହାର, ବାହାର ମୋ' ଘରୁ ଖାନିକି ମାଇକିନିଆ'' ଓ ତା'ର ଗୋଇଠା ମାଡ଼ରେ ଲକ୍ଷ୍ମୀ ଚିତ୍କାର କରି ଉଠିବା ଉଚିତ୍, ''ବୋଉ ଲୋ, ମରିଗଲି ଲୋ ବୋଉ...ବୋଉ...ଉ...ଉ...ଉ..''

ନା, କିଛି ଘଟୁ ନାହିଁ । କେହି କିଛି କରୁନାହିଁ—ପଦ୍‌ଲା'ପୁରର ଗାଁ ଉପରେ ପାପ ଓହଳି ରହିଛି ଓ ଠିକ୍ ଏଇ ମୁହୂର୍ତ୍ତରେ ପଦ୍‌ଲା'ପୁର ଗାଁର ଲକ୍ଷ୍ମୀ ଗୋଡ଼ କାଢ଼ିଛି ଗାଁ ଛାଡ଼ିବା ପାଇଁ ।

ମୋରି ଆଖି ଆଗରେ ମୋରି ବିଲର ଉପକଣ୍ଠବର୍ତ୍ତୀ ସ୍ଥାନମାନଙ୍କରେ ଏକ ପ୍ରାୟ ଅର୍ଦ୍ଧବୃତ୍ତାକାର ରେଖା ଉପରେ ଦିକି ଦିକି ନିଆଁ ଜଳି ଉଠିଲା । ଠିକ୍ କହୁଥିଲା କହ୍ନେଇ, 'ରନ୍ଧା ଚାଲିଛି ଚାଉଳି ନ ହେଲେ ମହୁଲୀ । ନିରନ୍ଧ୍ର ଅନ୍ଧକାର ଭିତରେ ଏଇ ଚୁଲ୍ଲୀମାନଙ୍କର ଦିକି ଦିକି ନିଆଁ ବେଶ୍ ଦେଖାଯାଉଥାଏ । ଆଗେ ଏମିତି ଜାଗାମାନଙ୍କରେ ଅନୁକୂଳ ଧାନ ନେଇ ଘରଣୀ ଥୋଉଥିଲା, ନ ହେଲେ ଚୂଲୀ ଲଗେଇ

ବିଲ ଉପରେ କ୍ଷେତବଢ଼ା କ୍ଷୀରି ରାନ୍ଧୁଥିଲା । ମୋର ମୁହୂର୍ତ୍ତକ ପାଇଁ ମନେହେଲା, ଯେପରି ପଦ୍ମଲା'ପୁର ଗାଁର ପିତାଶୁଣୀମାନେ ଆଜି ଏକା ସାଙ୍ଗରେ କଥାବାର୍ତ୍ତା ହେଇ ବାହାରିଚନ୍ତି ନିଆଁ ଜାଳି ତାଙ୍କର କଅଁଳା ଛୁଆମାନଙ୍କୁ ସେକିଦେଇ ଟିକିଏ ତାଜା କରିନବା ପାଇଁ ।

ହାତରେ ଗୋଟାଏ ମଳିନ ଲଣ୍ଠନ ଓ ମୋର ରାତ୍ରି ଭୋଜନ ଧରି କେତେବେଳେ ପୁନିଆ ଠିଆହେଇ ରହିଥିଲା, ମୋର ଖିଆଲ୍ ନାହିଁ । ମୁଁ କାଳବିଳମ୍ବ ନ କରି ଖାଇବାକୁ ବସିଲି । ଖାଉ ଖାଉ ପଚାରିଲି, 'ପୁନିଆ, ଏମିତି ଲାଭଜନକ ବ୍ୟବସାୟ ଆଜିଯାଏ କାହିଁକି କରି ନ ଥିଲେରେ ଏ ଗାଁ' ବାଲାଏ ?' ପୁନିଆ କହିଲା, ''ସରକାର ମଦ ବନ୍ଦ କରି ନଥିଲେ ଏତେ ଚଢ଼ା ଦାମ୍ ଦେଇ ମଦ କିଏ କାହିଁକି କିଣନ୍ତା ? ସରକାର ମଦ ବନ୍ଦ କରିଦବାରୁ ସବୁ ଗାଆଁରେ ଖୋଲିଯାଇଛି ଏଇ କାରଖାନା ।''

ମୁଁ ଜବାବ୍ ଦେଲି ନାହିଁ । ନୀରବରେ ଖାଇ ଚାଲିଲି ।

କେତେବେଳକେ ପୁନିଆ ତା'ପଟୁ କହିଲା, ''ବାବୁ, ମୁଁ ଶୁଣିଲି ଆପଣ ଜମି ବିକିଦବ ବୋଲି, ମତେ ଖଣ୍ଡେ ଦିଅନ୍ତେ ନାହିଁ ?'' ସେ ବି ମୋର ଅନେକ ଦିନର ଭାଗଚାଷୀ, ସେ କାହିଁକି ଆଶା ନ କରିବ ଖଣ୍ଡେ ଜମି ? ମୁଁ କହିଲି, ''ପୁନିଆ, ଆଜି ମୋର ସେ ଅବସ୍ଥା ନାହିଁ, ମୋର ଟଙ୍କା ନିହାତି ଦରକାର । ଯାହାଠାରୁ ଟଙ୍କା ବେଶି ପାଇବି, ତାକୁ ଦେଇଦେବି ।

ମୋର ଖାଇବା ସରିଯାଇଥିଲା । ପୁନିଆ ଆଉ କିଛି ଜବାବ୍ ନ ଦେଇ ବାସନତକ ଉଠେଇ ନେଇ ନୀରବରେ ଚାଲିଗଲା ।

ସେଦିନ ରାତିରେ ମତେ ପ୍ରାୟ ନିଦ ହୋଇ ନଥିଲା କହିଲେ ଚଳେ; କିନ୍ତୁ ସେଇ ଅର୍ଦ୍ଧ ସୁଷୁପ୍ତି ଓ ଜାଗରଣ ଭିତରେ ଗୋଟାଏ ଶେଷ ନିଷ୍ପତ୍ତି ନେଇଥିଲି, ମୁଁ କାଲି ପ୍ରଭାତରୁ ଏ ଗାଆଁ ତ୍ୟାଗ କରିବି । ମତେ ଯଦି ପଚିଶି ହଜାର ଟଙ୍କା ମିଳିଯାଏ, ତାହାହେଲେ ଛାଡ଼ିଦେବି ସବୁ ଜମି । ଲୋକ ଖୋଜିବା, ଅପେକ୍ଷା କରିବା, ଦର ବଢ଼େଇବାର ଧୈର୍ଯ୍ୟ ବା ଆସକ୍ତି ମୋ'ଠାରେ ଏକାନ୍ତ ଅଭାବ ହୋଇ ପଡ଼ିଥିଲା । ପଦ୍ମଲା'ପୁର ଗାଁ'ର ଆଜିର ପରିସ୍ଥିତି ମୋର ମନକୁ ଆକ୍ରାନ୍ତ ନ କରି ମୋର ସ୍ନାୟୁକୁ ଆକ୍ରାନ୍ତ କରିଥିଲା ଯେପରି ।

ଏ ଗାଁରେ ମୋର ଶେଷ ଦିନର ସକାଳ ।

ସୂର୍ଯ୍ୟ କିପରି ଗୋଟାଏ ବିକଳ ବାତଗ୍ରସ୍ତ ରୋଗୀପରି କୁଦା ମାରି ମାରି ଉପରକୁ ଉଠୁଥିଲେ । କିନ୍ତୁ ସପ୍ତଶଯ୍ୟା ପାହାଡ଼ ଠିଆ ହୋଇ ରହିଥିଲା ତା'ର ଧ୍ୟାନ ଗମ୍ଭୀର

ମୁଦ୍ରାରେ । ସପ୍ତଶଯ୍ୟାର ଉପରେ ଲଘୁ ମେଘର ସଞ୍ଚରଣ ଆଶୁ ଦୃଷ୍ଟିର ସମ୍ଭାବନାକୁ ପରାହତ କରୁଥିଲା ।

କିନ୍ତୁ କାହିଁ କହ୍ନେଇ ? ସନେଇର ବି ଦେଖା ନାହିଁ । ଖବର ପଠେଇଥିଲି, ଜବାବ୍ ମିଳିଥିଲା ଦୁଇଜଣଯାକ କାଲି ରାତିରେ ରମାନା ହେଇଛନ୍ତି ଟାଉନ୍‌କୁ । କିନ୍ତୁ ଟାଉନ୍‌କୁ କାହିଁକି ? ସେଠି କ'ଣ ଗାଁ' ଲୋକଙ୍କ ଅପେକ୍ଷା ଗ୍ରାହକର ସମ୍ଭାବନା ଉଜ୍ଜ୍ୱଳତର ? ହୋଇପାରେ କିଏ ଜାଣେ ?

ସେମାନେ ପ୍ରାୟ ଏକ ସମୟରେ ମୋ' ପାଖରେ ଆସି ପହଞ୍ଚିଥିଲେ । ସେମାନେ ସାମାନ୍ୟ କ୍ଳାନ୍ତ ମନେ ହେଉଥିଲେ ଓ ସେମାନଙ୍କର ନିଃଶ୍ୱାସ ମଧ ଖରତର ମନେ ହେଉଥିଲା । ଖୁବ୍ ସ୍ୱାଭାବିକ । ଏତେଗୁଡ଼ାଏ ବାଟ ଚାଲି ଚାଲି ଆସିଛନ୍ତି !

ହଠାତ୍ କହ୍ନେଇ କହିଲା, ‘‘ବାବୁ, ସେମିତି କେହି ଲୋକ ମିଳିଲେ ନାହିଁ । ଦେବେ ତ ମୁଁ ନେଇଯିବି ସବୁଯାକ ।’’

ମୁଁ କହ୍ନେଇକୁ ଭଲ କରି ନିରୀକ୍ଷଣ କରି ଚାହିଁବାକୁ ଚେଷ୍ଟାକଲି । ସେ' କଅଣ ଅସୁସ୍ଥ ? କୃଷକର ପରିଶ୍ରମ ଓ ଦାରିଦ୍ର୍ୟ କଅଣ ତାକୁ ଉନ୍ମାଦ କରିଦେଇଛି ?

ମୋର ଭାବଭଙ୍ଗୀରୁ କହ୍ନେଇ ବେଶ୍ ବୁଝିପାରି ଥିଲା ମୋର ଉଦ୍ଦେଶ୍ୟ, ନ ହେଲେ କାହିଁକି କହିଥା'ନ୍ତା, ‘‘ହଁ ବାବୁ, ମୁଁ ନେଇଯିବି, ପଚିଶ୍ ହଜାର ଟଙ୍କା ଦେବି ।’’

ପଚିଶ୍ ହଜାର୍ ! ମୁଁ ଆକାଶରୁ ପଡ଼ିଲି ।

କିନ୍ତୁ ପୁନିଆ ପାଖରେ ଖୁଣ୍ଟକୁ ଆଉଜି ଛିଡ଼ା ହେଇଥିଲା, କହିଲା, ‘‘ମତେ ଦେଲେ ମୁଁ ତିରିଶ୍ ହଜାର୍ ଦେବି ବାବୁ ।’’

କହ୍ନେଇ ଥରେ କଣେଇ କରି ଚାହିଁଲା ରକ୍ତବର୍ଣ୍ଣ ଆଖିରେ, ଆଉ କହିଲା, ‘‘ପୁନିଆଁ, ମୁଁ କାହାରି ନୁହଁ, ସହି ସମ୍ଭାଳି କଥା କହ—ମୁଁ ଦେବି ପଇଁତିରିଶ ହଜାର୍’’—ଯା' କହି ଠାଇକିନା କହ୍ନେଇ ପିଟିଦେଲା ତା' ଡାହାଣ ହାତକୁ ଛାତିରେ । ମତେ ବିସ୍ମିତ ହବାକୁ ସମୟ ନ ଦେଇ ପୁନିଆ ଧୀର ଅଥଚ ଦୃଢ଼ ସ୍ୱରରେ କହିଲା, ‘‘ମୁଁ ଦେବି ଚାଳିଶ୍ ହଜାର୍ ।’’

ଏଥରକ ସତକୁ ସତ ଉନ୍ମାଦ ପରି, ରାମଲୀଳା ସୁଆଙ୍ଗରେ ହନୁମାନ ପରି ଦୁଇଗୋଡ଼ ଫର୍କଟେଇ ଉପରକୁ ଡେଇଁ ପଡ଼ିଲା କହ୍ନେଇ ଓ ତଳକୁ ଆସି ନିଜର ଡାହାଣ ଜଙ୍ଘରେ ପାପୁଲି ପିଟି କହିଲା, ‘‘ଆସରେ କିଏ ଅଛ ମା' ଦୁଧ ଖାଇବା ପିଲା—ମୁଁ ଦେବି ପଚାଶ୍ ହଜାର୍—ପଚାଶ୍ ହଜାର୍ ।’’

ପୁନିଆ କିଛି ଜବାବ୍ ନ ଦେଇ ଖୁଣ୍ଟ ପାଖରୁ ଘୁଞ୍ଚିଗଲା ପଛକୁ । ଯେମିତି ଷଣ୍ଢ ଲଢ଼େଇର ଗୋଟାଏ ଷଣ୍ଢ ପାଖରୁ ଘୁଞ୍ଚି ପଳେଇଯାଏ ଆଉ ଗୋଟାଏ ଷଣ୍ଢ । ସାଙ୍ଗେ

ସାଙ୍ଗେ ଘରର କାନ୍ଥ ଆରପଟୁ ଗୋଟାଏ ହାତ ଟିକିଏ ବାହାରକୁ ଲମ୍ବି ଆସି କହ୍ନେଇ ଆଡ଼କୁ ବଢ଼େଇ ଦେଲା ଗୋଟାଏ ଅଖା ମୁଣି । ବଢ଼େଇ ଦଉଥିବା ହାତରେ ପିତଳ ଖଡୁ ସବୁ ମଜାମଜି ହେଇ ସୁନାପରି ଝଟକୁ ଥିଲା । କହ୍ନେଇ ଅଖା ମୁଣିକୁ ଆଣି ମୋ ପାଖରେ ପ୍ରାୟ କଚାଡ଼ି ଦେଲା ପରି ରଖିଦେଇ କହିଲା, ‘‘ଗଣି ନିଅନ୍ତୁ ବାବୁ ।’’

ମୁଁ ତଥାପି କିଂକର୍ତ୍ତବ୍ୟବିମୂଢ଼ ହେଇ ବସି ରହିଥିଲି । ଯେପରି ମୁଁ କୌଣସି ନାଟକ ଦେଖୁଛି ।

କହ୍ନେଇ ମୋ ପାଖକୁ ଆସିଲାବେଳେ ତା’ ପାଟିରୁ ଦେଶୀ ମହୁଲୀ ମଦର ବାସ୍ନା ବାହାରୁଥିଲା । ମୁଁ କେବଳ କହିଲି, ‘‘କହ୍ନେଇ, ତୁ ବି...’’ କହ୍ନେଇ ଜବାବ୍ ଦବାକୁ ଡେରି କରି ନାହିଁ, କହିଲା, ‘‘ବାବୁ, ଗାଁଟା ଯେତେବେଳେ ପାତାଳକୁ ଗଲା, ଆଉ ମୁଁ କାହିଁକି ଏକୁଟିଆ ବାଦ୍ ଯାଆନ୍ତି ?’’

ମୁଁ କିଛି ଜବାବ୍ ଦେଲି ନାହିଁ, କେବଳ କହ୍ନେଇ ଆଡ଼କୁ ନ ଚାହିଁ କହିଲି, ‘‘ଚାଲ, ଗୋଟାଏ ବେଳେ ସବ୍‌ରେଜିଷ୍ଟ୍ରାର ଅଫିସ୍‌କୁ । ମୁଁ ଆଜି ରେଜିଷ୍ଟ୍ରି କରି ଦେଇ ସିଆଡ଼େ ସିଆଡ଼େ ଘରକୁ ଯିବି ।’’

ପୁନିଆ ଚାଲିଯାଇଥିଲା । କହ୍ନେଇ ମଧ ଚାଲିଗଲା । ପୁଣିଥରେ ସବୁ ଯେମିତି ଶୂନ୍‌ଶାନ୍ ହୋଇଗଲା । ଯେପରି ମନୁଷ୍ୟଶୂନ୍ୟ ହେଇଗଲା ସାରା ପଦ୍‌ଲା’ପୁର ଗାଆଁଟା ।

ସପ୍ତଶଯ୍ୟାର ଚୂଡ଼ାରେ ମେଘମାନ କୃଷ୍ଣବର୍ଣ୍ଣ ହେଇ ଉଠିଛନ୍ତି । ଆକାଶରେ ଗୋଟାଏ ଦୁଇଟା କି ଚଢ଼େଇ ଚକ୍‌କର୍ ଦେଇ ଘୁରି ବୁଲୁଛନ୍ତି । ମୁଁ ଉଠିଲି । ଗାଁ ଦାଣ୍ଡକୁ ଗୋଡ଼ ବଢ଼େଇଲି । ପାଖ ଘର ପିଣ୍ଡାରେ ଆଡ଼ ହେଇ ଠିଆ ହେଇ ରହିଥିଲା ଲକ୍ଷ୍ମୀ । ତା’ର ଅଣ୍ଟା ଆଉ ଗୋଡ଼ ଥିଲା ଖାଲି ।

ମୁଁ ଏକମୁହାଁ ହେଇ ଚାଲିଲି । ମୋ ସହିତ ଆଉ କାହାର ଯିବାର ପ୍ରୟୋଜନ ନଥିଲା । ମୁଁ ଜଣେ ବିଦେଶୀ । ପାଦ ଗଣି ଗଣି ଯାଉଥିଲି । ହଠାତ୍ ଦେଖିଲି ଗୋଟାଏ ଗଳା ମଚ୍‌ମଚ୍ ଏକୁଟିଆ ମଇଁଷି ଝୁଲିଝୁଲି ଗାଁ ଭିତରକୁ ପଶୁଚି । ମଇଁଷି ଉପରେ କିଏ ଜଣେ ବସିଛି ନା କଅଣ ? ମୁଁ ଠିକ୍ ଦେଖିପାରୁ ନାହିଁ, ମୋର ଆଖିକୁ ଟିକିଏ ଜଲ୍‌ଜାଲୁଆ ଦେଖାଯାଉଛି ବୋଧହୁଏ !

*(‘ଗଛ ତରଙ୍ଗ’, ଶାରଦୀୟ ସଂଖ୍ୟା : ୧୯୭୯)*



# ଦିବ୍ୟଦୃଷ୍ଟି

ଭଜମନବାବୁ ଜଣେ ସାଧାରଣ ସାଂସାରିକ ବ୍ୟକ୍ତି ଥିଲେ । ଯାହା ସଚରାଚର ହୋଇଥାଏ ସେ ତାଙ୍କ ସ୍ତ୍ରୀଙ୍କ ସହିତ ଯୁଗପତ୍ ପ୍ରେମ ଓ ବାଦାନୁବାଦ କରୁଥିଲେ । ତିନୋଟି ସନ୍ତାନ ଓ ଗୋଟିଏ କନ୍ୟା ନେଇ ସେ ନିଜକୁ ଯଥେଷ୍ଟ ସୁଖୀ ମନେ କରୁଥିଲେ ଓ ସନ୍ତୁଷ୍ଟ ମନରେ ତାଙ୍କର ଜୀବନ-ପୋତ ସଂସାର-ବାରିଧି ଧୀର ମନ୍ଥର ଗତିରେ ଅତିକ୍ରମ କରି ଚାଲିଥିଲା । ମଧ୍ୟ ବୟସରେ ଯାହା ହୁଏ—ଭଜମନ ବାବୁଙ୍କ ଦେହରେ ମଧ୍ୟବୟସୋଚିତ ସ୍ଥିତି ମଧ୍ୟ ଦେଖା ଦେଇଥିଲା । ଆଉ ଅଳ୍ପ କେତେଟା ବର୍ଷ ପାରି ହୋଇଗଲେ ଝିଅର ବାହାଘର ସରିଯିବ, ପୁଅମାନେ ନିଜ ଗୋଡ଼ରେ ଠିଆ ହୋଇଯିବେ, ଆଉ ଯାହା କିଛି ପେନ୍‌ସନ୍ ମିଳିବ, ସେଥିରେ ଭଜମନ ବାବୁ ଓ ତାଙ୍କର ସ୍ତ୍ରୀ ଚାରୁଶୀଳା ଦେବୀ ବେଶ୍ ଆନନ୍ଦରେ ଅବଶିଷ୍ଟ ସମୟତକ କଟେଇ ଦେବେ । ମଝିରେ ମଝିରେ ବିଶ୍ରମ୍ଭାଳାପ କଲାବେଳେ ଭଜମନବାବୁ କହିବାର ଶୁଣାଯାଏ, ପିଲାମାନେ ପାରିଯିବା ପରେ ଆଉ ପରୱାୟ୍ କଅଣ ? ତେଣିକି ତମେ ଆଉ ମୁଁ । ଯାହାର ଆଗେ ଡାକରା ଆସିଲା ସିଏ ଚାଲିଲା ।

ଭଜମନ ବାବୁ ସରକାରୀ ଦପ୍ତରରେ ଜଣେ ଆକାଉଣ୍ଟାଣ୍ଟ । ସବୁବେଳେ ପଇସାପତ୍ର ହିସାବ ନିକାଶ ନେଇ ଘଣ୍ଟାଘଣ୍ଟି । ଅନେକ କାମର ଖଟଣି । ଏତେ କାମ ଯେ ଦପ୍ତରରୁ ଫେରିଲାବେଳକୁ ପ୍ରାୟ ସନ୍ଧ୍ୟା ହୋଇଯାଇଥାଏ । ବାଟରେ ପନିପରିବା ନହେଲେ କେଉଁ ଦିନ କେଉଁ ଦିନ ମାଛ ମାଂସ ଟିକେ କିଣି ଘରକୁ ଫେରିଲାବେଳକୁ ଘରେ ଆଲୁଅ ଜଳିସାରିଥାଏ ଓ ରାତ୍ରି ଭୋଜନର ଆୟୋଜନରେ ଚାରୁଶୀଳା ଦେବୀ ବ୍ୟସ୍ତ ଥାଆନ୍ତି । ଚାରୁଶୀଳା ଦେବୀ ଯେତେବେଳେ ଏଇଟା ବାଟୁଥା'ନ୍ତି, ସେଇଟା କାଟୁଥା'ନ୍ତି ନହେଲେ ଫୁଟଣ ପକେଇ ଛୁଙ୍କ ବଘାରୁ ଥାଆନ୍ତି, ଏଇସବୁ କାର୍ଯ୍ୟଜନିତ ବିଭିନ୍ନ ସ୍ୱର ଓ ଧ୍ୱନି ମାଧ୍ୟମରେ ମଧ୍ୟ ଭଜମନ ବାବୁଙ୍କର ଅନୁନାସିକ ସ୍ୱରଟି ତଥାପି ଶୁଣାଯାଉଥାଏ । ସେଇ ଲହରେଇ ଲହରେଇ, ନିଠେଇ ନିଠେଇ କେତେବେଳେ ଅଭିଯୋଗ, କେତେବେଳେ ହତାଶ ଓ ପୁଣି କେତେବେଳେ କରୁଣ ଭାବରେ ଭଜମନ ବାବୁ ଯାହା ଏକଟଣା କହିଯାଉଥା'ନ୍ତି ତାହାର ସାରାଂଶ ପ୍ରତିଦିନ ପ୍ରାୟ ଏକା । କାମର ଅନେକ ଭିଡ଼ ପଡୁଚି, ବଜାର ଦର ବଢୁଚି, ବୟସ ବଢୁଚି ଆଉ ଡାହାଣ ଆଣ୍ଠୁର ବାତଟା ମଝିରେ ମଝିରେ ଭାରି କଷ୍ଟ ଦଉଚି ଏବଂ ସର୍ବ ଶେଷରେ ଦ୍ୱିତୀୟ

ସନ୍ତାନ ରମେଶ ମୁଣ୍ଡରେ ଯେତେ ବାଳ ରଖିଚି, ସେଟା ତାଙ୍କୁ ମୋଟେ ଭଲ ଦେଖାଯାଉ ନାହିଁ ।

ସେଦିନ ସନ୍ଧ୍ୟା ବେଳେ ଖଣ୍ଡେ କନା ଆରାମ୍ ଚୌକିରେ ଆଉଜି ପଡ଼ି ଭଜମନବାବୁ ରବିବାରର କ୍ଲାନ୍ତି, ନିଃସଙ୍ଗ ଅପରାହ୍ନଟିକି ଉପଭୋଗ କରୁଥିଲେ । ତାଙ୍କର ସ୍ତ୍ରୀ ଯେତେବେଳେ ଖଣ୍ଡେ ଖଟୁଲୀ ଟାଣିଆଣି ତାଙ୍କ ପାଖରେ ବସିଲେ, ସେତେବେଳେ ଭଜମନବାବୁ ତାଙ୍କୁ ହଠାତ୍ କହିଲେ ଯେ ସେଇ ଯୋଉ ପିଲାଟା ସାଙ୍ଗରେ ଆମ କୁନୀର ବାହାଘର କଥା ଉଠିଚି, ସେଠି ବାହାଘର କରିବା ଠିକ୍ ହବ ନାହିଁ । ରାଉର୍‌କେଲା କାହିଁ ବାଟ । ଏତେ ବାଟରେ ଝିଅ ଦେଲେ ବର୍ଷକ ଭିତରେ ବି ଥରେ ଦେଖା ହବା ସମ୍ଭବ ନୁହଁ । ଏକଥା ଶୁଣି ଚାରୁଶୀଳା ଦେବୀ ଏକା ଥରକେ ହତଭମ୍ଭ ହେଇଗଲେ । ବିସ୍ମୟରେ ତାଙ୍କର ଆଖି ଦୁଇଟା କୋଟର ଛାଡ଼ି ବାହାରକୁ ଚାଲି ଆସିବାର ଉପକ୍ରମ, "ଏ ମାଆ ! ତମକୁ ଏକଥା କିଏ କହିଲା ? ମୁଁ ତ ଆଜି ସକାଳୁ ଅଭୟ ବାବୁଙ୍କ ଘରୁ ଏ ପ୍ରସ୍ତାବ ଶୁଣିଲି । ତମେ କେମିତି ଜାଣିଲ ?" ଭଜମନବାବୁ କେବଳ ସାମାନ୍ୟ ମୁରୁକି ହସା ଦେଇ ପୂର୍ବବତ୍ ନିର୍ଲିପ୍ତ ଓ ନିର୍ବିକାର ରହି କହିଲେ, "ମୋର ହଠାତ୍ ଆଜି ସକାଳୁ ମନେ ହେଲା ଯେ ତମେ ଅଭୟବାବୁଙ୍କ ଘରକୁ ଯାଇଚ ଏବଂ ସେତେବେଳେ ଅଭୟବାବୁଙ୍କ ସ୍ତ୍ରୀ ଗୋଟାଏ ବଡ଼ ବନ୍ଧା କୋବି ଧରି ରୋଷେଇ ଘରେ ପନିକି ଉପରେ କସରତ୍ କରୁଛନ୍ତି । ଆଉ ତା'ପରେ ତମ ଦିହିଁଙ୍କ ଭିତରେ ଯାହା ଯାହା କଥାବାର୍ତ୍ତା ହେଲା, ମୁଁ ସବୁ ଶୁଣିଚି ।" ଚାରୁଶୀଳା ଦେବୀ ଏପରି ସ୍ତମ୍ଭିତ ହୋଇଗଲେ ଯେ ପୂରା ଦୁଇ ମିନିଟ୍ ଧରି ତାଙ୍କ ମୁହଁରୁ କୌଣସି ବାକ୍ୟର ସ୍ଫୁରଣ ହେଲା ନାହିଁ ।

ଭଜମନ ବାବୁଙ୍କର ଏଇ ଆକସ୍ମିକ ଦିବ୍ୟଦୃଷ୍ଟି ପ୍ରାପ୍ତି ତାଙ୍କ ପରିବାରର ଲୋକଙ୍କୁ ଆଶ୍ଚର୍ଯ୍ୟ କରିବା ସଙ୍ଗେ ସଙ୍ଗେ ନିଜେ ଭଜମନବାବୁ ତାଙ୍କ ଏଇ ପ୍ରାପ୍ତିର ସାଫଲ୍ୟ ବାରମ୍ବାର ପରୀକ୍ଷା କରିବାକୁ ଲାଗିଲେ । ଆଶ୍ଚର୍ଯ୍ୟ ! ବାଉନ ପଟ ତାଆସକୁ ପିଠି ପଟୁ ଗୋଟି ଗୋଟି କରି କହି ଦେଇଗଲେ ନିର୍ଭୁଲ୍ ଭାବରେ । ଝିଅର ସାହିତ୍ୟ ବହିର ତେପନ ପୃଷ୍ଠାର ପ୍ରଥମ ପାରାର ଶେଷ ଶବ୍ଦଟି ଯେ "ଯଥାର୍ଥ" ଏହା ମଧ୍ୟ ନିର୍ଭୁଲ ଭାବରେ କହିଦେଲେ । ଚାରୁଶୀଳା ଦେବୀଙ୍କର ଭାଇ ଯେ ଆଜି ରାତିରେ ପୁରୀ ହାଉଡ଼ା ଏକ୍‌ସପ୍ରେସ୍ ଧରିଲେ ଓ କାଲି ସେ ଆସି ଏଠାରେ ପହଞ୍ଚୁଛନ୍ତି, ଏ ଭବିଷ୍ୟତ ବାଣୀ ମଧ୍ୟ ସତ୍ୟ ହେଲା । କିପରି ଜାଣୁଛନ୍ତି, ଏ କଥା ଯଦି କିଏ ପଚାରେ ତାହାହେଲେ ଭଜମନବାବୁଙ୍କର ସେଇ ଗୋଟାଏ ଉତ୍ତର, "ମୁଁ ଦେଖି ପାରୁଚି, ଆଉ ତା'ପରେ ଜାଣିବାରେ ଅସୁବିଧା କ'ଣ ?

ଦାବାଗ୍ନି ପ୍ରାୟ ଏ ସମ୍ବାଦ ପ୍ରଥମେ ଭଜମନ ବାବୁଙ୍କର ପ୍ରତିବେଶୀ ଓ ତତ୍‌ପରେ ସମସ୍ତ ସହରରେ ଖେଳିଗଲା । ସକାଳୁ ସଞ୍ଜଯାଏ ଭଜମନ ବାବୁଙ୍କ ଘରେ ଶହ ଶହ ଲୋକଙ୍କର ଯିବା ଆସିବା । କାହାର କୌତୂହଳ, କାହାର ଅବିଶ୍ୱାସ, କିଏ ବା ମଜା ଦେଖିବା ପାଇଁ । ଆଉ ଥୋକେ ଲୋକ ଆସିଲେ, କାହାର ଗାଈ ହଜିଚି, କାହାର ଟଙ୍କା ଚୋରି ଯାଇଚି ନହେଲେ କାହାର ପ୍ରମୋଶନ ବିଳମ୍ବ ହୋଇଯାଇଚି । ଭଜମନ ବାବୁ ଠିକ୍ ଠିକ୍ ସମସ୍ତଙ୍କୁ ଜବାବ୍ ଦଉଛନ୍ତି । ଦପ୍ତର ଯିବା ପ୍ରାୟ ବନ୍ଦ, ଲୋକେ ଛାଡ଼ିଲେ ତ ଯିବେ । ତାଛଡ଼ା ଭଜମନ ବାବୁଙ୍କର ହାକିମଠୁ ଆରମ୍ଭ କରି ତାଙ୍କ ପିଅନ୍ ପର୍ଯ୍ୟନ୍ତ ତାଙ୍କରି ଘରେ । ଯା' ଉପରେ ବିଭିନ୍ନ ପ୍ରକାର ଜଳ୍ପନା କଳ୍ପନା ମଧ ଚାଲିଛି । କିଏ କହୁଛି, ଏଥର ଭଜମନ ବାବୁ କୋଟିପତି ହୋଇଯିବେ—କିଏ କହୁଛି ସରକାର ଦପ୍ତରରେ ଗୋଟାଏ ବଡ଼ ପାହ୍ୟା ପାଇଯିବେ—ଆଉ ପୁଣି କିଏ କହୁଛି, ଆରେ ଯା'ମ, କାଳିସୀ ଲାଗିଚି, ଏଇ ଶନିବାରଟା କଟିଯାଉ, ସବୁ ଶେଷ । ଭବିଷ୍ୟତ ବାଣୀ ନ ଫବିଷ୍ୟତ ବାଣୀ ପ୍ରାୟ ସାତଦିନ କଟିଗଲାଣି । ଭଜମନ ବାବୁଙ୍କର ଦିବ୍ୟଦୃଷ୍ଟି ତଥାପି ଅମ୍ଳାନ ରହିଚି । କେହି କେହି ଲୋକ ଫୁଲଚନ୍ଦନ ଘିଅଦୀପ କର୍ପୂରର ଆୟୋଜନ ଆରମ୍ଭ କରି ଦେଲେଣି । ସରକାରଙ୍କ କାନକୁ ଖବର ଯାଇ ପୁଲିସ୍ ଗୁପ୍ତଚର ମୁତୟନ ହୋଇଗଲେଣି । ଭଜମନ ବାବୁଙ୍କର କାଜୁଆଲ୍ ଲିଭ୍ ସରି ଆରନ୍‌ଡ୍ ଲିଭ୍ ନିଆଗଲାଣି । ଖାଲି ଗଣ୍ଡାଏ ଖାଇଦେଇ ଭଜମନବାବୁ ଆସି ବସୁଛନ୍ତି ଚୌକି ଉପରେ ଆଉ ତା'ପରେ ଚାଲିଛି ଅସଂଖ୍ୟ ପ୍ରଶ୍ନ ଓ ତା'ର ଜବାବ ସୁଆଲ ।

କିନ୍ତୁ ଭଜମନବାବୁ ବସିଛନ୍ତି ଜଣେ ସ୍ଥିତପ୍ରଜ୍ଞ ପରି । ଲୋକଙ୍କର ପ୍ରଶଂସା ବା ନିନ୍ଦା ଆଡ଼େ ତାଙ୍କର ଏତେ ଟିକିଏ ମଧ ଭ୍ରୁକ୍ଷେପ ନାହିଁ । ଏଇ ନୂତନ ଶକ୍ତି ପ୍ରାପ୍ତି ପରେ ତାଙ୍କର ଭବିଷ୍ୟତ ଯେ କଅଣ ହବ, ସେ କଥା ମଧ ସେ ଚିନ୍ତା କରି ନାହାନ୍ତି ବା ଚିନ୍ତା କରିବାକୁ ସମୟ କରିପାରି ନାହାନ୍ତି । ତାଙ୍କର ସ୍ତ୍ରୀ ଓ ପିଲାମାନେ ଏକ ପ୍ରକାର ମୁହ୍ୟମାନ ହେଇପଡ଼ିଛନ୍ତି କହିଲେ ଚଳେ । ତାଙ୍କର ସ୍ତ୍ରୀ ଚାରୁଶୀଳା ଦେବୀ କେତେବେଳେ ଭାବୁଛନ୍ତି ଯେ ଭଜମନ ବାବୁଙ୍କର ଏଇ ନୂତନ ଶକ୍ତିର ବିନିଯୋଗ ଫଳରେ ହଠାତ୍ ତାଙ୍କର ଆର୍ଥିକ ଦୁରବସ୍ଥାର ପୂର୍ଣ୍ଣଚ୍ଛେଦ ପଡ଼ିଲା । କିନ୍ତୁ ପୁଣି ଯେତେବେଳେ ତାଙ୍କ ମନକୁ ଆସୁଚି ଯେ ଏତାଦୃଶ୍ୟ ଅଲୌକିକ ଶକ୍ତି ପ୍ରାପ୍ତି ହୋଇଥିବା ଲୋକମାନେ ବେଶି ଦିନ ବଞ୍ଚନ୍ତି ନାହିଁ, ସେ ଉତ୍କଣ୍ଠା ଓ ଆଶଙ୍କାରେ ମ୍ରିୟମାଣ ହୋଇ ପଡ଼ିଛନ୍ତି ।

ଆଗନ୍ତୁକମାନଙ୍କର ସଂଖ୍ୟା ଦିନକୁ ଦିନ ଉତ୍ତରୋତ୍ତର ବଢ଼ିବାରେ ଲାଗିଛି । ତାଙ୍କର ଘର ପାଖଦେଇ ଯାଇଥିବା ରାସ୍ତାରୁ ଯେଉଁ ରାସ୍ତାଟି ଡାକ୍ତରଖାନା ଆଡ଼କୁ ଓ ବିପରୀତ ଦିଗରେ ମୁନିସିପାଲିଟି ଅଫିସ୍ ଆଡ଼କୁ ଭାଙ୍ଗିଯାଇଛି, ସେଠି ଖଣ୍ଡେ କାଠ

ଢାବଲ ପକେଇ, ନାଲିଟୋପି ପିନ୍ଧି ପୁଲିସ୍ କନ୍‌ଷ୍ଟେବଲ୍ ଯାନ ବାହାନ ନିୟନ୍ତଣ ଆରମ୍ଭ କଲାଣି । ଜମିଥିବା ଓ ପ୍ରତି ମୁହୂର୍ତ୍ତରେ ଜମୁଥିବା ଲୋକମାନେ ସେମାନଙ୍କର ନିଜ ନିଜର ସୁବିଧା ପାଇଁ ଏକ ଆତ୍ମ ନିୟନ୍ତ୍ରଣ ବ୍ୟବସ୍ଥା ଆରମ୍ଭ କଲେଣି । ଲୋକମାନେ ଶୃଙ୍ଖଳାବଦ୍ଧ ହେଇ କ୍ୟୁ'ରେ ଠିଆ ହେଉଛନ୍ତି, ଭିତରକୁ ଯିବା ରାସ୍ତା ଓ ବାହାରିବା ରାସ୍ତା ସ୍ୱତନ୍ତ୍ର-ଓ କେହି ଲୋକ ଦୁଇ ମିନିଟ୍‌ରୁ ଅଧିକ ସମୟ ରହିପାରିବେ ନାହିଁ ।

ବିଦ୍ୟୁତ୍ ବେଗରେ ସହରରେ ପ୍ରତିଦିନ ଯେଉଁ ସମ୍ବାଦ ପ୍ରଚାରିତ ଓ ଆଲୋଚିତ ହେଉଛି, ସେଥିମଧ୍ୟରୁ କେତେ ସତ, କେତେ ମିଛ ବା କେତେ ଗୁଜବ, ତାହା ନିର୍ଣ୍ଣୟ କରିବା ସମ୍ଭବ ନୁହେଁ । ବିଭିନ୍ନ ସମ୍ବାଦପତ୍ରର ପ୍ରତିନିଧିମାନେ ଭଜମନବାବୁଙ୍କ ଘର ଆଗରେ ଛାଉଣି ପକେଇ ବସିରହିଛନ୍ତି ଭଜମନବାବୁ କେଉଁ ଠାକୁରଙ୍କର ଭକ୍ତ ବା କେଉଁ ବାବାଙ୍କର ଶିଷ୍ୟ, ଏହା ସଠିକ ଭାବରେ ନିର୍ଣ୍ଣୟ କରିବା ପାଇଁ ବିଭିନ୍ନ ଗୋଷ୍ଠୀଙ୍କ ମଧ୍ୟରେ ପ୍ରବଳ ଦ୍ୱନ୍ଦର ସୂତ୍ରପାତ ହେଲାଣି ଏବଂ ଏହାର ସମାଧାନ ପାଇଁ ବିଭିନ୍ନ ଗୋଷ୍ଠୀ ପକ୍ଷରୁ ପ୍ରତିନିଧିମାନେ ଯାଇ ଭଜମନବାବୁଙ୍କ ତରଫରୁ ଏକ 'ପ୍ରେସ୍ ବିଜ୍ଞପ୍ତି' ପାଇଁ ତାଙ୍କ ଉପରେ ଚାପ ପକେଇବାକୁ ଆରମ୍ଭ କଲେଣି । ଦିନେ ଏହିପରି ଏକ ଅବସ୍ଥାରେ ଭଜମନବାବୁ ଟିକିଏ ମୁରୁକି ହସି କହିଲେ; ମୁଁ କେବେ କୌଣସି ଗୋଷ୍ଠୀ ଭିତରେ ନଥିଲି, ଆଉ ତା' ଛଡ଼ା ଆପଣ ଯେଉଁ କାଗଜ ପାଇଁ ବିବୃତି ସଂଗ୍ରହ କରିବାକୁ ଆସିଛନ୍ତି, ସେ କାଗଜରେ ମୋର ବିବୃତି ବାହାରି ପାରିବ ନାହିଁ । କାରଣ ମୁଁ ଜାଣିପାରୁଛି ଯେ ଶ୍ରମିକ ଧର୍ମଘଟ ଫଳରେ ସେ କାଗଜ ଅନିର୍ଦ୍ଦିଷ୍ଟ କାଳପାଇଁ ବନ୍ଦ ହେଇଯିବ । ସତକୁ ସତ ପରବର୍ତ୍ତୀ କାଳରେ ତାହାହିଁ ହେଲା । କିନ୍ତୁ ପ୍ରତିଦ୍ୱନ୍ଦ୍ୱୀ ସମ୍ବାଦପତ୍ର ଗୁଡ଼ିକରେ ଭଜମନ ବାବୁଙ୍କର ଉକ୍ତିକୁ ଏକ ଭବିଷ୍ୟତ ବାଣୀ ବୋଲି କୁହା ନଯାଇ ଏକ ଅଭିଶାପ ବୋଲି ବର୍ଣ୍ଣନା କରାଯାଇଥିଲା ।

ଭଜମନ ବାବୁଙ୍କର ଘରଠାରେ ଘଟୁଥିବା ପ୍ରତିଟି ଘଟଣାର ଏକ ବିସ୍ତୃତ ରିପୋର୍ଟର କୋଡ଼ିଏ ପଚିଶି କିତା କରାଯାଇ ମନ୍ତ୍ରୀ ଓ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀମାନଙ୍କ ପାଖକୁ ପ୍ରତ୍ୟେକ ଦିନ ପଠାଯାଉଥାଏ । ଲୋକସମ୍ପର୍କ ବିଭାଗର ମୁଖ୍ୟ ଡାଇରେକ୍ଟର ଏହାର ଦାୟିତ୍ୱରେ ଥା'ନ୍ତି । ଭଜମନବାବୁଙ୍କର ସ୍ୱାସ୍ଥ୍ୟର ନିରାପତ୍ତା ପାଇଁ ଏକ ସରକାରୀ ବୁଲେଟିନ୍ ଦ୍ୱାରା ସମ୍ବାଦପତ୍ର ଜରିଆରେ ଏବଂ ମାଇକ୍ ଜରିଆରେ ଘୋଷଣା କରାଗଲା ଯେ ସନ୍ଧ୍ୟା ଛଅଟା ପରେ କେହି ଲୋକ ଭଜମନବାବୁଙ୍କ ଘର ପାଖକୁ ଯାଇ ପାରିବେ ନାହିଁ । ସତର୍କ ପୁଲିସ୍ ମଧ୍ୟ ସେଥିପାଇଁ ମୁତୟନ କରାଗଲା ।

ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଗଲେ ଦେଖାଗଲା ଯେ ଭଜମନବାବୁଙ୍କ ଘରପାଖ ଏକାବେଳକେ ଶୂନ୍‌ଶାନ୍, କିନ୍ତୁ ୟା ମଧ୍ୟ ଦେଖାଗଲା ଯେ ସନ୍ଧ୍ୟା ପରେ, ଖୁବ୍ ବଡ଼ ବଡ଼ ଓ ସୁନ୍ଦର ସୁନ୍ଦର ମଟରଗାଡ଼ି ସବୁ ତାଙ୍କ ଦୁଆରେ ଠିଆ ହୁଏ ଏବଂ କିଛି ସମୟ ପରେ ଚାଲିଯାଏ । ଏଇ ମଟରଗାଡ଼ିର ସ୍ରୋତ ଅବିଶ୍ରାନ୍ତ ଚାଲିଥାଏ ପ୍ରାୟ ରାତି ବାରଟା ପର୍ଯ୍ୟନ୍ତ । ମଟର ଗାଡ଼ିରୁ କେଉଁମାନେ ଓହ୍ଲାନ୍ତି, ତାହା ଠିକ୍ ଜଣାପଡ଼େ ନାହିଁ । ହୋଇପାରେ, ଏ ସରକାରୀ ବ୍ୟବସ୍ଥା କରାଯାଇଛି ଭଜମନ ବାବୁଙ୍କର ସ୍ୱାସ୍ଥ୍ୟର ତଦାରଖ କରିବା ପାଇଁ ।

ଦିନେ ଜନଗହଳି କମିଯିବା ପରେ ଭଜମନବାବୁଙ୍କ ସ୍ତ୍ରୀ ଭଜମନବାବୁଙ୍କୁ କହିଲେ ଯେ ଯାହାସବୁ ଘଟିଯାଉଛି, ସେ ତାକୁ ସବୁ ସମ୍ୟକ୍ ଭାବରେ ଧାରଣା କରି ପାରୁ ନାହାନ୍ତି । କିନ୍ତୁ ଭଜମନବାବୁ ଚାରୁଶୀଳାଙ୍କୁ ଆଲିଙ୍ଗନ କରି କହିଲେ, ''ତମେ ଏତେ ବ୍ୟସ୍ତ ହେଇ ପଡୁଚ କାହିଁକି ? ଏସବୁ ବେଶୀଦିନ ଚାଲିବ ନାହିଁ ।'' କିନ୍ତୁ କାହିଁକି ଓ କିପରି ବେଶି ଦିନ ଚାଲିବ ନାହିଁ ବୁଝି ନପାରି ସେ ସ୍ୱାମୀଙ୍କ ଆଡ଼କୁ କେବଳ ଚାହିଁରହିଲେ । ତାଙ୍କର ଚାହାଣୀରେ ଏକ ଗଭୀର ଅନିଶ୍ଚିତତା ଓ ଆଶଙ୍କାର ଏକ ସୁସ୍ପଷ୍ଟ ସ୍ୱାକ୍ଷର ଥିଲା । ଭଜମନବାବୁ କହିଲେ, ''ପୃଥିବୀରେ ଅନେକ କଥା ଅଛି, ଯାହା ମଣିଷର ଜାଣିବା ଉଚିତ୍ ନୁହେଁ, କିନ୍ତୁ କଅଣ କରାଯାଏ ! ଅଭିଶାପ ଯେତେବେଳେ ଆସେ ଠିକ୍ ଏହିପରି ଭାବରେ ଆସେ ।'' ତାଙ୍କ ସ୍ତ୍ରୀ ପୁଣି ପଚାରିଲେ, ''ଆଚ୍ଛା ଶୁଣ, ତମେ କ'ଣ ଖାଲି ଭବିଷ୍ୟତ ଜାଣିପାରୁଚ ନା ଅତୀତ ମଧ୍ୟ ?'' ଭଜମନ ବାବୁ କହିଲେ, ''ଭୂତ ଓ ଭବିଷ୍ୟତ !'' ଚାରୁଶୀଳା ଦେବୀଙ୍କର ସେଦିନର ନିଦ୍ରା ଅତିମାତ୍ରାରେ ବ୍ୟାହତ ହୋଇଥିଲା । ତାଙ୍କର ବିନିଦ୍ର ରଜନୀ କଟିଥିଲା କେବଳ ତାଙ୍କ ନିଜର ଅତୀତ କଥା ଭାବି ଭାବି ।

ଭଜମନବାବୁଙ୍କୁ ଅକସ୍ମାତ୍ ଡାକରା ପଡ଼ିଲା ଏକ ଉଚ୍ଚ ପାହ୍ୟାର ସରକାରୀ କର୍ମଚାରୀଙ୍କର ବୈଠକକୁ । ସେଠି ଭଜମନବାବୁ ଯେଉଁ ସ୍ଫୀତ-ଉଦର, ଗମ୍ଭୀର-ମୁଖ ଓ ସତର୍କ ଦୃଷ୍ଟିରୁ ଲୋକମାନଙ୍କୁ ଦେଖିଲେ, ସେ ଲୋକମାନଙ୍କୁ ଭଜମନବାବୁ ତାଙ୍କ ଦୀର୍ଘ ୨୦ ବର୍ଷ ଚାକିରୀ ଜୀବନର ସମୟ ଭିତରେ ଥରେ ହେଲେ ଦେଖିବାକୁ ସୁଯୋଗ ପାଇ ନଥିଲେ । ସମସ୍ତେ ଚୁପ୍‌ଚାପ ବସିଛନ୍ତି । ହଠାତ୍ ଜଣେ ତୀକ୍ଷ୍ଣ ନାସା, ବୁଦ୍ଧିଦୀପ୍ତ ଚକ୍ଷୁ ସମ୍ପନ୍ନ ବ୍ୟକ୍ତି ପ୍ରଶ୍ନ କଲେ । ପ୍ରଶ୍ନ ତ ନୁହେଁ ଯେପରି ଗୋଟାଏ ଗୁଳି– 'ଆପଣଙ୍କ ନାଆଁ ଭଜମନ ସାମନ୍ତରାୟ ?''

–'ଆଜ୍ଞା, ହଁ ।' ଆସିଲା ଛୋଟ ଉତ୍ତରଟିଏ ।

–'ଆପଣଙ୍କ ବିଷୟରେ ଯାହାସବୁ ଶୁଣାଯାଉଛି, ତାହା ସବୁ କଅଣ ସତ ?'

—"ହଁ ସତ, ମୁଁ ପ୍ରକୃତରେ ଦେଖି ପାରୁଚି ।"

—"କହି ପାରିବେ ମୋ ରିଭଲ୍‌ଭର୍ ଭିତର କେତେଟା ଗୁଳି ଅଛି ?"

—"ଆଜ୍ଞା ପାଞ୍ଚଟା ଗୁଳି ।"

ସନ୍ତୋଷର ହସ ହସିଲେ ଭଦ୍ରବ୍ୟକ୍ତି । "ଏଇ ଦେଖନ୍ତୁ, ରିଭଲ୍‌ଭର୍‌ର ଛଅଟା ଚେମ୍ବରରେ ପୁରା ଛଅ ରାଉଣ୍ଡ୍ ଗୁଳି ଅଛି ।"

—ସାର୍ ନା । ଆଜି ସକାଳେ ଆପଣଙ୍କ ବଡ଼ ପୁଅ ଗୋଟାଏ ଚଢ଼େଇ ମାରିବାକୁ ଯାଇ ଗୋଟାଏ ରାଉଣ୍ଡ୍ ଗୁଳି ଖତମ୍ କରି ଦେଇଚି ।"

ସତକୁ ସତ ପିସ୍ତଲ ଖୋଲି ଦେଖାଗଲା ମାତ୍ର ପାଞ୍ଚଟା ଗୁଳି ଅଛି । ସମବେତ କର୍ମଚାରୀ ସମସ୍ତେ ହତବାକ୍ ।

ଆଉ ଜଣେ ସରକାରୀ କର୍ମଚାରୀ ପଚାରିଲେ, "ଆଉ ତିନିଦିନ ପରେ ବଜେଟ୍ ପେଶ୍ କରାଯିବ । କେଉଁ କେଉଁ ଜିନିଷ ଉପରେ ଅଧିକା ଟ୍ୟାକ୍ସ୍ ବସିଛି କହିପାରିବେ ?"

ଭଜମନ ବାବୁ କହିଲେ, "ଆଜ୍ଞା ହଁ ।"

ସବୁ ଅଫିସର୍‌ମାନେ ଓଠ ଉପରେ ତର୍ଜନୀ ଚାପି ଧରି ସଙ୍କୋଚିତ ସ୍ୱରରେ କହି ଉଠିଲେ, "ସ୍ ସ୍ ସ୍ ସ୍ ସ୍" ।

ଭଜମନ ବାବୁ ନୀରବ ରହିଲେ ।

ସେଦିନ ଭଜମନ ବାବୁ ସେହି ଉଚ୍ଚପଦସ୍ଥ କର୍ମଚାରୀମାନଙ୍କର ପୂର୍ବ ପରିକଳ୍ପିତ ଏକ ଷଡ଼ଯନ୍ତ୍ର ଭିତରୁ ଅକ୍ଷତ ବାହାରି ଆସିଥିଲେ । ଏତେଗୁଡ଼ିଏ ଅଫିସର୍ ଏକତ୍ରିତ ହେଇଥିବା ସ୍ଥାନରେ ସ୍ୱାଭାବିକ ଅବସ୍ଥାରେ ଭଜମନବାବୁଙ୍କର ହାତ ଗୋଡ଼ ସାମାନ୍ୟ ଝାଳେଇ ଯିବା ବା ତଣ୍ଟି ସାମାନ୍ୟ ଶୁଖି ଶୁଖି ଯିବା ଅତ୍ୟନ୍ତ ସ୍ୱାଭାବିକ ଅବସ୍ଥା ବୋଲି ମନେ କରାଯାଇପାରେ । କିନ୍ତୁ ସେମାନଙ୍କର ଘେରରୁ ବାହାରି ଆସିଲାବେଳେ ଭଜମନ ବାବୁ ଅତ୍ୟନ୍ତ ସୁସ୍ଥ, ସ୍ୱାଭାବିକ ଓ ନିର୍ବିକାର ମନେ ହେଉଥିଲେ । ସେ ଯେ ଠିକ୍ ଠିକ୍ ତାଙ୍କର ଦିବ୍ୟଦୃଷ୍ଟି ପ୍ରାପ୍ତି କଥା ପ୍ରମାଣିତ କରି ପାରିଛନ୍ତି, ସେଥିପାଇଁ ତାଙ୍କର ମନରେ ଅହଙ୍କାର ଦୂରେ ଥାଉ, ସାମାନ୍ୟ ସନ୍ତୋଷର ଚିହ୍ନ ମଧ ଫୁଟି ଉଠୁ ନଥିଲା । ସେ ଯେପରି ନୀରବରେ କହୁଛନ୍ତି, "ଯାହା ଅବଶ୍ୟମ୍ଭାବୀ ତାହା ହିଁ ହେଲା, ବରଂ ତା' ନହୋଇଥିଲେ ସେ ହୁଏତ ଆଶ୍ଚର୍ଯ୍ୟ ହୋଇଥାନ୍ତେ ।"

ବାହାରକୁ ଆସୁ ଆସୁ ମହୁଏ ନାଲି ପିମ୍ପୁଡ଼ି ପରି ସାମ୍ବାଦିକମାନେ ପୁଣି ଥରେ ତାଙ୍କୁ ଘେରି ଗଲେ । ଫଟୋଗ୍ରାଫର୍‌ମାନଙ୍କର ବିରାମ ନାହିଁ । ମୁହୂର୍ତ୍ତକୁ ମୁହୂର୍ତ୍ତ ଫ୍ଲାସ୍

ଲାଇଟର ଉଜ୍ଜ୍ୱଳ ଆଲୋକ ଭଜମନ ବାବୁଙ୍କର ମୁଖମଣ୍ଡଳରେ ଉଦ୍‌ଭାସିତ ହେଇ ଉଠି ପୁଣି ଲିଭିଯାଉଛି ।

—"ଆପଣଙ୍କୁ କଅଣ ସବୁ ପଚାରିଲେ ?"

ଭଜମନ ବାବୁ ନୀରବ ।

—"ଆପଣଙ୍କୁ ନିଶ୍ଚୟ ପରୀକ୍ଷା କରିଥିବେ ?"

—"ନା ।" ସଂକ୍ଷିପ୍ତ ଉତ୍ତର ।

ଭଜମନ ବାବୁଙ୍କର ଏକପଦୀ ଉତ୍ତର ଶୁଣି ଜଣେ ପୃଥୁଳ ସାମ୍ବାଦିକ ଆଉ ଜଣେ କ୍ଷୀଣକାୟ ସାମ୍ବାଦିକଙ୍କ କାନ୍ଧରେ ହାତଟାକୁ ବାଡ଼େଇ ଦେଇ ପାଟିକରି ଉଠିଲେ, "ଇଉ ଷ୍ଟୁପିଡ୍ ଫୁଲ୍—ସିଏ କଅଣ ରାଜନୀତି କରନ୍ତି ଯେ କଥାଗୁଡ଼ାକର ଠସ୍ ଠସ୍ ଜବାବ୍ ଚାଲିଆସିବ ? ସେ ଜଣେ ମହାପୁରୁଷ, ତାଙ୍କୁ ସାମାନ୍ୟ ସମୟ ଦେଇ ଉପଯୁକ୍ତ ସ୍ଥାନକୁ ନେଇ ପୂଜା ଉପଚାର କଲେ ଅସଲ ଗୁମର କଥା ବାହାରିବ ।"

ଏ କଥାତକ ସମ୍ଭବତଃ ଭଜମନବାବୁଙ୍କର କାନରେ ପଡ଼ିଯାଇଥିଲା । ଏତେ ଲୋକ ଅନୁଗମନ କରିବାର ଅନଭ୍ୟସ୍ତ ଭଜମନ ବାବୁ ସାମାନ୍ୟତମ ଛଳନା ନକରି ବୁଲିପଡ଼ି ଏକଲକ୍ଷ୍ୟରେ ବକ୍ତା ସାମ୍ବାଦିକ ଜଣଙ୍କୁ ଚାହିଁ ରହିଲେ । ତାଙ୍କ ଦେଖାଦେଖି କ୍ଷୁଦ୍ର ଜନତାଟିର ଆଖି ମଧ୍ୟ ସେହି ସାମ୍ବାଦିକଙ୍କ ଉପରେ ନିକ୍ଷିପ୍ତ ହେଲା । କିନ୍ତୁ ସାମ୍ବାଦିକ ମିଃ ସ୍ୱାମୀ ଡାକ୍ତରଙ୍କ ପରାମର୍ଶରେ ବାଁ ପଟର ଚଷମା କାଚଟିକୁ କଳାକନାରେ ଢାଙ୍କି ରଖି ଗୋଟିଏ ଆଖିରେ ନିର୍ବିକାର ଭାବରେ ଚାହିଁରହି ପାଇପ୍‌ରୁ ପ୍ରଚଣ୍ଡ ଧର୍ମ ଉଦ୍‌ଗୀରଣ କରୁଥାଆନ୍ତି । ଜନତା ସ୍ତବ୍ଧ ହୋଇ ଠିଆ ହୋଇ ରହିଥାଆନ୍ତି । ମନେ ହେଉଥାଏ, ଯେପରି ବିସ୍ଫୋରକ ଅବସ୍ଥା କିଛି ଗୋଟାଏ ଘଟିବ । ଅଳ୍ପ କିଛି ସମୟ ପରେ ଭଜମନ ବାବୁ କହିଲେ, "ମିଃ ସ୍ୱାମୀ, ମୁଁ ବୁଝିପାରୁଛି, ଆପଣ ମତେ ଥଟ୍ଟା କରୁଛନ୍ତି; କିନ୍ତୁ କାହିଁକି ? ମୁଁ ତ କିଛି କରି ନାହିଁ । ଆପଣମାନେ ମତେ ସ୍ୱେଚ୍ଛାକୃତ ଭାବରେ ଅନୁସରଣ କରି ବିବ୍ରତ କରୁଛନ୍ତି ମାତ୍ର ।"

ମିଃ ସ୍ୱାମୀ ନୀରବରେ ଏହି ଉକ୍ତିତକ ହଜମ କରିନେଲେ ।

ଠିକ୍ ତା'ପରେ ଭଜମନବାବୁ ପୁଣି କହିଲେ ଯେ ସେ କାହା ନିକଟରେ ତାଙ୍କର ଦିବ୍ୟଦୃଷ୍ଟି ପ୍ରାପ୍ତି ବିଷୟ ପ୍ରମାଣ ଦବାକୁ ଆଦୌ ପ୍ରସ୍ତୁତ ନୁହଁନ୍ତି । ତେଣୁ ଏ ସଂପର୍କରେ ସାମ୍ବାଦିକମାନଙ୍କର ଯାହା କିଛି ମତାମତ ସେମାନେ ନିଃସଙ୍କୋଚରେ ଖବର କାଗଜରେ ଛପେଇ ପାରନ୍ତି । ସେଥିରେ ତାଙ୍କର କିଛି ଆସେ ଯାଏ ନାହିଁ । ଆଗରୁ ଥରେ କୌଣସି ଏକ କାଗଜରେ ତାଙ୍କର ବିବୃତି ବାହାରିପାରିବ ନାହିଁ ବୋଲି ସେ

କହିଥିଲେ, କିନ୍ତୁ ତା'ର ଫଳାଫଳ କଅଣ ହେଲା ସେଥିପାଇଁ ସେ ସାମାନ୍ୟ କୌତୂହଳ ମଧ୍ୟ ପ୍ରକାଶ କରିନାହାନ୍ତି ।

ନୀରବରେ ଭଜମନବାବୁ ଚାଲିବାକୁ ଆରମ୍ଭ କଲେ ଓ କୌତୂହଳୀ ଜନତା ତାଙ୍କ ପଛେ ପଛେ ଏକ କ୍ଷୁଦ୍ର ସ୍ୱୟଂକ୍ରିୟା ଶୋଭାଯାତ୍ରା ତିଆରି କରିସାରିଥା'ନ୍ତି । ଭଜମନବାବୁ ଗୋଲ୍ ଗାଲ୍ ହେଇ ଟିକିଏ ବାଙ୍କରା ଲୋକ, ତାଙ୍କର ମୁଣ୍ଡ ପ୍ରାୟ ଚନ୍ଦା ହେଇ ଆସିଲାଣି । ସିଏ ଦେଖିବାକୁ ଯେମିତି, ପ୍ରକୃତରେ ମଧ୍ୟ ସେ ଜଣେ ସାଧାସିଧା ସରଳିଆ ପ୍ରକୃତିର ଲୋକ ।

ଚାଲୁ ଚାଲୁ ନିକଟ ଅତୀତରେ ଘଟିଥିବା ସାମ୍ବାଦିକମାନଙ୍କ ସହିତ ସେହି କ୍ଷୁଦ୍ର ଘଟଣାଟି ପାଇଁ ସେ ଅତ୍ୟନ୍ତ ଅନୁତପ୍ତ ହୋଇ ପଡ଼ିଲେ, ଆହା ! ଖରା ନାଇଁ, ବର୍ଷା ନାଇଁ, ଏମାନେ ଖାଲି ମୋ'ଠାରୁ ଦି'ପଦ କଥା ଶୁଣିବେ ବୋଲି ମୋ ପଛେ ପଛେ ଧାରଣା ଦେଇ ଚାଲିଛନ୍ତି । ଏଇ ଭାବନାରେ ତାଙ୍କର ମୁଖମଣ୍ଡଳ ମଧ୍ୟ ସାମାନ୍ୟ ବିଷର୍ଣ୍ଣ ଦେଖାଗଲା ।

ଠିକ୍ ଏତିକିବେଳେ ଥୁକୁଲୁ ଥାକୁଲୁ ହୋଇ ଝୋଳ ବୋହି ପଡୁଥିବା ସାମ୍ବାଦିକଟିଏ ତାଙ୍କ ନିକଟକୁ ଧସି ଆସି, ଡାହାଣ ହାତରେ କାନ କୁଣ୍ଡେଇ କୁଣ୍ଡେଇ କହିଲା, "ସାର୍, ଆମେ ଆପଣଙ୍କୁ ଖୁବ୍ ବିରକ୍ତ କଲୁଣି, ମୁଁ ସମସ୍ତଙ୍କ ତରଫରୁ ଆପଣଙ୍କ ପାଖରେ କ୍ଷମା ମାଗି ନଉଛି—ଆଉ ସାର୍...ଆପଣ ଯଦି ଦି'ଚାରି କଥା ଆମକୁ ନ କହିବେ ଆମ ଚାକିରୀ ସାର୍ ରହିବନି ?"

ସାମ୍ବାଦିକଙ୍କର ଚେହେରା, କଥା ଓ ଉତ୍କଣ୍ଠା ଦେଖି ଭଜମନବାବୁ ହଠାତ୍ ହସି ପକେଇଲେ । ସେ ହସ ବାହାରର ହସ ନୁହେଁ, ଯେମିତି ତାଙ୍କର ନାଭି ସ୍ଥଳରୁ ଉତ୍‌ଥିତ ହୋଇ ଚାରିଆଡ଼େ ବିଚ୍ଛୁରିତ ହୋଇ ପଡୁଛି, ହାଃ—ହାଃ—ହାଃ—

ବାରମ୍ବାର ହସର ଲହରୀରେ ଭଜମନ ବାବୁଙ୍କର ମେଦୁଳ ଶରୀରଟି ଥରି ଥରି ବିଭିନ୍ନ ଭଙ୍ଗି କରିବାକୁ ଆରମ୍ଭ କରିଛି । ତାଙ୍କ ମୁହଁକୁ ଅନେଇ ତାଙ୍କ ସାମ୍ନାରେ ଠିଆ ହେଇଥିବା ଖର୍ବକାୟ ସାମ୍ବାଦିକଟି ମଧ୍ୟ ଭଜମନବାବୁଙ୍କର ଶରୀରର ମୁଦ୍ରା ଅନୁକରଣ କରି ନିଜେ ଦୋଳାୟିତ ହଉଚି ଓ ହସୁଚି—ହାଃ—ହାଃ—ହା... । ଭଜମନବାବୁ ଓ ସାମ୍ବାଦିକ ପରସ୍ପରର ଶରୀରର ମୁଦ୍ରା ଦେଖି ଉଭୟେ ପୁଣି ଏକ ହସର ଉଚ୍ଛ୍ୱାସରେ ଫାଟିପଡ଼ି ପ୍ରକମ୍ପିତ ହେଉଛନ୍ତି । ଜନତା ମଧ୍ୟ ସମ୍ବେତ ସ୍ୱରରେ ହସିବାକୁ ଆରମ୍ଭ କରିଚି, କାରଣ ସେମାନଙ୍କ ଆଖିରେ ଦୁଇଟି ଗୋଲ୍ ଗାଲ୍ ମସୃଣ ଜଳହସ୍ତୀ ଯେପରି ପରସ୍ପରର ଅନୁକରଣ କରିବାରେ ତତ୍ପର ହୋଇ ଉଠିଛନ୍ତି ।

ପ୍ରାୟ ପନ୍ଦର ମିନିଟ୍ ପରେ ସେଇ ସମ୍ମିଳିତ ଉଚ୍ଚହାସ୍ୟର ପ୍ରଶମନ ହେଲା । ସମସ୍ତେ ଏକ କୌତୂହଳୀ ଦୃଷ୍ଟିରେ ଭଜମନ ବାବୁଙ୍କୁ ଚାହିଁ ରହିଲେ । ଭଜମନବାବୁ କେତେବେଳକେ କହିଲେ, ''ମୁଁ କହିବି, ସବୁ କହିବି, କିନ୍ତୁ ଜଣ ଜଣ କରି ନୁହେଁ ।''

ସାମ୍ବାଦିକମାନେ ଖୁସିରେ ହାତ ତାଳି ଦେଇ ଏକରକମ ଭଜମନବାବୁଙ୍କୁ ବୃତ୍ତାକାରରେ ପରିକ୍ରମଣ କରି ପାଟିକରି ଉଠିଲେ, ''ଆମେ ତ ସେଇଆ ଚାହୁଁ, ପ୍ରେସ୍ କନ୍ଫରେନ୍ସ୍ ସାର୍, ପ୍ରେସ୍ କନ୍ଫରେନ୍ସ୍ ।''

ପୁଣି ସେଇ ପୃଥୁଳକାୟ ସାମ୍ବାଦିକଟି ପଚାରିଲେ, ''ସାର୍, ସବୁ କହିବେ ? ସେଠି କିଏ କିଏ ଥିଲେ, କ'ଣ କ'ଣ ପଚାରିଲେ ସବୁ ?''

ଭଜମନବାବୁ କହିଲେ, ''ସବୁ ।''

ପ୍ରଶ୍ନ ଆସିଲା—''ରିଜର୍ଭ ବ୍ୟାଙ୍କ୍‌ରୁ ଷାଠିଏ ଲକ୍ଷ ଟଙ୍କା ଚୋରି ?''

ଭଜମନବାବୁ—''କହିବି'' ।

—''ଅମୁକଙ୍କ ପୁଅର ବିଦେଶୀ ବ୍ୟାଙ୍କ୍‌ରେ ଟଙ୍କା ?''

ଭଜମନବାବୁ—''କହିବି'' ଇତ୍ୟାଦି ଇତ୍ୟାଦି ।

ଗୁଳିପରି ଆସୁଥାଏ ଗୋଟିଏ ଗୋଟିଏ ପ୍ରଶ୍ନ ଓ ଭଜମନବାବୁଙ୍କର ସେଇ ନିର୍ଲିପ୍ତ ଅଥଚ ଆତ୍ମବିଶ୍ୱାସ ପୂର୍ଣ୍ଣ ଏକପଦୀ ଉତ୍ତର, ''କହିବି ।''

ଆସନ୍ତା କାଲି ଗେଷ୍ଟ ହାଉସ୍‌ରେ ସନ୍ଧ୍ୟାବେଳେ ପ୍ରେସ୍ କନ୍ଫରେନ୍ସ୍ ହେବାର କଥା ସ୍ଥିର ହେବା ପରେ ସାମ୍ବାଦିକ-ଜନତା ତାଙ୍କୁ ପ୍ରାୟ ଶୂନ୍ୟେ ଶୂନ୍ୟେ ଟେକି ନେଇ ଜଣେ କାହାର ଗାଡ଼ି ଭିତରେ ଭର୍ତ୍ତି କରି ତାଙ୍କ ଘରେ ଛାଡ଼ି ଦେଇ ବିଦାୟ ନେଲେ ।

ତା'ପରର ଘଟଣା ଅତି ଦ୍ରୁତ ଗତିରେ ଘଟିବାକୁ ଆରମ୍ଭ କଲା । ଇନ୍‌ଫର୍ମର୍, ଇନ୍‌ଫର୍ମର ଠାରୁ ସ୍ପେଶାଲ ବ୍ରାଞ୍ଚ୍ ସବ୍‌ଇନ୍‌ସ୍‌ପେକ୍ଟର, ସେଠୁ ଏସ୍.ପି. ଓ ଏସ୍.ପି.ଙ୍କ ଠାରୁ ଆଇ.ଜି. । କିନ୍ତୁ ଆଇ.ଜି. ଫୋନ୍ କଲେ ନାହିଁ । ସନ୍ଧ୍ୟା ପୂର୍ବରୁ ଆଇ.ଜି. ଖୋଦ୍ ଗାଡ଼ି ନେଇ ହାଜର ହେଲେ ସ୍ୱରାଷ୍ଟ୍ର ସଚିବଙ୍କ ଘରେ ଓ ତାଙ୍କୁ ସାଙ୍ଗରେ ନେଇ ସ୍ୱରାଷ୍ଟ୍ର ବିଭାଗ ମନ୍ତ୍ରୀଙ୍କ ଦପ୍ତରରେ । କାଳବିଳମ୍ବ ନକରି କ୍ୟାବିନେଟ୍ ମିଟିଂ ଡକାଗଲା ଓ ଆହୂତ ହେଲା ସରକାର ଗଠନ କରିଥିବା ଦଳର କେନ୍ଦ୍ର କମିଟି । ପ୍ରଥମେ ଏଇ ଦୁଇ ଗୋପନୀୟ ଓ ଜରୁରୀ ବୈଠକ ଚାଲିଥିଲା ଦୁଇଟି ସଂଲଗ୍ନ କୋଠରୀ ଭିତରେ, କିନ୍ତୁ କୌଣସି ସମାଧାନର ସୂତ୍ର ନପାଇ ଦୁଇ କୋଠରୀର ସଂଯୁକ୍ତ ଦ୍ୱାର ଉନ୍ମୁକ୍ତ ହେଲା ଓ ଦୁଇ ପ୍ରକୋଷ୍ଠର ଅଧିବାସୀମାନେ ଏକତ୍ରିତ ହୋଇ ଘୋର ମନ୍ତ୍ରଣା ଲିପ୍ତ ହେଲେ ।

କିଛି ସମୟ ଘୋର ବାଦାନୁବାଦ ଓ ତର୍କ ବିତର୍କ ପରେ ସେମାନେ ଯେପରି ହାତରେ ଆକାଶର ଚନ୍ଦ୍ର ପାଇଲେ । ଆଃ ! କି ଆଶ୍ୱସ୍ତି ! କିଏ ଅଲରା ବାଳକୁ ଦୁଇ

ହାତରେ ସାଉଁଳେଇ ସାଉଁଳେଇ ସଜାଡ଼ି ନେଲା । ଆଉ କିଏ କୁଞ୍ଚ୍ ହେଇ ଯାଇଥିବା ଲୁଗାର କୁଞ୍ଚକୁ ପାଲିସ୍ କଲା, କିଏ ସିଗାରେଟ୍ ଲଗେଇଲା । କେହି କେହି ହସ୍ତମର୍ଦ୍ଦନ କଲେ ଏବଂ କେହି କେହି ଗଭୀର ଭ୍ରାତୃଭାବରେ ଉଦ୍‌ବୁଦ୍ଧ ହୋଇ ପରସ୍ପରକୁ ଆଲିଙ୍ଗନ କଲେ ।

ସେଦିନର ମନ୍ତ୍ରୀମଣ୍ଡଳର ବୈଠକ ଏକ ସମୟରେ ସାଙ୍ଗ ହେଲା ।

ତା'ପରଦିନ ସକାଳୁ ଏକ ସ୍ୱତନ୍ତ୍ର ସରକାରୀ ଘୋଷଣା ଦ୍ୱାରା ପ୍ରକାଶ କରାଗଲା ଯେ ଭଜମନବାବୁଙ୍କର ଦିବ୍ୟଦୃଷ୍ଟି ଥିବା କଥା ମିଛ ଏବଂ ଏତାଦୃଶ ମିଥ୍ୟା, ଅନ୍ୟାୟ ଲାଭ ଆଶାରେ ଭଜମନବାବୁଙ୍କର ବନ୍ଧୁବାନ୍ଧବ ଓ ଜ୍ଞାତିକୁଟୁମ୍ବ ପ୍ରଚାର କରୁଛନ୍ତି । ଏହା ଭିନ୍ନ ବିଶେଷଜ୍ଞମାନେ ପ୍ରକାଶ କରିଛନ୍ତି ଯେ ଇତିମଧ୍ୟରେ ଭଜମନବାବୁଙ୍କର ମସ୍ତିଷ୍କ ବିକୃତି ଘଟିଛି ଏବଂ ସେଥିପାଇଁ ତାଙ୍କୁ ସରକାରଙ୍କ ତରଫରୁ ଚିକିତ୍ସା ପାଇଁ ରାଞ୍ଚି ପଠାଯାଉଛି ।

ସେହିଦିନ ସନ୍ଧ୍ୟାରେ ତାଙ୍କର ପରିବାରବର୍ଗଙ୍କର ମୁହୂର୍ମୁହୂ ଅଶ୍ରୁମୁଞ୍ଚନ ସତ୍ତ୍ୱେ ଭଜମନବାବୁଙ୍କୁ ପୁଲିସ୍ କନ୍‌ଷ୍ଟେବଲମାନେ ସଶସ୍ତ୍ର ଗାଡ଼ିରେ ନେଇଯାଇଥିଲେ ।

ରାଞ୍ଚିରେ ଭଜମନବାବୁ ଯେତେବେଳେ ଗାଡ଼ିରୁ ଓହ୍ଲେଇଲେ, ସେ ହଠାତ୍ ଦୁଇଜଣ କନ୍‌ଷ୍ଟେବଲ୍‌ଙ୍କୁ ରୋକିଦେଇ ଥମ୍‌କି ଠିଆ ହେଇଗଲେ । ଅତିନିମ୍ନ ସ୍ୱରରେ କହିଲେ, "ଭାଇ ଶୁଣ, ମୁଁ ସ୍ପଷ୍ଟ ଜାଣି ପାରୁଛି ଯେ ମୋରି ଗୋଡ଼ତଳେ ଗୋଟାଏ ବିରାଟ ପ୍ରେଟ୍ରୋଲ୍ ଖଣି ଅଛି ।"

ଅନେକ ବର୍ଷ ତଳର କଥା । କଥାଟା ସତ କି ମିଛ ମୁଁ ଜାଣେ ନା । କିନ୍ତୁ ଏକଥା ସତ୍ୟ ଯେ ଭଜମନବାବୁ ରାଞ୍ଚିଠାରେ ଯେଉଁ ଜାଗାରେ ପ୍ରଥମେ ପଦାର୍ପଣ କରି ଥମ୍‌କି ଠିଆ ହୋଇଥିଲେ, ସେଇଠି ବର୍ତ୍ତମାନ ଏକ ବିରାଟ ତୈଳ ବିଶୋଧନାଗାର ଠିଆ ହୋଇଛି । ଏକ ମାର୍ବଲ ଫଳକରେ ଲେଖାଯାଇଚି, 'ଶ୍ରୀ ହେରମ୍ବ ନାରାୟଣ ସିହ୍ନା, କେନ୍ଦ୍ର ପେଟ୍ରୋଲିୟମ୍ ମନ୍ତ୍ରୀ—ଭିତ୍ତି ପ୍ରସ୍ତର ସ୍ଥାପନ—ତା୩୦।୧।୧୯୭୪ ଏବଂ ଏ କଥା ମଧ୍ୟ ସତ୍ୟ ଯେ ରାଞ୍ଚି ପାଗଳ ଗାରଦର ୧୯୨୪ ସାଲ୍ ରେଜିଷ୍ଟରର ଛପନ ପୃଷ୍ଠାରେ ଲେଖାଅଛି, 'ଭଜମନ ସାମନ୍ତରାୟ, ପି. ସୁଦର୍ଶନ ସାମନ୍ତରାୟ-ବୟସ ୪୫ ବର୍ଷ, ଜାତୀୟତା—ଭାରତୀୟ, ପ୍ରବେଶ ତାରିଖ—୧୮।୧୨।୧୯୨୪ ।

*(ଆସନ୍ତାକାଲି, ୨୬ ବର୍ଷ ଶାରଦୀୟ ସଂଖ୍ୟା, ଅକ୍ଟୋବର ୧୯୭୫)*



# ଅଶ୍ୱାବଲୋକନ

ମାତ୍ର ଦୁଇମାସ ତଳେ ଆମେ ଏ ଘଞ୍ଚ ଅରଣ୍ୟ ଓ ଦୁର୍ଗମ ଗିରି ଅଧିତ୍ୟକାରେ ଆସି ପହଞ୍ଚିଗଲୁ ଓ ତଥାପି ମଧ ରହୁଥିଲୁ ଦୁଇ ତିନିଖଣ୍ଡି ଜୀର୍ଣ୍ଣ ତମ୍ବୁର ସନ୍ଦିଗ୍ଧ ଆଶ୍ରୟ ତଳେ । ପ୍ରୋଜେକ୍ଟ ଇଞ୍ଜିନିୟର ମିଃ ଦାସ, ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ମିଃ ଭଞ୍ଜ ମିଶ୍ର ଓ ମୁଁ, ଦୀନବନ୍ଧୁ, ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟରଙ୍କର ଓ୍ୱାର୍କ ସରକାର । ଆମର ଉଦ୍ଦେଶ୍ୟ ଥିଲା ଯେ ପାହାଡ଼ର ବେଶ ଉପର ଅଂଶରେ କିଛି କୋଠାବାଡ଼ି ତିଆରି କଲେ ଅନ୍ୟାନ୍ୟ ଉଚ୍ଚପଦସ୍ଥ ମାଇନିଂ ଅଫିସରମାନେ ଆସି ସେଠି ରହି ଖଣିଜ ବହୁଳ ଗିରି ଶିଖରରୁ ଖଣିଜ ପଦାର୍ଥ ଉତ୍ତୋଳନ କରିବେ । ଏହା ଏକ ବିଶାଳ ପ୍ରକଳ୍ପର ଅୟମାରମ୍ଭ ମାତ୍ର ।

ଆମ କାମ ସୁରୁଖୁରୁରେ ଚାଲିଥିଲା ଯଦିଓ ସେ ପରିବେଶରେ ଜୀବନ ଯାପନ ଏକ ଦୁରୂହ କାର୍ଯ୍ୟ ଥିଲା । ଆଖପାଖରେ କେତୋଟି କାଁ ଭାଁ ନିରୀହ ଆଦିବାସୀ ପଲ୍ଲୀ ବ୍ୟତୀତ ଅନ୍ୟ କୌଣସି ଜନବସତି ନଥିଲା । ଆମ କ୍ୟାମ୍ପ୍ ପାଖ ଦେଇ ବହି ଯାଉଥିବା ସ୍ୱଚ୍ଛ ଝରଣାଟିଏ ଥିଲା ଆମର ଏକମାତ୍ର ଅବଲମ୍ବନ । ଆମେ ତା'ର ନାମକରଣ କରିଥିଲୁ ମନ୍ଦାକିନୀ ।

କିନ୍ତୁ ଗୋଟିଏ ଦିନର ସକାଳ ଯେ, ଅନ୍ତତଃ ମୋ' ଜୀବନ ପାଇଁ ଥିଲା ଏତେ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଏକାଧାରରେ ଅଶ୍ଳୀଳ ଓ ହାସ୍ୟରସୋଦ୍ଦୀପକ, ଏକଥା ମୁଁ କଳ୍ପନା କରିପାରି ନଥିଲି । ସେଦିନ ସକାଳୁ ମୁଁ ତମ୍ବୁ ଭିତରୁ ବାହାରକୁ ଆସିଲାବେଳେ ଲକ୍ଷ୍ୟ କଲି ଯେ ବାହାରେ ଠିଆହେଇ ମିଃ ଦାସ ଓ ମିଃ ଭଞ୍ଜମିଶ୍ର ଏକ ଆପାତଃ ତାତ୍ତ୍ୱିକ ଅଥବା ଗୁରୁତ୍ୱପୂର୍ଣ୍ଣ ଆଲୋଚନାରେ ମଗ୍ନ ଅଛନ୍ତି । ପାଖକୁ ଆସି ଦେଖିଲି ଯେ ମିଃ ଦାସ ତାଙ୍କର ବୃଦ୍ଧାଙ୍ଗୁଷ୍ଠି ଓ ତର୍ଜନୀ ମଧ୍ୟରେ କିଛି ରୁମ୍ ଧରି ମିଃ ଭଞ୍ଜମିଶ୍ରଙ୍କୁ ବୁଝାଇବାରେ ଲାଗିଛନ୍ତି ଯେ ସେ ରୁମତକ ଆଜି ସକାଳୁ ସେ ଆମ କ୍ୟାମ୍ପ୍ ସାମ୍ନାରୁ ସଂଗ୍ରହ କରିଛନ୍ତି । ଆଜି ସେ ଆମ ଚୌକିଦାରଠାରୁ କାଲି ରାତିର ଯେଉଁ ଭୟାବହ ଘଟଣା ଶୁଣିଛନ୍ତି, ସେହି ରୁମ କତିପୟ ତାହାର ପ୍ରତ୍ୟକ୍ଷ ସାକ୍ଷ୍ୟ ବହନ କରେ । ଚୌକିଦାର କାଲି ରାତିରେ କ୍ୟାମ୍ପ ବାହାରକୁ ଆସିଲାବେଳେ ପ୍ରାୟ ଦଶହାତ ଦୂରରେ ଦେଖିଥିଲା ଗୋଟାଏ ବିରାଟ ମହାବଳ ବାଘ । ହୁଏତ ବାଘ ଅନ୍ୟମନସ୍କ ଥିଲା କିମ୍ବା ଚୌକିଦାରର କ୍ଷୀଣ କଳେବର ହେତୁ ଘୋର ଅସନ୍ତୋଷ ଓ ବିରକ୍ତିରେ ଦୁଇଥର

ଲାଞ୍ଜପିଟି ଗୋଟିଏ କ୍ଷଣରେ ଅନ୍ତର୍ଦ୍ଧାନ ହୋଇଗଲା । ତେଣୁ ମିଃ ଦାସ ଆଜି ସକାଳୁ ଉଠି ଜଣେ ପୋଖତ ଗୁଇନ୍ଦା ପରି ବାଘର ପାଦଚିହ୍ନ ପ୍ରଭୃତିର କୌଣସି ନିର୍ଭରଯୋଗ୍ୟ ସାକ୍ଷ୍ୟ ନ ପାଇଲେ ମଧ୍ୟ, ଏଇ ଯେଉଁ ରୁମତକ ସଂଗ୍ରହ କରିଛନ୍ତି, ତାହା ନିଶ୍ଚିତ ଭାବରେ ମହାବଳ ବ୍ୟାଘ୍ର-ପୁଚ୍ଛ-ଚ୍ୟୁତ ।

ତା'ପରେ ମିଃ ଦାସ ହଠାତ୍ ଆଖି ଦୁଇଟିକୁ ବଡ଼ ବଡ଼ କରି ଦେଇ କହିଲେ ''ମିଃ ଭଟ୍ଟମିଶ୍ର, ଏହା ବିଶୁଦ୍ଧ ରୟାଲ ବେଙ୍ଗଲ ଟାଇଗର୍‌ର ଲାଞ୍ଜର ବାଳ, ବୁଝିଲେ, ଆର୍.ବି.ଟି.—ଆର୍.ବି.ଟି. ।''

ମୁଁ ଯେ ଭୟ ପାଇ ଯାଇ ନଥିଲି, ତା' ନୁହେଁ, କିନ୍ତୁ ତା'ର କିଛିଦିନ ପରେ ଯେଉଁ ଘଟଣା ଘଟିଲା ସେଥିରୁ ମନେହେଲା ଯେ ବରଂ ସେଦିନର ବ୍ୟାଘ୍ର ସଙ୍କୁଳ ବନସ୍ଥଳୀ ମୋ' ପାଇଁ ଯଥେଷ୍ଟ ନିର୍ଭୟ ସ୍ଥଳୀ ଥିଲା ।

ତା'ର ପ୍ରାୟ ମାସେ ପରର କଥା । ହଠାତ୍ ଖବର ଆସିଲା, ଆମର ଚେୟାରମ୍ୟାନ୍ ମିଃ ଘୋଷଙ୍କ ସହିତ, ଚିଫ୍ ସେକ୍ରେଟାରୀ ମିଃ ମିଲର୍ ଏଠାକୁ ଆସୁଛନ୍ତି ବାଘ ଶିକାର କରିବା ପାଇଁ । କାରଣ ସେଦିନର ସେଇ ଆଲୋଚନା ମୁଖେ ମୁଖେ ପ୍ରଚାରିତ ହୋଇ ରାଜଧାନୀକୁ ଯାଇ ସଚ୍ଚିବାଳୟ କାନ୍ଥ ଟପି ଚିଫ୍ ସେକ୍ରେଟାରୀଙ୍କର କର୍ଣ୍ଣରେ ପ୍ରବେଶ କରିବ, ଏକଥା କିଏ ବା କାହିଁକି ଆଶଙ୍କା କରିବ ? ଯଦିବା ଏହା ଘଟିଲା, ତାହାହେଲେ କିଏ ବା କାହିଁକି ଆଶା କରିବ, ଚିଫ୍ ସେକ୍ରେଟାରୀ ଜଣେ ଦକ୍ଷ ଶିକାରୀ ଓ ରୟାଲ ବେଙ୍ଗଲ ଟାଇଗର ନାଁ ଶୁଣି ସେ ସରକାରୀ କାମରୁ ବିଶ୍ରାମ ନେଇ ହଠାତ୍ ବାଘ ମାରିବାକୁ ଚାଲି ଆସିବେ ? ଅବଶ୍ୟ ସେ ସରକାରୀ କାମରୁ ବିଶ୍ରାମ ନେଇ ନଥିଲେ, କାରଣ ଆମେମାନେ ଏଠି କେମିତି କାମ କରୁଛୁ, ତାକୁ ତନଖି କରିବା ପାଇଁ ଆମ ବଡ଼ ସାହେବଙ୍କୁ ସାଙ୍ଗରେ ଧରି ସେ ଆସିଥିଲେ କେବଳ । ବାଘ ମାରିବାଟା ଏକ ସହକାରୀ ଅବସର ବିନୋଦନ ।

କିନ୍ତୁ ସେ ଯାହାହଉ ଏ ସମ୍ବାଦ ମୋ' ପାଇ ଘୋର ଆତଙ୍କଜନକ ଥିଲା । କାରଣ ମତେ ଚାହା କପ୍ ଠାରୁ ଆରମ୍ଭ କରି ଗିଲାସ, ବିଛଣା ଚାଦର ପର୍ଯ୍ୟନ୍ତ, ଟେବୁଲ୍, ଚଉକୀ ଓ ଲଞ୍ଚ୍ ଡିନର୍ ପର୍ଯ୍ୟନ୍ତ ସବୁ ଯୋଗାଡ଼ କରିବାକୁ ପଡ଼ିବ । ଓ୍ୱାର୍କ୍-ସରକାର ଥାଉ ଥାଉ ଏସବୁ ଦାୟିତ୍ୱ ଅନ୍ୟ କିଏ ନବାକୁ ଯିବ କାହିଁକି ? ଏପରିକି ସାହେବମାନଙ୍କର ଡ୍ରାଇଭରମାନଙ୍କୁ ଖୁଆଇ ପିଆଇ ସର୍ବତୋଭାବେ ସନ୍ତୁଷ୍ଟ କରିବାକୁ ପଡ଼ିବ । ତା' ନହେଲେ ସେମାନେ ଫେରିଗଲା ବେଳେ ଡ୍ରାଇଭରମାନଙ୍କର ମୋ' ସମ୍ପର୍କରେ ସାମାନ୍ୟ ଅସନ୍ତୋଷ ପ୍ରକାଶ ମୋର ଚାକିରୀଟିକି ଅବିଳମ୍ବେ ନେଇଯାଇପାରେ ।

ସେ ଯାହାହଉ, ସେହି ଆତଙ୍କମୟ ଦିନଟି ଉପସ୍ଥିତ ହେଲା ଓ ଦୁଇଟି ଗାଡ଼ି ଯୋଗେ ଦୁଇ ସାହେବ କ୍ୟାମ୍ପ୍ ନିକଟରେ ଉପସ୍ଥିତ ହେଲେ । କହିବା ବାହୁଲ୍ୟ ଯେ ସେମାନଙ୍କର ଆସିବା ପୂର୍ବରୁ ତାଙ୍କର ପ୍ରାଥମିକ ବିଶ୍ରାନ୍ତି ପାଇଁ ମୁଁ ଉପକରଣ ଆହରଣ କରିକରି ଗଳଦ୍‌ଘର୍ମ ହୋଇ ପଡ଼ିଥିଲି । କିନ୍ତୁ ତଥାପି ଯଥେଷ୍ଟ ଆଶ୍ୱସ୍ତ ହେଲି ଯେ ସେମାନଙ୍କର ସହଧର୍ମିଣୀମାନେ ଆସି ନାହାନ୍ତି ।

ଚାହା ଜଳପାନ ଆରମ୍ଭ କରୁ କରୁ ଆଦେଶ ଦିଆଗଲା ଯେ ମଞ୍ଚା ପ୍ରସ୍ତୁତ କରାଯାଉ ଓ ବାଘକୁ ଆକର୍ଷଣ କରିବା ପାଇଁ ମଞ୍ଚା ନିକଟରେ ବାନ୍ଧିବା ପାଇଁ ଗୋଟିଏ ଛେଳିର ମଧ୍ୟ ବନ୍ଦୋବସ୍ତ କରାଯାଉ । ଏ ଆଦେଶ ମୁଖରୁ ମୁଖକୁ ଉଚ୍ଚାରିତ ହୋଇ ଏକ ଜଳପ୍ରପାତ ପରି ମୋ ପାଖରେ ଅଚିରେ ଉପସ୍ଥିତ ହେଲା । ମୁଁ ତତ୍‌କ୍ଷଣାତ୍ ଯେଉଁ ଦୃଷ୍ଟିରେ ମୋର ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ମିଃ ଭଞ୍ଜମିଶ୍ରଙ୍କୁ ଚାହିଁଲି, ସେ ଦୃଷ୍ଟି ଦେଖିଥିଲେ ସ୍ୱୟଂ ଭଗବାନ ବି ତରଳି ଯାଇଥାନ୍ତେ । ମିଃ ଭଞ୍ଜ ମିଶ୍ର ଜଣେ ଦୟାଶୀଳ ବ୍ୟକ୍ତି । ତା' ନହେଲେ ସେ ମତେ ସାଙ୍ଗେ ସାଙ୍ଗେ କହି ନଥାନ୍ତେ, "ଚାଲ ଚାଲ ଦୀନବନ୍ଧୁ, ସବୁ ଠିକ୍ ହୋଇଯିବ, ଚାଲ ।" ଏହା ଅବଶ୍ୟ ସେ କହିଥିଲେ ବଡ଼ ସାହେବମାନଙ୍କର ଶ୍ରୁତିର ଅଗୋଚରରେ । ମିଃ ଦାସ ଦୁଇ କ୍ଳାନ୍ତ ଅତିଥିଙ୍କୁ ସାହଚର୍ଯ୍ୟ ଦବା ପାଇଁ ବସି ରହି କେବଳ ଚକ୍ଷୁର ଇଙ୍ଗିତରେ କହିଲେ, "ଦେଖ, ସବୁ କାମ ଯେମିତି ଠିକ୍ ଠିକ୍ ହୁଏ ।" ଆମେ ଦୁଇଜଣ ପ୍ରସ୍ଥାନ କଲୁ ।

ଭଞ୍ଜ ମିଶ୍ୟ ମହାଶୟ କିଛି ସରକାରୀ କୁଲିଙ୍କୁ ଧରି ଚାଲିଲେ ମଞ୍ଚା ପ୍ରସ୍ତୁତ କରିବା ପାଇଁ । ମଞ୍ଚା କେତେ ଦୃଢ଼ ହେବ, କେତେ ଉଚ୍ଚ ହବ ଓ କେତେ ଲମ୍ବା ଓ କେତେ ଚଉଡ଼ା ହବ, ଏ ସମ୍ପର୍କରେ ଭଞ୍ଜ ମିଶ୍ରଙ୍କୁ ପୁଙ୍ଖାନୁପୁଙ୍ଖ ନିର୍ଦ୍ଦେଶ ଦିଆଯାଇଥିଲା ଅବଶ୍ୟ । ନହେଲେ ଶିକାରୀର କଅଣ ପ୍ରୟୋଜନ, ତାହା ସିଏ ବା ଜାଣନ୍ତେ କିପରି ? ମୁଁ ଚାଲିଲି କୌଣସି ଆଦିବାସୀ ପଲ୍ଲୀରୁ ନିରୀହ ଛେଳିଟିକୁ ଯୋଗାଡ଼ କରିବା ପାଇଁ । ମୋର ଭାଗ୍ୟ ଭଲ, ଅଳ୍ପ କିଛି ସମୟ ବୁଲାବୁଲି କଲା ପରେ ମତେ ଛେଳିଟିଏ ମିଳିଗଲା । ଗୋଟିଏ କ୍ଷୀଣ ରଜ୍ଜୁରେ ଦୁଇଫୁଟ ଉଚ୍ଚତା ବିଶିଷ୍ଟ ଗୋଟିଏ ଛାଗଳଙ୍କୁ ବେଷ୍ଟିତ କରି ମୁଁ ମଞ୍ଚା ଆଡ଼କୁ ଅଗ୍ରସର ହେଲି । ସନ୍ଧ୍ୟା ହୋଇ ଆସୁଛି । ଆଉଟିକିଏ ପରେ ମୋ ପକ୍ଷରେ ଛେଳିଟିକୁ ନେଇ ମଞ୍ଚା ବନ୍ଧା ହଉଥିବା ଦୁର୍ଗମ ସ୍ଥାନକୁ ଯିବା ସମ୍ଭବପର ହେବ ନାହିଁ । ଗତି ଦ୍ରୁତତର କଲି । ମଞ୍ଚା ବନ୍ଧା ପ୍ରସ୍ତୁତ କରିସାରି ମିଃ ଭଞ୍ଜ ମିଶ୍ର ମତେ ଚାହିଁ ରହିଥିଲେ, ଯେପରି ପ୍ଲାଟଫର୍ମରେ ଯାତ୍ରୀମାନେ ଚାହିଁ ରହିଥାନ୍ତି ଚାରିଘଣ୍ଟା ବିଳମ୍ବରେ ଆସୁଥିବା ପାସେଞ୍ଜର ଟ୍ରେନକୁ । କିନ୍ତୁ କ୍ଷୁଦ୍ର ପଶୁଟିକୁ ଦେଖି ତାଙ୍କ ଓଷ୍ଠାଧାରରେ ଏକ କ୍ଷୀଣ ହାସ୍ୟରେଖା ଦେଖାଗଲା । ଛେଳିଟିକୁ ନେଇ ପୂର୍ବ ନିର୍ଦ୍ଦେଶିତ ସ୍ଥାନରେ ବନ୍ଧାଗଲା ଏବଂ ତା' ପରେ ପରେ ଛେଳିର ଖୁରାଠାରୁ ଗୋଟିଏ

ଓଭରସିଅର ମାପଫିତାକୁ ଧରି ସେ ଆସିଲେ ମଞ୍ଚା ତଳ ପର୍ଯ୍ୟନ୍ତ, ଠିକ୍ ଯେତିକି ଫୁଟ ଦୂରତା ଦରକାର, ସେତିକି ଫୁଟ ହେଲା କି ନାହିଁ । ମୁଁ ଏତେ ଦୁଃଖରେ ମଧ୍ୟ ହସି ପକେଇଲି । ପାହାଡ଼ି ସନ୍ଧ୍ୟା, ହଠାତ୍ କୁଆଡୁ ମାଡ଼ିଆସେ । ଚାହୁଁ ଚାହୁଁ ଅନ୍ଧାର ହୋଇଗଲା । ଆମେ ଫେରି ଆସୁ ଆସୁ ସେହି ନିର୍ଜନ ସ୍ଥାନରେ ଛେଳିଟିର ନିରୀହ ମେଁ ମେଁ ଶବ୍ଦ ଅତି କରୁଣ ମନେ ହେଉଥିଲା । ମୁଁ ମନେ ମନେ ଭାବିଲି, ''ଥା' ବାପା ଥା' । ଆଜି ରାତିରେ ଯଦି ବାଘ ତତେ ନଖାଏ, ତାହାହେଲେ ତୁ କାଲି ଯିବୁ ସାହେବମାନଙ୍କର ଲଞ୍ଚ୍ ଖାଇବା ଟେବୁଲ୍‌କୁ । ତୋର ମୃତ୍ୟୁ ଅନିବାର୍ଯ୍ୟ ।''

କ୍ୟାମ୍ପ ନିକଟରେ ବଡ଼ ସାହେବମାନେ କିନ୍ତୁ ବିଶେଷ ଉତ୍କଣ୍ଠିତ ନଥିଲେ । ସାମ୍ନା ଟେବୁଲ ଉପରେ ହୁଇସ୍କିର ଗ୍ଲାସ୍, ସୋଡ଼ା ବୋତଲ ଇତ୍ୟାଦି ସୂଚନା ଦେଉଥିଲା ଯେ ସେମାନେ ବେଶ୍ ଆରାମରେ ସମୟ କଟାଉଛନ୍ତି । ଆମେ ପହଞ୍ଚି ସମ୍ବାଦ ଦେଲୁ ଯେ ସବୁ ପ୍ରସ୍ତୁତ । କିନ୍ତୁ ତଥାପି ସେମାନେ ଉଠିବା ପାଇଁ ବ୍ୟଗ୍ର ନୁହଁନ୍ତି । କିନ୍ତୁ ମୁଁ ବେଶ ଉତ୍କଣ୍ଠିତ ହୋଇପଡ଼ିଲି, ଏମାନେ ବିଳମ୍ବ କରି ଗଲାବେଳକୁ ଯଦି ବାଘ ଛେଳିକୁ ନେଇ ଚମ୍ପଟ କରିଥାଏ, ତାହାହେଲେ ଏତେ ରାତିରେ ପୁଣି ଛେଳି ଆସିବ କୋଉଠୁ ? କିନ୍ତୁ ସେମାନଙ୍କର ଆଲୋଚନା ଶୁଣି ମୁଁ ଅଚିରେ ଆଶ୍ୱସ୍ତ ହେଲି । ବୁଝିଲି, ରାତି ଦଶଟା ସାଢ଼େ ଦଶଟା ପୂର୍ବରୁ ସାଧାରଣତଃ ବାଘ, ବିଶେଷ କରି ଆର୍.ବି.ଟି. ଶିକାର କରି ବାହାରେ ନାହିଁ ।

ରାତି ଦଶଟା ପାଖାପାଖି, ପର୍ଯ୍ୟାୟକ୍ରମେ ପ୍ରଥମେ ମିଃ ମିଲର୍ ତା'ପରେ ମିଃ ଘୋଷ ଓ ତା'ପରେ ମିଃ ଦାସ୍ ସେମାନଙ୍କର ସାଧ ଅନୁଯାୟୀ ବେଶ୍ କିଛି ପାନୀୟର ସଦ୍‌ବ୍ୟବହାର କରିଛନ୍ତି । ସାଙ୍ଗରେ ଯିବା ପାଇଁ କିଛି ଶୁଖିଲା ଖାଦ୍ୟ ଖବର କାଗଜରେ ବନ୍ଧା ହୋଇ ରହିଛି । ସେମାନେ ମଞ୍ଚା ଅଭିମୁଖେ ବାହାରିଲେ । କିନ୍ତୁ ମିଃ ଦାସ କୌଣସି ନା କୌଣସି ଆଳ ଦେଖାଇ ଗଲେ ନାହିଁ । ସେମାନଙ୍କର ଅନୁଗମନ କଲେ ଦୁଇଜଣ ଆଦିବାସୀ କୁଲି । ଜଣକର ଗୋଟାଏ ହାତରେ ଖାଦ୍ୟପୁଟୁଳି ଓ ଅନ୍ୟ ହାତଟିରେ ପ୍ରଚୁର ପାନୀୟ ମହଜୁଦ ଥିବା ଗୋଟିଏ ଝୁଡ଼ି । ଅନ୍ୟ କୁଲିଟିର ଦୁଇ କାନ୍ଧରେ ଘୋର ଆଶଙ୍କା ଉଦ୍ରେକକାରୀ ଦୁଇଟି ବନ୍ଧୁକ । ଗୋଟିଏ ଏକନଳୀ, ଅନ୍ୟଟି ଦୋ'ନଳୀ ! ପରେ ବୁଝିଲି, ଏକନଳୀ ବନ୍ଧୁକଟିକୁ 'ରାଇଫଲ୍' କୁହନ୍ତି ।

ସେମାନେ ଯିବାପରେ ଆମେମାନେ ଯଥେଷ୍ଟ ଆଶ୍ୱସ୍ତ ହେଲୁ, ଯେପରି ରାମଙ୍କର ବନବାସ ସମୟରେ ଆଶ୍ୱସ୍ତ ହୋଇଥିଲେ କୈକେୟୀ ଓ ମନ୍ଥରା । ତା'ପରେ ପରେ ବେଶ କିଛି ସମୟ ଆମ ଭିତରେ ଆସନ୍ତାକାଲିର ମୃତ ବ୍ୟାଘ୍ରଟି ଉପରେ ଆଲୋଚନା ଚାଲିଥିଲା । ଆମେ କ୍ଳାନ୍ତ ହୋଇ ପଡ଼ିଥିଲୁ । ତେଣୁ ଅଳ୍ପ କିଛି ଖାଇନେଇ ଆମେ

ଶୋଇପଡ଼ିଲୁ ଗୁଳିର ଶବ୍ଦକୁ ଅପେକ୍ଷା କରି କରି । କିନ୍ତୁ ସେଦିନ ରାତିରେ କୌଣସି ଗୁଳି ଫୁଟି ନଥିଲା ।

ସେମାନେ କେତେବେଳେ ରାତିରେ ଆସି କ୍ଳାନ୍ତ ହୋଇ ସେମାନଙ୍କ ପାଇଁ ନିର୍ଦ୍ଧାରିତ ସ୍ଥାନରେ ଶୋଇଯାଇଥିଲେ । ଆମେ ଖୁବ୍ ସକାଳୁ ଉଠି ସେମାନଙ୍କର ପ୍ରାତଃକାଳୀନ ଚା' ଜଳ ପାନ ପାଇଁ ତତ୍ପର ହୋଇ ଉଠିଲୁ । ସେମାନେ ଉଠିଥିଲେ ବେଶ୍ ଡେରିରେ ଏବଂ ଆମକୁ ଦେଖି ମିଃ ମିଲର୍ ଯାହା ଇଂରାଜୀରେ କହିଲେ, ତା'ର ସାରମର୍ମ ହେଲା, ଛେଳିଟା ଏତେ ଛୋଟ ଯେ ବାଘ ତାକୁ ଖାଇବାକୁ ଆସିଲା ନାହିଁ, ତେଣୁ ବାଘକୁ ଆକର୍ଷଣ କରିବା ପାଇଁ ଆଉ ଟିକିଏ ବଡ଼ ଜନ୍ତୁର ପ୍ରୟୋଜନ ।

ମିଃ ଘୋଷ ପଚାରିଲେ, ''ଆପଣଙ୍କର ଅନୁମାନରେ କେଉଁ ଜନ୍ତୁ ସୁଟେବଲ୍ ହବ ?''

ମିଃ ମିଲ୍ର ତାଙ୍କର ପାଇପଟାକୁ ପାପୁଲି ଉପରେ ଝାଡ଼ୁ ଝାଡ଼ୁ କହିଲେ, ''ହର୍ସ, ହର୍ସ ଇଜ୍ ଦି ବେଷ୍ଟ ।''

ମିଃ ଘୋଷ୍ ମିଃ ଦାସଙ୍କ ଆଡ଼କୁ ଅନେଇ କହିଲେ, ''ହର୍ସ'' । ମିଃ ଦାସ ମିଃ ଭଟ୍ଟମିଶ୍ରଙ୍କ ଆଡ଼କୁ ଆଙ୍ଗୁଠି ନିର୍ଦ୍ଦେଶ କରି କହିଲେ, ''ହର୍ସ'' । ମିଃ ଭଟ୍ଟମିଶ୍ର ମୋର ଅତି ନିକଟକୁ ଚାଲି ଆସି ମୋ କାନ ପାଖରେ କହିଲେ, ''ଦୀନବନ୍ଧୁ, ଗୋଟାଏ ଘୋଡ଼ା ଦରକାର ।'' ମୁଁ ଆକାଶରୁ ପଡ଼ିଲି ।

କିଛି ସମୟ ପରେ ଆମେମାନେ ମିଃ ଦାସଙ୍କ ସହିତ ଏକାନ୍ତ ପରାମର୍ଶ କରି ବାରମ୍ବାର ବୁଝେଇବାକୁ ଚେଷ୍ଟା କରିଥିଲୁ ଯେ ସେ ବସ୍ତୁ ଏଠାରେ ମିଳିପାରିବ ନାହିଁ । କିନ୍ତ ମିଃ ଦାସ ମଧ୍ୟ ନଛୋଡ଼ବନ୍ଦା । ସେ ମିଃ ଭଟ୍ଟମିଶ୍ରଙ୍କ ହାତକୁ ପ୍ରାୟ ଛଅଶହରୁ ସାତଶହ ଟଙ୍କା ବଢ଼େଇ ଦେଇ କହିଲେ, ''ଯେମିତି ହେଲେ ଗୋଟାଏ ଘୋଡ଼ା ଆଣିବାକୁ ପଡ଼ିବ । ନହେଲେ ଆମ ସମସ୍ତଙ୍କର ଚରିତ୍ର-ପଞ୍ଜିତ ଗଲା, ଚାକିରୀ ମଧ୍ୟ ଚାଲିଯାଇପାରେ ।'' ମିଃ ଭଟ୍ଟମିଶ୍ର କହିଲେ, ଆମେ ଯାଉଛୁ ସାର୍, କିନ୍ତୁ ଘୋଡ଼ା ମିଳିଲା ପରି ମତେ ଲାଗୁ ନାହିଁ ।''

ମିଃ ଦାସ ସେମାନଙ୍କ ଗହଣକୁ ଫେରିଗଲେ ଓ ଆମେ ଦୁଇଜଣ ଘୋଟକର ସନ୍ଧାନରେ ବାହାରିଲୁ । କ୍ୟାମ୍ପର କିଛି ଦୂରରେ ଥିବା ଗୋଟିଏ ଛୋଟ ଓ ଏକମାତ୍ର ଚା' ଦୋକାନରେ ଆମେମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ବସିପଡ଼ିଲୁ । ସବୁଦିନ ପରି ହରି ସାହୁ କହିଲା, ''ବାବୁ ଚା' ଦେବି ?'' ମିଃ ଭଟ୍ଟମିଶ୍ର ଚିଡ଼ି ଉଠିଲା ପରି କହିଲେ, ''ଆବେ ଚା' ଦବୁ କ'ଣ, ଶଳା ଆମର ଗୋଟାଏ ଘୋଡ଼ା ଦରକାର ।'' ହରି ସାହୁ ଚା' ତିଆରି କରୁକରୁ କହିଲା, ''ବାବୁ, ଘୋଡ଼ା ଏଠି ମିଳିବ କାହୁଁ ? ମୋ ଗାଆଁ

ହାଟରେ ମୋ' ପୁଅ ମାଲପତ୍ର ଲଦି ବେପାର କରିବ ବୋଲି ମୁଁ ପରା କାଲି ଗୋଟାଏ ଟଟ୍ଟୁଘୋଡ଼ା ନେଇକରି ଆସିଚି କୋଡ଼ିଏ କୋଶ ଦୂରରୁ, ଏଠି ଘୋଡ଼ା କାହିଁ ?''

ଆମ ଦୁହିଁଙ୍କର ଆଖି ଉଜ୍ଜ୍ୱଳ ହୋଇ ଉଠିଲା । ମିଃ ଭଞ୍ଜମିଶ୍ର କହିଲେ, ''ହଇଓ ସାହୁପୁଅ, ଘୋଡ଼ା କାହିଁ ?'' ହରି ସାହୁ କିଛି ନ କହି ଦୋକାନ ପଛପଟ ଆଡ଼କୁ ଆଙ୍ଗୁଳି ଦେଖାଇ ଦେଇ ତା' କାମରେ ବ୍ୟସ୍ତ ରହିଲା । ଆମେ ଆମର ଆଖିକୁ ବିଶ୍ୱାସ କରିପାରିଲୁ ନାହିଁ । ସତକୁସତ ଗୋଟାଏ କଇଁଥ ଗଛରେ ଟଟ୍ଟୁ-ଘୋଡ଼ାଟିଏ ବନ୍ଧା ହୋଇଛି । ଏପରି କ୍ଷୀଣକାୟ, କୁତ୍ସିତଦର୍ଶନ ଘୋଡ଼ା ମୁଁ କେବେ ଜୀବନରେ ଦେଖି ନାହିଁ । କିନ୍ତୁ ସେଇ ମୁହୂର୍ତ୍ତରେ ମୋର ମନେ ହେଲା ମୁଁ ଅବା ଉଚ୍ଚୈଶ୍ରବାକୁ ପ୍ରତ୍ୟକ୍ଷ କରୁଛି । କାଳବିଳମ୍ବ ନକରି ମୁଁ ଘୋଡ଼ାଟିକୁ ଗଛରୁ ଖୋଲି ଆଣି କହିଲି, ''ସାହୁ, ଏ ଘୋଡ଼ା ମୁଁ ନେଲି । କେତେରେ କିଣିଚ, କହ, କେତେ ନବ କହ ।'' ତା'ର କଷ୍ଟଲବ୍ଧ ଘୋଡ଼ାଟିକୁ ତା ପାଖରୁ ନ ନେଇଯିବା ପାଇଁ ସେ ଆମକୁ ବହୁ ଅନୁନୟ ବିନୟ କଲା । କିନ୍ତୁ ଆମେ ନଛୋଡ଼ବନ୍ଦା । ତାର ବି କଅଣ ଉପାୟ ଅଛି ? ସିଏ ଦି' ଚାରି ଟଙ୍କାର ବିକ୍ରିବଟା କରିବ ବୋଲି ଆମରି କ୍ୟାମ୍ପ ଉପରେ ନିର୍ଭର କରେ । ତେଣୁ ବାଧ୍ୟ ହେଇ କିଣିଥିବା ମୂଲ୍ୟରୁ ମାତ୍ର ଚାଳିଶିଟି ଟଙ୍କା ଅଧିକା ନେଇ ସେ ଘୋଡ଼ାଟିକୁ ହସ୍ତାନ୍ତର କଲା । ଅତି ହୃଷ୍ଟ ଚିତ୍ତରେ ମିଃ ଭଞ୍ଜ ମିଶ୍ର ଖସ୍ ଖସ୍ କରି ବାରଖଣ୍ଡ ଦଶଟଙ୍କିଆ ନୋଟ୍ ତାକୁ ବଢ଼େଇ ଦେଲେ ।

ଆଗେ ଆଗେ ଉତ୍‌ଫୁଲ୍ଲ ମିଃ ଭଞ୍ଜ ମିଶ୍ର, ପଛେ ପଛେ ଅଶ୍ୱ-ରଜ୍ଜୁ-ଧୃତ ମୁଁ ଏକାକୀ ଅଶ୍ୱାରୋହୀ । ଦୁଇଜଣଯାକ ଅବିଳମ୍ବେ କ୍ୟାମ୍ପରେ ପହଞ୍ଚିଗଲୁ । ମିଃ ଦାସ ଓ ମିଃ ଘୋଷ ଅବିଳମ୍ବେ ହାତରେ ଚନ୍ଦ୍ର ପାଇଲେ । ମିଃ ମିଲ୍‌ର ଅତ୍ୟନ୍ତ ଉତ୍‌ଫୁଲ୍ଲ ହେଇ କହିଲେ, ''ଭେରି ଗୁଡ଼, ଇଉ ହାଭ୍ ଗଟ୍ ଭେରି ଏଫିସିଏଣ୍ଟ ପିପ୍‌ଲ୍ ଓ୍ୱାର୍କିଂ ଫର୍ ଇଉ, ଗୁଡ୍ ଗୁଡ୍ ।''

ଆମେମାନେ ମଧ୍ୟ ଅତ୍ୟନ୍ତ ଆନନ୍ଦିତ ହେଲୁ । ତା'ପରେ ଗତ ସଂଧ୍ୟାର ପୁନରାବୃତ୍ତି । ଘୋଡ଼ାକୁ ମଞ୍ଚା ପାଖରେ ନେଇ ବନ୍ଧାଗଲା । ପ୍ରାୟ ରାତି ଦଶଟା ପର୍ଯ୍ୟନ୍ତ ମଦ୍ୟ ସେବନ କରି ଦୁଇଟି କୁଲିଙ୍କ ଧରି ତଦନୁରୂପ ସେମାନେ ମଞ୍ଚ ଆଡ଼କୁ ଗଲେ ଓ ଆମେମାନେ ପୁଣି ଥରେ ଆଶ୍ୱସ୍ତ ହେଲୁ । ମନେହେଉଥିଲା ମିଲର୍ ସାହେବଙ୍କର ସାମାନ୍ୟ ମାତ୍ରାଧିକ ହୋଇଥିବା ପରି ।

ମିଃ ଭଞ୍ଜମିଶ୍ର ମତେ ଡାକି କହିଲେ, ''ଯାଃ, ଗୋଟାଏ ଜଞ୍ଜାଳ ଗଲା । ଚାଲ୍, ହରିସାହୁ ଦୋକାନରୁ ଚା'ଟିକେ ଖାଇ ଆସିବା ।'' ଚାଲ ଚାଲ ହେଇ ହରିସାହୁ ଦୋକାନକୁ ଯାଇ ତା'ର କାଠପଟା ବେଞ୍ଚିରେ ବସି ଦି'କପ୍ ଚା' ପାଇଁ ଅର୍ଡ଼ର ଦେଇ କହିଲୁ, ''ତମେ ସତରେ ଆମକୁ ଆଜି ରକ୍ଷା କରିଦେଲେ ସାହୁଏ ।''

ହରିସାହୁ ନିର୍ଲିପ୍ତ ଭାବରେ ଗରମ ପାଣିର କେଟ୍‌ଲୀଟାକୁ ଖଣ୍ଡେ କନା ଧରି ଚୁଲି ଉପରୁ ଓହ୍ଲାଉ ଓହ୍ଲାଉ କହିଲା, "ବାବୁ, ଆପଣ କୋଉଠିକି ନେଲେ ଘୋଡ଼ାଟିକୁ ? ତାକୁ ଟିକେ ହେପାଜତ୍ କରି ବାନ୍ଧିଲେ ନାହିଁ ?" ମିଃ ଭଟ୍ଟମିଶ୍ରଙ୍କ କଣ୍ଠରେ ଗଭୀର ଉତ୍କଣ୍ଠା, "କାହିଁକି, କ'ଣ ହେଲା ସାହୁଏ ?" ସେହିପରି ନିର୍ଲିପ୍ତ ଭାବରେ ହରିସାହୁ କହିଲା, "ଆଉ ହବ କଅଣ ? ଆପଣ ନବାର ଦି'ଘଡ଼ି ପରେ ସେ ଘୋଡ଼ା ଆସି ମୋ' ଦୋକାନରେ ହାଜର । କୁଆଡ଼େ ଚାଲିଯିବ ବୋଲି ମୁଁ ତାକୁ ଫେର୍ ସେଇ କଇଁଥ ଗଛରେ ବାନ୍ଧି ଦେଇଛି ।"

ଆମେ ଦୁଇଜଣ ହତବାକ ହେଇ ଦୋକାନ ପଛପଟକୁ ଯାଇ ଘୋଡ଼ାଟିକୁ ବନ୍ଧା ହୋଇଥିବା ଦେଖିଲୁ । ଆମ ମୁଣ୍ଡରେ ଯେପରି ବଜ୍ରପାତ ହେଲା । ତା'ପରେ ଅନେକ ସମୟ ଧରି ବହୁ ଉପାୟ ଚିନ୍ତାକଲୁ । କିନ୍ତୁ ସବୁଥିରେ ବ୍ୟର୍ଥ ହେଲୁ । ପ୍ରଥମେ ଚିନ୍ତାକଲୁ ଯେ ବେଶ୍ କିଛି ଲୋକବାକ ଯୋଗାଡ଼ କରି ଏଇ ରାତିରେ ଘୋଡ଼ାଟାକୁ ମଞ୍ଚା ପାଖକୁ ନେଇ ହବ କି ? ପ୍ରଥମତଃ ଲୋକର ଅଭାବ । ଦ୍ୱିତୀୟରେ ମଞ୍ଚା ପାଖକୁ ନେଇକରି ଗଲେ ସାହେବ ଭାବିବେ ଆମେ ଗୁଡ଼ିଏ ଅପାରଗ ବ୍ୟକ୍ତି । ତା'ଛଡ଼ା ଚୋର ବଦ୍‌ମାସ୍ ବି ଭାବିପାରନ୍ତି । ଭାବିପାରନ୍ତି ଦେଖ, ଘୋଡ଼ାଟାକୁ ନବାନ୍ଧି ପୁଣି ତାକୁ ନେଇ ବିକିଦେଲେ । ସାହେବର ମିଜାସ କେତେବେଳେ କ'ଣ ହବ କିଏ ଜାଣେ ? ତା'ଛଡ଼ା ସାହେବ ଯେତେ ମଦ ଖାଇଚି, ଆମେ ଘୋଡ଼ା ନେଇ ଯାଉ ଯାଉ ଘୋଡ଼ା ପାଖକୁ ବାଘ ଆସିଲା ବୋଲି ଗୁଳି ମଧ ଫୁଟେଇ ଦେଇପାରେ ।

ସବୁଆଡୁ ନିରସ୍ତ ହେଇ ଭଗବାନଙ୍କୁ ଡାକି କ୍ୟାମ୍ପକୁ ଫେରିଲୁ । ଫେରିଲା ବେଳେ ମି: ଭଟ୍ଟମିଶ୍ର କହିଲେ, "ଆମ ଦି'ଜଣଙ୍କ ଚାକିରୀ ତ ଗଲା, ମିଃ ଦାସଙ୍କ କଥା ମଧ ଟଳମଳ ।" ଘୋର ଦୁଶ୍ଚିନ୍ତା ଭିତରେ କିଛି ନଖାଇ, ପାଖ ପାଖ ଦୁଇଟି କ୍ୟାମ୍ପ ଖଟରେ ଶୋଇପଡ଼ିଲୁ । ଏତେ ଦୁଶ୍ଚିନ୍ତାରେ ଆଖିକୁ ନିଦ ଆସୁଛି କେଉଁଠି ? ମିଃ ଭଟ୍ଟମିଶ୍ର ପ୍ରଳାପ କଲାପରି କହୁଥା'ନ୍ତି, "ଆରେ ଯା'ମ—ଚାକିରୀଟାତ ଯିବ, ମୁଁ ବି ସାହେବକୁ ତେରି ମେରି ବତେଇ ଦେଇ ଆସିବି । ସିଏ ଯଦି ମତେ କହିବ 'ଗେଟ ଆଉଟ୍' ମୁଁ ବି ତାକୁ କହିବି 'ମିଲର୍ ସାହେବ, ଇଉ ଗେଟ୍ ଆଉଟ୍' ।" ମୋର ବା ଏଥିରେ କଅଣ କହିବାର ଅଛି ? ମୋର ତ ଚାକିରୀ ଯାଇସାରିଲାଣି ।

ସେଦିନର ରାତ୍ରି କଟିଲା ଅର୍ଦ୍ଧଜାଗରଣ ଓ ଅର୍ଦ୍ଧସୁଷୁପ୍ତି ଭିତରେ । କହିବା ବାହୁଲ୍ୟ ଯେ ଏ ସମସ୍ତ ଦୁର୍ଘଟଣା ଆମେ ମିଃ ଦାସଙ୍କ ଠାରୁ ଗୋପନ ରଖିବା ପାଇଁ ବହୁ ସତର୍କତା ଅବଲମ୍ବନ କରିଛୁ । ସକାଳ ହେଲା ଏବଂ ଆମର କର୍ତ୍ତବ୍ୟ ପାଇଁ ଆମେ ବାହାରିଲୁ ସାହେବମାନଙ୍କ କ୍ୟାମ୍ପକୁ । ପ୍ରଥମଦିନ ଓଟାରି ଓଟାରି ନଉଥିବା ଛାଗଳଟି

ପରି, ମତେ ଲାଗୁଥାଏ ଯେପରି ମୁଁ କାହା ଦ୍ୱାରା ରଜ୍ଜୁ-ବନ୍ଧିତ ହୋଇ ସାହେବମାନଙ୍କର କ୍ୟାମ୍ପକୁ ମିଃ ଭଟ୍ଟମିଶ୍ରଙ୍କର ପଛେ ପଛେ ଚାଲୁଛି । କ୍ୟାମ୍ପ ପାଖରେ ପହଞ୍ଚି ଦେଖିଲୁ ଡ୍ରାଇଭରମାନେ ଖୁବ୍ ସକାଳୁ ସକାଳୁ ଉଠି ସେମାନଙ୍କର ଗାଡ଼ି ଧୋଇବା କାମ ଆରମ୍ଭ କରି ଦେଇଛନ୍ତି । ମିଃ ଭଟ୍ଟମିଶ୍ର ଜଣେ ଡ୍ରାଇଭର ପାଖକୁ ଯାଇ ଖୁବ୍ ଆସ୍ତେ ଆସ୍ତେ ତା କାନ ପାଖରେ ପଚାରିଲେ, ''କାଲି ସାହେବମାନେ କେତେବେଳେ ଫେରିଲେ ?'' ଡ୍ରାଇଭରଟି କହିଲା, ''ଫେରୁ ଫେରୁ ପ୍ରାୟ ରାତି ସାଢ଼େ ତିନିଟା ।''

ଏକଥା ଶୁଣି ମୁଁ ଓ ମିଃ ଭଟ୍ଟମିଶ୍ର ପରସ୍ପରକୁ ଅଗାଧ ବିସ୍ମୟରେ ଚାହିଁ ରହିଲୁ କେବଳ । ''କଥା କ'ଣ ? ଯେତେବେଳେ ଘୋଡ଼ା ନାହିଁ, ସେତେବେଳେ ଏମାନେ ସବୁ ଏତେ ରାତିଯାଏ ବସିରହିଥିଲେ କାହିଁକି ?'' ମତେ ପଚାରିଲେ ଭଟ୍ଟମିଶ୍ର । ମୁଁ କିଛି ଉତ୍ତର ନଦେଇ କେବଳ ଏପଟକୁ ସେପଟକୁ ମୁଣ୍ଡ ହଲାଇଲି ମାତ୍ର ।

ସାମ୍ନା ଘାସରେ ବେତ ଚଉକୀ ପଡ଼ିଲା । ଚାହାର ସରଞ୍ଜାମ ଆସି ଥୁଆହେଲା ଏବଂ ମିଲ୍‌ର ସାହେବ ଓ ଘୋଷ ସାହେବ ଯଥାକ୍ରମେ ଚଉକୀରେ ଉପବେଶନ କଲେ । ଆମେ ଦୁଇଜଣ ଟିକିଏ ଦୂରରେ ଠିଆ ହେଇ ଆଦେଶ ହଉ ବା ତିରସ୍କାର ହଉ ଗ୍ରହଣ କରିବା ପାଇଁ ନିଜକୁ ପ୍ରସ୍ତୁତ କରୁଛୁ ।

ମିଲ୍‌ର ସାହେବ ପାଇପ୍‌ର ନାଡ଼ାରେ ଇଙ୍ଗିତ କରି ମିଃ ଭଟ୍ଟମିଶ୍ରଙ୍କୁ ପାଖକୁ ଆସିବା ପାଇଁ ଡାକିଲେ । ଏଥର ବୋଧହୁଏ ବୋମାର ବିସ୍ଫୋରଣ ହବ ।

ମିଲ୍‌ର ସାହେବ କହିଲେ, ''ଇଉ ଅର୍ ଆନ୍ ଏକ୍‌ସଟ୍ରିମ୍‌ଲି ଏଫିସିଏଣ୍ଟ ପର୍‌ସନ । ଘୋଡ଼ାକା ବାନ୍ଧ୍‌ନେକା ଜାଗା ବିଲ୍‌କୁଲ୍ ଠିକ୍ ଥା, ବଟ୍ ଦି ଟାଇଗର ହାଜ୍ ବିକମ୍ କନିଙ୍ଗ୍ । ଆଇ ଆମ୍ କମିଙ୍ଗ୍ ବ୍ୟାକ୍ ଏଗେନ । ଆପ୍‌କା ମାଫିକ୍ ଆଦ୍‌ମି ଇହାଁ ବନ୍ଦୋବସ୍ତ କେ ଲିୟେ ଚାହିୟେ । ଭେରି ଗୁଡ୍ ଭେରି ଗୁଡ୍ ଇଉ ଆର୍ ୱଣ୍ଡରଫୁଲ ପର୍‌ସନ୍ ।''

ଗାଡ଼ିରେ ଜିନିଷପତ୍ର ଲଦାଲଦି ହବା ପରେ ସାହେବମାନେ ଗାଡ଼ିରେ ଚଢ଼ି ଚାଲିଗଲେ । ଗଲାବେଳେ ମିଲ୍‌ର ସାହେବ ପାଇପର ନାଡ଼ାଟାକୁ ହଲେଇ ଦଣ୍ଡାୟମାନ ମିଃ ଦାସ ଓ ମିଃ ଭଟ୍ଟମିଶ୍ରଙ୍କୁ କହିଗଲେ, ''ଥ୍ୟାଙ୍କ୍ ଇଉ ଭେରି ମଚ୍ ।''

ମୁଁ ଓ ଭଟ୍ଟମିଶ୍ର ପରସ୍ପରକୁ ଏକ ଅଗାଧ ବିସ୍ମୟରେ ଚାହିଁ ରହିଥିଲୁ କେବଳ ।

ମୁଁ ପରେ ଭଟ୍ଟମିଶ୍ର ବାବୁଙ୍କୁ ପଚାରିଲି, 'ଆଛା, ସାହେବ କ'ଣ ସବୁ କହିଲେ ଆଛା ?' ଭଟ୍ଟମିଶ୍ର ତଥାପି ସ୍ୱପ୍ନ ରାଜ୍ୟରେ ଥିଲାପରି କହିଲେ, 'ତମେ ଜଣେ ଖୁବ୍

ଦକ୍ଷ ବ୍ୟକ୍ତି । ଘୋଡ଼ା ବିଲ୍‌କୁଲ୍ ଠିକ୍ ଜାଗାରେ ବନ୍ଧା ହୋଇଥିଲା, କିନ୍ତୁ ବାଘଟା ଧୂର୍ତ୍ତ ହୋଇଯାଇଛି । ମୁଁ ଆଉଥରେ ଆସିବି । ଏଠି ଏସବୁ ବନ୍ଦୋବସ୍ତ କରିବା ପାଇଁ ତମପରି ଲୋକର ଏକାନ୍ତ ପ୍ରୟୋଜନ ।'

ଏହାପରେ ଆମେ ହରିସାହୁ ଦୋକାନକୁ ଫେରି ଆସିଥିଲୁ ଓ ଦେଖିଲୁ ଯେ' ଘୋଡ଼ାଟି କଇଁଥ ଗଛରେ ବନ୍ଧା ହୋଇ ନିର୍ଲିପ୍ତ ଭାବରେ ପାକୁଳି କରୁଛି ଓ ଟଙ୍କା ଫେରାଇବାକୁ ହରିସାହୁ ନିଜ ଲୁଗାର ଖୋସଣି ଢିଲା କରୁଥିଲା ।

*(ସଂବର୍ଦ୍ଧକ : ୧, ଅକ୍ଟୋବର–ଡିସେମ୍ବର ୧୯୮୨)*



# ସ୍ପାର୍ଟାକସ୍

ମୁଁ ସାମ୍ନାକୁ ଚାହିଁ ରହିଥିଲି ।

ମୋ ଆଖି ଆଗରେ ସୁନୀଳ ଆରବ ସାଗର ଏକ ଉଦ୍ଦାମ ଆହ୍ଲାଦରେ ସୂର୍ଯ୍ୟସ୍ନାନ କରୁଥିଲା । କେତେବେଳେ ସୂର୍ଯ୍ୟ ରଶ୍ମି ଗୋଟିଏ ମାତ୍ର ଜଳବିନ୍ଦୁରେ ଆଘାତ ପାଇ ନିୟୁତ ହୀରକ ଚୂର୍ଣ୍ଣ ପରି ବହୁ ଆଲୋକ ରେଖା ବିଚ୍ଛୁରିତ କରୁଥିଲା—ଯେମିତି ସେମାନେ ସହସ୍ର ସହସ୍ର ଛୋଟ ଛୋଟ ସୂର୍ଯ୍ୟ, ପୁଣି କେତେବେଳେ ନିଜେ ପ୍ରତିବିମ୍ବିତ ହୋଇ ପର ମୁହୂର୍ତ୍ତରେ ତରଙ୍ଗ ଆଘାତରେ, ଏକ ଅବିଶ୍ୱସ୍ତ ଦର୍ପଣର ପ୍ରତିବିମ୍ବ ପରି ଦୀର୍ଘାୟିତ ହୋଇ ଯାଉଥିଲା ଓ କେତେବେଳେ ଆସ୍‌ବେଷ୍ଟସ୍ ସିଟ୍ ପରି ଦନ୍ତୁରିତ ହୋଇଯାଇ ଚହଲି ଯାଉଥିଲା—ଲିଭି ଯାଉଥିଲା ତରଙ୍ଗମାନଙ୍କର ଚହଲା ଚହଲା ଧଳା ଧଳା ଫେଣର ହସରେ ।

ଫେରି ହ୍ୱାର୍ଫ ବନ୍ଦରରେ ଏକ ଅନିଶ୍ଚିତ ଅବସ୍ଥା ।

ମୋର ଟିଣ ସୁଟ୍‌କେଶ ଖଣ୍ଡିକ ମୁଁ ତଳେ ରଖି ଦେଇଛି ଓ ତା' ଉପରେ ବସି ରହିଛି । ମୋର ଛ' ବର୍ଷର ପୁଅ କୁନା ଓ ମୁଁ ତା' ପାଖରେ ଠିଆ ହୋଇ ରହିଛି କାନ୍ଧରେ ପ୍ଲାଷ୍ଟିକ୍ ପାଣି ବୋତଲ ଝୁଲେଇ ।

ମତେ ଓ କୁନାକୁ ଏଇ ସମୁଦ୍ର ପାରି ହୋଇ ଯିବାକୁ ହବ ।

ଅନ୍ୟୁନ ଚବିଶ୍ ଘଣ୍ଟା ଧରି ଆମକୁ ରହିବାକୁ ପଡ଼ିବ ସମୁଦ୍ର ଭିତରେ ।

ବନ୍ଦରରେ ଅନେକ ଲୋକଙ୍କର ଭୀଡ଼ । ଭୀଡ଼ ହବ ନାହିଁ କେମିତି ? ପ୍ରାୟ ଦେଢ଼ ହଜାର ଲୋକ ଚଢ଼ିବେ ଜାହାଜରେ । ସେମାନଙ୍କୁ ଜାହାଜରେ ଛାଡ଼ିବାକୁ ଆସିଥିବେ ସେତିକି ଲୋକ । ତା'ଛଡ଼ା ମାଲପତ୍ର ତ ଅଛି । ହାମାଲ୍‌ମାନେ ଠେଲା ଗାଡ଼ିରେ ଗଡ଼େଇ ଗଡ଼େଇ କେତେ ଯେ ବସ୍ତା, ଝୁଡ଼ି, ପିମ୍ପା ମୋ ପାଖ ଦେଇ ନେଲେଣି ତା'ର କ'ଣ ହିସାବ ଅଛି ।

ସେମାନଙ୍କ ଭିତରେ ପୁଣି ବୁଲୁଛନ୍ତି ଧଳା ପାନ୍ତଲୁନ ଆଉ ଧଳା କୋଟ୍ ପିନ୍ଧି କିଛି କିଛି ଲୋକ ! ସେମାନେ ଜାହାଜର ବଡ଼ ବଡ଼ ଅଫିସର୍ ହେବେ ପରା ! ତାଙ୍କ କୋଟ୍ କାନ୍ଧ ପାଖରେ କଳା ପଟି ଉପରେ ସୁନେଲି ଅକ୍ଷରରେ ସବୁ କଣ ଲେଖା ଯାଇଛି ।

ଏତେ ଲୋକଙ୍କର ଭୀଡ଼ ଭିତରେ ଭୀଷଣ ଗରମ ହଉଛି । କୁନାର ମୁହଁ ଲାଲ୍ ପଡ଼ିଯାଇ କେମିତି ତମ୍ଭାଳିଆ ଦେଖା ଯାଉଛି । ତଳକୁ ନଇଁ ପଡ଼ି କୁନାକୁ ପଚାରିଲି, କୁନା ! ପାଣି ପିଇବୁ ? କୁନା ମୁଣ୍ଡ ଡାହାଣ ପଟକୁ ଢାଳିଦେଇ ହଁ କଲା । ମୁଁ ପ୍ଲାଷ୍ଟିକ୍ ବୋତଲର ଠିପି ଖୋଲିଲି । ବୋତଲ ଭିତରୁ ଛୋଟ ଗିଲାସ କାଢ଼ି ପାଣି ଢାଳୁଚି—ଓଃ ! ଭାୟା ଯେରା ସମ୍ହାଲ୍‌କେ—ଗିଲାସ ହଲିଯାଇ ପାଣିତକ ଢାଳିଗଲା । ଆଉ ଥରେ ପାଣି ଢାଳିଲି । କୁନାକୁ ଦେଲି । କୁନା ଏକା ନିଶ୍ୱାସରେ ଢକ୍ ଢକ୍ କରି ସବୁ ପିଇସାରି ଆହୁରି ପାଣି ପାଇଁ ଗିଲାସ ଟେକି ଧରିଲା । ଆଉଥରେ ପାଣି ଦେଲି । ସେତକ ବି ଏକାଥରକେ ଶେଷ ।

ମୋ ପାଖ ଦେଇ ଜଣେ ଅଫିସର୍ ତରତର ହେଇ ଚାଲି ଯାଉଥିଲେ । ତାଙ୍କ ସାମ୍ନାକୁ ଆସିଯାଇ ପଚାରିଲି, ''ଜାହାଜ ଛାଡ଼ିବାକୁ ଆଉ କେତେ ସମୟ ?'' ସେ ତରତରରେ ଇଂରାଜୀରେ ଉତ୍ତର ଦେଇ ପୁଣି ଲୋକଗହଳି ଭିତରେ ମିଶିଗଲେ । ତାଙ୍କ କଥାରୁ ଯାହା ବୁଝିଲି, ୱେଦର ଖରାପ ଅଛି—ସୁଧୁରି ଗଲେ ଜାହାଜ ଛାଡ଼ିବ । ମୁଁ ବାରମ୍ବାର ତନଖି କରି ନଉଥାଏ । ଗୋଟାଏ ସୁଟ୍‌କେଶ୍, ଗୋଟାଏ ହୋଲ୍‌ଡ଼ ଅଲ୍, ମୋ କାନ୍ଧରେ ପାଣି ବୋତଲ ଆଉ କୁନା ।

ପାଗ ଉପରେ ଜାହାଜ ଛାଡ଼ିବା ନିର୍ଭର କରୁଛି । ସବୁ କିଛି ଅନିଶ୍ଚିତ ହୋଇଗଲା ତାହାହେଲେ । କିନ୍ତୁ ପାଗ ଖରାପ ହେଲା କେଉଁଠି ? ଏଠିତ ଆରବ ସାଗରର ନୀଳ ପରୀ ତା'ର ବିପୁଳ ପକ୍ଷ ବିସ୍ତାର କରି ଆନନ୍ଦରେ ସୂର୍ଯ୍ୟସ୍ନାନ କରୁଛି ।

ଆଉ କେତେ ସମୟ ଅପେକ୍ଷା କରିବାକୁ ପଡ଼ିବ କିଏ ଜାଣେ ? ଧୀରେ ଧୀରେ ଲୋକଙ୍କର ଭୀଡ଼ ବୋଧହୁଏ ବଢୁଚି—ନହେଲେ ଏତେ ଗରମ ହୁଅନ୍ତା କାହିଁକି ? କୁନା ବଲ୍ ବଲ୍ କରି ଏଠିକି ସେଠିକି, ୟା' ମୁହଁକୁ ତା' ମୁହଁକୁ ଚାହୁଁଛି । ଘର ପାଖରେ କୁନା ବେଶ୍ ଖେଳାଖେଳି କରେ, କିନ୍ତୁ ଏଠି ଏତେ ବୋକାବୋକା ଦେଖାଯାଉଛି କାହିଁକି ? ମଫସଲରୁ ଆସିଛି । କିଛି ସମୟ ପରେ ସବୁ ବୁଝିଯିବ—ଏଇ ବୋକାବୋକା ଭାବ ତା' ଚେହେରାରୁ କଟିଯିବ ।

ଏଇ କୁନାକୁ ଅସହାୟ ଭାବରେ ଛାଡ଼ିଦେଇ ସେଦିନ ତା' ମା' ଭୁବନେଶ୍ୱର ଡାକ୍ତରଖାନାର ଅପରେସନ୍ ଟେବୁଲ୍ ଉପରେ ଚାଲିଗଲା । ଗଲାବେଳେ ମତେ ମଧ୍ୟ ପଦେ କିଛି କହିଗଲା ନାହିଁ । ହୁଏତ କହିଥାଆନ୍ତା । କିନ୍ତୁ ଅପରେସନ୍ ଟେବୁଲ୍ ପାଖକୁ ମତେ କିଏ ବା' ଛାଡ଼ିଲା । ମୁଁ କାଚଲଗା ଝରକା ପାଖରେ, କାଚ ଉପରେ ନାକକୁ ଯଥା ସମ୍ଭବ ଚେପ୍‌ଟା କରି ଚାହିଁ ରହିଥିଲି । ଓ.ଟି.ର ସାମ୍ନା କାନ୍ଥରେ ଟଙ୍ଗା ହୋଇଥିବା କାନ୍ଥ ଘଡ଼ିରେ ଗୋଟାଏ ଲାଲ୍ ରଙ୍ଗର ସେକେଣ୍ଡ କଣ୍ଟା ଟିକ୍ ଟିକ୍ ହେଇ ଆଗକୁ ଆଗକୁ ଡେଇଁ ଡେଇଁ ଚାଲୁଥିଲା ।

ତା'ପରେ ମୁଁ କୁନାକୁ ନେଇ ଘରକୁ ଫେରିଆସି ମୋ' ମା' କୋଳକୁ ଟେକି ଦେଇଥିଲି । ସତେ ଯେମିତି ମୋର ମା'ର ସ୍ତନରେ ଅଛି ସମ୍ଭାବନା ଓ ସିଏ ଯେମିତି କୁନାକୁ ବଞ୍ଚେଇ ରଖି ପାରିବ । ମୋ' ମା' ଚୁପ୍ ଚାପ୍ ବସିରହିଥିଲା । କେତେବେଳେକେ କହିଲା, ଯିବୁଟି ରଘୁଆ ମା'କୁ ଡାକିଆଣିବୁ । ମୁଁ କିଛି ବୁଝି ପାରିଲି ନାହିଁ ରଘୁଆ । ମା' ଆସିଲା । ରଘୁଆ ମା' ହାତକୁ କୁନାକୁ ଟେକିଦେଇ ମା' କହିଲା, ଦେ' ଦଶଟା ପଇସା ଦେ, ଏଇ ମା' ଛେଉଣ୍ଡ ପିଲାକୁ ତତେ ଆଜି ବିକି ଦେଲି । ଧୋବା ପିଲାକୁ ଭଗବାନ ଚାହିଁଲେ ବଞ୍ଚେଇ ରଖିବେ ।

କୁନାକୁ ଚାହିଁଲି । ସେ' ସେମିତି ସୁଟ୍‌କେଶ୍ ଉପରେ ବସି ରହିଥାଏ । କୁନା କ'ଣ ଧୋବା ପିଲା ପରି ଦିଶୁଚି ? ନା ସେମିତି ମିଛିମିଛିକା ବିକ୍ରୀ କରିଦେଇଥିଲା ମୋ' ମା' । ମୋ' ମା' ବି ଆଜି ଆଉ ନାହିଁ । କେବଳ ମୁଁ ଓ ଏଇ କୁନା ।

ବନ୍ଦରରେ ଲୋକ ସଂଖ୍ୟା ଆହୁରି ବଢୁଛି ବୋଧହୁଏ । ନହେଲେ ଲୋକମାନେ ଏମିତି ହାବୁକା ଖାଇଲା ପରି ହଉଥାଆନ୍ତେ କାହିଁକି ? ସେଠି ଗୁଡ଼ାଏ ହିପ୍‌ପୀ, ହିପ୍‌ପିଣୀ ଠିଆ ହେଇ ରହି ଏଇ ଲୋକମାନଙ୍କର ଗଣ୍ଡଗୋଳକୁ ଏକ ନିର୍ଲିପ୍ତ ଆଖିରେ ପରୀକ୍ଷା କରୁଛନ୍ତି ବୋଧହୁଏ । ବାଃ ! ଏମ୍ତି ହିପ୍‌ପୀ ହେଇଯିବା ଭାରି ମଜା ! ସେମାନଙ୍କର ଯେପରି କିଛି କରିବାର ନାହିଁ । ସେମାନେ ବୋଧହୁଏ ଏଇ ଜାହାଜରେ ଯିବେ—ନଗଲେ ବି ତାଙ୍କର କୋ' ପରୱାଏ ଅଛି ଯେ !

ଯାଡ଼କୁ ଗୋଟାଏ ବୁଢ଼ା ହାମାଲ୍ ଆସୁଛି । ଧଳା କନାର ପାଣ୍ଟଲୁନ୍, ଉପରେ ନେଳୀ ରଙ୍ଗର ଉର୍ଦ୍ଦି, ମୁଣ୍ଡରେ ଗାନ୍ଧୀ ଟୋପି । ଚିତ୍କାର କରୁଛି, ବଗଲ୍ ସାବ୍—ବଗଲ୍ ହୋ ଯାଇୟେ—ଓଃ ! ସେ' ଟାଣୁଥିବା ଠେଲା ଗାଡ଼ିଟା ଉପରେ କେତେ ମାଲ୍ ଲଦା ହୋଇଛି । ଟାଣିବାର କଷ୍ଟରେ ସେ' ପୁରାପୁରି ଝୁଙ୍କି ପଡ଼ିଛି ଆଗକୁ । ଥରେ ଯଦି ଠେଲାର ହାଣ୍ଡଲ୍‌ରୁ ତା'ର ହାତ ଖସିଯାଏ ତାହାହେଲେ ସିଏ ପୁରାପୁରି ମୁହଁ ମାଡ଼ି ପଡ଼ିଯିବ ଆଉ ତା'ର ନାକଟା ଛେଚି ହୋଇଯିବ ତଳେ । ଆହା ! ବିଚରାର ଅନେକ ବୟସ ହୋଇଗଲାଣି । ବାଳଗୁଡ଼ାକ ସବୁ ପାଚି ଝୋଟ ହୋଇଗଲାଣି, ତେବେବି ଲୋକଟାକୁ ବନ୍ଦରରେ ମାଲ୍ ଖଲାସ୍ କରି ତା'ର ସଂସାର ଚଳେଇବାକୁ ପଡୁଛି । ଲୋକଟାର ବୟସ କେତେ ହବ ? ଷାଠିଏ, ନା ସତୁରୀ ପାଖାପାଖି ହବ । ତା'ର ବୋଧହୁଏ ଆଉ କେହି ନାହିଁ । ମୋ' ପରି ତା'ର ମଧ ସ୍ତ୍ରୀ ମରି ଯାଇଛି ବୋଧହୁଏ । କିନ୍ତୁ ପିଲାପିଲି ? ପିଲାପିଲି ମଧ ନଥାଇ ପାରନ୍ତି କିମ୍ବା ହୁଏତ ଦିନେ ଥିଲେ, ଥାଉ.... ।

କୁନା ! ହଁ, ସୁଟ୍‌କେସ୍ ଉପରେ କୁନା ଠିକ୍ ବସିଛି ।

କୁନା କିନ୍ତୁ ଖୁବ୍ ଶୀଘ୍ର ଶୀଘ୍ର ପାଠ ପଢ଼ିବ । ମତେ ଆଉ ଏପରି ବୁଢ଼ା ବୟସରେ ଖଟିବାକୁ ପଡ଼ିବ ନାହିଁ । କୁନା କୋ'ଠୁ ନା' କୋ'ଠୁ ନିଶ୍ଚେ ଚିଠି ଲେଖିବ,

ମାନନୀୟ ବାପା,

ଜୀବନ ସାରା ଅନେକ ପରିଶ୍ରମ କରିଛ ! ମତେ ତ ମଣିଷ କଲ । ଏବେ ମୁଁ ତମ ଆଶୀର୍ବାଦରୁ ଭଲରେ ଅଛି । ମୋର ଗାଁ ଛାଡ଼ି ଏଠି ଆସି ରହିବାକୁ ମନ ନାହିଁ । ତମ ଖୁସି ଗାଁରେ ରହ, ହେଲେ ସେଠି ଗୋଟାଏ କାଠ, କୋଇଲା ଗୋଲା କରି ଆଉ ପରିଶ୍ରମ କରୁଛ କାହିଁକି ? କେତେ ବା' ସେଥିରୁ ମିଳୁଚି ? ଆଉ ତା' ଛଡ଼ା ସେତିକି ଟଙ୍କା ଅଧିକା କ'ଣ ମୁଁ ପଠେଇ ପାରିବି ନାହିଁ... ।

। ଇତି ।

ମୋ'ର ଓ ତମ ବୋହୂର ଭୂମିଷ୍ଠ ପ୍ରଣାମ ନବ ।

ତମର ସ୍ନେହର କୁନା

ଜାହାଜ ଉପରକୁ ଲୋକ ସବୁ ଯିବାକୁ ଆରମ୍ଭ କଲେଣି ଓ ସେମାନେ ଅତ୍ୟନ୍ତ ସ୍ୱଚ୍ଛନ୍ଦ ଭାବରେ ନିରୁଦ୍‌ବିଗ୍ନ ଭାବରେ, ଜାହାଜର ଉପର ଡେକ୍‌ରେ ଏପଟ ସେପଟ ବୁଲି ବନ୍ଦର ଉପରେ ଏକ ବିହଙ୍ଗମ ଦୃଷ୍ଟି ବୁଲେଇ ନଉଛନ୍ତି । ସେଠି ଭୀଡ଼ ନାହିଁ, ସେଠି ଠେଲାପେଲା ନାହିଁ । ସେମାନଙ୍କ ଦେହ ସ୍ୱେଦସିକ୍ତ ହବା ଦୂରେ ଥାଉ ସେମାନଙ୍କ ପୋଷାକରେ ସାମାନ୍ୟ ମଇଳା ମଧ୍ୟ କେଉଁଠି ଲାଗି ନାହିଁ । ପୁଣି କିଏ ଜଣେ ଜାହାଜୀ ବାବୁ ମୋ' ପାଖ ଦେଇ ଯାଉଥିଲେ, ମୁଁ ପଚାରିଲି, ଆଜ୍ଞା ସେମାନଙ୍କୁ ତ ଛଡ଼ା ଗଲାଣି ଜାହାଜ ଉପରକୁ । ଆମକୁ ଛାଡୁ ନାହାନ୍ତି କାହିଁକି ? ଭଦ୍ରଲୋକ ଟିକିଏ ହସିଲେ । କହିଲେ, ସେମାନେ ଫାଷ୍ଟ୍‌କ୍ଲାସ୍ ପାସେଞ୍ଜର—ଦେ ପେ ଫୋର ଟାଇମ୍‌ସ୍ ଦ୍ୟାନ୍ ହ୍ୱାଟ୍ ୟୁ ପିପଲ୍ ଆର୍ ସପୋଜ୍‌ଡ଼୍ ଟୁ ହ୍ୟାଭ୍ ପେଡ୍ ।

ଠିକ୍ କଥା, ଯେତେବେଳେ ଏତେଗୁଡ଼ାଏ ପଇସା ଦେଇଛନ୍ତି ସେମାନେ ଏ ଭୀଡ଼ ଭିତରେ ଠେଲି ପେଲି ହେଇ ଗଲ୍‌ଦଘର୍ମ ହେବେ କାହିଁକି ? ଯଦିଓ ଆମେ ସମସ୍ତେ ଏକା ଜାହାଜରେ ଏକା ଗନ୍ତବ୍ୟ ସ୍ଥାନକୁ ଯାଉଛେ ଏବଂ ଯଦିଓ ସେ' ଦୃଷ୍ଟିରୁ ଆମେ ସମସ୍ତେ ସମାନ ତଥାପି ସମାନ ସମାନ ଲୋକମାନଙ୍କ ଭିତରେ ଏପରି ଲୋକ ମଧ୍ୟ ଅଛନ୍ତି ଯେଉଁମାନେ ସମାନ ସମାନ ଲୋକମାନଙ୍କ ଭିତରେ ମଧ୍ୟ ଅଧିକ ସମାନ । କଥାଟା କିଏ କହିଥିଲା କେଜାଣି, କିନ୍ତୁ କୋ'ଠି ଗୋଟାଏ ପଢ଼ିଲା ପରି ମନେ ହଉଛି । ସେ' ଯାହାହବ ମୋ' କୁନା ଏଇ ସମାନ ସମାନ ଲୋକଙ୍କ ଭିତରୁ ଅଧିକ ସମାନ ଲୋକମାନଙ୍କ ଭିତରୁ ଜଣେ ହବ । ସେଇଥିପାଇଁ ତ କୁନାକୁ ନଉଛି ବଡ଼ ସ୍କୁଲ୍‌ରେ ପାଠ ପଢ଼େଇବାକୁ ! ତାକୁ ଯିବାକୁ ପଡ଼ିବ ଫାଷ୍ଟ୍‌କ୍ଲାସ୍‌ରେ, ଅପ୍‌ପର୍ ଡେକ୍‌ରେ

ଯେଉଁମାନଙ୍କୁ ଚାହିଁବାକୁ ପଡ଼େ ପଛକୁ ବେକ ଭାଙ୍ଗି ଆକାଶରେ ଇନ୍ଦ୍ରଧନୁ ଦେଖିବା ପରି ।

ଠିକ୍ ଏଇ ସମୟରେ ଜଣେ କିଏ ପଛରୁ ମୋ' କାନ୍ଧରେ ହାତ ମାରି ପଚାରିଲା, ଆପଣଙ୍କର ଜାହାଜରେ ଯିବା କ'ଣ ଏଇ ପ୍ରଥମ ଥର ? ମୁଁ ହଁ କଲି । ଭଦ୍ରଲୋକ କହିଲେ, ସାଙ୍ଗରେ ସାନ ପିଲା, ଆପଣ ସି ସିକ୍‌ନେସ୍ ପାଇଁ ଆନିମୋନିକ୍ ବଟିକା ନେଇଛନ୍ତି ? ମୁଁ କହିଲି ନା । ନେଇ ନିଅନ୍ତୁ, ସେଇ ପାଖ ଦୋକାନରେ ମିଳିବ, ସମସ୍ତେ ନେଇକରି ଯାଆନ୍ତି, ବିଶେଷ କରି ଯେତେବେଳେ ପ୍ରଥମ ସମୁଦ୍ର ଯାତ୍ରୀ । ମୁଁ ଭଦ୍ରଲୋକଙ୍କୁ ଧନ୍ୟବାଦ ଦେଇ ପାନ ଦୋକାନ ଆଡ଼କୁ ଚାହିଁଲି—ସେଠୁ ଅନ୍ୟୁନ ପଚାଶ ଗଜ ଦୂର ହବ । କିନ୍ତୁ ଯିବି କେମିତି କୁନାକୁ ଏକୁଟିଆ ଛାଡ଼ି ? କୁନାକୁ ସାଙ୍ଗରେ ନେଇଗଲେ ଏ ଜିନିଷ ପତ୍ର ଜଗିବ କିଏ ? କିନ୍ତୁ ଯିବା ଛଡ଼ା ତ ଅନ୍ୟ ଉପାୟ ନାହିଁ । କୁନାକୁ କହିଲି, କୁନା, ଏଇଠି ବସିଥିବୁ, କୁଆଡ଼େ ଯିବୁ ନାହିଁ—ବିଛଣା ଉପରେ ହାତ ପକେଇବୁ, ମୁଁ ଏଇନା ଗୋଟାଏ ଔଷଧ ନେଇ ଆସୁଛି । କୁନା ମତେ ସେମିତି ବୋକା ଆଖିରେ ଅନେଇ, ଅବସ୍ଥାର ଗୁରୁତ୍ୱ ସାମାନ୍ୟ ପରିମାଣରେ ମଧ୍ୟ ଉପଲବ୍‌ଧି ନ କରି ହଁ ମାରିଲା ।

ମୁଁ ପ୍ରାୟ ଦୌଡ଼ିଲି ପାନ ଦୋକାନ ଆଡ଼କୁ । ଯାଉ ଯାଉ ଗୋଟାଏ କଥା କେଜାଣି କାହିଁକି ମନରେ ଆସୁଥାଏ ବାରମ୍ବାର । କାସାବିଆଙ୍କା କଥା । ସେଇ ଯେ' ଜାହାଜର କାପ୍ତାନ୍ କାସାବିଆଙ୍କାକୁ କହିଯାଇଥିଲା ମୁଁ ନ ଫେରିବା ଯାଏ ତୁ ଏଇଠି ଠିଆ ହେଇ ରହିଥିବୁ । ଜାହାଜ ଜଳିଗଲା ଓ ତା' ସହିତ ଜଳିଗଲା କାସାବିଆଙ୍କା କିନ୍ତୁ ତଥାପି ପିତୃ ଆଜ୍ଞା ମାନି ସିଏ ସେଇଠି ପୋଡ଼ିଗଲା ପଛକେ ଟିକିଏ ହେଲେ ସ୍ଥାନ ପରିବର୍ତ୍ତନ କରି ନାହିଁ । ପାନ ଦୋକାନରୁ ଆନିମୋନିକ୍ ନେଇ ଫେରି ଆସିଲି । ସବୁ ଠିକ୍ ଥିଲା । କୁନା, ତିଣ ସୁଟ୍‌କେଶ୍ ଆଉ ବିଛଣା । କିନ୍ତୁ ସେତେବେଳକୁ ଏକ ବିରାଟ ଜନ ସ୍ରୋତ ଏକ କ୍ଷୁଦ୍ର ଅର୍ଗଳୀ ଦେଇ ଉଠିବାକୁ ଚେଷ୍ଟା କରୁଥିଲା ଜାହାଜ ଭିତରକୁ । ଚାରିଆଡ଼େ ହୈ ଚୈ କାଣ୍ଡ । କେହି କାହାକୁ ଦେଖିବାକୁ ଚାହିଁବାକୁ ପ୍ରସ୍ତୁତ ନୁହଁ । ସମସ୍ତେ ଏକମୁଖୀ ହେଇ ପଶିବାକୁ ଚେଷ୍ଟା କରୁଛନ୍ତି ଜାହାଜ ଭିତରକୁ । ମୋର ବାଁ କାଖରେ ବିଛଣା, ବାଁ ପାପୁଲିରେ ଝୁଲୁଛି ସୁଟ୍‌କେଶ୍ ଓ ଡାହାଣ ହାତରେ କୁନାର ହାତ । ଜନ ସମୁଦ୍ରର ଢେଉରେ ଯେପରି ଅଣନିଶ୍ୱାସୀ ହେଇ ଯାଉଛି ମୁଁ—କୁନାର ଅବସ୍ଥା ଯେ' କ'ଣ ହଉଥିବ ସେ' କଥା ସହଜରେ ଅନୁମେୟ । କିନ୍ତୁ ଯିବାକୁହିଁ ପଡ଼ିବ ତତେ କୁନା, ତୋ'ର ନିଶ୍ୱାସ ବନ୍ଦ ହେଇଯିବା ପର୍ଯ୍ୟନ୍ତ । ଯଦି ନିଶ୍ୱାସହିଁ ବନ୍ଦ ହେଇଯିବାର ହୁଏ ତାହାହେଲେ ହେଇଯାଉ କିନ୍ତୁ ସାରା ଜୀବନ ତୁ ଇନ୍ଦ୍ରମଣି ପରି ଅଣନିଶ୍ୱାସୀ ହେଇ ମରିବୁ କାହିଁକି ?

ଆମର ଅଜାଣତରେ ଆମେ ଆସି ଜାହାଜର ଡେକ୍‌ରେ ପହଞ୍ଚି ଯାଇଥିଲୁ । କାରଣ ଆମେମାନେ ଯେତିକି ସମୟ ଅତିକ୍ରମ କରୁଥିଲୁ ଜାହାଜ ଉପରକୁ ଉଠିବାର ଗ୍ୟାଙ୍ଗ୍ ପ୍ଲାଙ୍କ୍ । ତାହା କେବଳ କରୁଥିଲୁ ପଛରୁ ଧକ୍କା ମାରୁଥିବା ଜନସ୍ରୋତର ଜୋରରେ । ଆମେ କାହିଁକି, ଏହିପରି ଭାବରେ ଉଠୁଥିବା ପ୍ରତ୍ୟେକଟି ଡେକ୍‌ଯାତ୍ରୀ ଉଠି ଚାଲିଥିଲେ ଅନ୍ୟମାନଙ୍କରେ ଧକ୍କାରେ । ନିଜର ଅକ୍ତିଆରରେ ନୁହେଁ, ଏକ ପ୍ରବଳ ବନ୍ୟାରେ ଅସହାୟ ଭାବରେ ଭାସିଯାଉଥିବା ଲୋକମାନଙ୍କ ପରି ।

ଆଃ ! ଆମେମାନେ ଡେକ୍ ଉପରକୁ ଆସିଯାଇଛୁ । ଏତେ ଲୋକ, ଅଥଚ ଏଇ ଜାହାଜର ବିରାଟ ଡେକ୍‌ରେ ସେମାନେ ଏଠି ସେଠି ବିଛେଇ ହେଇ ପଡ଼ିଛନ୍ତି । ଆଉ ସେ' ରୁଦ୍ଧଶ୍ୱାସ ଅବସ୍ଥା ନାହିଁ । ବେଶ୍ ସ୍ୱଚ୍ଛନ୍ଦରେ ନିଶ୍ୱାସ ନେଇ ହଉଛି । ଯାତ୍ରୀମାନେ ଯିଏ ଯେଉଁଠି ଡେକ୍ ଉପରେ ସେମାନଙ୍କର ବିଛଣା କରି ନଉଛନ୍ତି—ଆମକୁ ଯିବାକୁ ପଡ଼ିବ ଦୀର୍ଘ ଚବିଶ ଘଣ୍ଟା । ମୁଁ ଟିକିଏ ଝାଳ ମାରିନବା ପାଇଁ ଗୋଟାଏ ଡେକ୍ ଚେଆର୍‌ରେ ବସି ପଡ଼ିଲି । ଜାହାଜର ଡେକ୍‌ର ରେଲିଂ ଧରି ନଇଁ ପଡ଼ିଛନ୍ତି ଅସଂଖ୍ୟ ଲୋକ, ଠିକ୍ ସେଇ ପରିମାଣର ଲୋକ ମଧ ଝୁଙ୍କି ପଡ଼ିଛନ୍ତି ବନ୍ଦରର ରେଲିଂ ଧରି । ସତେ ଯେମିତି ଆଜି ପୃଥିବୀ ଶେଷ ହେଇ ଯାଉଛି, ଆଉ କାହା ସାଙ୍ଗରେ କାହାର ଦେଖା ହବ ନାହିଁ ଏ ଜୀବନରେ । ଏପଟୁ କିଏ ହାତ ହଲେଇ ବିଦାୟ ବାର୍ତ୍ତା ଜଣଉଚି ତ ସେପଟୁ କିଏ ଶୁଭ୍ର ରୁମାଲ ହଲେଇ ତାର ପ୍ରତ୍ୟୁତ୍ତର ଦଉଛି ।

ଜାହାଜର ପୁଙ୍ଗା ଦୁଇଥର ବାଜିଲା । ଏଥର ଜାହାଜ ବନ୍ଦର ଛାଡ଼ିବ । ହଠାତ୍ ସମସ୍ତଙ୍କ ଅଜାଣତରେ ଜାହାଜ ଗୋଟାଏ ହାଲୁକା କାଗଜ ଡଙ୍ଗା ପରି ବନ୍ଦର ଛାଡ଼ି ଚାଲିଗଲାଣି ପ୍ରାୟ ଦୁଇଶହ ଗଜ ସମୁଦ୍ର ଭିତରକୁ । ବନ୍ଦରରେ ଚାହିଁ ରହିଥିବା ଲୋକମାନେ ଆସ୍ତେ ଆସ୍ତେ ସାନ ହୋଇ ଆସୁଛନ୍ତି । ଜାହାଜ ଆଉ ବନ୍ଦର ଭିତରେ ରହିଥିବା ଚେନାଏ ସମୁଦ୍ର ଯେମିତି ଧାଡ଼ି ଧାଡ଼ି ଫେଣ ହୋଇ ଭାଙ୍ଗି ପଡୁଚି, ପୁଣି ଓଲଟି ଆସୁଛି । ପୁଣି ଦୌଡୁଚି କୂଳକୁ । ଗୋଟାଏ ଛୋଟ ଶିଶୁ ସେଇ ଏକା କଥାକୁ ବାରମ୍ବାର ଅଭ୍ୟାସ କଲାପରି । ଜାହାଜର ସାଙ୍ଗେ ସାଙ୍ଗେ ଉଡ଼ିବାକୁ ଆରମ୍ଭ କଲେଣି ଜାହାଜର ଚିର ସଙ୍ଗୀ ସି'ଗଲମାନେ ।

ମୁଁ ବନ୍ଦର ଆଡୁ ମୁହଁ ଫେରେଇ ଡେକ୍‌କୁ ଚାହିଁଲି, କୁନା ଆଉ ମୋର ସ୍ୱଳ୍ପ ଜିନିଷପତ୍ରକୁ ତଦାରଖ କରିବା ପାଇଁ । ଟିଣ ସୁଟ୍‌କେଶ୍, ପରା ହେଇଥିବା ବିଛଣା, ପ୍ଲାଷ୍ଟିକ୍‌ର ପାଣି ବ୍ୟାଗ୍, ସବୁ ଯଥାସ୍ଥାନରେ ଥୁଆ ହୋଇଛି । କିନ୍ତୁ କୁନା ?

କୁନା ନାହିଁ । ମୋ' ଗୋଡ଼ତଳୁ ଯେମିତି ସବୁଯାକ ମାଟି କିଏ ଏକା ଥରକରେ ଶୋଷି ନେଇଗଲା । ମୁଁ ବଡ଼ପାଟିରେ ଦୁଇଥର କୁନା କୁନା ବୋଲି ଡାକିଛି, କିନ୍ତୁ ତାହା

କେତେ ଜୋରରେ ଡାକିଛି ସେକଥା କଳନା କରିବାର ଶକ୍ତି ମୋର ନଥିଲା । ମୋ'ର ଏଇ ଚିତ୍କାର ସମୁଦ୍ରର ଲୁଣି ହାଓ୍ୱା କୁଆଡ଼େ ଉଡ଼େଇ ନେଲା କେଜାଣି ।

ମୁଁ ପ୍ରଥମଥର ପାଇଁ ଡେକ୍‌ର ଭିତରଟାକୁ କଳନା କରିବାକୁ ଚେଷ୍ଟା କଲି । ଡେକ୍ ଭିତରେ ଅନ୍ୟୂନ ପାଞ୍ଚ ଛ'ଟା କୋରିଡ଼ର୍ । ଡେକ୍‌ର ଆୟତନଟା ଚାରିଟା ଟେନିସ୍ କୋଟ ପାଖ ପାଖ ସଜେଇ ରଖିଲେ ଯାହାହବ ପ୍ରାୟ ସେୟା । ଆମେ ଅଛୁ ଅପ୍‌ପର ଡେକ୍‌ରେ । ତଳ ଡେକ୍‌କୁ ଯିବାକୁ ପ୍ରାୟ ତିନି ଚାରିଟା ଶିଡ଼ି ପୁଣି ଉପରେ ଥିବା କ୍ୟାବିନକୁ ଯିବାକୁ ପାଞ୍ଚ ଛ'ଟା ଶିଡ଼ି । କିଛି କାଠର ପୁଣି କିଛି ରୋପ୍ ଲ୍ୟାଡ଼ର ।

ମୁଁ କିଛି ଆଗପଛ ବିଚାର ନକରି ଯେ କୌଣସି ଗୋଟାଏ ଦିଗକୁ ଦୌଡ଼ିବାକୁ ଆରମ୍ଭ କଲି । ମତେ ବାଧା ଦିଆଗଲା, "ଓ ତରଫ୍ ଜାନେକା ମନା ହାଏ ।" ତମେ କୁନାକୁ ଦେଖିଛ ? ଏଡ଼ିକି ବଡ଼ ପିଲା, "ଖଣ୍ଡେ ହାଫ୍ ପ୍ୟାଣ୍ଟ୍ ଆଉ ତା' ଉପରେ ନାଲି ରଙ୍ଗର ଖଣ୍ଡେ ସାର୍ଟ ପିନ୍ଧିଛି ।"

ମୁଣ୍ଡ ହଲେଇ ଲୋକଟି ମନା କଲା ଆଉ କହିଲା ମୁଁ ଯୁଆଡ଼େ ଯାଉଛି ସେଇଟା ହଉଛି ମେସିନ୍ ଘର । ଅର୍ଥାତ୍ ଜାହାଜ ଚଳେଇବାର ଯନ୍ତ୍ରଟି ସେଇଠି ଚାଲେ । ସେଠିକି କେହି ଯିବା ସମ୍ଭବ ନୁହଁ କାରଣ ତାହା ତାର ଜାଲି ଦେଇ ଘେରାହେଇଛି । ପୁଣି ଦୌଡ଼ିଲି ବିପରୀତ ଦିଗରେ । ମତେ ଅନେକ କଥା କଟେଇ ଯିବାକୁ ପଡ଼ିଥାଏ । ଡେକ୍ ଚେୟାର । ହିପ୍‌ପୀମାନଙ୍କର ହାଭରସାକ୍ । ଯାତ୍ରୀମାନଙ୍କର ବିଛଣା ଓ କେଉଁଠି କିପରି ପଡ଼ି ରହିଥିବା ଲାଇଫ୍ ଜ୍ୟାକେଟ୍‌ର ଜଞ୍ଜାଳ ସବୁ । ସେପଟେ କି ସେଇ କଥା । ଏଇଟା କ୍ୟାଣ୍ଟିନ, ଏଇନା ଖାଇବାର ବେଳ ହେଇ ନାହିଁ, ବେଳ ହେଲେ ଘଣ୍ଟା ବାଜିବ, ୟା' ଭିତରକୁ କୌଣସି ଛୋଟ ପିଲା ଆସି ନାହିଁ ।

ପୁଣି ଶିଡ଼ି ଦେଇ ତଳକୁ । ସେଠି ଲୋକମାନଙ୍କର ଭୀଡ଼ରେ ତିଳ ଧାରଣ କରିବାର ସ୍ଥାନର ଅଭାବ । ସାଙ୍ଗେ ସାଙ୍ଗେ ଆଖି ବୁଲେଇ ନେଲି—ନା, ଏଠି କୁନା ନାହିଁ । ପ୍ରଚଣ୍ଡ ଦିବାଲୋକରେ ଯେତେ ବି ଲୋକଙ୍କର ଭୀଡ଼ ହଉ, ମୋର କ'ଣ କୁନାକୁ ଚିହ୍ନିବାରେ ଭୁଲ୍ ହବ । ଅସମ୍ଭବ । ସେଠି ଗୋଟାଏ କ'ଣ ଦୁଆର ଦେଖାଯାଉଛି । ତା' ଭିତରେ କ'ଣ ରହିଗଲା କୁନା ? ଦୁଆରର ଡୋର୍ ନବ୍ ମୋଡ଼ି ଏକାଥରକେ ଓପାଡ଼ି ଆଣିଲା ପରି ଦୁଆରଟାକୁ ଗୋଟାଏ ଝଟ୍‌କାରେ ଖୋଲି ଦେଲି । ପ୍ରକୋଷ୍ଠଟି ଭିତରରୁ ମତେ ଯେଉଁମାନେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିଲେ, ସେମାନଙ୍କର ସମସ୍ତଙ୍କ ମୁଣ୍ଡରେ ଭିଡ଼ା ହୋଇଥିଲା ଖଣ୍ଡେ ଖଣ୍ଡେ ରୁମାଲ୍ । ସେମାନେ ସମସ୍ତେ ଥିଲେ ଜାହାଜ ନିରାମିଷାଶୀ କ୍ୟାଣ୍ଟିନ୍‌ର ଗୋଆନିଜ୍ ପାଚକ । ମୋର ମୁହଁ ଓ ବିପର୍ଯ୍ୟସ୍ତ କେଶରାଶି ତାଙ୍କୁ କିପରି ଦେଖାଯାଉଥିଲା ମୁଁ କହି ପାରିବି ନାହିଁ ।

ତେବେ ସେମାନେ ପ୍ରାୟ ଭୟଭୀତ ହେଇଯାଇ ଗୋଆନିଜ୍ କାଇଦାରେ ସଲାମ୍ ଠୁକି କହିଲେ, ''ସାର୍ ଖାଦ୍ୟ ପ୍ରସ୍ତୁତ ହବାକୁ ଆଉ ଅଳ୍ପ ସମୟ ଲାଗିବ, ଆମେ ବେଲ ଦେଇ ଘୋଷଣା କରିଦବୁ ।'' କିନ୍ତୁ ମୁଁ ଖୋଜୁଥିବା ହାଫ୍‌ପ୍ୟାଣ୍ଟ ଓ ନାଲି ସାର୍ଟ ପିନ୍ଧିଥିବା ଶିଶୁଟି ସେଠି ନଥିଲା । ମୁଁ ବିରକ୍ତି ଓ ହତାଶାରେ ଯେପରି ଝଡ଼ ପରି ପଶିଥିଲି ସେହିପରି ଦୁଆରଟାକୁ ପିଟି ଦେଇ ବାହାରି ଆସିଲି ।

ତଥାପି ଜାହାଜରୁ ବନ୍ଦର ଦେଖାଯାଉଛି । ଆଚ୍ଛା ଏମିତି ବି କ'ଣ ହୋଇ ପାରେନା ଯେ ମୋର ଅନ୍ୟମନସ୍କତାର ସୁଯୋଗ ନେଇ କୁନା ଆଉ ଥରେ ଶିଶୁ ସୁଲଭ ଚାପଲ୍ୟ ହେତୁ ଓହ୍ଲେଇ ଯାଇଛି ବନ୍ଦରକୁ ଗ୍ୟାଙ୍ଗ୍ ପ୍ଲାଙ୍କ୍ ଦେଇ । ନିରୀକ୍ଷଣ କରି ଦେଖିବାକୁ ଚେଷ୍ଟା କଲି । ବନ୍ଦରର ଲୁହାର ବାଡ଼କୁ ଧରି ଠିଆ ହୋଇ ରହିଛି ଗୋଟିଏ ଶିଶୁ । ଲାଲ କନାର ଗୋଟାଏ ଜାମା ପିନ୍ଧିଛି ସେ । ତା'ପରେ ମୁହୂର୍ତ୍ତକ ଭିତରେ ସେ ପିଲାର ମୁହଁ ଦେଖିପାରିଲି, ଠିକ୍ କୁନାର ମୁହଁ ପରି । କୁନା ଏକାନ୍ତ ଅସହାୟ ଭାବରେ ଠିଆ ହେଇ କ୍ରମ ଅପସୃୟମାନ ଜାହାଜକୁ ଚାହିଁ ରହିଛି । ମୁଁ କିନ୍ତୁ ନିରୂପାୟ । ମୁଁ ଜାହାଜ ସହିତ ଭାସି ଭାସି ଚାଲିଚି ଦୂରକୁ ଦୂରକୁ ।

ହଠାତ୍ ମନେ ପଡ଼ିଗଲା କ୍ୟାପ୍‌ଟେନ !

ୟେସ୍ କ୍ୟାପଟେନ୍ !

—କହିପାରିବେ କ୍ୟାପ୍‌ଟେନ୍‌କୁ କେଉଁଠି ପାଇପାରିବି ?

—ଆପଣଙ୍କର କ୍ୟାପଟେନ୍‌ଙ୍କ ସହିତ କାମ କ'ଣ ?

—ମୋର ସମୟ ନାହିଁ ଦୟା କରି ଶୀଘ୍ର କୁହନ୍ତୁ, ଦି ମାଟାର୍ ଇଜ୍ ରାଦର୍ ଅର୍ଜେଣ୍ଟ ।

—ସିଧା ଯା'ନ୍ତୁ । ଆଗରେ ବାଁକୁ ବୁଲିବେ । ତା'ପରେ ପୁଣି ବାଁକୁ ତାପରେ ଶିଡ଼ିଦେଇ ଯିବେ ଉପରକୁ—କ୍ୟାବିନନମ୍ବର ନିଲ ।

ମୁଁ ଦୌଡ଼ିଲି ଗୋଟାଏ ବ୍ୟାଧଭୀତ ହରିଣ ପରି—ସିଧା—ତା'ପରେ ବାଁକୁ— ତା'ପର ପୁଣି ବାଁକୁ—ତା'ପରେ ଗୋଟାଏ କାଠର ଶିଡ଼ି । ଦୁଇ ଦୁଇଟା ପାହାଚ ଅତିକ୍ରମ କରି ପହଞ୍ଚିଲି କ୍ୟାବିନ ପାଖରେ । ଏକ୍, ଦୁଇ, ତିନି, ଚାରି, ପାଞ୍ଚ ଛ'— ତା'ପରେ ଗୋଟାଏ ପ୍ଲାଷ୍ଟିକ୍ ଫଳକରେ ଲେଖା ଅଛି ''କ୍ୟାପ୍‌ଟେନ୍ ।''

କ୍ୟାପଟେନ୍ !

କବାଟ ଖୋଲି ଭିତରକୁ ଯିବା ପାଇଁ ମୋ'ର ସାମାନ୍ୟତମ ସଂକୋଚ ନଥିଲା । ଭିତରକୁ ଯାଇ ଦେଖିଲି କ୍ୟାପ୍‌ଟେନ୍ ଗୋଟାଏ ଇଜି ଚେଆର୍‌ରେ ଇନ୍‌ଫର୍ମାଲ ଡ୍ରେସ୍

ପିନ୍ଧି ବସିଛନ୍ତି । ଖଣ୍ଡେ ପାଣ୍ଟଲୁନ୍ ଆଉ ପଞ୍ଜାବି । ସାମ୍ନାର ସେଣ୍ଟର ଟେବୁଲରେ ଥୁଆ ହେଇଛି ସ୍କଚ୍ ହୁଇସ୍କି ଆଉ କୋହ୍ଲ ମାରିଯାଇଥିବା ସୋଡ଼ାର ବୋତଲ । କୌଣସି ମୁଖବନ୍ଧ ନଦେଇ ସିଧା ଆରମ୍ଭ କଲି, "କ୍ୟାପ୍‌ଟେନ, ମୋର ଶିଶୁପୁତ୍ର ବନ୍ଦରରେ ରହିଗଲା, ସେ ଏ ଦେଶର ଭାଷା ବୁଝେ ନାହିଁ—ସିଏ ପଇସାର କାରବାର ଶିଖି ନାହିଁ । ତା'ଛଡ଼ା ତା' ପାଖରେ ପଇସା ମଧ ନାହିଁ—ସେଭ୍ ଦି ଚାଇଲ୍ଡ଼ ।"

କ୍ୟାପଟେନ୍ ବିଚରା ଅତ୍ୟନ୍ତ ଭଦ୍ରଲୋକ । କହିଲେ, "କୁହନ୍ତୁ ମୁଁ ଆପଣଙ୍କ ପାଇଁ କ'ଣ କରିପାରେ ?" ମୋର ବୋଧହୁଏ ମସ୍ତିଷ୍କ ଠିକ୍ ଠିକ୍ କାମ କରୁନଥିଲା, ମୁଁ କହିଲି, "ଜାହାଜ ଫେରେଇ ନେଇ ଚାଲନ୍ତୁ । ହୁଏତ ଆମେ ପିଲାଟିକୁ ନେଇ ଆସି ପାରିବା ବିଫୋର୍ ଇଟ୍ ବ୍ରିଦ୍‌ସ୍ ଇଟ୍‌ସ ଲାଷ୍ଟ ।" କ୍ୟାପଟେନ୍ କହିଲେ, "ଜାହାଜ ଫେରି ଯାଏନା—ମୋର ତିରିଶ୍ ବର୍ଷର ଚାକିରୀ ଭିତରେ କୌଣସି ଇମର୍‌ଜେନ୍‌ସିରେ ମଧ ଜାହାଜ ଫେରିଥିବା ମୋର ମନେ ନାହିଁ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଏ ଛୋଟ ଜାହାଜରେ ଓ୍ୟାରଲେସ୍ ନାହିଁ, ତଥାପି ମୁଁ ଫ୍ଲାଗ୍ ସିଗ୍‌ନାଲ୍‌ରେ ମେସେଜ ଦେଇଦଉଛି । ବନ୍ଦରର ଅଫିସରମାନେ ପିଲାର ଠିକ୍ କେୟାର ନେବେ ଓ ଆପଣ ତ ଫେରି ଆସୁଛନ୍ତି ଏଇ ଜାହାଜରେ କାଲି । ମୁଁ କହିଲି, "କ୍ୟାପ୍‌ଟେନ୍ ଯେତିକି କରି ପାରିଲେ ସେଥିପାଇଁ ଅଜସ୍ର ଧନ୍ୟବାଦ ।" କ୍ୟାପଟେନ୍ କହିଲେ, "ଧନ୍ୟବାଦର ପ୍ରୟୋଜନ ନାହିଁ । ଏଟା ମୋର କର୍ତ୍ତବ୍ୟ ।"

କ୍ୟାପଟେନ ତାଙ୍କ ପାଖରେ ଥିବା ଟେଲିକମ୍‌ର ରିସିଭର୍ ଉଠେଇ କ'ଣ କହିଲେ କେଜାଣି ଭାଷାରେ ମୁଁ ଠିକ୍ ବୁଝି ପାରିଲି ନାହିଁ । କିନ୍ତୁ ଏତିକି ଜାଣି ପାରିଲି ଯେ ଜାହାଜର ଗତି ସାଙ୍ଗେ ସାଙ୍ଗେ ମନ୍ଥର ହୋଇଗଲା ଓ ପ୍ରାୟ ଏକ ମିନିଟ୍ ଭିତରେ ଜାହାଜ ସ୍ଥିର ହୋଇ ଠିଆ ହେଇ ରହିଲା ମହାସାଗରର ବକ୍ଷରେ ଏକ ବିରାଟ କୃଷ୍ଣକାୟ ତିମିମାଛ ପରି

ଜାହାଜର ତୀକ୍ଷ୍ଣ ହୁଇସିଲ୍ ଦୁଇଥର ବାଜିଉଠି ନୀରବ ହୋଇଗଲା ଓ ତା' ପରେ ପରେ ଜାହାଜର ଜଣେ ସିନିୟର ଅଫିସର ଉଠିଲେ ଗୋଟାଏ ଶିଡ଼ି ଦେଇ ଜାହାଜର ଶିଖର ଦେଶକୁ । ମାସ୍ତୁଲର ପାଖାପାଖି ଗୋଟାଏ ଜାଗା । ଅଫିସରଙ୍କର ପୋଷାକ ଏକାଥରକେ ଧପ୍‌ଧପ୍ ଧଳା । ତାଙ୍କର ହାତରେ କିନ୍ତୁ ଦୁଇଟି ଲାଲ ପତାକା । ଠିକ୍ ଏକା ସମୟରେ ବନ୍ଦରର ସର୍ବୋଚ୍ଚ ସ୍ଥାନରେ ଆସି ଠିଆ ହେଲେ ଆଉ ଜଣେ ଲୋକ । ତାଙ୍କ ହାତରେ ମଧ ସେହିପରି ଦୁଇଟି ଲାଲ୍ ପତାକା ।

ତା'ପରେ ଆରମ୍ଭ ହେଲା ସିଗ୍‌ନାଲିଂ ।

ଜାହାଜର ଅଫିସର ଜଣକ କେତେବେଳେ ଡାହାଣ ହାତର ପତାକାକୁ କୋଡ଼ିଏ ଡିଗ୍ରୀରେ ରଖି କେତେବେଳେ ମୁଣ୍ଡ ଉପରେ ରଖି ପୁଣି କେତେବେଳେ ଦୁଇ ତହାକୁ

ଛାଡ଼ି ଦେଇ ପରିବେଷଣ କରି ଚାଲିଛନ୍ତି କେଉଁ ଅବୋଧ ସମ୍ବାଦ । ବନ୍ଦର ଅଫିସର କେବଳ ସମାନ୍ୟ ଇଙ୍ଗିତ କରି ବୁଝେଇ ଦଉଥାଆନ୍ତି ଯେ ସେସବୁ ସମ୍ବାଦ ଠିକ୍ ଠିକ୍ ବୁଝିପାରିଛନ୍ତି । କ୍ୟାପଟେନ୍‌ଙ୍କର ଲିଖିତ ମେସେଜ୍ ଥିଲା CHILD ABANDONED AT PORT FATHER ON BOARD... ଇତ୍ୟାଦି ଇତ୍ୟାଦି । ସମ୍ବାଦ ପରିବେଷଣ ପରେ ଓହ୍ଲେଇ ଆସିଲେ ଅଫିସର ଜଣକ ଓ କହିଲେ, "ଆଇ ଆସିଓର୍ ୟୁ, ୟୋର ଚାଇଲ୍ଡ଼ ଉଇଲ୍ ବି ଟେକେନ କେଆର୍ ଅଫ୍ ।" ମୁଁ କିଛି ମାତ୍ରାରେ ଆଶ୍ୱସ୍ତ ହେଲି ।

ଏଣିକି ମୋର ଆଉ କିଛି କରିବାର ନାହିଁ । ମୁଁ ଡେକ୍‌ର ବାଡ଼ ଉପରେ ଭରା ଦେଇ ଏକ ଲୟରେ ଚାହିଁ ରହିଲି ସମୁଦ୍ରକୁ । ହାୟ, ଅଦୃଷ୍ଟ ! ମା'କୁ ହଜେଇ ଦେଇଥିଲି ସାତବର୍ଷ ତଳେ, ପୁଅକୁ ପୁଣି ହଜେଇ ଦେଲି ଆଜି । ଜାହାଜ ଆଉଥରେ ହୁଇସିଲ ଦେଇ ଚାଲିବାକୁ ଆରମ୍ଭ କଲାଣି । ଜାହାଜ ସାଙ୍ଗେ ସାଙ୍ଗେ ଉଡୁଛନ୍ତି ଅସଂଖ୍ୟ ସି'ଗଲ ଚଢ଼େଇ । ହିପ୍‌ପୀମାନେ, ନହେଲେ କୌତୂହଳୀ ଯାତ୍ରୀମାନେ ମଝିରେ ମଝିରେ ରୁଟି ବା କିଛି ଖାଦ୍ୟାଂଶର ଟୁକୁରା ପକେଇ ଦଉଛନ୍ତି ଜାହାଜରୁ । ସି'ଗଲ୍‌ମାନେ ତାକୁ ଥଣ୍ଟରେ ଧରି ନଉଛନ୍ତି ପାଣିରେ ପଡ଼ିବା ପୂର୍ବରୁ ନହେଲେ ଯଦିବା ସେମାନେ ବ୍ୟର୍ଥ ଲକ୍ଷ୍ୟ ହଉଛନ୍ତି ତାହାହେଲେ ସେମାନେ ଅନାୟାସରେ ଓହ୍ଲେଇ ଆସୁଛନ୍ତି ପାଣି ଉପରକୁ, ଖାଦ୍ୟ ଟୁକୁରାଟିକୁ ସଂଗ୍ରହ କରି ନବାକୁ ।

ସି'ଗଲ୍‌ମାନେ ଦେଖିବାକୁ ଭାରୀ ସୁନ୍ଦର । ସମଗ୍ର ଦେହଟା ଧୂସର ବର୍ଣ୍ଣ ଅଥଚ ଗ୍ରୀବା ଠାରୁ ଆରମ୍ଭ କରି ସମସ୍ତ ମୁହଁଟି ଏକାବେଳକେ ତରଳ ପିଚୁ ପରି କଳା । ସେମାନେ ଯେତେବେଳେ ଦଳ ଦଳ ହେଇ ସମୁଦ୍ର ଉପରେ ଏକ ଲଘୁ ଗତିରେ ଭାସି ଯାଉଛନ୍ତି ସେତେବେଳେ ମନେ ହେଉଛି ଯେମିତି ସାଗରକନ୍ୟାର ଫୁଲ ବଗିଚାରେ ଅନେକ କୋମଳ ଧୂସର ଫୁଲ ଫୁଟିଛି ଯାହାର କେଶର ଘନ କୃଷ୍ଣବର୍ଣ୍ଣରେ ରଞ୍ଜିତ ।

ହଠାତ୍ ଦେଖିଲି, କିଛି ଦୂରରୁ ଦୁଇଟି ସି'ଗଲ ଏକ ସମାନ୍ତରାଳ ରେଖାରେ ଉଠି ଆସୁଛନ୍ତି ମୋ ଆଡ଼କୁ । ସେମାନଙ୍କର ଧୂସର ଶରୀର, ଆକାଶ ଓ ଚକ୍ରବାଳର ଈଷତ୍ ନୀଳିମାରେ ସଂପୂର୍ଣ୍ଣ ସତ୍ତା-ଲୁପ୍ତ । କେବଳ ଦୁଇଟି କଳା ବିନ୍ଦୁ ଯେପରି ପହଁରି ଆସୁଛନ୍ତି ଆକାଶରେ । ଆସ୍ତେ ଆସ୍ତେ ଦୁଇଟି କଳା ବିନ୍ଦୁ ବୃହତ୍‌ରୁ ବୃହତ୍ତର ହବାରେ ଲାଗିଛି । ମୋର ଶୈଶବରୁ ମୁଁ ନାସ୍ତିକ ନହେଲେ ମଧ ଠିକ୍ ଈଶ୍ୱର ବିଶ୍ୱାସୀ ନୁହଁ । ଆଜିର ଏ ମଧ ବୟସରେ ମଧ, ନିମ୍ନ ମଧବିତ୍ତ ସୁଲଭ ଅହଂକାର ମତେ ଈଶ୍ୱର ବିଶ୍ୱାସ ଠାରୁ ଠିକ୍ ସମ ଦୂରତ୍ୱରେ ରଖିଛି । କିନ୍ତୁ ଆଜି ହଠାତ୍ ଏଇ ସମାନ୍ତରାଳ ଅଥଚ କ୍ରମବର୍ଦ୍ଧମାନ ଦୁଇଟି କୃଷ୍ଣ ଗୋଲକ ମତେ ହଠାତ୍ ମନେ ପକାଇଦେଲା ଜଗନ୍ନାଥଙ୍କର ସମ୍ମୋହନକାରୀ ଦୁଇଟି କଳାଡୋଳାର କଥା । ମୋର ଅଜ୍ଞାତରେ ମୁଁ

ମନେ ମନେ ବାରମ୍ବାର ଉଚ୍ଚାରଣ କରି ଉଠିଲି, 'ହେ ଚକାଡ଼ୋଳା ମୋର ମା' ଛେଉଣ୍ଡ କୁନାକୁ ତମେ ଘଣ୍ଟ ଘୋଡ଼ାଇ ରଖ । ତମକୁ ଇନ୍ଦ୍ରମଣିର କୋଟି କୋଟି ନମସ୍କାର ।'

ସି'ଗଲ ଦୁଇଟି ଜାହାଜର ଖୁବ୍ ପାଖକୁ ଆସି ହଠାତ୍ ଓହ୍ଲେଇଗଲେ ସମୁଦ୍ର ପାଣିକୁ ଅନ୍ୟ ଭାସମାନ ଫୁଲମାନଙ୍କ ସହିତ ଫୁଲ ହେଇ ଫୁଟିବା ପାଇ । ପତିତପାବନଙ୍କର ଦୁଇଟି ଚକାଡ଼ୋଳା ମୋରି ଆଖି ଆଗରେ ଅଦୃଶ୍ୟ ହେଇଗଲା । ବହୁଦିନୁ ବିସ୍ମୃତ ହେଇଯାଇଥିବା ଏକ ମନ୍ତ୍ର ପରି ମୁଁ ମନେ ମନେ କହି ଉଠିଲି, 'ଲକ୍ଷେ ଯୋଜନରୁ ଡାକିଲା ଗଜ, ତା' ଡାକ ଶୁଣିଲ ହେ ବ୍ରଜରାଜ.... । ଅଥବା ମୁଁ ଯେପରି ସେହି ବ୍ୟାଧଭୀତା, ଅସହାୟା, ଆସନ୍ନପ୍ରସବା ହରିଣୀ ।

ଜାହାଜ ବେଶ୍ ଦ୍ରୁତ ଗତିରେ ଚାଲୁଥିଲା, କିନ୍ତୁ ମୋର ମନେ ହଉଥିଲା ଯେମିତି ଜାହାଜ ସ୍ଥିର ରହିଛି କେଉ ଅନାଗତ ଅଶୁଭ ଆଶଙ୍କାରେ । ଏତେ କୋଳାହଳ, ଡେକ୍ ଉପରେ ଏତେ ହଇଚଇ, ଏତେ ଭିନ୍ନଦେଶୀ ଲୋକମାନଙ୍କର ଯିବା ଆସିବା, କିନ୍ତୁ ମୋର ମନେ ହଉଥିଲା ଯେପରି ଏହା ଜଳଦସ୍ୟୁମାନଙ୍କ ଦ୍ୱାରା କବଳିତ ଏକ ଜାହାଜ ଯାହା ଅସହାୟ ଭାବରେ ଭାସି ଚାଲିଛି ଏକ ନିଶ୍ଚିତ ବିପର୍ଯ୍ୟୟ ପାଇଁ । ଯେଉଁ ହିପ୍‌ପୀ-ହିପ୍‌ପିଣୀମାନେ କିଛି ସମୟ ପୂର୍ବରୁ ମୋର କୌତୁହଳ ଜାଗ୍ରତ କରୁଥିଲେ, ମନେହେଲେ ସେମାନେ ଯେପରି ପ୍ରତ୍ୟେକେ ଜଣେ ଜଣେ ନିଶାଗ୍ରସ୍ତ ତ୍ରିଶଙ୍କୁ— ଯେଉଁମାନେ ସେମାନଙ୍କର ଅଜ୍ଞାତରେ ଝୁଲି ରହିଛନ୍ତି ଏକ ଅଭିଶପ୍ତ ପୃଥିବୀ ଓ ଏକ ତଥାପି ଅପହଞ୍ଚ ନର୍କର ମଧ୍ୟ ସ୍ଥଳରେ ।

ଜାହାଜ, ଏକ ବିବର୍ଣ୍ଣ ଜାହାଜ । ଆରବ ସାଗରର ସୁନୀଳ ଜଳରାଶି ଯେପରି ଅହିଫେନ-କୃଷ୍ଣ କାଳିନ୍ଦୀ ହ୍ରଦର ଜଳ—ଯେଉଁଠାରେ ଅହିରାଜର ବିଷ ଫୁତ୍‌କାରରେ ସ୍ଫୁଟନୋନ୍ମୁଖୀ ପଦ୍ମକୋରକର ଅପମୃତ୍ୟୁ ହୁଏ । କିନ୍ତୁ ମୋର ଆଖି ଆଗରେ ବାରମ୍ବାର ଦିଶିଯାଉଥାଏ ବନ୍ଦରରେ ହଜେଇ ଦେଇ ଆସିଥିବା ଗୋଟିଏ ଲାଲ୍ ବିନ୍ଦୁର କଥା । ତାକୁ ସେହିପରି ଅସହାୟ ଭାବରେ ଅପେକ୍ଷା କରିବାକୁ ପଡ଼ିବ ପୂରା ଅଠଚାଳିଶ୍ ଘଣ୍ଟା— ଯେ ପର୍ଯ୍ୟନ୍ତ ଏ ଜାହାଜ ପୁଣି ଥରେ ନ ଫେରିଚି ସେ ବନ୍ଦରକୁ ।

ଠିକ୍ ଏତିକିବେଳେ ଜାହାଜର ଘୋଷଣା ଯନ୍ତ୍ରରେ ବାରମ୍ବାର ଉଦ୍‌ଘୋଷିତ ହେଲା ଏକ ଘୋଷଣା, ''ଆଟେନ୍‌ସନ୍ ପ୍ଲିଜ୍, ଆଟେନସନ୍ ପ୍ଲିଜ୍, ଆଟେନ୍‌ସନ୍ ପ୍ଲିଜ୍ ଲେଡ଼ିଜ୍ ଆଣ୍ଡ୍ ଜେଣ୍ଟଲ୍ ମେନ୍ ଅନ୍ ବୋର୍ଡ୍....

''ଜାହାଜର ଡାହାଣ ପଟ ଡେକ୍‌ରେ କ୍ୟାବିନ୍‌ର ଶେଷ ସୀମାରେ ଥିବା ଗୋଟିଏ ଚେକ୍ ଚେୟାର୍, ଉପରେ ଗୋଟିଏ ଛ' ସାତ ବର୍ଷର ଶିଶୁ ନିଦରୁ ଉଠି କାହାକୁ

ନପାଇ କାନ୍ଦୁଛି । ତା'ର ଭାଷା ବୁଝି ହଉ ନାହିଁ—ପିଲାଟି ଗୋଟିଏ ନାଲି ସାର୍ଟ ପିନ୍ଧିଛି । ଯଦି କାହାର ପିଲା ହେଇଥାଏ ଦୟା କରି ଆସି ପିଲାଟିକୁ ନେଇ ଯାଆନ୍ତୁ ।''

ଜାହାଜରେ ଯେଉଁମାନେ ଉତ୍କର୍ଣ୍ଣ ହେଇ ଶୁଣୁଥିଲେ, ଘୋଷଣାଟି ପରେ ସେମାନେ ପୁଣି ସେମାନଙ୍କର ଚିନ୍ତା ରାଜ୍ୟକୁ ଫେରିଗଲେ । କିନ୍ତୁ ମୁଁ ଦୌଡ଼ିଲି କ୍ୟାଣ୍ଟିନ୍ ଆଡ଼କୁ । କାହାକୁ ଜଣେ ପଚାରିଲି ''କେଉଁଟା ଜାହାଜର ଡାହାଣ ପଟ ?'' ଅଫିସର୍ ଜଣକ କେବଳ ଷ୍ଟାବୋର୍ଡ଼ କହି ଗୋଟାଏ ଦିଗକୁ ହାତ ଦେଖେଇ ଦେଲେ; କ୍ୟାଣ୍ଟିନ୍ ଡେଇଁ, ଜାହାଜର ମେସିନ୍ ଘର ଡେଇଁ, ଦୁଇ ତିନିଟା କାଠର ଶିଡ଼ି ଡେଇଁ; ଆଉ ଦୁଇ ତିନିଟା ରୋପ୍ ଲ୍ୟାଡ଼ର୍‌ରେ ଛନ୍ଦୁଣ ମନ୍ଦୁଣ ହୋଇଯିବାରୁ ରକ୍ଷା ପାଇ, ମୁଁ ଯାଇ ପହଞ୍ଚିଲି ପ୍ରାୟ ଜାହାଜର ଶେଷ ବିନ୍ଦୁରେ ।

ପ୍ରଥମେ ଆଖିକୁ ବିଶ୍ୱାସ କରି ପାରିଲି ନାହିଁ । ସତକୁ ସତ ଗୋଟାଏ କାଠର ଡେକ୍ ଚେଆର୍‌ରେ ବସି ରହି କୁନା କାନ୍ଦୁଚି ଆଉ ହାତର ପିଠି ପଟେ ଆଖିରୁ ଲୁହ ପୋଛୁଚି । ତା' ପାଖରେ ଆଉ ଜଣେ ଲୋକ ଠିଆ ହୋଇ ରହିଛି । ଜାହାଜର ଖଲାସୀ ହବ ପରା ।

ମୁଁ ଦୌଡ଼ିଯାଇ କୁନାକୁ କୋଳାଗ୍ରତ କରି ନେଲି ଏବଂ ଏକା ସାଙ୍ଗରେ ମୁଁ ଓ କୁନା କାନ୍ଦି ଉଠିଲୁ ଦୁଇଟି ଅବୋଧ ଶିଶୁ ପରି, ଯେପରି ଆମେମାନେ ପରସ୍ପରକୁ ହଜେଇ ଦେଇଥିଲୁ ଗୋଟାଏ ଶତାବ୍ଦୀ ଧରି । ମୁଁ ବିଦ୍ୟୁତ୍ ବେଗରେ ଅତିକ୍ରମ କରିଥିବା ଡେକ୍‌ର ରାସ୍ତାରେ କୁନାର ହାତ ଧରି ଆସ୍ତେ ଆସ୍ତେ ଫେରୁଛି । କୁନାର କାନ୍ଦ ତଥାପି ସରି ନାହିଁ, ମଝିରେ ମଝିରେ କୋହ ଉଠୁଛି । ବାଟରେ ଜଣେ ଅଫିସର୍‌ଙ୍କୁ ଦେଖି ମୋର କୃତଜ୍ଞତା ତାଙ୍କ ଜରିଆରେ କ୍ୟାପ୍‌ଟେନ୍‌ଙ୍କ ପାଖକୁ ପଠେଇ ଦେଲି ।

କୁନାକୁ ଆଣି ଆମ ବିଛଣା ଉପରେ ବସେଇ ଦେଇ, ଟିକିଏ ପାଣି ପିଇବାକୁ ଦେଲି । ଏତିକି ବେଳେ ପୁଣି ଘୋଷଣା କରାଗଲା, କ୍ୟାଣ୍ଟିନ୍‌ରେ ଖାଦ୍ୟ ପ୍ରସ୍ତୁତ ଓ ଯାତ୍ରୀମାନେ ଆସି ସେମାନଙ୍କର ଖାଦ୍ୟ ଖାଇ ନିଅନ୍ତୁ, ନହେଲେ ଠିକ୍ ଦିନ ଗୋଟାଏ ବେଳେ କ୍ୟାଣ୍ଟିନ୍ ବନ୍ଦ ହୋଇଯିବ । ମୋର ଓ କୁନାର ହାଇଡ୍ରୋକଲିକ୍ ଏସିଡ୍‌ର କ୍ଷରଣ ବୋଧହୁଏ ବନ୍ଦ ହେଇ ଯାଇଥିଲା—କ୍ଷୁଧା ସଂପୂର୍ଣ୍ଣ ନିର୍ବାପିତ । ତଥାପି ଅଳ୍ପ କିଛି ଜିନିଷ କ୍ୟାଣ୍ଟିନ୍‌ରୁ ଆଣି ଖାଇଲୁ । ଏବଂ ଠିକ୍ ତା' ପରେ ପରେ କୁନା ଶୋଇ ପଡ଼ିଲା । ଅନେକ କ୍ଳାନ୍ତ ହୋଇପଡ଼ିଥିଲା ସିଏ ।

ମୁଁ ଦୁଇ ହାତର ପାପୁଲି ଉପରେ ମୋର ମୁଣ୍ଡ ରଖି କେବଳ ମୋର ପରିବେଶକୁ ଏକ ଅନ୍ୟମନସ୍କ ଆଖିରେ ଚାହିଁ ରହିଲି । କିନ୍ତୁ ଏ ଜାହାଜ ଥିଲା ଅନ୍ୟ ଏକ ଜାହାଜ । ଏ ଜାହାଜର ଯାତ୍ରୀମାନେ ସହଜ, ସୁନ୍ଦର ଓ ଉଦାର । ହିପ୍‌ପୀମାନେ ଯେମିତି ଏକ

ଦୁରନ୍ତ ଅଭିଯାନରେ ଯାଉଛନ୍ତି ଦେଶରୁ ଦେଶାନ୍ତର—ନିଜ ଦେଶର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ଓ ବିଳାସକୁ ତୁଚ୍ଛ କରି ସେମାନେ ଯେପରି ଯାଉଛନ୍ତି ଏକ ନୂତନ ମୂଲ୍ୟବୋଧର ସନ୍ଧାନରେ—ଯେମିତି ଅତୀତରେ ଘୁରି ବୁଲିଥିବା ଡ୍ୟାଭିଡ୍ ଲିଭିଂଷ୍ଟୋନ୍ ବା ଡାର୍‌ଉଇନ୍ । କିଏ ଜାଣେ ସେମାନେ ଚାଲିଛନ୍ତି କେଉଁ ଏକ ନୂତନ ସ୍ୱର୍ଗର ସନ୍ଧାନରେ ? ସେଠି ଦଳେ ତରୁଣ ବସି ବୋତଲ ପରେ ବୋତଲ ଫେନି ନିଃଶେଷ କରି ଚାଲିଛନ୍ତି ଓ ଉଚ୍ଚ କଣ୍ଠରେ ଗାଇ ଚାଲିଛନ୍ତି କେଉଁ ପାଶ୍ଚାତ୍ୟ ସଙ୍ଗୀତଜ୍ଞଙ୍କର ନୂତନ ଉଦ୍‌ଭାବନ । ତାଙ୍କ କଣ୍ଠରେ ତାରୁଣ୍ୟର ପ୍ରଚଣ୍ଡ ଉନ୍ମାଦନା ଯେପରି ବିଠୋଭେନ ଓ ମୋଜାର୍ଟଙ୍କୁ ଅସ୍ୱୀକାର କରେ ।

ପଡ଼ନ୍ତ ଅପରାହ୍ନ ।

ଦିଗ୍‌ବଳୟରେ ଝୁଲି ରହିଛି ଏକ କ୍ଷୟିଷ୍ଣୁ ସୂର୍ଯ୍ୟ ।

ଦିଗ୍‌ବଳୟ ଠାରୁ ଜାହାଜ ପର୍ଯ୍ୟନ୍ତ ଉନ୍ମୁକ୍ତ ହେଇ ଯାଇଛି ଏକ ସୁବର୍ଣ୍ଣ ରାଜପଥ । ହଁ, କୁନା ପାଇଁ ମତେ ଗୋଟାଏ ନାଁ ବାଛିବାକୁ ହବ । ଘର ଠାରୁ ଏ ପର୍ଯ୍ୟନ୍ତ ସେଇକଥା ମୁଁ ବାରମ୍ବାର ଚିନ୍ତା କରି ଆସିଛି, କିନ୍ତୁ ଏ ପର୍ଯ୍ୟନ୍ତ ସିଦ୍ଧାନ୍ତରେ ପହଞ୍ଚି ପାରି ନାହିଁ । ଇନ୍ଦ୍ରମଣି ଗୋଟାଏ କିଛି ନାଁ ନୁହଁ । ଯେମିତି ନୀଳମଣି, କୁଳମଣି, ଯଦୁମଣି, ଧେତ୍, ଯେ' ଗୋଟାଏ ନାଁ ନା କ'ଣ ?

ତାଛଡ଼ା ଅନ୍ୟ ନାଁ ଗୁଡ଼ାକ ବି ଅତ୍ୟନ୍ତ କମନ୍‌ପ୍ଲେସ୍ । ଯେମିତି ନାରାୟଣ, ରଘୁପତି, ଜୟଦେବ, ମୁରଲୀଧର, ଚନ୍ଦ୍ରଶେଖର, କୃତ୍ତିବାସ ଇତ୍ୟାଦି ଇତ୍ୟାଦି ପ୍ରାୟ ପାଞ୍ଚଶହ ଏହି ପ୍ରକାର ନାଁର ତାଲିକା କରାଯାଇପାରେ । କିନ୍ତୁ ସେଗୁଡ଼ା କ'ଣ ନାଁ— ନାଁ ଦବା ନାଁରେ ଭଗବାନଙ୍କ ପାଖରେ ଏକ ଉତ୍ସର୍ଗୀକରଣ । ସବୁ ନାଁ ଗୁଡ଼ାକର ଅର୍ଥ ଯେମିତି ଏକା ଏମାନଙ୍କର ଯେମିତି ନିଜର କିଛି ବିଶେଷତ୍ୱ ନାହିଁ ।

ନାଁ ହେଲା ଅଭିଜିତ୍, ଉତ୍ପଳ, ପଦ୍ମାକ୍ଷ, ଶୈବାଳ, ଉଦୟନ ଇତ୍ୟାଦି ଇତ୍ୟାଦି । ଡାକିଲେ କି କାଗଜରେ ନାଁ ବାହାରିଲେ ଲାଗେ ଗୋଟାଏ ନାଁ ପରି ନାଁ । ଏ ନାଁ କୌଣସି ଛେଳି ଖୁଆଡ଼ରେ ବନ୍ଧା । ଛେଳିର ନାଁ ନୁହଁ । ଗୋଟାଏ ଆଭିଜାତ୍ୟ ଅଛି, ଗୋଟାଏ ବ୍ୟକ୍ତିତ୍ୱ ଅଛି, ଗୋଟାଏ ସ୍ୱାତନ୍ତ୍ର୍ୟ ଅଛି ।

ମୋର ମଧ କିୟତ୍‌କ୍ଷଣ ପାଇଁ ଆଖି ଲାଗି ଯାଇଥିଲା ଆରବ ସାଗରର ହାଓ୍ୱାରେ ।

ମୁଁ ଉଠିଲାବେଳକୁ ବେଶ୍ କିଛି ରାତି ହେଇଯାଇଥିଲା ଏବଂ ଜାହାଜ ଲାଗିଥିଲା କୌଣସି ଏକ ବନ୍ଦରରେ, ଯାହାର ନାଁ ମୁଁ ବର୍ତ୍ତମାନ ସ୍ମରଣ କରିପାରୁ ନାହିଁ । ଜାହାଜର ଯାତ୍ରୀମାନଙ୍କର ଓ ଲୁହା ବାଡ଼ ଧରି ଠିଆ ହୋଇଥିବା ବନ୍ଦରର

ଲୋକମାନଙ୍କର କଥାବାର୍ତ୍ତା—କଥାବାର୍ତ୍ତା ତ ନୁହଁ କୋଳାହଳ—ଚରମକୁ ଉଠିଚି । ଗୋଟିଏ ଛୋଟ ହୁଳି ଡଙ୍ଗା ଆହୁଲା ମାରି ମାରି ଆସି ଜାହାଜର ଦଉଡ଼ିକୁ ସାଙ୍ଗରେ ନେଇଗଲା । କ୍ୟାପ୍‌ଷ୍ଟାନରେ ବାନ୍ଧିବ ବୋଲି । ଏଠି ଜାହାଜର ଅଧଘଣ୍ଟାଏ ରହଣି ।

ପୁଣି ଥରେ ସେଇ ଖାଦ୍ୟ ପାଇଁ କ୍ୟାଣ୍ଟିନରୁ ଘୋଷଣା ।

ସାମାନ୍ୟ କିଛି ଖାଦ୍ୟ ଧରି ଫେରିଲି ଓ ତାହା ମୋ ପାଇଁ ଓ ତଥାପି ଅର୍ଦ୍ଧସୁପ୍ତ କୁନା ପାଇଁ ଯଥେଷ୍ଟ ଥିଲା ।

ସକାଳୁ କ୍ୟାଣ୍ଟିନ୍ ବୟମାନଙ୍କର ଚା' ଚା', କଫି କଫି ଚିତ୍କାରରେ ନିଦ ଭାଙ୍ଗିଲା । କପେ ଚା' ଖାଉ ଖାଉ ବୁଝିଲି, ଆଉ ପନ୍ଦର ମିନିଟ୍ ସମୟ ଭିତରେ ଆମେ ଆମର ଗନ୍ତବ୍ୟ ପୋର୍ଟରେ ପହଞ୍ଚିଯିବୁ ।

ଜାହାଜରୁ ଓହ୍ଲେଇବା ମାତ୍ରକେ ବୁଝିବାର ବାକି ରହିଲା ନାହିଁ ଯେ' ଏ ଜାଗା ଏକ ପର୍ତ୍ତୁଗୀଜ୍ ସଭ୍ୟତାର ସ୍ୱାକ୍ଷର ଏବେ ବି ବହନ କରେ । ଗଢ଼ି ଆସିଥିବା ଟାଇଲର ବଂଲୋ ଟାଇପ୍ ଘର । କାଚ ପ୍ୟାନେଲଦିଆ ଝରକା କବାଟରେ ଗଥିକ ସଭ୍ୟତାର ଉଚ୍ଚ ପାଟର୍ଣ୍ଣ । ସବୁ ଘରର ପୋର୍ଚ୍ଚରେ ସବୁଜ ଲତାର କୁଞ୍ଜ । ଆଃ ! ମିଛରେ କହନ୍ତି ଦକ୍ଷିଣର ଭୂସ୍ୱର୍ଗ !

ତା'ପରେ ଗୋଟିଏ ସ୍କୁଟର ରିକ୍ସା ଯୋଗେ ମୁଁ, କୁନା ଓ ଆମର ସୀମିତ ସମ୍ବଳ ଯେଉଁଠାରେ ଯାଇ ପହଞ୍ଚିଲା ସେଠି ଏକ ବିରାଟ ଲନ୍ । ଲନ୍ ଭିତରେ ଗୋଟିଏ ଚର୍ଚ୍ଚ ଓ ତା' ପାଖକୁ ଲାଗି ଗୋଟିଏ ସ୍କୁଲ । ଡାହାଣ ପଟେ ଆଦିଅନ୍ତ ବ୍ୟାପୀ ସୁନୀଳ ସମୁଦ୍ର ।

ଏଇଠି କୁନା ପଢ଼ିବ—ଆଉ ଯା ଭିତରୁ ବାହାରିଲା ବେଳକୁ କୁନା ଆଉ କୁନା ହେଇ ନଥିବ, ହେଇଯାଇଥିବ ଅଭିଜିତ୍ ନହେଲେ ସୁନୀଲ୍ ନହେଲେ କେତେ କ'ଣ.... ।

ଅଳ୍ପ ସମୟ ପରେ ସ୍କୁଲର ଅଫିସ ଘର ଭିତରକୁ ଯେଉଁ ବ୍ୟକ୍ତି ପଶି ଆସିଲେ ସେ ଥିଲେ ଦୀର୍ଘାକୃତି ଓ କ୍ଷୀଣକାୟ । କିନ୍ତୁ ତାଙ୍କର କୋଟରଗତ ଆଖିର ଗହ୍ୱର ଭିତରୁ ଯେଉଁ ଦୁଇଟି ଆଖି ଚକ୍ ଚକ୍ କରୁଥିଲା, ତାହାଥିଲା ଅସାମାନ୍ୟ ବୁଦ୍ଧିଦୀପ୍ତ । ଫାଦରମାନଙ୍କ ପରି ଆଜାନୁଲମ୍ବିତ ଶୁଭ୍ର ଆଲଖାଲ୍ଲା ଓ ତା' ଉପରେ ଝୁଲି ରହିଛି ଚକ୍‌ଚକ୍ କରୁଥିବା ଷ୍ଟେନଲେସ ଷ୍ଟିଲର ଗୋଟିଏ କ୍ରସ୍ ।

ସେ ଅଫିସ ଭିତରକୁ ପଶି ଆସିଲା ବେଳକୁ କାନ୍ଥ ଘଡ଼ିରେ ଠଂ ଠଂ କରି ଏଗାରଟା ବାଜୁଥିଲା । ସେ ଆମକୁ ସମୟ ଦେଇଥିଲେ ଠିକ୍ ୧୧ଟା ବେଳକୁ

ଆସିଯିବ । ବାଃ, ଏମିତି ସମୟାନୁବର୍ତ୍ତିତା ନଥିଲେ କି ଏତେ ବଡ଼ ନାଁ କରା ସ୍କୁଲ୍‌ର ହେଡ୍‌ମାଷ୍ଟର ହେଇହୁଏ ।

ଭିତରକୁ ପଶି ଆସି ନିଜେ ନିଜେ ତାଙ୍କର ହାତର ପାପୁଲି ମୋ ଆଡ଼କୁ ବଢ଼େଇ ଦେଇ କହିଲେ, ''ଆଇ ଆମ୍ ରେଭରେଣ୍ଡ୍ ମୁଦାଲିଆର୍, ଆଇ ହୋପ୍ ୟୁ ଆର୍ ଇଣ୍ଡ୍ରମଣି''... ମୁଁ କହିଲି ''ୟେସ୍ ଇନ୍ଦ୍ରମଣି ଦାସ ।'' ''ଗ୍ଲାଡ୍ ଟୁ ମିଟ୍ ୟୁ—ଦିସ୍ ଇଜ୍ ୟୋର୍ ସନ୍ ସିକିଂ ଆଡ୍‌ମିସନ୍ ।'' ମୁଁ କହିଲି ''ୟେସ୍ ସାର୍ ।''

ତା'ପରେ ରେଭରେଣ୍ଡ ତାଙ୍କ ସାମ୍ନାରେ ଖୋଲି ଧରିଲେ ଗୋଟାଏ ମୋଟା ରେଜିଷ୍ଟର ଓ ତାଙ୍କର କଲମ ଖୋଲିଧରି ପଚାରିଲେ, ହ୍ୱାଟ୍ ଇଜ୍ ଦି ନେମ୍ ଅଫ୍ ୟୋର ବୟ ? ମୋର ପ୍ରକୃତରେ ତଣ୍ଟି ଶୁଖିଗଲା—ମୁଁ ତ ଏପର୍ଯ୍ୟନ୍ତ ନାଁ ଟାଏ ଠିକଣା କରିପାରି ନାହିଁ । ସେଇ ଯେ କୁନା ହଜି ଯାଇଥିଲା ଜାହାଜରେ ମୋର ମୁଣ୍ଡ ଗୋଳମାଳ ହେଇଯାଇଥିଲା—ମୁଁ ତ ନିର୍ଦ୍ଦିଷ୍ଟ ଭାବରେ କିଛି ଗୋଟାଏ ଭାବି ପାରି ନାହିଁ । ରେଭରେଣ୍ଡ କଲମ ହାତରେ ଧରି ମତେ ଆଶ୍ଚର୍ଯ୍ୟ ହେଇ ଚାହିଁ ରହି ଥାଆନ୍ତି । ମୋ ଆଖି ଆଗରେ ଭାସି ଉଠିଲା, କୁନା ହଜିଯାଇଥିଲା ବେଳେ ମୋ ଆଡ଼କୁ ଉଡ଼ି ଆସୁଥିବା ଦୁଇଟି କୃଷ୍ଣବଦନ ସିଂଗଲଙ୍କ ମୁହଁ, ମୁଁ ତତ୍‌କ୍ଷଣାତ୍ କହିଲି ''ଜଗନ୍ନାଥ ଦାସ ।''

ଫାଦର ଲେଖିବାକୁ ଆରମ୍ଭ କରି ନାଁଟାକୁ ମନେ ମନେ ଦୋହରେଇଲେ ''ଆଃ, ଜଗର୍‌ନଟ୍ ଡାସ ।''

ମୁଁ କହିଲି, ''ହୋଲଡ୍ ଅନ୍ ଫାଦର୍, ହିଜ୍ ନେମ୍ ଇଜ୍ ଭାଗବତ ଦାସ ।''

''ପ୍ଲିଜ୍ ସ୍ପେଲ ଇଟ୍ ।''

ମୁଁ ଆରମ୍ଭ କଲି ''ବି ଫର୍ ବମ୍ବେ, ଏଚ୍ ଫର୍ ହରିଆନା, ଏ ଫର୍ ଆସାମ....'' ଇତ୍ୟାଦି ଇତ୍ୟାଦି । ତା'ପରେ ବାପ ନାଁ, ତା'ପରେ ଠିକଣା ଇତ୍ୟାଦି ଇତ୍ୟାଦି । ରେଜିଷ୍ଟର୍‌ରେ ନାଁ ଚଢ଼ି ସାରିବା ପରେ ମତେ ଗୋଟି ଗୋଟି କରି ସ୍କୁଲର ଆଇନ୍ କାନୁନ୍ ବୁଝେଇ ଦିଆଗଲା ଓ ଆଡ୍‌ମିସନ ପାଇଁ ମୋ ଠାରୁ ସାତଶହ ଅଠାବନ ଟଙ୍କା ନେଇ ରସିଦ୍ ଦେଇ ଦିଆଗଲା ।

ଫାଦର୍ କଲିଂବେଲ୍ ଚିପିଲେ ବୋଧହୁଏ କାରଣ ଅଫିସର ପର୍ଦ୍ଦା ଆଢ଼େଇ ଗୋଟିଏ ସୁଦର୍ଶନା ନର୍ସ ଆସି ଠିଆ ହେଲା । ଫାଦର କହିଲେ, ''ରୁମ୍ ନମ୍ବର ସିକ୍‌ସ୍‌ଟିନ୍ ।''

ନର୍ସଟି କହିଲା, ''କମ୍ ଅନ୍ ସୁଇଟ୍ ବେବି''—ଓ ସେଇତକ କହି କୁନାର କୁତ୍ସିତଦର୍ଶନ ଟିଣ ସୁଟ୍‌କେସ୍ ଓ ହୋଲ୍‌ଡ଼ଅଲକୁ ଗୋଟାଏ ହାତରେ ଧରି ଆଉ

ହାତରେ କୁନାର ହାତଧରି ଧୀରେ ଧୀରେ ପର୍ଦ୍ଦା ଆରପଟକୁ ଚାଲିଗଲା । ଏଇ କେତେ ପାହୁଣ୍ଡ ଚାଲିବା ଭିତରେ କୁନା ଦୁଇଥର ବେକ ଭାଙ୍ଗି ପଛକୁ ଚାହିଁଥିଲା । ମୁଁ ଠିକ୍ ବୁଝି ପାରିନଥିଲି କୁନାର ଆଖିରେ ସାମାନ୍ୟ ପାଣି ଢଳେଇ ଆସି ଥିଲା କି ନାହିଁ—କିନ୍ତୁ ମୋ ଆଖିରେ ପାଣି ଆସୁ ଆସୁ ମୁଁ ତାକୁ ବହୁ କଷ୍ଟରେ ସମ୍ଭାଳି ନେଇଥିଲି । କିନ୍ତୁ ବୋଧହୁଏ ସେଇ ସାମାନ୍ୟ ବ୍ୟତିକ୍ରମ ରେଭରେଣ୍ଡ ମୁଦାଲିୟରଙ୍କର ତୀକ୍ଷ୍ଣ ଦୃଷ୍ଟି ଏଡ଼ାଇ ଯାଇ ପାରିନଥିଲା । ତେଣୁ ସେ ତଳକୁ ମୁହଁ କରି ମୋରି ଉଦ୍ଦେଶ୍ୟରେ ଖୁବ୍ ଆସ୍ତେ ଦୃଢ଼ ଭାବରେ କହିଥିଲେ, "ମିଃ ଦାସ୍, ଆମର ସ୍କୁଲର ଶୃଙ୍ଖଳା ବେଶ୍ କଠିନ, କେବଳ ଭେକେସନ୍‌କୁ ବାଦ୍ ଦେଲେ ଆପଣ ଆପଣଙ୍କ ପୁଅ ସହିତ ଅନ୍ୟ ସମୟରେ ଦେଖା କରିବାକୁ ଆସିପାରିବେ ନାହିଁ ।"

ମୁଁ ନୀରବ ରହିଲି । ମୋର ମୁହଁର କିଛି ରକ୍ତ ଖସିଯାଇ ଟିକିଏ ବିବର୍ଣ୍ଣ ଦେଖାଗଲା ପରା—ମୋର ମୁହଁର ମାଂସପେଶୀ ସାମାନ୍ୟ ସଙ୍କୁଚିତ ହେଇଗଲା ବୋଧହୁଏ । ପୁଣି ସେ, ମୁଦାଲିୟର୍ କହିଲେ, "ଆଇ କ୍ୱାଇଟ୍ ଅଣ୍ଡରଷ୍ଟାଣ୍ଡ୍ ଆଣ୍ଡ୍ ଆପ୍ରିସିଏଟ୍ । ଏନିହାଉ ଲେଟ୍ ଅସ୍ ଟେକ୍ ଲିଭ, ସି ୟୁ ଏଗେନ୍ ।" ମୁଁ କହିଲି, "ୟେସ୍ ରେଭରେଣ୍ଡ, ସି ୟୁ ଏଗେନ୍ ।"

ଅଫିସ୍‌ରୁ ବାହାରକୁ ଆସିଲା ବେଳେ ମୋର ପୁଣି ଥରେ କେଜାଣି କାହିଁକି ମନେ ହେଇଥିଲା ମୁଁ ପୁଣି ଥରେ କୁନାକୁ ହଜେଇ ଦେଲି ଏକ ଶୃଙ୍ଖଳିତ ଶିକ୍ଷାୟତନର ଅର୍ଗଳି ଭିତରେ । କିନ୍ତୁ ମନର ଘୋଡ଼ା ଉପରେ ପୁଣି ଥରେ ଲଗାମ୍ କଷିଥିଲି—ଏତିକି ସ୍ୱାର୍ଥତ୍ୟାଗ ନକଲେ କୁନା ବଡ଼ ହବ କେମିତି ? କୁନା, ମୁଁ ଯେମିତି ଦାସତ୍ୱର ଶୃଙ୍ଖଳରେ ବଂଧା ସେଥିରୁ ମୁକ୍ତ ହବ କେମିତି ?

ଜାହାଜ ଛାଡ଼ିବାର ସମୟ ନିକଟ ହେଇ ଆସୁଚି । ତେଣୁ ରମଣୀୟ ପ୍ରାକୃତିକ ଦୃଶ୍ୟ ଦେଖିବାର ଲୋଭ ସମ୍ବରଣ କରି ଶୀଘ୍ର ଶୀଘ୍ର ପାଦ ପକେଇଲି ବନ୍ଦର ଆଡ଼କୁ । ସେଦିନ ବି ସୂର୍ଯ୍ୟଙ୍କର ଅକୃପଣ ଦାନରେ ଆରବ ସାଗର ସୂର୍ଯ୍ୟସ୍ନାନ କରୁଥିଲା ଓ ମୁଁ ଅନ୍ୟାନ୍ୟ ଯାତ୍ରୀମାନଙ୍କ ସହିତ ଧସ୍ତାଧସ୍ତି ହେଇ ପ୍ୟାଙ୍ଗ ପ୍ଲାଙ୍କ୍ ଅତିକ୍ରମ କରି ଜାହାଜର ବିରାଟ ଉଦର ଭିତରକୁ ପ୍ରବେଶକଲି ଓ ଜାହାଜ ପୁଙ୍ଗା ବଜେଇ ବନ୍ଦର ଛାଡ଼ିଲା । ବନ୍ଦର ଛାଡ଼ିଲା ବେଳେ ମୋର ମୁହୂର୍ତ୍ତକ ପାଇଁ ମନେ ପଡ଼ିଯାଇଥିଲା ଚର୍ଚ୍ଚ ପାଖରେ ସେଇ ସ୍କୁଲ୍, ରେଭରେଣ୍ଡ ମୁଦାଲିୟର୍ ଓ ନନ୍‌ର ହାତ ଧରି ଅପସୃୟମାନ କୁନା, ଯିଏ ପର୍ଦ୍ଦା ପଛରେ ହଜିଯିବା ପୂର୍ବରୁ ପଛକୁ ଫେରି ମତେ ଦୁଇଥର ଅନେଇଥିଲା କେବଳ ।

ଜାହାଜ ଚାଲିଲା ।

କୁନା ପାଇଁ ମୋର ସମସ୍ତ ଆଶା ଆକାଂକ୍ଷକାକୁ ପଛରେ ଛାଡ଼ିଦେଇ ଏତେବେଳେ ଫେରିବାର ବେଳ । ଇନ୍ଦ୍ରମଣି ଦାସ ବି ଆଉ କ'ଣ କରି ପାରିଥାଆନ୍ତା ? ତା'ର ସମସ୍ତ ସମ୍ବଳ ନିଃସ୍ୱ କରି ସେ କୁନାକୁ ମଣିଷ ପରି ମଣିଷ କରିବାକୁ ଆପ୍ରାଣ ଚେଷ୍ଟା କରୁଚି କେବଳ ।

ଜାହାଜରେ ମଧ୍ୟାହ୍ନ ଭୋଜନ ପରେ ଏପଟ ସେପଟ ଟିକିଏ ବୁଲାବୁଲି କରିଥିଲି । କୁନା ଆଉ ଜିନିଷ ପତ୍ରର ଜଞ୍ଜାଳରେ ଅନେକ କଥା ଦେଖି ପାରି ନଥିଲି । ଠିକ୍ ମୁଣ୍ଡ ଉପର ର୍ୟାକ୍‌ରେ ଥୁଆ ହେଇଛି ହଳଦିଆ ରଙ୍ଗର ଅନେକ ଲାଇଫ୍ ଜ୍ୟାକେଟ୍ । ଜାହାଜର ଚାରିଆଡ଼େ ଷ୍ଟେନ୍‌ସିଲ୍ କଟା ବଡ଼ ବଡ଼ ଅକ୍ଷରରେ ଲେଖାଅଛି—ଯଦି ଦୁଇଟି କ୍ଷିପ୍ର ହୁଇସିଲ୍ ବାଜେ ତାହାହେଲେ ତାହା ବିପଦ ସଂକେତ କିନ୍ତୁ ଆତଙ୍କିତ ହବାର କୌଣସି କାରଣ ନାହିଁ । ଯଦି ତିନୋଟି କ୍ଷିପ୍ର ହୁଇସିଲ୍ ବାଜେ ତାହାହେଲେ ନିଜ ନିଜର ଲାଇଫ୍ ଜ୍ୟାକେଟ୍ ପିନ୍ଧିନେବେ ଓ ଯଦି ଛଟି କ୍ଷିପ୍ର ହୁଇସିଲ୍ ବାଜେ, ତାହାହେଲେ, ତାହାହେଲେ ? ଆବାଣ୍ଡନ୍ ଦି ସିପ୍ !

ଆବାଣ୍ଡନ୍ ଦି ସିପ୍ ! ତାହାହେଲେ କାସାବିଆଙ୍କା ! ତାହାହେଲେ କୁନା ଓରଫ୍ ଜଗନ୍ନାଥ ନା ନା ଭାଗବତ ଦାସ ?

ଏଣୁ ତେଣୁ ଗୁଡ଼ାଏ କଥା ମୁଣ୍ଡରେ ପୁରେଇ ଅଯଥାରେ ଏଇ ସମୁଦ୍ର ଯାତ୍ରାଟାକୁ ନଷ୍ଟ ନକଲେ ଚଳିବ ।

ଗୋଟାଏ ଡେକ୍ ଚେୟାର ଉପରେ ବସିରହି ଅନ୍ୟମନସ୍କ ଭାବରେ ସମୁଦ୍ରକୁ ଚାହିଁ ରହିଲି । ଝାଙ୍କ ଝାଙ୍କ ସି'ଗଲ୍ ଚଢ଼େଇ ଜାହାଜ ପାଖେ ପାଖେ ଉଡୁଛନ୍ତି ଏବଂ ବିଦେଶୀ ବିଦେଶିନୀମାନେ ସେମାନଙ୍କୁ ଫୋପାଡୁଛନ୍ତି ଖାଦ୍ୟ ସାମଗ୍ରୀର ଟୁକୁରା, ଯାହା ସେମାନେ ଉଠେଇ ନଉଛନ୍ତି ମଧ୍ୟପଥରୁ ନହେଲେ ଫୁଲ ପରି ଓହ୍ଲେଇ ଆସୁଛନ୍ତି ପାଣି ଉପରକୁ, ଯେଉଁ ପାଣି ସେମାନଙ୍କୁ କେଇ ଇଞ୍ଚ ଉପରକୁ ଉଠେଇ ନେଇ ପୁଣି ପର ମୁହୂର୍ତ୍ତରେ ନେଇ ଯାଉଛି କେଇ ଇଞ୍ଚ ତଳକୁ । ସେମାନେ ଯେମିତି ଗୋଟାଏ ଦକ୍ଷ ବ୍ୟାଲେରିବା ଟିମ୍ ।

ସି'ଗଲ୍‌ମାନଙ୍କୁ ଦେଖି ମୋର ପୁଣି ମନେ ପଡ଼ିଗଲା ଆସିବା ସମୟ କଥା । ସମାନ୍ତରାଳ ଭାବରେ ଉଡୁଥିବା ଦୁଇଟି ସି'ଗଲ୍ ମତେ ମନେ ପକାଇ ଦେଇଥିଲେ ଜଗନ୍ନାଥଙ୍କ କଥା ଏବଂ ମୁଁ କୁନା ପାଇଁ ଆତୁର ହେଇ ଜଗନ୍ନାଥଙ୍କୁ ଜଣାଣ କରିବା ଆରମ୍ଭ କରିଦେଇଥିଲି । ଏବଂ ଏହା ମଧ୍ୟ ଠିକ୍, ମୁଁ କୁନାକୁ ମାତ୍ର ଅଳ୍ପ ସମୟ ପରେ ଫେରି ପାଇଥିଲି ! କିନ୍ତୁ ଏକଥା କିଏ ହଲପ୍ କରି କହିପାରିବ ମୁଁ କୁନାକୁ ଫେରି ପାଇଥିଲି "ଜଗନ୍ନାଥଙ୍କ କରୁଣାରୁ ନା ତାହା ଥିଲା ଏକ କାକତାଳିଜ ନ୍ୟାୟ—ତାହା

ଥିଲା ଏକ ଦୁର୍ବଳଚିତ୍ତ ପିତାର ଅସହାୟ ପ୍ରଳାପ ? ଠିକ୍ କଥା କିଏ କହିପାରିବ ? ଏହା ନିଶ୍ଚିତ ଭାବରେ ପ୍ରମାଣ-ସାପେକ୍ଷ ।''

କିନ୍ତୁ ଗୋଟାଏ ଆକସ୍ମିକ ଘଟଣା ଏତେ ଦିନର କଳ୍ପନା ଜଳ୍ପନାକୁ ଗୋଟାଏ ମୁହୂର୍ତ୍ତରେ ଓଲଟପାଲଟ କରିଦେଲା । କାହିଁ ଅଭିଜିତ୍, ବିଶ୍ୱଜିତ୍, ସୁପ୍ରିୟ ଇତ୍ୟାଦି ଇତ୍ୟାଦି ଅନେକ ଓ କାହିଁ ଜଗନ୍ନାଥ ଦାସ ଓ ଭାଗବତ ଦାସ ପରି କମନ୍‌ପ୍ଲେସ୍ ନାମକରଣ ? ଏପରି ଗୋଟାଏ ଗାଁଉଲି ନାଁ ପାଇଁ ହୁଏତ ପିଲାଟା ଭବିଷ୍ୟତରେ ହାଣ୍ଡିକାପ୍‌ଡ୍ ହେଇ ଯାଇପାରେ !

ହାଣ୍ଡିକ୍ୟାପ୍‌ଡ୍ ହବ ନାହିଁ ?

କିଏ ପ୍ରଥମେ ଚନ୍ଦ୍ରରେ ପାଦଦେଲା ? ନେଲ୍ ଆର୍ମଷ୍ଟ୍ରଙ୍ଗ—ଆଉ ଭାଗବତ ଦାସ, ଛିଃ ଛିଃ ଛିଃ ! କିଏ ପ୍ରଥମେ କ୍ୟାନ୍‌ସର୍‌ର ଅବ୍ୟର୍ଥ ଔଷଧ ଆବିଷ୍କାର କଲା ? କିଏ ନୋବେଲ୍ ପ୍ରାଇଜ୍ ପାଇଲା ? କିଏ ଭାରତର ପ୍ରାଇମ୍ ମିନିଷ୍ଟର୍ ହେଲା ? ଛିଃ ! ପିଲାଟାର କ୍ୟାରିଅର୍ ନଷ୍ଟ ନହେଲେବି କୁନା ମଧ୍ୟ ଭବିଷ୍ୟତ୍‌ରେ ତା'ର ଏଇ ନାଁ ପାଇଁ ଲଜ୍ଜିତ ହେଇପାରେ ।

ତା'ଛଡ଼ା ତମେ ଇନ୍ଦ୍ରମଣି ଦାସ, ପିତା ଶଙ୍କର ଦାସ ସାକିନ୍ ଜଙ୍କିଆ, ପୋଷ୍ଟ, ଭାୟା ଖୋର୍ଦ୍ଧା, ଜିଲ୍ଲା ପୁରୀ । ତମ ବାପାଙ୍କ ଷ୍ଟେଟସ୍ ଅପେକ୍ଷା କିଛିଟା ଉପରକୁ ଆସିଥିଲ, କିନ୍ତୁ ତମେ ପୁଣିଥରେ ସେଇ ଏକମାତ୍ର ଦାୟାଦର ନାକୁ ତଳିତଳାନ୍ତ କରି ଖସେଇ ଆଣିଲ ଭାଗବତ ଦାସକୁ । ତମେ ଡରିଗଲ ଇନ୍ଦ୍ରମଣି, ପୁଅର ନାଁ ଜଗନ୍ନାଥ ଦାସ ମଧ୍ୟ ରଖିବାକୁ ସାହସ କରି ପାରିଲ ନାହିଁ । ଜଗନ୍ନାଥ ଦାସ ? ଏତେ ବଡ଼ ଆସ୍ପର୍ଦ୍ଧା ! ତମ ପୁଅ ଜଗନ୍ନାଥଙ୍କର ଖୋଦ୍ ସେବାକାରୀ ଜଗନ୍ନାଥ ଦାସଙ୍କ କୃତ ଭାଗବତର ଦାସ ।

ତମ ପୁଅ ହେଲା ଦାସାନୁଦାସ !

କିଏ କହିଲା, ମୋ' ପୁଅ ଦାସାନୁଦାସ ହେଲା ?

ମୋର ଖୁବ୍ ପାଖ ଦେଇ ଜାହାଜ ସହିତ ସମାନ ଗତିରେ ଉଡ଼ି ଚାଲିଥିଲେ ଦୁଇଟି ସି'ଗଲ୍ ।

ପ୍ରଥମ ସି'ଗଲ୍ କହିଲା, ଭାଗବତ ଦାସର ପୁଅ ହବ ଉଚ୍ଛବ ଦାସ ।

ଦ୍ୱିତୀୟ କହିଲା, ଆଉ ତା' ପୁଅ ହବ ସୁକୁଟା ଦାସ ।

ତା' ପୁଅ ହାଡ଼ିଆ ଦାସ ଇତ୍ୟାଦି ଇତ୍ୟାଦି ।

ମୁଁ ପଚାରିଲି, ଆଚ୍ଛା ସି'ଗଲ୍ ଅନ୍ତର୍ଯ୍ୟାମୀ ଭଗବାନଙ୍କ ନାଁ ଅନୁସାରେ ନାମକରଣ କରିବା କ'ଣ ଏତେ ବଡ଼ ଭୁଲ୍ ହୋଇଗଲା ?

ସି'ଗଲ୍ କହିଲା, ଭଗବାନଙ୍କ ନାଁ ଅନୁସାରେ ନାମକରଣ କରିବା ଗୋଟାଏ ବାହାନା ମାତ୍ର ଅସଲ କଥା ହେଲା ତମେ ତମର ଶ୍ରେଣୀ ଚରିତ୍ରର ଉପରକୁ ଉଠିପାରିବ ନାହିଁ ।

'ଶ୍ରେଣୀ ଚରିତ୍ର' ? ମୁଁ ପଚାରିଲି ।

ଶ୍ରେଣୀ ଚରିତ୍ର ତମେ ଜାଣ ନାହିଁ ଇନ୍ଦ୍ରମଣି—ତମେ ପରା ନିମ୍ନମଧ୍ୟବିତ୍ତର ସନ୍ତାନ ଇନ୍ଦ୍ରମଣି । ତମର ଗୋଟାଏ ଆଖି ଫୋର୍ଡ଼, ଡିମାର୍, ରଥ୍‌ସଚାଇଲ୍ଡ଼ମାନଙ୍କ ଉପରେ ଏବଂ ସଦା ସର୍ବଦା ତମେମାନେ ଊର୍ଦ୍ଧ୍ୱବାହୁ ହେଇ ସେମାନଙ୍କୁ ଛୁଇଁବାକୁ ଚେଷ୍ଟା କରୁଥାଅ ଅଥଚ କେବେହେଲେ ଛୁଇଁ ପାର ନାହିଁ । ଅଥଚ ତମର ଚେର କଟିଯାଇଥାଏ ଓ ଗୋଡ଼ ଛାଡ଼ି ଯାଇଥାଏ ମାଟି ଉପରୁ । ତମେ ଓ ତମର ଶ୍ରେଣୀ ସଦାସର୍ବଦା ଝୁଲି ରହିଥାଅ ତ୍ରିଶଙ୍କୁ ପରି ଛିନ୍ନମୂଳ ଅଥଚ ଏକ ଅନାଗତ ସ୍ୱର୍ଗର ଆଶାରେ । ଏତିକି କହି ଦୁଇଟି ଯାକ ସି'ଗଲ୍ ହଠାତ୍ ଉଡ଼ି ଉଡ଼ି ଅଦୃଶ୍ୟ ହେଇଗଲେ କୁଆଡ଼େ ।

ମୁଁ କିପରି ଗୋଟାଏ ସମ୍ମୋହିତ ଅବସ୍ଥାରେ ଥିଲି । ହଠାତ୍ ତେଣେ ଫେରିଯାଇ ମୋର ଚାରିପଟର ଅବସ୍ଥାକୁ ଅନୁଧ୍ୟାନ କରିନେଲି । ଜାହାଜ ଚାଲିଛି ଠିକ୍ ଏବଂ ଯାତ୍ରୀମାନେ ଯେ ଯାହାର କାର୍ଯ୍ୟ ନେଇ ବ୍ୟସ୍ତ ଅଛନ୍ତି । ଜାହାଜର ସାଧାରଣ ଜୀବନଯାତ୍ରା ସାମାନ୍ୟ ମାତ୍ରାରେ ମଧ୍ୟ ବ୍ୟାହତ ହେଇ ନାହିଁ ।

କ'ଣ କହିଗଲେ ଏଇ ସି'ଗଲ୍‌ମାନେ ?

ତାହାହେଲେ ପୁଣିଥରେ ମୁଁ ଆଉ ଗୋଟାଏ ଦାସ ବଂଶର ମୂଳଦୁଆ ଦେଲି ? ଜୁନା ଆଉ ତା'ର ବଂଶଧରମାନେ ତାହାହେଲେ ଯୁଗ ଯୁଗ ଧରି ଦାସ ହେଇ ରହିବେ ? ନା—ପୁଣିଥରେ ଯୁଗ୍ମ କଣ୍ଠରେ ଉଚ୍ଚାରଣ କଲେ ସି'ଗଲମାନେ । ସେମାନେ କେତେବେଳେ ପୁଣି ପାଖକୁ ଆସି ଯାଇଥିଲେ ମୋର ଅଜ୍ଞାତସାରରେ ।

ତାହାହେଲେ ଏହାର ପ୍ରତିକାର କ'ଣ ସି'ଗଲ ମହାଶୟମାନେ ?

ପ୍ରତିକାର ? ପ୍ରତିକାର ଅବଧାରିତ ! ଗୋଟାଏ ଦାସ ବଂଶ ତିଆରି ନହେଲେ ତା' ଭିତରୁ ସ୍ପାର୍ଟାକସ୍ ଜନ୍ମ ହେବ କେମିତି ।

ସ୍ପାର୍ଟାକସ୍ !

ଟିକିଏ ହସିଲେ ବୋଧହୁଏ ସିଗଲ୍‌ମାନେ, କହିଲେ ତମେ ତମର ଭବିଷ୍ୟତ ବଂଶଧରମାନଙ୍କୁ ଜାଣି ନାହଁ—ଥରେ ରୋମରେ ଖ୍ରୀଷ୍ଟପୂର୍ବ ୭୧ ମସିହାରେ ବିକ୍ରମଶାଳୀ ରୋମ ସାମ୍ରାଜ୍ୟର କ୍ରୀତଦାସ ବଂଶରେ ଜନ୍ମଗ୍ରହଣ କରିଥିବା ସ୍ପାର୍ଟାକସ୍ ସ୍ୱପ୍ନ ଦେଖିଥିଲା ଓ ସେ ସ୍ୱପ୍ନ ଦିନେ ବାସ୍ତବରେ ପରିଣତ ହେଇଥିଲା । ଆଜି ପୁଣିଥରେ ସ୍ପାର୍ଟାକସ୍ ଜନ୍ମ ନବ ।

କି ସ୍ୱପ୍ନ ଦେଖିଥିଲା ସ୍ପାର୍ଟାକସ୍ ?

ଶୁଣ ।

ନିର୍ବିଘ୍ନ ଭାବରେ ଜାହାଜ ଚାଲିଥିଲା ଓ ତା'ର କରେ କରେ ଉଡ଼ି ଚାଲିଥିଲେ ସେଇ ବିଦଗ୍ଧ ସି'ଗଲ୍‌ମାନେ । ସେମାନେ ମତେ କହି ଚାଲିଥିଲେ ସ୍ପାର୍ଟାକସ୍‌ର ସେଇ ଲୋମହର୍ଷଣକାରୀ କାହାଣୀ । ମୁଁ ମନ୍ତ୍ରମୁଗ୍ଧ ସାପ ପରି ସେ କାହାଣୀ ଶୁଣି ଚାଲିଥିଲି ।

ମୁଁ ସ୍ଥାନ, କାଳ ଓ ସମୟର ଜ୍ଞାନ ହରେଇ ବସିଥିଲି ।

କାହାଣୀ ସରି ସରି ଆସୁଥିଲା ।

ରୋମ୍‌ର ଆମ୍ପିଥିଏଟର୍‌ରେ ଶତ ସହସ୍ର ରୋମାନମାନଙ୍କର ଅବସର ବିନୋଦନ ପାଇଁ ସଶସ୍ତ୍ର ଇଜିପ୍‌ସିଆନ୍ ଗ୍ଲାଡ଼ିଏଟର୍ ସହିତ ନିରସ୍ତ୍ର ଥ୍ରେସିଆନ୍ ସ୍ପାର୍ଟାକସ୍‌ର ଲଢ଼େଇ ସରିଥିଲା । ତଥାପି ବିଜୟୀ ହେଇଥିଲା ସ୍ପାର୍ଟାକସ୍ । ସାଢ଼େ ଛ' ଫୁଟ୍‌ର ଦିହ ଉପରେ ବଳିଷ୍ଠ ମାଂସପେଶୀ ସବୁ ଯେପରି ଲହଡ଼ି ଭାଙ୍ଗୁଥିଲା । କଳା ମର୍ ମର୍ ଶିଶୁକାଠ ପରି ମସୃଣ ଦିହ ଉପରେ ବାଘର ମୁଣ୍ଡ ପରି ଗୋଟାଏ ବିରାଟ ମୁଣ୍ଡ ଓ ସେଥିରେ ସରୁ ସରୁ ସ୍ପ୍ରିଙ୍ଗ୍ ପରି କୁଞ୍ଚୁ କୁଞ୍ଚୁ ଛୋଟ ଛୋଟ କରି କଟା ଯାଇଥିବା କଳା ମୁର୍ ମୁର୍ ଗହଳା ବାଳ । ୟାକୁ ଯେ' କୁହନ୍ତି ଗ୍ଲାଡ଼ିଏଟର୍ ! ଦର୍ଶକ ମଣ୍ଡଳୀଙ୍କର ଉଚ୍ଛ୍ୱସିତ କରତାଳିରେ ସେଦିନର ଆମ୍ପିଥିଏଟର୍ ଭାଙ୍ଗି ପଡ଼ିଥିଲା ।

ସେଇ ଆମ୍ପିଥିଏଟର୍‌ରେ ବୃଦ୍ଧ ପଳାତକ କ୍ରୀତଦାସ ଆଣ୍ଡୋସିଲିସ୍‌କୁ ଆଣି କ୍ଷୁଧିତ ସିଂହ ମୁହଁରେ ଛାଡ଼ି ଦିଆଯାଇଥିଲା । ଦୀର୍ଘ ଦିନ ଧରି ଅନ୍ଧକାରମୟ କୋଠରୀରେ ଅବରୁଦ୍ଧ କ୍ଷୁଧିତ ବୃଷଭମାନଙ୍କୁ ହଠାତ୍ ଛାଡ଼ିଦିଆଯାଇ ନିରସ୍ତ୍ର ଗ୍ଲାଡ଼ିଏଟର୍‌ମାନଙ୍କୁ ସେମାନଙ୍କ ସହିତ ଲଢ଼ିବାକୁ ବାଧ କରାଯାଉଥିଲା ଓ ଯେଉଁ ଗ୍ଲାଡ଼ିଏଟର୍ ଉତ୍‌କ୍ଷିପ୍ତ ବୃଷଭ ଦ୍ୱାରା ଉତ୍ପୀଡ଼ିତ ମୃତ୍ୟୁ ବରଣ କରୁଥିଲା ତା'କୁ ସମସ୍ତେ ଭୁଲିଯାଉଥିଲେ ଗୋଟାଏ ସାଧାରଣ ଘଟଣା ପରି; କିନ୍ତୁ ଯେ ବିଜୟୀ ହଉଥିଲା ତାକୁ ଅଭିନନ୍ଦନ ଜଣେଇ କହୁଥିଲେ ମାତାଦୋର୍ ।

ରୋମ୍ ନଗରୀର ଛକମାନଙ୍କରେ ଖୁଣ୍ଟରେ ବାନ୍ଧି କ୍ରୀତଦାସ ଓ କ୍ରୀତଦାସୀମାନଙ୍କୁ ନିଲାମ କରାଯାଉଥିଲା । ଯୁବତୀମାନଙ୍କର ସ୍ତନରେ ଆଂଗୁଠିର ଟିପା ମାରି ସେମାନଙ୍କର ବୟସ ଓ କାର୍ଯ୍ୟଦକ୍ଷତା କଳନା କରାଯାଉଥିଲା । ଏବଂ ଏହିପରି ଅସଂଖ୍ୟ କ୍ରୀତଦାସ ବଣିକମାନଙ୍କର ନିରାପତ୍ତା ପାଇଁ ସାଞ୍ଜୁ ଓ ଶିରସ୍ତ୍ରାଣ ପିନ୍ଧି ଜଗି ରହୁଥିଲେ ସଶସ୍ତ୍ର ପ୍ରହରୀମାନେ । ସେମାନଙ୍କର ବ୍ରୋଞ୍ଜର ଶିରସ୍ତ୍ରାଣ ଓ ବର୍ଚ୍ଛାର

ଫଳକରେ ପ୍ରତିଫଳିତ ମଧ୍ୟାହ୍ନ ସୂର୍ଯ୍ୟ ଚକ୍ ଚକ୍ କରୁଥିଲା, ଭାସ୍ୱର ଜାଜ୍ୱଲ୍ୟମାନ ସର୍ବଶକ୍ତିମାନ ରୋମ୍ ସାମ୍ରାଜ୍ୟର ଔଦ୍ଧତ୍ୟ ଘୋଷଣା କରି ।

ରୋମ୍‌ର ନିରୁପଦ୍ରବ ରାଜପଥମାନଙ୍କରେ ସମ୍ଭ୍ରାନ୍ତ ବଂଶର ନର ନାରୀମାନେ କ୍ରୀତଦାସମାନଙ୍କ ଦ୍ୱାରା ବାହିତ ପାଲିଙ୍କି ଯୋଗେ ଯାତାୟତ କରୁଥିଲେ ସ୍ଥାନରୁ ସ୍ଥାନାନ୍ତର ।

ତଥାପି ରୋମ୍ ନଗରୀର ନାଗରିକମାନେ ରହିଥିଲେ ପ୍ରଚୁର ସୁଖ ସ୍ୱାଚ୍ଛନ୍ଦ୍ୟରେ ।

କିନ୍ତୁ ଦିନେ ?

ଏକଦା ନୁହେଁ ଦିନେ ।

ସୁପ୍ତସିଂହ ସ୍ପାର୍ଟାକସ୍ ଜାଗ୍ରତ ହେଲା । କ୍ରୀତଦାସମାନଙ୍କୁ ଏକତ୍ର କରି, ଯାହା କିଛି ଅସ୍ତ୍ର ଥିଲା ଛୁରୀ, କଟୁରୀ ଠାରୁ ଆରମ୍ଭ କରି ରୋଷେଇ ଘରର ଡାଲିଚଟୁ ହେମଦସ୍ତା ପର୍ଯ୍ୟନ୍ତ ହାତରେ ଧରି ନାରୀ, ପୁରୁଷ ସମସ୍ତେ ବାହାରିଲେ ଆକ୍ରମଣ କରିବାକୁ ଏଇ ସଂଭ୍ରାନ୍ତ ନାଗରିକମାନଙ୍କୁ । ଏକୁଟିଆ ସ୍ପାର୍ଟାକସ୍ ହାଜର ହେଲା ଓ ଗୋଟାଏ ହେମଦସ୍ତା ଧରି ନିର୍ମୂଳ କଲା ଶହ ଶହ ରୋମାନ୍ ସୈନିକ ଓ ଦେହରକ୍ଷୀମାନଙ୍କୁ । ସ୍ପାର୍ଟାକସ୍‌ର ଝଡ଼ରେ ଉଡ଼ିଲେ ରୋମ୍ ସୈନ୍ୟବାହିନୀ କୁଟା ଖିଅ ପରି ।

କିନ୍ତୁ ସ୍ପାର୍ଟାକସ୍ ହାରିଗଲା ।

ପୁଣି 'ଥରେ ଶୃଙ୍ଖଳ ଛିନ୍ନ କରି ଜାଗ୍ରତ ପ୍ରହରୀମାନଙ୍କୁ ହତ୍ୟା କରି ଆକ୍ରମଣ ଆରମ୍ଭ କଲା ସ୍ପାର୍ଟାକସ୍ । ଥରେ ନୁହଁ ପାଞ୍ଚ ପାଞ୍ଚ ଥର ହାରିଗଲା ସ୍ପାର୍ଟାକସ୍ । ଶେଷଥର ପାଇଁ ତା'ର ଶଯ୍ୟାସଂଗିନୀ ଭାରିନିଆକୁ କହିଗଲା, ତୋ'ର ଗର୍ଭରେ ମୁଁ ସଞ୍ଚାର କରିଗଲି ଏକ କ୍ରୀତଦାସର ଭ୍ରୂଣ । ସେ' ପୁତ୍ର ସନ୍ତାନ ହବ । ତା'ର ନାଁ ରଖିବୁ ସ୍ପାର୍ଟାକସ୍ । ମୁଁ ଯାଉଛି ନିଜକୁ ନିୟୁତ ନିୟୁତ କରି ପୁଣି ଫେରି ଆସିବାକୁ ।

ସି'ଗଲ୍‌ମାନଙ୍କର କାହାଣୀ ସମାପ୍ତ ହୋଇଥିଲା ।

ସେମାନେ ପକ୍ଷ ଝାଡ଼ି ଝାଡ଼ି ଦୂର ଚକ୍ରବାଳରେ ଲୁଚିଗଲେ ।

କିନ୍ତୁ ମୁଁ ମର୍ମାନ୍ତରିତ ହେଇଗଲି ଖ୍ରୀଷ୍ଟପୂର୍ବ ୭୭ ଶତାବ୍ଦୀକୁ ।

ଏ ଜାହାଜ ହେଇଗଲା ରୋମ୍‌ର ସମ୍ଭ୍ରାନ୍ତ ବଂଶଧରମାନଙ୍କର ବିଳାସ ତରଣୀ ଯାହା ଭାସି ଭାସି ଚାଲିଛି ଭୂମଧ୍ୟସାଗରର ନାତିଶୀତୋଷ୍ଣ ଜଳବାୟୁରେ । ଜାହାଜର ସବା ଉପର କ୍ୟାବିନ୍‌ରେ ଥିବା ଲୋକମାନେ ହଠାତ୍ ରୂପାନ୍ତରିତ ହେଇଗଲେ । କ୍ୟାବିନ୍‌ର ଡବା ଧରି ଅଳସ ଅପରାହ୍ନକୁ ଉପଭୋଗ କରୁଥିବା ଲୋକମାନେ ହେଇଥିଲେ ସିସେରୋ, ଆଣ୍ଟୋନିୟସ, କ୍ୟାସିଅସ୍ ଓ ଗ୍ରାସସ୍ । ସେମାନଙ୍କର ଲଲାଟ

ଉଦ୍ଧତ, ସେମାନଙ୍କର ପ୍ରଶସ୍ତ ବକ୍ଷରେ ସାଞ୍ଜୁ ଓ ତାଙ୍କ ହାତରେ ମଦିରା ପୂର୍ଣ୍ଣ ଚଷକ । ସେଠି ଯାଉଛି ହେଲେନା, ତା'ର ହାତର ଚଷକ ଆଙ୍ଗୁଠିରେ ଧରିଛି ଚମଡ଼ାର ଚେନ୍ ଯାହା ଦିହରେ ବଂଧା ହେଇ ରହିଛନ୍ତି ଦୁଇଟା ଚିତା ବାଘ । ସୁନ୍ଦର ଅଥଚ ହିଂସ୍ର । ସେଠି ବୋଧହୁଏ ଆଉଜି ରହିଛି ଜୁଲିଆ ଯାହାର, କାନ ପାଖରେ ବ୍ରୁଟସ୍ କିଛି ପ୍ରେମ ଗୁଞ୍ଜରଣ କରୁଛି ଆଉ ସେମାନଙ୍କୁ ଈର୍ଷାନୀଳ ଆଖିରେ, ଟିକିଏ ଅନ୍ତରାଳରୁ ଲକ୍ଷ୍ୟ କରୁଛି ବୁଢ଼ିଆ ମରିୟସ୍ ।

ଆଉ ଜାହାଜ, ସେ' ଯେପରି ଗୋଟାଏ ଶୁଭ୍ର ମାର୍ବଲର ଭାସମାନ ଦୁର୍ଗ । ରୋମ୍ ସମ୍ରାଜ୍ଞୀଙ୍କ'ର ଜନ୍ମଦିନ ଉତ୍ସବ ଉପଲକ୍ଷରେ କୁଶଳୀ କାରିଗରମାନଙ୍କର ନିପୁଣ ହସ୍ତ ପ୍ରସ୍ତୁତ ଯେପରି ଗୋଟାଏ ଚିନିର କେକ୍ ! ତା'ର ଦିହଯାକ ଚକୋଲେଟ୍‌ର ଆଇସିଙ୍ଗ୍ ଦିଆଯାଇଛି । ଜାହାଜର ମାସ୍ତୁଲ୍ ଠିଆ ହେଇ ରହିଛି ଗୋଟାଏ ଅତିକାୟ ମସୃଣ ମହମବତୀ ପରି । ଆଣ୍ଟୋନିୟସ୍, କେସିଅସ୍ ମାନେ ଟିକିଏ ଅସାବଧାନ ହେଲେ ଯେପରି ଏ ଜାହାଜ ଭାଙ୍ଗି ପଡ଼ିବ ମଝି ଦରିଆରେ । ଅସଂଖ୍ୟ କ୍ଷେପଣୀ ନିକ୍ଷେପରେ ଉତ୍‌କ୍ଷିପ୍ତ ଜଳରାଶି ଦେଖା ଯାଉଛି ଚୂର୍ଣ୍ଣ ହୀରକ ପରି ।

କିନ୍ତୁ ସ୍ପାର୍ଟାକସ୍ ? କେଉଁଠି ରହିଲା ସେଇ ଦୁର୍ବିନୀତ ସ୍ପାର୍ଟାକସ୍ ଯାହାକୁ ଆୟତ୍ତକୁ ଆଣିବା ପାଇଁ ରୋମ ସୈନ୍ୟବାହିନୀ ସଦା ଜାଗ୍ରତ । ମୁଁ ଡେକ୍‌ରୁ ତଳକୁ ଓହ୍ଲେଇଲି— ଆହୁରି ତଳକୁ । ଏଇ ଜାଗାଟାକୁ ଜାହାଜର ହଲ୍ କହନ୍ତି ପରା । ଏଠି ସୂଚୀଭେଦ୍ୟ ଅନ୍ଧକାର । ମୁହଁକୁ ମୁହଁ ଦେଖି ହେଉ ନାହିଁ । ଖାଲି ଆହୁଲା ମାରିବାର ଚବର ଚବର ଶବ୍ଦ । ମୁଁ ଗୋଟାଏ ମହମବତୀ ଲଗେଇଲି । ଧାଡ଼ିବାନ୍ଧି ଦୁଇପଟରେ ବସିଛନ୍ତି କ୍ରୀତଦାସମାନେ, ସେମାନଙ୍କ ହାତରେ ମୋଟା ମୋଟା କାଠର ଆହୁଲା । ସେମାନଙ୍କର ଗୋଡ଼ ସବୁ ମୋଟା ଲୁହାର ଶିକୁଳି ଦେଇ ଶୃଙ୍ଖଳିତ । ସୈନ୍ୟମାନେ ମାର୍ଚ୍ଚ କଲାପରି ସେମାନେ ଆହୁଲା ମାରୁଥାନ୍ତି ଗୋଟାଏ ତାଳରେ । ସେମାନଙ୍କର ମାଂସପେଶୀ ସବୁ ପ୍ରଚଣ୍ଡ ଭାବରେ ଫୁଲି ଉଠି ପୁଣିଥରେ ହାଲୁକା ହେଇ ଯାଉଥାଏ । ସାଞ୍ଜୁ ଶିରସ୍ତ୍ରାଣ ପିନ୍ଧି ହାତରେ ବେଣୀ ବନ୍ଧା ଚମଡ଼ାର ଚାବୁକ୍ ଧରି ବୁଲି ବୁଲି ପହରା ଦଉଥାନ୍ତି ତିନି ଚାରିଜଣ ସୈନିକ । ମଝିରେ ମଝିରେ କାହାର ହାତ କୋହଳ ହେଇଗଲେ ସପାଙ୍ଗ୍ ସପାଙ୍ଗ୍ କରି ଚାବୁକ୍ ନାଚି ଯାଉଥାଏ ସେମାନଙ୍କର ମୁକୁଳା ପିଠି ଉପରେ । ସେମାନଙ୍କର ଅନାବୃତ ପୃଷ୍ଠଦେଶରେ ଅନେକ ଅନେକ କଳା ଦାଗର ଛକି କଟାକଟି । ଗ୍ରେସିୟସ୍, କ୍ୟାସିଆସ୍ ଆଉ ଜୁଲିଆମାନଙ୍କର ବିଳାସ ବିନୋଦନ ପାଇଁ ଏମାନଙ୍କୁ ଖଟିବାକୁ ପଡ଼ିବ ଏଇ ଅନ୍ଧକାରମୟ ଅନ୍ଧ ଗୁମ୍ଫା ଭିତରେ ଅହର୍ନିଶି ।

ଅନେକ କ୍ରୀତଦାସର ମୁହଁ ପାଖରୁ ମହମବତୀ ଫେରେଇ ଆଣି ମୁଁ ଶେଷରେ ପହଞ୍ଚିଲି ସ୍ପାର୍ଟାକସ୍ ପାଖରେ । ସ୍ପାର୍ଟାକସ୍ ! ରୋମ୍ ସାମ୍ରାଜ୍ୟର ଆତଙ୍କ ! ମୁଣ୍ଡର

କୁଣ୍ଡୁକୁଣ୍ଡିଆ ବାଳ ସବୁ ଖୁବ୍ ଛୋଟ ଛୋଟ କରି କଟା ହେଇଛି, ମୁହଁ ସାରା ଭର୍ତ୍ତି ଦାଢ଼ିର ଅଲରା ଜଙ୍ଗଲ । କିଛି କିଛି ଦାଢ଼ି ପାଚି ଆସିଲାଣି, ଯେମିତି ସ୍ୱାର୍ଟୋକସ୍ ଏ ଯୁଗର ମଣିଷ ନୁହଁ । ସେ ଯେପରି ଜନ୍ମ ନେଇଛି ବହୁ ଯୁଗଧରି । ସ୍ୱାର୍ଟୋକସ୍‌ର ଆଖି ହ୍ରଦର ନୀଳ ଜଳ ପରି ଶାନ୍ତ, ସମାହିତ, ଅଥଚ ସ୍ୱଚ୍ଛ । ଯେମିତି ସେ ଆଖିର ଗଭୀରତମ ପ୍ରଦେଶରେ ସେ ବହନ କରୁଛି ଯୁଗ ଯୁଗ ଧରି ମନୁଷ୍ୟର ବେଦନା ।

ମୁଁ ସ୍ୱାର୍ଟୋକସ୍‌ର ମୁହଁ ସହିତ କୁନାର ମୁହଁକୁ ତୁଳନା କରୁଥିଲି ।

କୋ'ଠି କିଛି ସାମଞ୍ଜସ୍ୟ ରହିଥାଇପାରେ ହୁଏତ ।

ଜାହାଜ ଧୀରେ ଧୀରେ ବନ୍ଦରକୁ ଭିଡୁଚି । ବନ୍ଦରର ହାମାଲମାନେ ହୁଲିଡଙ୍ଗା ଧରି ଜାହାଜର ଦଉଡ଼ି ଧରିବାକୁ ଆସୁଛନ୍ତି ।

କୁଆଡ଼େ କେଜାଣି ସିଗଲମାନେ ଚାଲିଗଲେଣି ।

ମୁଁ ଏତେବଡ଼ କୋଳାହଳମୟ ବନ୍ଦରରେ ଯେମିତି ଏକୁଟିଆ ହେଇଗଲି ।

ମୁଁ କ'ଣ ରେଭରେଣ୍ଡ ମୁଦାଲିୟାର୍‌ଙ୍କୁ ଟେଲିଗ୍ରାମ କରି ଜଣେଇ ଦେବି କୁନାର ନାଁ ପରିବର୍ତ୍ତନ କରିବା ପାଇଁ ?

ମୋର ଧମନୀରେ ରକ୍ତସ୍ରୋତ କ୍ଷିପ୍ରତର ହେଇଛି ବୋଧହୁଏ ।

ମୋର ଧମନୀର ରକ୍ତ ନୀଳ ନୁହଁ, ତାହା ନିମ୍ନ ମଧ୍ୟବିତ୍ତର ଲାଲ ରକ୍ତ, ଯାହା ସହିତ ନିରବଚ୍ଛିନ୍ନ ଭାବରେ ମିଶି ରହିଛି ଏକ କୁଣ୍ଠିତ ଦ୍ୱିଧାଗ୍ରସ୍ତ ହାମଲେଟ୍ ।

*(ଗଳ୍ପରେ ପୂଜାସଂଖ୍ୟା ୧୯୮୨)*



# ବନ୍ୟ-ଶୂକର

ଜହ୍ନ ଯେତେବେଳେ ଆକାଶରେ ନାଲି ପଡ଼ି ଆସେ, ନ ହେଲେ ବୈଶାଖର ଅପରାହ୍ନରେ ମନେହୁଏ, ସମୟ ବୋଧହୁଏ ଆଉ ଆଗକୁ ଯାଉ ନାହିଁ, ସେତେବେଳେ କେଜାଣି କାହିଁକି ମୋର ମନେହୁଏ ଅତୀତକୁ ମନେ ପକାଇବା ପାଇଁ । ବାପାଙ୍କର ହଳଦିଆ ପଡ଼ି ଆସିଥିବା ଫଟୋଟା କାହିଁ କୋ'ଦିନୁ କାନ୍ଥରେ ଟଙ୍ଗା ହେଇ ରହିଛି । ଫଟୋଟା ଉପରେ ଆଖି ପଡ଼ିଲେଇ ଗୋଟାଏ ଝାପ୍‌ସା ଛବି ଆଖି ଆଗକୁ ଆସେ— ଯେମିତି ହଠାତ୍ ଦିନେ ବାପା ଯୁଦ୍ଧରୁ ଫେରି ଆସି ଆମ ଗାଁର ଛୋଟ ରେଳ ଷ୍ଟେସନରେ ଓହ୍ଲେଇଛନ୍ତି । ବାପା ଥିଲେ କ୍ୟାପ୍‌ଟେନ୍ ।

ସେଇ ସମୟରେ ମନଟା ମୋର ପଛକୁ ଟାଣେ ଏବଂ ଘର ଭିତରେ ଥିବା ସବୁ ଜିନିଷପତ୍ରକୁ ମୁଁ ତନଖି କରି ଦେଖେ, କେଜାଣି କେତେବେଳେ କେଉଁ ପୁରୁଣା ଜିନିଷରେ ଅତୀତର କିଛି ସ୍ମୃତି ରହି ଯାଇଥିବ । ଜିନିଷପତ୍ର ସବୁ ତନଖି କରିସାରି ମୁଁ ଯାଏ ଲାଇବ୍ରେରୀ ଭିତରକୁ । ସେଠି ମଝିରେ ମଝିରେ ବାପାଙ୍କର ଦସ୍ତଖତ୍ ଥାଇ ବହି ମିଳେ, ଶବ୍ଦ ତଳେ ମଧ୍ୟ ଗାର ପଡ଼ିଥାଏ ଆଉ ତା' କରରେ ପିଲାଳିଆ ହସ୍ତାକ୍ଷରରେ ମାନେ ଲେଖା ଯାଇଥାଏ । ଧରନ୍ତୁ ମ୍ୟାକ୍‌ବେଥ୍, ତା'ତ ପୁଣି ବାପାଙ୍କର ପାଠ୍ୟପୁସ୍ତକ ଥିଲା । ଧୂଳି ଝାଡ଼ି ବିଡ଼ା ବିଡ଼ା କାଗଜ, ଚିଠି, ଦଲିଲ ସବୁ ବାହାର କରି ତା'ର ଭାଙ୍ଗ ସବୁ ପରସ୍ତ ପରସ୍ତ ସମାନ କରି ପଢ଼େ । ମୋଟ ଉପରେ ବେଶ୍ କିଛି ସମୟ ଅତୀତର ଅଧା ଛାଇ ଆଉ ଅଧା ଆଲୁଅର ଗୁମ୍ଫା ଭିତରେ କଟାଏ ଏବଂ ସେଇ ସମୟତକ ମୁଁ ବେଶ୍ ଉପଭୋଗ କରେ ।

ଆଜି ଠିକ୍ ସେହିପରି ଗୋଟାଏ ମାନସିକ ଅବସ୍ଥାରେ ମୁଁ ପୁରୁଣା ଚିଠି ସବୁ ଖେଳାଖେଳି କରି ଦେଖୁଥିଲି ଏବଂ ହଠାତ୍ ତା' ଭିତରୁ ଖଣ୍ଡେ କ୍ରିସ୍‌ମାସ୍ କାର୍ଡ଼ ଉପରେ ଆଖି ପଡ଼ିଲା । ମୁଁ କ୍ରିସ୍‌ମାସ୍ କାର୍ଡ଼ ଦବାରେ ବା ପାଇବାରେ ବିଶେଷ ଅଭ୍ୟସ୍ତ ନୁହଁ—ସେଥିପାଇଁ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇଥିଲି ମଧ୍ୟ । କିନ୍ତୁ କାର୍ଡ଼ଟାକୁ ଖୋଲି ଦବା ପରେ ଆଉ ସନ୍ଦେହର ଅବକାଶ ରହିଲା ନାହିଁ । ମୋର ଜୀବନର ଗୋଟାଏ ବର୍ଣ୍ଣିଳ ଅଧ୍ୟାୟର ଏହା ଥିଲା ଶେଷ ଲିପି ।

ସେତେବେଳେ ମୋର ବୟସ ଥିଲା ଏହିପରି, ଯେତେବେଳେ ମୁଁ ଲଗାମହୀନ ପକ୍ଷୀରାଜ ଘୋଡ଼ା ଚଢୁଥିଲି ଓ ମଝିରେ ମଝିରେ ଚନ୍ଦ୍ରକୁ ଆକାଶରୁ ତୋଳି ଆଣି ଦର୍ପଣ ଭାବରେ ବ୍ୟବହାର କରୁଥିଲି । ଏବଂ ଏହିପରି ସମୟରେ ମୁଁ ସମ୍ବାଦ ପାଇଥିଲି ଯେ ଖୋଦ୍ ପ୍ୟାରିସ୍ ସହରରେ ରହୁଥିବା ମୋର ବସ୍‌ଙ୍କର ଝିଅ ଭାରତବର୍ଷରେ ଆସି ପହଞ୍ଚୁଛନ୍ତି ଓ ତାଙ୍କୁ ଭାରତବର୍ଷ ସାରା ବୁଲେଇ ଦେଖାଇବାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରାଯାଇଛି । ଏ ସମ୍ବାଦରେ ମୁଁ ଯେ ବିଶେଷ ଉତ୍‌ଫୁଲ୍ଲ ହୋଇଥିଲି ତା ନୁହଁ । କାରଣ ମାଲିକର ଝିଅକୁ ନେଇ ବୁଲାବୁଲି କଲା ଭିତରେ ଯଦି ସାମାନ୍ୟ ତ୍ରୁଟି ପରିଲକ୍ଷିତ ହେଲା ତାହାହେଲେ ମୋର ଚାକିରୀଟା ଏକାଥରକେ କାବାର୍ ।

ମୋସିଓ ଗିଓଭାନି ପ୍ୟାରିସ୍ ସହରର ବିଖ୍ୟାତ ଅତର ବ୍ୟବସାୟୀ ଏବଂ ପୃଥିବୀର ନାନା ସ୍ଥାନରେ ତାଙ୍କ ପର୍‌ଫୁମ୍ ଦୋକାନର ଶାଖା ପ୍ରତିଷ୍ଠାନ ଅଛି । ଅଧୁନା କଲିକତାରେ ତାଙ୍କର ଶାଖା 'ପର୍‌ଫ୍ୟୁମ୍ ଡି ପ୍ୟାରିସ୍' ଉଦ୍‌ଘାଟିତ ହୋଇଥାଏ । ମୁଁ ଠିକ୍ ଏମ୍.ଏ. ପାଶ୍ କରିବା ପରେ ପରେ ଏହି ଅନୁଷ୍ଠାନର ବିଜ୍ଞାପନ ମୋ ଆଖିରେ ପଡ଼େ—ଇଂରାଜୀ ଓ ଅନ୍ୟୁନ ଦୁଇଟି ଆଞ୍ଚଳିକ ଭାଷା ଉପରେ ଯଥେଷ୍ଟ ଦଖଲ ଥିବ, ବୟସ ୩୦ ବର୍ଷରୁ କମ୍ ହୋଇଥିବ, ସୁଦର୍ଶନ, ମିଷ୍ଟଭାଷୀ ଓ ପ୍ରତ୍ୟୁତ୍ପନ୍ନମତି ହୋଇଥିବ । ଯଦି ଫରାସୀ ଭାଷାରେ ପ୍ରାଥମିକ ଜ୍ଞାନ ଥାଏ ତା' ହେଲେ ଅତି ଉତ୍ତମ ।

ମୋର ଏ ସମସ୍ତ ଯୋଗ୍ୟତା ଥାଉ ବା ନଥାଉ ମୁଁ ଦରଖାସ୍ତ ପକାଇଥିଲି ଓ ଭଗବାନଙ୍କର ଅଜସ୍ର ଆଶୀର୍ବାଦ ଯେ ଅନ୍ୟାନ୍ୟ ଅନେକ ଯୋଗ୍ୟ ପ୍ରାର୍ଥୀ ଥିବା ସତ୍ତ୍ୱେ ଚାକିରୀଟି ମତେଇ ମିଳିଥିଲା । ଇଣ୍ଟରଭିଉର ଫଳାଫଳ ଓ ଫଟୋ ପ୍ୟାରିସ୍ ପଠାଯାଇ ମୋର ନିଯୁକ୍ତି ପତ୍ର ସିଧାସଳଖ ସେଠୁ ଆସିଥିଲା । ଆମର କଲିକତା ଅଫିସର ମୁଖ୍ୟ ପରିଚାଳିକା ଥିଲେ ଜଣେ ସୁନ୍ଦରୀ ରମଣୀ ଏବଂ ସେ ବିଭିନ୍ନ ଦେଶର ଓ କିସମ୍‌ର ଅତର ସବୁର କଦର୍ ବୁଝୁଥିଲେ । ଭଲ ଓ ସଚ୍ଚା ଅତରଠାରୁ ଭେଜାଲ୍ ଅତରର ତଫାତ୍ ମଧ୍ୟ ଅନାୟାସରେ ଠଉର୍ କରି ପାରୁଥିଲେ ।

ମୋଟାମୋଟି କହିବାକୁ ଗଲେ ମୋର କାମ ଥିଲା ବିଭିନ୍ନ କସ୍‌ମେଟିକ୍ ଦୋକାନକୁ ଯାଇ ବିଭିନ୍ନ ଅତରର ଭୂୟସୀ ପ୍ରଶଂସା କରି ବିକ୍ରି ବୃଦ୍ଧି କରିବା । ଏହି କାମ ପାଇଁ ମତେ ଯେଉଁ ଦରମା ଓ ପରକୁଇଜିଟ୍‌ସ୍ ଦିଆଯାଉଥିଲା ତାହା ତତ୍‌କାଳୀନ ଉଚ୍ଚ ସରକାରୀ ଅଫିସରଙ୍କ ଠାରୁ କୌଣସି ଗୁଣରେ ନ୍ୟୁନ ନଥିଲା । ମୁଁ ମଧ୍ୟବିତ୍ତ ବଂଶଜ ସନ୍ତାନ ହୋଇଥିବାରୁ ଅତର ସଂପର୍କରେ ପ୍ରାୟ ଅଜ୍ଞ ଥିଲି, କିନ୍ତୁ ମୋର ଏଇ ଦୁର୍ବଳତାର କ୍ଷତିପୂରଣ କରିବାକୁ ଯାଇ ମୁଁ ଅତର ସଂପର୍କରେ ଅନେକ ପୁସ୍ତିକା, ପ୍ରଚାରପତ୍ର ଇତ୍ୟାଦି ପଢ଼ାପଢ଼ି କରୁଥିଲି ଓ ଅତି ମନଯୋଗ ସହକାରେ

ବିଭିନ୍ନ କିସମ ଅତରର ବିଶେଷତ୍ୱ ଜାଣିବାକୁ ଚେଷ୍ଟା କରୁଥିଲି । ବେଶ୍ ସ୍ୱଚ୍ଛନ୍ଦରେ ମୋର ସମୟ ବହି ଚାଲିଥିଲା ।

ତାରିଖଟା ମଧ୍ୟ ମୋର ଆଜିଯାଏ ମନେ ଅଛି । ସେଦିନ ହୋଇଥାଏ ଜୁଲାଇ ବାଇଶ୍ ତାରିଖ ଓ ପ୍ୟାରିସ୍‌ର ପ୍ଲେନ୍ ଡମ୍‌ଡମ୍ ଏଆର୍‌ପୋର୍ଟ୍ ଛୁଇଁବାର ସମୟ ଥାଏ ସକାଳ ୯ଟା । ଆମ ଅନୁଷ୍ଠାନର ପ୍ରାୟ ସମସ୍ତ କର୍ମଚାରୀ ବେଶ୍ ରୁଚିସଂପନ୍ନ ପୋଷାକ ପିନ୍ଧି ପ୍ରୋପ୍ରାଇଟର-ଦୁଲାଳୀଙ୍କର ଅପେକ୍ଷା କରୁଥାଉ । ପ୍ଲେନ୍ ଯଥା ସମୟରେ ଭୂମିଷ୍ଠ ହେଲା ଏବଂ ତା' ଭିତରୁ ଯେ କେତେଜଣ ଯାତ୍ରୀ ଲ୍ୟାଡ଼ର ଦେଇ ଓହ୍ଲେଇ ଆସିଲେ ତା ଭିତରୁ ଫରାସୀ ତରୁଣୀଟିକୁ ବାଛିବା କାହା ପକ୍ଷେ କଷ୍ଟ ସାଧ୍ୟ ହେଲା ନାହିଁ ।

ତରୁଣୀଟି ସିଡ଼ିରେ ଓହ୍ଲଉ ଓହ୍ଲଉ ଅଧା ସିଡ଼ିରେ ରହିଯାଇ ଏଆର୍ ପୋର୍ଟ୍‌ର ଗୋଟିଏ ଫଟୋ ନବା ପାଇଁ ଗୋଟିଏ ଛୋଟ କ୍ୟାମେରାରେ ଚକ୍ଷୁ ସଂଯୋଗ କଲେ । ସେଦିନର ଖରା ଥିଲା ଗଳିତ ସୁବର୍ଣ୍ଣ ପରି ଏବଂ ଉଡ଼ାଜାହାଜର ବିଶାଳ ପକ୍ଷ ଦୁଇଟି ଉପରେ ଯେପରି ସୁନାର ପୁଟ ବୋଳି ହେଇ ଯାଉଥାଏ । ତରୁଣୀଟିର ଦେହର ପୋଷାକ ଯେପରି ସେଇ ରଙ୍ଗରେ ଝଲସି ଉଠୁଥାଏ । କ୍ୟାମେରା କାଢ଼ି ନବା ପରେ ସ୍ପଷ୍ଟ ଦେଖି ହେଲା, ଯେପରି ଗୋଟିଏ ଛୋଟ ସ୍ମିତହାସ୍ୟକୁ ଓଠ ଉପରେ ସ୍ଥିର କରିନେଇ ସେ ବାକିତକ ପାହାଚ ଓହ୍ଲେଇ ଆସିଲେ ।

ଏଆର୍‌ପୋର୍ଟ୍ ଲାଉଞ୍ଜରେ ଯେଉଁ କ୍ଷୁଦ୍ର ପରିଚୟପର୍ବଟି ଆରମ୍ଭ ହେଲା ସେଥିରେ ମୁଁ ଥିଲି ତୃତୀୟ ବ୍ୟକ୍ତି । କିନ୍ତୁ ମୋର ପରିଚୟ କରେଇ ଦବା ପୂର୍ବରୁ ଆଗନ୍ତୁକା ମୋ ସହିତ କରମର୍ଦ୍ଦନ କରି କହିଲେ ''ଆପଣ ନିଶ୍ଚୟ ମିଷ୍ଟର ପଁରିଜା, ହଁ ହଁ, ମୁଁ ଆପଣଙ୍କୁ ଅନେକ ଦିନୁ ଜାଣେ, ମୁଁ ଆଗରୁ ଆପଣଙ୍କର ଫଟୋଗ୍ରାଫ୍ ଦେଖିଛି ।'' ସେହିଠାରୁ ବୋଧହୁଏ ପରିଚୟ ପର୍ବ ଶେଷ ହେଲା; କାରଣ ଅବଶିଷ୍ଟ କର୍ମଚାରୀମାନଙ୍କର ପରିଚୟ ଦେବାବେଳେ ସେ କେବଳ ସେହିଠାରେ ଠିଆ ହେଇରହି ସନ୍ତୋଷ ସୂଚକ ମୁଣ୍ଡ ହଲେଇ ସେମାନଙ୍କର ଅଭିବାଦନ ଗ୍ରହଣ କଲେ । କାଳ ବିଳମ୍ବ ନ କରି ସେ ତାଙ୍କର ଭ୍ୟାନିଟି ବ୍ୟାଗ୍‌ରୁ ଖଣ୍ଡେ ଛୋଟ ପରିଚୟ ପତ୍ର ବାହାର କରି ମତେ ଦେଲେ ଓ କହିଲେ, ''ଶୁଣ ମିଷ୍ଟର ପଁରିଜା, ଭାରତବର୍ଷରେ ମୋର ରହଣି ଖୁବ୍ ଅଳ୍ପଦିନ ଓ ତା' ଭିତରେ ତମକୁ ଅତି ସାବଧାନତାର ସହିତ ମୋର ଭ୍ରମଣସୂଚୀ ତିଆରି କରିବାକୁ ପଡ଼ିବ, ଯେପରି ମୁଁ ଏ ଦେଶର କୌଣସି ଅଂଶ ମିସ୍ କରି ନଯାଏ । ଆଜି ଲଞ୍ଚ୍ ଖାଇବା ସମୟରେ ଯେପରି ସବୁ ଠିକ୍ ହୋଇଯାଏ ।''

ଏଇ ପ୍ରଥମ ପରିଚୟରେ ହିଁ ''ପରଫ୍ୟୁମ ଡି ପ୍ୟାରିସ୍''ର ସମସ୍ତ କର୍ମଚାରୀ ବେଶ୍ ବିମର୍ଷ ହୋଇ ପଡ଼ିଥିଲେ । କିନ୍ତୁ ଏ ପରିସ୍ଥିତି ପାଇଁ ମୋର ସାମାନ୍ୟତମ ଅବଦାନ ମଧ୍ୟ ନଥିଲା । ଯେଉଁ କ୍ଷୁଦ୍ର ପରିଚୟପତ୍ରଟି ଆସିଥିଲା ତା'ର ବକ୍ତବ୍ୟ ଥିଲା ଏତିକି ଯେ କ୍ୟାଥାରିନ୍ ଗର୍ଜ୍ଜ ଭାରତବର୍ଷରେ ରହିବା ସମୟରେ ଶ୍ରୀ ଜଗନ୍ନାଥ ପରିଜ୍ଞା ତାଙ୍କୁ ବିଭିନ୍ନ ସ୍ଥାନ ବୁଲେଇନବା ଦାୟିତ୍ୱରେ ରହିବେ ଓ ଏ ସମସ୍ତ ସମୟ ପାଇଁ ତାଙ୍କର ଦରମା ଇତ୍ୟାଦି ଭିନ୍ନ ସେ ସମସ୍ତ ଗସ୍ତ ଖର୍ଚ୍ଚ ଅନୁଷ୍ଠାନରୁ ପାଇବେ । ହାତରେ ଯେପରି ଜହ୍ନ ପାଇଲି । ଦରମା, ଛୁଟି, ଗସ୍ତ ଖର୍ଚ୍ଚ ଓ ସୁନ୍ଦରୀ ତରୁଣୀର ସାନ୍ନିଧ୍ୟ ଏକାଥରକେ ଏ ପୃଥିବୀରେ ମୋ ଛଡ଼ା କାହାକୁ ମିଳିଛି କୁହ ଦେଖି !

ସେଦିନ ଗ୍ରାଣ୍ଡ ହୋଟେଲରେ ଲଞ୍ଚ୍ ଟେବୁଲ ଉପରେ ଭ୍ରମଣସୂଚୀ ତିଆରି କରାଯାଉଥିଲା ଏବଂ କ୍ୟାଥାରିନ୍‌ଙ୍କ ଆଦେଶରେ ବିଅର୍ ରଖାଯାଇଥିଲା ଟେବୁଲ ଉପରେ । ମୋ ଗିଲାସରେ ବିଅର୍ ଢାଳିବା ମାତ୍ରକେ ମୁଁ ଏକାଥରକେ ଚିତ୍କାର କରି ଉଠିଲି, ''ନା କ୍ଷମା କରିବେ, ମୁଁ ବିଅର୍ ଖାଏ ନାହିଁ ।'' ବିସ୍ଫାରିତ ଆଖିରେ ଅନେଇଲେ କ୍ୟାଥାରିନ୍ ଓ କହିଲେ, ''ଏ ଟ୍ରପିକ୍‌ର ଖରା ସହିପାର କେମିତି ପଁରିଜ୍ଞା ?'' କଥାଟାର ମୋଡ଼ ବଦଳେଇ ମୁଁ କହିଲି, ''ମୁଁ ପରିଜ୍ଞା, ମୁଁ ପଁରିଜ୍ଞା ନୁହଁ ।'' ଥରେ, ଦୁଇଥର, ତିନିଥର ପରେ ମଧ୍ୟ ମୋ ନାଁ ଉପରୁ ଚନ୍ଦ୍ରବିନ୍ଦୁଟିକୁ କାଢ଼ିନବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ଶେଷକୁ କପଟ ବିରକ୍ତିରେ କ୍ୟାଥାରିନ୍ କହିଲେ, ''ତମମାନଙ୍କର ଉଚ୍ଚାରଣ ବଡ଼ ଜଟିଳ । ତେଣୁ ତାକୁ ସହଜ କରି ନେଇ ମୁଁ ତମକୁ ଡାକିବି 'ଜେପି' ଓ ତମେ ମତେ ଡାକିବ 'କେଜି' ।'' 'କେ' ଫର୍ କ୍ୟାଥାରିନ୍ ଆଣ୍ଡ 'ଜ' ଫର୍ ଗର୍ଜ୍ଜ—କେମିତି ? ମୁଁ ଅସହାୟ ଭାବରେ ସମ୍ମତି ପ୍ରଦାନ କଲି ।

ମଧ୍ୟାହ୍ନ ଭୋଜନ ଶେଷ ହବା ପରେ କେଜି ମତେ ତାଙ୍କର ଘରକୁ ଡାକିଲେ ଓ ମୁଁ ବାଧ୍ୟ ଅନୁଚର ପରି ତାଙ୍କର ଅନୁଗମନ କଲି । ଘର ଭିତରେ ଜିନିଷପତ୍ର ସବୁ ତଥାପି ଅସଜଡ଼ା ହେଇ ପଡ଼ିଥିଲା । କ୍ୟାମେରା, ଟ୍ରାନ୍‌ଜିଷ୍ଟର, ବିଭିନ୍ନ ପ୍ରସାଧନ ସାମଗ୍ରୀ ଓ ଅନେକ ଅନେକ ଜିନିଷ । ଖୁବ୍ ବ୍ୟସ୍ତ ହୋଇ କେଜି ସୁଟ୍‌କେଶର ଆଳିମାଳୀ ଜିନିଷଗୁଡ଼ିକ ଖୋଜି ଖୋଜି ଯେଉଁ ଜିନିଷଟିକୁ ବାହାର କଲେ ତାକୁ ଦେଖିବା ମାତ୍ରେ ମୁଁ ବୁଝି ପାରିଲି ଯେ ତାହା ପ୍ୟାରିସ୍‌ର ଅନ୍ୟତମ ଶ୍ରେଷ୍ଠ ପରଫ୍ୟୁମ୍ 'ପ୍ଲାସାଣ୍ଟେରୀ' । ଦାମ୍ ଅନ୍ୟୁନ ୭୦୦ ଟଙ୍କା ହେବ ।

ଖୁବ୍ ଆଦର ସହକାରେ ମୋ ଆଗରେ ଟେକି ଧରି କେଜି କହିଲା; ''ଅନେକ ସମୟ ଚିନ୍ତା କରି କରି ତମ ପାଇଁ ଏଇ ଉପହାରଟିକୁ ଆଣିଛି । ଆଶାକରେ, ଏଟା ତମର ପସନ୍ଦ ହବ ।'' ତା'ପରେ ମୁହଁରେ ଟିକିଏ ଦୁଷ୍ଟାମୀ ହସ ଟାଣି କହିଲା

''ଏଟାକୁ ନେଇ ତମେ ତମର ଗାର୍ଲ ଫ୍ରେଣ୍ଡକୁ ଦେଇ ପାରିବ ନାହିଁ, ମନେ ରଖ, ଏଟା କେବଳ ପୁରୁଷମାନଙ୍କ ପାଇଁ ।

ମୁଁ କହିଲି, ''ମୁଁ ସତରେ ଖୁବ୍ ଖୁସି ଓ ନିଜକୁ ଖୁବ୍ ସମ୍ମାନିତ ମନେ କରୁଛି; କିନ୍ତୁ ସତ କହିବାକୁ ଗଲେ ମୁଁ ନିଜେ କିନ୍ତୁ କୌଣସି ପରଫ୍ୟୁମ ବ୍ୟବହାର କରେ ନାହିଁ ।''

କେଜି ଯେପରି ଆକାଶରୁ ପଡ଼ିଲା । ''କାମ କର ପରଫ୍ୟୁମ୍ ଦୋକାନରେ ଅଥଚ ବ୍ୟବହାର କର ନାହିଁ । ଏଟା ଅସମ୍ଭବ । ତମେ ମୋର ଉପହାର ଗ୍ରହଣ କରିବାକୁ ଚାହଁ ନାହିଁ ।''

ମୁଁ ଅନେକ ବୁଝେଇବାକୁ ଚେଷ୍ଟା କଲି ଯେ ମୋ ଦେଶର ମଧ୍ୟବିତ୍ତ ଖାଇବାକୁ ପାଏ ନାହିଁ । ସେ ଅତର ବ୍ୟବହାର କରିବ କୁଆଡୁ ? ମୁଁ ଆଦୌ ଅପମାନ କରିବାକୁ ଚାହେଁ ନାହିଁ, କିନ୍ତୁ ସେଥିପାଇଁ ସତ କଥାଟାକୁ ତ ଲୁଚେଇ ରଖି ହବ ନାହିଁ । ତମର ରହଣୀ ସମୟ ଭିତରେ ଭଦ୍ରତା ଦୃଷ୍ଟିରୁ ଏଇ ଅତରଟାକୁ ମୋର ବ୍ୟବହାର କରିବା କଥା, କିନ୍ତୁ କଥାଟା ସେତେବେଳେ ଜାଣିଲେ ତମେ ହୁଏତ ଆହୁରି ବେଶି କ୍ଷୁର୍ଣ୍ଣ ହୋଇ ଥାଆନ୍ତ । କେଜି କଥାର କିଛି ଜବାବ୍ ନଦେଇ ଜିନିଷପତ୍ର ସଜଡ଼ାସଜଡ଼ି କରିବାର ଛଳନା କଲା କେବଳ ।

ମୁଁ ସେଦିନ ଘରକୁ ଫେରିବା ବେଳେ କେଜିର ଏଇ ଅନହୂତି ବନ୍ଧୁତାରେ ବିହ୍ୱଳିତ ହେଇ ପଡ଼ିଥିଲି ସତ, କିନ୍ତୁ ଏହାର କୌଣସି କାରଣ ବା ସୂତ୍ର ଖୋଜି ବାହାର କରିବା ମୋ ପକ୍ଷରେ ସମ୍ଭବ ନଥିଲା । କାଲି ସକାଳୁ ଆରମ୍ଭ ହବ ଭ୍ରମଣର ପ୍ରଥମ କିସ୍ତି ଏବଂ ତା' ପୁଣି ଓଡ଼ିଶାରେ । କଥାବାର୍ତ୍ତାରେ ଲକ୍ଷ୍ୟ କରି ଦେଖିଥିଲି ଯଦିଓ ଦିଲ୍ଲୀ, ମାନ୍ଦ୍ରାଜ, ବମ୍ବେ ଇତ୍ୟାଦି ସହର ସବୁ ଭ୍ରମଣ-ସୂଚୀର ଅନ୍ତର୍ଗତ ଥିଲା ତଥାପି କେଜିର ପସନ୍ଦ ଥିଲା ମଫସଲ, ଜଙ୍ଗଲ ଓ ଆଦିବାସୀ ପଡ଼ା । ବାଃ ! ଅଜବ୍ ଝିଅ । କାଲି ପାଇଁ ଆବଶ୍ୟକୀୟ ପ୍ରସ୍ତୁତି ସାରି ମୁଁ ନିଦରେ ତଳେଇ ଯାଇଥିଲି ।

ତା' ଆରଦିନ କୋଣାର୍କରେ ପହଞ୍ଚି ଦେଉଳ ଚାରିପଟ ବୁଲି ବୁଲି ଦେଖୁଥିଲୁ । କେତେବେଳେ କେଜି ଫଟ ନଉଥିଲା ତ କେତେବେଳେ ଗମ୍ଭୀର ହୋଇ ମିଥୁନ ମୂର୍ତ୍ତିକୁ ସ୍ଥିର ଆଖିରେ ଲକ୍ଷ୍ୟ କରି ରହୁଥିଲା । ଅକୁଣ୍ଠିତ ଭାବରେ ମୋର ହାତ ଧରି ସେ ଉଠୁଥିଲା ପଥରରୁ ପଥର । ମୋରି କାନ୍ଧ ଉପରେ ଭରା ଦେଇ ବାଇନୋକୁଲାର୍‌ରେ ଅନେକ ସମୟ ସେ ଲକ୍ଷ୍ୟ କରି ରହିଥିଲା ନର୍ତ୍ତକୀ ମୂର୍ତ୍ତିକୁ । ଓ ପରେ ପରେ ବାଇନୋକୁଲାର୍ କାଢ଼ିଆଣି କେଜି କହିଲା, ''ଆଚ୍ଛା ତମେ ଭାରତୀୟମାନେ ଖୁବ୍ ଯୌନପ୍ରବଣ ଜାତି ନା ?'' ମୁଁ କହିଲି ''କାହିଁକି ମୋର ତ ସେପରି ମନେ ହୁଏ ନାହିଁ ।'' କେଜି ଖୁବ୍ ଉଚ୍ଚ ସ୍ୱରରେ ହସି ହସି କହିଲା, ''ପ୍ରମାଣ ତ ଥୁଆ ହୋଇଛି ।

ଯଥେଷ୍ଟ ଯୌନ ପ୍ରବଣତା ନଥିଲେ ପଥରରେ ଏତେ ନିଖୁଣ ନିତମ୍ବ ଓ ସ୍ତନ ତିଆରି କରିବା ସମ୍ଭବ ନୁହଁ—ଆଉ ତା'ଛଡ଼ା ଯୌନ ଅବୟବ ଗୁଡ଼ିକର ବିପୁଳତା ପ୍ରମାଣ କରେ ଯେ ସେକ୍ସ ତମମାନଙ୍କ ପାଇଁ ଗୋଟାଏ ଅବସେସନ୍ ।''

ମୁଁ କହିଲି, ''ତମର ଯାହା ଇଚ୍ଛା ତମେ ସେ ମତାମତ ପୋଷଣ କରିପାର, କିନ୍ତୁ ମୁଁ କହିବି, ଯୌନ ପ୍ରବୃତ୍ତି ଠାରୁ ଅନେକ ଉଚ୍ଚ ମାନସିକ ଆରୋହଣ ପରେ ମଣିଷ ଆର୍ଟିଷ୍ଟ ହୁଏ ।''

କେଜି ମୋର କାନ୍ଧ ଉପରେ ଗୋଟାଏ ପ୍ରଚଣ୍ଡ ଚପେଟାଘାତ କରି କହିଲା, ''ପୁଣି ସେଇ ସବୁ ଭାରତୀୟ ଦର୍ଶନ ବାହାରିଲା—ମାନସିକ ଆରୋହଣ ଗୋଟାଏ କଅଣ ? ତମେ ନ୍ୟୁଡ୍ ଷ୍ଟଡ଼ି କରିଛ ଖୁବ୍ ମନଯୋଗୀ ଭାବରେ ଆଉ ସେଇଥିପାଇଁ ତମର ଆର୍ଟ ଏତେ ନିଖୁଣ ।'' ମୁଁ ନୀରବ ରହିଲି ।

ସେ ଦିନଟା ସାରା କେଜି କେବଳ ସେକ୍ସ ଆଲୋଚନା କରିବାକୁ ଚାହିଁଥିଲା । ମୁଁ ମଝିରେ ମଝିରେ ଯୋଗ ଦବାକୁ ବାଧ୍ୟ ହଉଥିଲି କେବଳ । କିଛି ସମୟ ପରେ ସାମାନ୍ୟ ବିରକ୍ତ ହୋଇ ଉଠିଥିଲା କେଜି, ''ତମେ ସେଇ ଟିପିକାଲ୍ ଭାରତୀୟ ଯେଉଁମାନେ ଯୌନ ପ୍ରକ୍ରିୟାଟାକୁ ଦେଖାନ୍ତି ଯେପରି ଗୋଟାଏ ପାପ, ଗୋଟାଏ ପରଭରସନ, ଗୋଟାଏ ଏମିତି କିଛି ଜିନିଷ ଯାହା ପଦାକୁ ଆସିଲେ ସମାଜଟା ଏକାଥରକେ ରସାତଳକୁ ଚାଲିଯିବ । ସେ ସଂପର୍କରେ ଆଲୋଚନା କଲାବେଳେ ତମେମାନେ କଇଁଛ ପରି ହାତ ଗୋଡ଼ ଗୋଟେଇ ନେଇ ବସିଯାଅ, ଅଥଚ ପ୍ରକୃତ ପକ୍ଷେ ମୁଁ ଯେତିକି ପଢ଼ିଚି ଅନେକ ସମୟରେ ତମେମାନେ ହିଂସ୍ର ଏପରିକି ସାଭେଜ୍ ।''

ମୁଁ ସାମାନ୍ୟ ସ୍ମିତ ହସିଥିଲି—ଅର୍ଥ, ପ୍ରତ୍ୟେକ ଲୋକର ମତାମତ ତା'ର ନିଜସ୍ୱ ।

ପୁରୀର ସମୁଦ୍ର ବେଳାରେ ଆମେ ବସି ରହିଥିଲୁ । କେଜି ମତେ ଡାକିଥିଲା ପହଁରିବା ପାଇଁ, କିନ୍ତୁ ମୁଁ କହିଥିଲି, 'ମୁଁ ପହଁରା ଜାଣେନା । କେଜି କିଛି ଜବାବ ନଦେଇ ପାଶ୍ଚାତ୍ୟ ସୁଲଭ ଭଙ୍ଗୀରେ ତା'ର ଦୁଇ କାନ୍ଧକୁ ଅନେକ ଉପରକୁ ଉଠେଇ ସ୍ରଗ୍ କରିଥିଲା କେବଳ । ତା'ପରେ ତା'ର ସ୍କାର୍ଟ, ବ୍ଲାଉଜ୍ ଧୀରେ ଧୀରେ ଉନ୍ମୋଚନ କରି ସାରି ଶେଷରେ ଯାହା ପିନ୍ଧି ସେ ଠିଆହେଲା ତାହା ହେଲା ଖଣ୍ଡେ ସ୍ୱିମିଂ ବ୍ରକ୍ ଓ ଖଣ୍ଡେ ପତଳା ବ୍ରା, ଯାହାକି ତା'ର ବର୍ତ୍ତୁଳ ସ୍ତନର ପୀଡ଼ନରେ ଅତି ମାତ୍ରାରେ ଭାରାକ୍ରାନ୍ତ । ମାନିବାକୁ ପଡ଼ିବ, ପ୍ରାୟ ଉଲଗ୍ନ କେଜି ଦେଖିବାକୁ ଭାରି ସୁନ୍ଦର ଲାଗୁଥିଲା । ଦୀର୍ଘ ତନୁ, ସ୍ଫୀତବକ୍ଷା, କ୍ଷୀଣକଟି ଓ ଦୁଇଟି ଫ୍ଲାଓ୍ୟାର୍ ଭାଜ୍ ପରି

କ୍ରମାନୁପାତିକ ଦୁଇଟି ଗୋଡ଼ । ଅନେକ ସମୟ ଧରି ସନ୍ତରଣ କରିଥିଲା କେଜି ଓ ମଝିରେ ମଝିରେ ବେଳାଭୂମି ଉପରକୁ ଆସି ମତେ ଅନୁରୋଧ କରିଥିଲା ତା'ର ଫଟୋ ଉଠେଇବାକୁ ।

ସେତେବେଳକୁ ପୁରୀର ବେଳାଭୂମିରେ କୌତୂହଳୀ ଜନତାର ଭିଡ଼ ଜମି ଯାଇଥିଲା । ମୁଁ କିଛି ଲଜ୍ଜିତ ହେଉଥିଲେ ମଧ୍ୟ ମୋର କହିବାର ଉପାୟ ନଥିଲା ଯେ ଏ ବିଦେଶିନୀ ତରୁଣୀ ମୋର ପ୍ରଣୟିନୀ ନୁହଁନ୍ତି—ଏହିପରି ବସି ରହିବା ଓ ଫଟୋ ନବା ମୋର ଚାକିରୀର ଗୋଟାଏ ଅଂଶ । କିନ୍ତୁ କେଜିର ପର୍‌ବାଏ ନଥିଲା ଆଦୌ । ସେ ଯେପରି ଭାବୁଥିଲା ତା' ଚାରିପଟେ କେତେଗୁଡ଼ିଏ କୌତୂହଳୀ ଭାରତୀୟ ବନ୍ୟଜନ୍ତୁ ତାକୁ ସମୀକ୍ଷା କରୁଛନ୍ତି । ହାତରେ ଦୁଇଟା ବାଲି କଙ୍କଡ଼ା ଧରି, ଓଦା ସରସର୍ ହେଇ ସେ ଭିଡ଼କାଟି ଅତି ସହଜ ଭାବରେ ଫେରି ଆସିଥିଲା ତା'ର ହୋଟେଲକୁ ।

କେଜିର ଭାରତ ଭ୍ରମଣର ସବୁ କଥା ଲେଖି ବସିଲେ ଏକ ଇତିହାସ ହବ । ଅନେକ ଜାଗା ବୁଲିଛୁ । ଜୁହୁ ବିଚ୍ ଠାରୁ ଶିମିଳିପାଳ ଜଙ୍ଗଲ । ଅଜନ୍ତା ଏଲୋରା ଠାରୁ କାଠମାଣ୍ଡୁ । କେତେବେଳେ ଆମେ ବସିଚୁ ଫାଇଭ୍ ଷ୍ଟାର୍ ହୋଟେଲରେ ଓ କେତେବେଳେ ସାନ୍ଦ୍ର ଜଙ୍ଗଲର କାଠ କ୍ୟାବିନ୍ ଭିତରେ । କେତେବେଳେ ଉଡ଼ାଜାହାଜରେ ତ କେତେବେଳେ ଷ୍ଟିମର୍‌ରେ । ସତ୍ୟ କହିଲେ ଏଇ ସୁଯୋଗରେ ମୁଁ ଭାରତବର୍ଷର ଅନେକ ଦର୍ଶନୀୟ ସ୍ଥାନ ଦେଖିନେଲି, ଯାହା ମୁଁ ହୁଏତ ଏଯାବତ୍ ଦେଖିପାରି ନଥାଆନ୍ତି ।

ଇତି ମଧ୍ୟରେ କେଜି ଦେଶକୁ କେବଲ୍ କରି ତା'ର ଭାରତବର୍ଷରେ ରହିବା ସମୟ ବଢ଼େଇ ନେଇଚି ଆହୁରି ଦୁଇମାସ ।

ଏଇ ସମୟ ଭିତରେ ମତେ ଲକ୍ଷ ଲକ୍ଷ ପ୍ରଶ୍ନର ଉତ୍ତର ଦାବକୁ ପଡ଼ିଚି, ଯାହାର ଉତ୍ତର ଦବା ମୋ ପକ୍ଷରେ କାହିଁକି, ତାହା ପକ୍ଷରେ ସମ୍ଭବ ନୁହଁ । ତମେ ଗାଈକୁ କାହିଁକି ମାଆ କୁହ ? ଗଙ୍ଗାରେ ଗାଧେଇଲେ କାହିଁକି ପାପ ସବୁ ଧୋଇ ହେଇଯାଏ ? ସାପୁଆ କେଳାମାନେ କଅଣ ସାପ ଡାକ୍ତର ? ତମର ଗାଁ ବାରିଆଡ଼େ ସିଂହ ଛୁଆ ଦିଏ କି ନାହିଁ ? ସ୍ତ୍ରୀଲୋକମାନେ କାହିଁକି ଲୁଗାପଟା ପିନ୍ଧି ଗାଁ ପୋଖରୀରେ ଗାଧୋଉଛନ୍ତି ? ମତେ ଦେଉଳକୁ ଯିବା ମନା କାହିଁକି ? ନେଉଳ ସାପକୁ ଦୁଇଖଣ୍ଡ କରି ମଝି ଖଣ୍ଡକ ଖାଇ ସାରି ପୁଣି ତାକୁ ଯୋଡ଼ିଦିଏ—ଯାହା ଖର୍ଚ୍ଚ ହେଲେ ବି ମୁଁ ତା'ର ଗୋଟାଏ ଲାଇଭ୍ ଫଟ ନବାକୁ ଚାହେଁ—କିନ୍ତୁ କାହିଁକି ସମ୍ଭବ ନୁହଁ ? ଏକା ଗାଁ ଭିତରେ ହିନ୍ଦୁ ମୁସଲମାନ କିପରି ଏକାଠି ରହନ୍ତି ? ଗଣେଶ, ସରସ୍ୱତୀ ପ୍ରଭୃତି ଏତେ ସୁନ୍ଦର

ସୁନ୍ଦର ମୂର୍ତ୍ତିଙ୍କୁ କାହିଁକି ଏପରି ନିଷ୍ଠୁର ଭାବରେ ପାଣିରେ ବୁଡ଼ାଇ ନଷ୍ଟ କରି ଦିଆଯାଏ ? ଇତ୍ୟାଦି ଇତ୍ୟାଦି । ଯା'ର କଅଣ ଜବାବ୍ ଦିଆଯାଇପାରେ ? ତେଣୁ ପ୍ରତ୍ୟେକ କଥାରେ ମତେ କହିବାକୁ ପଡ଼େ ଏସବୁ ହିନ୍ଦୁ ଦର୍ଶନ, ବେଦ ବେଦାନ୍ତର କଥା । ତାକୁ ଅଧ୍ୟୟନ ନକଲେ ଏହାର ମର୍ମ ଜାଣିବା ସମ୍ଭବ ନୁହଁ । କିଛି ସମୟ କେଜିର ଭାବାନ୍ତର ଆସେ ଓ ସବୁବେଳେ କୁହେ, ''ମୁଁ ଗଲାବେଳେ ତମର ଏଇ ବେଦ ବେଦାନ୍ତଟାକୁ ନେଇଯିବି—ସମୁଦାୟ କେତେ ଭଲ୍ୟୁମ ? କିଏ ତା'ର ଅଥର୍ ? ଆଉ କିଏ ତା'ର ପବ୍ଲିଶର୍ ?''

ଗତ ପାଞ୍ଚ, ଛ ମାସ କାଳ ଏକାଠି ବୁଲି ବୁଲି ଆମେମାନେ ପରସ୍ପର ପ୍ରତି ଏକାନ୍ତ ଅନ୍ତରଙ୍ଗ ହେଇ ପଡ଼ିଲୁଣି । ଅର୍ଥ, ଆମ ଭିତରେ ଆଉ କୌଣସି ଲୌକିକତାର ପ୍ରାଚୀର ନାହିଁ । ଉଦାହରଣ ସ୍ୱରୂପ କେଜି କୁହେ, ''ଯଦି କିଛି ମନେ ନକର ତାହାହେଲେ ସିଗାରେଟ୍‌ଟା ମୋ ପାଇଁ ଟିକେ ଧରେଇ ଦିଅ ନା—ପ୍ଲିଜ୍ ।'' କେବେ କେମିତି ଗୋଟାଏ ପ୍ଲେଟ୍‌ରୁ ଦୁଇଜଣଯାକ ସ୍ନାକ୍ ମଧ୍ୟ ଖାଇଚୁ । ଅନେକ ଥର ହୋଟେଲ୍‌ରେ ପାଖାପାଖି ରୁମ୍ ନେଇ ରହିଚୁ ଏବଂ କେହି କାହା ଘର ଭିତରକୁ ପଶିବାକୁ ଅନୁମତିସୂଚକ ନକ୍ ନକରି ହଠାତ୍ ଘର ଭିତରକୁ ଚାଲି ଆସିଚୁ । କିନ୍ତୁ ମୋର ସର୍ବପ୍ରଥମ ଚରମ ଅନୁଭୂତି ହୋଇଥିଲା ଯେତେବେଳେ ଆମେ ବାନ୍ଦିପୁର ଜଙ୍ଗଲର୍ କାଠ କ୍ୟାବିନ୍ ଭିତରେ ଗୋଟାଏ ରାତି କାଟିଥିଲୁ ।

ସମୁଦାୟ ଜଙ୍ଗଲଟା ଅଦ୍ଭୁତ ଭାବରେ ନୀରବ । ଖଣ୍ଡେ ପତ୍ର ଝଡ଼ି ପଡ଼ିଲେ ମନେ ହଉଚି ଯେମିତି ବିଶେଷ ଗୋଟାଏ କିଛି ଜିନିଷ ତଳେ ଓଲଟି ପଡ଼ିଲା । ସାନ୍ଦ୍ର ଅଂଧାର । କ୍ୟାବିନ୍‌ରେ ଖାଲି ଦିକି ଦିକି ହେଇ ଜଳୁଚି ଗୋଟାଏ ମଇଳା ହ୍ୟାରିକେନ୍ ଆଲୁଅ । ହଠାତ୍ ଗୋଟାଏ ବାଘର ହେଣ୍ଟାଳରେ ଚମକି ଉଠି କେଜି ମତେ କୁଣ୍ଢେଇ ଧରିଥିଲା ଦୁଇ ବାହୁ ଜଡେଇ । ବାଘର ହେଣ୍ଟାଳରେ ସତକୁ ସତ ବଣଟା କମ୍ପି ଉଠିଥିଲା ଏବଂ ତା'ର ପ୍ରତିଧ୍ୱନି ଥରି ଥରି ପୁଣିଥରେ ଲୀନ ହେଇ ଯାଇଥିଲା ଏକ ଅଖଣ୍ଡ ନୀରବତାରେ, କିନ୍ତୁ ତଥାପି କେଜିର ବାହୁବେଷ୍ଟନୀ ଶିଥିଳ ହବାର ସୂଚନା ମଧ୍ୟ ନଥିଲା । କେଜିର ଭୟ କଟିଯାଇଥିଲା, କିନ୍ତୁ ସେ ବୋଧହୁଏ ଅନ୍ୟକିଛିର ସ୍ୱପ୍ନ ଦେଖୁଥିଲା । ତା'ର ବାଳ ଦିହରେ ଆସ୍ତେ ହାତମାରି ମୁଁ ଥରେ ଦୁଇଥର ଡାକିଲି 'କେଜି' ବୋଲି । କେଜି ତା'ର ବନ୍ଧନୀ ଶିଥିଳ କରି ଆଣିଥିଲା । ତା'ର ମୁହଁ ଦେଖିଲେ ମନେ ହେଉଥିଲା ଯେପରି ତା'ର ଗୋଟାଏ ଦୀର୍ଘ ମଧୁର ସ୍ୱପ୍ନ କିଏ ହଠାତ୍ ଭାଙ୍ଗି ଚୂନା କରି ଦେଲା ।

ଯିବାର ଦିନ ଯେତିକି ନିକଟ ହୋଇ ଆସୁଥାଏ କେଜି ସେତିକି ବିଷର୍ଣ୍ଣ ହୋଇ ଉଠୁଥାଏ, ଯେପରି ତା'ର ଭାରତବର୍ଷ ଗସ୍ତଟାରେ କୋ'ଠି କଅଣ ଯେପରି ଅସଂପୂର୍ଣ୍ଣ ରହିଗଲା ।

କେଜିର ପ୍ୟାରିସ୍ ରମାନା ହବାର ଥିଲା ଦିଲ୍ଲୀରୁ । ତେଣୁ ଆମକୁ ଶେଷ ରାତ୍ରି ରହିବାକୁ ପଡ଼ିଥିଲା ଦିଲ୍ଲୀର କୌଣସି ଏକ ହୋଟେଲରେ । ପରଂପରା ଅନୁଯାୟୀ ଦିଲ୍ଲୀ ହୋଟେଲ୍‌ର ରାତ୍ରି ଜୀବନ ଆରମ୍ଭ ହୋଇଥିଲା ଡାନ୍‌ସ ଫ୍ଲୋର୍‌ରେ । ଆର୍କେଷ୍ଟ୍ରାର ସଙ୍ଗୀତ ସାମାନ୍ୟ ମୁଖର ହୋଇ ଉଠିବା ପରେ କେଜି ମୋର ହାତଧରି ଟାଣିନେଲା ନାଚର ଅଗଣାକୁ, ଯେଉଁଠାରେ ବହୁ ଯୁଗଳ ନର୍ତ୍ତକ ନର୍ତ୍ତକୀ ନିଜ ନିଜର କ୍ଷୁଦ୍ର ଆବର୍ତ୍ତ ଭିତରେ ଘୁରି ବୁଲୁଥିଲେ । ମୁଁ ପ୍ରାୟ ଆତଙ୍କିତ ହୋଇ ଉଠିଥିଲି, ''ମତେ କ୍ଷମା କର କେଜି. ମତେ ନାଚି ଆସେନା ।'' କହିଲି ସତ କିନ୍ତୁ ସଙ୍ଗୀତର ତାଳରେ ମୁଁ ମଧ ଦୋଳିବାକୁ ଆରମ୍ଭ କରିଥିଲି ଏପଟରୁ ସେପଟ । କେଜି ଫିସ୍ ଫିସ୍ କରି ମୋ କାନରେ କହିଲା, ''କିଏ କୁହେ ତୁମେ ନାଚ ଜାଣ ନାହିଁ; ଏଇତ୍ ତମେ ନାଚୁଚ ଚମତ୍କାର । ନାଚ କଅଣ କାହାର ଶିଖିବା ଦରକାର ପଡ଼େ—ସେଟା ଜୀବନର ଗୋଟାଏ ଅଂଶ ।' ମୁଁ ଜାଣେନା ମୁଁ କଅଣ ନାଚିଥିଲି, କିନ୍ତୁ ନାଚର ଅଗଣା ଉପରେ ମୁଁ ରହିଥିଲି ପୁରା କୋଡ଼ିଏ ମିନିଟ୍ । ନାଚିବା ବେଳେ କେଜି ଖୁବ୍ ହାଲୁକା ଦେଖାଯାଉଥିଲା, ଯେମିତି ଗୋଟାଏ ଛୋଟ ଚଢ଼େଇ, ତାର ଟିକି ଟିକି ଡେଣାରେ ଫୁର୍‌ଫୁର୍ ହେଇ ଉଡ଼ିବୁଲୁଚି ଏଠୁ ସେଠିକି । ମୋର ଅଣ୍ଟା ଚାରିପଟେ ତା'ର ହାତକୁ ଗୁଡ଼େଇ ଧରି ସେ ଅତି ସାବଲୀଳ ଭାବରେ ପହଁରି ଯାଉଥିଲା ନାଚର ଚଟାଣ ଉପରେ ।

ନାଚ ଭିତରେ କେଜି ଆଉ ଗୋଟାଏ ଦୁଇଟା ହୁଇସ୍କି ଅଧିକ ପିଇ ନେଇଥିଲା ଏବଂ ପ୍ରତିଥର ପିଇଲା ବେଳେ ହୁଇସ୍କି ଗିଲାସ ଉପରକୁ ଟୋକି ରହୁଥାଏ ଫେଆରୱେଲ ଟୁ ଇଣ୍ଡିଆ । ନାଚ ପରେ ରୁମ୍‌କୁ ଫେରି ଦେଖେ ଯେ ମୋ ପାଇଁ କୌଣସି ରୁମ୍ ବୁକିଂ ନାହିଁ । କାରଣ ଆସିଲାବେଳେ କେଜି ହୋଟେଲ ରେଜିଷ୍ଟର୍‌ରେ ଦସ୍ତଖତ କରିଥିଲା । ଏଇ ଭୁଲ୍‌ଟାକୁ ଯେତେବେଳେ ମୁଁ କେଜିକୁ ଦେଖେଇ ଦେଲି କେଜି କହିଲା ଯେ ମୁଁ ଇଚ୍ଛାକରି ଗୋଟାଏ ଡବଲ ରୁମ୍ ବୁକ୍ କରିଚି । ସେଥିରେ ଅନେକ ଖର୍ଚ୍ଚ ବଞ୍ଚିଯାଏ । ମୁଁ ଯୁଗପତ୍ ବିସ୍ମିତ୍ ଓ ଆତଙ୍କିତ ହୋଇ ଉଠିଲି । କିନ୍ତୁ ମୋର ଅନ୍ୟ ଉପାୟ ନଥିଲା ।

ସେଦିନ ସନ୍ଧ୍ୟାରେ ଆମେ ସାଧାରଣ ଡାଇନିଂ ହଲ୍‌କୁ ଯାଇନାହୁଁ । କେଜି ଆମ ରୁମ୍ ଭିତରକୁ ପାନୀୟ ଓ ରାତ୍ରି ଭୋଜନର ସବୁ କିଛି ମଗେଇ ନେଇଥିଲା । ଖାଇ ବସିବା ବେଳେ କେଜି ନିଜ ହାତରେ ସବୁ କିଛି ପରିବେଷଣ କଲା, ଟେବୁଲ ଉପରେ ଲଗେଇଲା ଗୋଟାଏ ଛୋଟ ମହମବତୀ ଓ ଘରର ସମସ୍ତ ଆଲୁଅ ଗୁଡ଼ିକୁ ଲିଭେଇ

ଦେଇ କହିଲା, ଆସ, ଆଜି ଆମେ ଏଇ ମହମବତୀ ଆଲୁଅରେ ଖାଇବା । ଆମ ଦେଶରେ ଏପରି ରାତ୍ରି ଭୋଜନକୁ ପୁରୁଷ ସ୍ତ୍ରୀକୁ ନିମନ୍ତ୍ରଣ କରେ, କିନ୍ତୁ ଆଜି ମୁଁ ତମକୁ ନିମନ୍ତ୍ରଣ କରୁଚି ଜେପି ।''

ସମସ୍ତେ ଚୁପ୍‌ଚାପ୍ । ଘର ଭିତରେ ଗୋଟାଏ କେମିତି ଥମ୍ ଥମ୍ ଭାବ । ସତେ ଯେମିତି ଶ୍ରାବଣ ମାସର ଗୁମ୍‌ଟି ଆକାଶ ଆଉ କିଛି ସମୟ ପରେ ହା' ହା' କରି କାନ୍ଦି ଉଠିବ ! ଦୁଇଜଣ ଯାକ ନୀରବରେ ସୁପ୍ ଚାମୁଚ୍ ଉପରକୁ ନଉଚୁ, ତଳକୁ ଆଣୁଚୁ । କେହି କିଛି କହୁ ନାହିଁ—କିଛି ଘଟୁ ନାହିଁ ।

କିନ୍ତୁ ଶେଷ ପର୍ଯ୍ୟନ୍ତ ମତେଇ ଆରମ୍ଭ କରିବାକୁ ପଡ଼ିଲା, ''ଦେଖ କେଜି, ତମ ସହିତ ଏଇ ଦୀର୍ଘ ଛ'ମାସର ଭ୍ରମଣ ମତେ ଅତ୍ୟନ୍ତ ଆନନ୍ଦ ଦେଇଛି ଏବଂ ସବୁଠାରୁ ବେଶୀ ଖୁସୀ ହେଇଚି ମୁଁ ତମର ସାନ୍ନିଧ୍ୟରେ । ଆମମାନଙ୍କର ଦେଶ ଭିନ୍ନ ହେଲେ ମଧ ପ୍ରେମରେ ପଡ଼ିବା ପାଇଁ ବୟସ ଆମମାନଙ୍କର ଅତ୍ୟନ୍ତ ଅନୁକୂଳ ।''

ମୁଁ ସେଇ ମଳିନ ଆଲୁଅରେ ଦେଖି ପାରୁଥିଲି, କେଜିର ଆଖି ଖୁସିରେ ଚିକ୍ ଚିକ୍ କରୁଥିଲା ଏବଂ ସେ ତା'ର ସ୍ୱର ଯଥାସମ୍ଭବ ଧୀର କରି କହିଲା, ''ଆଃ, ମତେ ଭାରି ଭଲ ଲାଗୁଚି ଶୁଣିବାକୁ, ତମର ଯାହା କହିବାର ଅଛି ଆଜି କହିଯାଅ ।''

ସାମାନ୍ୟ ବିରତି ଦେଇ ମୁଁ ପୁଣି ଆରମ୍ଭ କରିଥିଲି, ''କିନ୍ତୁ ତମେ କେଜି ମୋ ପାଇଁ ଜଣେ ସାଧାରଣ ତରୁଣୀ ନୁହଁ, ତମେ ମୋ ପାଇଁ ଏକ ବିଶ୍ୱାସ । ମୋ ଉପରେ ଯେଉଁ ବିଶ୍ୱାସ ସ୍ଥାପନ କରାଯାଇଛି, ମୋ ପକ୍ଷରେ ତା'ର ଖିଲାପ୍ କରିବା ସମ୍ଭବ ନୁହଁ । ତମେ କ୍ଷମା କର । ମୋ ପକ୍ଷରେ ଆଜି ଗୋଟାଏ ରୁମ୍‌ରେ ତମ ସହିତ ରାତ୍ରିଯାପନ କରିବା ଏକ ପାପ ।''

କେଜିର ମୁହଁ ମଳିନ ପଡ଼ି ଯାଇଥିଲା । ସେ ଅନୁନାସିକ ସ୍ୱରରେ ଗୁଣୁ ଗୁଣୁ କରି ତଥାପି ପ୍ରତିବାଦ କରୁଥିଲା, ''ମୁଁ କାହାର ସଂପତ୍ତି ନୁହଁ, ତେଣୁ ତା ନେଇ ବିଶ୍ୱାସ ଅବିଶ୍ୱାସର ପ୍ରଶ୍ନ ଉଠେନା । ମୁଁ ସମସ୍ତଙ୍କ ପରି ଜଣେ ମଣିଷ, ମୋର ଇଚ୍ଛା ମୋର ଏକାନ୍ତ ନିଜସ୍ୱ—କିନ୍ତୁ ତମେମାନେ—ଓରିଏଣ୍ଟରେ ସେ କଥା ବୁଝିବ ନାହିଁ—ବୁଝିବ ନାହିଁ...''

ଦୁଇ ହାତର ବନ୍ଧନୀରେ ମୁହଁ ମାଡ଼ି କେଜି ଫୁଲି ଫୁଲି କାନ୍ଦୁଥିଲା ଓ ସେଇ ଛନ୍ଦରେ ତା'ର କାନ୍ଧ ଦୁଇଟି ଉପରକୁ ଉଠୁଥିଲା ଓ ତଳକୁ ପଡୁଥିଲା ।

ମୁଁ ଉଠି ଠିଆ ହେଲି ଓ ଜଣେ ଅପରାଧୀ ପରି କହିଲି, ''ମୁଁ ଆଜି ପାଇଁ ଆସୁଚି କେଜି, କାଲି ସକାଳ ୮ଟାରେ ଏଆର୍‌ପୋର୍ଟ୍‌ରେ ଦେଖା ହବ ।''

ତା' ଆରଦିନ ଏଆର୍ ପୋର୍ଟରେ ଦେଖିଲି ଅନ୍ୟ ଏକ କେଜି । ହାତରେ ସୁଟ୍‌କେଶ୍, କାନ୍ଧରେ କ୍ୟାମେରା ପ୍ରଭୃତି ଝୁଲି ରହିଚି ଓ ବେଶ୍ ଖୁସି ଦେଖା ଯାଉଛି,

ଯେପରି ସେ ଗତ ରାତ୍ରିର ସବୁ କିଛି ବିଷାଦ, ଆତ୍ମଗ୍ଲାନି ତା ମନରୁ ସଂପୂର୍ଣ୍ଣ ପୋଛି ଦେଇଛି । ଦେଖିବା ମାତ୍ରକେ ହସି ହସି ଅଭିବାଦନ କଲା, "ଗୁଡ୍ ମର୍ଣ୍ଣିଂ ଜେପି—କାଲି ରାତ୍ରିରେ ସୁନିଦ୍ରା ହେଇଥିଲା ଆଶାକରେ ।"

ସାଙ୍ଗ ହୋଇ କଫି ପିଇଥିଲୁ ରେସ୍ତୋଁରାରେ । ଗଲାବେଳେ କେଜି କହିଲା, "ଚମତ୍କାର ତମର ଭାରତବର୍ଷ—ଏବଂ ସବୁଠାରୁ ଚମତ୍କାର ତମେ ନିଜେ ଜେପି—ତମର ସାନ୍ନିଧରେ ମୁଁ ଅତ୍ୟନ୍ତ ପ୍ରୀତ ।"

ସମୟ ହୋଇଗଲା । ସିଡ଼ି ଦେଇ ଉପରକୁ ଉଠିଲା କେଜି । ମଝି ସିଡ଼ିରେ ଆଉଥରେ ପଛକୁ ଫେରି ହାତ ହଲେଇ ବିଦାୟ ନେଲା । ପ୍ରପେଲର୍ ପ୍ରଚଣ୍ଡ ଆନ୍ଦୋଳନ କରି ଜାହାଜ ଆଗକୁ ଚାଲିଲା । କେଜି ବସିଥିଲା ଗୋଟାଏ ଝରକା ପାଖ ସିଟ୍‌ରେ । କାଚ ଉପରେ ପାପୁଲି ଘଷି ସେ ଶେଷ ବିଦାୟ ଜଣାଉଥିଲା । ମତେ ଜଣା ଯାଉଥିଲା ଯେପରି ଗୋଟାଏ ସୁନ୍ଦର ଇଗଲ୍ ପକ୍ଷୀ ତା'ର ପନ୍ଝା ଆନ୍ଦୋଳିତ କରି ମତେ ବିଦାୟ ଜଣାଉଛି ।

ଦିଲ୍ଲୀରୁ ଫେରି ଆସି ଫାର୍ମରେ ଯୋଗ ଦେଲି । ମୋ ଉପରେ କର୍ତ୍ତୃପକ୍ଷଙ୍କ ଏଇ ଅହେତୁକ ଆଶୀର୍ବାଦ ହେତୁ ମୋର ସହକର୍ମୀମାନେ ସାମାନ୍ୟ ଇର୍ଷାନ୍ୱିତ ହୋଇ ଉଠିଥିଲେ, ହେବା ସ୍ୱାଭାବିକ ମଧ୍ୟ ।

ଆଉ ଏକ ସପ୍ତାହ ପରେ କ୍ରିଷ୍ଟମାସ୍ ଛୁଟି । ସେଦିନ ଅଫିସରେ ଅନ୍ୟମନସ୍କ ହେଇ ବସିଚି । ହଠାତ୍ ବିଦେଶୀ ଲଫାପାରେ ଖଣ୍ଡେ ଚିଠି ପାଇ ତରତରରେ ଖୋଲିଲି । ସୁନ୍ଦର କ୍ରିଷ୍ଟମାସ କାର୍ଡ଼ । ଛବିରେ ଗୋଟିଏ ଖଟ ଉପରେ ଶୋଇ ରହିଚି ଜଣେ ପ୍ରାୟ ଅସଂବୃତା ସୁନ୍ଦରୀ ତରୁଣୀ ଏକ ନିମନ୍ତ୍ରଣର ଭଙ୍ଗୀରେ ଏବଂ ତା'ର ଖଟ ଚାରିପଟେ ଗୋଟିଏ ଘୁଷୁରୀ ଶୁଂଘି ଶୁଂଘି ବୁଲୁଚି ।

ସେ ଦିନର ସେଇ କ୍ରିଷ୍ଟ୍‌ମାସ୍ କାର୍ଡ଼ଟିକୁ ଆଜି ଜୀବନର ଉତ୍ତର ମଧ୍ୟାହ୍ନରେ ହାତରେ ଧରି ମୋର ଅତୀତକୁ ରୋମନ୍ଥନ କରୁଛି ।

ଠିକ୍ ସେଇଦିନ ଅନ୍ୟ ଏକ ସଂକ୍ଷିପ୍ତ ଚିଠି ମଧ୍ୟ ମୋର ହସ୍ତଗତ ହେଇଥିଲା । ସେଥିରେ ଲେଖା ଥିଲା ଯେ 'ପରଫ୍ୟୁମ୍-ଡି-ପ୍ୟାରିସ୍' ତାଙ୍କର ବ୍ୟୟ ସଂକୋଚ କରିବା ପାଇଁ ମୋ ପରି ଏକ ବିଶ୍ୱସ୍ତ ଓ କର୍ମନିଷ୍ଠ କର୍ମଚାରୀଙ୍କୁ ଗଭୀର ଦୁଃଖର ସହିତ ଅନୁଷ୍ଠାନରୁ ବିଦାୟ ଦବାକୁ ବାଧ୍ୟ ହେଉଛନ୍ତି ।

କାର୍ଡ଼ ଖଣ୍ଡିକ ଉପରେ କିଛି ପତଳା ଧୂଳି ଜମି ଆସିଥିଲା । ଗୋଟାଏ ଟିପ ମାରି ସେଗୁଡ଼ିକ ଝାଡ଼ିଦେଲି ଏବଂ ସେ ଧୂଳି ସହିତ ଝଡ଼ିଗଲା ମୋର ପାଞ୍ଚବର୍ଷର ଜୀବନ ।

*(ନବରବି—ନଭେମ୍ବର ୧୯୬୪)*

●●

# ଗଜ ଉଦ୍ଧାରଣ

ବିମଳେନ୍ଦୁ ନିଜକୁ ନିରାପଦ ମନେ କରୁ ନଥିଲା ।

କେବଳ ବିମଳେନ୍ଦୁ କାହିଁକି, ସେ ସମୟର ସେହି ସନ୍ତ୍ରାସବାଦୀ ସଂସ୍ଥା ସହିତ ଜଡ଼ିତ କେହି ଲୋକ ନିରାପଦ ମନେ କରିବା ସମ୍ଭବ ନଥିଲା । ପୁଲିସ ଆଜି ଯା' ଘର ଖାନତଲାସ କଲାଣି ତ, କାଲି ଆଉ ଗୋଟାଏ ବସ୍ତି ଉପରେ ଚଢ଼ାଉ କଲାଣି । କୌଣସି କୌଣସି ଜାଗାରେ ଗୁପ୍ତ ଆଡ୍ଡା ଥିବାର ସନ୍ଦେହ କରି ନିଆଁ ମଧ୍ୟ ଲଗେଇ ଦିଆଯାଉଥିଲା । ବାରମ୍ବାର ସେମାନଙ୍କର ପରିତ୍ୟକ୍ତ ଆଡ୍‌ଡାମାନଙ୍କରୁ ଦେଶୀ ପିସ୍ତଲ୍, ଟାଇପ୍ରାଇଟର୍ ଓ ଡୁପ୍ଲିକେଟର୍ ମେସିନ ସବୁ ବାଜ୍ୟାପ୍ତ କରି ଦିଆଯାଉଥିଲା । ପ୍ରେସ୍‌ର ମହଣ ମହଣ ଅକ୍ଷରକୁ ତରଳେଇ ଦେଇ ଶିସା କରି ଦିଆଯାଉଥିଲା । ସାମୟିକ ଭାବରେ ସେମାନଙ୍କର ଗୁପ୍ତ ଲିଫ୍‌ଲେଟ୍ ପ୍ରକାଶନ ବାଧାପ୍ରାପ୍ତ ହଉଥିଲା ସତ, କିନ୍ତୁ କିଛିଦିନ ଚାଲିଯିବା ପରେ ପୁଣି ସେମାନଙ୍କର ଲିଫ୍‌ଲେଟ୍ ପ୍ରକାଶ ପାଉଥିଲା । ସେମାନଙ୍କର ଦୁଇ ପୃଷ୍ଠିଆ ସମ୍ବାଦପତ୍ର ରାତିର ଅନ୍ଧାରରେ ସହର ଗଳିକନ୍ଦି ଭିତରକୁ ଚାଲାଣ ହୋଇ ଯାଉଥିଲା । ସେମାନେ ନିଜର ସଙ୍ଗଠନକୁ ଆଉଥରେ ଠିଆ କରେଇ ନଉଥିଲେ ।

ଠିଆ କରୁ କରୁ ପୁଣି ଥରେ ଆରମ୍ଭ ହୋଇଯାଏ ଦୋହରା ପୁଲିସ୍ ଆକ୍ରମଣ ।

ଯେ' ଥିଲା ସେହି ସମୟର ଘଟଣା, ଯେତେବେଳେ ଯୁବକମାନେ ଏ ଦେଶରୁ ଏକ ବିଦେଶୀ ଶକ୍ତିକୁ ହଟେଇବାକୁ ଜୀବନକୁ ତୁଚ୍ଛ କରି ଦେଇଥିଲେ । ସେମାନେ ଥିଲେ ପ୍ରାୟଶଃ ବୁଦ୍ଧିଜୀବୀ । ରୁଷୋ, ଭଲ୍‌ଟେଆର୍, ଗର୍କି ପ୍ରଭୃତି ମହାମାନବ ମାନଙ୍କର କୃତି ସହିତ ସେମାନଙ୍କର ଗଭୀର ପରିଚୟ ଥିଲା । ତଦୁପରି ସେମାନେ ଘୋର ବସ୍ତୁବାଦୀ ଓ ଏହି ଜଡ଼ ଜୀବନର ଊର୍ଦ୍ଧ୍ୱରେ ଯେ ଆଉ କିଛି ଥାଇପାରେ ସେ ସମ୍ପର୍କରେ ସେମାନଙ୍କର ସାମାନ୍ୟତମ ବିଶ୍ୱାସ ନଥିଲା । ତେଣୁ ସେହି ନିଷ୍ଠୁର ହେତୁବାଦୀମାନଙ୍କ ପାଇଁ ଭଗବାନ ନାମକ ବସ୍ତୁଟି ଥିଲା ଏକ ଅଳୀକ କଳ୍ପନା । ସେମାନେ ଏକମାତ୍ର ବିଶ୍ୱାସୀ ଥିଲେ ମାନବବାଦରେ, ସେଥିପାଇଁ ସେମାନଙ୍କର ଏକମାତ୍ର ସ୍ଲୋଗାନ ଥିଲା ଧ୍ୱଂସ କର । ସେହି ଧ୍ୱଂସସ୍ତୂପରୁ ଜନ୍ମ ନବ ଶାନ୍ତି, ସ୍ୱପ୍ନ ଓ କବିତା ଇତ୍ୟାଦି ଯେତେସବୁ ସୁକୁମାର ଫସଲ । ଧର୍ମ ଓ ତା'ର ଆଚରଣ ସେମାନଙ୍କ

ପାଇଁ ଥିଲା ଅହିଫେନ, ଯାହା ଜାଗ୍ରତ ଅବସ୍ଥାରେ ମଧ ମନୁଷ୍ୟକୁ ଅଚେତନ କରି ରଖେ ।

ବିମଳେନ୍ଦୁ ଥିଲା ସେହି ଗୋଷ୍ଠୀର ଜଣେ ନିଷ୍ଠାପର ନେତା ।

ସେମାନଙ୍କର ଗୋଟାଏ ଗୁପ୍ତ ବୈଠକ ବସିବାର ଥାଏ ମାନ୍ଦ୍ରାଜ ସହରରେ । ସେଇ ଉପଲକ୍ଷରେ ବିମଳେନ୍ଦୁ ତା'ର ଅନ୍ୟ ଏକ ବନ୍ଧୁ ହେମନ୍ତ ସହିତ ଯାତ୍ରା କରୁଥାଏ ମାନ୍ଦ୍ରାଜ ସହରକୁ ରେଳ ଯୋଗେ । ଓଃ ! ଏଇ ଦୀର୍ଘ ଦୁଇଦିନର ଯାତ୍ରା ପାଇଁ କମ୍ ସାବଧାନତା ଅବଲମ୍ବନ କରିବାକୁ ପଡ଼ି ନାହିଁ ସେମାନଙ୍କୁ । ବିମଳେନ୍ଦୁର ପିନ୍ଧା ଲୁଗା ତଳେ ସଦାସର୍ବଦା ଝୁଲି ରହିଛି ପିସ୍ତଲ, କମରପଟି ଭିତରେ । ଗୁଳି ସବୁ ରଖା ହେଇଛି ପମ୍ପ ସୁ'ର ଗୋଡ଼ ଆଙ୍ଗୁଠି ଆଗକୁ ରହିଥିବା ତ୍ରିକୋଣାକାର ଶୂନ୍ୟ ସ୍ଥାନରେ । ପ୍ରତି ଷ୍ଟେସନରେ ସତର୍କ ଦୃଷ୍ଟିପାତ, ପୁଲିସ ଆଉ ଅଚାନକ ଘେରାଉ କରି ନେଲା ନାହିଁତ ଟ୍ରେନ୍‌ଟାକୁ ?

ମାନ୍ଦ୍ରାଜ ଷ୍ଟେସନରେ ପହଞ୍ଚି ମଧ ସେହି ସତର୍କ ପ୍ରତୀକ୍ଷାର ଅବସାନ ନାହିଁ, କାରଣ ସେମାନେ ଜାଣନ୍ତି ନାହିଁ ସେମାନଙ୍କୁ କେଉଁଠିକି ଯିବାକୁ ହେବ । କୌଣସି ଅନ୍ତର୍ଘାତୀ କାର୍ଯ୍ୟର ଆଶଙ୍କା କରି ବୈଠକର ସ୍ଥାନ ମଧ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଜାଣିବାକୁ ନଦବା ଥିଲା ସେମାନଙ୍କର ନିୟମର ଅନ୍ତର୍ଭୁକ୍ତ । ସେମାନେ ସାମ୍ନାର ଗୋଟାଏ କଫି କାଉଣ୍ଟରକୁ କଫି ଖାଇବାକୁ ଗଲେ । ସେମାନଙ୍କ ପ୍ରତି ତାହାହିଁ ଥିଲା ନିର୍ଦ୍ଦେଶ ।

କିଛି ସମୟ ପରେ ଦେଖାଗଲା ଆଉ ଜଣେ ଯୁବକ ମଧ ସେହି କାଫେକୁ କଫି ଖାଇବାକୁ ଆସିଲେ ଓ କଫି ପାଇଁ ବରାଦ୍ ଦେଇ ବେଶ ସତର୍କତାର ସହିତ ଚାରିଆଡ଼କୁ ଲକ୍ଷ୍ୟ କଲେ । ଯୁବକଟିକୁ ଚାହିଁଥିବାର ଅନ୍ୟ କେହି ଦେଖିଥିଲେ ଭାବିଥାଆନ୍ତା ବୋଧହୁଏ ଯୁବକଟି ଷ୍ଟେସନ୍‌ର ଦୃଶ୍ୟ ଉପଭୋଗ କରୁଛି । ହଠାତ୍ ସାମାନ୍ୟ କଥୋପକଥନ ଆରମ୍ଭ କରିବା ପାଇଁ ଯୁବକଟି ବିମଳେନ୍ଦୁକୁ ଉଦ୍ଦେଶ୍ୟ କରି ଇଂରାଜୀରେ ପଚାରିଲା, "ଆପଣମାନେ କ'ଣ ଏଇ ଟ୍ରେନ୍‌ରେ ଆସିଲେ ?" ବିମଳେନ୍ଦୁ ହଠାତ୍ ସତର୍କ ହୋଇଗଲା, ଉତ୍ତର ଦେଲା, "ହଁ, କିନ୍ତୁ ଗାଡ଼ି ଆଜି ଅନେକ ବିଳମ୍ବ ହେଲା ।" ଏତକ କଥା କହିସାରି ସେ ଆଗନ୍ତୁକଙ୍କର ଦ୍ୱିତୀୟ ସଂଳାପ ପାଇଁ ଉତ୍‌କର୍ଣ୍ଣ ହୋଇ ଅପେକ୍ଷା କରୁଥିଲା । ଆଗନ୍ତୁକ ପୁଣି ପଚାରିଲେ, "ଆପଣମାନେ ମାଡ୍ରାସ ଆଗରୁ କେବେ ଆସିଥିଲେ ନା ଏଇ ପ୍ରଥମ ଥର ?" ବିମଳେନ୍ଦୁ କହିଲା, "ପ୍ରଥମ ଥର ।" ଆଗନ୍ତୁକ କହିଲେ, "ମୁଁ ଏଠି ଗାଇଡ୍ ବ୍ୟବସାୟ କରେ, ଏ ସହରରେ ଅନେକ ସୁନ୍ଦର ସୁନ୍ଦର ଜିନିଷ ଦେଖିବାର ଅଛି, ମୋ' ସହିତ ଆସନ୍ତୁ, ମୁଁ

ଆପଣଙ୍କର ରହିବାର ଓ ବୁଲାବୁଲିର ସୁନ୍ଦର ବନ୍ଦୋବସ୍ତ କରି ଦେଇ ପାରିବି ।''
ବିମଳେନ୍ଦୁ କହିଲା, ''ବେଶ୍, ବେଶ୍ ।''

ବାସ୍ ଏତିକି । ଆଉ କଥାବାର୍ତ୍ତା କରିବାର ପ୍ରୟୋଜନ ନାହିଁ । କାରଣ ଏହାହିଁ ଥିଲା ସେମାନଙ୍କର ପୂର୍ବନିର୍ଦ୍ଧାରିତ ସାଙ୍କେତିକ ପ୍ରଶ୍ନୋତ୍ତର । ବିମଳେନ୍ଦୁ ଆଶ୍ୱସ୍ତ ହେଲା ବହୁ ପରିମାଣରେ । ଯାହାହେଉ ସେମାନଙ୍କର କୁରିଅର୍ ବିଶେଷ ବିଳମ୍ବ ନ କରି ସେମାନଙ୍କୁ ଚିହ୍ନଟ୍ କରି ଆସିଯାଇ ପାରିଛି । ବର୍ତ୍ତମାନ ଧୀରେ ସୁସ୍ଥେ କଫି ପିଆଯାଇପାରେ ।

କଫି ପିଆ ସରିଲା ଓ ତା'ପରେ ପରେ ଗାଇଡ୍ ଚାଲିଲା ଆଗେ ଆଗେ ଓ ବିମଳେନ୍ଦୁ ଓ ତା'ର ବଂଧୁ ତାକୁ ଅନୁସରଣ କଲେ । ସେଠି ବି ସତର୍କତା । ଯେପରି ପ୍ଲାଟଫର୍ମରେ ଉପସ୍ଥିତ ଅନ୍ୟ ଲୋକମାନେ କେହି ଅନୁମାନ କରି ନପାରିବେ ଯେ, ଜଣେ ପଥପ୍ରଦର୍ଶକ ଓ ଅନ୍ୟ ଦୁଇଜଣ ତା'ର ଅନୁସରଣ କରୁଛନ୍ତି ମାତ୍ର ।

ଗାଇଡ୍ ଯାଇ ନିର୍ଦ୍ଦିଷ୍ଟ ବସ୍‌ରେ ବସିଲା ଓ ଠିକ୍ ସେଇ ବସ୍‌ରେ ବସିଲେ ବିମଳେନ୍ଦୁ ଓ ତା'ର ବଂଧୁ । ମାନ୍ଦ୍ରାଜ ସହରର ସଂଭ୍ରାନ୍ତ ବିପଣୀ ଦେଇ ବସ୍ ଚାଲିବାକୁ ଆରମ୍ଭ କଲା, ସହରର ଭିତରକୁ ଭିତରକୁ । କୌଣସି ଗୋଟାଏ ବସ୍‌ଷ୍ଟପ୍‌ରେ ଗାଇଡ୍ ଓହ୍ଲାଇଗଲା ଓ ଏମାନେ ମଧ୍ୟ । ସେଟା ସହରର କେଉଁ ସ୍ଥାନ ବା କେଉଁ ଅଂଶ ତାହା ବିମଳେନ୍ଦୁ ବା ତା'ର ବନ୍ଧୁର ଜାଣିବାର ଜୁ' ନଥିଲା । ଅଯଥା କୌତୁହଳ ପ୍ରଦର୍ଶନ କରିବା ସେମାନଙ୍କ ଗୋଷ୍ଠୀର ନିୟମରେ ଥିଲା ଏକ ଅପରାଧ । ସେମାନେ ଗାଇଡ୍ ଠାରୁ ଏକ ନିରାପଦ ଦୂରତ୍ୱରେ ରହି ଅନୁସରଣ କରି ପଶିଲେ ଗୋଟିଏ ଘର ଭିତରକୁ, ଯେଉଁଠାରେ ସେମାନଙ୍କର ବହୁ ବନ୍ଧୁ ସେମାନଙ୍କୁ ଉଦ୍‌ବିଗ୍ନ ହୋଇ ଅପେକ୍ଷା କରି ରହିଥିଲେ । ସେମାନେ ସମସ୍ତେ ବେଶ୍ ଆନନ୍ଦିତ ହେଇ ବିମଳେନ୍ଦୁ ଓ ତା'ର ବନ୍ଧୁଙ୍କୁ ଅଭିବାଦନ କଲେ । ଭାରତର ଅନ୍ୟାନ୍ୟ ସ୍ଥାନମାନଙ୍କରୁ ଆଉ କିଛି ବନ୍ଧୁଙ୍କୁ ସେମାନେ ତଥାପି ଅପେକ୍ଷା କରୁଥିଲେ ।

ସେମାନଙ୍କୁ ସେଇ ଘର ଭିତରେ ଆବଦ୍ଧ ହେଇ ରହିବାକୁ ହବ ପ୍ରାୟ ତିନିଦିନ, ଯେ ପର୍ଯ୍ୟନ୍ତ ସେମାନଙ୍କର ଆଲୋଚନା ସମାପ୍ତ ନ ହୋଇଛି । ଏଠି ଯେ' ଗୋଟାଏ ବୈଠକ ଚାଲିଛି, ବା' ଏଠି ଯେ' କିଛି ବାହାରର ଲୋକ ଆସି ରହିଛନ୍ତି ଏକଥା ଯେପରି ସେଠିକାର ଆଖପାଖର ଲୋକମାନେ ସନ୍ଦେହ ନକରନ୍ତି ।

ନିର୍ଦ୍ଦିଷ୍ଟ ସମୟରେ ଆଲୋଚନା ଆରମ୍ଭ ହେଇଗଲା । କ'ଣ ବା ଆଲୋଚନା ? ଆସନ୍ତା ତିନିମାସ ପାଇଁ ଗୋଟାଏ ଖସଡ଼ାର ପ୍ରସ୍ତୁତି, ବିଗତ ତିନିମାସର ଷ୍ଟକ୍‌ଟେକିଙ୍ଗ୍ ଓ ନିର୍ଦ୍ଦିଷ୍ଟ ବ୍ୟକ୍ତିମାନଙ୍କ ଉପରେ ନିର୍ଦ୍ଦିଷ୍ଟ ଦାୟିତ୍ୱ ଅର୍ପଣ ।

ସେ ଯାହାହଉ ସେଠିକାର ଆଲୋଚନାର ବିସ୍ତୃତ ବିବରଣୀ ଏ ଗଳ୍ପର ପରିସର ବହିର୍ଭୂତ ।

ଆଲୋଚନାର ବହୁ ବିଭିନ୍ନ ବିଷୟ ଉପରେ ବାଦ ବିସମ୍ବାଦ ହୋଇଥିଲା ଓ ବହୁ ବିଭିନ୍ନ ବିଷୟ ଉପରେ ମଧ୍ୟ ଲିଖିତ ପ୍ରସ୍ତାବ ଗୃହୀତ ହୋଇଥିଲା । ତା' ମଧ୍ୟରେ ଗୋଟିଏ ବିଷୟ ଉପରେ ଅପେକ୍ଷାକୃତ ଅଧିକ ଗୁରୁତ୍ୱ ଆରୋପ କରାଯାଇଥିଲା, ତାହା ହଉଛି ସାରା ଭାରତବର୍ଷର ବିଭିନ୍ନ ସ୍ଥାନରେ ବିଛେଇ ହୋଇ ପଡ଼ିଥିବା କ୍ରିଶ୍ଚିଆନ୍ ପାଦ୍ରୀମାନଙ୍କ ବିଷୟ । ସେମାନେ କେଉଁଠି ଧର୍ମଯାଜକ ଫାଦର ଓ ଅନ୍ୟ କେଉଁଠି ମିସନାରୀ ଡାକ୍ତରଖାନାରେ ଡାକ୍ତର ଅଥବା କନ୍‌ଭେଣ୍ଟ ଓ ଷ୍ଟୁଆର୍ଟ୍ ସ୍କୁଲରେ ଶିକ୍ଷକ ନହେଲେ ସେକ୍ରେଟେରୀ । ସେମାନେ ଧଳା କନାର ଆଲ୍‌ଖଲ୍ଲା ପିନ୍ଧି ଓ ବେକରେ କ୍ରୁଶ୍‌ବିଦ୍ଧ ଯୀଶୁଙ୍କର ମାଳ ପିନ୍ଧି ଅପେକ୍ଷାକୃତ ନିର୍ଦ୍ଦୋଷ, ନିରପରାଧ ଦେଖାଯାଆନ୍ତି ସତ, ଅନେକ ସମୟରେ କରୁଣାର ମୂର୍ତ୍ତିମନ୍ତ ପ୍ରତୀକ ପରି ମନେ ହୁଅନ୍ତି ସତ, କିନ୍ତୁ ତଥାପି ସେମାନଙ୍କୁ ଠିକ୍ ଠିକ୍ ବିଶ୍ୱାସ କରାଯାଇ ହୁଏନା ।

ଗୋଟାଏ ତ ସିଧାସଳଖ ଅପରାଧ ହେଲା ଧର୍ମ ପ୍ରଚାର । ତା' ଦ୍ୱାରା ସେମାନେ ଲୋକମାନଙ୍କୁ ଗୋଟାଏ ଅବସ୍ଥାକୁ ନେଇ ଯାଉଛନ୍ତି, ଯେଉଁଠାରେ ସମସ୍ତ ଅତ୍ୟାଚାର ଓ ଶୋଷଣ ଭଗବାନଙ୍କ ଉପରେ ଅନ୍ଧ ବିଶ୍ୱାସ ସ୍ଥାପନ କରି ସହି ନେଇହୁଏ । କେତେ ସହସ୍ର ବର୍ଷ ଚାଲିଗଲା ୟୁରୋପର ଦେଶମାନଙ୍କୁ ଏଇ ଧର୍ମଯାଜକମାନଙ୍କ ହାତରୁ ମୁକ୍ତ କରିବାକୁ ! ତା' ଛଡ଼ା ଏମାନେ ଯେ ଗୁପ୍ତଚର ବୃତ୍ତି କରି ବିଦେଶୀ ଶାସକମାନଙ୍କୁ ସାହାଯ୍ୟ ନକରୁଥିବେ ସେ' କଥା କିଏ କହିପାରିବ ?

ସେଥିପାଇଁ ଯୋଜନା ମଧ୍ୟ ପ୍ରସ୍ତୁତ କରାଯାଇଥିଲା । ସେମାନଙ୍କୁ ଅବସ୍ଥା ଓ ସୁଯୋଗ ଦେଖି ବାସଚ୍ୟୁତ କରାଯାଇପାରେ, ଅବସ୍ଥା ସ୍ଥଳେ ତାଗିଦ୍ କରି ଧମକପୂର୍ଣ୍ଣ ଚିଠି ଲେଖାଯାଇପାରେ । ମୋଟ ଉପରେ ଜନସାଧାରଣଙ୍କ ଆଗରେ ସେମାନଙ୍କର ପ୍ରତିକ୍ରିୟାଶୀଳ କାର୍ଯ୍ୟକଳାପର ମୁଖା ଖୋଲି ଦିଆଯିବା ଉଚିତ୍ । ପ୍ରୟୋଜନ ହେଲେ ଅନ୍ତିମ ପନ୍ଥା ମଧ୍ୟ ଗ୍ରହଣ କରାଯାଇପାରେ । ସେବା, ସେବା ମାଧ୍ୟମରେ ଧର୍ମ ପ୍ରଚାର, ପ୍ରଚାର ମାଧ୍ୟମରେ ବିଦେଶୀ ଶକ୍ତିକୁ ସାହାଯ୍ୟ ଓ ତା' ଜରିଆରେ ଦେଶ ଉପରେ ସାମ୍ରାଜ୍ୟବାଦୀ ଶକ୍ତିର କର୍ତ୍ତୃତ୍ୱ ବିସ୍ତାର ଥିଲା ସେମାନଙ୍କର ଅପରାଧର ବିଷଚକ୍ର ।

ଦ୍ୱିତୀୟ ଦିନର ଆଲୋଚନା ଚାଲିଥିବା ସମୟରେ ଏକ ଅପ୍ରତ୍ୟାଶିତ ସମ୍ବାଦ ସେହି ଗୁପ୍ତ ବୈଠକ ଗୃହଟିକୁ ଗୋଟାଏ ଅଚାନକ ଝଡ଼ ପରି ଆନ୍ଦୋଳିତ କଲା । ଖବର ଆସିଚି, ପୁଲିସ ସେମାନଙ୍କର ଗୁପ୍ତ ବୈଠକ ସ୍ଥାନଟିକୁ ସନ୍ଦେହ କରିଛନ୍ତି ଓ ଖୁବ୍ ଶୀଘ୍ର ସେମାନେ ଚଢ଼ଉ ଆରମ୍ଭ କରିଦେଇ ପାରନ୍ତି । ସମୟ ସେତେବେଳକୁ ରାତି ବାରଟା ।

ସ୍ଥାନୀୟ ଲୋକମାନେ ହୁଏତ ଆଶ୍ରୟସ୍ଥଳୀ ଖୋଜି ନେଇପାରନ୍ତି, କିନ୍ତୁ ବାହାରୁ ଆସୁଥିବା ଲୋକମାନେ ଯିବେ କୁଆଡ଼େ ? କିନ୍ତୁ ଏପରି ଏକ ପରିସ୍ଥିତି ପାଇଁ ସ୍ଥାନୀୟ ବନ୍ଧୁମାନେ ଆଗରୁ ଏକ ବିକଳ୍ପ ବ୍ୟବସ୍ଥା କରି ରଖିଥିଲେ । ସେମାନେ ତ ଖାଲି ପିନ୍ଧା ଲୁଗାରେ ଯାହା, ବାକୀ ବିମଳେନ୍ଦୁ ପରି ବାହାରୁ ଆସିଥିବା ଲୋକମାନଙ୍କ ହାତରେ ଖଣ୍ଡେ ଖଣ୍ଡେ ଆଟାଚି ନହେଲେ ବ୍ରିଫ୍‌କେସ୍ । ମୁହୂର୍ତ୍ତକ ଭିତରେ ଦୁଇଖଣ୍ଡ ଟାକ୍‌ସିରେ ବୋଝେଇ ହେଇ ସେମାନେ ଚାଲିଯାଇଥିଲେ ଅନ୍ୟ ଏକ ଗନ୍ତବ୍ୟ ସ୍ଥଳକୁ । ସହରଟା ଏକାଥରକେ ଶୂନ୍‌ଶାନ୍, ଟାକ୍‌ସିର ଆଲୁଅରେ ଯାହା ଦେଖା ଯାଉଥିଲା ତାହା କେବଳ ଗୋଟାଏ କଳା ରିବନ୍ ପରି ଆଗକୁ ଲମ୍ବି ଯାଇଥିବା ଅସରନ୍ତି ରାସ୍ତା ।

ବିମଳେନ୍ଦୁର ଜାଣିବାର ଉପାୟ ନାହିଁ ତାକୁ ନିଆଯାଉଛି କେଉଁ ଦିଗକୁ ବା' କେତେ ଦୂରକୁ ?

ଗନ୍ତବ୍ୟ ସ୍ଥାନରେ ପହଞ୍ଚିବା ପରେ ପରେ ବିମଳେନ୍ଦୁ ଓ ତା'ର ବନ୍ଧୁମାନେ ଗୋଟାଏ ପ୍ରକାଣ୍ଡ ଖାଲି ଘର ଭିତରକୁ ଯାଇ ସେମାନଙ୍କର ମୁଲତବି ରହିଥିବା ଆଲୋଚନା ଆରମ୍ଭ କରିଥିଲେ । ପରେ ପରେ ସମ୍ବାଦ ମିଳିଥିଲା ଯେ ସେମାନେ ସେମାନଙ୍କର ପୂର୍ବ ଆଶ୍ରୟସ୍ଥଳୀ ପରିତ୍ୟାଗ କରିବାର ଅବ୍ୟବହିତ ପରେ ପରେ ହିଁ ପୁଲିସ୍ ଆସି ସେ ଜାଗା ଉପରେ ଆକ୍ରମଣ କରିଥିଲେ ।

ନୂତନ ଆଶ୍ରୟ ସ୍ଥଳୀରେ ଆଲୋଚନା ଚାଲିଥିଲା ଆହୁରି ପ୍ରାୟ ଦେଢ଼ଦିନ । କେବଳ ନିତ୍ୟକର୍ମ ପାଇଁ, ଖାଇବା ପାଇଁ, ନହେଲେ ଚା' ସମୟରେ ଆଲୋଚନା ମୁଲତବି ରହେ । ଗୋଟିଏ ଅପେକ୍ଷାକୃତ ଛୋଟ ପିଲା, ପାଖ କୌଣସି କାଫେରୁ କେଟ୍‌ଲିରେ ଚା' ବା କଫି ନେଇଆସେ ଓ ତା' ସହିତ ଆଣିଥାଏ ଚାରି ପାଞ୍ଚଟା କପ୍ ପିଆଲା । କେହି କପ୍‌ରେ ବା' କେହି ପିଆଲାରେ ଚା' ପିଅନ୍ତି ଓ ସେମାନଙ୍କର ଚା' ପାନ ସମାପ୍ତ ହେଲେ ଅନ୍ୟ ଜଣେ ବନ୍ଧୁ ତା'ର ସଦ୍‌ବ୍ୟବହାର କରନ୍ତି । ଠିକ୍ ସେହିପରି ଟିଫିନ୍ କେରିଅର୍‌ରେ ମିଲ୍ ଆଣି ସେମାନଙ୍କୁ ଘର ଭିତରେ ପରିବେଷଣ କରିଦିଆଯାଏ । ରାତ୍ରିର ଯେଉଁ ସଂକ୍ଷିପ୍ତ ପ୍ରହରରେ ସେମାନେ ନିଦ୍ରା ଯାଆନ୍ତି, ଦୁଇଜଣ ବନ୍ଧୁ ଜାଗ୍ରତ ରହି ସେମାନଙ୍କର ନିରାପତ୍ତା ଅକ୍ଷୁର୍ଣ୍ଣ ରଖନ୍ତି ।

ସେଦିନ ଅପରାହ୍ଣରେ ଆଲୋଚନା ଉଦ୍‌ଯାପିତ ହେଲା । ଅପରାହ୍ଣ ମଳିନ ପଡ଼ି ଆସୁଥାଏ । ଗଲାବେଳକୁ ମଧ୍ୟ ସେହିପରି ସତର୍କତା ଅବଲମ୍ବନ କରିବାକୁ ହେବ । ପ୍ରଥମେ ଜଣ ଜଣ କରି ଚାଲିଯିବେ ସ୍ଥାନୀୟ ବନ୍ଧୁମାନେ । କାରଣ ସେମାନେ ସ୍ଥାନୀୟ ପୁଲିସ୍ ସହିତ ପରିଚିତ । ତା'ପରେ ବାହାରୁ ଆସିଥିବା ବନ୍ଧୁମାନେ ଯେ' ଯାହା ସୁବିଧା ଅନୁଯାୟୀ ସେ' ସ୍ଥାନ ତ୍ୟାଗ କରିବେ, କିନ୍ତୁ ସେହି ରାତିରେ ।

ବିମଳେନ୍ଦୁ ଓ ହେମନ୍ତର ଟିକଟ୍ କିଣା ସରିଥାଏ । ସେମାନଙ୍କର ଟ୍ରେନ୍ ଛାଡ଼ିବ ମାଡ୍ରାସ ସେଣ୍ଟ୍ରାଲ୍ ଷ୍ଟେସନରୁ ରାତି ନଅଟା ବେଳେ । ସ୍ଥାନୀୟ ବନ୍ଧୁମାନେ ବିଦାୟ ନବା ପରେ ଏକ ଅପେକ୍ଷାକୃତ ନିର୍ଜନ ପରିବେଶ ମଧ୍ୟରେ କେବଳ ଅସହାୟ ଭାବରେ ଅପେକ୍ଷା କରି ରହିଲେ ବିମଳେନ୍ଦୁ ଓ ହେମନ୍ତ ।

ବିମଳେନ୍ଦୁର ମନଟା ହଠାତ୍ କେମିତି ଫାଙ୍କା ହେଇଗଲା । କିଛି ସମୟ ପାଇଁ ମନଟା ଯେମିତି ହାଲୁକା ହେଇଉଠେ ଗୋଟାଏ ବିପଜ୍ଜନକ ଝଞ୍ଜାଳ ତୁଟିଗଲେ, ଠିକ୍ ସେମିତି । କୌଣସି କାରଣ ନ ଥାଇ ବିମଳେନ୍ଦୁର ମନର ଏଇ ଭ୍ୟାକୁମ୍ ଅବସ୍ଥାରେ ଯେଉଁ ଛୋଟ କଅଁଳିଆ ମୁହଁଟିଏ ଆସି ବାରମ୍ବାର ଉଙ୍କି ମାରିଲା, ତା' ହେଉଛି ତା'ର ଛୋଟ ଭଉଣୀ ସାବିତ୍ରୀର ମୁହଁ । ବିମଳେନ୍ଦୁର ନିଜର ଠିକ୍ ଠିକଣା ନାହିଁ—ଘର ନାହିଁ—ରୋଜଗାର ମଧ୍ୟ ନାହିଁ । ତେଣୁ ତା'ର ଛୋଟ ଭଉଣୀଟି ପାଇଁ ସେ କିଛି କରି ପାରେ ନାହିଁ ବୋଲି ସେ' ନିଜକୁ ଅନେକ ସମୟରେ ଅପରାଧୀ ମନେ କରେ । ନୂଆ ନୂଆ କଥା କହୁଥିଲା ବେଳେ ତାକୁ ତା' ନାଁ ପଚାରିଲେ କହୁଥିଲା, "ଛାବିତି" । ଓଃ ! କେତେ ହସି ହସି ଗଡ଼ି ଯାଉ ନଥିଲା ବିମଳେନ୍ଦୁ ! କିନ୍ତୁ ଯେତେବେଳେ ଯାହାହେଲେ ବି ତା' ପାଇଁ ତ କେବେ କେମିତି ମିଠା ପ୍ୟାକେଟଟାଏ କେବେ କେମିତି ଫ୍ରକ୍ ଖଣ୍ଡେ ବିମଳେନ୍ଦୁର ନେଇଯିବା ଉଚିତ୍ । କିନ୍ତୁ ବିମଳେନ୍ଦୁ ପକ୍ଷରେ ତା' ସମ୍ଭବ ହୋଇପାରେ ନାହିଁ—କେତେବେଳେ ଅର୍ଥର ଅଭାବରୁ ତ କେତେବେଳେ ସମୟର ଅଭାବରୁ ।

ମାଡ୍ରାସ ଆସିବା ପୂର୍ବରୁ ବିମଳେନ୍ଦୁ ଦୁଇଦିନ ପାଇଁ ଯାଇଥିଲା ଘରକୁ ।

ବିମଳେନ୍ଦୁ ଘରକୁ ଆସିଲେ ସାବିତ୍ରୀ ପାଇଁ ଓ ତା'ର ବିଧବା ମା' ପାଇଁ ଗୋଟାଏ ରୀତିମତ ଉତ୍ସବ । କ'ଣ କ'ଣ ବିମଳେନ୍ଦୁ ଖାଇବାକୁ ଭଲପାଏ ବା ଏକଦା ଭଲ ପାଉଥିଲା ତା'ର ଗୋଟାଏ ତାଲିକା କରାଯାଏ; ତା'ପରେ ଯଥାସମ୍ଭବ, ସୀମିତ ସମ୍ବଳ ଭିତରେ ଆୟୋଜନ କରାଯାଏ । ସାବିତ୍ରୀ ମନେକରେ ଯେ' ତା' ପାଇଁ ପୃଥିବୀରେ ଏକମାତ୍ର ନିର୍ଭରଯୋଗ୍ୟ ବ୍ୟକ୍ତିଟି ଫେରି ଆସିଛି; କିନ୍ତୁ ହାୟ ! ଅଚାନକ ପଡ଼ିଥିବା ଏଇ କୁଆପଥର ଚାହୁଁ ଚାହୁଁ ପୁଣି ମିଳେଇଯିବ କୁଆଡ଼େ ।

ଠିକ୍ ଏଇ ମୁହୂର୍ତ୍ତରେ ମନେ ପଡ଼ିଗଲା ବିମଳେନ୍ଦୁର ଯେ ସାବିତ୍ରୀ ତାକୁ କହିଥିଲା ତା' ପାଇଁ ଖଣ୍ଡେ ଚମଡ଼ା ସୁଟ୍‌କେଶ ଆଣିବାକୁ । ଏଇତ ! ଏଇତ ମାଡ୍ରାସ, ଏଇଠି ତ ଭଲ ଚମଡ଼ା ସୁଟ୍‌କେଶ୍ ମିଳେ । ହେମନ୍ତକୁ ସିଏ ଫେରିବା ପର୍ଯ୍ୟନ୍ତ ସେଇଠାରେ ଅପେକ୍ଷା କରିବାକୁ କହି ଜଡ଼ ପରି ବାହାରକୁ ବାହାରିଗଲା ବିମଳେନ୍ଦୁ । ହେମନ୍ତ ବିମଳେନ୍ଦୁର ଏତାଦୃଶ ବ୍ୟବହାରର ବିନ୍ଦୁବିସର୍ଗ ମଧ୍ୟ ବୁଝିପାରିଲା ନାହିଁ ।

ବିମଳେନ୍ଦୁ ପଦାକୁ ବାହାରି ଆସି ଦେଖିଲା ଗୋଟାଏ ବସ୍ ଆସି ପହଞ୍ଚିଛି—ତା' ଉପରେ ଲେଖା ଅଛି ମାଉଣ୍ଟ ରୋଡ୍ । ବେଶ୍‌ତ ! ମାଉଣ୍ଟ ରୋଡ୍ ମାଡ୍ରାଜ୍ ସହରର

ଅଭିଜାତ ବିପଣୀ । ବିମଳେନ୍ଦୁ କାଳ ବିଳମ୍ବ ନକରି ବସ୍‌ରେ ଉଠି ପଡ଼ିଲା । କଣ୍ଡକ୍ଟର ଆସି ପ୍ରଶ୍ନ କରିବା ପରି ଆଖିରେ ଚାହିଁଲା ବିମଳେନ୍ଦୁକୁ । ବିମଳେନ୍ଦୁ କେବଳ କହିଲା, 'ମାଉଣ୍ଟ୍ ରୋଡ୍' ଓ ନିଜର ହାତ ପାପୁଲିରେ କିଛି ରେଜା ପଇସା ଧରି କଣ୍ଡକ୍ଟର ଆଡ଼କୁ ଟେକି ଧରିଲା । ସେ ଜାଣେନା ସେ ଜାଗାରୁ ମାଉଣ୍ଟ ରୋଡ୍‌କୁ ବସ୍ ଭଡ଼ା କେତେ ।

ବିମଳେନ୍ଦୁ ମାଉଣ୍ଟ୍ ରୋଡ଼ରେ ପହଞ୍ଚିଥିଲା ଠିକ୍ । ଅନ୍ୟ କେଉଁଦିନ ହେଇଥିଲେ ମାଉଣ୍ଟ୍ ରୋଡ଼ର ଚାକଚକ୍ୟ ଉପଭୋଗ କରିବାକୁ ହୁଏତ ବିମଳେନ୍ଦୁ କିଛି ସମୟ ଧରି ଉଇଣ୍ଡୋ ସପିଙ୍ଗ୍ କରି ଥାଆନ୍ତା, କିନ୍ତୁ ଆଜି ବେଳ ନାହିଁ, ତେଣୁ ଗୋଟାଏ ଦୋକାନରୁ ଗୋଟିଏ ଛୋଟିଆ ଚମଡ଼ା ସୁଟ୍‌କେସ୍ କିଣିସାରି ବିମଳେନ୍ଦୁ ଫେରିବାକୁ ବସିଲା ।

ଠିକ୍ ସେହି ମୁହୂର୍ତ୍ତରେ ବିମଳେନ୍ଦୁ ସେଇ ଅବିଶ୍ୱାସ୍ୟ ସତ୍ୟ ଉପଲବ୍ଧି କଲା ଯେ' ସେ ଗୋଟାଏ ଜନ୍ତା ଭିତରେ ପଶି ଯାଇଛି ଯାହା ଭିତରୁ ତା'ର ବାହାରିଯିବା ସମ୍ଭବପର ନୁହଁ । ସେ କେଉଁଠିକି ଫେରିବ ? ହେମନ୍ତ ତା'କୁ ଯେଉଁଠାରେ ଅପେକ୍ଷା କରି ବସି ରହିଛି ତା'ର ଠିକଣା ସେ ଜାଣେନା । ଅଦୃଷ୍ଟ ବୋଧହୁଏ ଆସିଥିଲା ତା' ପାଖକୁ ତା'ର ଛୋଟ ଭଉଣୀର ମୁହଁ ନେଇ ତାକୁ ଜନ୍ତା ଭିତରକୁ ଟାଣିନବାକୁ । ଥରେ ସେ ଜନ୍ତା ଭିତରେ ପଶିଗଲା ପରେ ଜନ୍ତାର ଅର୍ଗଳୀ ଗୋଟାଏ ପ୍ରକାଣ୍ଡ ଶବ୍ଦ କରି ବନ୍ଦ ହେଇଗଲା ଯେମିତି ।

ବିମଳେନ୍ଦୁର କପାଳ ଉପରେ ବିନ୍ଦୁ ବିନ୍ଦୁ ଝାଳ ଜମି ଆସିଥିଲା । ପ୍ରତିଟି ମୁହୂର୍ତ୍ତ ଅତିକ୍ରାନ୍ତ ହେଲାବେଳେ ସେ ସଚେତନ ଯେ ସେ ନିଜର ଓ ହେମନ୍ତର ନିରାପତ୍ତା ବିପନ୍ନ କରି ଚାଲିଛି । କିନ୍ତୁ କ'ଣ କରିବ ସିଏ ? ପୁଲିସ୍‌ର ସାହାଯ୍ୟ ନବାର ପ୍ରଶ୍ନ ହିଁ ଉଠେନା । ତା' ଛଡ଼ା କେଉଁ ପୁଲିସ୍ ତାକୁ କହିଦେଇ ପାରିବ ତା'ର ନିଜର ଠିକଣା ? ସେ' ହୁଏତ ସିଧା ସଳଖ ଷ୍ଟେସନ୍‌କୁ ଚାଲିଯାଇ ପାରନ୍ତା, କିନ୍ତୁ ତା'ର ଆଦେଶ ବିରୁଦ୍ଧରେ ହେମନ୍ତ ତ ଷ୍ଟେସନ୍‌କୁ ଯିବ ନାହିଁ । ସ୍ଥାନୀୟ ବନ୍ଧୁମାନଙ୍କ ସହ ପରିଚୟ ଅଛି ବିମଳେନ୍ଦୁର କିନ୍ତୁ ସେମାନଙ୍କ ଘର ତ ସେ' ଜାଣେନାଁ । ଏଇ ବିରାଟ ମହାନଗରୀରେ କିଏ ବିମଳେନ୍ଦୁକୁ କହିବ ତା'ର ନିଜର ଠିକଣା ?

ବିଧ୍ୱସ୍ତ-ସ୍ନାୟୁ ବିମଳେନ୍ଦୁ ଅଗତ୍ୟା ଗୋଟାଏ କାଫେ ଭିତରକୁ ପଶିଯାଇ କପେ କଫି ପାଇଁ ୱେଟର୍‌କୁ ବରାଦ ଦେଲା । ଥଣ୍ଡା ମସ୍ତିଷ୍କରେ ଯଦି କିଛି ଉପାୟ ଚିନ୍ତା କରାଯାଇପାରେ ! ସାମ୍ନାରେ ପଡ଼ିରହିଥିବା ଗୋଟିଏ ଶୂନ୍ୟଗର୍ଭ ଚଉକିକୁ ଚାହିଁରହି ସେ ଯେତେ ଗଭୀର ଭାବରେ ଚିନ୍ତା କରିବାକୁ ଉଦ୍ୟମ କରୁଛି, ପରିସ୍ଥିତିର ଅସହାୟତା ତାକୁ ବାରମ୍ବାର ପ୍ରତିହତ କରୁଛି । ତା'ର ମନେହେଉଛି ଯେପରି ସେ'

ଗୋଟାଏ ଟାଇମ୍ ବମ୍ ଉପରେ ବସି ରହିଛି ଓ ତା'ର ଗୋଟିଏ ନାତିଦୀର୍ଘ ଫ୍ୟୁଜ୍ ଦିହରେ ଅଗ୍ନି ସଂଯୋଗ ସରିଲାଣି । ଫୁଟିବାଟା କେବଳ ସମୟସାପେକ୍ଷ ଯାହା । ଗୋଟାଏ ପ୍ରଚଣ୍ଡ ବିସ୍ଫୋରଣ ଯେ କୌଣସି ମୁହୂର୍ତ୍ତରେ ଘଟିଯାଇ ସେମାନଙ୍କର ପରିକଳ୍ପିତ ଯୋଜନାକୁ ଛାରଖାର କରିଦେଇପାରେ ଏବଂ କଟ୍‌ଓ୍ୟାଲିର ପୁଲିସ ଅଫିସର୍ ଡାହାଣ ହାତରେ ଧରିଥିବା ବ୍ୟାଟନ୍‌କୁ ବାଁ' ପାପୁଲି ଉପରେ ନଚଉ ନଚଉ ପଚାରିପାରେ, ହଁ, ତମ ସାଙ୍ଗରେ ଅନ୍ୟମାନେ କିଏ ଥିଲେ ସେମାନଙ୍କ ନାଁ କୁହ ? କ'ଣ ହେଲା, କହିବ ନାହିଁ,—ତା' ପରେ ପରେ ଟେବୁଲ ଉପରେ ଆଙ୍ଗୁଠି ରଖି ତା' ଉପରେ ବ୍ୟାଟନ୍‌ରେ ଗୋଟାଏ ପ୍ରଚଣ୍ଡ ପ୍ରହାର—ତଥାପି କହିବ ନାହିଁ—ପହରା କିଏ ଅଛ ? ଗୋଟାଏ ପିନ୍ କଣ୍ଟା ଆଣିବଟି....; ଆଉ ଭାବି ପାରିଲା ନାହିଁ ବିମଳେନ୍ଦୁ । ସେ କେବଳ ତା'ର ଦୁଇହାତର ଆଙ୍ଗୁଠି ମେଲା କରି ନଖଗୁଡ଼ାକୁ ଚାହିଁ ରହିଲା ।

ଇତିମଧ୍ୟରେ କଫି ଆସି ଟେବୁଲରେ ଥୁଆ ହେଇ ସାରିଥିଲା । କିନ୍ତୁ ବିମଳେନ୍ଦୁ ତା' ପ୍ରତି ଦୃଷ୍ଟି ଦେଇ ପାରିନଥିଲା । କିନ୍ତୁ ଜଣେ ବିଶାଳକାୟ କ୍ରିଷ୍ଟିଆନ୍ ଫାଦର ଯେତେବେଳେ ତା'ର ସାମ୍ନା ଚଉକୀଟିକୁ ଟିକିଏ ପଛକୁ ଟାଣି ନେଇ ସେଥିରେ ଉପବିଷ୍ଟ ହେଲେ ସେତେବେଳେ ବିମଳେନ୍ଦୁ ପ୍ରକୃତିସ୍ଥ ହେଲା ।

ବୟସ ପଞ୍ଚାବନ ଖଣ୍ଡେ ହବ । ଦିହରେ ସେଇ ଧଳା ଆଲ୍‌ଖାଲ୍ଲା, ବେକରେ ଗୋଟାଏ ମାଳି ଓ ସେଇ ମାଳି ଦିହରୁ ଗୋଟାଏ ଲକେଟ୍ ପରି ଅସହାୟ ଭାବରେ ଝୁଲି ରହିଛନ୍ତି କ୍ରୁଶ୍-ବିଦ୍ଧ ଯୀଶୁଖ୍ରୀଷ୍ଟ । ମୁହଁରେ ଗଭୀର ପ୍ରଶାନ୍ତି ଓ ଅସମ୍ଭବ ଆତ୍ମବିଶ୍ୱାସ । ଅଜାଣତରେ ଗୋଟାଏ କୁତ୍ସିତ ଗାଳି ଚାଲି ଆସିଲା ବିମଳେନ୍ଦୁର ଭାବନା ଭିତରକୁ ଫାଦର୍‌ଟି ଉଦ୍ଦେଶ୍ୟରେ ।

ଅଯାଚିତ ଭାବରେ ଫାଦର୍ ହିଁ କଥା ଆରମ୍ଭ କରିଥିଲେ ଶୁଦ୍ଧ ଇଂରାଜୀରେ "ଯୁବକ, ତୁମେ ଖୁବ୍ ଚିନ୍ତିତ ଆଉ ବିଚଳିତ ମନେ ହଉଛ, କଥା କ'ଣ ?"

ମନେ ମନେ ବିମଳେନ୍ଦୁ କହିଲା 'ହେଇଛି ଚୋପ୍‌ପା', କିନ୍ତୁ ପ୍ରକାଶ୍ୟରେ କହିଲା, "ନାଇଁ ଏମିତି", କଥାଟାକୁ ଏଡ଼େଇ ଦବାକୁ ।

ପୁଣି ସେଇ ଅନଭୂତି ସମବେଦନା, "ମୁଁ କିଛି ସାହାଯ୍ୟ କରିପାରେ ।" ଏଥର କିନ୍ତୁ ବିମଳେନ୍ଦୁ ବେଶ୍ ବିରକ୍ତ ହୋଇ ଉଠିଲା ଓ କହିଲା, "ଆପଣ ତ ଆପଣ, ମୋର ଏଇ ଅବସ୍ଥାରେ ଭଗବାନ ମଧ୍ୟ ସାହାଯ୍ୟ କରି ପାରିବେ ନାହିଁ ।" ପୁଣି ଥରେ ଭାସି ଆସିଲା ବିଗଳିତ କରୁଣାର ନିଷ୍କମ୍ପ ସ୍ୱର, "ଛି ! ଏପରି କୁହନାହିଁ—ଏପରି କିଛି ସମସ୍ୟା ପୃଥିବୀରେ ନାହିଁ ଯାହା ଭଗବାନ ସମାଧାନ କରିପାରିବେ ନାହିଁ ।" ଭଗବାନ୍ ଦୟାର ସାଗର । ସବୁ ପାପୀମାନଙ୍କୁ ସିଏ କୋଳକୁ ନେଇଯାଆନ୍ତି । ନକ୍ ଆଟ୍ ହିଜ୍ ଡୋର୍ ଆଣ୍ଡ ଦି ଡୋର୍ ସାଲ୍ ଓପନ୍ ଅନ୍ ଟୁ ଦି ।

ବିମଳେନ୍ଦୁ ଅତିଷ୍ଠ ହେଇ ଉଠିଥିଲା । ଯେକୌଣସି ମତେ ଫାଦର୍‌ର ଅଯାଚିତ ବକ୍ତୃତା ବନ୍ଦ କରିବା ଉଦ୍ଦେଶ୍ୟରେ କହି ଉଠିଲା–

''ମୁଁ ଏଇ ସହରରେ ନୂଆ, ଯେଉଁ ଜାଗାରେ ମୋ'ର ବନ୍ଧୁ ମତେ ଅପେକ୍ଷା କରି ରହିଛନ୍ତି, ସେ ଜାଗାର ଠିକଣା ମୁଁ ଜାଣେନା ।''

ଫାଦର୍ କହିଲେ, ''ଠିକ୍, ସମସ୍ୟା ଖୁବ୍ ଶକ୍ତ ତେବେ, ତମେ ଦୟାକରି ମୋ' ସହିତ କୋ-ଅପରେଟ୍ କର–ସେ ଜାଗାର ଗୋଟାଏ ମୋଟାମୋଟି ବର୍ଣ୍ଣନା ଦେଇ ଦେଖ୍ ।''

''ମୁଁ ସେଠି ମାତ୍ର ଗୋଟାଏ ଦିନ ଥିଲି । କିଛି ଦେଖି ନାହିଁ–ଖାଲି ଅନେକ ନଡ଼ିଆ ଗଛ ଆଉ ଗୋଟାଏ ପୋଖରୀ ।'' କହିଲା ବିମଳେନ୍ଦୁ ।

''ଏ ସହରରେ ସବୁଠି ନଡ଼ିଆ ଗଛ ଆଉ ସବୁଠି ପୋଖରୀ । ଆଉ କିଛି, ଆଉ କିଛି ଟିକିଏ ସ୍ଥିର ହେଇ ଚିନ୍ତା କର ଯଦି ମନେପଡ଼େ ?'' କହିଲେ ଫାଦର୍ ।

ବିମଳେନ୍ଦୁ ବର୍ତ୍ତମାନ ଅତ୍ୟନ୍ତ ଏକାଗ୍ରତାର ସହିତ ଚିନ୍ତା କରିବାକୁ ଆରମ୍ଭ କରି ଦେଇଥିଲା । କେତେବେଳକୁ କହିଲା, ''ହଁ, ସେଠି ସମୟ ଜଣେଇବା ପାଇଁ ପ୍ରତି ଘଣ୍ଟାକରେ ଥରେ ଘଣ୍ଟା ବାଜୁଥିଲା ଠନ୍ ଠନ୍ ହୋଇ ।''

ଫାଦର୍ କହିଲେ, ''ଗୁଡ୍, ଏଠିକାର ସବୁ ଥାନାର ଘଣ୍ଟା ବାଜିବାର ରିଆଜ୍ ଅଛି–କିନ୍ତୁ ମାଡ୍ରାସ ସହରରେ ସମୁଦାୟ ଥାନାର ସଂଖ୍ୟା ବାଇଶ୍ ।''

ଏଥର ବିମଳେନ୍ଦୁ ଓ ଫାଦର୍ ଉଭୟେ ଗୋଟାଏ ଛକ ଜାଗାରେ ପହଞ୍ଚିଲେ; ଯେଉଁଠାରୁ, କେଉଁ ରାସ୍ତା ଧରିବେ ସେମାନଙ୍କୁ ଜଣାନାହିଁ ।

''ଶୁଣ'', କେତେବେଳେକେ କହିଲେ ଫାଦର୍ ''ପ୍ରତି ଥାନାର ଆଖପାଖ ଅଞ୍ଚଳକୁ ଲୋକମାନେ ସେହି ନାଁରେ ଡାକନ୍ତି । ତମେ ଯେତେବେଳେ ସେଠି ଗୋଟାଏ ପୂରା ଦିନ ଥିଲ ସେ ଜାଗାର ନାଁ ହୁଏତ ତମ କାନରେ ପଡ଼ିଥାଇପାରେ ଅଥଚ ତୁମେ ମନେକରି ପାରୁ ନାହଁ !–ଆଉ ଥରେ ମୋ' ସହିତ ଶେଷ ଚେଷ୍ଟା କର, ମୁଁ ପ୍ରତିଟି ଥାନାର ନାଁ ତମକୁ ଗୋଟି ଗୋଟି କରି କହିଯାଉଛି । କିନ୍ତୁ ମନେରଖ ୟଂ ମ୍ୟାନ୍, ଭଗବାନ୍‌ଙ୍କ ଉପରେ ବିଶ୍ୱାସ ରଖ ।''

ନିରୁପାୟ ହୋଇ ବିମଳେନ୍ଦୁ ସେହି ନିରାକାର, ଅଦୃଶ୍ୟ, ଠିକଣା ନଥିବା ଭଗବାନଙ୍କ ଉପରେ ଆପାତତଃ ବିଶ୍ୱାସ ରଖିବ ବୋଲି ମନେ ମନେ ସଂକଳ୍ପ କରି ନେଲା । ଫାଦର୍‌ଟି ଥାନାଗୁଡ଼ିକର ତାମିଲ୍ ନାମକରଣ ଗୋଟିକ ପରେ ଗୋଟିଏ ଅତ୍ୟନ୍ତ ଧୀରେ ଧୀରେ ଓ ଶୁଦ୍ଧ ଭାବରେ କହି ଚାଲିଥାନ୍ତି । ବିମଳେନ୍ଦୁ ତା'ର ସମସ୍ତ

ଇନ୍ଦ୍ରିୟକୁ ଏକମୁଖୀ କରି ମନେ ପକାଇବାକୁ ଗଭୀର ଉଦ୍ୟମ କରୁଥାଏ । ଏକ୍, ଦୁଇ, ତିନି କରି ଚାଲିଗଲା ଏଗାରଟି ଥାନାର ନାଁ । କିନ୍ତୁ ଦ୍ୱାଦଶ ନାଁଟି ଥିଲା 'ଲୁଙ୍ଗମ୍-ବାକମ୍' ।

"ଇଉରେକ୍‌କା" ବୋଲି ସଶବ୍ଦ ଚିତ୍କାର କରି ଉଠିଲା ବିମଳେନ୍ଦୁ । ଠିକ୍ ଥାନା କାଛକୁ ଲାଗି ତା'ର ସେଇ ଇପ୍‌ସିତ ଘରର ଠିକଣା । ପାଖ କାଫେରୁ ଯେଉଁ କେତୋଟି ବିବର୍ଣ୍ଣ ତେଜହୀନ ଚା' କପ୍‌ରେ କଫି ପରିବେଷିତ ହେଉଥିଲା ସେଥିରେ ବିବର୍ଣ୍ଣ ଇଂରାଜୀ ଅକ୍ଷରରେ ଲେଖାଥିଲା 'ଲୁଙ୍ଗମବାକମ୍ କାଫେ' । ଦିନକ ଭିତରେ କମ୍ କଫି ତ ଶ୍ରାଦ୍ଧ କରି ନାହାନ୍ତି ସେମାନେ !

ଫାଦର୍‌ଙ୍କ ମୁହଁରେ ଫୁଟି ଉଠିଥିଲା ସେଇ ଅବିଚଳିତ, ଆବେଗହୀନ, ପ୍ରଶାନ୍ତ ହସ । କହିଲେ, "ଚବିଶ୍ ନମ୍ବର ବସ୍ ତମକୁ ସେଠିକି ନେଇଯିବ—ସେଠିକି ବସ୍ ମିଳେ ପ୍ରତି ଦଶ ମିନିଟ୍‌ରେ ।"

ଦୁଇ ମିନିଟ୍ ଅପେକ୍ଷା ପରେ ଚବିଶ୍ ନମ୍ବର ବସ୍ ଆସି ଠିଆ ହେଲା କାଫେ ସାମ୍ନାରେ । କାଳ ବିଳମ୍ବ ନ କରି ବିମଳେନ୍ଦୁ "ଧନ୍ୟବାଦ" କହି ସୁଟ୍‌କେଶ୍ ଧରି ବସ୍‌ରେ ଉଠିଲା ।

ବସ୍‌ରେ ଚଢ଼ିସାରି ଆଉଥରେ ପଛକୁ ଚାହିଁଲା ବିମଳେନ୍ଦୁ । ଫାଦର୍‌ଙ୍କର ଶ୍ମଶ୍ରୁଳ ମୁହଁରେ ତଥାପି ଲାଖି ରହିଥିଲା ସେହି ଅଚଞ୍ଚଳ, ଆବେଗଶୂନ୍ୟ ହସ ଓ ସେ ତାଙ୍କର ହାତର ପାପୁଲିକୁ ଏକ ଅଭୟ ମୁଦ୍ରାରେ ଟେକି ଧରିଥିଲେ ବିମଳେନ୍ଦୁକୁ ବିଦାୟ ଦବାକୁ ।

ବିମଳେନ୍ଦୁର ଆଖି ଆଗରେ ଫାଦ୍‌ରଙ୍କର ଶୁଭ୍ର ପାପୁଲି ଯେପରି ବହୁଗୁଣ ପ୍ରସାରିତ ହେଇଗଲା ଶୂନ୍ୟରେ ଓ ମୁହୂର୍ତ୍ତକ ପାଇଁ ତା'ର ମନେହେଲା, ଯେପରି ସେହି ଯୋଜନ ବିସ୍ତୃତ ପାପୁଲିର ରେଖାରେ ଗଙ୍ଗୋତ୍ରୀ, ଯମୁନେତ୍ରୀ ଓ ବ୍ରହ୍ମପୁତ୍ର ପ୍ରବାହିତ ହୋଇ ଚାଲିଛନ୍ତି । ହାତର ଆଙ୍ଗୁଠିଗୁଡ଼ିକ ଯେପରି ହିମାଚଳର ତୁଷାର-ଶୁଭ୍ର ଗିରିଶୃଙ୍ଗ !

*('ଗଳ୍ପଘର', ପୂଜାସଂଖ୍ୟା : ୧୯୮୦)*



# ସପନ

ସେ ରିକ୍ସା ଟାଣେ । ଲୋକଟା ଦେଖିବାକୁ ବେଶ୍ ମଜବୁତିଆ । ଦିହଟି ଗୋଲଗାଲ । ଦାଢ଼ିଗୁଡ଼ାକ ଟିକିଏ ବେଶୀ ବଢ଼ି ଯାଇଥିଲା ପରି ମନେହୁଏ । କୋଉ କାଳର ଖଣ୍ଡେ ମସିଆ ଲୁଗା ଦିହରେ ଗୁଡ଼ାଇ ହୋଇ ପଡ଼ିଥାଏ । ଗୋଡ଼ରେ ହଳେ ଛିଣ୍ଡା ତାଳିପକା ଚପଲ । ଖଣ୍ଡେ ଚିରା କନା ମୁଣ୍ଡରେ ଗୁଡ଼ାଇ ଦେଇଥାଏ । ତା' ଭିତରୁ ତାର କୁଞ୍ଚୁକୁଞ୍ଚିଆ ନୁଖୁରା ବାଳଗୁଡ଼ାକ ବେଶ୍ ଦେଖାଯାଏ ।

କେବେ ଯଦି କେହି କଲେଜ ପିଲା ସିନେମା ଯିବାକୁ ରିକ୍ସା ଖୋଜେ, ବନ୍ଧୁଆ ରିକ୍ସାଟାକୁ ଧରି ଆଗ ଠିଆ ହୋଇପଡ଼େ । ବାବୁମାନେ ଦର ବୁଝିବାକୁ ଅଟକିଯାନ୍ତି । ବନ୍ଧୁଆ ହସି କହେ, ''ଠାକୁର ଆପଣମାନଙ୍କୁ ବଡ଼ ଲୋକ କରିଛନ୍ତି—କଅଣ ଗରିବ ପେଟ ବୁଝିବ ନାହିଁ ଯେ !'' ବାବୁ ବସି ପଡ଼ନ୍ତି ।

ବନ୍ଧୁଆ ଆଗକୁ ଚାଲେ ଲୋକ ପରେ ଲୋକ କଟେଇ ନେଇ । ରାଣୀହାଟ ଛକ ପାଖେ ବନ୍ଧୁଆ ବାଙ୍କିଯାଏ ।

ବାବୁ ପଚାରନ୍ତି, ''କିରେ—ଏପଟେ ଯେ ।''

ବନ୍ଧୁଆ ଧଇଁସଇଁ ହୋଇ କହେ, ''ବାବୁ, ସେପଟେ ସଇନ ମଟରର ସବୁବେଳେ ଯିବା ଆସିବା, ଏ ପଟଟା ଟିକିଏ ନିରୋଳା ।

ବନ୍ଧୁଆର ସଇନ ମଟରକୁ ଭାରୀ ଡର ।

ସିନେମା ପାଖେ ଯାଇ ପଇସା ନିଏ । ମୁଣ୍ଡ ଆଉଁସି ଥରେ ଦି ପଇସା ମାଗେ । ଦେଲେ ଖୁସି ନଦେଲେ ଖୁସି ।

ବନ୍ଧୁଆ ଦିନଯାକ ଦିହ ଲଗେଇ ଗାଡ଼ି ଟାଣେ । ସଞ୍ଜ ହେଲେ ମୁନିସିପାଲଟି ଆଲୁଅ ଲାଗିଲେ ତା ଭଙ୍ଗା କୁଡ଼ିଆ କାଛରେ ଆଉଜି ପଡ଼େ । ଦିନଯାକ ଗଳିଗଳି ପିଚୁରାସ୍ତା ଉପରେ ବୁଲି ବୁଲି ତାର ଗୋଡ଼ ଥକି ଯାଇଥାଏ । ଟିକିଏ ରାତି ବଢ଼ି ପଡ଼ିଲେ ସେ ପଶିଯାଏ ପାଖ ଗୋଟାଏ ଗୁଲି ଖଟିକୁ, ସେ ଗୁଲି ଖାଏ, ମନଇଚ୍ଛା ଗୁଲି ଖାଏ । ସାରାଦିନର ଝାଳବୁହା ପଇସାକୁ ସେ ଗୁଲି ଖାଇବାରେ ଉଡ଼ାଇ ଦେଇ ଫତୁଆ ହୋଇ ଘରକୁ ଫେରେ । ସେହି ଫତୁର ହେବାରେ ସେ ଗୋଟାଏ ଆନନ୍ଦ ପାଏ ।

ବନ୍ଧୁଆର କେହି ନାହିଁ । ବାପ ମା'ଙ୍କର ମୁହଁ ତାର ମନେ ନାହିଁ । ସେ ନିହାତି ଏକା ଯେତେବେଳେ ସେ ଦଶବାର ବରଷର ପିଲା, ଗଳି ଗଳି ସେ ମାଗି ବୁଲୁଥିଲା; ଏବେ ଛଅ ବରଷ ହେବ ରିକ୍‌ସା ଟାଣୁଛି ।

ତା'ର ପାଶୋରା ଦିନର କଥାଗୁଡ଼ା ମନେ ପକାଇଲେ ସେ କାହାକୁ ମନେ କରି ପାରେନା ଯେ କି ତା ପାଇଁ ଜୀବନରେ କେବେ "ଆହା" କରିଛି । ତେବେ ତା'ର ମନେପଡ଼େ ତା' ସାଙ୍ଗ କଥା, ତାର ଗୁଲିଖିଆ ସାଙ୍ଗ ।

ସେ ତିନି ଚାରି ବରଷ ତଳର କଥା ।

ପ୍ରଭାତ ସିନେମା ତଳକୁ ଗଡ଼ି ପଡ଼ିଲେ ଛୋଟ କୁଡ଼ିଆଟିଏ । ବନ୍ଧୁଆ ସେଇଠିକି ବରାବର ଯିବା ଆସିବା ପରେ, ସେ କୁଡ଼ିଆର ଲୋକ ଭିତରେ ରାମାବୋଉ, ରାମା ଓ ତାର ଭଉଣୀ—ଚମ୍ପା । ସେଇ ଛୋଟ ସଂସାରଟି ଏଇ ତିନିଟି ପ୍ରାଣୀଙ୍କୁ ନେଇ ଚଳେ । ରାମା, ବନ୍ଧୁଆ ସାଙ୍ଗର କୋଡ଼ିଏ ବର୍ଷର ଭେଣ୍ଡା । ବେକାର ବସି ରହିଛି । ରାମାବୋଉ ଚକୁଳି କରେ । ବେଳ ରତରତ ହେଲାବେଳକୁ ଚମ୍ପା ପିଠଉ ବାଟି ଦେଇଥାଏ । ରାତିରେ ବୁଢ଼ୀ ଚୁଲି ଜାଳିଦେଇ ଚକୁଳି ତିଆରି କରିବସେ । ବୁଢ଼ୀ ହୋଇ ଗଲାଣି, ଆଖିକି ଭଲ ଦିଶୁନି—ତେବେବି ଘୁସୁରି ଘୁସୁରି କାମ କରେ ପେଟ ଚାଖଣ୍ଡକ ପାଇଁ । ଆଉ ଚମ୍ପା; ଏଇ ମଗୁଶିରକୁ ଷୋହଳ ଯାଇ ସତର ପଶିବ । ଗୋରା ଦିହଟି—ଧୀର ଶାନ୍ତ ଆଖି ଦୁଇଟି । ଗରିବ ହେଲେବି ନାରୀ ସୁଲଭ ସୌନ୍ଦର୍ଯ୍ୟ ଫୁଟିଉଠିଚି । ପାଇଟିପତ୍ରରେ ବୁଢ଼ୀ ମା'କୁ କେତେବେଳେ କିମିତି ଟିକିଏ ଅଣ୍ଟେଇ ଦିଏ । ଛୋଟ କୁଡ଼ିଆଟିର ସଂସାର ଏୟା ।

ବେଳ ରତରତ ହେଲେ ବନ୍ଧୁଆ ନୁଆଁଣିଆ ଚାଳିଟି ଭିତରକୁ ପଶିଆସି କହେ "ମାଉସୀ, କଅଣ ହେଇଚି ଦବୁଟି ।" ତେଣେ ପୁଣି ଗାଡ଼ିବାଲା ଜରିମାନା କରିବ । ବୁଢ଼ୀ ଦିଖଣ୍ଡ ଚକୁଳି କରି ବନ୍ଧୁକୁ ଥୋଇଦିଏ । ବନ୍ଧୁଆ ତା'ର କଳା ମର୍ ମର୍ ହାତଟାକୁ ଗୁଡ଼ ବଣା ଭିତରକୁ ପୂରାଇ ଦେଇ ବିଶି ଆଙ୍ଗୁଳିରେ ଟିକିଏ ଗୁଡ଼ କାଢ଼ିଆଣେ ।

ବନ୍ଧୁଆ ଧଇଁସଇଁ ହୋଇ ଖାଉ ଖାଉ କହେ, "ମାଉସୀ ଗୁଡ଼ ତ ଆସି ସରିଲାଣି ।" ବୁଢ଼ୀ ଚୁଲ୍ଲୀରେ କାଠ ଦଉ ଦଉ ଥଙ୍ଗେଇ ଥଙ୍ଗେଇ କହେ, "ଆଜିକି ହେଲା ସଂକ୍ରାନ୍ତିକୁ ସଂକ୍ରାନ୍ତି ମାସେ—ଗରହାକ ତ ଆଜିକାଲି ଟିକିଏ ବେଶି ହେଲେଣି, ଆଉ ଆସନ୍ତା କୁଆଡୁ । ଗୁଡ଼ ଦର ତ ଆଜିକାଲି ଯାହା ହେଲାଣି । ରାମାକୁ କାନେ କାନେ କହିଲି ଯେ ସେ ଟିକିଏ କାନେଇଲାନି । ତୁମେ ଏତେ ଆଡ଼େ ବୁଲୁଚ, ଟିକିଏ ସୁବିଧା ଦର ଦେଖି କୋ'ଠୁ ବଣାଟାଏ ଆଣି ଦିଅନ୍ତନି ?" ବନ୍ଧୁଆ କିଛି କହେନି । ଦି

ଦଫାରେ ସାରି ଦେଇ ହାତ ଧୋଇବାକୁ ଦଉଡ଼ିଯାଏ । ବୁଢ଼ୀ ବି ଚୁପ୍ ରହେ । ସେ ଜାଣେ ସେଇତକ ଯଥେଷ୍ଟ, କେତେବେଳେ ହେଲେ ବି ବନ୍ଧୁ ଗୁଡ଼ବଣାଟାଏ ଦେଇଯିବ ।

ବନ୍ଧୁଆ ହାତ ଧୋଇବାକୁ ଚମ୍ପା ପାଣି ଢାଳେ ଥୋଇଦିଏ । ବନ୍ଧୁଆ ଚମ୍ପାର ନଙ୍ଗଳା ହାତକୁ ଅନାଇ କହେ "କିଲୋ ଅଥରପି, କାଚ ଦି'ପଟ ସିନା ଭାଙ୍ଗି ସାରିଲୁଣି ।"

—"ହଁ, ପିଠଉ ବାଟୁବାଟୁ ଭାଙ୍ଗିଗଲା, ମୁଁ କଅଣ କରିବି ?" ଚମ୍ପା ଅନ୍ୟମନସ୍କ ଭାବରେ ଉତ୍ତର ଦିଏ ।

ବନ୍ଧୁଆ ଦଦରା କୁଡ଼ିଆ ଖଣ୍ଡକରୁ ବାହାରି ଯାଏ ।

ବୁଢ଼ୀକୁ ବନ୍ଧୁଆ ପୁଅପରି ଦିଶେ । ନିଜ ପୁଅ ହେଲେ କ'ଣ ହେବ, ରାମାଟା ନିହାତି ବୋକା । ସେ ବନ୍ଧୁଆକୁ ରାମା ଅପେକ୍ଷା ବେଶୀ ପସନ୍ଦ କରେ । ବେଳ ଅବେଳ ପଡ଼ିଲେ ସେ ବନ୍ଧୁଆକୁ ପଚାରେ ବୁଝେ । ରାମାକୁ କିଛି କହେନି, ସେ ଜାଣେ ରାମାଟା ନିକର୍ମା । —ଲାଗି ଖାଇବନି । ଆଉ କେତେ ବଜର ବଜର ହେବ ସେଇ କଥାକୁ ।

ଏମିତି ଦିନ କଟିଯାଏ ।

ରାମା ଦିନସାରା ଫୁଙ୍ଗୁଳା ହେଇ ବଜାରୀଙ୍କ ସାଙ୍ଗେ ବୁଲୁଥାଏ । ରାତି ହେଲେ ଗୁଲି ଖଟିକୁ ପଶିଯାଏ ଗୁଲି ଖାଇବାକୁ । କିଛି ଦିନ ତଳ କଥା । ରାମା ଯେତେବେଳେ ନୂଆ ନୂଆ ଗୁଲି ଖାଏ । ବନ୍ଧୁଆ ତାକୁ ବହୁତ ବୁଝେଇଚି । ତା କାନେ କାନେ କହିଛି, "ରାମା, ଗୁଲି ଖାଇଲେ ଅଣ୍ଟାରେ ପଇସା ରହେନି—ପାଣିପରି କୁଆଡ଼େ ଉଭେଇଯାଏ ।" ତାର ଛୋଟ ମୁଣ୍ଡରେ ସେ ତା' ଭିତରେ ଆଉ ରାମା ଭିତରେ ଗୋଟାଏ ତଫାତ୍‌କୁ ସ୍ପଷ୍ଟ କରିଦିଏ । ତା'ର କେହି ନାହିଁ । ରିକ୍‌ସା ଟାଣୁଟାଣୁ ଦିନେ ସେ ରାସ୍ତା କରରେ କେଉଁଠି ଟଳି ପଡ଼ିବ । ରାମାର ମା' ଅଛି, ଭଉଣୀ ଅଛି । ମା'କୁ ପୋଷିବ, ଭଉଣୀକୁ ହାତକୁ ଦି'ହାତ କରିବ । ରାମାକୁ ଏ କଥାଗୁଡ଼ା ପସନ୍ଦ ଆସେନି—ଏକାନରେ ପଶି ସେକାନରେ ବାହାରିଯାଏ, ତେବେ ତାର ସାହସ ହୁଏନି ଏତେଗୁଡ଼ାଏ ନିରାଟ ସତ କଥାକୁ ଫୁତ୍‌କାରରେ ଉଡ଼େଇ ଦବାକୁ । ସେ ବୋକାଙ୍କ ପରି ଗୋଟାଏ ଜାଗାକୁ ଅନେଇରହି କହେ "ହୁଁ" । ବନ୍ଧୁଆ ଖୁସି ହୁଏ । ଭଗବାନଙ୍କ ପାଖେ ରାମା ପାଇଁ ମୁଣ୍ଡିଆ ମାରେ । କିନ୍ତୁ କାଇଁ ତା' ପରଦିନ ରାମାର ପରିବର୍ତ୍ତନ ତ ହୁଏନି । ସେ ହତାଶ ହୁଏ । ଦିନ ପରେ ଦିନ ବିତିଚାଲେ । ବନ୍ଧୁଆ ନିତି ବୁଝାଏ । ହତାଶ ହୁଏ । ଦିନେ ବୁଝିଲା, ସେ ଯାହା ଆଶା କରିଚି ଖାଲି ସପନ ସିଏ । ଥରେ ଗୁଲି ଖାଇଲେ ଆଉ କି ଛାଡ଼ି ହୁଏ ?

ଦିନକର କଥା ମନେ ପକାଇ ଏବେ ବି ବନ୍ଧୁଆ ଆଖିରେ ଲୁହ ଆସେ । ସେ ହେଉଛି ଫଗୁଣର ଗୋଟାଏ ରାତି । ରାମା ଆଉ ବନ୍ଧୁଆ ଦୁହେଁ ଖଟିରୁ ଫେରୁଥିଲେ । ରାତି ପ୍ରାୟ ଏଗାରଟା ହେବ । ସଡ଼କଟା ଶୂନ୍‌ଶାନ୍ ପ୍ରାୟ । ଦୂରରୁ ସଇନ ମଟରର ଆଲୁଅ ଆଖିକୁ ଝଲକା କରି ଦଉଚି । ମଟରେ, ପାଖକୁ ଆସୁଚି, ଖୁବ୍ ପାଖକୁ । ରାମା ଘୂଲି ନିଶାରେ ଟେର୍ ହୋଇ ଗୋଟାଏ ଟେକୋ ଝୁଣ୍ଟି ସଡ଼କ ଉପରକୁ ଫୋପାଡ଼ି ହୋଇ ପଡ଼ିଲା । ବନ୍ଧୁଆ ଚମକି ଅନାଇଲା । ତା' ଆଖି ଆଗରେ ବିରାଟଯନ୍ତ୍ର ଦାନବଟା ରାମା ଦିହକୁ ମାଡ଼ି ଦେଇ ଆଗେଇ ଚାଲିଗଲା । ବନ୍ଧୁଆ ବହୁସମୟ ପରେ ସେ ଅନ୍ଧାରରେ ରାମାକୁ ପାଇଲା । 'ରାମା, ରାମା' ବୋଲି ସେ ଦୁଇଥର ଚିତ୍କାର କଲା ସେ ନିଶୂନ ରାତିରେ । ତା'ର ମନେ ହେଲା ଯେପରି ରାମାର ପ୍ରେତ ତାର ପ୍ରତ୍ୟୁତ୍ତର ଦେଉଚି । ତା' ମୁଣ୍ଡର ସବୁ ଭାବନାଗୁଡ଼ାକ ଗୋଳମାଳ ହୋଇ ଯାଉଥାଏ । ସେ ରାମାକୁ କାନ୍ଧେଇ ଆଗେଇ ଚାଲିଲା ଧୀରେ ଧୀରେ । ଶବଟାକୁ ରିକ୍‌ସାରେ ଥୋଇ, ଥରେ ଆଲୁଅରେ ତା' ମୁହଁ ଦେଖିନେଲା—ମୁହଁଟା ଚେପ୍‌ଟା ହୋଇଯାଇଛି । ଚିହ୍ନି ହେଉନାହିଁ । ସେଇ ଅନ୍ଧାର ରାତିରେ ବନ୍ଧୁଆ ରିକ୍‌ସା ଟାଣି ଟାଣି ଖାନନଗର ପାଖେ ପହଞ୍ଚିଲା ।

ବାତାହତ ଚିତାଟିଏ ଦୁକୁଦୁକୁ ହୋଇ ଲିଭି ଆସୁଥିଲା । ବନ୍ଧୁଆ ତା ଉଦ୍ଦେଶ୍ୟରେ ପ୍ରଣାମ କରି ମଠେଇ ଫେରିଲା ଘରକୁ ।

ଆଜିକାଲି ବନ୍ଧୁଆ ସେ ଛୋଟ ପରିବାରର ଜଣେ ନିଜ ମଣିଷ ହୋଇ ଯାଇଚି । କେତେ ରିକ୍‌ସାବାଲା ଆସନ୍ତି ଯାଆନ୍ତି ଖାଇସାରି, ତେବେ ବନ୍ଧୁଆର ମମତା କାହିଁକି ସେ ଦୁଃଖପରିବାର ପ୍ରତି ଟିକିଏ ବେଶୀ । ରାମା ମରିଯିବା ପରେ ତାହା ଟିକିଏ ଘନେଇ ଉଠିଛି ଯାହା । ଦିନ କାହାକୁ ଅନେଇ ବସେନି । ଚମ୍ପାର ବୟସ ହେଇଗଲାଣି । ହାତକୁ ଦି'ହାତ ହେବ । ଚମ୍ପାର ଅଳସ ଅଙ୍ଗଭଙ୍ଗୀରେ, ଘୂମନ୍ତ ଭୃକୁଟୀର ଗମ୍ଭୀର ଚଳନରେ ବନ୍ଧୁଆ ମୁଗ୍ଧ ହୁଏ । ସେ ଅନାଇ ରହେ ଲୋଲୁପ ରୂପପିପାସୁ ପରି କେତେବେଳେକେ, ଆଖି ଫେରେଇ ଆଣେ କଅଣ ଭାବି । ବୁଢ଼ୀ କେତେଥର କହିଲାଣି, "ବନ୍ଧୁ, ଝିଅ ଘିଅ, ଘରେ ରହିଲେ ଗନ୍ଧେଇ ଯାଏ ।" ଚମ୍ପା କପାଳରେ କ'ଣ ଶାଶୁଘର ନାହିଁ ?" ଚମ୍ପା ପାଖରେ ଥିଲେ ଦୂରକୁ ଉଠି ପଳାଏ ଲାଜରା ହୋଇ । ବନ୍ଧୁଆ ସପନ ଦେଖିଲା ପରି ଅନେଇ ରହେ ।

ଦିନ ଚାଲିଗଲାଣି, କେତେଦିନ ତଳେ ଯେ ଖାନନଗରର କେଉଁ କଣରେ ଦୁକୁଦୁକୁ ଚିତାଟିଏ ନିଭି ଯାଇଥିଲା, ତାର ହିସାବ ରଖିଛି କିଏ ? ଖାଲି ବନ୍ଧୁଆ ଛାତିରେ କେବେ କେବେ କିପରି ଝଟ୍‌କା ଲାଗେ । ତା ଆଖିପତା ଓଦା ହୋଇ ଆସେ । ସେ ମସିଆ ଗାମୁଛାରେ ସେଗୁଡ଼ାକ ପୋଛି ପକାଏ । ଆଜିକାଲି ସେ ବଡ଼ ଗମ୍ଭୀର ।

ସାଥୀ ଲୋକଙ୍କ ସାଙ୍ଗେ ବେଶୀ କଥାବାର୍ତ୍ତା କରେନି । କେବେ କେହି କିଛି ପଚାରିଲେ ଛୋଟ 'ହଁ' ଟିଏ ମାରି ନୀରବ ରହେ ।

ସାଙ୍ଗ ମେଳରେ କେହି କେବେ ତାକୁ ଇଙ୍ଗିତ କରି କହିଥିଲା, ''ବନ୍ଧୁଆ ଭାଇକୁ କଅଣ ସେମିତି କରି ପାଇଚକି ? ସେ ବୁଡ଼ି ବୁଡ଼ି ପାଣି ପିଏ । ମୂଳରୁ ପରା । ଚମ୍ପାକୁ ସାଇତିଛି ।'' ବନ୍ଧୁଆ ରାଗିଯାଇ ନାଲି ଆଖି ଦେଖେଇ ଥିଲା । ସେହିଦିନ ଠାରୁ କେହି କେବେ ତା' ସଙ୍ଗେ ଥଟ୍ଟା କରେନି ।

ବୁଢ଼ୀମା' ଏବେ ଆଉ ପାରୁନି । ଚମ୍ପା ସବୁ ନିଜ ହାତରେ କରୁଚି । ବୁଢ଼ୀ କଣରେ ପଡ଼ିରହି ଏଇଟା କର ସେଇଟା କର ପାଟିକରି ବତେଇ ଦେଉଚି । ଆଜିକାଲି ପାଖ ହମିଦ ମିଆଁ ଦୋକାନରେ ଯେଉଁମାନେ ପକୋଡ଼ି ମାଉଁସ ଖାଉଥିଲେ ସେମାନେ ଏଠି ଆସି ଜୁଟିଲେଣି । କିଏ ନ ଚାହେଁ କଅଁଳ ହାତର ପରଶା ମିଠା କଥା, ବଅସ ଥିଲା ଟୋକାଗୁଡ଼ାକ ନା ଆଉ କ'ଣ ?

ବଂଧୁଆ ଆଜିକାଲି ବେଶୀ ସମୟ ସେମାନଙ୍କ ପାଖେ କଟାଏ, ତାଙ୍କରି ଘରେ ଶୋଇପଡ଼େ । ତାର ଭୟହୁଏ, କାଳେ ଚମ୍ପା କାନ୍ଦିବ । ବୁଢ଼ୀ ମା' ସେ କଣରୁ ସକେଇ ସକେଇ କହେ, ''ବନ୍ଧୁ, ପୋଡ଼ିଗଲା ତିଅଣରେ କ'ଣ ସୁଆଦ ଥାଏ । ମୋର ସବୁ ଯାଇଚି, ଖାଲି ଏଇଟା ଯୋଗୁ ସିନା ପଡ଼ିରହିଚି ।'' ବୁଢ଼ୀ ଆଉ କହି ପାରେନି । ବନ୍ଧୁଆ ତା' କୋହ ଚାପିରଖି କହେ, ''ହଁ ମାଉସୀ, ସେଗୁଡ଼ା ଭାବି ଆଉ କଅଣ ହବ ? ଯେ ଯାଇଚି ଆଉ କଅଣ ଫେରିବ ?'' ତାପରେ ସବୁ ନୀରବ । ଚୁଲ୍ଲୀଟା ସେଁ ସେଁ ହୋଇ ଜଳୁଥାଏ । ଡିବିରୀର ଥରିଲା ଆଲୁଅରେ ବଂଧୁଆ ଅନେଇ ରହେ ଚମ୍ପା ମୁହଁକୁ । ତା' ମନରେ କେତେ କଅଣ ଆସେ, ଚମ୍ପା ତା' ଭଉଣୀ, ସେ ତାକୁ ହାତକୁ ଦି' ହାତ କରିବ । ସେଥିପାଇଁ କିଛି ପଇସା ବି ଜମେଇଛି । ଭଗବାନଙ୍କ ଉଦ୍ଦେଶ୍ୟରେ ତାର ହାତ ଦୁଇଟା ଉପରକୁ ଉଠିଯାଏ ।

ଡିବିରୀଟାକୁ ସାଙ୍ଗରେ ନେଇ ସେ ଘର କଣର ଖଣ୍ଡେ ମାଙ୍କଡ଼ା ପଥର ଟେକିଦିଏ । ତା' ତଳେ ଅଣି, ଦୋ'ଣି, ସୁକି ଟଙ୍କା କେତେ କ'ଣ ସେ ସାଇତି ଥାଏ । ସେ ଏତେ ଟଙ୍କା ଜୀବନରେ ଦେଖିବା ପ୍ରଥମ । ସିଏ ଚମ୍ପା ବାହାଘର କରିବ । ଚମ୍ପା ଦଉଡ଼ି ଆସି କହେ, ''ଏଁ, ସତେ କେତେ ପଇସା ବଂଧୁଭାଇ ଜମେଇଲେଣି ଲୋ ମା' ।'' ବଂଧୁଆ ହସି ଦେଇ କହେ ''ତୋ' ବାହାଘର ହବ କିମିତି ।'' ଚମ୍ପା ଲାଜରା ହୋଇ କହେ, ''ହେ'' ଝଲକାଏ ଥଣ୍ଡା ପବନ ମୁମୂର୍ଷ ଡିବିରୀଟାକୁ ନିଭେଇ ଦେଇ ଯାଏ । ବୁଢ଼ୀ ହେଂସଟାକୁ ଉପରକୁ ଟାଣି ନେଇ କହେ, ''ଜଳାକବାଟିଟା ଆଉଜାଇ ଆଣିବୁଟି ଲୋ ଝିଅ ।'' ସେଇ ଅନ୍ଧାର ଭିତରେ ଦୁଇଟା ରାତି ସପନ ଦେଖେ–ଜଣେ ବାଦା ହେବ, ଆଉଜଣେ ତା' ଭଉଣୀକୁ ବାହା ଦେବ ।

ସଂଜ ହେଲେ ରିକ୍ସାବାଲା ସବୁ ଆସି ଗୋଟି ଗୋଟି କରି ଜୁଟନ୍ତି । ସେମାନେ ବଂଧୁଆର ଚମ୍ପା ସାଙ୍ଗରେ ମିଳାମିଶାଟାକୁ ସହି ପାରନ୍ତିନି । ମଣିଷ ଛାତି ତ' କେତେ ସହିବ ? ବଂଧୁଆ ଫେରେ ବଢ଼ିଲା ଝିଅଟାକୁ ଗେଲ କରିବ । ତାଙ୍କ ଘରେ ଶୋଇବ । ଏ ଦୁହିଁଙ୍କର ଚରିତ୍ର ବିଷୟରେ ଧୀରେ ଧୀରେ ଟୁପ୍ ଟାପ୍ ଚାଲିଲା । ଚମ୍ପା ବାସନା ପାଇ ବଂଧୁଆକୁ ନାହିଁ କରେ ଆସିବାକୁ । ବଂଧୁଆ କହେ, ''ଲୋକେ କହିଲେ ବୋଲି କ'ଣ ଭାଇ ତା' ଭଉଣୀକୁ ଛାଡ଼ି ପକେଇବ ।'' ବଂଧୁଆର ନୈତିକ ସାହସ ଦେଖି ତା ଆଗରେ ମୁହଁକୁ ମୁହଁ କେହି କଥାବାର୍ତ୍ତା କରିପାରନ୍ତି ନାହିଁ,—ଯାହା କହନ୍ତି ପଛରେ ।

ଆଜିକାଲି ବେଳ ଦେଖି କିଏ କେମିତି ଚମ୍ପାକୁ ଟାହୁଲି ଟାପରା କଲେଣି । କିଏ କହେ, ''ହଁ ଲୋ ଚମ୍ପା, ତୋ' ହାତ ଚକୁଳି କାହିଁକି ମିଠା ନାଗୁଛି ମ ?'' ଆଉ କିଏ କହେ, ''ହଇଲୋ, ବୁଢ଼ୀ ଏତେ ଦିନକେ ତୋ ହାତକୁ ରସ ବଟଫଳ ଦିଖଣ୍ଡ କରେଇ ଦେଇଚି—ସେ ତ ବନ୍ଧୁଆ ବନ୍ଧୁଆ ହେଇ ମଲା, ବନ୍ଧୁଆ କ'ଣ କମ ତରକା କି ?''

ଚମ୍ପା ବନ୍ଧୁଆର ନିନ୍ଦା ସହି ପାରେନି । ମୁହଁ ଛିଞ୍ଚାଡ଼ି କହେ, ''କାହିଁକି ମ ବନ୍ଧୁଆ କଅଣ ଆମର ଖାଇଗଲା କି ?''

ଜୋକ ମୁହଁରେ ଲୁଣ ଦେଲା ପରି ଏଇ କଥା ପଦକରେ ସମସ୍ତେ ତଳକୁ ମୁହଁ ପୋତି ଖାଇବାରେ ଲାଗିଯାନ୍ତି ।

ଥରେ ସନିଆ ରିକ୍ସାବାଲା ଚାରିଅଣାର ଖାଇ ଚମ୍ପାହାତରେ ଟଙ୍କାଟାଏ ଗୁଞ୍ଜି ଦେଇ କହିଲା, ''ଚମ୍ପା ଲୋ, ରଖିଥା, ବାଳିଯାତରେ ଖରଚ କରିବୁ ।'' ଚମ୍ପାକୁ ଏଗୁଡ଼ା ପସନ୍ଦ ଆସିଲାନି । ସେ ଜୋର ଦେଇ କହିଲା, ''ନାଇଁ, ମୁଁ କାହିଁକି ତୁମର ଧାରୁଆ ରହିବି ।'' ସନିଆ ଚାଲିଯାଇଛି, ଚମ୍ପା ଦୁଆର ମୁହଁରେ ଡାକୁଛି । ବନ୍ଧୁଆ ଫେରୁଚି ଆସାନ୍‌ସୋଲ ଗାଡ଼ି ସବାର ନେଇ, ଯନ୍ତ୍ରଚାଳିତ ପରି ସେ ଅଟକି ଗଲା । ସନିଆକୁ ଧରି ପକେଇ କହିଲା, ''କିରେ, ମଗରା ହେଲୁଣିକି, ଅଣ୍ଟାରେ ତ ବଡ଼ ପଇସା ଜୋର ହେଲାଣି,'' ସନିଆ ଦବି ଯାଇଥିଲା, ବନ୍ଧୁଆ କହି ଚାଲିଲା ''କିରେ, ଏ ହାତରେ କେତେ ରୋଜଗାର କରିଚି । ତୁ କ'ଣ ଆଜି ବାରଅଣା ପଇସାରେ ମୋ ଭଉଣୀ ଆଗରେ ନାଗର ହଉଚୁ । ଆଉ ଥରେ ସେମିତି କଲେ ଦେଖିଥା ।''

ସନିଆ ଚାଲିଗଲା । ମନେ ମନେ ଗୁଣି ହେଲା, ''ଓହୋରେ ଭାଇ, ଏକା ମା' ପେଟର ହୋଇ ତ ଏତେ ସିନିହ ଦେଖା ନାହିଁ ।'' କେତେକ ଅହନ୍ତା ରଖିଲେ, ''ହଁ, ଦେଖିଲା କାମ କରି ଦବାନି''—ବେଳ ଗଡ଼ିଯିବା ସାଥିରେ ସେଇ ଅହନ୍ତା ରୂପନେଲା ।

ଦିନକର କଥା, ରାତି ପ୍ରାୟ ଏଗାରଟା ହେବ, ମେଲ୍‌ରୁ ସବାର ନେଇ ରିକ୍ସାବାଲା ସବୁ ଫେରି ନାହାନ୍ତି । ଚମ୍ପା ଦୋକାନ ଖୋଲା ରଖି ବସିଚି । ଗରାହାକ

ଫେରିଲେ ଖାଇବେ । ଡିବିରିଟା ମିଞ୍ଜି ମିଞ୍ଜି ହୋଇ ଜଳୁଚି । ଚମ୍ପା, ଆଉଜି ପଡ଼ିଚି ଛିଣ୍ଡା ହେଂସ ଖଣ୍ଡକ ଉପରେ– ଅନେଇ ସପନ ଦେଖୁଚି । ଚୋରଙ୍କ ପରି ଦୁଇଟା ଲୋକ ଭିତରକୁ ପଶି ଆସିଲେ । ଚମ୍ପା ନୀରବରେ ସେମାନଙ୍କ ପାଇଁ ଖାଇବାକୁ ଥୋଇଦେଲା । ସନିଆ କହିଲା, ''ଆମେ ଖାଇବାକୁ ଆସିନୁ ଲୋ ଚମ୍ପା, ଖାଇବାକୁ ଆସିନୁ ।'' ଚମ୍ପା ଜକ ଜକ କରି ଅନାଇ ରହିଲା । ତା' ମନରେ ପାପ ଛୁଇଁଲା । ପାଖରେ ତ କେହି ନାହିଁ, ଡାକିବ କାହାକୁ, ସନିଆର ପିଶାଚର ଆଖି ଦୁଇଟା ତାକୁ ଭୟ ଦେଲା । ସେ ଅନାଇ ପାରିଲା ନାହିଁ, ରହି ରହି କହିଲା, ''ଆଉ ମୋଠିଁ କଅଣ କାମ ?'' ''ବହୁତ ଅଛିଲୋ ଟୋକି–ବହୁତ ଅଛି, ଆଜିଯାଏ ଠକି ଠକି ଆସିଚୁ, ଆଉ କେତେଦିନ ଠକିବୁ । ସବୁଦିନ ତ ବନ୍ଧୁଆ ପାଖରେ ନ ଥିବ ।'' ସନିଆ ଘୁଲି ନିଶାରେ ଟଳି ଟଳି କହିଲା ।

ବାହାର କବାଟରେ ଠକ୍ ଠକ୍ ଶୁଣାଗଲା–ଏମାନେ ଟିକିଏ ସଂଯତ ହେଲେ, ଚମ୍ପା ଯାଇ କବାଟ ଖୋଲିଲା । ବନ୍ଧୁଆ । ଚମ୍ପା ପିଣ୍ଡରେ ପ୍ରାଣ ପଶିଲା, ବନ୍ଧୁଆ ଆସିବାରୁ ଚମ୍ପା ବନ୍ଧୁଆ ଆଡ଼କୁ ଆଡ଼ ହେଇଗଲା, ''କିବେ ସନିଆ, ଫେର୍ ତୁ ଏଠି'' ବନ୍ଧୁଆ ଆରମ୍ଭ କଲା । ''ମୁଁ କାହାର ବୋପା ପଇସାରେ ଖାଇବାକୁ ଆସିନି'' ସନିଆ ଜବାବ ଦେଲା ।

ପଛପଟୁ ବନ୍ଧୁଆ ମୁଣ୍ଡ ଉପରେ ଏକ ଶକ୍ତ ପାହାର ବସିଲା । ବନ୍ଧୁଆ ମାଟି ଉପରେ ଢଳି ପଡ଼ିଲା । ତା ସାଙ୍ଗେ ସାଙ୍ଗେ ନଇଁ ଆସିଲା ଚମ୍ପାର ବିରସ ମୁର୍ତ୍ତିଟି ବନ୍ଧୁଆ ମୁଣ୍ଡ ଉପରକୁ । ଚମ୍ପାର ସେତେବେଳକୁ ଆଉ ଜ୍ଞାନ ନଥିଲା । କେବଳ ଯାହା ସେ ଦୁଇଟା ଶକ୍ତ ହାତର ସ୍ପର୍ଶ ଅନୁଭବ କଲା । ତାକୁ ଯେପରି କିଏ ବଳ ପ୍ରୟୋଗ କରି ନେଇ ଯାଉଚି । ତାର ଶେଷ ଅସ୍ଫୁଟ ଚିତ୍କାର 'ବନ୍ଧୁଭାଇ' ବାୟୁମଣ୍ଡଳରେ ଯାହା ଟିକିଏ ସ୍ପନ୍ଦନ ଆଣିଥିଲା ।

ବନ୍ଧୁଆ ସ୍ୱପ୍ନରୁ ଉଠିଲା ପରି ଦେଖିଲା, ସେ ରହିଚି ଗୋଟାଏ ହାସପାତାଳରେ । ନାଲିପଗଡ଼ିଆ ତାଠୁ ଜମାନବନ୍ଦୀ ନବାକୁ ଚେଷ୍ଟା କରିଥିଲେ । ସେ ଦେଲା ନାହିଁ, ଖାଲି ବଲବଲ କରି ଅନାଇ ରହିଲା । ତା କାନ ପାଖକୁ ଝୁଙ୍କି ପଡ଼ି ନାଲି ପଗଡ଼ିଆ ଟିକେ ଜୋରରେ କହିଲା ''ତୋ ମୁଣ୍ଡ ଫାଟି ଯାଇଥିଲା । ଆସିଥିଲୁ ଭଲ ହେବାକୁ ।''

ଗୋଧୂଳି ଅନ୍ଧାରରେ ଗୋଟିଏ ଲୋକ ପହଞ୍ଚିଲା ଚମ୍ପା କୁଡ଼ିଆ ପାଖରେ । ଦାଢ଼ି ଗୁଡ଼ାକ ବଢ଼ିଯାଇଚି । ମନେହୁଏ କ୍ଲାନ୍ତ ଅବସନ୍ନ ଶରୀର, ଫୁଙ୍କି ଦେଲେ ପଡ଼ିଯିବ । ସେ ଘର ଭିତରେ କାହାକୁ ଖୋଜୁଥିଲା ।

ଚମ୍ପା ନାହିଁ । ତାର ବୁଢ଼ୀ ମା' ନାହିଁ, ଘର ଦେଖିଲେ ମନେ ହେଉଚି ଯେପରି କିଛି ଦିନ ହେଲା କେହି ଏଠାରେ ନାହିଁ । ଠାଏ ଠାଏ ଚାଳ କଣା ହୋଇ ଯାଇଛି ହନୁ ଡେଇଁ । ସଞ୍ଜ ପବନରେ ଦଦରା ବାଉଁଶ ଗୁଡ଼ାକ ବଂଇଶୀ ବଜଉଛନ୍ତି । ଦୂରରୁ ଘର୍ ଘର୍ କରି ସଇନ ମଟରଟାଏ ଆସୁଥିଲା । ସେ, ପାଖ ଲାଇଟ୍ ଖୁଣ୍ଟଟାକୁ ଧରି ସଂଧ୍ୟାର ଶିଉଳିରେ ମିଶିଗଲା । ତାର ବୋଧେ ମନେ ପଡୁଥିଲା, ''ରାମା ଏଇ ମଟର ତଳେ ଚାପା ପଡ଼ି ମରିଥିଲା—ଆଉ ଚମ୍ପା''—

*(ଶଙ୍ଖ—୨ୟବର୍ଷ ୩ୟ ସଂଖ୍ୟା, ଭାଦ୍ରବ ୧୯୪୬)*

